

# ଅଲୌକିକ
# କୁର୍ଆନ

ଅନୁବାଦ

ଶକୀଲ୍ ଅହମଦ




ଇକ୍ରା ରିସର୍ଚ୍ଚ ଏକାଡେମୀ

ଅଲୌକିକ କୁର୍‌ଆନ୍
(ଓଡିଆ ସଂସ୍କରଣ)

ଅନୁବାଦ :
ଶକୀଲ ଅହମଦ

ପ୍ରକାଶକ :
ଶୋଏବ ଅହମଦ
ପ୍ଲଟ ନଂ. ୧୮୦
ନିଉ ଆଜାଦ ନଗର, ସୁନ୍ଦରପଦା
ଭୁବନେଶ୍ୱର-୭୫୧୦୦୨

ନୂତନ ସଂସ୍କରଣ : ୨୦୨୨

ଟାଇପ ସେଟିଂଗ :
ଶକୀଲ ଅହମଦ

ମୁଦ୍ରଣ :
ଜଗନ୍ନାଥ ପ୍ରୋସେସ୍ ପ୍ରାଃ ଲି., କଟକ

ମୂଲ୍ୟ :
୨୫୦ ଟଙ୍କା

ALOUKIKA QUR'AN
(Odia Edition)

Translation:
Shakeel Ahmed

Publisher :
Shoaib Ahmed
Plot No. 180
New Azad Nagar
Sundarpada
Bhubanesawar-751002

New Edition : 2022

Type Setting :
Shakeel Ahmed

Printers :
Jagannath Process Pvt. Ltd.,
Cuttack

Price :
Rs. 250/-

# ମୁଖବନ୍ଧ

ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

ଆଦିମକାଳରୁ ମନୁଷ୍ୟର ମାର୍ଗଦର୍ଶନ ପାଇଁ ସ୍ରଷ୍ଟା ଗୋଟିଏ ଶୃଂଖଳା ଦେଇଛନ୍ତି ଯାହାକୁ 'ଧର୍ମ' କୁହାଯାଏ । ଯେହେତୁ ସବୁ ମଣିଷ ଗୋଟିଏ ଜାତି ଏବଂ ସମସ୍ତଙ୍କର ପ୍ରାକୃତିକ ସ୍ୱଭାବ, କାମନା-ବାସନା ଏବଂ ମାନବୀୟ ଦୋଷଦୁର୍ବଳତା ସମାନ, ସମସ୍ତଙ୍କ ପାଇଁ ଗୋଟିଏ ଧର୍ମ ଦିଆଯାଇଛି । କୁରଆନ କହିଛି -

> (ଆରମ୍ଭରେ) ମାନବସମାଜ ଗୋଟିଏ ଧର୍ମ ସଂପ୍ରଦାୟ ଥିଲା ମାତ୍ର ପରେ ଲୋକମାନେ (ପରସ୍ପର ମଧ୍ୟରେ) ମତଭେଦ କରି ଭାଗଭାଗ ହୋଇଗଲେ । (୧୦/୧୯)

ସେହି ଗୋଟିଏ ଧର୍ମର ପ୍ରଚାର ଓ ପୁନଃସ୍ଥାପନା ପାଇଁ ଈଶ୍ୱର ବିଶ୍ୱରେ ଲକ୍ଷାଧିକ ପ୍ରତିନିଧି ପଠାଇଛନ୍ତି ଏବଂ ବିଭିନ୍ନ ଭାଷାରେ ଅନେକ ଗ୍ରନ୍ଥ ପ୍ରକଟ କରିଛନ୍ତି । କୁର୍‌ଆନ କହେ ଯେ ପ୍ରତ୍ୟେକ ସମାଜ ପାଇଁ ଜଣେ ବାର୍ତ୍ତାବହଙ୍କୁ ପଠାଯାଇଛି[(୧)] ଏବଂ ପ୍ରତ୍ୟେକ ଯୁଗ ପାଇଁ ଗ୍ରନ୍ଥ ଦିଆଯାଇଛି ।[(୨)]

ସପ୍ତମ ଶତାବ୍ଦୀରେ ଧର୍ମର ପୁନଃସ୍ଥାପନା ପାଇଁ ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦଙ୍କର ଆବିର୍ଭାବ ଘଟିଲା । ଖ୍ରୀ.ଅ. ୬୧୦ରୁ ଖ୍ରୀ.ଅ. ୬୩୨ ପର୍ଯ୍ୟନ୍ତ ଦୀର୍ଘ ୨୩ ବର୍ଷ ମଧ୍ୟରେ ଏହି ମହାପୁରୁଷଙ୍କୁ ଯାହା ଦୈବବାଣୀ ହୋଇଥିଲା, ସେଗୁଡ଼ିକର ସମାହାରକୁ 'କୁର୍‌ଆନ' କୁହାଯାଏ । ମକ୍କାରେ ଥିବା 'ହିରା' ନାମକ ଏକ ପାହାଡ଼ ଗୁମ୍ଫାରେ ଧ୍ୟାନମଗ୍ନ ଥିବା ବେଳେ ତାଙ୍କ ପ୍ରତି ପ୍ରଥମ ଦୈବବାଣୀ ହୋଇଥିଲା । କୁରଆନ ସ୍ରଷ୍ଟାଙ୍କର ନୂଆ ଗ୍ରନ୍ଥ ନୁହେଁ । ଏହା କୌଣସି ନୂଆ ନୀତି ଦେଇନାହିଁ ବା ନୂଆ ଧର୍ମର ପ୍ରଚାର କରିନାହିଁ ।

ଧର୍ମ ହେଉଛି ଈଶ୍ୱରବିଶ୍ୱାସ ଉପରେ ଆଧାରିତ ଏକ ଜୀବନଶୈଳୀ ଯାହାର ନୀତିଗୁଡ଼ିକ ସବୁ ଯୁଗରେ ସବୁ ମଣିଷଙ୍କ ପାଇଁ ସମାନ ରହି ଆସିଛି । ଈଶ୍ୱରତତ୍ତ୍ୱ, ନୈତିକତା, ମାନବାଧିକାର, ଚିତ୍ତଶୁଦ୍ଧି, ପରଲୋକ ବା କର୍ମଫଳର ସିଦ୍ଧାନ୍ତରେ

---

**(୧)** କୁରଆନ ୧୦/୪୭ **(୨)** କୁରଆନ ୧୩/୩୮

କୌଣସି ଯୁଗରେ ପରିବର୍ତ୍ତନ ହୁଏନାହିଁ । ସତ୍ୟ, ନ୍ୟାୟ, ଦୟା, କ୍ଷମା ଏବଂ ପରୋପକାର ସବୁ ଯୁଗରେ ଧର୍ମ ରୂପେ ବିବେଚିତ ହୋଇ ଆସିଛି ଏବଂ ସାଧୁ, ସଚ୍ଚୋଟ, ସଦାଚାରୀ ଓ ସଂଯମୀ ଲୋକମାନେ ସବୁବେଳେ ଧାର୍ମିକର ମର୍ଯ୍ୟାଦା ଲାଭ କରିଛନ୍ତି । ବିଶ୍ୱରେ ଆସିଥିବା ଗ୍ରନ୍ଥଗୁଡ଼ିକର ସିଦ୍ଧାନ୍ତରେ ପ୍ରଭେଦ ରହିବା ସମ୍ଭବ ନୁହେଁ କାରଣ ସମସ୍ତଙ୍କର ଈଶ୍ୱର ଜଣେ ଏବଂ ତାଙ୍କର ନୀତି ପରିବର୍ତ୍ତନଶୀଳ ନୁହେଁ ।

କୁର୍‌ଆନ ଗ୍ରନ୍ଥଟି ଅନୁପମ ସାହିତ୍ୟିକ ଶୈଳୀର ଏକ ଆଦର୍ଶ ଜୀବନସଂହିତା । ଏହା କେବଳ ଆଧ୍ୟାତ୍ମିକ ବା ନୈତିକ ଶିକ୍ଷା ଦେଇନାହିଁ ବରଂ ମଣିଷର ପାରିବାରିକ, ସାମାଜିକ ଓ ଆର୍ଥିକ ସମସ୍ୟାଗୁଡ଼ିକର ଉଚିତ ସମାଧାନ ମଧ୍ୟ ଦେଇଛି । ଈଶ୍ୱରଙ୍କ ପ୍ରତି ମଣିଷର କର୍ତ୍ତବ୍ୟ କ'ଣ ଏବଂ ପିତାମାତା, ଆତ୍ମୀୟସ୍ୱଜନ ତଥା ସମାଜ ପ୍ରତି ତା'ର କର୍ତ୍ତବ୍ୟ କ'ଣ ଏହା ବର୍ଣ୍ଣନା କରିବା ସହିତ ସତ୍ୟ, ନ୍ୟାୟ, ଦୟା, କ୍ଷମା ଓ ପରୋପକାରର ସଂଜ୍ଞା ନିରୂପଣ କରିଛି ଏବଂ ଯୁଦ୍ଧ ଓ ଶାନ୍ତିର ନୀତି ମଧ୍ୟ ନିର୍ଦ୍ଧାରଣ କରିଛି । ଏହା ପ୍ରଳୟ, ପୁନର୍ଜୀବନ ଏବଂ କର୍ମଫଳ ବିଷୟରେ ବର୍ଣ୍ଣନା କରିବା ସହିତ ସ୍ୱର୍ଗ ଓ ନର୍କର ବିସ୍ତୃତ ବିବରଣୀ ଦେଇଛି । ଏହି ଗ୍ରନ୍ଥଟି ମାନବର ସୃଷ୍ଟି ଓ ବିକାଶରୁ ଆରମ୍ଭ କରି ବ୍ରହ୍ମାଣ୍ଡର ଉତ୍ପତ୍ତି, ମହାକାଶରେ ଥିବା କକ୍ଷପଥ ଆଦି ବିଷୟରେ ବର୍ଣ୍ଣନା କରିଛି ଯାହା ବିଶ୍ୱର ବୈଜ୍ଞାନିକମାନଙ୍କୁ ଆଶ୍ଚର୍ଯ୍ୟଚକିତ କରିଛି । ମହାମାନ୍ୟ ମୁହମ୍ମଦ ସଂପୂର୍ଣ୍ଣ ନିରକ୍ଷର ଥିଲେ । ବୈଜ୍ଞାନିକମାନେ ଆଶ୍ଚର୍ଯ୍ୟ ପ୍ରକାଶ କରିଛନ୍ତି ଯେ ଜଣେ ନିରକ୍ଷର ବ୍ୟକ୍ତି ୧୪୦୦ ବର୍ଷ ପୂର୍ବେ କିପରି ଏଭଳି ତଥ୍ୟ ବିଷୟରେ ନିର୍ଭୁଲ ଭାବରେ ଘୋଷଣା କରିପାରିଲେ ଯାହା ସେସମୟରେ ବିଜ୍ଞାନ ଆବିଷ୍କାର କରି ନଥିଲା । ପ୍ରକୃତରେ ଯିଏ ଏହି ଗ୍ରନ୍ଥଟିକୁ ଅଧ୍ୟୟନ କରିବ, ସେ ଭଲ ରୂପେ ହୃଦଙ୍ଗମ କରିପାରିବ ଯେ ଏଭଳି ଗ୍ରନ୍ଥର ରଚନା କୌଣସି ମଣିଷ ପକ୍ଷରେ ସମ୍ଭବ ନୁହେଁ ।

**କୁର୍‌ଆନର ଈଶ୍ୱରତତ୍ତ୍ୱ -** ସମସ୍ତଙ୍କର ମାଲିକ ଜଣେ । ଏହା ଏକ ଚିରନ୍ତନ ସତ୍ୟ ଯାହାର ପ୍ରଚାର ପ୍ରତ୍ୟେକ ଧର୍ମଗ୍ରନ୍ଥ କରିଛି । ବେଦାନ୍ତର ବ୍ରହ୍ମସୂତ୍ର କହିଛି, "ଏକମ୍ ବ୍ରହ୍ମ ଦ୍ୱିତୀୟୋ ନାସ୍ତିଃ" ଅର୍ଥାତ୍ ଈଶ୍ୱର ଏକ ଏବଂ ଅଦ୍ୱିତୀୟ ।

ଉପନିଷଦରେ ଅନେକ ସ୍ଥାନରେ ଈଶ୍ୱରଙ୍କର ଏକତ୍ୱର ଘୋଷଣା କରାଯାଇଛି[୩] ବାଇବଲରେ ମଧ୍ୟ କୁହାଯାଇଛି, "ଆମ ପ୍ରଭୁ, ଆମ ଈଶ୍ୱର ଏକ" ।[୪] କୁର୍‌ଆନ ସେହି ପ୍ରାଚୀନ ଶିକ୍ଷାକୁ ସ୍ମରଣ କରାଇ କହିଛି,"ତୁମମାନଙ୍କର ଈଶ୍ବର, ଜଣେ ଈଶ୍ୱର । ତାଙ୍କ ବ୍ୟତୀତ କେହି ଉପାସନାଯୋଗ୍ୟ ନୁହଁନ୍ତି ।"[୫]

ତୈତ୍ତିରୀୟ ଉପନିଷଦରେ ନିରାକାର ବ୍ରହ୍ମଙ୍କୁ ସୃଷ୍ଟି, ସ୍ଥିତି ଓ ବିଲୟର କାରଣ ବୋଲି କୁହାଯାଇଛି ।[୬] ଅଥର୍ବ ବେଦରେ କୁହାଯାଇଛି ଯେ ଈଶ୍ୱର ସିଏ, ଯିଏ ମୃତ୍ୟୁ ଦିଅନ୍ତି, ପ୍ରାଣସଂଚାର କରନ୍ତି ଏବଂ ଯାହାଙ୍କ କୃପାରୁ ସମସ୍ତ ଜୀବ ଜୀବିତ ରହନ୍ତି ।[୭] କୁରଆନ ମଧ୍ୟ ଅବିକଳ ସମାନ କଥା କହିଛି ଯେ ଅଲ୍ଲାହ୍ ସିଏ, ଯିଏ ତୁମକୁ ସୃଷ୍ଟି କଲେ, ତୁମକୁ ଆହାର ଦେଲେ, ପୁଣି ସେ ତୁମକୁ ମୃତ୍ୟୁ ଦେବେ ଏବଂ ପୁଣି ପୁର୍ନଜୀବିତ କରିବେ ।[୮] ଋଗବେଦ ତାଙ୍କୁ 'ବିଶ୍ୱସ୍ୟ ଭୁବନସ୍ୟ ରାଜାଃ'[୯] କହିଥିବାବେଳେ କୁର୍‌ଆନ ତାଙ୍କୁ 'ସର୍ବଲୋକେଶ୍ୱର' କହିଛି ।[୧୦] ନିରାକାର ବ୍ରହ୍ମଙ୍କୁ ଆରବୀ ଭାଷାରେ 'ଅଲ୍ଲାହ' କୁହାଯାଇଛି । 'ଅଲ୍ଲାହ୍' ଏକ ଅନୁପମ ନାମ । ଏହାର ଏକ ବିଶେଷତ୍ୱ ହେଉଛି ଯେ ଏହାର ଲିଂଗ ବା ବଚନ ପରିବର୍ତ୍ତନ କରାଯାଇ ପାରିବନାହିଁ କିମ୍ୱା ଏହି ଶବ୍ଦ ପୁର୍ବରୁ ବା ପରେ କୌଣସି ଅକ୍ଷର ଯୋଡ଼ି ଏହାକୁ ଅନ୍ୟ କାହାରି ପାଇଁ ବ୍ୟବହାର କରାଯାଇ ପାରିବନାହିଁ ।

---

**(୩)** ଈଶତେ ଦେବ ଏକଃ (ଶ୍ୱେତା ୧.୩), ଏକୋହି ରୁଦ୍ରୋ ନ ଦ୍ୱତୀୟାୟ ତସ୍ଥୁଃ (ଶ୍ୱେତା ୩.୧), ଏକୋ ବଶୀ ନିଷ୍କ୍ରିୟାଣାଂ ବହୂନାମ୍ (ଶ୍ୱେତା ୬.୧୩), ଏକୋ ହଂସୋ ଭୁବନସ୍ୟାସ୍ୟ ମଧ୍ୟେ (ଶ୍ୱେତା ୬.୧୫)

**(୪)** ବାଇବଲ, ମାର୍କ, ୧୨/୨୯, **(୫)** କୁରଆନ ୨/୬୩

(୬) ଯତୋ ବା ଇମାନି ଭୂତାନି ଜାୟନ୍ତେ ଯେନ ଜାତାନି ଜୀବନ୍ତି, ଯତ୍ ପ୍ରୟନ୍ତ୍ୟଭିସଂବିଶନ୍ତି ତଦ୍ ବିଜିଜ୍ଞାସସ୍ୱ ତଦ୍ ବ୍ରହ୍ମେତି । (ଅର୍ଥାତ୍ ସମସ୍ତ ପ୍ରାଣୀଙ୍କ ଜନ୍ମ ଯାହାଙ୍କଠାରୁ, ସବୁ ପ୍ରାଣୀ ଯାହାଙ୍କ ଦ୍ୱାରା ଜୀବନଧାରଣ କରିଥାଆନ୍ତି ଏବଂ ଶେଷରେ ଯାହାଙ୍କଠାରେ ଲୀନ ହୁଅନ୍ତି, ତୁମେ ତାଙ୍କୁ ଭଲରୂପେ ଜାଣିବାକୁ ଇଚ୍ଛା କର, ସେଇ ହେଉଛନ୍ତି 'ବ୍ରହ୍ମ' । (ତୈତ୍ତିରୀୟ ୩/୧)

(୭) ଯୋ ମାରୟତି ପ୍ରାଣୟତି ଯସ୍ମାନ୍ ପ୍ରାଣନ୍ତି ଭୁବନାନି ବିଶ୍ୱାଃ । (ଅଥର୍ବ – ୧୩.୦୩.୦୩)
(୮) କୁରଆନ ୩୦/୪ **(୯)** ରଗ ୬.୩୬.୪ **(୧୦)** କୁରଆନ-୬/୪୨

ବେଦାନ୍ତରେ ଈଶ୍ୱରଙ୍କୁ ଅଜନ୍ମା, ଅରୂପ, ଅଚିନ୍ତ୍ୟ, ଅଦୃଶ୍ୟ ଏବଂ ଅନୁପମ ବୋଲି କୁହାଯାଇଛି । ଶ୍ୱେତାଶ୍ୱତର ଉପନିଷଦରେ ତାଙ୍କୁ ଅଜନ୍ମା ଘୋଷଣା କରି କୁହାଯାଇଛି ଯେ ତାଙ୍କର କେହି ଜନ୍ମଦାତା ବା ପ୍ରଭୁ ନାହାନ୍ତି,[(୧୧)] ତାଙ୍କୁ ଜନ୍ମରହିତ, ନିତ୍ୟ ଓ ପବିତ୍ର ଜାଣିଲେ ସକଳ ପାପରୁ ମୁକ୍ତି ମିଳେ'[(୧୨)] ଏବଂ ସେ ଅବିନାଶୀ । [(୧୩)] ଉପନିଷଦ ଏହା ମଧ୍ୟ କହନ୍ତି ଯେ ଈଶ୍ୱର ଦୃଶ୍ୟମାନ ନୁହନ୍ତି ।[(୧୪)] ଏହାର ସମର୍ଥନ କରି ବାଇବଲ କହିଛି ଯେ ଈଶ୍ୱରଙ୍କୁ କେହି କେବେ ଦେଖିନାହିଁ ।[(୧୫)] କଠ ଉପନିଷଦ ଈଶ୍ୱରଙ୍କୁ ଶରୀରରହିତ[(୧୬)] କହିଥିବା ବେଳେ ଶ୍ୱେତାଶ୍ୱତର ଉପନିଷଦ ତାଙ୍କୁ ଅମୂର୍ତ୍ତ ବା ନିରାକାର ବୋଲି କହିଛି[(୧୭)] ବେଦ ତାଙ୍କୁ ଅନୁପମ[(୧୮)] ବୋଲି କହିଛି ଏବଂ ଉପନିଷଦ କହିଛି ଯେ ତାଙ୍କ ସମ ଏବଂ ତାଙ୍କଠାରୁ ଶ୍ରେଷ୍ଠ କେହି ନାହିଁ [(୧୯)] । ସେହି ପବିତ୍ର ସତ୍ତାଙ୍କୁ କେନ ଉପନିଷଦରେ ଋଷି ଅଚିନ୍ତ୍ୟ ବୋଲି ବର୍ଣ୍ଣନା କରି କହିଛନ୍ତି ଯେ ଯାହାଙ୍କୁ ମନ ଦ୍ୱାରା ଚିନ୍ତା କରି ହୁଏ ନାହିଁ, ମାତ୍ର ଯାହାଙ୍କ ଦ୍ୱାରା ମନ ଚିନ୍ତା କରିବାକୁ ସମର୍ଥ ହୁଏ, କେବଳ ତାଙ୍କୁ ହିଁ 'ବ୍ରହ୍ମ' ବୋଲି ଜାଣ ।[(୨୦)] କୁରଆନ ମଧ୍ୟ ଅଲ୍ଲାହଙ୍କୁ ଅଜନ୍ମା, ଅବିନାଶୀ, ଅଦୃଶ୍ୟ ଓ ଅନୁପମ କହିଛି । ଏଥିରୁ ଜଣାପଡେ ଯେ ପ୍ରାଚୀନ ବୈଦିକ ଯୁଗରେ ଜଣେ ନିରାକାର ଈଶ୍ୱରଙ୍କର ଉପାସନା କରା ଯାଉଥିଲା । 'ବ୍ରହ୍ମ' ଏବଂ 'ଅଲ୍ଲାହ' ଯେ ଭିନ୍ନଭିନ୍ନ ସତ୍ତା ନୁହନ୍ତି, ଏବିଷୟରେ ମୁଁ 'ବେଦ ଓ କୁର୍ଆନର ବ୍ରହ୍ମତତ୍ତ୍ୱ' ପୁସ୍ତକରେ ବିଶଦ ଭାବରେ ଆଲୋଚନା କରିଛି ।

---

(୧୧) ନ ଚାସ୍ୟ କଶ୍ଚିଜ୍ଜନିତା ନ ଚାଧିପଃ (ଶ୍ୱେତା ୬/୯)

(୧୨) ଅଜଂ ଧ୍ରୁବଂ ସର୍ବତତ୍ତ୍ୱୈ ବିଶୁଦ୍ଧଂ, ଜ୍ଞାତ୍ୱା ଦେବଂ ମୁଚ୍ୟତେ ସର୍ବପାପୈଃ (ଶ୍ୱେତା ୨/୧୫)

(୧୩) କ୍ଷରଂ ପ୍ରଧାନମମୃତାକ୍ଷରଂ ହରଃ (ଶ୍ୱେତା ୧/୧୦)

(୧୪) ନ ସଂଦୃଶେ ତିଷ୍ଠତି ରୂପମସ୍ୟ ନଚକ୍ଷୁଷା ପଶ୍ୟତି କଶ୍ଚନୈନମ୍ (ଶ୍ୱେତା/୪/୨୦)

(୧୫) ବାଇବଲ, ଜନ୍ ୧/୧୮

(୧୬) ଅଶରୀରଂ ଶରୀରେଷୁ (କଠ ୨/୨୨) ।

(୧୭) ଦିବ୍ୟୋ ହ୍ୟମୂର୍ତ୍ତଃ ପୁରୁଷଃ (ମୁଣ୍ଡକ ୨/୧/୨), (ଶ୍ୱେତା ୩/୧୦)

(୧୮) ପତିର୍ବଭୂଥାସମୋ ଜନାନମେକୋ ବିଶ୍ୱସ୍ୟ ଭୁବନସ୍ୟ ରାଜା" (ଋଗ ୬/୩୬/୪)

(୧୯) ନ ତତ୍ ସମଶ୍ଚଭ୍ୟଧିକଶ୍ଚ ଦୃଶ୍ୟତେ (ଶ୍ୱେତା ୬/୮)

(୨୦) ଯନ୍ମନସା ନ ମନୁତେ, ଯେନାହୁର୍ମନୋ ମତମ. ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ (କେନ ୧/୫)

ଯଦି ଆମର ମାଲିକ ଜଣେ, ଯଦି ଆମକୁ ଜଣେ ଈଶ୍ୱରଙ୍କ ବ୍ୟତୀତ ଅନ୍ୟ କେହି ସୃଷ୍ଟି କରିନାହିଁ ଏବଂ ଯଦି ଆମେ ତାଙ୍କ ବ୍ୟତୀତ ଅନ୍ୟ କାହାରି କୃପା ବଳରେ ବଂଚିନାହୁଁ, ତେବେ ତାଙ୍କ ବ୍ୟତୀତ ଅନ୍ୟ କେହି ଆମ ପୂଜା-ଉପାସନାର ଯୋଗ୍ୟ ମଧ୍ୟ ନୁହେଁ। ଏହାହିଁ ଧର୍ମର ମୂଳମନ୍ତ୍ର - ଲା ଇଲାହା ଇଲ୍ଲଲ୍ଲାହ୍, ଅର୍ଥାତ୍ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଉପାସନାର ଯୋଗ୍ୟ ନୁହେଁ।

**ଇସ୍‌ଲାମ –** ମଣିଷ ସବୁବେଳେ କାହାରି ନା କାହାରି କଥା ମାନି ଚଳିଥାଏ। କେତେବେଳେ ବାପାମାଆ ତ କେତେବେଳେ ଅନ୍ୟ ପରିଜନଙ୍କ କଥା ମାନେ। କେତେବେଳେ ସାଙ୍ଗସାଥୀ ତା' କର୍ମକୁ ନିୟନ୍ତ୍ରଣ କରନ୍ତି ତ କେତେବେଳେ ବିଭିନ୍ନ ଦାର୍ଶନିକ ବା ଧର୍ମଗୁରୁଙ୍କ କଥା ତାକୁ ପ୍ରଭାବିତ କରେ। ଅଧିକାଂଶ ସମୟରେ ମନ ଯାହା କହେ, ମଣିଷ ତାହାହିଁ କରିଥାଏ। ଧର୍ମ କହେ ଯେ କେବଳ ଈଶ୍ୱରଙ୍କ କଥା ମାନି ଚଳ। ଈଶ୍ୱରଙ୍କଠାରେ ମଣିଷର ଏହି ଆନୁଗତ୍ୟ ବା ସମର୍ପଣକୁ ଆରବୀ ଭାଷାରେ 'ଇସ୍‌ଲାମ' କୁହାଯାଏ। ଈଶ୍ୱର ସୃଷ୍ଟି କଲେ ସମସ୍ତେ ସୃଷ୍ଟି ହୁଅନ୍ତି, ସେ ଜୀବିତ ରଖିଲେ ବଞ୍ଚି ରହନ୍ତି ଏବଂ ବିନାଶ କଲେ ବିନାଶ ହୁଅନ୍ତି। ସେ ହିଁ ମଣିଷର ହର୍ତ୍ତାକର୍ତ୍ତା ଓ ଭାଗ୍ୟବିଧାତା ଏବଂ ସେ ହିଁ ନଶ୍ୱରଜଗତର ଶରଣଯୋଗ୍ୟ। ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହୁଛନ୍ତି, "ହେ ଅର୍ଜୁନ! ତୁମେ ସର୍ବଭାବରେ ଈଶ୍ୱରଙ୍କ ଶରଣ ନିଅ। ତାଙ୍କରି କୃପାରୁ ତୁମେ ପରମ ଶାନ୍ତି ଏବଂ ଶାଶ୍ୱତ ସ୍ଥାନ ପ୍ରାପ୍ତ କରିବ।"(୨୧) ପୁଣି ସେ କହନ୍ତି, "ଯିଏ ବିଷୟ ପ୍ରତି ଆସକ୍ତି ତ୍ୟାଗ କରି ନିଜର ସବୁ କର୍ମ ବ୍ରହ୍ମଙ୍କଠାରେ ଅର୍ପଣ କରେ, ପଦ୍ମପତ୍ରରେ ଜଳ ନଲାଗିଲା ପରି ତାକୁ ପାପ ସ୍ପର୍ଶ କରେନାହିଁ।"(୨୨) ବାଇବଲ ମଧ୍ୟ ଏହାର ସମର୍ଥନ କରି କହିଛି ଯେ ଈଶ୍ୱରଙ୍କଠାରେ ସମର୍ପଣ କର।(୨୩) ସେହିପରି କୁରଆନ କହିଛି, "ଯିଏ ଅଲ୍ଲାହଙ୍କ ପାଖରେ ନିଜକୁ ସମର୍ପଣ କରିଦିଏ ଏବଂ ଭଲ କର୍ମ କରେ, ତା'ର ପୁରସ୍କାର

(୨୧) ତମେବ ଶରଣଂ ଗଚ୍ଛ ସର୍ବଭାବେନ ଭାରତ, ତଦ୍‌ପ୍ରସାଦାତ୍-ପରାଂ ଶାନ୍ତିଂ ସ୍ଥାନଂ ପ୍ରାପ୍ୟସି ଶାଶ୍ୱତମ୍। (ଗୀତା ୫/୧୦)

(୨୨) ବ୍ରହ୍ମଣ୍ୟାଧାୟ କର୍ମାଣି ସଂଗଂ ତ୍ୟକ୍ତ୍ୱା କରୋତି ଯ, ଲିପ୍ୟତେ ନ ସ ପାପେନ ପଦ୍ମପତ୍ରମିବାମ୍ଭସା। (ଗୀତା ୫/୧୦)

(୨୩) ବାଇବଲ, ଜେମସ୍ ୪/୧୭

ଅଲ୍ଲାହଙ୍କ ପାଖରେ ଅଛି । ଏଭଳି ଲୋକଙ୍କ ପାଇଁ କୌଣସି ଭୟ ନାହିଁ ବା ସେମାନେ ଦୁଃଖ ଭୋଗିବେ ନାହିଁ ।[୨୪] ସୁତରାଂ, ଯିଏ ନିଜ ସ୍ରଷ୍ଟାଙ୍କ ପାଖରେ ନିଜକୁ ସମର୍ପଣ କରିଦିଏ ଏବଂ ତାଙ୍କ ଗ୍ରନ୍ଥ ଓ ତାଙ୍କ ବାର୍ତ୍ତାବହଙ୍କୁ ମାନି ଚଳେ, ସେ ଈଶ୍ୱରଙ୍କର ଜଣେ ଆଜ୍ଞାବହ ସେବକ ଯାହାକୁ ଆରବୀ ଭାଷାରେ 'ମୁସଲିମ୍' କୁହାଯାଏ । ପୂର୍ବ ଯୁଗର ଯେଉଁ ଭକ୍ତମାନେ ଈଶ୍ୱରଙ୍କ ନିକଟରେ ନିଜକୁ ସମର୍ପିତ କରି ଦେଇଥିଲେ ଏବଂ ନିଜ ସମୟର ଈଶ୍ୱରଦୂତଙ୍କୁ ମାନି ନେଇଥିଲେ, ସେମାନେ ମଧ୍ୟ ମୁସଲିମ୍ ଥିଲେ ବୋଲି କୁରଆନ କହିଛି ।[୨୫]

**କୁର୍ଆନର ମାନବିକ ମୂଲ୍ୟବୋଧ** – ଯେମିତି ଜୀବର ଜୀବତ୍ୱ ଥାଏ ବା ଜଡ଼ର ଜଡ଼ତ୍ୱ ଥାଏ, ସେହିପରି ମଣିଷର ମଣିଷତ୍ୱ ଥାଏ । ଏହି ମଣିଷତ୍ୱ ହେଉଛି ପ୍ରତ୍ୟେକ ମଣିଷର ପ୍ରାକୃତିକ ବା ସ୍ୱଭାବଗତ ଧର୍ମ । ତେଣୁ, ପ୍ରତ୍ୟେକ ମଣିଷର ଅନ୍ତର ସତ୍ୟ, ନ୍ୟାୟ, ଦୟା, କ୍ଷମା, ପରୋପକାର ଆଦି ସଦ୍‌ଗୁଣଗୁଡ଼ିକୁ ଧର୍ମ ବୋଲି ଜାଣେ ଏବଂ ମିଥ୍ୟା, କପଟ, ଗର୍ବ, ଅହଂକାର, ହତ୍ୟା, ଶୋଷଣ, ଦୁର୍ନୀତି ଏବଂ ଅନ୍ୟାୟ-ଅତ୍ୟାଚାର ଆଦି ଦୁର୍ଗୁଣଗୁଡ଼ିକୁ ଅଧର୍ମ ମନେ କରିଥାଏ । ଏହି କାରଣରୁ କୁରଆନ କହିଛି –

> ସେ ତା' ଅନ୍ତରାତ୍ମାକୁ ଭଲ ଓ ମନ୍ଦ ବିଷୟରେ ଜଣାଇ ଦେଇଛନ୍ତି ।
>
> (କୁରଆନ ୯୧/୮)

କୁରଆନ ମଣିଷକୁ ସ୍ୱଭାବଗତ ଧର୍ମ ପାଳନ କରିବାର ଉପଦେଶ ଦେଇ କହିଛି –

> ତେଣୁ, ଏକନିଷ୍ଠ ହୋଇ ଏହି ଏକେଶ୍ୱରବାଦୀ ଧର୍ମ ପାଳନ କର । ଅଲ୍ଲାହଙ୍କ ପ୍ରଦତ୍ତ ସେହି (ଜନ୍ମଗତ) ସ୍ୱଭାବର ଅନୁକରଣ କର, ଯେଉଁ ସ୍ୱଭାବ ଦେଇ ସେ ମନୁଷ୍ୟମାନଙ୍କୁ ଗଢ଼ିଛନ୍ତି । ଅଲ୍ଲାହଙ୍କ ସର୍ଜନାରେ ପରିବର୍ତ୍ତନ ହୁଏ ନାହିଁ । ଏହା ଚିରପ୍ରତିଷ୍ଠିତ ଧର୍ମ କିନ୍ତୁ ଅଧିକାଂଶ ଲୋକ ଏକଥା ଜାଣନ୍ତିନାହିଁ । (କୁରଆନ ୩୦/୩୦)

ମଣିଷର ଏହି ପ୍ରାକୃତିକ ସ୍ୱଭାବ ହିଁ ଇସଲାମରେ ଥିବା ଆଚରଣବିଧିର ଆଧାର । ତେଣୁ, ଈଶ୍ୱରଙ୍କ ଧର୍ମରେ କୌଣସି ପ୍ରକାରର ଅନ୍ୟାୟ-ଅତ୍ୟାଚାରର ଶିକ୍ଷା ସ୍ଥାନ

---

(୨୪) କୁରଆନ ୨/୧୧୨ (୨୫) କୁରଆନ ୨୨/୭୮

ପାଇବା ଆଦୌ ସମ୍ଭବ ନୁହେଁ । ଧର୍ମ ସଦା ପବିତ୍ର ଏବଂ ଚିରଶାଶ୍ୱତ । ଏହା କେବଳ ପୂଜାଅର୍ଚ୍ଚନା ବା କର୍ମକାଣ୍ଡର ନାଁ ନୁହେଁ । ଏହା ଏକ ଜୀବନଶୈଳୀ । ଯଦି ମଣିଷର ବ୍ୟବହାର ଓ ଆଚାର-ବିଚାର ଭଲ ନୁହେଁ, ତେବେ ସେ କଦାପି ଧାର୍ମିକ ହୋଇ ନପାରେ । କୁର୍‌ଆନ ଏସଂପର୍କରେ ଉପଦେଶ ଦେଇ କହିଛି -

> ଅଲ୍ଲାହଙ୍କର ଉପାସନା କର ଏବଂ ତାଙ୍କ ଈଶ୍ୱରତ୍ୱରେ ଅନ୍ୟ କାହାରିକୁ ଅଂଶୀଦାର କରନାହିଁ । ବାପାମାଆ, ଆତ୍ମୀୟସ୍ୱଜନ, ଅନାଥ, ଦରିଦ୍ର, ସଂପର୍କୀୟ ପଡ଼ୋଶୀ ଓ ଅପରିଚିତ ପଡ଼ୋଶୀ, ତୁମମାନଙ୍କ ସହିତ ବସାଉଠା କରୁଥିବା ବ୍ୟକ୍ତି, ପଥିକ ଏବଂ ଦାସଦାସୀମାନଙ୍କ ସହିତ ଭଲ ବ୍ୟବହାର କର ଏବଂ (ଜାଣିରଖ) ଅଲ୍ଲାହ୍ କୌଣସି ଆତ୍ମାଭିମାନୀ ଓ ଅହଂକାରୀ ବ୍ୟକ୍ତିକୁ ଆଦୌ ଭଲ ପାଆନ୍ତିନାହିଁ ।  (କୁରଆନ ୪/୩୬)

ଖରାପ ବ୍ୟବହାରର ଉତ୍ତର ଭଲ ବ୍ୟବହାର ଦ୍ୱାରା ଦିଅ ବୋଲି ଉପଦେଶ ଦେଇ କୁରଆନ କହିଛି –

> ଭଲ କର୍ମ ଓ ମନ୍ଦ କର୍ମ ସମାନ ନୁହେଁ । ଖରାପ ବ୍ୟବହାରର ଉତ୍ତର ଭଲ ବ୍ୟବହାର ଦ୍ୱାରା ଦିଅ । ପୁଣି ତୁମେ ଦେଖିବ, ଯାହା ସହିତ ତୁମର ଶତ୍ରୁତା ଥିଲା ସେ ତୁମର ଅନ୍ତରଂଗ ବନ୍ଧୁ ପାଲଟିଯିବ ।
> (କୁରଆନ ୪୧/୩୪)

ଅନ୍ୟର ଦୁର୍ବ୍ୟବହାର ସହିଯିବା ଏବଂ ଦୋଷ କ୍ଷମା କରିଦେବା ମହାନ ପୁଣ୍ୟ କାର୍ଯ୍ୟ । କୁରଆନ ଏଗୁଡ଼ିକୁ ଅତ୍ୟନ୍ତ ସାହସିକ କାର୍ଯ୍ୟ ବୋଲି ବର୍ଣ୍ଣନା କରି କହିଛି-

> ଯିଏ ସହିଯାଏ ଏବଂ କ୍ଷମା କରିଦିଏ, ତେବେ (ସେ ଜାଣିରଖୁ ଯେ) ଏଗୁଡ଼ିକ ଅତି ସାହସିକ କାର୍ଯ୍ୟ ।  (କୁରଆନ ୪୨/୪୩)

ଶତ୍ରୁ ପ୍ରତି ମଧ୍ୟ ଅନ୍ୟାୟ କରିବା ଉଚିତ ନୁହେଁ  ବୋଲି ଏହି ଗ୍ରନ୍ଥ ଉପଦେଶ ଦେଇ କହିଛି –

> ହେ ସଦ୍‌ବିଶ୍ୱାସୀଗଣ ! ଅଲ୍ଲାହ୍‌ଙ୍କ ପାଇଁ ସତ୍ୟରେ ଅଟଳ ରହି ନ୍ୟାୟପୂର୍ବକ ସାକ୍ଷ୍ୟ ଦିଅ ଏବଂ କୌଣସି ସଂପ୍ରଦାୟର ଶତ୍ରୁତା

> ତୁମମାନଙ୍କୁ ନ୍ୟାୟର ପନ୍ଥା ଛାଡ଼ିଦେବା ପାଇଁ ଉତ୍ତେଜିତ ନକରୁ । ସର୍ବଦା ନ୍ୟାୟ କର । ଏହା ଧର୍ମପରାୟଣତା । ଅଲ୍ଲାହ୍‌ଙ୍କୁ ଭୟ କରୁଥାଅ । ଯାହା ତୁମେମାନେ କର, ଅଲ୍ଲାହ୍ ଅବଶ୍ୟ ଜାଣନ୍ତି ।
>
> (କୁରଆନ ୫/୮)

ପିତାମାତଙ୍କର ସେବା କରିବା, ଆତ୍ମୀୟସ୍ୱଜନଙ୍କ ସହିତ ଭଲରୂପେ ନିର୍ବାହ କରିବା ଏବଂ ଦୀନଦୁଃଖୀଙ୍କର ଦୁଃଖକଷ୍ଟ ଲାଘବ କରିବା ମହାତ୍ମାମାନଙ୍କର ସ୍ୱଭାବ । କୁରଆନ କହେ ଯେ ଈଶ୍ୱର ଯାହାକିଛି ମଣିଷକୁ ଦେଇଛନ୍ତି ସେଥିରୁ ସେ ସାଧ୍ୟମତେ ସମସ୍ତଙ୍କୁ ସାହାଯ୍ୟ କରୁ –

> (ହେ ବାର୍ତ୍ତାବହ!) ଲୋକମାନେ ତୁମକୁ ପଚାରୁଛନ୍ତି ଯେ ସେମାନେ (ଅଲ୍ଲାହଙ୍କ ମାର୍ଗରେ) କ'ଣ ଖର୍ଚ୍ଚ କରିବେ । ସେମାନଙ୍କୁ କୁହ "ଯାହା ଧନ ତୁମେମାନେ ଖର୍ଚ୍ଚ କରିବ, ତାହାକୁ ତୁମ ପିତାମାତା, ଆତ୍ମୀୟ-ସ୍ୱଜନ, ଅନାଥ, ଦୀନଦରିଦ୍ର ଏବଂ (ଅସହାୟ) ପଥିକମାନଙ୍କ ପାଇଁ ଖର୍ଚ୍ଚ କର । ଯାହା ପୁଣ୍ୟ ତୁମେମାନେ କରିବ, ଅଲ୍ଲାହ୍ ନିଶ୍ଚୟ ଜାଣିବେ ।" (କୁରଆନ ୨/୨୧୫)

ପରୋପକାରୀ ବ୍ୟକ୍ତିମାନେ ଈଶ୍ୱରଙ୍କର ଅତି ପ୍ରିୟ ଭକ୍ତ ବୋଲି ବର୍ଣ୍ଣନା କରି କୁରଆନ କହିଛି –

> ପରୋପକାର କର । ଅଲ୍ଲାହ୍ ପରୋପକାରୀମାନଙ୍କୁ ପ୍ରେମ କରନ୍ତି ।
>
> (କୁର୍‌ଆନ ୨/୧୯୫)

ଏହି ପବିତ୍ର ଗ୍ରନ୍ଥରେ ଏଭଳି ଗୋଟିଏ ହେଲେ ଶିକ୍ଷା ନାହିଁ ଯାହା ସମାଜ ପାଇଁ କ୍ଷତିକାରକ ହୋଇପାରେ । ମାନବାଧିକାର ସୁରକ୍ଷା ପାଇଁ ଅନ୍ୟର ଧନ-ଜୀବନ, ମାନ-ସମ୍ମାନ ବା ଚରିତ୍ରର କ୍ଷତି କରୁଥିବା ପ୍ରତ୍ୟେକ ଆଚରଣକୁ କୁରଆନ ନିଷିଦ୍ଧ କରିଛି । ମାନବଜୀବନ କିପରି ଅମୂଲ୍ୟ ଏହା ବର୍ଣ୍ଣନା କରି କୁରଆନ କହିଛି –

> ଯଦି କେହି ଏଭଳି କୌଣସି ବ୍ୟକ୍ତିକୁ ହତ୍ୟା କରେ ଯିଏ ନରହତ୍ୟା କରିନାହିଁ ବା ଧରାପୃଷ୍ଠରେ ଅଶାନ୍ତି ସୃଷ୍ଟି କରିନାହିଁ, ତେବେ ସେ ସମଗ୍ର

> ମାନବଜାତିକୁ ହତ୍ୟା କଲା ଏବଂ ଯିଏ ଜଣେ ବ୍ୟକ୍ତିର ପ୍ରାଣ ରକ୍ଷାକଲା, ସେ ସମଗ୍ର ମାନବଜାତିକୁ ରକ୍ଷା କଲା । (କୁର୍‌ଆନ ୫/୩୨)

କେବଳ ନରହତ୍ୟା ଏବଂ ସମାଜରେ ଅଶାନ୍ତି ଓ ଅସ୍ଥିରତା ସୃଷ୍ଟି କରିବାର ଅପରାଧ ପାଇଁ କୌଣସି ବ୍ୟକ୍ତିକୁ ପ୍ରାଣଦଣ୍ଡ ଦିଆ ଯାଇପାରେ । ଏହି ଦୁଇଟି କାରଣକୁ ଛାଡ଼ିଦେଲେ କାହାରି ପ୍ରାଣ ନେବା ମହାପାପ । ସବୁ ପ୍ରକାରର ଅନ୍ୟାୟ ଓ ଅତ୍ୟାଚାରକୁ ନିଷିଦ୍ଧ ଘୋଷଣା କରି କୁରଆନ କହିଛି –

> ଅଲ୍ଲାହ୍ ତୁମମାନଙ୍କୁ ନ୍ୟାୟ ବିଚାର କରିବା, ପରୋପକାର କରିବା ଏବଂ ନିକଟ ସଂପର୍କୀୟମାନଙ୍କୁ (ସେମାନଙ୍କର ପ୍ରାପ୍ୟ) ଦେବାର ଆଦେଶ ଦେଉଛନ୍ତି ଏବଂ ଅଶ୍ଳୀଳତା, ଅପକର୍ମ ତଥା ଅନ୍ୟାୟ-ଅତ୍ୟାଚାର କରିବାକୁ ମନା କରୁଛନ୍ତି । ସେ ତୁମମାନଙ୍କୁ ଏହି ଉପଦେଶ ଦେଉଛନ୍ତି ଯେପରିକି ତୁମେମାନେ ମନେରଖିବ ।
> (କୁରଆନ ୧୬/୯୦)

ମଣିଷତ୍ୱ ସମସ୍ତଙ୍କର ଅଛି ଏବଂ ମାନବିକତା କ'ଣ ଏହା ସମସ୍ତେ ଜାଣନ୍ତି । କିନ୍ତୁ ଏହା ଜାଣିଥିଲେ ସୁଦ୍ଧା ଭଲ ମଣିଷଟିଏ ହେବା ଏତେ ସହଜ ନୁହେଁ, କାରଣ ଇନ୍ଦ୍ରିୟଗୁଡ଼ିକ ମଣିଷକୁ ପାପ ଆଡ଼କୁ ଟାଣନ୍ତି ଏବଂ ଇନ୍ଦ୍ରିୟାଧୀନ ହୋଇ ମଣିଷ ପାପ କରିଥାଏ । ଇନ୍ଦ୍ରିଗୁଡିକୁ ନିୟନ୍ତ୍ରଣ ନକରିପାରିଲେ ମଣିଷ ଭଲ କର୍ମ କରିପାରିବ ନାହିଁ । କୁରଆନ କହେ ଯେ ଇନ୍ଦ୍ରିୟ ଦମନ କରୁଥିବା ବ୍ୟକ୍ତିମାନେ ବୈକୁଣ୍ଠ ଲାଭ କରିବେ–

> ଯିଏ ନିଜ ଈଶ୍ୱରଙ୍କ ସମ୍ମୁଖରେ ଉପସ୍ଥିତ ହେବ ବୋଲି ଭୟ କରିଥିବ ଏବଂ ଇନ୍ଦ୍ରିୟ ଦମନ କରିଥିବ, ବୈକୁଣ୍ଠ ଅବଶ୍ୟ ତା'ର ନିବାସ ହେବ । (କୁରଆନ ୭୯/୪୦-୪୧)

ମାତ୍ର ଇନ୍ଦ୍ରିୟଗୁଡ଼ିକୁ ଦମନ କରିବା ମଣିଷ ପକ୍ଷରେ ଅତ୍ୟନ୍ତ କଷ୍ଟକର କାର୍ଯ୍ୟ । ଏଥିପାଇଁ ଯେଉଁ ଶକ୍ତି ଦରକାର, ତାହା ପ୍ରଭୁଙ୍କ ଭକ୍ତି ଓ ଉପାସନା ଦ୍ୱାରା ମିଳିଥାଏ । ତେଣୁ ପ୍ରତ୍ୟେକ ଦିବ୍ୟଗ୍ରନ୍ଥ ପରି କୁରଆନରେ ମଧ୍ୟ ଦୈନିକ ନମାଜ, ଗ୍ରନ୍ଥପାଠ, ନାମଜପ, ସ୍ମରଣଚିନ୍ତନ ଏବଂ ଉପବାସ ଆଦି ଉପାସନାର ଆଦେଶ ଦିଆଯାଇଛି । ଉପାସନା କଲେ ଈଶ୍ୱର ପ୍ରସନ୍ନ ହୁଅନ୍ତି ଏବଂ ଭକ୍ତକୁ ତାଙ୍କର ସାନ୍ନିଧ୍ୟ ମିଳିଥାଏ ।

ବିଭିନ୍ନ ଉପାସନା ମଣିଷ ମଧ୍ୟରେ ଇନ୍ଦ୍ରିୟ ଦମନ କରିବାର ଶକ୍ତି ଉତ୍ପନ୍ନ କରେ ଏବଂ ଅଲ୍ଲାହଙ୍କ କୃପାରୁ ମଣିଷ ପାଇଁ କୁକର୍ମଗୁଡ଼ିକୁ ଛାଡ଼ିଦେବା ସହଜ ହୋଇଯାଏ । କୁର୍‌ଆନ କହେ ଯେ ଈଶ୍ୱରଙ୍କର ଉପାସନା ମଣିଷକୁ ସଦାଚାରୀ କରେ -

> ହେ ମନୁଷ୍ୟଗଣ ! ନିଜ ଈଶ୍ୱରଙ୍କର ସେବା-ଉପାସନା କର ଯିଏ ତୁମମାନଙ୍କୁ ସୃଷ୍ଟି କଲେ ଏବଂ ତୁମ ପୂର୍ବଜମାନଙ୍କୁ ମଧ୍ୟ, ଯାହାଫଳରେ ତୁମେମାନେ ସଦାଚରୀ ହେବ । (କୁରଆନ ୨/୨୧)

ଯିଏ ଏହା ଜାଣେ ଯେ ମୃତ୍ୟୁ ପରେ ସେ ପୁନର୍ଜୀବିତ ହେବ ଏବଂ ତାକୁ ନିଜ ପ୍ରଭୁଙ୍କୁ ପ୍ରତ୍ୟେକ କର୍ମର ହିସାବ ଦେବାକୁ ହେବ, ସେ ଏକାନ୍ତରେ ମଧ୍ୟ ପାପ କରେନାହିଁ ମାତ୍ର ଯାହାକୁ ଈଶ୍ୱରଙ୍କର ଭୟ ନାହିଁ, ପୃଥିବୀର କୌଣସି ଶକ୍ତି ତାକୁ କୁକର୍ମ କରିବାରୁ ରୋକି ପାରିବନାହିଁ ।

**କୁରଆନର ଯୁଦ୍ଧନୀତି -** ମାନବାଧିକାରର ସୁରକ୍ଷା ଧର୍ମର ଏକ ବଡ଼ ସିଦ୍ଧାନ୍ତ । ଧର୍ମଗ୍ରନ୍ଥଗୁଡ଼ିକ କେବଳ ନୀତିଶିକ୍ଷା ଦିଅନ୍ତିନାହିଁ ବରଂ ମାନବାଧିକାରଗୁଡ଼ିକର ସୁରକ୍ଷା ପାଇଁ ନୀତିନିୟମ ମଧ୍ୟ ଦେଇଥାଆନ୍ତି । ଯେପର୍ଯ୍ୟନ୍ତ ସମାଜର ପ୍ରତ୍ୟେକ ବ୍ୟକ୍ତିର ମୌଳିକ ଅଧିକାରଗୁଡ଼ିକର ସୁରକ୍ଷା ନିଶ୍ଚିତ କରା ନଯାଇଛି ଏବଂ ପ୍ରଜାଙ୍କୁ ନ୍ୟାୟ ନମିଳିଛି, ସେପର୍ଯ୍ୟନ୍ତ କୌଣସି ସମାଜରେ ଶାନ୍ତି ସ୍ଥାପିତ ହେବା ସମ୍ଭବ ନୁହେଁ । ସମାଜରେ ହତ୍ୟା, ଲୁଣ୍ଠନ, ଶୋଷଣ, ଧର୍ଷଣ ଏବଂ ଅନ୍ୟାୟ ଅତ୍ୟାଚାର ଉପରେ ଅଙ୍କୁଶ ନଥିଲେ ଲୋକମାନେ ଦୁଃଖକଷ୍ଟ ଭୋଗିବେ ଏବଂ ସମାଜର ଶାନ୍ତି ବ୍ୟାହତ ହେବ । ତେଣୁ, ଈଶ୍ୱରଙ୍କ ଧର୍ମ ମଣିଷକୁ ତା' ଇଚ୍ଛା ଅନୁଯାୟୀ ଭକ୍ତି ଓ ଉପାସନା କରିବାର ଅଧିକାର ତ ଦେଇଛି କିନ୍ତୁ ମାନବାଧିକାର ଉଲ୍ଲଂଘନ କରିବାର ବା ସମାଜର କୌଣସି ଅନିଷ୍ଟ କରିବାର ଅଧିକାର ଦେଇନାହିଁ । ପୂଜା-ଉପାସନା ବ୍ୟକ୍ତିର ଧର୍ମଗତ ଅଧିକାର । ଏଥିପାଇଁ ତାକୁ ବାଧ୍ୟ କରାଯିବ ନାହିଁ କିନ୍ତୁ ସମାଜର କୌଣସି ଅନିଷ୍ଟ କଲେ ତାକୁ ନିୟନ୍ତ୍ରଣ କରିବା ପାଇଁ ଶକ୍ତିପ୍ରୟୋଗ କରାଯିବ । ତେଣୁ ଧର୍ତ୍ତବ୍ୟ ଅପରାଧଗୁଡିକର ନିରାକରଣ ପାଇଁ ଧର୍ମଗ୍ରନ୍ଥଗୁଡ଼ିକରେ ନୀତିନିୟମ ଦିଆଯାଇଛି ଏବଂ ବିଭିନ୍ନ ପ୍ରକାରର ଦଣ୍ଡବ୍ୟବସ୍ଥା ମଧ୍ୟ କରାଯାଇଛି । ଉଦାହରଣ ସ୍ୱରୂପ ବ୍ୟଭିଚାରର ନିରାକରଣ ପାଇଁ ଇସଲାମରେ ବ୍ୟଭିଚାର କରିଥିବା ବିବାହିତ ବ୍ୟକ୍ତିକୁ

ପଥର ମାରି ହତ୍ୟା କରିବାର ଆଦେଶ ଦିଆଯାଇଛି ।[୨୬] ତା'ପୂର୍ବରୁ ବାଇବଲ ଓ ମନୁସଂହିତାରେ ମଧ୍ୟ ଅବିକଳ ସମାନ ଦଣ୍ଡ ବ୍ୟବସ୍ଥା ଥିଲା । ବାଇବଲ କହେ ଯେ ଅପରାଧୀକୁ ସର୍ବସାଧାରଣଙ୍କ ସାମନାରେ ପଥର ମାରି ହତ୍ୟା କରାଯାଉ[୨୭] ଏବଂ ମନୁସଂହିତାରେ କୁହାଯାଇଛି ଯେ ବ୍ୟଭିଚାରୀକୁ ତପ୍ତ ଲୌହଶଯ୍ୟାରେ ଶୁଆଇ ଦାହ କରାଯାଉ ।[୨୮]

ଅନେକ ସମୟରେ ପ୍ରଜାଙ୍କର ଅଧିକାରଗୁଡ଼ିକର ସୁରକ୍ଷା ପାଇଁ ଶାସକମାନଙ୍କୁ ଶତ୍ରୁ ସହିତ ଯୁଦ୍ଧ କରିବାର ଆବଶ୍ୟକତା ପଡ଼ିଥାଏ । ଏଥିପାଇଁ ମଧ୍ୟ ଧର୍ମଗ୍ରନ୍ଥଗୁଡ଼ିକ ମାର୍ଗଦର୍ଶନ କରିଥାଆନ୍ତି ଏବଂ ଯୁଦ୍ଧର ନୀତିନିୟମ ଦେଇଥାଆନ୍ତି । ବିଶ୍ୱର ପ୍ରସିଦ୍ଧ ଗ୍ରନ୍ଥ ବେଦ, ବାଇବଲ, ଗୀତା ଏବଂ ମହାଭାରତର ଅନେକ ସ୍ଥାନରେ ଯୁଦ୍ଧନୀତି ବିଷୟରେ ବର୍ଣ୍ଣନା କରାଯାଇଛି । 'ଜିହାଦ ଓ ଆତଙ୍କବାଦ' ପୁସ୍ତକରେ ମୁଁ ଏବିଷୟରେ କେତେକ ଉଦାହରଣ ଦେଇଛି । ବିଶ୍ୱରେ ଅନେକ ଈଶ୍ୱରଦୂତ ଏବଂ ଧର୍ମପ୍ରାଣ ରାଜପୁରୁଷ ଅନ୍ୟାୟ-ଅତ୍ୟାଚାର ବିରୋଧରେ ଅସ୍ତ୍ରଧାରଣ କରିଥିବାର ଦୃଷ୍ଟାନ୍ତ ଆମକୁ ଇତିହାସ ପୃଷ୍ଠାରେ ମିଳିଯିବ । କୁରଆନରେ ମଧ୍ୟ ସେହି କାରଣରୁ ଈଶ୍ୱରଙ୍କ ମାର୍ଗରେ ଯୁଦ୍ଧ କରିବାକୁ କୁହାଯାଇଛି । ଇସଲାମର ଯୁଦ୍ଧନୀତି ଅନୁଯାୟୀ ଯୁଦ୍ଧ କେବଳ ଈଶ୍ୱରଙ୍କ ପ୍ରସନ୍ନତା ପାଇଁ ହେବ, ଏହା ଅନ୍ତିମ ବିକଳ୍ପ ହେବ, ପ୍ରଥମେ ସନ୍ଧି ସ୍ଥାପନ କରିବା ପାଇଁ ଉଦ୍ୟମ କରାଯିବ, ଯୁଦ୍ଧରେ କୌଣସି ଅନୈତିକ ଉପାୟ ଅବଲମ୍ବନ କରାଯିବ ନାହିଁ, ଅନାବଶ୍ୟକୀୟ ରକ୍ତପାତ ହେବନାହିଁ, ସାଧାରଣ ନାଗରିକଙ୍କୁ ହତ୍ୟା କରାଯିବ ନାହିଁ, ବୃଦ୍ଧ, ଶିଶୁ, ମହିଳା ଓ ସାଧୁସନ୍ଥଙ୍କ ଉପରେ ଆକ୍ରମଣ ହେବନାହିଁ, ଗଛପତ୍ର ବା ପଶୁସମ୍ପଦ ନଷ୍ଟ କରାଯିବ ନାହିଁ, କାହାରି ଉପାସନାପୀଠ ଧ୍ୱଂସ କରାଯିବ ନାହିଁ, ଶତ୍ରୁ ଆତ୍ମସମର୍ପଣ କଲେ ଯୁଦ୍ଧ ସମାପ୍ତ କରି ଦିଆଯିବ ଏବଂ ଯୁଦ୍ଧବନ୍ଦୀମାନଙ୍କୁ ନିର୍ଯାତନା ଦିଆଯିବ ନାହିଁ । ସୁତରାଂ, ଯେଉଁ ଯୁଦ୍ଧ ଈଶ୍ୱରଙ୍କ ଧର୍ମବିଧାନ ଅନୁଯାୟୀ ହୁଏ, କେବଳ ତାହାକୁ ହିଁ 'ଧର୍ମଯୁଦ୍ଧ' ବା 'ଜିହାଦ୍' କୁହାଯିବ । ପ୍ରଜାଙ୍କ କଲ୍ୟାଣ ପାଇଁ ଯୁଦ୍ଧ କରିବା ହେଉଛି ରାଜଧର୍ମ ଏବଂ

---

**(୨୬)** ସହୀ ବୁଖାରୀ, ୪ର୍ଥ ଖଣ୍ଡ, ବାଣୀ ୮୨୯,

**(୨୭)** ବାଇବଲ, ଦ୍ୱିତୀୟ ବିବରଣ ୨୨/୨୦-୨୨

**(୨୮)** ମନୁ ସଂହିତା ୮/୩୭୨

ଏହାର ନିଷ୍ପତ୍ତି କେବଳ ଈଶ୍ୱରଙ୍କର ପ୍ରତିନିଧି ବା ରାଜ୍ୟର ଶାସକ ହିଁ ନେଇଥାଆନ୍ତି । ଏହା କୌଣସି ନାଗରିକର ବ୍ୟକ୍ତିଗତ ଅଧିକାର ନୁହେଁ ।

ଇସଲାମ ବିରୋଧରେ ପ୍ରଚାର କରାଗଲା ଯେ ଇସଲାମ ତରବାରୀ ମୁନରେ ଧର୍ମାନ୍ତରିକରଣ କରିଛି । ଏହା କେତେକ ଅସହିଷ୍ଣୁ ପାଶ୍ଚାତ୍ୟ ଲେଖକଙ୍କର ମିଥ୍ୟା ଅପପ୍ରଚାର । ଈଶ୍ୱରଦୂତ ମହାମାନ୍ୟ ମୁହମ୍ମଦ ତାଙ୍କ ଜୀବନକାଳରେ କାହାରିକୁ ଧର୍ମ ପରିବର୍ତ୍ତନ କରିବା ପାଇଁ ବାଧ୍ୟ କରିନାହାନ୍ତି କିମ୍ବା ଏହାର ଶିକ୍ଷା ଦେଇନାହାନ୍ତି । ଧର୍ମରେ ବଳ ପ୍ରୟୋଗ ନିଷିଦ୍ଧ । କୁରଆନ ଘୋଷଣା କରିଛି –

> ଧର୍ମ ବିଷୟରେ କୌଣସି ବାଧ୍ୟବାଧକତା ନାହିଁ । ସତ୍‌ମାର୍ଗକୁ ଅସତ୍ ମାର୍ଗଠାରୁ ସଂପୂର୍ଣ୍ଣ ପୃଥକ କରି ଦିଆଯାଇଛି । (କୁରଆନ ୨/୨୫୬)

ଈଶ୍ୱର ଇଚ୍ଛା କରିଥିଲେ ସୂର୍ଯ୍ୟ, ଚନ୍ଦ୍ର, ଜଳ, ବାୟୁ ଆଦି ସଂସାରର ଅନ୍ୟ ସୃଷ୍ଟିମାନଙ୍କ ପରି ମଣିଷ ମଧ୍ୟ ତାଙ୍କର ଅବାଧ୍ୟ ହୋଇ ପାରି ନଥାଆନ୍ତା, ମାତ୍ର ମଣିଷର ବୁଦ୍ଧି ଓ ବିଚାରଶକ୍ତିର ପରୀକ୍ଷା ନେବା ପାଇଁ ସେ ତାକୁ ଧର୍ମଗତ ସ୍ୱାଧୀନତା ଦେଇଛନ୍ତି । ଆସ୍ଥା ବିଷୟରେ ବାଧ୍ୟ କଲେ ଏହି ପରୀକ୍ଷା ହୋଇପାରିବ ନାହିଁ । ଈଶ୍ୱର କେବଳ ସତ୍‌ପଥ ଦେଖାଇ ଦିଅନ୍ତି । ଯଦି କେହି ସତ୍‌ପଥରେ ଚାଲିବାର ସଂକଳ୍ପ କରେ, ସେ ତାକୁ ବାଧ୍ୟ କରି ଅସତ୍ ପଥରେ ନିଅନ୍ତିନାହିଁ ଏବଂ ଯଦି ସେ ଅସତ୍ ପନ୍ଥା ଅବଲମ୍ବନ କରେ, ଈଶ୍ୱର ବାଧ୍ୟ କରି ତାକୁ ସତ୍‌ପଥକୁ ଆଣନ୍ତିନାହିଁ ।

କିଛି ଲୋକ କୁରଆନର କେତେକ ବାଣୀକୁ ସେଗୁଡ଼ିକର ପ୍ରସଂଗ ଓ ପୃଷ୍ଠଭୂମିରୁ ଅଲଗା କରି ସମାଜରେ ଘୃଣା ଓ ବିଦ୍ୱେଷ ସୃଷ୍ଟି କରିବା ପାଇଁ ବ୍ୟବହାର କରୁଥିବାର ଦେଖାଯାଏ । ସେମାନେ କେତେକ ଯୁଦ୍ଧକାଳୀନ ଆଦେଶକୁ ଉଦ୍ଧାର କରି କହନ୍ତି ଯେ ଦେଖ, କୁରଆନ କେମିତି ଅଣମୁସଲିମ୍‌ମାନଙ୍କୁ ହତ୍ୟା କରିବାର ଆଦେଶ ଦେଇଛି । ଏଭଳି ଆଦେଶଗୁଡ଼ିକ ନୀତିବାଣୀ ନୁହେଁ ବରଂ ଯୁଦ୍ଧକାଳୀନ ଆଦେଶ ଥିଲା ଏବଂ କେବଳ ସେହି ଶତ୍ରୁମାନଙ୍କ ବିଷୟରେ ଦିଆ ଯାଇଥିଲା, ଯେଉଁମାନେ ମୁସଲମାନମାନଙ୍କ ଉପରେ ଅତ୍ୟାଚାର କରୁଥିଲେ ଏବଂ ସେମାନଙ୍କୁ

ନିଶ୍ଚିହ୍ନ କରି ଦେବାକୁ ପ୍ରାଣମୂର୍ଚ୍ଛା ଉଦ୍ୟମ କରୁଥିଲେ। ଯଦି କେହି ଗୀତାକୁ ଭଲରୂପେ ଅଧ୍ୟୟନ ନକରି ସେଥିରୁ ମନଇଚ୍ଛା ଶ୍ଳୋକଟିଏ ଉଦ୍ଧାର କରି କହେ ଯେ ଦେଖ ଗୀତାରେ କିଭଳି ପ୍ରିୟଜନମାନଙ୍କୁ ହତ୍ୟା କରିବାର ଶିକ୍ଷା ଦିଆଯାଇଛି, ତେବେ ଏଭଳି ବ୍ୟକ୍ତିକୁ ଜ୍ଞାନୀ କୁହାଯାଇ ନପାରେ।

**କୁର୍‌ଆନ୍ ଏକ ନିତ୍ୟ ପଠନୀୟ ଗ୍ରନ୍ଥ -** କୁରଆନ୍ ମଣିଷକୁ ସବୁ ପ୍ରକାରର ଅନ୍ଧବିଶ୍ୱାସ, କୁସଂସ୍କାର ଏବଂ ଅପକର୍ମରୁ ମୁକ୍ତ କରିବା ପାଇଁ ଏବଂ ତାକୁ ଜଣେ ଭଲ ମଣିଷ କରି ଗଢ଼ିବା ପାଇଁ ଉଦ୍ଦିଷ୍ଟ ଯାହାଫଳରେ ତା'ର ଇହଲୋକ ଓ ପରଲୋକ ସୁଖମୟ ହୋଇପାରିବ। ତେଣୁ ଏହାକୁ ନିୟମିତ ପାଠ କରିବା ଉଚିତ। ଅନେକ ମୁସଲିମ୍ ଭାଇଭଉଣୀ କୁର୍‌ଆନର ଅନୁବାଦ ପଢ଼ନ୍ତିନାହିଁ। ତେଣୁ, କୁର୍‌ଆନର ଶିକ୍ଷା କ'ଣ ସେମାନେ ଜାଣିପାରନ୍ତି ନାହିଁ ଯାହାଫଳରେ କୁର୍‌ଆନ ସେମାନଙ୍କ ଆଚାର ଓ ବିଚାରକୁ ପରିମାର୍ଜିତ କରିପାରେ ନାହିଁ କିମ୍ବା ସେମାନଙ୍କ ମଧ୍ୟରେ ସଂସ୍କାର ଆଣିପାରେ ନାହିଁ। କୁରଆନ୍ ଇସଲାମର ମୂଳ ଗ୍ରନ୍ଥ। ଏହାକୁ ନିୟମିତ ପାଠ କରିବା, ଏହାର ଶିକ୍ଷାଗୁଡ଼ିକ ଉପରେ ବିଚାର କରିବା ଏବଂ ସେଗୁଡ଼ିକୁ ମନେ ରଖି ପାଳନ କରିବା ପ୍ରତ୍ୟେକ ଭକ୍ତର ପରମ କର୍ତ୍ତବ୍ୟ। ମହାମାନ୍ୟ ମୁହମ୍ମଦ କହନ୍ତି, "ତୁମମାନଙ୍କ ମଧ୍ୟରେ ସର୍ବୋତ୍ତମ ବ୍ୟକ୍ତି ସେହି, ଯିଏ କୁରଆନ ଶିକ୍ଷା କରେ ଏବଂ ଏହାର ଶିକ୍ଷା ଦିଏ।" (ସହୀ ବୁଖାରୀ, ୬/୫୪୫)

କୁରଆନ ସ୍ରଷ୍ଟାଙ୍କର ବାଣୀ। ତେଣୁ, ଏହାର ପ୍ରତ୍ୟେକ ବାଣୀର ଅର୍ଥ ବୁଝିବା ମଣିଷ ପକ୍ଷରେ ସମ୍ଭବ ନୁହେଁ କିନ୍ତୁ ଏହା ମଧ୍ୟ ଏକ ସତ୍ୟ ଯେ ଏହି ଗ୍ରନ୍ଥଟି ମଣିଷର ମାର୍ଗଦର୍ଶନ ପାଇଁ ଉଦ୍ଦିଷ୍ଟ। ତେଣୁ, ମାର୍ଗଦର୍ଶନ ପାଇଁ ଆବଶ୍ୟକ ହେଉଥିବା ଶିକ୍ଷାଗୁଡ଼ିକୁ ଏହା ପରିଷ୍କାର ଭାବରେ ବର୍ଣ୍ଣନା କରିଛି ଯେପରିକି ସାଧାରଣ ଲୋକେ ବୁଝିପାରିବେ। ଏହା ସମ୍ଭବ ନୁହେଁ ଯେ ସ୍ରଷ୍ଟା ମନୁଷ୍ୟକୁ ନିଜର ନୀତିନିୟମ ଦେବେ ଏବଂ ତାହାକୁ ପାଳନ ନକଲେ ସେ ଦଣ୍ଡ ଭୋଗିବ ବୋଲି ସତର୍କ ମଧ୍ୟ କରିବେ କିନ୍ତୁ ଭକ୍ତ ତାଙ୍କ ଗ୍ରନ୍ଥରୁ କିଛି ବୁଝିପାରୁ ନଥିବ। ସଦ୍‌ବିଶ୍ୱାସ ଏବଂ ଅସଦ୍‌ବିଶ୍ୱାସ କ'ଣ ବା ସତ୍ କର୍ମ ଏବଂ ଅସତ୍ କର୍ମ କ'ଣ, ଏଭଳି ନୀତି ଉପଦେଶଗୁଡ଼ିକୁ

କୁରଆନ ଖୁବ୍ ସ୍ପଷ୍ଟ ଭାବରେ ବର୍ଣ୍ଣନା କରିଛି । ଏହି ସ୍ପଷ୍ଟ ବାଣୀଗୁଡ଼ିକ ହିଁ ଗ୍ରନ୍ଥର ଅସଲ ଶିକ୍ଷା ବୋଲି କୁରଆନ କହିଛି –

> (ହେ ବାର୍ତ୍ତାବହ !) ସେ ହିଁ ତୁମ ପ୍ରତି (କୁର୍ଆନ) ଗ୍ରନ୍ଥ ପ୍ରକଟ କରିଛନ୍ତି, ଯାହାର କେତେକ ବାଣୀ ସ୍ପଷ୍ଟ ଅର୍ଥ ପ୍ରକାଶ କରେ ଏବଂ ସେହି ବାଣୀଗୁଡ଼ିକ ଗ୍ରନ୍ଥର ଆଧାର । ଏହାର ଅନ୍ୟ କେତେକ ବାଣୀ ସ୍ପଷ୍ଟ ନୁହେଁ । ଯେଉଁମାନଙ୍କ ମନରେ କୁଟିଳତା ଭରି ରହିଛି, ସେମାନେ ଅସ୍ପଷ୍ଟ ବାଣୀଗୁଡ଼ିକ ପଛରେ ଏହି ଉଦ୍ଦେଶ୍ୟରେ ପଡ଼ିଥାଆନ୍ତି ଯେ ସେଗୁଡ଼ିକ ମାଧ୍ୟମରେ ମତାନ୍ତର ସୃଷ୍ଟି କରିବେ ଏବଂ ସେଗୁଡ଼ିକର ଅନ୍ତର୍ନିହିତ ଅର୍ଥ ଜାଣିବେ, ମାତ୍ର ସେଗୁଡ଼ିକର ସଠିକ୍ ଅର୍ଥ ଅଲ୍ଲାହ୍ଙ୍କ ବ୍ୟତୀତ କେହି ଜାଣନ୍ତିନାହିଁ । ଯେଉଁମାନଙ୍କର ଜ୍ଞାନ ଗଭୀର, ସେମାନେ କହନ୍ତି ଯେ ଆମେ ସେଗୁଡ଼ିକୁ ବିଶ୍ୱାସ କରୁ । ସବୁତକ ଆମ ଈଶ୍ୱରଙ୍କର ବାଣୀ ଏବଂ ଏକଥା କେବଳ ବୁଦ୍ଧିମାନ ଲୋକମାନେ ହିଁ ବୁଝିପାରନ୍ତି । (କୁରଆନ ୩/୭)

ତେଣୁ, କୁରଆନର ପାଠକମାନଙ୍କ ପକ୍ଷରେ ଏହାର ଅବୋଧ ବାଣୀଗୁଡ଼ିକର ରହସ୍ୟଭେଦ କରିବା ପାଇଁ ଚେଷ୍ଟା କରିବା ଉଚିତ ନୁହେଁ । ଏହାର କେତେକ ବାଣୀର ଅର୍ଥ ବୁଝିବା ପାଇଁ ସେଗୁଡ଼ିକର ପୃଷ୍ଠଭୂମି ବିଷୟରେ ଜାଣିବା ଦରକାର ଯେଉଁଥିପାଇଁ ଭାଷ୍ୟର ସହାୟତା ଆବଶ୍ୟକ ହୋଇଥାଏ । ଯେଉଁମାନଙ୍କର ଏଥିପାଇଁ ଆଗ୍ରହ ଅଛି ସେମାନେ ଭାଷ୍ୟର ସହାୟତା ନେଇପାରନ୍ତି ।

**ପୁରୁଷୋତ୍ତମ ମହାମାନ୍ୟ ମୁହମ୍ମଦ** – ଯେଉଁ ମହାପୁରୁଷଙ୍କ ପ୍ରତି କୁରଆନ ପ୍ରକଟ ହେଲା, ସେ ଜଣେ ସାଧାରଣ ବ୍ୟକ୍ତି ନୁହନ୍ତି । ମହାମାନ୍ୟ ମୁହମ୍ମଦ ବିଶ୍ୱ ଇତିହାସର ଜଣେ ଅନନ୍ୟ ପ୍ରତିଭା ଯାହାଙ୍କ ଆଦର୍ଶରେ ବିଶ୍ୱର କୋଟିକୋଟି ନରନାରୀ ଅନୁପ୍ରାଣିତ । ବିଶ୍ୱର ପ୍ରଖ୍ୟାତ ଐତିହାସିକମାନେ ତାଙ୍କର ନିଖୁଣ ଚରିତ୍ର ଓ ପ୍ରଭାବଶାଳୀ ବ୍ୟକ୍ତିତ୍ୱର ଭୂୟସୀ ପ୍ରଶଂସା କରିଛନ୍ତି । 'ମହାମାନ୍ୟ ମୁହମ୍ମଦ୍' ପୁସ୍ତକରେ ମୁଁ ଏହାର ଅନେକ ଉଦାହରଣ ଦେଇଛି । ସେମାନେ କ'ଣ କହନ୍ତି ଆସନ୍ତୁ ଶୁଣିବା –

ଥୋମାସ୍ କାର୍ଲାଇଲ୍ -

"ତାଙ୍କ ସାଥୀମାନେ ତାଙ୍କୁ ନାମ ଦେଇଥିଲେ 'ଅଲ୍-ଅମୀନ୍' ଅର୍ଥାତ୍ ବିଶ୍ୱସନୀୟ - ଜଣେ ସଚ୍ଚୋଟ ଓ ବିଶ୍ୱସନୀୟ ମଣିଷ, ସଚ୍ଚୋଟ ନିଜ କଥାରେ, ନିଜ କାର୍ଯ୍ୟରେ ଆଉ ବିଚାରଧାରାରେ ।"[୨୯]

ଜନ୍ ଡାଭେନ୍‌ପୋର୍ଟ -

"ବଡ଼ମାନଙ୍କ ପ୍ରତି ତାଙ୍କର ବିନମ୍ରତା, ବିନୀତମାନଙ୍କ ପ୍ରତି ଆନ୍ତରିକ ଭାବ ଏବଂ ଦାମ୍ଭିକମାନଙ୍କ ପ୍ରତି ଶାନ୍ତ ଓ ମର୍ଯ୍ୟାଦାପୂର୍ଣ୍ଣ ବ୍ୟବହାର ତାଙ୍କ ପାଇଁ ସମ୍ମାନ, ପ୍ରଶଂସା ଏବଂ ସାଦର ସମର୍ଥନ ଆଣି ଦେଇଥିଲା ।"[୩୦]

ମାର୍କସ ଡଡ୍‌ସ –

"ଦୟାଶୀଳ, ଅହଂକାରଶୂନ୍ୟ, ସଂଯମୀ ଏବଂ ସେବକମାନଙ୍କ ପ୍ରତି ସେ ଥିଲେ ଅତ୍ୟନ୍ତ ଉଦାର, ଅପରିଚିତମାନଙ୍କ ପାଇଁ ଆକର୍ଷଣୀୟ, ଯିଏ ନିଜ ଶିଷ୍ୟମାନଙ୍କଠାରୁ ଭାରି ଆଦର ପାଉଥିଲେ । .. କୌଣସି ଭିକ୍ଷୁକକୁ 'ନା' କହିବା ତାଙ୍କ ପକ୍ଷରେ ପ୍ରାୟ ଅସମ୍ଭବ ଥିଲା ଏବଂ ଅତି ସାଧାରଣ ଲୋକଙ୍କର ନିମନ୍ତ୍ରଣ ବା ମାମୁଲି ଉପହାରକୁ ମଧ୍ୟ ସେ ଗ୍ରହଣ କରିବାକୁ କେବେହେଲେ କୁଣ୍ଠାବୋଧ କରୁ ନଥିଲେ ।"[୩୧]

ଏଚ.ଏ. ଆର. ଗୀବ୍ –

"ଧର୍ମର ପ୍ରଚାର ଯୋଗୁଁ ନୁହେଁ, ବରଂ ମୁହମ୍ମଦଙ୍କ ସଦ୍‌ଗୁଣଗୁଡ଼ିକ ଯୋଗୁଁ ମଦିନାବାସୀ ତାଙ୍କର ସହାୟତା ଭିକ୍ଷା କରିଥିଲେ ।"[୩୨]

---

(୨୯) Thomas Carlyle (1795-1881), Heros and Hero Worship, London p.73

(୩୦) John Davenport, An Apology for Mohmmed and the Koran, London, 1869

(୩୧) Marcus Dods, DD, Mohammed, Buddha And Christ, London, 1877

(୩୨) H.A.R. Gibb, Mohhammedanism, An Historical Survey, New York, 1962, p.34

ଉଇଲିୟମ ମଣ୍ଟଗୋମେରୀ ୱାଟ୍ –

"ଉଭୟ ମକ୍କା ଓ ମଦିନା କାଳରେ ମୁହମ୍ମଦଙ୍କ ସମକାଳୀନ ଲୋକମାନେ ତାଙ୍କୁ ଜଣେ ଉତ୍ତମ ଓ ସଚ୍ଚୋଟ ବ୍ୟକ୍ତି ବୋଲି ଜାଣିଥିଲେ ।" (୩୩)

ଆର. ବୋସୱର୍ଥ ସ୍ମିଥ –

"ଏକ ସ୍ଥାୟୀ ସେନା ବିନା, ନିରାପତ୍ତାରକ୍ଷୀ ବିନା, ରାଜପ୍ରାସାଦ ବିନା ଏବଂ ଏକ ନିର୍ଦ୍ଦିଷ୍ଟ ରାଜସ୍ୱ ବିନା ନ୍ୟାୟପୂର୍ଣ୍ଣ ଭାବେ ଶାସନ କରିଛି ବୋଲି ଯଦି କାହାରି କହିବାର ଅଧିକାର ଥାଏ ତେବେ ସେ ହେଉଛନ୍ତି ମୁହମ୍ମଦ, କାରଣ କୌଣସି ସାଧନ ବା ସହାୟତା ନଥାଇ ମଧ୍ୟ ତାଙ୍କର ସବୁକିଛି କରି ପାରିବାର ସାମର୍ଥ୍ୟ ଥିଲା ।" (୩୪)

ଆଲଫୋନ୍‌ସ ଡି ଲାମରଟାଇନ୍ –

"ମଣିଷର ମହାନତାକୁ ମାପିବା ପାଇଁ ଯେତେଗୁଡ଼ିଏ ପରିମାପକ ଅଛି, ସବୁ ଦୃଷ୍ଟିରୁ ବିଚାର କଲେ ଆମେ ପ୍ରଶ୍ନ କରିପାରୁ 'ତାଙ୍କଠାରୁ ଅଧିକ ମହାନ ଆଉ କେହି ଅଛି କି' ?" (୩୫)

ଜନ୍ ଉଇଲିୟମ୍ ଡ୍ରାପର –

"ଏକତୃତୀୟାଂଶ ମାନବଜଗତକୁ ସେମାନଙ୍କ ଦୈନନ୍ଦିନ ଜୀବନରେ ମାର୍ଗଦର୍ଶନ କରୁଥିବା ବହୁ ସାମ୍ରାଜ୍ୟର ଏହି ଧର୍ମାଧୀଶ ବୋଧହୁଏ 'ଈଶ୍ୱରଦୂତ' ପଦବୀର ଯଥାର୍ଥତା ପ୍ରତିପାଦନ କରୁଛନ୍ତି ।" (୩୬)

---

(୩୩) William Montgomery Watt, Prophet And Statesman, London, p.234

(୩୪) R.Bosworth Smith, Mohammed and Mohammedanism, London, 1874, p.235

(୩୫) Alphonse De Lamartine, Histoire De La Turquie, Paris, 1854 Vol.II, p.277

(୩୬) John William Drapper, M.D, LL.D, History of the Intellectual Development of Europe, Vol.I, London 1875, p.330

ମାଇକେଲ୍ ଏଚ. ହାର୍ଟ ଜଣେ ଆମେରିକୀୟ ଲେଖକ । ସେ ଇତିହାସରୁ ବାଛିବାଛି ଶତାଧିକ ପ୍ରଭାବଶାଳୀ ବ୍ୟକ୍ତିଙ୍କ ସଂକ୍ଷିପ୍ତ ଜୀବନୀ ଲେଖିଛନ୍ତି, ଯେଉଁମାନଙ୍କ ମଧ୍ୟରେ ଆରିଷ୍ଟୋଟଲ୍, ଗୌତମ ବୁଦ୍ଧ, ମହାବୀର, କନଫୁସିୟସ୍, ଜୋରାଷ୍ଟର, ଆଇଜାକ୍ ନିଉଟନ, ସେଣ୍ଟ ପଲ୍, ଆଇନ୍‌ଷ୍ଟାଇନ୍, ଗାଲିଲିଓ, ଚାର୍ଲସ୍ ଡାରଓିନ୍, କାର୍ଲ ମାର୍କସ୍, ମହାମାନ୍ୟ ଯୀଶୁ, ମହାମାନ୍ୟ ମୋସେସ୍, ନେପୋଲିୟନ, ସମ୍ରାଟ ଅଶୋକ, ସମ୍ରାଟ ଆଲେକ୍‌ଜାଣ୍ଡର, ଜୁଲିୟସ୍ ସିଜର ଏବଂ ପ୍ଲାଟୋ ମଧ୍ୟ ଅର୍ନ୍ତଭୁକ୍ତ । ଶ୍ରୀଯୁକ୍ତ ହାର୍ଟ ବିଶ୍ୱର ଶହେଜଣ ମହାନ ପ୍ରଭାବଶାଳୀ ବ୍ୟକ୍ତିଙ୍କ ତାଲିକାରେ ମହାମାନ୍ୟ ମୁହମ୍ମଦଙ୍କୁ ପ୍ରଥମ ସ୍ଥାନରେ ରଖି କହିଛନ୍ତି–

> "ମୁହମ୍ମଦଙ୍କୁ ବିଶ୍ୱର ସର୍ବାଧିକ ପ୍ରଭାବଶାଳୀ ବ୍ୟକ୍ତିମାନଙ୍କ ତାଲିକାର ଶୀର୍ଷରେ ରଖିବାର ମୋ'ର ପସନ୍ଦ କେତେକ ପାଠକଙ୍କୁ ବିସ୍ମିତ କରିପାରେ ଏବଂ ଅନେକଙ୍କ ମନରେ ପ୍ରଶ୍ନବାଚୀ ସୃଷ୍ଟି କରିପାରେ, କିନ୍ତୁ ଇତିହାସରେ କେବଳ ସେ ହିଁ ଏକମାତ୍ର ବ୍ୟକ୍ତି ଯିଏ ଧର୍ମ ଏବଂ ଧର୍ମନିରପେକ୍ଷତା କ୍ଷେତ୍ରରେ ସର୍ବାଧିକ ସଫଳତା ଲାଭ କରିଛନ୍ତି ।" (୩୭)

ମହାମାନ୍ୟ ମୁହମ୍ମଦଙ୍କ ଚରିତ୍ର ଅତ୍ୟନ୍ତ ଉଚ୍ଚକୋଟୀର ଥିଲା । ତଣୁ, ଈଶ୍ୱର କହିଛନ୍ତି –

> ପ୍ରକୃତରେ ରସୁଲଙ୍କ ଜୀବନଶୈଳୀରେ ତୁମମାନଙ୍କ ପାଇଁ ଅତି ସୁନ୍ଦର ଚରିତ୍ରର ଉଦାହରଣ ଅଛି । (କୁରଆନ ୩୩/ ୨୧)

ମହାମାନ୍ୟ ମୁହମ୍ମଦ ବିଶ୍ୱରେ ଆସିଥିବା କୌଣସି ନୂଆ ଈଶ୍ୱରଦୂତ ନୁହନ୍ତି । ତାଙ୍କ ପୂର୍ବରୁ ବିଶ୍ୱର ବିଭିନ୍ନ ସ୍ଥାନରେ ଲକ୍ଷାଧିକ ଈଶ୍ୱରଦୂତଙ୍କର ଆବିର୍ଭାବ ଘଟି ସାରିଛି । ପ୍ରାଚୀନ କାଳରେ ବିଭିନ୍ନ ଦେଶ ମଧ୍ୟରେ ସ୍ଥଳପଥ ବା ଜଳପଥରେ ଯାତାୟାତର କୌଣସି ସୁବିଧା ନଥିଲା ଏବଂ ବିଶ୍ୱବ୍ୟାପୀ ଧର୍ମର ପ୍ରଚାର ଓ ପ୍ରସାର ଲାଗି ପଥ ସୁଗମ ହୋଇ ନଥିଲା । ସେତେବେଳେ ଜଣେ ଈଶ୍ୱରଦୂତଙ୍କ ବାର୍ତ୍ତା ସମଗ୍ର ବିଶ୍ୱରେ ପହଁଚିବା ସମ୍ଭବପର ନଥିଲା ।

---

**(୩୭)** Michael H. Hart, The 100 : A Ranking of the Most Influential Persons in History, p.33

ତେଣୁ, ବିଭିନ୍ନ ଅଂଚଳ ପାଇଁ ଭିନ୍ନଭିନ୍ନ ଈଶ୍ୱରଦୂତ ନିଯୁକ୍ତ ହେଉଥିଲେ ଏବଂ ସେମାନଙ୍କୁ କେବଳ ସେମାନଙ୍କ ନିଜ ସମାଜର ଦାୟିତ୍ୱ ଦିଆ ଯାଉଥିଲା । ସପ୍ତମ ଶତାବ୍ଦୀର ପ୍ରାରମ୍ଭରେ ମହାମାନ୍ୟ ମୁହମ୍ମଦଙ୍କୁ ସମଗ୍ର ବିଶ୍ୱ ପାଇଁ ଈଶ୍ୱରଦୂତ ରୂପେ ନିଯୁକ୍ତ କରି ଦିଆଗଲା ।(୩୮) ଏଥିସହିତ ତାଙ୍କ ପ୍ରତି ପ୍ରକଟ ହୋଇଥିବା ଗ୍ରନ୍ଥଟିକୁ ପରିବର୍ତ୍ତନ ଓ ପ୍ରକ୍ଷେପଣରୁ ମୁକ୍ତ ରଖିବା ଲାଗି ଏହାର ଦୈବୀସୁରକ୍ଷା ମଧ୍ୟ କରାଗଲା । ଯେହେତୁ କୁରଆନ ଗ୍ରନ୍ଥଶୃଂଖଳାର ଅନ୍ତିମ ସଂସ୍କରଣ ଏବଂ ଏହା ସମୁଦାୟ ମାନବଜାତିର ମାର୍ଗଦର୍ଶନ ପାଇଁ ଉଦ୍ଦିଷ୍ଟ, ସ୍ୱୟଂ ସ୍ରଷ୍ଟା ଏହାର ସୁରକ୍ଷାର ଦାୟିତ୍ୱ ନେଇ କହିଛନ୍ତି, "ଆମ୍ଭେ ଏହି କୁରଆନ ପଠାଇଛୁ ଏବଂ ସ୍ୱୟଂ ଆମ୍ଭେ ଏହାର ସଂରକ୍ଷକ ।"(୩୯) ସୁତରାଂ, ଏଥିରେ କୌଣସି ପରିବର୍ତ୍ତନ କସ୍ମିନକାଳେ ସମ୍ଭବ ନୁହେଁ । ଚଉଦଶହ ବର୍ଷରୁ ଲକ୍ଷଲକ୍ଷ ଭକ୍ତ ଏହି ଗ୍ରନ୍ଥଟିକୁ ସଂପୂର୍ଣ୍ଣ କଣ୍ଠସ୍ଥ କରି ଆସିଛନ୍ତି । ଏପରିକି ଲକ୍ଷଲକ୍ଷ ସଂଖ୍ୟାରେ ଆଠ-ଦଶ ବର୍ଷର ଛୋଟ ପିଲାମାନେ ଏହାକୁ କଣ୍ଠସ୍ଥ କରି ସେମାନଙ୍କ ହୃଦୟରେ ସାଇତି ରଖିଛନ୍ତି । ଏଭଳି ଅଭୁତପୂର୍ବ ସୁରକ୍ଷା କୌଣସି ଦିବ୍ୟଗ୍ରନ୍ଥର ହୋଇନାହିଁ । ଏହା ବ୍ୟତୀତ ମହାମାନ୍ୟ ମୁହମ୍ମଦଙ୍କର ଶିକ୍ଷା ଏବଂ ତାଙ୍କ ଦୈନନ୍ଦିନ ଜୀବନର ସଂପୂର୍ଣ୍ଣ ବିବରଣୀ ମଧ୍ୟ ଇତିହାସ ପୃଷ୍ଠାରେ ସୁରକ୍ଷିତ ରହିଛି । ତାଙ୍କର ଶିକ୍ଷା ବିନା ଧର୍ମ ପାଳନ କରିବା ସମ୍ଭବ ନୁହେଁ, କାରଣ ଈଶ୍ୱରଦୂତ ହିଁ ଈଶ୍ୱରଙ୍କ ଗ୍ରନ୍ଥର ବ୍ୟାଖ୍ୟା କରନ୍ତି ଏବଂ ବିଭିନ୍ନ ଧର୍ମବିଧି ଶିଖାଇ ଥାଆନ୍ତି ଯାହା ଗ୍ରନ୍ଥରେ ନଥାଏ ।

ସୁତରାଂ ଯେଉଁ ଶିକ୍ଷା ଚିରଦିନ ପାଇଁ ସୁରକ୍ଷିତ, ସେହି ଶିକ୍ଷାକୁ ନେଇ ପୁନର୍ବାର ଈଶ୍ୱରଦୂତ ଆସିବାର କୌଣସି ଆବଶ୍ୟକତା ନାହିଁ । ତେଣୁ, ଈଶ୍ୱର ମହାମାନ୍ୟ ମୁହମ୍ମଦଙ୍କୁ ଅନ୍ତିମ ଈଶ୍ୱରଦୂତ ଘୋଷଣା କଲେ(୪୦) ଏବଂ ମହାମାନ୍ୟ ମୁହମ୍ମଦ ମଧ୍ୟ କହିଛନ୍ତି, "ମୋତେ ସମଗ୍ର ମାନବସମାଜ ପାଇଁ ନିଯୁକ୍ତ କରାଯାଇଛି ଏବଂ ମୋ' ସହିତ ଈଶ୍ୱରଦୂତମାନଙ୍କର ଆଗମନର ପରମ୍ପରାକୁ ସମାପ୍ତ କରି ଦିଆଯାଇଛି ।"(୪୧)

---

**(୩୮)** କୁରଆନ ୨୧/୧୦୭ **(୩୯)** କୁରଆନ ୧୫/୯
**(୪୦)** କୁରଆନ ୩୩/୪୦ **(୪୧)** ସହୀ ମୁସଲିମ, ୧/୫୨୩

ଈଶ୍ୱରବାଣୀର ଅବିକଳ ଅନୁବାଦ କୌଣସି ମନୁଷ୍ୟ ପକ୍ଷରେ ସମ୍ଭବ ନୁହେଁ । ମୁଁ କେବଳ ଏହାର ଭାବାନୁବାଦ କରିବାର ପ୍ରୟାସ  କରିଛି । ଏଥିପାଇଁ ମୁଁ ବିଶ୍ୱର ଅନେକ  ପ୍ରତିଷ୍ଠିତ ଭାଷ୍ୟକାରମାନଙ୍କର ସାହାଯ୍ୟ  ନେଇଛି ଯେଉଁମାନଙ୍କ  ମଧ୍ୟରେ ସମ୍ମାନନୀୟ  ମୁଫତି ମୁହମ୍ମଦ୍ ଶଫୀ  ଉସମାନୀ,  ଜଷ୍ଟିସ୍  ମୁଫତି ମୁହମ୍ମଦ ତକୀ ଉସ୍‌ମାନୀ, ମୌଲାନା ଅବ୍ଦୁଲ୍ ମାଜିଦ୍ ଦରିଆବାଦୀ, ମୌଲାନା ଫତେହ ମୁହମ୍ମଦ ଜଲନ୍ଧରୀ, ମୌଲାନା ଶବ୍‌ବୀର ଅହମଦ୍ ଉସମାନୀ, ଇମାମ୍ ଇବ୍‌ନ-ଏ-କସିର୍, ଅବ୍ଦୁଲ୍ଲାହ ୟୁସୁଫ ଅଲି, ଏମ.ଏମ. ପିକଥଲ୍, ମୁହମ୍ମଦ ମହସିନ୍ ଖାନ୍ ଏବଂ ତକି ଉଦ୍ଦୀନ୍ ହିଲାଲୀ ଉଲ୍ଲେଖନୀୟ ।

୨୦୧୪ ମସିହା ରମଜାନ ମାସରେ ମୁଁ କୁରଆନ୍‌ର ଅନୁବାଦ କାର୍ଯ୍ୟ ଆରମ୍ଭ କରିଥିଲି । ସେତେବେଳେ ମୁଁ କଟକରେ ଭାରତୀୟ ଡାକ ବିଭାଗରେ କାର୍ଯ୍ୟରତ ଥିଲି । ଯଦିଓ ସେତେବେଳକୁ ମୁଁ ଇସ୍‌ଲାମ ଏବଂ ତୁଳନାତ୍ମକ ଧର୍ମ ଉପରେ କିଛି ବର୍ଷ ଗବେଷଣା କରି ସାରିଥିଲି ଏବଂ ଇସଲାମର ବିଭିନ୍ନ ସିଦ୍ଧାନ୍ତ ଉପରେ କେତେକ ପୁସ୍ତକ ମଧ୍ୟ ଲେଖି ସାରିଥିଲି, ତଥାପି କୁରଆନ ଭଳି ଏକ ମହାନ ଗ୍ରନ୍ଥର ଅନୁବାଦ କରିବାକୁ ସାହସ ହେଉ ନଥିଲା । ଅବଶ୍ୟ ମନରେ ପ୍ରବଳ ଇଚ୍ଛା ଥିଲା ଯେ କିପରି ସରଳ ଓଡ଼ିଆରେ କୁର୍‌ଆନର  ଅନୁବାଦ  ହୋଇପାରନ୍ତା  ଯେପରିକି ଓଡ଼ିଆ  ପାଠକମାନେ କୁରଆନର ଶିକ୍ଷା ବିଷୟରେ ଜାଣିପାରନ୍ତେ । ଆଦରଣୀୟ ମୌଲାନା ସୟଦ୍ ମଂଜୁର ଅହମଦ କାସମୀ, ବନ୍ଧୁ ମୁହମ୍ମଦ ମୋଇନ୍ ଏବଂ ସୁବ୍‌ହାନ ଖାନ୍ ମୋ’ ମନରେ ଏଥିପାଇଁ  ଆଗ୍ରହ ସୃଷ୍ଟି କଲେ ।  ତେଣୁ, ମୁଁ  ଅନୁବାଦ କାର୍ଯ୍ୟ ଆରମ୍ଭ କଲି । ଏହି ମହତ କାର୍ଯ୍ୟରେ ବନ୍ଧୁ ରଫି ଅହମଦ ଖାନ୍ ମୋତେ ସର୍ବଦା ଉତ୍ସାହିତ କରି ଆସିଛନ୍ତି । ମୋ’ର ମନୋବଳ ବୃଦ୍ଧି କରିବା ସହିତ ଅନୁବାଦ କାର୍ଯ୍ୟରେ ମଧ୍ୟ ସେ ଦୀର୍ଘ ସାତବର୍ଷ କାଳ ମୋତେ ସହଯୋଗ କରିଆସିଛନ୍ତି । ବନ୍ଧୁ ମୁଫ୍‌ତି ଅବ୍ଦୁର ରହମାନ୍ ନଦୱି  ଅନୁବାଦର ସମୀକ୍ଷା କରିବା ପାଇଁ  ବହୁ  ସମୟ ଦେଇଛନ୍ତି ।  ଏହି  ଦୁଇ ବନ୍ଧୁଙ୍କ  ସହଯୋଗ  ବିନା  ଅନୁବାଦ କାର୍ଯ୍ୟ  ସଂପୂର୍ଣ୍ଣ କରିବା  ମୋ’ ପକ୍ଷରେ ସହଜ  ନଥିଲା । ମୁଁ ଏମାନଙ୍କ ନିକଟରେ କୃତଜ୍ଞ । ଏହା ବ୍ୟତୀତ ବନ୍ଧୁ ଖୁରଶିଦ୍ ବେଗ୍ ଏବଂ ରେଜା କରିମ ଦାନିଶ୍ ମଧ୍ୟ ମୋତେ ଯଥେଷ୍ଟ ସହଯୋଗ କରିଛନ୍ତି ।

ଏହି ଶୁଭକାର୍ଯ୍ୟର ଅନ୍ତିମ ଚରଣରେ ଓଡ଼ିଶାର କେତେକ ପ୍ରତିଷ୍ଠିତ ଉଲେମାଙ୍କର ପରାମର୍ଶ କ୍ରମେ ମୌଲାନା ମୁବାରକ ହୁସେନ୍ ସଲାମତ୍ଙ୍କ ଅଧ୍ୟକ୍ଷତାରେ ମୁଫ୍‌ତି ଅବ୍ଦୁର ରହମାନ ନଦ୍‌ଭି, ମୌଲାନା ଜଇମୁଲ୍ ଇସଲାମ କାସମୀ, ମୌଲାନା ମୋତିଉଲ୍ଲାହ ନାଜିଶ୍ ଏବଂ ମୁହମ୍ମଦ ଶମୀମ୍ ଖାନ ସିରାଜୀଙ୍କୁ ନେଇ ଗଠିତ ଏକ ସମୀକ୍ଷା  କମିଟି ଏହି ଅନୁବାଦର ପୁନଃସମୀକ୍ଷା କରିଛି, ବିଶେଷତଃ ମୌଲାନା ମୁବାରକ ହୁସେନ ସଲାମତ୍ ଏଥିପାଇଁ ବହୁ କଷ୍ଟ ସ୍ୱୀକାର କରିଛନ୍ତି । ସେଥିପାଇଁ ମୁଁ ତାଙ୍କୁ ଏବଂ ସମୀକ୍ଷା କମିଟିର ସମସ୍ତ ସଦସ୍ୟମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ଆନନ୍ଦର କଥା ଯେ ଆମ ରାଜ୍ୟର ମାନ୍ୟବର ଉଲେମା ଏବଂ ଶାସ୍ତ୍ରବିତ୍‌ମାନେ ଏହି ଅନୁବାଦଟିକୁ ବପୁଳ ସମର୍ଥନ ଦେଇ ସମାଜର ଅଶେଷ ଉପକାର କରିଛନ୍ତି । ଏଥିପାଇଁ ମୁଁ ସେମାନଙ୍କ ନିକଟରେ ସର୍ବଦା କୃତଜ୍ଞ ରହିବି । ଅଲ୍ଲାହଙ୍କ ନିକଟରେ ମୋ'ର ପ୍ରାର୍ଥନା ଯେ ତାଙ୍କର ପବିତ୍ର ବାଣୀ ତାଙ୍କ ଭକ୍ତମାନଙ୍କ ଜୀବନକୁ ଆଲୋକମୟ କରୁ ଏବଂ ବିଶ୍ୱଶାନ୍ତି ଓ ବିଶ୍ୱଭ୍ରାତୃତ୍ୱ ପ୍ରତିଷ୍ଠା କ୍ଷେତ୍ରରେ ସହାୟକ ହେଉ । ପାଠକ ବନ୍ଧୁମାନଙ୍କୁ ମୋ'ର ବିନୀତ ଅନୁରୋଧ ଯେ ଦୟାକରି ସେମାନେ ଏହି ଗ୍ରନ୍ଥଟିର ପବିତ୍ରତା ରକ୍ଷା କରିବେ ।

**ନିଉ ଆଜାଦ୍ ନଗର, ସୁନ୍ଦରପଦା, ଭୁବନେଶ୍ୱର**
**ଜୁଲାଇ ୨୬, ୨୦୨୨**

**ଶକୀଲ ଅହମଦ**
ଫୋନ୍ - 9861269764

# ପାରିଭାଷିକ ଶବ୍ଦାବଳୀ

**ଅଲ୍ଲାହ୍** – ସୃଷ୍ଟିର କର୍ତ୍ତା ଯାହାଙ୍କୁ ଈଶ୍ୱର ବା ଗଡ୍ କୁହାଯାଏ । ସେ ସୃଷ୍ଟି, ସ୍ଥିତି ଓ ବିନାଶର କାରଣ ଏବଂ ସମସ୍ତଙ୍କର କର୍ମଫଳଦାତା । ସେ ଦୃଶ୍ୟମାନ ନୁହନ୍ତି । ବେଦ ଓ ବେଦାନ୍ତରେ ତାଙ୍କୁ 'ବ୍ରହ୍ମ' ବୋଲି କୁହାଯାଇଛି । ଆରବୀ ଭାଷାରେ ତାଙ୍କୁ 'ଅଲ୍ଲାହ୍' କୁହାଯାଏ । 'ଅଲ୍ଲାହ୍' ଏକ ଅନୁପମ ନାମ ଯାହାର ଲିଂଗ ବା ବଚନ ପରିବର୍ତ୍ତନ କରି ଅନ୍ୟ କାହାରି ପାଇଁ ବ୍ୟବହାର କରାଯାଇ ପାରିବନାହିଁ । ଏହା ବ୍ୟତୀତ ବିଭିନ୍ନ ଗୁଣ ଓ ସ୍ୱଭାବ ଅନୁଯାୟୀ ତାଙ୍କୁ ଅନେକ ନାମରେ ଡକାଯାଏ ।

**ଅଲିଫ୍ ଲାମ୍ ମୀମ୍ -** କୁରଆନରେ ଏକ ବା ଏକାଧିକ ଅକ୍ଷରକୁ ନେଇ ଗଠିତ ଏହିପରି କେତେକ ଶବ୍ଦ ବ୍ୟବହାର ହୋଇଛି, ଯଥା ଅଲିଫ୍ ଲାମ୍ ମୀମ୍, କାଫ, ନୁନ୍, ହା-ମୀମ୍, ୟା'ସୀନ ଇତ୍ୟାଦି । ଏହି ରହସ୍ୟମୟ ଶବ୍ଦଗୁଡ଼ିକ ଗ୍ରନ୍ଥର ଅଂଶ ରୂପେ ପାଠ କରା ଯାଉଥିଲେ ମଧ୍ୟ କୌଣସି ଅର୍ଥ ପ୍ରକାଶ କରନ୍ତି ନାହିଁ । ଈଶ୍ୱରଙ୍କର ମହାମାନ୍ୟ ବାର୍ତ୍ତାବହ ଏଗୁଡ଼ିକର କୌଣସି ବ୍ୟାଖ୍ୟା କରିନାହାନ୍ତି ।

**ଅସଦ୍‌ବିଶ୍ୱାସୀ -** ନାସ୍ତିକ, ଅନ୍ଧବିଶ୍ୱାସୀ ବା ଧର୍ମବିରୋଧୀ ବ୍ୟକ୍ତି ଯାହାର ବିଶ୍ୱାସ ମିଥ୍ୟା ଉପରେ ଆଧାରିତ । ଆରବୀ ଭାଷାରେ ଏଭଳି ବ୍ୟକ୍ତିକୁ 'କାଫିର୍' କୁହାଯାଏ ।

**ଇସ୍‌ଲାମ -** ଈଶ୍ୱରଶରଣ ବା ଈଶ୍ୱରଙ୍କ ନିକଟରେ ନିଜକୁ ସଂପୂର୍ଣ୍ଣ ଭାବରେ ସମର୍ପିତ କରିଦେବାକୁ ଆରବୀ ଭାଷାରେ 'ଇସ୍‌ଲାମ' କୁହାଯାଏ । ଯିଏ ତାଙ୍କଠାରେ ସମର୍ପଣ କରି ତାଙ୍କର ଆଜ୍ଞାଧୀନ ହୋଇଯାଏ, ତାକୁ ଆରବୀ ଭାଷାରେ 'ମୁସଲିମ୍' ମୁହାଯାଏ । ଇସଲାମର ଅନ୍ୟ ଏକ ଅର୍ଥ 'ଶାନ୍ତି' ।

**ଇଦ୍ଦତ୍ -** ବିଧବା ବା ସ୍ୱାମୀପରିତ୍ୟକ୍ତା ମହିଳାଙ୍କର ପ୍ରତୀକ୍ଷାକାଳ । ଏହି ସମୟ ଶେଷ ହେବା ପୂର୍ବରୁ ମହିଳାମାନେ ପୁନର୍ବିବାହ କରିବା ନିଷିଦ୍ଧ । ପତିର ମୃତ୍ୟୁ ହୋଇଗଲେ ଇଦ୍ଦତ୍‌ର ଅବଧି ୪ ମାସ ଦଶ ଦିନ, ତଲାକ୍ ଦିଆଯାଇ ଥିବା ମହିଳାମାନଙ୍କର ତିନୋଟି ଋତୁକାଳ ଅତିବାହିତ ହେବା ପର୍ଯ୍ୟନ୍ତ ଏବଂ ଗର୍ଭବତୀ ମହିଳାମାନଙ୍କ ପାଇଁ ଏହି ସମୟ ସନ୍ତାନ ପ୍ରସବ ପର୍ଯ୍ୟନ୍ତ ।

**କପଟୀ -** ସେହି ବ୍ୟକ୍ତି ଯାହାର ପ୍ରକୃତରେ ଆସ୍ଥା ନଥାଏ କିନ୍ତୁ ସେ ଆସ୍ଥା ରଖିଛି ବୋଲି ଛଳନା କରୁଥାଏ

**କା'ବା -** ମକ୍କାରେ ଥିବା ବିଶ୍ୱର ପ୍ରତିଷ୍ଠିତ ଉପାସନା ଗୃହ । ବିଶ୍ୱର ସମସ୍ତ ମୁସଲମାନ ଭକ୍ତ ଏହି ଦିଗକୁ ମୁହଁ କରି ନମାଜପାଠ କରନ୍ତି ।

**କିବ୍‌ଲା -** ନମାଜପାଠ କରିବା ସମୟରେ ଯେଉଁ ଦିଗକୁ ମୁହଁ କରାଯାଏ, ତାହାକୁ କିବ୍‌ଲା କୁହାଯାଏ ।

**ଗ୍ରନ୍ଥବିଶ୍ୱାସୀ -** ଯେଉଁମାନଙ୍କୁ ପୂର୍ବରୁ ଦିବ୍ୟଗ୍ରନ୍ଥ ଦିଆ ଯାଇଥିଲା ଏବଂ ସେମାନେ ଈଶ୍ୱରୀୟ ଗ୍ରନ୍ଥରେ ବିଶ୍ୱାସ କରନ୍ତି ।

**ଜକାତ୍ -** ବଳକା ଧନ ଏବଂ ଶସ୍ୟ ଓ ଫଳମୂଳ ଆଦିର ଏକ ନିର୍ଦ୍ଦିଷ୍ଟ ଭାଗ ଯାହା ପ୍ରତିବର୍ଷ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଦାନ ଆକାରରେ ଦିଆଯାଏ ।

**ଜଗତପାଳକ -** ସାରା ଜଗତର ପାଳନକର୍ତ୍ତା ଏବଂ ସମଗ୍ର ବ୍ରହ୍ମାଣ୍ଡର ଅଧୀଶ୍ୱର ବା ସର୍ବଲୋକେଶ୍ୱର ।

**ଜିଜିୟା -** ସୁରକ୍ଷା କର । ଅଣମୁସଲିମ୍ ନାଗରିକଙ୍କଠାରୁ ସେମାନଙ୍କର ବିଭିନ୍ନ ଅଧିକାରଗୁଡ଼ିକର ସୁରକ୍ଷା ପାଇଁ ମୁସଲିମ୍ ରାଷ୍ଟ୍ର ଦ୍ୱାରା ଯେଉଁ କର ଆଦାୟ କରାଯାଏ ତାକୁ 'ଜିଜିୟା' କୁହାଯାଏ । ମୁସଲିମ ନାଗରିକମାନଙ୍କଠାରୁ ଏଥିପାଇଁ ଜିଜିୟା ପରିବର୍ତ୍ତେ 'ଜକାତ୍' ଆଦାୟ କରାଯାଏ । ଏହା ସମାଜର ବିଭିନ୍ନ କଲ୍ୟାଣମୂଳକ କାର୍ଯ୍ୟରେ ଖର୍ଚ୍ଚ ହୁଏ ।

**ଜିବ୍‌ରଇଲ୍ -** ଦେବଦୂତମାନଙ୍କର ମୁଖ୍ୟ, ଯିଏ ମର୍ତ୍ତ୍ୟରେ ଥିବା ଈଶ୍ୱରଙ୍କ ବାର୍ତ୍ତାବହମାନଙ୍କୁ ତାଙ୍କର ବାର୍ତ୍ତା ଦେଇଥାଆନ୍ତି ।

**ଜିହାଦ୍** – ସତପଥରେ ଅବିଚଳିତ ରହି ଅନ୍ୟାୟ-ଅତ୍ୟାଚାର ବିରୁଦ୍ଧରେ କରା ଯାଉଥିବା ସଂଘର୍ଷକୁ ଆରବୀ ଭଷାରେ 'ଜିହାଦ୍' କୁହାଯାଏ । ଯେତେବେଳେ ଏହି ସଂଘର୍ଷ ପଥରେ ଶକ୍ତିପ୍ରୟୋଗର ଆବଶ୍ୟକତା ପଡ଼େ, ଏହା ଯୁଦ୍ଧର ରୂପେ ନିଏ । କୁରଆନ ବ୍ୟତୀତ ବେଦ, ବାଇବଲ, ଗୀତା ତଥା ଅନ୍ୟାନ୍ୟ ଗ୍ରନ୍ଥରେ ମଧ୍ୟ ଏପ୍ରକାରର ଯୁଦ୍ଧର ବର୍ଣ୍ଣନା ରହିଛି ଏବଂ ଯୁଦ୍ଧନୀତିର ଶିକ୍ଷା ମଧ୍ୟ ଦିଆଯାଇଛି ।

**ଜିନ୍ –** ଏମାନେ ମାନବ ବ୍ୟତୀତ ଅନ୍ୟ ଏକ ପ୍ରକାରର ସୃଷ୍ଟି । ଏମାନେ ମଧ୍ୟ ଏକ ଅଦୃଶ୍ୟ ପ୍ରାଣୀ, ଯେଉଁମାନେ ପୃଥିବୀରେ ବସବାସ କରନ୍ତି ଏବଂ ବିଭିନ୍ନ ରୂପ ଧାରଣ କରିପାରନ୍ତି ।

**ଦେବଦୂତ –** ଦେବଦୂତମାନେ ଈଶ୍ୱରଙ୍କର ବିଶିଷ୍ଟ ସେବକ ଯେଉଁମାନେ ଆଖିକୁ ଦେଖାଯାଆନ୍ତି ନାହିଁ କିନ୍ତୁ ଆବଶ୍ୟକ ସ୍ଥଳେ ସେମାନେ ମାନବ ରୂପ ଧାରଣ କରିପାରନ୍ତି । ସେମାନଙ୍କୁ ସୃଷ୍ଟିର ବିଭିନ୍ନ ଦାୟିତ୍ୱରେ ନିଯୁକ୍ତ କରାଯାଇଛି । ଈଶ୍ୱର ସେମାନଙ୍କୁ ଯାହା ଆଦେଶ ଦିଅନ୍ତି ସେମାନେ ତୁରନ୍ତ ତାହାକୁ କାର୍ଯ୍ୟକାରୀ କରନ୍ତି । ଏମାନଙ୍କୁ ପାର୍ସିଭାଷାରେ ଫରିସ୍ତା ଏବଂ ଇଂରାଜୀରେ ଇଭଶରକ୍ଷ କୁହାଯାଏ ଏବଂ ସନାତନ ଧର୍ମଗ୍ରନ୍ଥରେ ସେମାନଙ୍କୁ 'ଦେବ' ବା 'ଦେବତା' କୁହଯାଇଛି । ଏହି ଗ୍ରନ୍ଥରେ ସେମାନଙ୍କ ପାଇଁ 'ଦେବଦୂତ' ଶବ୍ଦ ବ୍ୟବହାର କରାଯାଇଛି ।

**ଦୈବବାଣୀ -** ମର୍ତ୍ତ୍ୟରେ ଥିବା ନିଜ ବାର୍ତ୍ତାବହମାନଙ୍କୁ ଈଶ୍ୱର ଯେଉଁ ମାଧ୍ୟମରେ ନିଜର ବାର୍ତ୍ତା ଦିଅନ୍ତି ତାକୁ 'ଦୈବବାଣୀ' କୁହାଯାଏ । କେତେବେଳେ ସେ ସେମାନଙ୍କ ଅନ୍ତରରେ ନିଜର ବାର୍ତ୍ତା ପ୍ରକଟ କରନ୍ତି ଏବଂ କେତେବେଳେ ବାର୍ତ୍ତାବହମାନଙ୍କୁ ଶୂନ୍ୟବାଣୀ ହୁଏ ଏବଂ ବେଳେବେଳେ ସେ ନିଜ ଦେବଦୂତଙ୍କୁ ବାର୍ତ୍ତା ଦେଇ ପଠାନ୍ତି, ଯିଏ ସ୍ୱୟଂ ବାର୍ତ୍ତାବହଙ୍କ ସମ୍ମୁଖରେ ପ୍ରକଟ ହୋଇ ତାଙ୍କୁ ଈଶ୍ୱରଙ୍କର ବାର୍ତ୍ତା ଦିଅନ୍ତି ।

**ନବୀ ଓ ରସୁଲ୍ -** ଈଶ୍ୱରଦୂତ ବା ଈଶ୍ୱରଙ୍କର ପ୍ରତିନିଧି ଯିଏ ସମାଜକୁ ତାଙ୍କର ବାର୍ତ୍ତା ଦିଅନ୍ତି । ସେମାନଙ୍କ ପ୍ରତି ଦୈବବାଣୀ ହୁଏ । ଏହି ବାର୍ତ୍ତାବହମାନଙ୍କୁ ଆରବୀ ଭାଷାରେ 'ନବୀ' ବା 'ରସୁଲ୍' କୁହାଯାଏ । ନବୀ ଏବଂ ରସୁଲ ମଧ୍ୟରେ ସାମାନ୍ୟ ଅନ୍ତର ଅଛି । ଯେଉଁ ବାର୍ତ୍ତାବହଙ୍କୁ ନୂଆ ଧର୍ମବିଧାନ ଏବଂ ନୂଆ ଗ୍ରନ୍ଥ ଦିଆଯାଇଛି, ସେମାନଙ୍କୁ 'ରସୁଲ୍' କୁହାଯାଏ ।

**ନମାଜ୍ -** ଏହା ଏକ ଦୈନିକ ଉପାସନା । ଏହା ଈଶ୍ୱର ଓ ତାଙ୍କ ଭକ୍ତଙ୍କ ମଧ୍ୟରେ ଥିବା ସମ୍ପର୍କକୁ ଦୃଢ଼ କରେ ଏବଂ ଭକ୍ତକୁ ସଦାଚାରୀ ହେବାରେ ସାହାଯ୍ୟ କରିଥାଏ । ମହାମାନ୍ୟ ମୁହମ୍ମଦଙ୍କ ଧର୍ମବିଧାନରେ ଭକ୍ତମାନଙ୍କୁ ଦୈନିକ ପାଂଚ ଥର ଏହି ଉପାସନା କରିବାର ନିର୍ଦ୍ଦେଶ ଦିଆଯାଇଛି । ବୈଦିକ ଯୁଗରେ ବ୍ୟକ୍ତିଗତ ଏବଂ

ସାମୂହିକ ରୂପରେ ଦୈନିକ ତିନିଥର ଏହି ପ୍ରାର୍ଥନା ହେଉଥିଲା ଯାହାକୁ 'ସଂଧ୍ୟା ଉପାସନା' କୁହା ଯାଉଥିଲା । ଇହୁଦୀ ସଂପ୍ରଦାୟ ଦୈନିକ ଦୁଇ ଥର ପ୍ରାର୍ଥନା କରନ୍ତି ଯାହାକୁ 'ଶେମା' କୁହାଯାଏ । କୁରଆନ ପ୍ରତିଦିନ ପାଂଚ ଥର ନମାଜ ସଂପାଦନ କରିବା ଅନିବାର୍ଯ୍ୟ କରିଛି ।

**ପ୍ରଳୟ -** ସୃଷ୍ଟି ପ୍ରଳୟ ହେବାର ଦିନ । ଏହାକୁ ଉର୍ଦ୍ଦୁ ଭାଷାରେ 'କୟାମତ୍' କୁହାଯାଏ ।

**ପ୍ରଣାମ** – ପ୍ରଣିପାତ ବା ଭୂମିଷ୍ଠ ପ୍ରଣାମ ।

**ପୃଥିବୀ ଓ ଆକାଶ -** ଅର୍ଥାତ୍ ପୃଥିବୀ ଓ ସମଗ୍ର ଆକାଶମଣ୍ଡଳ

**ବିଚାର ଦିନ -** ଯେଉଁଦିନ ଅଲ୍ଲାହ ଲୋକମାନଙ୍କର ବିଚାର କରିବେ ଏବଂ ସେମାନଙ୍କୁ କର୍ମଫଳ ପ୍ରଦାନ କରିବେ ।

**ମେହେର -** ବିବାହ ବେଳେ ପତି ଦ୍ୱାରା ପତ୍ନୀକୁ ଦିଆଯାଉଥିବା ସ୍ତ୍ରୀଧନ ।

**ସଦ୍‌ବିଶ୍ୱାସୀ -** ଯେଉଁମାନେ ଈଶ୍ୱରଙ୍କୁ ବିଶ୍ୱାସ କରନ୍ତି ଏବଂ ତାଙ୍କର ସବୁ ବାର୍ତ୍ତାବହଙ୍କୁ ମଧ୍ୟ ବିଶ୍ୱାସ କରନ୍ତି । ସେମାନେ ବିଶ୍ୱରେ ଆସିଥିବା ସବୁ ଦିବ୍ୟଗ୍ରନ୍ଥ ଉପରେ ଆସ୍ଥା ରଖନ୍ତି ଏବଂ ଦେବଦୂତମାନଙ୍କୁ ମଧ୍ୟ ମାନନ୍ତି । ସେମାନେ ପୁନର୍ଜୀବନ ଏବଂ ବିଚାର ଦିନକୁ ମଧ୍ୟ ବିଶ୍ୱାସ କରନ୍ତି ।

# ଅଧ୍ୟାୟ ସୂଚୀ

## ଅଧ୍ୟାୟ ୧, ଅଲ୍ ଫାତିହା

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲ୍ଲାହ୍ ହିଁ ସକଳ ପ୍ରଶଂସାର ଯୋଗ୍ୟ ଯିଏ ସାରା ଜଗତର ପାଳନକର୍ତ୍ତା । ୨. ଅତ୍ୟନ୍ତ କୃପାଶୀଳ ଏବଂ ପରମ ଦୟାଳୁ । ୩. ବିଚାର ଦିନର ଅଧୀଶ୍ୱର । ୪. ଆମେ ତୁମରି ଉପାସନା କରୁଛୁ ଏବଂ ତୁମରିଠାରୁ ସାହାଯ୍ୟ ମାଗୁଛୁ । ୫. ଆମକୁ ସତ୍‌ମାର୍ଗରେ ନେଇଯାଅ । ୬. ସେହିମାନଙ୍କ ମାର୍ଗରେ ଯେଉଁମାନଙ୍କୁ ତୁମେ ପୁରସ୍କୃତ କରିଛ । ୭. (ମାତ୍ର) ସେମାନଙ୍କ ମାର୍ଗରେ ନୁହେଁ ଯେଉଁମାନେ ତୁମ କ୍ରୋଧର ଶିକାର ହେଲେ ଅଥବା ପଥଭ୍ରଷ୍ଟ ହୋଇଗଲେ ।

## ଅଧ୍ୟାୟ ୨, ଅଲ୍ ବକରଃ

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲିଫ୍ ଲାମ ମୀମ୍ । ୨. ଏହା ଏକ ଦିବ୍ୟଗ୍ରନ୍ଥ ଯେଉଁଥିରେ କୌଣସି ସନ୍ଦେହ ନାହିଁ । ଏହା ଈଶ୍ୱରଙ୍କୁ ଭୟ କରୁଥିବା ଲୋକମାନଙ୍କର ମାର୍ଗଦର୍ଶନ କରେ, ୩. ଯେଉଁମାନେ ଅଦୃଷ୍ଟରେ ବିଶ୍ୱାସ କରନ୍ତି, ନମାଜ୍ (ଅର୍ଥାତ୍ ଦୈନିକ ଉପାସନା) ପ୍ରତିଷ୍ଠା କରନ୍ତି ଏବଂ ଯାହାକିଛି ଆମ୍ଭେ ସେମାନଙ୍କୁ ଦେଇଛୁ ସେଥିରୁ (ପୁଣ୍ୟ କାର୍ଯ୍ୟରେ) ଖର୍ଚ୍ଚ କରନ୍ତି ୪. ଏବଂ (ହେ ବାର୍ତ୍ତାବହ!) ଯେଉଁମାନେ ଏହି ଗ୍ରନ୍ଥକୁ ବିଶ୍ୱାସ କରନ୍ତି ଯାହା ତୁମ ପାଖକୁ ପଠାଯାଇଛି ଏବଂ ସେହି ଗ୍ରନ୍ଥଗୁଡ଼ିକୁ ମଧ୍ୟ ବିଶ୍ୱାସ କରନ୍ତି ଯାହା ତୁମ ପୂର୍ବରୁ ପଠାଯାଇଥିଲା ଏବଂ ପରଲୋକରେ ବିଶ୍ୱାସ କରନ୍ତି, ୫. ଏହି ଲୋକମାନେ ସେମାନଙ୍କ ଈଶ୍ୱରଙ୍କ ମାର୍ଗରେ ଅଛନ୍ତି ଏବଂ ଏହିମାନେ ସଫଳ ହେବେ । ୬. ଯେଉଁମାନେ ପ୍ରତ୍ୟାଖ୍ୟାନ କରିଦେଲେ, ତୁମେ ସେମାନଙ୍କୁ ଡରାଅ ବା ନଡରାଅ ଏକା କଥା । ସେମାନେ ମାନିବେ ନାହିଁ । ୭. ଅଲ୍ଲାହ୍ ସେମାନଙ୍କ ହୃଦୟ ଓ କାନକୁ ଅଚଳ କରି ଦେଇଛନ୍ତି ଏବଂ ସେମାନଙ୍କ ଆଖିରେ ପରଦା ପଡ଼ିଯାଇଛି । ସେମାନେ କଠୋର ଶାସ୍ତି ଭୋଗିବେ ।

୮. କିଛି ଲୋକ କହୁଛନ୍ତି ଯେ ଆମେ ଅଲ୍ଲାହଙ୍କୁ ଓ ପରଲୋକକୁ ବିଶ୍ୱାସ କରୁ ମାତ୍ର ପ୍ରକୃତରେ ସେମାନେ ବିଶ୍ୱାସ କରନ୍ତିନାହିଁ । ୯. ସେମାନେ (ଭାବୁଛନ୍ତି

ଯେ) ଅଲ୍ଲାହଙ୍କୁ ଏବଂ ସଦ୍‌ବିଶ୍ୱାସୀମାନଙ୍କୁ ଠକୁଛନ୍ତି କିନ୍ତୁ ପ୍ରକୃତରେ ସେମାନେ କେବଳ ନିଜକୁ ଠକୁଛନ୍ତି ମାତ୍ର ଏହା ବୁଝି ପାରୁନାହାନ୍ତି । ୧୦. ସେମାନଙ୍କ ମନରେ ଗୋଟିଏ ରୋଗ ଅଛି ଯାହାକୁ ଅଲ୍ଲାହ୍ ବଢ଼ାଇ ଦେଇଛନ୍ତି । ମିଛ କହୁଥିବା ଯୋଗୁଁ ସେମାନଙ୍କୁ କଠୋର ଶାସ୍ତି ମିଳିବ । ୧୧. ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଧରାପୃଷ୍ଠରେ ଅଶାନ୍ତି ସୃଷ୍ଟି କରନାହିଁ, ସେମାନେ କହନ୍ତି, "ଆମେମାନେ ସୁଧାର କାର୍ଯ୍ୟ କରୁଛୁ ।" ୧୨. ଜାଣିରଖ, ଏହିମାନେ ଅଶାନ୍ତି ସୃଷ୍ଟି କରୁଛନ୍ତି କିନ୍ତୁ ଏହା ବୁଝୁନାହାନ୍ତି । ୧୩. ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଅନ୍ୟମାନଙ୍କ ପରି ତୁମେମାନେ ମଧ୍ୟ ମାନିନିଅ, ସେମାନେ କହନ୍ତି, "କ'ଣ ଆମେ ମଧ୍ୟ ସେମିତି ମାନିନେବୁ ଯେମିତି ନିର୍ବୋଧମାନେ ମାନି ନେଇଛନ୍ତି ?" ଜାଣିରଖ ଯେ ସେଇମାନେ ହିଁ ନିର୍ବୋଧ କିନ୍ତୁ ଏହା ଜାଣନ୍ତିନାହିଁ । ୧୪. ଯେତେବେଳେ ସେମାନେ ସଦ୍‌ବିଶ୍ୱାସୀମାନଙ୍କ ସହିତ ଦେଖା କରନ୍ତି, ସେମାନଙ୍କୁ କହନ୍ତି ଯେ ଆମେ ମଧ୍ୟ ବିଶ୍ୱାସ କରିନେଇଛୁ ମାତ୍ର ଯେତେବେଳେ ଏକାନ୍ତରେ ସେମାନଙ୍କର ଶଇତାନମାନଙ୍କୁ ଭେଟନ୍ତି, ସେମାନଙ୍କୁ କହନ୍ତି, "ପ୍ରକୃତରେ ଆମେ ତୁମ ଲୋକ । ସେମାନଙ୍କ ସହିତ ଆମେ କେବଳ ପରିହାସ କରୁଛୁ ।" ୧୫. ପ୍ରକୃତରେ ଅଲ୍ଲାହ ସେମାନଙ୍କ ସହିତ ପରିହାସ କରୁଛନ୍ତି ଏବଂ ସେମାନଙ୍କୁ ସେମାନଙ୍କ ଅହମିକାରେ ଅନ୍ଧ ହୋଇ ବୁଲିବାକୁ ଛାଡ଼ି ଦେଇଛନ୍ତି । ୧୬. ଏହି ଲୋକମାନେ ସତ୍‌ମାର୍ଗ ପରିବର୍ତ୍ତେ ବିଭ୍ରାନ୍ତି କିଣିଲେ ମାତ୍ର ଏହି ବ୍ୟବସାୟ ସେମାନଙ୍କ ପାଇଁ ଲାଭଜନକ ହେଲାନାହିଁ ଏବଂ ସେମାନେ ଠିକ୍ ବାଟ ପାଇଲେନାହିଁ ।

୧୭. ଏମାନଙ୍କର ଦୃଷ୍ଟାନ୍ତ ଏମିତି, ଯେମିତି କେହି ନିଆଁ ଜାଳିଲା ଏବଂ ଯେତେବେଳେ ନିଆଁ ଏହାର ଆଖପାଖକୁ ଆଲୋକିତ କଲା, ଅଲ୍ଲାହ୍ ସେମାନଙ୍କର ଦୃଷ୍ଟିଶକ୍ତି ଛିନ୍ନ କରି ସେମାନଙ୍କୁ ଅନ୍ଧକାର ମଧ୍ୟରେ ଛାଡ଼ିଦେଲେ ଯାହାଫଳରେ ସେମାନଙ୍କୁ କିଛି ଦେଖା ଯାଉନାହିଁ । ୧୮. ସେମାନେ ଅନ୍ଧ, ମୂକ ଆଉ ବଧିର ଏବଂ ସେମାନେ ବାଟକୁ ଫେରିବେ ନାହିଁ । ୧୯. ଅଥବା ଏମିତି, ଯେମିତି ଆକାଶରୁ ବର୍ଷା ହୁଏ ଏବଂ ଅନ୍ଧାରରେ ମେଘର ଗର୍ଜନ ସହିତ ବିଜୁଳି ଚମକେ ଏବଂ ଘଡ଼ଘଡ଼ି ଯୋଗୁଁ ସେମାନେ ପ୍ରାଣ ଭୟରେ କାନରେ ଆଙ୍ଗୁଳି ଦିଅନ୍ତି । ଅଲ୍ଲାହ୍ ନାସ୍ତିକମାନଙ୍କୁ ଚାରିଆଡୁ ଘେରି ରହିଛନ୍ତି । ୨୦. ହୁଏତ

ବିଜୁଳି ସେମାନଙ୍କ ଆଖି ନଷ୍ଟ କରି ଦେଇପାରେ । ଯେତେବେଳେ ବିଜୁଳି ଚମକେ, ସେମାନେ ଆଗେଇ ଯାଆନ୍ତି ଏବଂ ଯେତେବେଳେ ଅନ୍ଧାର ହୋଇଯାଏ, ଅଟକି ଯାଆନ୍ତି । ଯଦି ଅଲ୍ଲାହ୍ ଇଚ୍ଛା କରନ୍ତେ ସେମାନଙ୍କର ଆଖି ଓ କାନ ନଷ୍ଟ କରି ଦିଅନ୍ତେ । ଅଲ୍ଲାହ୍ ସବୁକିଛି କରିପାରନ୍ତି ।

୨୧. ହେ ମନୁଷ୍ୟଗଣ ! ନିଜ ଈଶ୍ୱରଙ୍କର ସେବା-ଉପାସନା କର ଯିଏ ତୁମମାନଙ୍କୁ ସୃଷ୍ଟି କଲେ ଏବଂ ତୁମ ପୂର୍ବଜମାନଙ୍କୁ ମଧ୍ୟ, ଯାହାଫଳରେ ତୁମେମାନେ ସଦାଚାରୀ ହେବ । ୨୨. ସେ ତୁମମାନଙ୍କ ପାଇଁ ଧରିତ୍ରୀକୁ ଶେଯ ତଥା ଆକାଶକୁ ଛାତ ରୂପେ ଗଢ଼ିଛନ୍ତି ଏବଂ ଆକାଶରୁ ଜଳ ବର୍ଷା କରନ୍ତି ଏବଂ ସେଥିରୁ ତୁମମାନଙ୍କର ଆହାର ପାଇଁ ବିଭିନ୍ନ ପ୍ରକାରର ଫଳ ଉତ୍ପନ୍ନ କରନ୍ତି । ତେଣୁ, କାହାରିକୁ ଅଲ୍ଲାହଙ୍କର ସମକକ୍ଷ କରନାହିଁ ଏବଂ ଏହା (ଅନୁଚିତ ବୋଲି) ତୁମେମାନେ ଜାଣ ।

୨୩. ଯେଉଁ ଗ୍ରନ୍ଥଟିକୁ ଆମ୍ଭେ ନିଜ ଭକ୍ତଙ୍କ ପାଖକୁ ପଠାଇଛୁ, ଯଦି ତାହା ପ୍ରତି ତୁମମାନଙ୍କର ସନ୍ଦେହ ଥାଏ ତେବେ ତାହାରି ଅଧ୍ୟାୟ ପରି ଗୋଟିଏ ଅଧ୍ୟାୟ (ରଚନା କରି) ଆଣ ଏବଂ ଅଲ୍ଲାହଙ୍କ ବ୍ୟତୀତ ତୁମମାନଙ୍କର ଅନ୍ୟ ସହଯୋଗୀମାନଙ୍କୁ ଡାକିଆଣ, ଯଦି ପ୍ରକୃତରେ ତୁମେମାନେ ସତ୍ୟବାନ । ୨୪. ଯଦି ଏହା କରି ନପାର ଏବଂ (ପ୍ରକୃତରେ) ତୁମେମାନେ କଦାପି କରିପାରିବ ନାହିଁ । ତେଣୁ ସେହି ନର୍କର ନିଆଁକୁ ଭୟ କର ଯାହା ନାସ୍ତିକମାନଙ୍କ ପାଇଁ ପ୍ରସ୍ତୁତ ହୋଇ ରହିଛି ଏବଂ ଯାହାର ଇନ୍ଧନ ହେବେ ମଣିଷ ଓ ପଥର ।

୨୫. ଯେଉଁମାନେ ବିଶ୍ୱାସ କଲେ ଏବଂ ଭଲ କର୍ମ କଲେ, ସେମାନଙ୍କୁ ଶୁଭସୂଚନା ଦିଅ ଯେ (ସ୍ୱର୍ଗରେ) ସେମାନଙ୍କ ପାଇଁ ଏଭଳି ଉଦ୍ୟାନ ଅଛି ଯାହା ତଳେ ଝରଣା ପ୍ରବାହିତ ହୁଏ । ଯେତେବେଳେ ସେମାନଙ୍କୁ ସେହି ଉଦ୍ୟାନଗୁଡ଼ିକର ଫଳ ଖାଇବାକୁ ଦିଆଯିବ, ସେମାନେ କହିବେ, "ଏହା ତ ସେହି ଫଳ ଯାହା ଆମକୁ ପୂର୍ବେ (ସଂସାରରେ) ଦିଆ ଯାଇଥିଲା" । ସେମାନଙ୍କୁ ସେହିପରି ଫଳ ଦିଆଯିବ । ସେଠାରେ ସେମାନଙ୍କୁ ପବିତ୍ର ଜୀବନସାଥୀ ମିଳିବେ ଏବଂ ସେମାନେ ସେଠାରେ ଚିରଦିନ ରହିବେ ।

୨୬. ମଶା ପରି ଛୋଟ ବା ତା' ଠାରୁ ଅଧିକ କ୍ଷୁଦ୍ର ଜୀବର ଉଦାହରଣ ଦେବାକୁ ଅଲ୍ଲାହ୍ ସଂକୋଚ କରନ୍ତିନାହିଁ। ଯେଉଁମାନେ (ଅଲ୍ଲାହଙ୍କୁ) ବିଶ୍ୱାସ କରନ୍ତି, ସେମାନେ ଜାଣନ୍ତି ଯେ ସେମାନଙ୍କ ପ୍ରଭୁ ଦେଇଥିବା ଉପମା ସଂପୂର୍ଣ୍ଣ ଠିକ୍, ମାତ୍ର ଅବିଶ୍ୱାସ କରୁଥିବା ଲୋକମାନେ କହନ୍ତି ଯେ ଏଭଳି ଉପମା ଦେଇ ଅଲ୍ଲାହ୍ କ'ଣ ଚାହାନ୍ତି ? ସେ ଏହାଦ୍ୱାରା ଅନେକ ଲୋକଙ୍କୁ ପଥଭ୍ରଷ୍ଟ କରନ୍ତି ଏବଂ ଅନେକ ଲୋକଙ୍କର ପଥପ୍ରଦର୍ଶନ ମଧ୍ୟ କରନ୍ତି, ମାତ୍ର ସେ ସେହିମାନଙ୍କୁ ପଥଭ୍ରଷ୍ଟ କରନ୍ତି, ଯେଉଁମାନେ ଅବଜ୍ଞାକାରୀ। ୨୭. ଯେଉଁମାନେ ଅଲ୍ଲାହଙ୍କୁ ଦୃଢ଼ ବଚନ ଦେଲାପରେ ଭାଙ୍ଗିଦିଅନ୍ତି ଏବଂ ଅଲ୍ଲାହ୍ ଯେଉଁ ସଂପର୍କକୁ ଯୋଡ଼ି ରଖିବାର ଆଦେଶ ଦେଇଛନ୍ତି ତାହାକୁ କାଟି ଦିଅନ୍ତି ଏବଂ ଦେଶରେ ଅଶାନ୍ତି ସୃଷ୍ଟି କରନ୍ତି, ସେମାନଙ୍କର ଭାରି କ୍ଷତି ହେବ।

୨୮. ତୁମେମାନେ କିପରି ଅଲ୍ଲାହଙ୍କୁ ଅବିଶ୍ୱାସ କରୁଛ ଅଥଚ ତୁମେମାନେ ନିଷ୍ପ୍ରାଣ ଥିଲ ଏବଂ ସେ ତୁମମାନଙ୍କ ମଧ୍ୟରେ ପ୍ରାଣସଂଚାର କଲେ। ଏହାପରେ ସେ ତୁମମାନଙ୍କୁ ମୃତ୍ୟୁ ଦେବେ ଏବଂ ପୁଣିଥରେ ଜୀବିତ କରିବେ ଏବଂ ତୁମେମାନେ ତାଙ୍କରି ପାଖକୁ ଫେରିଯିବ। ୨୯. ପୃଥିବୀପୃଷ୍ଠରେ ଯାହାକିଛି ଅଛି, ସେ ହିଁ ସେଗୁଡ଼ିକୁ ତୁମମାନଙ୍କ ପାଇଁ ସୃଷ୍ଟି କଲେ। ପୁଣି ସେ ଆକାଶ ପ୍ରତି ଧ୍ୟାନ ଦେଲେ ଏବଂ ନିଖୁଣ ଭାବରେ ସାତଗୋଟି ଆକାଶ ଗଢ଼ିଲେ। ସେ ସବୁକିଛି ଜାଣନ୍ତି।

୩୦. ଯେତେବେଳେ ତୁମ ଈଶ୍ୱର ଦେବଦୂତମାନଙ୍କୁ କହିଲେ ଯେ ମୁଁ ମର୍ତ୍ତ୍ୟରେ ଜଣେ ପ୍ରତିନିଧି ନିଯୁକ୍ତ କରିବି, ସେମାନେ କହିଲେ, "କ'ଣ ତୁମେ ମର୍ତ୍ତ୍ୟରେ ଏଭଳି ପ୍ରାଣୀ ସୃଷ୍ଟି କରିବ ଯିଏ ସେଠାରେ ଅଶାନ୍ତି ସୃଷ୍ଟି କରିବ ଏବଂ ରକ୍ତପାତ କରିବ ଅଥଚ ଆମେମାନେ ତ ତୁମର ସ୍ତୁତି ଓ ଗୁଣଗାନ କରୁଛୁ ଏବଂ ତୁମ ପବିତ୍ରତାର ଜପ କରୁଛୁ।" (ଈଶ୍ୱର) ଉତ୍ତର ଦେଲେ, "ମୁଁ ଯାହା ଜାଣେ, ତୁମେମାନେ ତାହା ଜାଣନାହିଁ।" ୩୧. ଅଲ୍ଲାହ୍ ଆଦମଙ୍କୁ ପ୍ରତ୍ୟେକ ବସ୍ତୁର ନାଁ ଶିଖାଇଦେଲେ ଏବଂ ସେଗୁଡ଼ିକୁ ଦେବଦୂତମାନଙ୍କୁ ଦେଖାଇ ସେମାନଙ୍କୁ ପଚାରିଲେ, "ଯଦି ତୁମେମାନେ ସତ କହୁଛ, ତେବେ ଏମାନଙ୍କର ନାଁ କୁହ।" ୩୨. ସେମାନେ କହିଲେ, ତୁମେ ପରମ ପବିତ୍ର। ଯାହା ତୁମେ ଆମକୁ ଶିଖାଇଛ, ତାହା ବ୍ୟତୀତ ଆମକୁ କିଛି ଜଣାନାହିଁ। ତୁମେ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ।" ୩୩. ସେ

କହିଲେ, "ହେ ଆଦମ! ଏମାନଙ୍କୁ ସେଗୁଡ଼ିକର ନାଁ କହିଦିଅ।" ପୁଣି ଯେତେବେଳେ ଆଦମ୍ ସେହି ନାଁଗୁଡ଼ିକ କହିଦେଲେ, ଅଲ୍ଲାହ୍ କହିଲେ, "କ'ଣ ମୁଁ ତୁମ୍ଭମାନଙ୍କୁ ଏହା କହି ନଥିଲି ଯେ ପୃଥିବୀ ଓ ଆକାଶର ସବୁ ରହସ୍ୟ ମୁଁ ଜାଣେ ଏବଂ ଯାହା ତୁମେ ପ୍ରକାଶ କର ବା ଗୋପନ ରଖ, ତାହା ମଧ୍ୟ ଜାଣେ ?"

୩୪. ଯେତେବେଳେ ଆମ୍ଭେ ଦେବଦୂତମାନଙ୍କୁ କହିଲୁ ଯେ ଆଦମଙ୍କୁ ପ୍ରଣାମ କର, ଇବ୍‌ଲିସ୍ ବ୍ୟତୀତ ସମସ୍ତେ ପ୍ରଣାମ କଲେ। ସେ ଅହଂକାରବଶତଃ ମନା କଲା ଏବଂ ନାସ୍ତିକ ହୋଇଗଲା।

୩୫. ଆମ୍ଭେ (ଆଦମଙ୍କୁ) କହିଲୁ, "ହେ ଆଦମ! ତୁମେ ଓ ତୁମ୍ଭ ପତ୍ନୀ ସ୍ୱର୍ଗର ଉଦ୍ୟାନରେ ରୁହ ଏବଂ ମନଇଚ୍ଛା ଯେଉଁଠାରୁ ଚାହଁ ଖିଆପିଆ କର, କିନ୍ତୁ ସେହି ଗଛ ନିକଟକୁ ଯିବନାହିଁ, ଅନ୍ୟଥା ତୁମେ ନିଜର ଅନିଷ୍ଟ କରିବ।" ୩୬. ପୁଣି ସେମାନେ ଯେଉଁଠି ଥିଲେ, ଶଇତାନ ସେମାନଙ୍କୁ ପ୍ରଲୋଭନ ଦେଇ ସେଠାରୁ ବାହାର କରିଦେଲା। ଆମ୍ଭେ କହିଲୁ, "ତୁମେ ସମସ୍ତେ ଏଠାରୁ ଓହ୍ଲାଇଯାଅ। ତୁମ୍ଭମାନଙ୍କ ମଧ୍ୟରୁ ଜଣେ ଅନ୍ୟ ଜଣକର ଶତ୍ରୁ ହେବ ଏବଂ ତୁମ୍ଭମାନଙ୍କର ବସବାସ କରିବା ପାଇଁ ପୃଥିବୀରେ ଏକ ନିର୍ଦ୍ଦିଷ୍ଟ ସମୟ ପାଇଁ ଜୀବନ ନିର୍ବାହ କରିବାର ବ୍ୟବସ୍ଥା କରାଯାଇଛି।"

୩୭. ଏହାପରେ ଆଦମ୍ ତାଙ୍କ ପ୍ରଭୁଙ୍କଠାରୁ କିଛି ମନ୍ତ୍ର ଶିଖିଲେ ଏବଂ (ତାଙ୍କୁ ପ୍ରାର୍ଥନା କରିବାରୁ) ସେ ତାଙ୍କ ପଶ୍ଚାତାପ ଗ୍ରହଣ କଲେ। ସେ ଅବଶ୍ୟ ପଶ୍ଚାତାପ ଗ୍ରହଣ କରନ୍ତି। ସେ ପରମ ଦୟାଳୁ। ୩୮. ଆମ୍ଭେ କହିଲୁ, "ତୁମେମାନେ ଏଠାରୁ ଓହ୍ଲାଇଯାଅ। ପୁଣି ଯେତେବେଳେ ତୁମ୍ଭମାନଙ୍କ ପାଖରେ ଆମ୍ଭର ଉପଦେଶ ପହଁଚିବ, ଯେଉଁମାନେ ଏହାକୁ ମାନିବେ ସେମାନଙ୍କ ପାଇଁ କୈାଣସି ଭୟ ନାହିଁ କିମ୍ବା ସେମାନେ ଦୁଃଖ ଭୋଗିବେ ନାହିଁ। ୩୯. ଯେଉଁମାନେ ନମାନିବେ କିମ୍ବା ଆମ୍ଭର ବାଣୀକୁ ମିଥ୍ୟା ବୋଲି କହିବେ, ସେମାନେ ନର୍କବାସୀ ହେବେ ଏବଂ ସେଠାରେ ସର୍ବଦା ରହିବେ।"

୪୦. ହେ ଇସ୍ରାଇଲଙ୍କ ବଂଶଧର, ତୁମ୍ଭମାନଙ୍କ ପ୍ରତି ମୁଁ କରିଥିବା ଉପକାରଗୁଡ଼ିକୁ ମନେ ପକାଅ ଏବଂ ମୋତେ ଦେଇଥିବା ପ୍ରତିଶ୍ରୁତି ପୂରଣ କର,

ତା’ହେଲେ ମୁଁ ତୁମମାନଙ୍କୁ ଦେଇଥିବା ପ୍ରତିଶ୍ରୁତି ପୂରଣ କରିବି ଏବଂ ମୋତେ ଭୟ କରୁଥାଅ । ୪୧. ଯେଉଁ ଗ୍ରନ୍ଥଟି ମୁଁ ପଠାଇଛି ତାହା ପ୍ରତି ବିଶ୍ୱାସ ରଖ, ଯାହା ତୁମମାନଙ୍କ ପାଖରେ ଥିବା ଗ୍ରନ୍ଥର ସମର୍ଥନ ମଧ୍ୟ କରେ । ତୁମେମାନେ ହିଁ ପ୍ରଥମେ ମନା କରିଦିଅନା । ମୋ’ ବାଣୀକୁ ସାମାନ୍ୟ ଲାଭ ପାଇଁ ବିକି ଦିଅନାହିଁ ଏବଂ ମୋତେ ଭୟ କରୁଥାଅ । ୪୨. ମିଛକୁ ସତ ସହିତ ମିଶାଅ ନାହିଁ ଏବଂ ଜାଣିଶୁଣି ସତକୁ ଲୁଚାଅ ନାହିଁ । ୪୩. ନମାଜ (ଅର୍ଥାତ୍ ଦୈନିକ ଉପାସନା) ସଂପାଦନ କର ଏବଂ ଜକାତ୍ (ଅର୍ଥାତ୍ ନିୟମିତ ଦାନ) ଦେଉଥାଅ ଏବଂ ଯେଉଁମାନେ ମୋ’ ଆଗରେ ନଇଁ ଯାଆନ୍ତି, ତୁମେମାନେ ମଧ୍ୟ ସେମାନଙ୍କ ସହିତ ମିଶି ନଇଁଯାଅ । ୪୪. କ’ଣ ତୁମେମାନେ ଲୋକଙ୍କୁ ଭଲ କର୍ମ କରିବାର ଉପଦେଶ ଦେଉଛ କିନ୍ତୁ ନିଜକୁ ଭୁଲିଯାଉଛ, ଅଥଚ ତୁମେମାନେ ଗ୍ରନ୍ଥପାଠ ମଧ୍ୟ କରୁଛ ? କ’ଣ ତୁମେମାନେ ଏତିକି ବୁଝି ପାରୁନାହଁ ?

୪୫. ଧୈର୍ଯ୍ୟ ଏବଂ ନମାଜ ମାଧ୍ୟମରେ ଆମ୍ଭର ସାହାଯ୍ୟ ଭିକ୍ଷା କର । ଏହା ଅବଶ୍ୟ ଏକ କଷ୍ଟକର କାର୍ଯ୍ୟ ମାତ୍ର (ଈଶ୍ୱରଙ୍କୁ) ଭୟ କରୁଥିବା ଲୋକମାନଙ୍କ ପାଇଁ ଏହା କଷ୍ଟକର ନୁହେଁ, ୪୬. ଯେଉଁମାନେ ଜାଣନ୍ତି ଯେ ସେମାନେ ଦିନେ ନିଜ ଈଶ୍ୱରଙ୍କ ସହିତ ସାକ୍ଷାତ କରିବେ ଏବଂ ତାଙ୍କ ପାଖକୁ ଫେରିବେ ।

୪୭. ହେ ଇସରାଇଲ୍‌ଙ୍କ ବଂଶଧର ! ମୁଁ ତୁମମାନଙ୍କ ପ୍ରତି କରିଥିବା ଉପକାରଗୁଡ଼ିକୁ ମନେପକାଅ । ମୁଁ ତୁମମାନଙ୍କୁ ବିଶ୍ୱବାସୀଙ୍କ ମଧ୍ୟରେ ଶ୍ରେଷ୍ଠତା ପ୍ରଦାନ କରିଥିଲି । ୪୮. ଏବଂ ସେହି ଦିନକୁ ଭୟ କର, ଯେଉଁଦିନ କେହି କାହାରି କାମରେ ଆସିବେନାହିଁ, କାହାରି ସୁପାରିଶ ଗ୍ରହଣ କରାଯିବ ନାହିଁ, କାହାରିଠାରୁ ମୁକ୍ତି ବଦଳରେ କୌଣସି ମୂଲ୍ୟ ନିଆଯିବ ନାହିଁ କିମ୍ବା ସେମାନଙ୍କୁ କୌଣସି ସାହାଯ୍ୟ ମିଳିବନାହିଁ ।

୪୯. (ସେ ସମୟର କଥା ସ୍ମରଣ କର) ଯେତେବେଳେ ଆମ୍ଭେ (ମିଶରର ଶାସକ) ଫିରଔନ୍‌ର ଅନୁଗତମାନଙ୍କ କବଳରୁ ତୁମମାନଙ୍କୁ ମୁକ୍ତି ଦେଇଥିଲୁ, ଯେଉଁମାନେ ତୁମମାନଙ୍କୁ କଠୋର ଯାତନା ଦେଉଥିଲେ । ସେମାନେ ତୁମ ପୁତ୍ରମାନଙ୍କୁ ହତ୍ୟା କରୁଥିଲେ ଓ କନ୍ୟାମାନଙ୍କୁ ଜୀବିତ ରଖୁଥିଲେ ଏବଂ

ଏହାଦ୍ୱାରା ଈଶ୍ୱର ତୁମମାନଙ୍କର ଏକ କଠିନ ପରୀକ୍ଷା ନେଇଥିଲେ । ୫୦. ସେତେବେଳେ ଆମ୍ଭେ ତୁମମାନଙ୍କ ପାଇଁ ସମୁଦ୍ରକୁ ଦୁଇଭାଗ କରି ତୁମମାନଙ୍କୁ ଉଦ୍ଧାର କରିଥିଲୁ ଏବଂ ତୁମମାନଙ୍କ ଆଖି ସାମନାରେ ଫିରଔନର ଲୋକମାନଙ୍କୁ ବୁଡ଼ାଇ ଦେଇଥିଲୁ । ୫୧. ଏବଂ (ସେ ସମୟର ଘଟଣା ମଧ୍ୟ) ଯେତେବେଳେ ଆମ୍ଭେ ମୁ'ସାଙ୍କୁ ଚାଳିଶ ରାତି ପାଇଁ (ସିନାଇ ପାହାଡ଼ ଉପରକୁ) ଡାକିଥିଲୁ, କିନ୍ତୁ ତାଙ୍କ ଅନୁପସ୍ଥିତିରେ ତୁମେମାନେ ବାଛୁରୀକୁ ଆରାଧ୍ୟ ମାନି ନେଇଥିଲ । ତୁମେମାନେ ଘୋର ଅନ୍ୟାୟ କରିଥିଲ । ୫୨. ଏହାପରେ ମଧ୍ୟ ଆମ୍ଭେ ତୁମମାନଙ୍କୁ ଏଇଥିପାଇଁ କ୍ଷମା କରିଥିଲୁ ଯେ ତୁମେମାନେ କୃତଜ୍ଞ ହେବ । ୫୩. ତୁମେମାନେ ଠିକ୍ ବାଟ ପାଇବ ବୋଲି ଆମ୍ଭେ ମୁ'ସାଙ୍କୁ ଗ୍ରନ୍ଥ ଏବଂ ଠିକ୍ ଓ ଭୁଲ୍ ମଧ୍ୟରେ ପ୍ରଭେଦ କରିବାର ମାନଦଣ୍ଡ ଦେଇଥିଲୁ ।

୫୪. ଯେତେବେଳେ ମୁ'ସା (ଅର୍ଥାତ୍ ମୋସେସ୍) ତାଙ୍କ ସମାଜକୁ କହିଲେ, "ଭାଇମାନେ ! ଗୋଟିଏ ବାଛୁରୀର ପୂଜା କରି ତୁମେମାନେ ନିଜର ଅନିଷ୍ଟ କରିଛ । ଏବେ ନିଜ ସ୍ରଷ୍ଟାଙ୍କ ପାଖରେ ଅନୁତାପ କର ଏବଂ (ତୁମମାନଙ୍କ ମଧ୍ୟରେ ଥିବା) ଦୋଷୀମାନଙ୍କୁ ହତ୍ୟା କର । ଏହାହିଁ ତୁମ ପ୍ରଭୁଙ୍କ ଦୃଷ୍ଟିରେ ତୁମମାନଙ୍କ ପାଇଁ ମଂଗଳକର ।" ପୁଣି ଅଲ୍ଲାହ୍ ତୁମମାନଙ୍କର ପଶ୍ଚାତାପ ଗ୍ରହଣ କରିଥିଲେ । ସେ ଅତ୍ୟନ୍ତ କ୍ଷମାଶୀଳ ଏବଂ କରୁଣାମୟ ।

୫୫. (ଏହା ମଧ୍ୟ ସ୍ମରଣ କର) ଯେତେବେଳେ ତୁମେମାନେ କହିଥିଲ ଯେ ହେ ମୁ'ସା, ଯେପର୍ଯ୍ୟନ୍ତ ଆମେ ନିଜ ଆଖିରେ ଅଲ୍ଲାହଙ୍କୁ ନଦେଖିଛୁ ତୁମ କଥାରେ କଦାପି ବିଶ୍ୱାସ କରିବୁନାହିଁ, ସେତେବେଳେ ତୁମମାନଙ୍କ ଆଖି ସାମନାରେ ତୁମମାନଙ୍କ ଉପରେ ବଜ୍ରପାତ ହୋଇଥିଲା । ୫୬. ଏହାପରେ ତୁମେମାନେ କୃତଜ୍ଞ ହେବ ବୋଲି ଆମ୍ଭେ ତୁମମାନଙ୍କୁ ମୃତ୍ୟୁ ପରେ ପୁନର୍ବାର ଜୀବଦାନ କରିଥିଲୁ ।

୫୭. ଆମ୍ଭେ ତୁମମାନଙ୍କ ଉପରେ ବାଦଲ ଦ୍ୱାରା ଛାୟା କରିଥିଲୁ ଏବଂ ତୁମମାନଙ୍କ ପାଇଁ ମନ୍ନ ଓ ସଲ୍ୱା ପଠାଇ ନିର୍ଦ୍ଦେଶ ଦେଇଥିଲୁ ଯେ ଯାହା ଭଲଭଲ ଖାଦ୍ୟ ଦିଆଯାଇଛି ତାହା ଖାଅ । ସେମାନେ ଆମ୍ଭର କୌଣସି କ୍ଷତି କଲେନାହିଁ ବରଂ ନିଜର କ୍ଷତି କଲେ । ୫୮. ଯେତେବେଳେ ଆମ୍ଭେ କହିଥିଲୁ, "ଏହି ସହରକୁ ଯାଅ

ଏବଂ ସେଠାରେ ଯାହାଇଚ୍ଛା ଖିଆପିଆ କର ଏବଂ ସହର ଦ୍ୱାରରେ ମୁଣ୍ଡ ନୁଆଁଇ ପ୍ରବେଶ କରି କୁହ, "ହେ ପ୍ରଭୁ! ଆମକୁ କ୍ଷମା କରିଦିଅ ।" ତା'ହେଲେ ଆମ୍ଭେ ତୁମମାନଙ୍କର ଦୋଷ କ୍ଷମା କରିଦେବୁ ଏବଂ ପୁଣ୍ୟବାନ ଲୋକମାନଙ୍କୁ ଅଧିକ (ପୁରସ୍କାର) ଦେବୁ ।" ୫୯. କିନ୍ତୁ ଭ୍ରଷ୍ଟାଚାରୀମାନେ କୁହା ଯାଇଥିବା କଥାକୁ ପରିବର୍ତ୍ତନ କରି ଭିନ୍ନ କଥା କହିଲେ । ଯେହେତୁ ସେମାନେ (ବାରମ୍ବାର) ଅବଜ୍ଞା କରୁଥିଲେ, ଆମ୍ଭେ ସେହି ଦୁଷ୍ଟମାନଙ୍କ ପାଇଁ ଆକାଶରୁ ଶାସ୍ତି ପଠାଇଥିଲୁ ।

୬୦. ଯେତେବେଳେ ମୁ'ସା (ଅର୍ଥାତ୍ ମୋସେସ୍) ନିଜ ସଂପ୍ରଦାୟ ପାଇଁ ପାଣି ମାଗିଲେ, ଆମ୍ଭେ କହିଲୁ ଯେ ନିଜ ବାଡ଼ି ଦ୍ୱାରା ପଥରର ଚଟାଣକୁ ଆଘାତ କର । ପୁଣି ସେଥିରୁ ବାରଗୋଟି ପାଣି ଝର ସୃଷ୍ଟି ହେଲା ଏବଂ ସମସ୍ତେ ନିଜନିଜର ଝର ଦେଖିନେଲେ । (ଆମ୍ଭେ କହିଲୁ) "ଅଲ୍ଲାହ୍ ଯାହା ଆହାର ଦେଇଛନ୍ତି ତାହା ଖାଅ ଏବଂ ପିଅ କିନ୍ତୁ ଦେଶରେ ଅଶାନ୍ତି ସୃଷ୍ଟି କରନାହିଁ ।"

୬୧. ଯେତେବେଳେ ତୁମେମାନେ କହିଥିଲ, "ହେ ମୁ'ସା! କେବଳ ଗୋଟିଏ ପ୍ରକାରର ଖାଦ୍ୟରେ ଆମେ ଆଦୌ ସନ୍ତୁଷ୍ଟ ରହିପାରିବୁ ନାହିଁ । ନିଜ ଈଶ୍ୱରଙ୍କୁ ପ୍ରାର୍ଥନା କର ଯେ ସେ ଆମପାଇଁ ଶାଗ, କାକୁଡ଼ି, ଗହମ, ମସୁର ଡାଲି ଓ ପିଆଜ ଆଦି ଭୂମିଜ ଦ୍ରବ୍ୟ ଉତ୍ପନ୍ନ କରିବେ । ମୁ'ସା କହିଲେ, "ତୁମେମାନେ ଉତ୍କୃଷ୍ଟ ଜିନିଷ ଛାଡ଼ି ନିକୃଷ୍ଟ ଜିନିଷ ନେବାକୁ କାହିଁକି ଚାହୁଁଛ ? କୌଣସି ସହରକୁ ଚାଲିଯାଅ, ତୁମେମାନେ ଯାହା ଚାହୁଁଛ ତାହା ମିଳିଯିବ ।" (ଶେଷରେ) ସେମାନଙ୍କ ଉପରେ ଦାରିଦ୍ର୍ୟ ଓ ଲାଂଛନା ଲଦି ଦିଆଗଲା ଏବଂ ସେମାନେ ଅଲ୍ଲାହଙ୍କ ଆକ୍ରୋଶର ଶିକାର ହେଲେ କାରଣ ସେମାନେ ଅଲ୍ଲାହଙ୍କ ନିଦର୍ଶନଗୁଡ଼ିକୁ ମାନୁ ନଥିଲେ ଏବଂ ବାର୍ତ୍ତାବହମାନଙ୍କୁ ଅନ୍ୟାୟରେ ହତ୍ୟା କରୁଥିଲେ । ଏହା ସେମାନଙ୍କ ଅବାଧ୍ୟତା ଓ ସୀମାଲଂଘନର ଫଳ ।

୬୨. ମୁସଲମାନ ହୁଅନ୍ତୁ ବା ୟହୂଦୀ, ଖ୍ରୀଷ୍ଟିୟାନ କିମ୍ବା ସା'ବୀ ହୁଅନ୍ତୁ, (ଅର୍ଥାତ୍ ଯେକୌଣସି ଧର୍ମାବଲମ୍ବୀ ହୁଅନ୍ତୁ), ଯିଏ ଅଲ୍ଲାହ୍‌ଙ୍କୁ ଓ ପରଲୋକକୁ ବିଶ୍ୱାସ କରିବ ଏବଂ ଭଲ କର୍ମ କରିବ, ଏଭଳି ଲୋକଙ୍କ ପାଇଁ ସେମାନଙ୍କ ପାଳନକର୍ତ୍ତାଙ୍କ ପାଖରେ ଭଲ ପୁରସ୍କାର ଅଛି । ସେମାନଙ୍କର କୌଣସି ଭୟ ନାହିଁ କିମ୍ବା ସେମାନେ ଦୁଃଖ ଭୋଗିବେ ନାହିଁ ।

୬୩. (ହେ ଇସ୍ରାଇଲଙ୍କ ବଂଶଧର!) ଯେତେବେଳେ ଆମ୍ଭେ ତୁମମାନଙ୍କଠାରୁ (ତୌରାତ୍ ଗ୍ରନ୍ଥକୁ ମାନି ଚଳିବାର) ପ୍ରତିଶ୍ରୁତି ନେଇଥିଲୁ ଏବଂ ତୁମମାନଙ୍କ ଉପରେ ତୂର୍ ପାହାଡ଼କୁ ଉଠାଇ ରଖି ଆଦେଶ ଦେଇଥିଲୁ ଯେ ଯେଉଁ ଗ୍ରନ୍ଥଟି ଆମ୍ଭେ ଦେଇଛୁ ତାକୁ ଦୃଢ଼ ଭାବରେ ଧରିଥାଅ ଏବଂ ସେଥିରେ ଯାହା କୁହାଯାଇଛି ସେଗୁଡ଼ିକୁ ମନେରଖ ଯାହାଫଳରେ ତୁମେମାନେ ସଦାଚାରୀ ହେବ, ୬୪. ମାତ୍ର ତୁମେମାନେ (ନିଜ କଥାରୁ) ଓହରିଗଲ। ଯଦି ତୁମମାନଙ୍କ ପ୍ରତି ଅଲ୍ଲାହ୍‌ଙ୍କ କୃପା ଓ କରୁଣା ନଥାଆନ୍ତା, ତୁମେମାନେ ନିଶ୍ଚୟ କ୍ଷତିଗ୍ରସ୍ତ ହୋଇଥାଆନ୍ତ।

୬୫. ଯେଉଁମାନେ ଶନିବାର ଦିନ (ମାଛ ଧରିବା) ସଂକ୍ରାନ୍ତରେ ନିୟମ ଉଲ୍ଲଂଘନ କରିଥିଲେ, ସେମାନଙ୍କ ଅବସ୍ଥା ତୁମେ ଜାଣ। ଆମ୍ଭେ ସେମାନଙ୍କୁ ଅଭିଶାପ ଦେଇଥିଲୁ, “ବାନର ହୋଇ ଲାଂଛିତ ଅବସ୍ଥାରେ ରହିଥାଅ।” ୬୬. ପୁଣି ଆମ୍ଭେ ସେହି ଘଟଣାଟିକୁ ତତ୍କାଳୀନ ସମାଜ ଓ ପରବର୍ତ୍ତୀ ସମାଜ ପାଇଁ ଏକ ଦୃଷ୍ଟାନ୍ତ କରିଦେଲୁ। ଅଲ୍ଲାହଙ୍କୁ ଭୟ କରୁଥିବା ଲୋକମାନଙ୍କ ପାଇଁ ଏହା ଏକ ଶିକ୍ଷଣୀୟ କଥା।

୬୭. ଯେତେବେଳେ ମୁ’ସା ତାଙ୍କ ଲୋକମାନଙ୍କୁ କହିଲେ “ଅଲ୍ଲାହ୍ ତୁମମାନଙ୍କୁ ବଳି ରୂପେ ଗୋଟିଏ ଗାଈ ଉତ୍ସର୍ଗ କରିବାର ଆଦେଶ ଦେଉଛନ୍ତି”, ସେମାନେ କହିଲେ, “କ’ଣ ତୁମେ ଆମ ସହିତ ଥଟ୍ଟା କରୁଛ?” ମୁ’ସା କହିଲେ, “ଏଭଳି ନିର୍ବୋଧତାରୁ ମୁଁ ଅଲ୍ଲାହଙ୍କର ଶରଣ ମାଗୁଛି।” ୬୮. ସେମାନେ କହିଲେ, “ନିଜ ଈଶ୍ୱରଙ୍କୁ ପ୍ରାର୍ଥନା କର ଯେ ସେ ଆମକୁ ସେହି ଗାଈ ବିଷୟରେ ବିସ୍ତୃତ ଭାବରେ ଜଣାନ୍ତୁ।” ମୁ’ସା କହିଲେ, “ଅଲ୍ଲାହ୍ କହୁଛନ୍ତି ଯେ ସେ ଗାଈଟି ବୁଢ଼ୀ ହୋଇ ନଥିବ ବା ବାଛୁରୀ ହୋଇ ନଥିବ, ବରଂ ମଧ୍ୟମ ବୟସର ହୋଇଥିବ। ଏବେ ଯାହା ଆଦେଶ ଦିଆ ଯାଉଛି ତାହା ପାଳନ କର।” ୬୯. ସେମାନେ ପୁଣି କହିଲେ, “ନିଜ ଈଶ୍ୱରଙ୍କୁ ପଚାର, ସେ ଆମକୁ ଏହା ଜଣାନ୍ତୁ ଯେ ସେହି ଗାଈର ରଙ୍ଗ କିପରି ହେବା ଉଚିତ।” ମୁ’ସା କହିଲେ, “ଅଲ୍ଲାହ୍ କହୁଛନ୍ତି ଯେ ସେ ଗାଈଟି ଗାଢ଼ ପୀତ ବର୍ଣ୍ଣର ହୋଇଥିବ ଏବଂ ଦେଖଣାହାରୀଙ୍କୁ ମଧ୍ୟ ଭଲ ଲାଗୁଥିବ।” ୭୦. ସେମାନେ କହିଲେ, “ଈଶ୍ୱରଙ୍କୁ କୁହ, ସେ ଆମକୁ ଜଣାନ୍ତୁ ଯେ ସେ ଗାଈଟି ଅବିକଳ କିପରି ହେବା ଦରକାର  କାରଣ ସବୁ ଗାଈଗୁଡ଼ିକ ଆମକୁ ଏକାପରି

ଦିଶୁଛନ୍ତି । ଅଲ୍ଲାହ୍ ଚାହିଁଲେ ଆମେ ଠିକ୍ ବାଟ ପାଇଯିବୁ ।” ୭୧. ମୁ’ସା କହିଲେ, “ଅଲ୍ଲାହ୍ କହୁଛନ୍ତି ଯେ ସେ ଗାଈଟି କୌଣସି କାର୍ଯ୍ୟରେ ଲାଗି ନଥିବ, ଯୁଆଳିରେ ବନ୍ଧା ହୋଇ ଜମିରେ ହଳ କରି ନଥିବ ବା ବିଲରେ ପାଣି ମଡ଼ାଇ ନଥିବ, ହୃଷ୍ଟପୃଷ୍ଟ ହୋଇଥିବ ଏବଂ ସେ ଗାଈରେ କୌଣସି ଦୋଷ ନଥିବ । ସେମାନେ କହିଲେ, “ଏବେ ତୁମେ ଠିକ୍ କହିଛ ।” ପୁଣି ସେମାନେ ତାକୁ ବଳି ରୂପେ ଉତ୍ସର୍ଗ କଲେ, ଯଦିଓ ସେମାନେ ଏହା କରିବେ ବୋଲି ଲାଗୁ ନଥିଲା ।

୭୨. (ଏହା ମଧ୍ୟ ସ୍ମରଣ କର) ଯେତେବେଳେ ତୁମେମାନେ ଜଣେ ବ୍ୟକ୍ତିକୁ ହତ୍ୟା କରିଦେଲ ଏବଂ ଏବିଷୟରେ ପରସ୍ପର ମଧ୍ୟରେ ବିବାଦ କଲ ଅଥଚ ତୁମେମାନେ ଯାହା ଗୋପନ ରଖିଥିଲ, ଅଲ୍ଲାହ୍ ତାହା ପ୍ରକାଶ କରିବାକୁ ଚାହୁଁଥିଲେ । ୭୩. ତେଣୁ ଆମ୍ଭେ ଆଜ୍ଞା ଦେଲୁ, “ସେହି ଗାଈର ଖଣ୍ଡେ ମାଂସ ନେଇ ସେହି ମୃତ ବ୍ୟକ୍ତିକୁ ଛୁଆଁଇଦିଅ (ସେ ଜୀବିତ ହୋଇ ଉଠିବ)” । ଅଲ୍ଲାହ୍ ଏହିଭଳି ମୃତମାନଙ୍କୁ ଜୀବିତ କରନ୍ତି ଏବଂ ନିଜର ନିଦର୍ଶନ ଦେଖାଇ ଥାଆନ୍ତି, ଯେପରିକି ତୁମେମାନେ ବୁଝିପାରିବ । ୭୪. ଏହାପରେ ପୁଣି ତୁମମାନଙ୍କ ହୃଦୟ ଶକ୍ତ ହୋଇଗଲା, ପଥର ପରି ବା ତା’ ଠାରୁ ଆହୁରି ଶକ୍ତ । ଅନେକ ପଥରରୁ ଝର ବାହାରେ ଏବଂ ଅନେକ ପଥର ଫାଟିଯାଏ ଏବଂ ସେଥିରୁ ପାଣି ବାହାରି ଆସେ । ଏଭଳି ପଥର ମଧ୍ୟ ଥାଏ, ଯାହା ଅଲ୍ଲାହଙ୍କ ଭୟରେ ଖସିପଡ଼େ । ଅଲ୍ଲାହ୍ ତୁମମାନଙ୍କ କାର୍ଯ୍ୟକଳାପ ସଂପର୍କରେ ଅନଭିଜ୍ଞ ନୁହନ୍ତି ।

୭୫. (ହେ ମୁସଲମାନମାନେ!) କ’ଣ ତୁମେମାନେ ଆଶା କରୁଛ ଯେ ସେମାନେ ତୁମ କଥାରେ ବିଶ୍ୱାସ କରିନେବେ? ସେମାନଙ୍କ ମଧ୍ୟରେ କିଛି ଲୋକ ଅଛନ୍ତି, ଯେଉଁମାନେ ଅଲ୍ଲାହଙ୍କ ବାଣୀ ଶୁଣନ୍ତି ଏବଂ ବୁଝିସାରିବା ପରେ ଜାଣିଶୁଣି ସେଥିରେ ପରିବର୍ତ୍ତନ କରିଦିଅନ୍ତି । ୭୬. ଯେତେବେଳେ ସେମାନେ ମୁସଲମାନମାନଙ୍କ ସହିତ ଦେଖା କରନ୍ତି, ସେମାନଙ୍କୁ କହନ୍ତି ଯେ ଆମେ ମଧ୍ୟ ବିଶ୍ୱାସ କରୁଛୁ କିନ୍ତୁ ଏକାନ୍ତରେ ପରସ୍ପର ସହିତ କଥାବାର୍ତ୍ତା ହେଲାବେଳେ କହନ୍ତି “କ’ଣ ତୁମେମାନେ ମୁସଲମାନମାନଙ୍କୁ ସେହି ସତ୍ୟ ବିଷୟରେ କହିଦେଉଛ ଯାହା ଅଲ୍ଲାହ୍ (ତୌରାତ ଗ୍ରନ୍ଥରେ) ଆମ ପାଖରେ ପ୍ରକାଶ କରିଛନ୍ତି? ଏହା କଲେ,

ସେମାନେ ଈଶ୍ୱରଙ୍କ ପାଖରେ ଏହାକୁ ଆମମାନଙ୍କ ବିରୁଦ୍ଧରେ ପ୍ରମାଣ ରୂପେ ଉପସ୍ଥାପନ କରିବେ । କ'ଣ ତୁମେମାନେ ଏତିକି ବୁଝି ପାରୁନାହଁ ?" ୭୭. କ'ଣ ସେମାନଙ୍କୁ ଏହା ଜଣାନାହିଁ ଯେ ଯାହା ସେମାନେ ଲୁଚାଇ ରଖନ୍ତି ବା ଯାହା ପ୍ରକାଶ କରନ୍ତି, ଅଲ୍ଲାହ୍ ସବୁ ଜାଣନ୍ତି ?

୭୮. ସେମାନଙ୍କ ମଧ୍ୟରେ କେତେକ ନିରକ୍ଷର ଅଛନ୍ତି, ଯେଉଁମାନଙ୍କର କିଛି କଳ୍ପିତ ଧାରଣା ବ୍ୟତୀତ ନିଜ ଗ୍ରନ୍ଥ ସଂପର୍କରେ କୌଣସି ଜ୍ଞାନ ନାହିଁ । ସେମାନେ କେବଳ ଅନୁମାନ ଉପରେ ନିର୍ଭର କରନ୍ତି । ୭୯. ସର୍ବନାଶ ହେବ ସେମାନଙ୍କର ଯେଉଁମାନେ ସାମାନ୍ୟ ଲାଭ ପାଇଁ ନିଜ ହାତରେ ଗ୍ରନ୍ଥ ଲେଖନ୍ତି ଆଉ କହନ୍ତି ଯେ ଏହା ଅଲ୍ଲାହଙ୍କଠାରୁ ଆସିଛି । ଯେଉଁ ହାତ ଦ୍ୱାରା ସେମାନେ ଲେଖିଛନ୍ତି ଏବଂ ଯାହା ସେଥିରୁ ଅର୍ଜନ କରିଛନ୍ତି ତାହା ସେମାନଙ୍କର ସର୍ବନାଶର କାରଣ ହେବ । ୮୦. ସେମାନେ କହୁଛନ୍ତି ଯେ ଆମେ ମାତ୍ର ଅଳ୍ପ କିଛିଦିନ ନର୍କରେ ରହିବୁ । ସେମାନଙ୍କୁ ପଚାର, "ତୁମେମାନେ କ'ଣ ଅଲ୍ଲାହଙ୍କଠାରୁ କୌଣସି ପ୍ରତିଶ୍ରୁତି ନେଇଛ ଯାହାର ସେ ବିରୁଦ୍ଧାଚରଣ କରିବେନାହିଁ ବା ତୁମେମାନେ ଅଲ୍ଲାହଙ୍କ ବିଷୟରେ ଏମିତି କଥା କହୁଛ ଯାହାର ବାସ୍ତବତା ତୁମମାନଙ୍କୁ ଜଣାନାହିଁ ?" ୮୧. ପ୍ରକୃତରେ ଯିଏ ପାପ କରେ ଏବଂ ତା' ପାପ ତାକୁ ଚାରିଆଡୁ ଘେରିନିଏ ଏବଂ ଏହିଭଳି ଲୋକମାନେ ନର୍କଗାମୀ ହେବେ ଏବଂ ସେଠାରେ ସର୍ବଦା ରହିବେ । ୮୨. ଯେଉଁମାନେ (ଅଲ୍ଲାହଙ୍କୁ) ବିଶ୍ୱାସ କରନ୍ତି ଏବଂ ଭଲକର୍ମ କରନ୍ତି, ସେମାନେ ସ୍ୱର୍ଗରେ ବାସ କରିବେ ଏବଂ ସେଠାରେ ସର୍ବଦା ରହିବେ ।

୮୩. ଯେତେବେଳେ ଆମ୍ଭେ ଇସରାଇଲଙ୍କ ବଂଶଜଙ୍କଠାରୁ ବଚନ ନେଇଥିଲୁ, "ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ଉପାସନା କରିବନାହିଁ, ପିତାମାତା, ଆତ୍ମୀୟସ୍ୱଜନ, ଅନାଥ ଏବଂ ଦରିଦ୍ରମାନଙ୍କ ସହିତ ଭଲ ବ୍ୟବହାର କରିବ, ଲୋକମାନଙ୍କ ସହିତ ଭଲ ଭାବରେ କଥାବାର୍ତ୍ତା କରିବ, ନମାଜ ସଂପାଦନ କରିବ ଏବଂ ଜକାତ୍ ଦେବ", ମାତ୍ର ଅଳ୍ପ କେତେକଙ୍କ ବ୍ୟତୀତ ତୁମେ ସମସ୍ତେ ବଚନ ଭଙ୍ଗ କଲ ଏବଂ ମୁହଁ ଫେରାଇ ନେଲ । ୮୪. ଯେତେବେଳେ ଆମ୍ଭେ ତୁମମାନଙ୍କଠାରୁ ବଚନ ନେଇଥିଲୁ ଯେ ତୁମେ ପରସ୍ପର ମଧ୍ୟରେ ରକ୍ତପାତ କରିବ

ନାହିଁ ଏବଂ ପରସ୍ପରକୁ ଜନ୍ମମାଟିରୁ ବାହାର କରିବନାହିଁ, ସେତେବେଳେ ତୁମେମାନେ ଏହାକୁ ସ୍ୱୀକାର କରିଥିଲ ଏବଂ ତୁମେମାନେ ଏହାର ସାକ୍ଷୀ ରହିଛ । ୮୫. ଏହାସତ୍ତ୍ୱେ ପୁଣି ତୁମେମାନେ ପରସ୍ପରକୁ ହତ୍ୟା କରୁଛ ଏବଂ ନିଜ ଗୋଷ୍ଠୀର ଲୋକଙ୍କୁ ସେମାନଙ୍କ ଘରୁ ତଡ଼ି ଦେଉଛ, ଅନ୍ୟାୟ-ଅତ୍ୟାଚାର କରି ସେମାନଙ୍କ ବିରୁଦ୍ଧରେ ଗଠବନ୍ଧନ କରୁଛ ଏବଂ ଯେତେବେଳେ ସେମାନେ ଯୁଦ୍ଧବନ୍ଦୀ ରୂପେ ତୁମ ପାଖକୁ ଆସୁଛନ୍ତି, ମୁକ୍ତିମୂଲ୍ୟ ଦେଇ ସେମାନଙ୍କୁ ମୁକ୍ତ ମଧ୍ୟ କରି ଦେଉଛ । ଅଥଚ ସେମାନଙ୍କୁ ଘରୁ ତଡ଼ିଦେବା ହିଁ ତୁମମାନଙ୍କ ପାଇଁ ଅବୈଧ ଥିଲା । କ'ଣ ତୁମେମାନେ (ଅଲ୍ଲାହଙ୍କ) ଗ୍ରନ୍ଥର ଗୋଟିଏ ଭାଗକୁ ବିଶ୍ୱାସ କରୁଛ ଏବଂ ଅନ୍ୟ ଭାଗକୁ ଅବିଶ୍ୱାସ କରୁଛ ? ତୁମମାନଙ୍କ ମଧ୍ୟରୁ ଯେଉଁମାନେ ଏଭଳି କରନ୍ତି, ସେମାନଙ୍କର ଶାସ୍ତି ଇହଲୋକରେ ଲାଂଛନା ଓ ପରଲୋକରେ କଠୋର ଯାତନା ବ୍ୟତୀତ ଆଉ କ'ଣ ହୋଇପାରେ ? ଅଲ୍ଲାହ୍ ତୁମମାନଙ୍କ କାର୍ଯ୍ୟକଳାପ ସଂପର୍କରେ ଅନଭିଜ୍ଞ ନୁହନ୍ତି । ୮୬. ଏହିମାନେ ପରଲୋକ ବିନିମୟରେ ପାର୍ଥିବ ଜୀବନକୁ କିଣି ନେଇଛନ୍ତି, ସୁତରାଂ ସେମାନଙ୍କର ଦଣ୍ଡ କୋହଳ ହେବନାହିଁ ବା ସେମାନଙ୍କୁ କୌଣସି ସାହାଯ୍ୟ ମିଳିବନାହିଁ ।

୮୭. ଆମ୍ଭେ ମୁ'ସାଙ୍କୁ ଗ୍ରନ୍ଥ ପ୍ରଦାନ କଲୁ ଏବଂ ତାଙ୍କ ପରେ, ଜଣକ ପରେ ଜଣେ ପ୍ରତିନିଧି ପଠାଇଲୁ ଏବଂ ମରୟମଙ୍କ ପୁତ୍ର ଈସାଙ୍କୁ (ଅର୍ଥାତ୍ ଯୀଶୁଙ୍କୁ) ସ୍ପଷ୍ଟ ଚମତ୍କାର ଦେଲୁ ଏବଂ ପବିତ୍ର ଅତ୍ମାଙ୍କ ଦ୍ୱାରା (ଅର୍ଥାତ୍ ଜିବ୍ରାଇଲଙ୍କ ଦ୍ୱାରା) ତାଙ୍କର ସହାୟତା କଲୁ । ମାତ୍ର ଯେତେବେଳେ କୌଣସି ଈଶ୍ୱରଦୂତ ଏଭଳି ଶିକ୍ଷା ନେଇ ଗଲେ ଯାହା ତୁମମାନଙ୍କର ଇଚ୍ଛାବିରୁଦ୍ଧ ଥିଲା, ତୁମମାନଙ୍କର ଅହଙ୍କାର ବଢ଼ିଗଲା । ତୁମେମାନେ କେତେକଙ୍କୁ ମିଥ୍ୟାବାଦୀ କହିଲ ଏବଂ ଆଉ କେତେକଙ୍କୁ ହତ୍ୟା କରିଦେଲ । ୮୮. ସେମାନେ କହନ୍ତି ଯେ ଆମ ହୃଦୟର ଦ୍ୱାର ବନ୍ଦ ଅଛି । ନା, ବରଂ ସେମାନଙ୍କ ଅବିଶ୍ୱାସ ଯୋଗୁଁ ସେମାନଙ୍କ ଉପରେ ଅଲ୍ଲାହଙ୍କର ଅଭିଶାପ ପଡ଼ିଛି । ତେଣୁ, ସେମାନେ କ୍ୱଚିତ ବିଶ୍ୱାସ କରନ୍ତି । ୮୯. ଯେତେବେଳେ ସେମାନଙ୍କ ପାଖରେ ଥିବା ଗ୍ରନ୍ଥର ସମର୍ଥନ କରି ଅଲ୍ଲାହଙ୍କଠାରୁ ଆଉ ଏକ ଗ୍ରନ୍ଥ (ଅର୍ଥାତ୍ କୁରଆନ) ଆସିଲା, ଯଦିଓ ସେମାନେ (ଏହି ଗ୍ରନ୍ଥ ଜରିଆରେ) ନାସ୍ତିକମାନଙ୍କ ବିରୁଦ୍ଧରେ ବିଜୟ ଭିକ୍ଷା କରୁଥିଲେ, କିନ୍ତୁ ଗ୍ରନ୍ଥଟି ଆସିଗଲା ପରେ

ଏହାକୁ ଚିହ୍ନିବା ସତ୍ତ୍ୱେ ଅସ୍ୱୀକାର କରିଦେଲେ । ନାସ୍ତିକମାନଙ୍କୁ ଅଲ୍ଲାହଙ୍କର ଧିକ୍କାର । ୯୦. ସେମାନେ ଅତି ତୁଚ୍ଛ ଫାଇଦା ପାଇଁ ନିଜକୁ ବିକିଦେଲେ । ସେମାନେ (ଅର୍ଥାତ୍ ଇହୁଦୀମାନେ) ଅଲ୍ଲାହଙ୍କ ଗ୍ରନ୍ଥକୁ ଈର୍ଷାପରାୟଣ ହୋଇ ଏହି କାରଣରୁ ମାନୁନାହାନ୍ତି ଯେ ଅଲ୍ଲାହ୍ ତାଙ୍କ ଭକ୍ତମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା କଲେ, ତାକୁ (ରସୁଲ ରୂପେ) ମନୋନିତ କରିନେଲେ । ସେମାନେ ବାରମ୍ବାର ଅଲ୍ଲାହଙ୍କ ଆକ୍ରୋଶର ଶିକାର ହେଲେ । ଏଭଳି ନାସ୍ତିକମାନଙ୍କୁ ଅପମାନଜନକ ଶାସ୍ତି ମିଳିବ ।

୯୧. ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଅଲ୍ଲାହ୍ ଯେଉଁ ଗ୍ରନ୍ଥ ପଠାଇଛନ୍ତି ତାହାକୁ ମାନିନିଅ, ସେମାନେ କହନ୍ତି, "ଆମେ କେବଳ ସେହି ଗ୍ରନ୍ଥକୁ ମାନୁଛୁ ଯାହା ଆମପାଖକୁ ପଠା ଯାଇଥିଲା ।" ସେମାନେ ଏହାର ପରବର୍ତ୍ତୀ ଗ୍ରନ୍ଥକୁ ମାନୁନାହାନ୍ତି, ଅଥଚ ଏହା ସତ୍ୟ ଏବଂ ଏହା ସେମାନଙ୍କ ପାଖରେ ଥିବା ଗ୍ରନ୍ଥର ସମର୍ଥନ କରେ । ସେମାନଙ୍କୁ ପଚାର, "ଯଦି ତୁମେମାନେ ପ୍ରକୃତରେ (ପୂର୍ବ ଗ୍ରନ୍ଥଗୁଡ଼ିକୁ) ବିଶ୍ୱାସ କରୁଥିଲ, ତେବେ ଅଲ୍ଲାହଙ୍କ ବାର୍ତ୍ତାବହମାନଙ୍କୁ ହତ୍ୟା କାହିଁକି କରୁଥିଲ ?" ୯୨. ମୁ'ସା ତୁମମାନଙ୍କ ପାଖକୁ ଜ୍ୱଳନ୍ତ ପ୍ରମାଣ ଧରି ଆସିଥିଲେ ମାତ୍ର ତାଙ୍କ ଯିବା ପରେପରେ ତୁମେମାନେ ବାଛୁରୀକୁ ଈଶ୍ୱର କରିଦେଲ । ତୁମେମାନେ ଭ୍ରଷ୍ଟାଚାରୀ ।

୯୩. ଯେତେବେଳେ ଆମ୍ଭେ ତୁମମାନଙ୍କଠାରୁ ବଚନ ନେଇଥିଲୁ ଏବଂ ପାହାଡ଼କୁ ତୁମମାନଙ୍କ ଉପରେ ଉଠାଇ ଧରି ଆଜ୍ଞା ଦେଇଥିଲୁ ଯେ ଆମ୍ଭେ ଯାହା ଦେଇଛୁ ତାକୁ ଦୃଢ଼ ଭାବରେ ଧର ଆଉ (ଯାହା କୁହାଯାଉଛି ତାହା) ଶୁଣ । ସେମାନେ କହିଲେ, "ଆମେ ଶୁଣିଲୁ, ମାତ୍ର ମାନୁନାହୁଁ ।" ନାସ୍ତିକତା ଯୋଗୁଁ ସେମାନଙ୍କ ମନରେ ବାଛୁରୀର ପ୍ରେମ ଘର କରି ସାରିଥିଲା । ସେମାନଙ୍କୁ କୁହ "ଯଦି ତୁମେମନେ ଆସ୍ତିକ, ତେବେ ତୁମମାନଙ୍କ ଆସ୍ଥା ତୁମମାନଙ୍କୁ ଅନୁଚିତ କଥା କହୁଛି ।"

୯୪. ସେମାନଙ୍କୁ କୁହ "ଯଦି (ତୁମେମାନେ ଭାବୁଛ ଯେ) ଅଲ୍ଲାହଙ୍କ ନିକଟରେ ପରଲୋକର ସୁଖ ଅନ୍ୟ କାହାରି ପାଇଁ ନୁହେଁ ବରଂ କେବଳ ତୁମରିମାନଙ୍କ ପାଇଁ ଅଛି ଏବଂ ଯଦି ତୁମେମାନେ ସତ୍ୟବାଦୀ, ତେବେ ଟିକିଏ (ନିଜ) ମୃତ୍ୟୁର କାମନା କର । ୯୫. ସେମାନେ ଯେଉଁ କର୍ମଗୁଡ଼ିକ କରିଛନ୍ତି,

ସେଥିପାଇଁ କଦାପି ଏଭଳି କାମନା କରିପାରିବେ ନାହିଁ । ଅଲ୍ଲାହ୍ ଦୁରାଚାରୀମାନଙ୍କୁ ଭଲରୂପେ ଜାଣନ୍ତି । ୯୬. ତୁମେ ସେମାନଙ୍କୁ ସଂସାରରେ ଜୀବିତ ରହିବା ପାଇଁ ସର୍ବାଧିକ ଲାଳାୟିତ ଥିବାର ଦେଖିବ, ଏପରିକି ବହୁଈଶ୍ୱରବାଦୀମାନଙ୍କ ଅପେକ୍ଷା ମଧ୍ୟ ଅଧିକ । ଏମାନଙ୍କ ମଧ୍ୟରୁ ପ୍ରତ୍ୟେକ ବ୍ୟକ୍ତି ଚାହେଁ ଯେ ତା' ଆୟୁଷ ସହସ୍ର ବର୍ଷ ହୋଇଯାଉ । ଅବଶ୍ୟ ଅଧିକ ଆୟୁଷ ମଧ୍ୟ ସେମାନଙ୍କୁ (ଅଲ୍ଲାହଙ୍କ) ଶାସ୍ତିରୁ ରକ୍ଷା କରିପାରିବ ନାହିଁ । ସେମାନେ ଯାହା କରୁଛନ୍ତି, ଅଲ୍ଲାହ୍ ସବୁ ଦେଖୁଛନ୍ତି ।

୯୭. ତୁମେ କୁହ, "କିଏ ଦେବଦୂତ ଜିବ୍ରାଇଲ୍‌ଙ୍କର ଶତ୍ରୁ ହେଲା ?" ସେ ଅଲ୍ଲାହଙ୍କ ଆଦେଶମତେ ତୁମ ଅନ୍ତରରେ ଦୈବବାଣୀ ପ୍ରକଟ କରିଛନ୍ତି ଯାହା ପୂର୍ବ ଗ୍ରନ୍ଥଗୁଡ଼ିକର ସମର୍ଥନ କରେ, ବିଶ୍ୱାସ କରୁଥିବା ଲୋକମାନଙ୍କର ମାର୍ଗଦର୍ଶନ କରେ ଏବଂ ସେମାନଙ୍କୁ (ସ୍ୱର୍ଗର) ଶୁଭସୂଚନା ଦିଏ । ୯୮. ଯେଉଁମାନେ ଅଲ୍ଲାହଙ୍କର, ତାଙ୍କ ଦେବଦୂତମାନଙ୍କର, ତାଙ୍କ ବାର୍ତ୍ତାବହମାନଙ୍କର ଏବଂ ଜିବ୍ରାଇଲ ଓ ମିକାଇଲଙ୍କର ଶତ୍ରୁ, ଅଲ୍ଲାହ୍ ସେହି ନାସ୍ତିକମାନଙ୍କର ଶତ୍ରୁ ।

୯୯. ଆମ୍ଭେ ତୁମ ପାଖକୁ ପରିଷ୍କାର ବାଣୀ ପଠାଇଛୁ । ସେଗୁଡ଼ିକୁ ଦୁରାଚାରୀମାନଙ୍କ ବ୍ୟତୀତ ଅନ୍ୟ କେହି ଅସ୍ୱୀକାର କରନ୍ତିନାହିଁ । ୧୦୦. ଯେତେବେଳେ ସେମାନେ କୌଣସି ଚୁକ୍ତି କରନ୍ତି, ସେମାନଙ୍କ ମଧ୍ୟରୁ କୌଣସି ନା କୌଣସି ଗୋଷ୍ଠୀ ତାହାକୁ ଭାଂଗି ଦିଏ । ସେମାନଙ୍କ ମଧ୍ୟରୁ ଅଧିକାଂଶ ନାସ୍ତିକ । ୧୦୧. ଯେତେବେଳେ ସେମାନଙ୍କ ପାଖକୁ ଅଲ୍ଲାହଙ୍କର ଜଣେ ରସୁଲ୍ (ଅର୍ଥାତ୍ ବାର୍ତ୍ତାବହ) ଆସିଲେ, ଯିଏ ସେମାନଙ୍କ ପାଖରେ ଥିବା ଗ୍ରନ୍ଥର ସମର୍ଥନ କଲେ, ଗ୍ରନ୍ଥବିଶ୍ୱାସୀମାନଙ୍କ ମଧ୍ୟରୁ କିଛି ଲୋକ ଅଲ୍ଲାହଙ୍କ ଗ୍ରନ୍ଥକୁ ଏମିତି ଅଗ୍ରାହ୍ୟ କଲେ ସତେଯେମିତି ଏହାକୁ ଜାଣନ୍ତିନାହିଁ ।

୧୦୨. ଇସ୍ରାଇଲଙ୍କ ବଂଶଧରମାନେ ସେହି ମନ୍ତ୍ର ପଛରେ ପଡ଼ିଗଲେ ଯାହାକୁ ଜିନ୍‌ମାନେ ସୁଲେମାନଙ୍କ ରାଜତ୍ୱକାଳରେ ପଢୁଥିଲେ । ସୁଲେମାନ (ଅର୍ଥାତ୍ ସଲୋମନ୍) ନାସ୍ତିକ ନଥିଲେ, ବରଂ ସେହି ଶଇତାନମାନେ ନାସ୍ତିକ ଥିଲେ କାରଣ ସେମାନେ ଲୋକଙ୍କୁ ତନ୍ତ୍ରବିଦ୍ୟା ଶିଖାଉଥିଲେ । ଏମାନେ ସେହି ମନ୍ତ୍ର ପଛରେ ମଧ୍ୟ ପଡ଼ିଗଲେ ଯାହା

ବେବିଲୋନ ସହରରେ ହାରୂତ୍ ଓ ମାରୂତ୍ ନାମକ ଦୁଇଜଣ ଦେବଦୂତଙ୍କ ପ୍ରତି ପ୍ରକଟ ହୋଇଥିଲା । ମାତ୍ର ସେମାନେ ଯେତେବେଳେ କୌଣସି ବ୍ୟକ୍ତିକୁ ଏହାର ଶିକ୍ଷା ଦେଉଥିଲେ, ତାକୁ ପରିଷ୍କାର କହୁଥିଲେ ଯେ ଲୋକମାନଙ୍କୁ ପରୀକ୍ଷା କରିବା ଉଦ୍ଦେଶ୍ୟରେ ଆମମାନଙ୍କୁ ନିଯୁକ୍ତ କରାଯାଇଛି । ତେଣୁ ତୁମେ (ଏହା ଶିକ୍ଷା କରି) ନାସ୍ତିକ ହୋଇ ଯାଅନା । ପୁଣି ସେମାନେ ଏଦୁହିଁଙ୍କଠାରୁ ଏଭଳି ମନ୍ତ୍ର ଶିଖୁଥିଲେ ଯାହାଦ୍ୱାରା ପତିପତ୍ନୀଙ୍କ ମଧ୍ୟରେ ମନାନ୍ତର ସୃଷ୍ଟି କରିବେ । ବାସ୍ତବରେ ସେମାନେ ଅଲ୍ଲାହଙ୍କ ଇଚ୍ଛା ବିରୁଦ୍ଧରେ କାହାରି କୌଣସି କ୍ଷତି କରିବାକୁ ସମର୍ଥ ନଥିଲେ । ସେମାନେ ଏଭଳି କଥା ଶିଖୁଥିଲେ ଯାହା ସେମାନଙ୍କର ହିତ ପରିବର୍ତ୍ତେ ଅନିଷ୍ଟ କରୁଥିଲା । ସେମାନେ ଏହା ଭଲରୂପେ ଜାଣୁଥିଲେ ଯେ ଯିଏ ଏଭଳି ବାଟ ଧରେ, ପରଲୋକରେ ତା'ର କୌଣସି ଭାଗ ନାହିଁ ଏବଂ ଏହା ଅତି ହୀନ କାର୍ଯ୍ୟ, ଯାହାପାଇଁ ସେମାନେ ନିଜକୁ ବିକିଦେଲେ । ଭଲ ହୋଇଥାଆନ୍ତା, ଯଦି ସେମାନେ ଏହା ଜାଣି ଥାଆନ୍ତେ ! ୧୦୩. ଯଦି ସେମାନେ (ସତ୍ୟରେ) ବିଶ୍ୱାସ ରଖନ୍ତେ ଏବଂ ଧର୍ମପରାୟଣ ହୁଅନ୍ତେ, ତେବେ ଅଲ୍ଲାହଙ୍କ ପାଖରେ ସେମାନଙ୍କୁ ଅଶେଷ ପୁଣ୍ୟ ମିଳନ୍ତା । ଭଲ ହୋଇ ଥାଆନ୍ତା, ଯଦି ସେମାନେଏହା ଜାଣି ଥାଆନ୍ତେ ।

୧୦୪. ହେ ସଦବିଶ୍ୱାସୀଗଣ ! "(ରସୁଲଙ୍କୁ) ରାଇନା" କହି ସଂବୋଧନ କର ନାହିଁ, ବରଂ "ଉନ୍‌ଜୁର୍‌ନା" କୁହ ଏବଂ ତାଙ୍କ କଥା (ଧ୍ୟାନ ଦେଇ) ଶୁଣ । (ଜାଣିରଖ) ନାସ୍ତିକମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି ପ୍ରସ୍ତୁତ ରହିଛି । ୧୦୫. ଅବିଶ୍ୱାସ କରୁଥିବା ଲୋକମାନେ ଗ୍ରନ୍ଥବିଶ୍ୱାସୀ ହୁଅନ୍ତୁ ବା ବହୁଈଶ୍ୱରବାଦୀ, ସେମାନେ ଏହା ଚାହୁଁନାହାନ୍ତି ଯେ ତୁମ ପ୍ରଭୁ ତୁମର କୌଣସି ମଂଗଳ କରନ୍ତୁ । ଅଲ୍ଲାହ୍ ଯାହାକୁ ଚାହାନ୍ତି ତାକୁ ନିଜ କୃପାର ପାତ୍ର କରନ୍ତି ଏବଂ ଅଲ୍ଲାହ୍ ଅତ୍ୟନ୍ତ ଅନୁଗ୍ରହଶୀଳ ।

୧୦୬. ଯଦି ଆମ୍ଭେ କୌଣସି ବାଣୀକୁ ପ୍ରତ୍ୟାହାର କରୁ ବା ଭୁଲାଇଦେଉ, ତେବେ (ତା' ସ୍ଥାନରେ) ତାହାରି ପରି ବା ତା'ଠାରୁ ଭଲ ବାଣୀ ପଠାଇଦେଉ । କ'ଣ ତୁମେ ଜାଣନା ଯେ ଅଲ୍ଲାହ୍ ସବୁକିଛି କରିବାକୁ ସକ୍ଷମ ?

୧୦୭. କ'ଣ ତୁମମାନଙ୍କୁ ଜଣାନାହିଁ ଯେ ପୃଥିବୀ ଓ ଆକାଶରେ କେବଳ ଅଲ୍ଲାହଙ୍କର ଶାସନ ଚାଲେ? ଅଲ୍ଲାହଙ୍କ ବ୍ୟତୀତ ତୁମମାନଙ୍କର କେହି ମିତ୍ର ବା ସାହାଯ୍ୟକାରୀ ନାହାନ୍ତି ।

୧୦୮. ତୁମେମାନେ କ'ଣ ରସୁଲଙ୍କୁ ସେହିଭଳି (ଅନାବଶ୍ୟକ) ପ୍ରଶ୍ନ କରିବାକୁ ଚାହଁ ଯେଭଳି ପ୍ରଶ୍ନ ଏହାପୂର୍ବରୁ ମୁ'ସାଙ୍କୁ କରାଯାଇଥିଲା? ଯିଏ ବିଶ୍ୱାସ ବଦଳରେ ଅବିଶ୍ୱାସର ପନ୍ଥା ଧରେ, ସେ ସତ୍ପଥରୁ ବିଚ୍ୟୁତ ହୋଇଯାଏ । ୧୦୯. ତୁମେମାନେ ବିଶ୍ୱାସ କରିସାରିବା ପରେ ମଧ୍ୟ ଅଧିକାଂଶ ଗ୍ରନ୍ଥବିଶ୍ୱାସୀ ଈର୍ଷାପରାୟଣ ହୋଇ ତୁମମାନଙ୍କୁ (କୌଣସି ଉପାୟରେ) ନାସ୍ତିକ କରିଦେବାକୁ ଚାହାନ୍ତି, ଯଦିଓ ସତ କ'ଣ ସେମାନେ ପରିଷ୍କାର ଜାଣି ସାରିଛନ୍ତି । ତୁମେ ସେମାନଙ୍କୁ କ୍ଷମା କର ଏବଂ ଅଲ୍ଲାହଙ୍କ ନିଷ୍ପତ୍ତି ପର୍ଯ୍ୟନ୍ତ ସେମାନଙ୍କୁ ଅଣଦେଖା କର । ଅବଶ୍ୟ ଅଲ୍ଲାହ୍ ସବୁକିଛି କରିବାକୁ ସକ୍ଷମ । ୧୧୦. ନମାଜ ସଂପାଦନ କର ଏବଂ ଜକାତ୍ ଦିଅ ଏବଂ (ମନେରଖ) ନିଜ ମଂଗଳ ପାଇଁ ତୁମେମାନେ ଯାହା ପୁଣ୍ୟ ଅର୍ଜନ କରିବ, ଅଲ୍ଲାହଙ୍କ ନିକଟରେ ପାଇବ । ତୁମେମାନେ ଯାହା କର, ଅଲ୍ଲାହ୍ ସବୁ ଦେଖନ୍ତି ।

୧୧୧. ସେମାନେ କହୁଛନ୍ତି "ଇହୁଦୀ ଓ ଖ୍ରୀଷ୍ଟିୟାନଙ୍କ ବ୍ୟତୀତ ଆଉ କେହି ସ୍ୱର୍ଗକୁ ଯିବେନାହିଁ ।" ଏହା ସେମାନଙ୍କର କେବଳ ଏକ ଅନୁମାନ । ସେମାନଙ୍କୁ କୁହ, "ଯଦି ତୁମେମାନେ ସତ କହୁଛ, ତେବେ ଏହାର ପ୍ରମାଣ ଦିଅ ।" ୧୧୨. ବରଂ ଯିଏ ଅଲ୍ଲାହଙ୍କ ପାଖରେ ନିଜକୁ ସମର୍ପଣ କରିଦିଏ ଏବଂ ଭଲ କର୍ମ କରେ, ତା'ର ପୁରସ୍କାର ଅଲ୍ଲାହଙ୍କ ପାଖରେ ଅଛି । ଏଭଳି ଲୋକଙ୍କ ପାଇଁ କୌଣସି ଭୟ ନାହିଁ ବା ସେମାନେ ଦୁଃଖ ଭୋଗିବେ ନାହିଁ ।

୧୧୩. ଇହୁଦୀମାନେ କହୁଛନ୍ତି ଯେ ଖ୍ରୀଷ୍ଟିୟାନମାନେ ଠିକ୍ ବାଟରେ ନାହାନ୍ତି ଏବଂ ଖ୍ରୀଷ୍ଟିୟାନ କହୁଛନ୍ତି ଯେ ଇହୁଦୀମାନେ ଠିକ୍ ବାଟରେ ନାହାନ୍ତି, ଅଥଚ ଉଭୟ ଗୋଷ୍ଠୀ ଦିବ୍ୟଗ୍ରନ୍ଥ ପାଠ କରନ୍ତି । ଏମାନଙ୍କ କଥା ପରି ସେମାନେ ମଧ୍ୟ କହନ୍ତି, ଯେଉଁମାନଙ୍କର କୌଣସି ଜ୍ଞାନ ନାହିଁ । ତେଣୁ, ବିଚାର ଦିନ ଅଲ୍ଲାହ୍ ସେମାନଙ୍କ ମଧ୍ୟରେ ଥିବା ମତଭେଦ ବିଷୟରେ ନିଷ୍ପତ୍ତି କରିଦେବେ ।

୧୧୪. ତା'ଠାରୁ ବଡ଼ ଦୂରାଚାରୀ ଆଉ କିଏ ହେବ, ଯିଏ ଅଲ୍ଲାହଙ୍କ ମସଜିଦ୍‌ରେ ତାଙ୍କ ନାମ ସ୍ମରଣ କରିବାରେ ବାଧା ସୃଷ୍ଟି କରେ ଏବଂ ସେଗୁଡ଼ିକୁ ନଷ୍ଟ କରିବାକୁ ଚେଷ୍ଟା କରେ? ଏଭଳି ଲୋକମାନଙ୍କ ପକ୍ଷରେ ଉଚିତ ଥିଲା ଯେ ସେମାନେ ଡ଼ରିଡ଼ରି ମସଜିଦ୍ ଭିତରେ ପ୍ରବେଶ କରି ଥାଆନ୍ତେ। ସେମାନେ ଇହଲୋକରେ ଲାଂଛନା ଓ ପରଲୋକରେ କଠିନ ଶାସ୍ତି ଭୋଗିବେ।

୧୧୫. ପୂର୍ବ ଓ ପଶ୍ଚିମ ସବୁ ଅଲ୍ଲାହଙ୍କର। ସୁତରାଂ ଯେଉଁ ଦିଗକୁ ମୁହଁ କରିବ, ସେ ଦିଗରେ ଅଲ୍ଲାହଙ୍କ ମୁହଁ। ଅଲ୍ଲାହ୍ ସର୍ବବ୍ୟାପୀ ଏବଂ ସର୍ବଜ୍ଞ।

୧୧୬. ସେମାନେ କହନ୍ତି ଯେ ଅଲ୍ଲାହଙ୍କର ପୁତ୍ର ଅଛି, ଅଥଚ ଅଲ୍ଲାହ୍ (ଏଭଳି ଦୋଷରୁ) ପବିତ୍ର। ବରଂ ପୃଥିବୀ ଓ ଆକାଶରେ ଯାହା ଅଛି, ସବୁ ତାଙ୍କରି ଏବଂ ସମସ୍ତେ ତାଙ୍କର ଆଜ୍ଞାଧୀନ। ୧୧୭. ସେ ଧରିତ୍ରୀ ଓ ଆକାଶମଣ୍ଡଳର ସ୍ରଷ୍ଟା। ଯେତେବେଳେ ସେ କୌଣସି ନିଷ୍ପତ୍ତି ନିଅନ୍ତି, ତା' ବିଷୟରେ କେବଳ ଏତିକି କହନ୍ତି "ହୋଇଯା" ଏବଂ ତାହା ହୋଇଯାଏ।

୧୧୮. ଯେଉଁମାନଙ୍କର ଜ୍ଞାନ ନାହିଁ, ସେମାନେ କହନ୍ତି "ଅଲ୍ଲାହ୍ କାହିଁକି ଆମ ସହିତ କଥାବାର୍ତ୍ତା କରୁନାହାନ୍ତି ବା ଆମକୁ କାହିଁକି କୌଣସି ପ୍ରମାଣ ଦିଆ ଯାଉନାହିଁ?" ଏହିପରି କଥା ସେମାନଙ୍କ ପୂର୍ବ ଲୋକମାନେ ମଧ୍ୟ କହୁଥିଲେ। ସମସ୍ତଙ୍କର ମନ ଏକାପରି। ବାସ୍ତବରେ ବିଶ୍ୱାସ କରୁଥିବା ଲୋକମାନଙ୍କ ପାଇଁ ଆମ୍ଭେ ସ୍ପଷ୍ଟ ପ୍ରମାଣ ଦେଇସାରିଛୁ। ୧୧୯. (ହେ ବାର୍ତ୍ତାବହ!) ଆମ୍ଭେ ତୁମକୁ ସତ୍ୟର ବାର୍ତ୍ତା ଦେବାପାଇଁ ଏବଂ ଲୋକଙ୍କୁ ସାବଧାନ କରିବାପାଇଁ ପଠାଇଛୁ। ନର୍କବାସୀମାନଙ୍କ ସଂପର୍କରେ ତୁମକୁ କିଛି ପଚରା ଯିବନାହିଁ।

୧୨୦. ଯେପର୍ଯ୍ୟନ୍ତ ତୁମେ ଇହୁଦୀ ଓ ଖ୍ରୀଷ୍ଟିୟାନମାନଙ୍କର ପନ୍ଥା ଗ୍ରହଣ ନକରିଛ, ସେମାନେ ତୁମ ଉପରେ କେବେହେଲେ ସନ୍ତୁଷ୍ଟ ହେବେନାହିଁ। ସେମାନଙ୍କୁ କୁହ, "ଅଲ୍ଲାହ୍ ଯେଉଁ ବାଟ ଦେଖାଇଛନ୍ତି, ତାହାହିଁ ଠିକ୍ ବାଟ।" ସଦ୍‌ଜ୍ଞାନ ମିଳିସାରିବା ପରେ ମଧ୍ୟ ଯଦି ତୁମେ ସେମାନଙ୍କ ଇଚ୍ଛା ଅନୁସାରେ ଚାଲ ତେବେ ଅଲ୍ଲାହଙ୍କଠାରୁ ରକ୍ଷା କରିବା ପାଇଁ ତୁମକୁ କେହି ବନ୍ଧୁ ବା ସହଯୋଗୀ ମିଳିବେନାହିଁ। ୧୨୧. ଯେଉଁମାନଙ୍କୁ ଆମ୍ଭେ ଗ୍ରନ୍ଥ ଦେଇଛୁ ଏବଂ ସେମାନେ

ଏହାକୁ ଏମିତି ପାଠ କରନ୍ତି ଯେମିତି ପାଠ କରିବା ଉଚିତ, ସେମାନେ ଏଥିରେ ବିଶ୍ୱାସ କରିନିଅନ୍ତି । ଯେଉଁମାନେ ଅବିଶ୍ୱାସ କରନ୍ତି, ସେମାନେ କ୍ଷତିଗ୍ରସ୍ତ ହେବେ ।

୧୨୨. ହେ ଇସରାଇଲ୍‌ଙ୍କ ବଂଶଧର! ମୁଁ ତୁମମାନଙ୍କ ପ୍ରତି କରିଥିବା ଅନୁଗ୍ରହଗୁଡିକୁ ମନେ ପକାଅ ଏବଂ (ମନେରଖ ଯେ) ମୁଁ ତୁମମାନଙ୍କୁ ବିଶ୍ୱବାସୀଙ୍କ ମଧ୍ୟରେ ଶ୍ରେଷ୍ଠତା ପ୍ରଦାନ କରିଥିଲି । ୧୨୩. ସେହି ଦିନକୁ ଭୟ କର ଯେଉଁଦିନ କେହି କାହାରି କାମରେ ଆସିବେନାହିଁ କିମ୍ବା (ସେମାନଙ୍କର) ମୁକ୍ତି ବଦଳରେ କୌଣସି ମୂଲ୍ୟ ନିଆଯିବ ନାହିଁ ବା କାହାରି ସୁପାରିଶ ଦ୍ୱାରା କିଛି ଲାଭ ହେବନାହିଁ କିମ୍ବା ସେମାନଙ୍କୁ କୌଣସି ସାହାଯ୍ୟ ମିଳିବନାହିଁ ।

୧୨୪. ଯେତେବେଳେ ଇବ୍ରାହିମ୍‌ଙ୍କୁ ତାଙ୍କ ପ୍ରଭୁ କେତୋଟି କଥାରେ ପରୀକ୍ଷା କଲେ ଏବଂ ସବୁଥିରେ ସେ ସଫଳ ହେଲେ, (ସେତେବେଳେ) ଅଲ୍ଲାହ୍ ତାଙ୍କୁ କହିଲେ, "ମୁଁ ତୁମକୁ ଲୋକମାନଙ୍କର ଅଧିନାୟକ ନିଯୁକ୍ତ କରିବି ।" ଇବ୍ରାହିମ (ଅର୍ଥାତ୍ ଆବ୍ରାହମ୍) ବିନତି କଲେ "ମୋ' ବଂଶଧରମାନଙ୍କ ମଧ୍ୟରୁ ମଧ୍ୟ କର ।" ଅଲ୍ଲାହ୍ କହିଲେ, "କିନ୍ତୁ ମୋ'ର ଏହି ପ୍ରତିଶ୍ରୁତି ଦୂରାଚାରୀମାନଙ୍କ ପାଇଁ ନୁହେଁ ।"

୧୨୫. (ସ୍ମରଣ କର) ଯେତେବେଳେ ଆମ୍ଭେ କାବା ଗୃହକୁ ଲୋକମାନଙ୍କ ପାଇଁ ଏକ ସମାବେଶ ସ୍ଥଳ ଏବଂ ଶାନ୍ତିର ଧାମ କଲୁ ଏବଂ (ଆଜ୍ଞା ଦେଲୁ ଯେ) ଇବ୍ରାହିମଙ୍କ ଛିଡ଼ା ହେବାର ସ୍ଥାନକୁ ନମାଜପାଠ ପାଇଁ ଉଦ୍ଦିଷ୍ଟ କର । ଆମ୍ଭେ ଇବ୍ରାହିମ୍ ଓ ଇସମାଇଲ୍‌ଙ୍କଠାରୁ ପ୍ରତିଶ୍ରୁତି ନେଇଥିଲୁ ଯେ ସେମାନେ ମୋ' ଗୃହକୁ ଏହାର ପରିକ୍ରମା କରୁଥିବା, ଧ୍ୟାନଚିନ୍ତନ କରୁଥିବା, (ନମାଜରେ) ମୁଣ୍ଡ ନୁଆଁଉ ଥିବା ଏବଂ ପ୍ରଣାମ କରୁଥିବା ଲୋକମାନଙ୍କ ପାଇଁ ଶୁଦ୍ଧ ରଖିବେ । ୧୨୬. ଯେତେବେଳେ ଇବ୍ରାହିମ୍ କହିଥିଲେ, "ହେ ପ୍ରଭୁ! ଏହି ନଗରୀକୁ ଶାନ୍ତିର ନଗରୀ କର ଏବଂ ଏହାର ବାସିନ୍ଦାମାନଙ୍କ ମଧ୍ୟରୁ ଯେଉଁମାନେ ଅଲ୍ଲାହଙ୍କୁ ଏବଂ ପରଲୋକକୁ ବିଶ୍ୱାସ କରିବେ, ସେମାନଙ୍କୁ ଫଳର ଆହାର ଦିଅ", ଅଲ୍ଲାହ୍ କହିଥିଲେ, "ଯିଏ ଅବିଶ୍ୱାସ କରିବ, ତାକୁ ମଧ୍ୟ ମୁଁ କିଛିକାଳ ଏହା ଭୋଗ କରିବାର ସୁଯୋଗ ଦେବି । ପୁଣି ତାକୁ ନର୍କଦଣ୍ଡ ଦେବା ପାଇଁ ଘୋଷାରି ନେବି ଯାହା ଅତି କଦର୍ଯ୍ୟ ସ୍ଥାନ ।"

୧୨୭. (ମନେ ପକାଅ) ଯେତେବେଳେ ଇବ୍ରାହିମ ଓ ଇସମାଇଲ୍ କାବାଗୃହର ଭିତ୍ତି ସ୍ଥାପନ କରୁଥିଲେ (ଏବଂ ପ୍ରାର୍ଥନା କରୁଥିଲେ) "ହେ ପାଳନକର୍ତ୍ତା ! ଆମର ଏହି ସେବା ଗ୍ରହଣ କର । ତୁମେ ସର୍ବଶ୍ରୋତା ଏବଂ ସର୍ବଜ୍ଞ ।" ୧୨୮. "ହେ ଈଶ୍ୱର ! ଆମ ଦୁହିଁଙ୍କୁ ନିଜର ଅନୁଗତ କର ଏବଂ ଆମ ବଂଶରୁ ମଧ୍ୟ କିଛି ଲୋକଙ୍କୁ ସୃଷ୍ଟି କର ଯେଉଁମାନେ ତୁମର ଅନୁଗତ ହେବେ । ଆମକୁ ଉପାସନା ବିଧି ଶିଖାଅ ଏବଂ ଆମର ପଶ୍ଚାତାପ ସ୍ୱୀକାର କର । ତୁମେ ତ କ୍ଷମାଶୀଳ ଏବଂ କରୁଣାମୟ । ୧୨୯. ହେ ପ୍ରଭୁ ! ସେମାନଙ୍କ ପାଇଁ ସେହିମାନଙ୍କ ମଧ୍ୟରୁ ଜଣେ ରସୁଲ୍ ନିଯୁକ୍ତ କର ଯିଏ ସେମାନଙ୍କୁ ତୁମର ବାଣୀ ପାଠ କରି ଶୁଣାଇବେ, ଗ୍ରନ୍ଥ ଓ ତତ୍ତ୍ୱର ଶିକ୍ଷା ଦେବେ ଏବଂ ସେମାନଙ୍କୁ ଶୁଦ୍ଧ କରିବେ । ତୁମେ ପ୍ରବଳ ପରାକ୍ରମୀ ଏବଂ ମହାଜ୍ଞାନୀ ।"

୧୩୦. ଇବ୍ରାହିମଙ୍କ ଧର୍ମରୁ କେବଳ ସେହି ବ୍ୟକ୍ତି ହିଁ ମୁହଁ ମୋଡ଼ିବ ଯିଏ ନିର୍ବୋଧ ହୋଇଥିବ । ବାସ୍ତବରେ ଆମ୍ଭେ ଇହଲୋକରେ ତାଙ୍କୁ ପସନ୍ଦ କରିଥିଲୁ ଏବଂ ପରଲୋକରେ ମଧ୍ୟ ସେ ପୁଣ୍ୟବାନ ଲୋକମାନଙ୍କ ସହିତ ରହିବେ । ୧୩୧. ଯେତେବେଳେ ତାଙ୍କ ପ୍ରଭୁ ତାଙ୍କୁ କହିଥିଲେ ଯେ ନିଜକୁ ସମର୍ପଣ କର, ଇବ୍ରାହିମ କହିଥିଲେ, "ମୁଁ ଜଗତପାଳକଙ୍କ ପାଖରେ ନିଜକୁ ସମର୍ପଣ କଲି ।" ୧୩୨. ଇବ୍ରାହିମ ତାଙ୍କ ପୁତ୍ରମାନଙ୍କୁ ଏବଂ ୟାକୁବ ତାଙ୍କ ପୁତ୍ରମାନଙ୍କୁ ଉପଦେଶ ଦେଇଥିଲେ, "ହେ ପୁତ୍ରଗଣ ! ବାସ୍ତବରେ ଅଲ୍ଲାହ୍ ତୁମମାନଙ୍କ ପାଇଁ ଏହି ଧର୍ମ ନିର୍ଦ୍ଧାରିତ କରିଛନ୍ତି । ତେଣୁ, ମୁସଲିମ୍ (ଅର୍ଥାତ୍ ଆଜ୍ଞାବହ) ନଥିବା ଅବସ୍ଥାରେ ପ୍ରାଣତ୍ୟାଗ କରିବନାହିଁ ।"

୧୩୩. କ'ଣ ତୁମେ ସେତେବେଳେ ଉପସ୍ଥିତ ଥିଲ ଯେତେବେଳେ ୟାକୁବ୍ଙ୍କର ମୃତ୍ୟୁ ସମୟ ଆସି ପହଁଚିଥିଲା ? ଯେତେବେଳେ ସେ ନିଜ ପୁତ୍ରମାନଙ୍କୁ ପଚାରିଲେ, "ମୋ ପରେ ତୁମେମାନେ କାହାର ଉପାସନା କରିବ ?" ସେମାନେ ଉତ୍ତର ଦେଲେ, "ଆମେ କେବଳ ଜଣେ ଅଦ୍ୱିତୀୟ ଈଶ୍ୱରଙ୍କର ଉପାସନା କରିବୁ ଯିଏ ତୁମର ଏବଂ ତୁମ ପିତୃପିତାମହ ଇବ୍ରାହିମ୍, ଇସ୍ମାଇଲ୍ ଓ ଇସ୍ହାକ୍ଙ୍କର ଉପାସ୍ୟ ଏବଂ ଆମେମାନେ ତାଙ୍କରି ଆଜ୍ଞାବହ ସେବକ ।" ୧୩୪. ଏହା ଏକ ସମାଜ ଥିଲା ଯାହା

ଲୋପ ପାଇଗଲା । ସେମାନେ ଯାହା କଲେ ତା' ଫଳ ସେମାନେ ଭୋଗିବେ ଏବଂ ଯାହା ତୁମେମାନେ କରିବ ତାହାର ଫଳ ତୁମେମାନେ ଭୋଗିବ । ସେମାନେ ଯାହା କରିଛନ୍ତି ସେ ବିଷୟରେ ତୁମମାନଙ୍କୁ ପ୍ରଶ୍ନ କରାଯିବ ନାହିଁ ।

୧୩୫. ସେମାନେ କହୁଛନ୍ତି "ଇହୁଦୀ ବା ଖ୍ରୀଷ୍ଟିୟାନ ହୋଇଯାଅ, ତା'ହେଲେ ତୁମେ ଠିକ୍ ବାଟକୁ ଆସିଯିବ ।" ତୁମେ ସେମାନଙ୍କୁ କୁହ "ନା, ଆମେମାନେ ଇବ୍ରାହିମଙ୍କ (ଅର୍ଥାତ୍ ଆବ୍ରାହମଙ୍କ) ଧର୍ମପନ୍ଥା ଅବଲମ୍ବନ କରିଛୁ ଯିଏ ଏକ ଈଶ୍ୱରଙ୍କର ଉପାସକ ଥିଲେ ଏବଂ ବହୁଦେବବାଦୀ ନଥିଲେ ।" ୧୩୬. (ହେ ମୁସଲମାନମାନେ !) କୁହ, "ଆମେ ଅଲ୍ଲାହଙ୍କୁ ବିଶ୍ୱାସ କରୁ ଏବଂ ସେହି ଗ୍ରନ୍ଥକୁ ବିଶ୍ୱାସ କରୁ ଯାହା ଆମମାନଙ୍କ ପାଇଁ ପଠାଯାଇଛି ଏବଂ ଯାହା ଇବ୍ରାହିମ୍, ଇସମାଇଲ୍, ଇସହାକ୍ ଓ ୟାକୁବ୍ ଓ ସେମାନଙ୍କ ସନ୍ତାନମାନଙ୍କ ପାଇଁ ପଠାଯାଇଥିଲା ଏବଂ ଯାହା ମୁ'ସା ଓ ଇସାଙ୍କୁ ଦିଆ ଯାଇଥିଲା ଏବଂ ଯାହା ଅନ୍ୟ ଈଶ୍ୱରଦୂତମାନଙ୍କୁ ସେମାନଙ୍କ ପ୍ରଭୁଙ୍କ ଦ୍ୱାରା ଦିଆଯାଇଥିଲା । ଆମେ ସେମାନଙ୍କ ଭିତରୁ କାହାରି ମଧ୍ୟରେ ପ୍ରଭେଦ କରୁନାହୁଁ ଏବଂ ଆମେମାନେ ତାଙ୍କର ଆଜ୍ଞାଧୀନ ସେବକ । ୧୩୭. ପୁଣି ତୁମେମାନେ ଯେପରି ବିଶ୍ୱାସ କରିଛ, ଯଦି ସେମାନେ ମଧ୍ୟ ସେହିପରି ବିଶ୍ୱାସ କରିବେ, ତା'ହେଲେ ନିଶ୍ଚୟ ଠିକ୍ ବାଟ ପାଇବେ । ଯଦି ମନା କରନ୍ତି, ତେବେ ଏହା କେବଳ ସେମାନଙ୍କର ବିରୋଧ କରିବାର ଜିଦ୍ । ସେମାନଙ୍କଠାରୁ ତୁମମାନଙ୍କୁ ରକ୍ଷା କରିବା ପାଇଁ ଅଲ୍ଲାହ୍ ଯଥେଷ୍ଟ ଏବଂ ସେ ସର୍ବଶ୍ରୋତା ଏବଂ ସର୍ବଜ୍ଞ ।

୧୩୮. (କହିଦିଅ) "ଆମେ ଅଲ୍ଲାହଙ୍କ ରଙ୍ଗ ଧାରଣ କଲୁ । ତାଙ୍କ ରଙ୍ଗଠାରୁ ଆଉ କାହାର ରଂଗ ଭଲ ? ଆମେ ତାଙ୍କରି ଉପାସକ ।"

୧୩୯. ସେମାନଙ୍କୁ କୁହ "କଣ ତୁମେମାନେ ଅଲ୍ଲାହଙ୍କ ବିଷୟରେ ଆମ ସହିତ ଝଗଡ଼ା କରୁଛ ? ଅଥଚ ସେ ଆମର ମଧ୍ୟ ଈଶ୍ୱର ଓ ତୁମର ମଧ୍ୟ ଈଶ୍ୱର । ଆମ କର୍ମ ଆମ ପାଇଁ ଆଉ ତୁମ କର୍ମ ତୁମ ପାଇଁ ଏବଂ ଆମେ ତ ଏକନିଷ୍ଠ ହୋଇ ତାଙ୍କରି ସେବା-ଉପାସନା କରୁ ।" ୧୪୦. "କ'ଣ ତୁମେମାନେ ଏହା କହୁଛ ଯେ ଇବ୍ରାହିମ୍, ଇସ୍ମାଇଲ, ଇସ୍ହାକ ଓ ୟାକୁବ୍ ଏବଂ ତାଙ୍କ ସନ୍ତାନମାନେ ଇହୁଦୀ ବା ଖ୍ରୀଷ୍ଟିୟାନ ଥିଲେ ?" (ସେମାନଙ୍କୁ) କୁହ "ତୁମେମାନେ ବେଶୀ ଜାଣ ନା ଅଲ୍ଲାହ୍

ବେଶୀ ଜାଣନ୍ତି ?” ସେହି ଲୋକଠାରୁ ବଡ଼ ଅଧର୍ମୀ ଆଉ କିଏ ହେବ ଯିଏ ଅଲ୍ଲାହଙ୍କଠାରୁ ଆସିଥିବା ପ୍ରମାଣକୁ ଲୁଚାଇଦିଏ ? ଅଲ୍ଲାହ୍ ତୁମମାନଙ୍କର କାର୍ଯ୍ୟକଳାପ ସଂପର୍କରେ ଅନଭିଜ୍ଞ ନୁହନ୍ତି । ୧୪୧. ଏହା ଏକ ସମାଜ ଥିଲା ଯାହା ଲୋପ ପାଇଗଲା । ଯାହା ସେମାନେ କରିଛନ୍ତି, ତାହାର ଫଳ ସେମାନେ ଭୋଗିବେ ଏବଂ ଯାହା ତୁମେମାନେ କରିବ ତାହାର ଫଳ ତୁମେମାନେ ଭୋଗିବ ଏବଂ ସେମାନେ ଯାହା କରିଛନ୍ତି, ସେ ବିଷୟରେ ତୁମମାନଙ୍କୁ ପ୍ରଶ୍ନ କରାଯିବ ନାହିଁ ।

୧୪୨. ଏବେ ନିର୍ବୋଧମାନେ କହିବେ ଯେ ପୂର୍ବରୁ ମୁସଲମାନମାନେ ଯେଉଁ ଦିଗକୁ ମୁହଁ କରି ଉପାସନା କରୁଥିଲେ, ତାହା କାହିଁକି ବଦଳିଗଲା ? ସେମାନଙ୍କୁ କୁହ, “ପୂର୍ବ ଓ ପଶ୍ଚିମ ସବୁ ଅଲ୍ଲାହଙ୍କର । ସେ ଯାହାକୁ ଚାହାନ୍ତି ଠିକ୍ ବାଟ ଦେଖାଇ ଦିଅନ୍ତି ।” ୧୪୩. ଆମ୍ଭେ ତୁମମାନଙ୍କୁ ଏକ ମଧ୍ୟବର୍ତ୍ତୀ ସମାଜ ରୂପେ (ସୃଷ୍ଟି) କରିଛୁ ଯେପରିକି ତୁମେ ଲୋକମାନଙ୍କର ସାକ୍ଷୀ ରହିବ ଏବଂ ରସୁଲ ତୁମମାନଙ୍କର ସାକ୍ଷୀ ରହିବେ । ତୁମେମାନେ ପୂର୍ବରୁ ଯେଉଁ ଦିଗକୁ ମୁହଁ କରୁଥିଲ, ଆମ୍ଭେ ତାହାକୁ କେବଳ ଏହା ଜାଣିବାପାଇଁ ନିର୍ଦ୍ଧାରଣ କରିଥିଲୁ ଯେ କିଏ ରସୁଲଙ୍କୁ ମାନୁଛି ଏବଂ କିଏ ତାଙ୍କୁ ଅମାନ୍ୟ କରୁଛି । ଏହା ଅବଶ୍ୟ କଷ୍ଟକର କାର୍ଯ୍ୟ ଥିଲା, ମାତ୍ର ସେମାନଙ୍କ ପାଇଁ କଷ୍ଟକର ହେଲାନାହିଁ ଯେଉଁମାନଙ୍କୁ ଅଲ୍ଲାହ୍ ବାଟ ଦେଖାଇଛନ୍ତି । ଅଲ୍ଲାହ୍ ଏମିତି ନୁହନ୍ତି ଯେ ତୁମମାନଙ୍କ ଧର୍ମବିଶ୍ୱାସକୁ ବୃଥା କରିଦେବେ । ପ୍ରକୃତରେ ଅଲ୍ଲାହ୍ ମାନବସମାଜ ପ୍ରତି ଅତ୍ୟନ୍ତ ଦୟାଳୁ ଓ କୃପାଶୀଳ ।

୧୪୪. (ହେ ବାର୍ତ୍ତାବହ !) ତୁମର ଦୃଷ୍ଟି ବାରମ୍ବାର ଆକାଶ ଆଡ଼କୁ ଉଠୁଥିବା ଆମ୍ଭେ ଲକ୍ଷ୍ୟ କରୁଛୁ । ତେଣୁ, ଆମ୍ଭେ ତୁମକୁ ସେହି କିବ୍ଲା (ଅର୍ଥାତ୍ ଉପାସନା କରିବାର ଦିଗ) ଆଡ଼କୁ ଫେରାଇ ନେଉଛୁ ଯାହାକୁ ତୁମେ ପସନ୍ଦ କରୁଛ । ଏବେ ନିଜର ମୁହଁ ପବିତ୍ର ମସଜିଦ (ଅର୍ଥାତ୍ କାବା) ଆଡ଼କୁ ବୁଲାଇ ନିଅ ଏବଂ ତୁମେମାନେ ଯେଉଁଠି ଥାଅ, (ନମାଜପାଠ କରିବା ସମୟରେ) ନିଜର ମୁହଁ ସେହି ଦିଗକୁ କରିନିଅ । ଗ୍ରନ୍ଥବିଶ୍ୱାସୀମାନେ ଭଲ ଭାବରେ ଜାଣନ୍ତି ଯେ ଏହା ଈଶ୍ୱରଙ୍କର ଏକ ଉଚିତ୍ ଆଦେଶ । ଅଲ୍ଲାହ୍ ସେମାନଙ୍କ କାର୍ଯ୍ୟକଳାପ ସଂପର୍କରେ ଅନଭିଜ୍ଞ ନୁହନ୍ତି । ୧୪୫. ଯଦି ତୁମେମାନେ ଗ୍ରନ୍ଥବିଶ୍ୱାସୀମାନଙ୍କ ପାଖରେ ସବୁତକ

ପ୍ରମାଣ ରଖିଦିଅ, ତଥାପି ସେମାନେ ତୁମ କିବ୍ଲାକୁ ଗ୍ରହଣ କରିବେ ନାହିଁ ଏବଂ ତୁମେମାନେ ମଧ୍ୟ ସେମାନଙ୍କ କିବ୍ଲାକୁ ମାନି ନପାର। ସେମାନେ ପରସ୍ପରର କିବଲାକୁ ମଧ୍ୟ ମାନନ୍ତି ନାହିଁ। ଯଦି ସଦ୍‌ଜ୍ଞାନ ମିଳି ସାରିବା ସତ୍ତ୍ୱେ ତୁମେ ସେମାନଙ୍କ ଇଚ୍ଛା ଅନୁସାରେ ଚାଲିବ, ତେବେ ତୁମେ ନିଶ୍ଚୟ ଭୁଲ୍ କରିବ। ୧୪୬. ଯେଉଁମାନଙ୍କୁ ଆମ୍ଭେ ଗ୍ରନ୍ଥ ଦେଇଛୁ, ସେମାନେ ଏହାକୁ ଏମିତି ଚିହ୍ନନ୍ତି ଯେମିତି ନିଜ ସନ୍ତାନମାନଙ୍କୁ ଚିହ୍ନନ୍ତି। ସେମାନଙ୍କ ମଧ୍ୟରୁ ଗୋଟିଏ ଗୋଷ୍ଠୀ ଜାଣିଶୁଣି ସତ୍ୟକୁ ଲୁଚାଇ ରଖିଛି। ୧୪୭. ଏହା ତୁମ ପାଳନକର୍ତ୍ତାଙ୍କଠାରୁ ଆସିଥିବା ସତ୍ୟ। ତେଣୁ, ତୁମେ ଆଦୌ ସନ୍ଦେହ କରନାହିଁ।

୧୪୮. ପ୍ରତ୍ୟେକ ସଂପ୍ରଦାୟର ପ୍ରାର୍ଥନା ପାଇଁ ଗୋଟିଏ ଦିଗ ଥାଏ ଯେଉଁ ଆଡ଼କୁ ସେମାନେ ମୁହଁ କରନ୍ତି। ତେଣୁ, ତୁମେମାନେ ସତକର୍ମରେ ପରସ୍ପରଠାରୁ ଆଗେଇ ଯିବାକୁ ଚେଷ୍ଟା କର। ତୁମେମାନେ ଯେଉଁଠି ଥିଲେ ମଧ୍ୟ ଅଲ୍ଲାହ୍ ତୁମ ସମସ୍ତଙ୍କୁ ଏକାଠି କରିନେବେ। ଅଲ୍ଲାହ୍ ସବୁକିଛି କରିପାରନ୍ତି। ୧୪୯. ତୁମେ ଯେଉଁ ସ୍ଥାନରୁ ଯାତ୍ରା କର, (ନମାଜପାଠ ସମୟରେ) ନିଜ ମୁହଁ ପବିତ୍ର ମସଜିଦ ଆଡ଼କୁ କରିନିଅ। ଏହା ନିଶ୍ଚିତ ଭାବରେ ତୁମ ପ୍ରଭୁଙ୍କର ଏକ ଉଚିତ୍ ଆଦେଶ ଏବଂ ଅଲ୍ଲାହ୍ ତୁମମାନଙ୍କର କାର୍ଯ୍ୟକଳାପ ସଂପର୍କରେ ଅନଭିଜ୍ଞ ନୁହନ୍ତି। ୧୫୦. ତୁମେମାନେ ଯେଉଁ ସ୍ଥାନରୁ ଯାତ୍ରା କର, (ନମାଜପାଠ ସମୟରେ) ନିଜ ମୁହଁ ପବିତ୍ର ମସଜିଦ ଆଡ଼କୁ କରିନିଅ ଏବଂ ଯେଉଁଠି ଥିଲେ ମଧ୍ୟ ନିଜ ମୁହଁ ସେହି ଦିଗକୁ ରଖ ଯେପରିକି ଲୋକଙ୍କୁ ତୁମ ବିରୁଦ୍ଧରେ କିଛି କହିବାର ସୁଯୋଗ ନମିଳୁ। ଅବଶ୍ୟ ଦୁଷ୍ଟମାନଙ୍କର କଥା ଭିନ୍ନ (କାରଣ ସେମାନେ ନୀରବ ରହିବେନାହିଁ)। ତେଣୁ, ତୁମେମାନେ ସେମାନଙ୍କୁ ଭୟ କରନାହିଁ ବରଂ ମୋତେ ଭୟ କର, ଯାହାଫଳରେ ତୁମମାନଙ୍କ ପାଇଁ ମୁଁ ମୋ'ର ଅନୁଗ୍ରହ ସଂପୂର୍ଣ୍ଣ କରିବି ଏବଂ ତୁମେମାନେ ସତ୍‌ପଥ ପାଇବ।

୧୫୧. ଏହିପରି ଆମ୍ଭେ ତୁମମାନଙ୍କ ପାଇଁ ତୁମରି ମଧ୍ୟରୁ ଜଣେ ରସୁଲଙ୍କୁ ନିଯୁକ୍ତ କରିଛୁ ଯିଏ ତୁମମାନଙ୍କୁ ଆମ୍ଭର ବାଣୀ ପାଠ କରି ଶୁଣାନ୍ତି, ତୁମମାନଙ୍କୁ ଶୁଦ୍ଧ କରନ୍ତି, ଗ୍ରନ୍ଥ ଓ ତତ୍ତ୍ୱର ଶିକ୍ଷା ଦିଅନ୍ତି ଏବଂ ତାହା ଶିକ୍ଷା ଦିଅନ୍ତି ଯାହା ତୁମେମାନେ ଜାଣି

ନଥିଲ । ୧୫୨. ତେଣୁ ମୋତେ ମନେ ରଖ, ତା'ହେଲେ ମୁଁ ତୁମମାନଙ୍କୁ ମନେ ରଖିବି । ମୋ' ପ୍ରତି କୃତଜ୍ଞ ହୁଅ ଏବଂ କୃତଘ୍ନ ହୁଅନାହିଁ ।

୧୫୩. ହେ ସଦ୍‌ବିଶ୍ୱାସୀମାନେ ! ଧୈର୍ଯ୍ୟ ଓ ନମାଜ ମାଧ୍ୟମରେ (ଅଲ୍ଲାହଙ୍କଠାରୁ) ସାହାଯ୍ୟ ମାଗ । ଅଲ୍ଲାହ୍ ଅବଶ୍ୟ ଧୈର୍ଯ୍ୟବାନ ଲୋକମାନଙ୍କ ସହିତ ରହିଥାଆନ୍ତି । ୧୫୪. ଯେଉଁମାନେ ଅଲ୍ଲାହଙ୍କ ମାର୍ଗରେ ଶହୀଦ୍ ହୁଅନ୍ତି (ଅର୍ଥାତ୍, ବୀରଗତି ପ୍ରାପ୍ତ କରନ୍ତି), ସେମାନଙ୍କୁ ମୃତ ବୋଲି କୁହନାହିଁ । ପ୍ରକୃତରେ ସେମାନେ ଜୀବିତ ମାତ୍ର ତୁମେମାନେ ଏହା ବୁଝି ପାରିବନାହିଁ । ୧୫୫. ଆମ୍ଭେ ତୁମମାନଙ୍କୁ ଭୟ ଦ୍ୱାରା, ଭୋକଉପାସ ଦ୍ୱାରା, ଧନହାନି, ପ୍ରାଣହାନି ଏବଂ ଫସଲହାନି ଦ୍ୱାରା ନିଶ୍ଚୟ ପରୀକ୍ଷା କରିବୁ । ଯେଉଁମାନେ ଧୈର୍ଯ୍ୟ ଅବଲମ୍ବନ କରିବେ, ସେମାନଙ୍କୁ (ସ୍ୱର୍ଗର) ସୁସମାଚାର ଦେଇଦିଅ । ୧୫୬. ଯେଉଁମାନେ ବିପଦ ପଡ଼ିଲେ (ଅଧୈର୍ଯ୍ୟ ନହୋଇ) କହନ୍ତି, "ଆମେ ଅଲ୍ଲାହଙ୍କର ଏବଂ ଆମେମାନେ ତାଙ୍କରି ନିକଟକୁ ଫେରିଯିବୁ ।" ୧୫୭. ଏହି ଲୋକମାନଙ୍କ ପ୍ରତି ସେମାନଙ୍କ ପାଳନକର୍ତ୍ତାଙ୍କର ଆଶିଷ ଓ କରୁଣା ରହିଛି ଏବଂ ଏହିମାନେ ସତ୍‌ପଥରେ ଅଛନ୍ତି ।

୧୫୮. ଶଫା ଓ ମରୁଆ ମଧ୍ୟ ଅଲ୍ଲାହଙ୍କର ନିଦର୍ଶନ । ଯିଏ କାବା ଗୃହର ହଜ୍ ବା ଉମରା କରେ, ତା' ପକ୍ଷରେ ଏହି ଦୁଇ ପାହାଡ଼ର ପ୍ରଦକ୍ଷିଣ କରିବା ଦୋଷାବହ ନୁହେଁ । ଯିଏ ନିଜ ଇଚ୍ଛାରେ କୌଣସି ଭଲ କର୍ମ କରିବ, (ସେ ଜାଣି ରଖୁ ଯେ) ଅଲ୍ଲାହ୍ ଗୁଣଗ୍ରାହୀ ଏବଂ ସର୍ବଜ୍ଞ ।

୧୫୯. ଯେଉଁମାନେ ଆମ୍ଭ ଦ୍ୱାରା ପଠାଯାଇ ଥିବା ପ୍ରମାଣ ଓ ଶିକ୍ଷାକୁ ଲୁଚାଇ ଦିଅନ୍ତି ଯାହାକୁ ଆମ୍ଭେ ଲୋକମାନଙ୍କ ପାଇଁ ପରିଷ୍କାର ଭାବରେ ଗ୍ରନ୍ଥରେ ବର୍ଣ୍ଣନା କରିଛୁ, ସେମାନଙ୍କୁ ଅଲ୍ଲାହ୍ ଏବଂ ଅନ୍ୟ ଶାପଦାତାମାନେ ଧିକ୍କାର କରନ୍ତି । ୧୬୦. ମାତ୍ର ଯେଉଁମାନେ ଅନୁତାପ କଲେ ଓ ନିଜକୁ ସଂଶୋଧନ କରିନେଲେ ଏବଂ (ଲୁଚାଇଥିବା କଥାକୁ) ପ୍ରକାଶ କରିଦେଲେ, ମୁଁ ସେମାନଙ୍କର ଅନୁତାପ ଗ୍ରହଣ କରିବି । ମୁଁ କ୍ଷମାଶୀଳ ଓ କରୁଣାମୟ ।

୧୬୧. ଯେଉଁମାନେ ଅବିଶ୍ୱାସ କରନ୍ତି ଏବଂ ଅବିଶ୍ୱାସ କରିଥିବା ଅବସ୍ଥାରେ ମରିଯାଆନ୍ତି, ସେମାନଙ୍କୁ ଅଲ୍ଲାହଙ୍କର, ଦେବଦୂତମାନଙ୍କର ଏବଂ

ମନୁଷ୍ୟମାନଙ୍କର, ସମସ୍ତଙ୍କର ଧିକ୍କାର ହେଉ । ୧୬୨. ସେମାନେ ସର୍ବଦା ସେହି ଅବସ୍ଥାରେ ରହିବେ । ସେମାନଙ୍କର ଦଣ୍ଡ କୋହଳ କରାଯିବ ନାହିଁ କିମ୍ବା ସେମାନଙ୍କୁ ବିରାମ ଦିଆଯିବ ନାହିଁ ।

୧୬୩. (ହେ ମନୁଷ୍ୟଗଣ !) ତୁମମାନଙ୍କର ଈଶ୍ବର, ଜଣେ ଈଶ୍ୱର । ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସନାଯୋଗ୍ୟ ନୁହେଁ ଏବଂ ସେ ଅତ୍ୟନ୍ତ କୃପାଶୀଳ ଏବଂ ପରମ ଦୟାଳୁ । ୧୬୪. ପୃଥିବୀ ଓ ଆକାଶମଣ୍ଡଳର ଉତ୍ପତ୍ତି, ଦିନ ଓ ରାତିରେ ପରିବର୍ତ୍ତନ, ଲୋକଙ୍କର ଉପକାରୀ ବସ୍ତୁ ନେଇ ସମୁଦ୍ର ବକ୍ଷରେ ଜାହାଜଗୁଡିକର ଚଳପ୍ରଚଳ ଏବଂ ଆକାଶରୁ ଅଲ୍ଲାହ୍ ବର୍ଷା କରୁଥିବା ଜଳ, ଯାହାଦ୍ୱାରା ସେ ମୃତ ଭୁମିକୁ ଜୀବନ୍ତ କରି ସେଥିରେ ବିଭିନ୍ନ ପ୍ରକାର ଜୀବଜନ୍ତୁଙ୍କୁ ଖେଳାଇ ଦେଇଛନ୍ତି ଏବଂ ବାୟୁର ସଂଚାଳନ ତଥା ପୃଥିବୀ ଓ ଆକାଶରେ ଆଜ୍ଞାଧୀନ ହୋଇ କାର୍ଯ୍ୟ କରୁଥିବା ମେଘମାଳାଗୁଡ଼ିକରେ ବୁଦ୍ଧିମାନ ଲୋକଙ୍କ ପାଇଁ (ତାଙ୍କ ମହିମାର) ଅନେକ ସଂକେତ ରହିଛି ।

୧୬୫. କେତେକ ଲୋକ ଅଛନ୍ତି ଯେଉଁମାନେ ଅନ୍ୟମାନଙ୍କୁ ଅଲ୍ଲାହଙ୍କ ସହିତ ସମକକ୍ଷ କରନ୍ତି ଏବଂ ସେମାନଙ୍କୁ ସେହିଭଳି ପ୍ରେମ କରନ୍ତି ଯେଭଳି ପ୍ରେମ ଅଲ୍ଲାହଙ୍କୁ କରାଯିବା ଉଚିତ । ସଦ୍‌ବିଶ୍ୱାସୀମାନେ ଅଲ୍ଲାହଙ୍କୁ ସର୍ବାଧିକ ପ୍ରେମ କରନ୍ତି । ଦୁରାଚରୀମାନେ ଯେଉଁ ଶାସ୍ତିର ସମ୍ମୁଖୀନ ହେବେ, ଯଦି ତାହା ଏବେ ଦେଖି ପାରନ୍ତେ, ତେବେ ଜାଣିପାରନ୍ତେ ଯେ ସବୁ କ୍ଷମତା ଅଲ୍ଲାହଙ୍କ ହାତରେ ଅଛି ଏବଂ ଅଲ୍ଲାହ୍ କଠୋର ଶାସ୍ତି ଦିଅନ୍ତି । ୧୬୬. ଯେଉଁମାନଙ୍କୁ ଏମାନେ ମାନୁଥିଲେ, ସେମାନେ ସେତେବେଳେ ନିଜ ଅନୁଗତମାନଙ୍କ ସଂପର୍କକୁ ଅସ୍ୱୀକାର କରିଦେବେ ଏବଂ ସମସ୍ତେ ନିଜ ଆଖିରେ ନର୍କଦଣ୍ଡ ଦେଖିବେ ଏବଂ ସେମାନଙ୍କ ମଧ୍ୟରେ ଥିବା ସବୁ ସଂପର୍କ ବିଛିନ୍ନ ହୋଇଯିବ । ୧୬୭. (ଏହା ଦେଖି) ଅନୁଗତମାନେ (ଅବଶୋଷ କରି) କହିବେ, "ଯଦି ଆମକୁ ଥରେ ସଂସାରକୁ ଫେରିବାର ସୁଯୋଗ ମିଳନ୍ତା, ତେବେ ଆମେ ମଧ୍ୟ ସେମାନଙ୍କଠାରୁ ସେହିପରି ଅଲଗା ହୋଇଯାଆନ୍ତୁ ଯେପରି ସେମାନେ ଆଜି ଆମଠାରୁ ଅଲଗା ହୋଇଗଲେ ।" ଏହିପରି ଅଲ୍ଲାହ୍ ସେମାନଙ୍କର କର୍ମଗୁଡ଼ିକୁ ଦେଖାଇବେ ଯାହା ସେମାନଙ୍କର ଅବଶୋଷର କାରଣ ହେବ ଏବଂ ସେମାନେ ନର୍କରୁ ବାହାରି ପାରିବେନାହିଁ ।

୧୬୮. ହେ ମନୁଷ୍ୟଗଣ! ପୃଥିବୀରେ ଥିବା ଶୁଦ୍ଧ ଓ ବୈଧ ଖାଦ୍ୟ ଖାଅ ଏବଂ ଶୈତାନର ପିଛା ଧରି ଚାଲନାହିଁ। ସେ ଅବଶ୍ୟ ତୁମର ପରମ ଶତ୍ରୁ। ୧୬୯. ସେ ତୁମମାନଙ୍କୁ କେବଳ ଅପକର୍ମ ଓ ଅଶ୍ଳୀଳ ଆଚରଣ କରିବା ପାଇଁ ପ୍ରବର୍ତ୍ତାଇ ଥାଏ ଏବଂ ଏହା ଶିଖାଏ ଯେ ତୁମେମାନେ ଅଲ୍ଲାହଙ୍କ ବିଷୟରେ ଏଭଳି କଥା କୁହ ଯାହା ବିଷୟରେ ତୁମମାନଙ୍କର କୌଣସି ଜ୍ଞାନ ନାହିଁ।

୧୭୦. ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଅଲ୍ଲାହ୍ ଯେଉଁ ଗ୍ରନ୍ଥ ପଠାଇଛନ୍ତି ତାକୁ ମାନି ଚଳ, ସେମାନେ କୁହନ୍ତି "ନା! ଆମେ ଆମ ବାପଅଜାଙ୍କ ପନ୍ଥା ଅନୁସରଣ କରିବୁ"। ଯଦିଓ ସେମାନଙ୍କର ବାପଅଜା କିଛି ବୁଝି ନଥିଲେ ବା ସତ୍‌ପଥରେ ନଥିଲେ (ତଥାପି କ'ଣ ସେଇମାନଙ୍କ ବାଟରେ ଯିବେ?) ୧୭୧. ନାସ୍ତିକମାନଙ୍କର ଦୃଷ୍ଟାନ୍ତ ହେଉଛି ସେହି ପଶୁମାନଙ୍କ ପରି, ଯେଉଁମାନେ କେବଳ ପଶୁପାଳକର ଡାକ ବା ସ୍ୱର ବ୍ୟତୀତ କିଛି ଶୁଣନ୍ତିନାହିଁ। ଏମାନେ ଅନ୍ଧ, ମୁକ ଓ ବଧିର ଏବଂ କିଛି ବୁଝନ୍ତିନାହିଁ।

୧୭୨. ହେ ସଦ୍‌ବିଶ୍ୱାସୀମାନେ! ଆମ୍ଭେ ଦେଇଥିବା ଶୁଦ୍ଧ ଖାଦ୍ୟ ଖାଅ ଏବଂ ଅଲ୍ଲାହଙ୍କ ପ୍ରତି କୃତଜ୍ଞ ହୁଅ ଯଦି ତୁମେମାନେ (ପ୍ରକୃତରେ) ତାଙ୍କରି ଉପାସନା କରୁଥାଅ। ୧୭୩. ସେ ତୁମମାନଙ୍କ ପାଇଁ ମୁର୍ଦ୍ଦାର, ରକ୍ତ, ଶୁକର ମାଂସ ଏବଂ ସେହି ଖାଦ୍ୟ ନିଷିଦ୍ଧ କରିଛନ୍ତି ଯାହା ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ପାଇଁ ଉତ୍ସର୍ଗ କରା ଯାଇଥାଏ। ଯିଏ (ଅବସ୍ଥାଚକ୍ରରେ ପଡ଼ି) ନିରୁପାୟ ହୋଇଯାଏ କିନ୍ତୁ ତା'ର (ଅଲ୍ଲାହଙ୍କୁ) ଅବଜ୍ଞା କରିବାର ଉଦ୍ଦେଶ୍ୟ ନଥାଏ କିମ୍ବା ସେ (ନିଜ ଆବଶ୍ୟକତାର) ସୀମା ଅତିକ୍ରମ କରୁ ନଥାଏ, ତା'ପାଇଁ ଏହା ଖାଇବା ଦୋଷାବହ ନୁହେଁ। ଅଲ୍ଲାହ୍ ଅବଶ୍ୟ କ୍ଷମାଶୀଳ ଏବଂ କରୁଣାମୟ।

୧୭୪. ଯେଉଁମାନେ ଅଲ୍ଲାହଙ୍କ ଦ୍ୱାରା ପଠା ଯାଇଥିବା ଗ୍ରନ୍ଥର ଶିକ୍ଷାକୁ ଲୁଚାଇଦିଅନ୍ତି କିମ୍ବା ଏହା ବଦଳରେ ସାମାନ୍ୟ ମୂଲ୍ୟ ନିଅନ୍ତି, ସେମାନେ ନିଜ ପେଟରେ ନିଆଁ ଭର୍ତ୍ତି କରନ୍ତି। ବିଚାର ଦିନ ଅଲ୍ଲାହ୍ ସେମାନଙ୍କ ସହିତ କଥାବାର୍ତ୍ତା କରିବେନାହିଁ କିମ୍ବା ସେମାନଙ୍କୁ ଶୁଦ୍ଧ କରିବେନାହିଁ। ସେମାନେ ପୀଡ଼ାଦାୟକ ଶାସ୍ତି ଭୋଗିବେ। ୧୭୫. ଏମାନେ ସେହି ଲୋକ ଯେଉଁମାନେ ଠିକ୍ ବାଟ ଛାଡ଼ି ଭୁଲ୍

ବାଟ ଧରିଲେ ଏବଂ ମୁକ୍ତି ପରିବର୍ତ୍ତେ ଶାସ୍ତିର ସଉଦା କଲେ । ନର୍କଯନ୍ତ୍ରଣା ସହିବାର ସେମାନଙ୍କର କି ସାହସ ! ୧୭୬. (ଏହି ଦଣ୍ଡ) ଏଇଥିପାଇଁ ଯେ ଅଲ୍ଲାହ୍ ଯେଉଁ ଗ୍ରନ୍ଥ ପଠାଇଛନ୍ତି ତାହା ସତ୍ୟ । ଯେଉଁମାନେ ତାଙ୍କ ଗ୍ରନ୍ଥରେ ମତଭେଦ ସୃଷ୍ଟି କଲେ ସେମାନେ ବିରୁଦ୍ଧାଚରଣ କରିବାରେ ବହୁ ଦୂର ଆଗେଇ ଗଲେ ।

୧୭୭. ପୁଣ୍ୟ ଏହା ନୁହେଁ ଯେ ତୁମେମାନେ ନିଜର ମୁହଁ ପୂର୍ବ ବା ପଶ୍ଚିମ ଦିଗକୁ କରିନିଅ ବରଂ (ପ୍ରକୃତ) ପୁଣ୍ୟ ହେଉଛି ଯେ ମଣିଷ ଅଲ୍ଲାହଙ୍କୁ, ପୁନର୍ଜନ୍ମ ଦିନକୁ, ଦେବଦୂତମାନଙ୍କୁ, ଦିବ୍ୟଗ୍ରନ୍ଥଗୁଡ଼ିକୁ ଏବଂ ଈଶ୍ୱରଦୂତମାନଙ୍କୁ ବିଶ୍ୱାସ କରୁ ଏବଂ ତାଙ୍କରି ପ୍ରେମରେ ଆତ୍ମୀୟ, ଅନାଥ, ଦରିଦ୍ର, ପଥିକ ଓ ଭିକ୍ଷୁକମାନଙ୍କ ପାଇଁ ତଥା ଦାସମାନଙ୍କର ମୁକ୍ତି ପାଇଁ ଧନ ଖର୍ଚ୍ଚ କରୁ ଏବଂ ନମାଜ ସଂପାଦନ କରୁ, ଜକାତ (ଅର୍ଥାତ୍ ଦାନ) ଦେଉ, କାହାରିକୁ କଥା ଦେଇଥିଲେ ତାହା ରକ୍ଷା କରୁ ଏବଂ ଅଭାବଅନାଟନରେ, ଦୁଃଖକଷ୍ଟରେ ତଥା ଯୁଦ୍ଧକାଳରେ ଧୈର୍ଯ୍ୟ ଅବଲମ୍ବନ କରୁ । ଏହି ଲୋକମାନେ ସତ୍ୟନିଷ୍ଠ ଏବଂ ଏହିମାନେ ସଦାଚାରୀ ।

୧୭୮. ହେ ସଦ୍‌ବିଶ୍ୱାସୀମାନେ ! ତୁମମାନଙ୍କ ପାଇଁ ନରହତ୍ୟା ବିଷୟରେ କିସାସ୍‌ର (ଅର୍ଥାତ୍ ସମୁଚିତ ପ୍ରତିବଦଳର) ନିୟମ ଧାର୍ଯ୍ୟ କରାଯାଉଛି । ସ୍ୱାଧୀନ ପୁରୁଷ ବଦଳରେ ସ୍ୱାଧୀନ ପୁରୁଷର, ଦାସ ବଦଳରେ ଦାସର ଏବଂ ନାରୀ ବଦଳରେ ନାରୀର (ପ୍ରାଣଦଣ୍ଡ ହେବ) । ପୁନଶ୍ଚ ଯଦି ହତ୍ୟାକାରୀକୁ ତା' ଭାଇ (ଅର୍ଥାତ୍ ନିହତ ବ୍ୟକ୍ତିର ଉତ୍ତରାଧିକାରୀ) ପକ୍ଷରୁ କିଛି କ୍ଷମା ଦିଆଯାଏ, ତେବେ ଉଚିତ ପନ୍ଥା ଅନୁଯାୟୀ (ପ୍ରତିବଦଳ) ଦାବୀ କରିବାର ଅଧିକାର ଉତ୍ତରାଧିକାରୀଙ୍କର ରହିଛି ଏବଂ ଏହାକୁ ଖୁସି ମନରେ ଦେଇଦେବା ଉଚିତ । ତୁମ ପାଳନକର୍ତ୍ତାଙ୍କ ତରଫରୁ ଏହା ଏକ କୋହଳ ବ୍ୟବସ୍ଥା ଏବଂ ତାଙ୍କର ଏକ କରୁଣା । ଏହାପରେ ଯଦି କେହି ସୀମାଲଂଘନ କରେ, ତେବେ ସେ ଯନ୍ତ୍ରଣାଦାୟକ ଶାସ୍ତି ଭୋଗିବ । ୧୭୯. ହେ ବୁଦ୍ଧିମାନ ବ୍ୟକ୍ତିଗଣ ! ଏହି ଦଣ୍ଡ ବ୍ୟବସ୍ଥାରେ ତୁମମାନଙ୍କ ପ୍ରାଣର ସୁରକ୍ଷା ନିହିତ ରହିଛି, ଯାହାଫଳରେ ତୁମେମାନେ (ନରହତ୍ୟାରୁ) ନିବୃତ୍ତ ରହିବ ।

୧୮୦. ତୁମମାନଙ୍କୁ ଆଦେଶ ଦିଆଯାଉଛି ଯେ ଯଦି ତୁମ ଭିତରୁ କାହାରି ମୃତ୍ୟୁ ସମୟ ଆସିଯାଏ ଏବଂ ତା'ର ଧନସଂପତ୍ତି ଥାଏ, ତେବେ ସେ ନିଜ

ପିତାମାତା ଓ ଆତ୍ମୀୟସ୍ୱଜନଙ୍କ ପାଇଁ ଉଚିତ ପନ୍ଥା ଅନୁଯାୟୀ ଇଚ୍ଛାପତ୍ର କରୁ। ଅଲ୍ଲାହଙ୍କୁ ଭୟ କରୁଥିବା ଲୋକମାନଙ୍କର ଏହା ପରମ କର୍ତ୍ତବ୍ୟ। ୧୮୧. ଇଚ୍ଛାପତ୍ର ଶୁଣିବା ପରେ ଯଦି କେହି ସେଥିରେ ପରିବର୍ତ୍ତନ କରେ, ତେବେ ଯେଉଁମାନେ ସେଥିରେ ପରିବର୍ତ୍ତନ କରିବେ, ସେମାନଙ୍କୁ ଏହାର ପାପ ହେବ। ଅଲ୍ଲାହ୍ ଅବଶ୍ୟ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି। ୧୮୨. ଯଦି ଇଚ୍ଛାପତ୍ର କରୁଥିବା ବ୍ୟକ୍ତି ପକ୍ଷପାତିତା ବା ଅନ୍ୟାୟ କରିଛି ବୋଲି କାହାକୁ ଆଶଂକା ହୁଏ ଏବଂ ସେ ସେମାନଙ୍କ ମଧ୍ୟରେ ବୁଝାମଣା କରିଦିଏ, ତେବେ ଏଥିରେ ତାକୁ ପାପ ହେବନାହିଁ। ଅଲ୍ଲାହ୍ ଅବଶ୍ୟ କ୍ଷମାଶୀଳ ଏବଂ କରୁଣାମୟ।

୧୮୩. ହେ ସଦ୍‌ବିଶ୍ୱାସୀଗଣ! ତୁମମାନଙ୍କ ପାଇଁ ଉପବାସ ପାଳନ କରିବା ଅପରିହାର୍ଯ୍ୟ କରାଗଲା ଯେପରି ତୁମ ପୂର୍ବଜମାନଙ୍କ ପାଇଁ କରା ଯାଇଥିଲା, ଯାହାଫଳରେ ତୁମେମାନେ ସଦାଚାରୀ ହେବ। ୧୮୪. ମାତ୍ର କେତୋଟି ଦିନର ଉପବାସ। ପୁଣି ତୁମମାନଙ୍କ ମଧ୍ୟରେ ଯିଏ ଅସୁସ୍ଥ ଥାଏ ବା (କୋଣସି ସ୍ଥାନକୁ) ଯାତ୍ରା କରୁଥାଏ, ତେବେ ସେ ଅନ୍ୟ ଦିନରେ (ଉପବାସର) ସଂଖ୍ୟା ପୂରଣ କରିଦେଉ। ଉପବାସ କରିବାକୁ ସକ୍ଷମ ଥିବା ଲୋକମାନଙ୍କ ପାଇଁ (ଦିନକର ଉପବାସ ନିମନ୍ତେ) ଜଣେ ଗରିବକୁ ଭୋଜନ କରାଇବା ଏହାର ପ୍ରାୟଶ୍ଚିତ ହେବ। ଯିଏ ସ୍ୱଇଚ୍ଛାରେ ଅଧିକ ପୁଣ୍ୟ କରିବ, ତା' ପକ୍ଷରେ ଖୁବ ଭଲ ହେବ। ଯଦି ତୁମମାନେ ଏହା ବୁଝିପାର, ତେବେ (ଜାଣିରଖ ଯେ) ଉପବାସ ପାଳନ କରିବା ତୁମମାନଙ୍କ ପକ୍ଷରେ ଯଥେଷ୍ଟ ଭଲ। ୧୮୫. ରମଜାନ ସେହି ମାସ, ଯେଉଁ ମାସରେ ମାନବଜାତିର ମାର୍ଗଦର୍ଶନ ପାଇଁ କୁରଆନ ଅବତୀର୍ଣ୍ଣ ହେଲା ଏବଂ ଏଥିରେ (ଲୋକମାନଙ୍କର) ମାର୍ଗଦର୍ଶନ ସକାଶେ ସ୍ପଷ୍ଟ ପ୍ରମାଣ ରହିଛି ଏବଂ ଏହା (ସତ୍ ଓ ଅସତ୍ ମଧ୍ୟରେ ପ୍ରଭେଦ କରିବାର) ଏକ କଷଟି ମଧ୍ୟ। ତୁମମାନଙ୍କ ମଧ୍ୟରୁ ଯିଏ ଏହି ମାସରେ (ଘରେ) ଉପସ୍ଥିତ ଥାଏ, ସେ ଏଥିରେ ଉପବାସ କରୁ ଏବଂ ଯିଏ ଅସୁସ୍ଥ ଥାଏ କିମ୍ବା ଯାତ୍ରା କରୁଥାଏ, ତେବେ ସେ ଅନ୍ୟ ଦିନରେ (ଉପବାସ ପାଳନ କରି) ଏହି ସଂଖ୍ୟା ପୂରଣ କରିଦେଉ। ଅଲ୍ଲାହ୍ ତୁମମାନଙ୍କର କାମକୁ ସହଜ କରିବାକୁ ଚାହାନ୍ତି ମାତ୍ର ତୁମମାନଙ୍କୁ ଅସୁବିଧାରେ ପକାଇବାକୁ ଚାହାନ୍ତିନାହିଁ। (ସେ ଚାହାନ୍ତି ଯେ) ତୁମେମାନେ ଉପବାସର ସଂଖ୍ୟା ପୂରଣ କର ଏବଂ ଅଲ୍ଲାହ୍

ତୁମମାନଙ୍କର ମାର୍ଗଦର୍ଶନ କରିଥିବାରୁ ତାଙ୍କର ମହିମାଗାନ କର ଏବଂ ତାଙ୍କ ପ୍ରତି କୃତଜ୍ଞ ହୁଅ ।

୧୮୬. (ହେ ବାର୍ତ୍ତାବହ!) ଯଦି ମୋ' ଭକ୍ତମାନେ ମୋ' ବିଷୟରେ ତୁମକୁ ପଚାରନ୍ତି, ତେବେ ସେମାନଙ୍କୁ କହିଦିଅ ଯେ ମୁଁ ସେମାନଙ୍କ ନିକଟରେ ଅଛି । ଯେତେବେଳେ କେହି ମୋତେ ଡାକେ, ମୁଁ ତା' ଡାକ ଶୁଣେ । ତେଣୁ, ସେମାନେ ମଧ୍ୟ ମୋ' କଥା ମାନନ୍ତୁ ଏବଂ ମୋ' ପ୍ରତି ବିଶ୍ୱାସ ରଖନ୍ତୁ, ଯାହାଫଳରେ ସେମାନେ ସତ୍‌ପଥ ପାଇବେ ।

୧୮୭. ତୁମମାନଙ୍କ ପାଇଁ ରମଜାନ ରାତିରେ ନିଜ ପତ୍ନୀମାନଙ୍କ ପାଖକୁ ଯିବା ବୈଧ କରାଗଲା । ସେମାନେ ତୁମର ପରିଧାନ ଏବଂ ତୁମେମାନେ ସେମାନଙ୍କର ପରିଧାନ । ଅଲ୍ଲାହ୍ ଜାଣିଲେ ଯେ ତୁମେମାନେ ଏ ବିଷୟରେ ନିଜ ସହିତ ଛଳନା କରୁଥିଲ, ତେଣୁ ସେ ତୁମମାନଙ୍କ ଉପରେ ଦୟା କଲେ ଏବଂ ତୁମମାନଙ୍କୁ କ୍ଷମା କରିଦେଲେ । ସୁତରାଂ, ଏବେ ସେମାନଙ୍କ ସହିତ ରାତ୍ରୀଯାପନ କର ଏବଂ ତାହା କାମନା କର ଯାହା ଅଲ୍ଲାହ୍ ତୁମମାନଙ୍କ ଭାଗ୍ୟରେ ଲେଖି ଦେଇଛନ୍ତି । ପ୍ରଭାତର ଶ୍ୱେତ ରେଖା କୃଷ୍ଣ ରେଖା ଠାରୁ ପୃଥକ ଦେଖାଯିବା ପର୍ଯ୍ୟନ୍ତ ଖିଆପିଆ କର ଏବଂ ତା'ପରେ ରାତି ହେବା ପର୍ଯ୍ୟନ୍ତ ଉପବାସ ପାଳନ କର । ଯଦି ତୁମେ ମସଜିଦରେ ଏତେକାଫ୍ (ଅର୍ଥାତ୍ ଏକାନ୍ତ ବାସ) କର, ସେତେବେଳେ ପତ୍ନୀମାନଙ୍କ ସହିତ ଶାରିରୀକ ସଂପର୍କ ରଖନାହିଁ । ଏହା ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ସୀମା । ତେଣୁ, ସେମାନଙ୍କ ପାଖକୁ ଯାଅନାହିଁ । ଅଲ୍ଲାହ୍ ଲୋକମାନଙ୍କ ପାଇଁ ତାଙ୍କର ଆଦେଶଗୁଡ଼ିକୁ ଏହିପରି ପରିଷ୍କାର ଭାବରେ ବର୍ଣ୍ଣନା କରନ୍ତି ଯେପରିକି ସେମାନେ କୁକର୍ମରୁ ବିରତ ରହିବେ ।

୧୮୮. ଅସଦୁପାୟରେ ପରସ୍ପରର ଧନସଂପତ୍ତି ଖାଅନାହିଁ କିମ୍ବା ଲୋକମାନଙ୍କର ଧନ ଆତ୍ମସାତ୍ କରିବା ଉଦ୍ଦେଶ୍ୟରେ ବିଚାରକମାନଙ୍କୁ ଉତ୍କୋଚ ଦିଅନାହିଁ । ତୁମେମାନେ ଏହା (ପାପ ବୋଲି) ଜାଣ ।

୧୮୯. ଲୋକମାନେ ଚନ୍ଦ୍ର ବିଷୟରେ ପଚାରୁଛନ୍ତି । ତୁମେ କୁହ ଯେ ଏହା ଲୋକମାନଙ୍କ ପାଇଁ ତିଥି ନିର୍ଦ୍ଧାରଣ କରିବା ଏବଂ ହଜ୍‌ର ସମୟ ଜାଣିବା ପାଇଁ

ଉଦ୍ଦିଷ୍ଟ । (ହେ ମୁସଲମାନମାନେ!) ପଛପଟୁ ଘର ଭିତରେ ପ୍ରବେଶ କରିବା କୌଣସି ପୁଣ୍ୟକାର୍ଯ୍ୟ ନୁହେଁ, ମାତ୍ର ପୁଣ୍ୟ ହେଉଛି ଯେ ମଣିଷ କୁକର୍ମରୁ ନିବୃତ୍ତ ରହୁ । ଘର ଭିତରେ ଏହାର ଦ୍ୱାର ବାଟେ ପ୍ରବେଶ କର ଏବଂ ଅଲ୍ଲାହଙ୍କୁ ଭୟ କରୁଥାଅ, ଯାହାଫଳରେ ତୁମେମାନେ ସଫଳ ହେବ ।

୧୯୦. ଅଲ୍ଲାହଙ୍କ ମାର୍ଗରେ କେବଳ ସେହିମାନଙ୍କ ସହିତ ଲଢ଼ ଯେଉଁମାନେ ତୁମମାନଙ୍କ ସହିତ ଲଢୁଛନ୍ତି କିନ୍ତୁ (କାହାରି ପ୍ରତି ଅତ୍ୟାଚାର କରି) ସୀମା ଅତିକ୍ରମ କରନାହିଁ । ସୀମାଲଂଘନ କରୁଥିବା ଲୋକମାନଙ୍କୁ ଅଲ୍ଲାହ୍ ଆଦୌ ପସନ୍ଦ କରନ୍ତିନାହିଁ । ୧୯୧. ସେମାନଙ୍କୁ ଯେଉଁଠି ପାଅ ହତ୍ୟାକର ଏବଂ ସେମାନଙ୍କୁ ସେହି ଜାଗାରୁ ତଡ଼ିଦିଅ ଯେଉଁଠାରୁ ସେମାନେ ତୁମମାନଙ୍କୁ ତଡ଼ିଛନ୍ତି । (ଶୁଣ!) ଉତ୍ପୀଡ଼ନ ନରହତ୍ୟାଠାରୁ ମଧ୍ୟ ଅଧିକ ମାରାତ୍ମକ । ଯଦି ସେମାନେ ତୁମମାନଙ୍କ ସହିତ ପବିତ୍ର (କାବା) ମସଜିଦ ନିକଟରେ ଯୁଦ୍ଧ ନକରନ୍ତି, ତେବେ ତୁମେମାନେ ମଧ୍ୟ ସେଠାରେ ସେମାନଙ୍କ ସହିତ ଯୁଦ୍ଧ କରନାହିଁ, କିନ୍ତୁ ଯଦି ସେମାନେ (ସେଠାରେ ମଧ୍ୟ) ଯୁଦ୍ଧ କରନ୍ତି, ତେବେ ସେମାନଙ୍କୁ ହତ୍ୟା କର । ଏହାହିଁ ନାସ୍ତିକମାନଙ୍କ ପାଇଁ ଉପଯୁକ୍ତ ଶାସ୍ତି । ୧୯୨. ଯଦି ସେମାନେ ଏଥିରୁ ନିବୃତ୍ତ ହୁଅନ୍ତି, ତେବେ ଅଲ୍ଲାହ୍ ଅବଶ୍ୟ କ୍ଷମାଶୀଳ ଏବଂ କରୁଣାମୟ । ୧୯୩. ଯେପର୍ଯ୍ୟନ୍ତ ଉତ୍ପୀଡ଼ନର ଅନ୍ତ ନହୋଇଛି, ସେମାନଙ୍କ ସହିତ ଯୁଦ୍ଧ କରୁଥାଅ । ଅଲ୍ଲାହଙ୍କ ଧର୍ମ ସ୍ଥାପିତ ହେଉ । ପୁଣି ଯଦି ସେମାନେ ଏଥିରୁ ନିବୃତ୍ତ ହୁଅନ୍ତି, ତେବେ (ମନେରଖ) କେବଳ ଅତ୍ୟାଚାରୀମାନଙ୍କ ବ୍ୟତୀତ (ଅନ୍ୟ କାହାରି ସହିତ) ଶତ୍ରୁତା କରିବା ଉଚିତ ନୁହେଁ ।

୧୯୪. ପବିତ୍ର ମାସର ପ୍ରତିବଦଳ ପବିତ୍ର ମାସ ଏବଂ ଏହାର ଉଲଂଘନ କଲେ ପ୍ରତିଶୋଧ ନିଆଯିବ । ତେଣୁ, ଯଦି କେହି (ପବିତ୍ର ମାସରେ) ତୁମମାନଙ୍କ ପ୍ରତି ଅତ୍ୟାଚାର କରେ, ତେବେ ତୁମେମାନେ ମଧ୍ୟ ତା'ଠାରୁ ସେହି ପରିମାଣରେ ପ୍ରତିଶୋଧ ନିଅ । ଅଲ୍ଲାହଙ୍କୁ ଭୟ କରୁଥାଅ ଏବଂ ଜାଣିରଖ ଯେ ଅଲ୍ଲାହ୍ ସଦାଚାରୀମାନଙ୍କ ସହିତ ଥାଆନ୍ତି । ୧୯୫. ଅଲ୍ଲାହଙ୍କ ମାର୍ଗରେ ଧନ ଖର୍ଚ୍ଚ କର ଆଉ ନିଜ ହାତରେ ନିଜର ସର୍ବନାଶ କରନାହିଁ । ପରୋପକାର କର । ଅଲ୍ଲାହ୍ ପରୋପକାରୀମାନଙ୍କୁ ପ୍ରେମ କରନ୍ତି ।

୧୯୬. ଅଲ୍ଲାହଙ୍କ ସେବାରେ ହଜ୍ ଓ ଉମ୍ରା ପାଳନ କର। ଯଦି ଏଥିରେ ତୁମମାନଙ୍କୁ ବାଧା ଦିଆଯାଏ, ତେବେ ନିଜ ସାମର୍ଥ୍ୟ ଅନୁସାରେ ବଳି ଉତ୍ସର୍ଗ କର ଏବଂ ବଳିର ପଶୁ ବାଂଛିତ ସ୍ଥାନରେ ନପହଁଚିବା ପର୍ଯ୍ୟନ୍ତ ମସ୍ତକମୁଣ୍ଡନ କରନାହିଁ। ଯଦି ତୁମମାନଙ୍କ ମଧ୍ୟରୁ କେହି ଅସୁସ୍ଥ ଥାଏ କିମ୍ବା ତା' ମୁଣ୍ଡରେ ଯନ୍ତ୍ରଣା ହେଉଥାଏ ତେବେ ଏହାର ପ୍ରାୟଶ୍ଚିତ ରୂପେ ସେ ଉପବାସ ପାଳନ କରୁ ଅଥବା ଦାନ ଦେଉ କିମ୍ବା ବଳି ଉର୍ତ୍ସଗ କରୁ। ପୁଣି ଯେତେବେଳେ ତୁମେମାନେ ନିରାପଦ ମନେକର, ସେତେବେଳେ ଯଦି କେହି ହଜ୍ ପର୍ଯ୍ୟନ୍ତ ଉମ୍ରାର ଫାଇଦା ନେବାକୁ ଚାହେଁ, ସେ ନିଜ ସାମର୍ଥ୍ୟ ଅନୁସାରେ ବଳି ଉତ୍ସର୍ଗ କରୁ ଏବଂ ଯଦି ଏହାର ସାମର୍ଥ୍ୟ ନାହିଁ, ତେବେ ହଜ୍ ସମୟରେ ତିନିଦିନ ଉପବାସ ପାଳନ କରୁ ଏବଂ ଘରକୁ ଫେରିଲା ପରେ ସାତ ଦିନ। ଏହା ପୂରା ଦଶଦିନ ହେଲା। ଏହି ନିୟମ ସେଇମାନଙ୍କ ପାଇଁ, ଯେଉଁମାନଙ୍କ ପରିବାରବର୍ଗ ପବିତ୍ର (ମକ୍କା) ମସ୍‌ଜିଦ ନିକଟରେ ବାସ କରନ୍ତିନାହିଁ। ଅଲ୍ଲାହଙ୍କୁ ଭୟ କରୁଥାଅ ଏବଂ ଜାଣିରଖ ଯେ ଅଲ୍ଲାହ୍ କଠୋର ଶାସ୍ତି ଦିଅନ୍ତି। ୧୯୭. ହଜ୍‌ର ମାସ ନିର୍ଦ୍ଧାରିତ। ଯିଏ ଏହି ମାସରେ ହଜ୍‌ର ସଂକଳ୍ପ କରେ, ତା' ପକ୍ଷରେ ହଜ୍ ସମୟରେ କୌଣସି ଅଶ୍ଳୀଳ କର୍ମ, ଅସତ୍ ଆଚରଣ ବା ଝଗଡ଼ା ଆଦି କରିବା ଉଚିତ ନୁହେଁ। ତୁମେମାନେ ଯାହା ଭଲ କର୍ମ କରିବ, ଅଲ୍ଲାହ୍ ଜାଣିବେ। (ହଜ୍ ଯାତ୍ରା ପାଇଁ) ସାଂଗରେ ବାଟଖର୍ଚ୍ଚ ନିଅ, ମାତ୍ର ଧର୍ମପରାୟଣତା ହେଉଛି ସର୍ବୋତ୍ତମ ପାଥେୟ। ହେ ବୁଦ୍ଧିମାନ ଲୋକମାନେ! ମୋ' ପ୍ରତି ଭୟ ରଖ।

୧୯୮. (ହଜ୍ ସମୟରେ) ଅଲ୍ଲାହଙ୍କର ଅନୁଗ୍ରହ ସନ୍ଧାନ କରିବା (ଅର୍ଥାତ୍ ରୋଜଗାର କରିବା) ତୁମମାନଙ୍କ ପାଇଁ ଦୋଷାବହ ନୁହେଁ। ପୁଣି ଯେତେବେଳେ ତୁମେମାନେ ଆରାଫାତରୁ ଫେରିଆସ, ମୁଜ୍‌ଦଲଫାଠାରେ ବିଶ୍ରାମ ନେଇ ଅଲ୍ଲାହଙ୍କୁ ସ୍ମରଣ କର ଏବଂ ଅଲ୍ଲାହଙ୍କୁ ସେହିପରି ସ୍ମରଣ କର ଯେପରି କରିବାର ଶିକ୍ଷା ସେ ତୁମମାନଙ୍କୁ ଦେଇଛନ୍ତି। ବାସ୍ତବରେ ଏହା ପୂର୍ବରୁ ତୁମେମାନେ ଏବିଷୟରେ ଅଜ୍ଞ ଥିଲ। ୧୯୯. ତା'ପରେ ଅନ୍ୟମାନେ ଯେଉଁଠାରୁ ଫେରି ଆସନ୍ତି, ତୁମେମାନେ ମଧ୍ୟ ସେଇଠାରୁ ଫେରିଆସ ଏବଂ ଅଲ୍ଲାହଙ୍କ ନିକଟରେ କ୍ଷମାପ୍ରାର୍ଥନା କର। ସେ ଅବଶ୍ୟ କ୍ଷମାଶୀଳ ଏବଂ କରୁଣାମୟ। ୨୦୦. ହଜ୍‌ର ଆନୁଷ୍ଠାନିକ ରୀତି ସମ୍ପନ୍ନ

କରିବା ପରେ ଅଲ୍ଲାହଙ୍କର ସେହିପରି ଗୁଣଗାନ କର ଯେପରି ନିଜ ବାପଅଜାଙ୍କର ଗୁଣଗାନ କରିଥାଅ, ବରଂ ତା'ଠାରୁ ଅଧିକ କର । କେତେକ ଲୋକ ପ୍ରାର୍ଥନା କରନ୍ତି, "ହେ ଈଶ୍ୱର ! ଆମକୁ (ଯାହା ଦେବ) ଏହି ସଂସାରରେ ଦେଇଦିଅ" । ଏହି ଲୋକମାନଙ୍କର ପରଲୋକରେ କିଛି ଭାଗ ନାହିଁ । ୨୦୧. ଆଉ କେତେକ ଲୋକ ଅଛନ୍ତି, ଯେଉଁମାନେ କୁହନ୍ତି "ହେ ଈଶ୍ୱର ! ଇହଲୋକରେ ଓ ପରଲୋକରେ ଆମର ମଂଗଳ କର ଏବଂ ଆମକୁ ନର୍କଦଣ୍ଡରୁ ରକ୍ଷା କର ।" ୨୦୨. ଏହି ଲୋକମାନଙ୍କୁ ସେମାନଙ୍କର ଅର୍ଜିତ କର୍ମର ପୁଣ୍ୟ ମିଳିବ ଏବଂ ଅଲ୍ଲାହ୍ ଖୁବ୍ ଶୀଘ୍ର ହିସାବ ନେବେ । ୨୦୩. (ମୀନାରେ ଥିବା ସମୟରେ) ଏହି କେତୋଟି ଦିନ ଅଲ୍ଲାହଙ୍କୁ ସ୍ମରଣ କର । ଯଦି କେହି ଦୁଇଦିନରେ (ମକ୍କା) ଫେରିଯାଏ ତାକୁ ପାପ ହେବ ନାହିଁ କିମ୍ବା ଯିଏ ପରେ ଫେରିବ ତାକୁ ମଧ୍ୟ ପାପ ହେବ ନାହିଁ ଯଦି ସେ ସଦାଚାରିତା ଅବଲମ୍ବନ କରିଥାଏ । ଅଲ୍ଲାହଙ୍କୁ ଭୟ କରୁଥାଅ ଏବଂ ଜାଣିରଖ ଯେ ତୁମେମାନେ ତାଙ୍କ ସାମନାରେ ଏକାଠି ହୋଇ ଉପସ୍ଥିତ ହେବ ।

୨୦୪. ଏମିତି ଲୋକ ମଧ୍ୟ ଅଛନ୍ତି, ଯେଉଁମାନଙ୍କର କଥାବାର୍ତ୍ତା ତୁମକୁ ସାଂସାରିକ ଜୀବନରେ ଖୁବ୍ ଭଲ ଲାଗେ ଏବଂ ସେମାନେ ନିଜ ମନର କଥା ବିଷୟରେ ଅଲ୍ଲାହଙ୍କୁ ସାକ୍ଷୀ ରଖନ୍ତି କିନ୍ତୁ ସେମାନେ ତୁମର ପ୍ରବଳ ବିରୋଧୀ । ୨୦୫. ଯେତେବେଳେ ସେମାନେ ତୁମ ପାଖରୁ ଯାଆନ୍ତି, ଏହି ଚେଷ୍ଟାରେ ଥାଆନ୍ତି ଯେ କେଉଁଠି ଅଶାନ୍ତି ସୃଷ୍ଟି କରିବେ, କାହାର ଫସଲ ନଷ୍ଟ କରିବେ ବା କାହାର ବଂଶ ନିପାତ କରିବେ । ଅଲ୍ଲାହ୍ ଅଶାନ୍ତି ପସନ୍ଦ କରନ୍ତିନାହିଁ । ୨୦୬. ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଅଲ୍ଲାହଙ୍କୁ ଭୟ କର, ସେମାନଙ୍କ ଅହଂକାର ସେମାନଙ୍କୁ ପାପରେ ଲିପ୍ତ କରିଦିଏ । ଏଭଳି ଲୋକଙ୍କ ପାଇଁ ନର୍କ ହିଁ ଯଥେଷ୍ଟ ଏବଂ ଏହା ଅତି କଦର୍ଯ୍ୟ ସ୍ଥାନ । ୨୦୭. (ଅନ୍ୟ ପକ୍ଷରେ) ଏଭଳି ଲୋକ ମଧ୍ୟ ଅଛନ୍ତି ଯେଉଁମାନେ ଅଲ୍ଲାହଙ୍କ ପ୍ରସନ୍ନତା ପାଇଁ ନିଜ ପ୍ରାଣ ଉତ୍ସର୍ଗ କରିଦିଅନ୍ତି । ଅଲ୍ଲାହ୍ ତାଙ୍କ ଭକ୍ତମାନଙ୍କ ପ୍ରତି ଅତ୍ୟନ୍ତ ଦୟାଳୁ ।

୨୦୮. ହେ ମୁସଲମାନଗଣ ! ପୂର୍ଣ୍ଣପ୍ରାଣରେ ଇସଲାମ ଗ୍ରହଣ କର ଏବଂ ଶଇତାନର ପଦାଙ୍କ ଅନୁସରଣ କରନାହିଁ । ସେ ଅବଶ୍ୟ ତୁମର ପରମ ଶତ୍ରୁ ।

୨୦୯. ତୁମମାନଙ୍କୁ ସ୍ପଷ୍ଟ ପ୍ରମାଣ ମିଳିବା ସତ୍ତ୍ୱେ ଯଦି ତୁମମାନଙ୍କର ପାଦ ଖସିଯାଏ ତେବେ ଜାଣିରଖ ଯେ ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ ।

୨୧୦. କ'ଣ ସେମାନେ ଏହାରି ଅପେକ୍ଷାରେ ଅଛନ୍ତି ଯେ ଅଲ୍ଲାହ୍ ଦେବଦୂତମାନଙ୍କ ସହିତ ବାଦଲର ଆବରଣ ତଳେ ଉଭା ହୁଅନ୍ତୁ ଏବଂ କଥାର ନିଷ୍ପତ୍ତି ହୋଇଯାଉ ? ଶେଷରେ ସବୁ ବିଷୟ (ନିଷ୍ପତ୍ତି ପାଇଁ) ଅଲ୍ଲାହଙ୍କ ପାଖରେ ଉପସ୍ଥାପିତ ହେବ । ୨୧୧. ଇସରାଇଲ ବଂଶଜମାନଙ୍କୁ ପଚାର ଯେ ଆମ୍ଭେ ସେମାନଙ୍କୁ କେତେ ସ୍ପଷ୍ଟ ନିଦର୍ଶନ ଦେଇଥିଲୁ । ଅଲ୍ଲାହଙ୍କ ଅନୁଗ୍ରହ (ଅର୍ଥାତ ଇସଲାମ) ପହଁଚି ସାରିବା ପରେ ଯିଏ (ନିଜର ବାଟ) ବଦଳି ଦିଏ, (ସେ ଜାଣି ରଖୁ ଯେ) ଅଲ୍ଲାହ୍ କଠୋର ଶାସ୍ତି ଦିଅନ୍ତି ।

୨୧୨. ନାସ୍ତିକମାନଙ୍କ ପାଇଁ ପାର୍ଥିବଜୀବନକୁ ଆକର୍ଷଣୀୟ କରି ଦିଆଯାଇଛି ଏବଂ ସେମାନେ ସଦ୍‌ବିଶ୍ୱାସୀମାନଙ୍କୁ ବିଦ୍ରୂପ କରୁଛନ୍ତି । ବିଚାର ଦିନ ସଦାଚାରୀମାନେ ସେମାନଙ୍କଠାରୁ ବହୁତ ଉପରେ ଥିବେ । ଅଲ୍ଲାହ୍ ଯାହାକୁ ଚାହାନ୍ତି ଅପରିମିତ ସାଂସାରିକ ସାଧନ ଦିଅନ୍ତି ।

୨୧୩. (ଆରମ୍ଭରେ) ମାନବଜାତି ଗୋଟିଏ ଧର୍ମ ଅବଲମ୍ବନ କରିଥିଲା । ପୁଣି (ସେମାନଙ୍କ ମଧ୍ୟରେ ମତଭେଦ ହେବାରୁ) ଅଲ୍ଲାହ୍ (ସ୍ୱର୍ଗର) ସୁସମାଚାର ଦେବାପାଇଁ ଏବଂ (ନର୍କ ବିଷୟରେ) ସାବଧାନ କରିବା ପାଇଁ ନିଜର ପ୍ରତିନିଧିମାନଙ୍କୁ ପଠାଇଲେ ଏବଂ ସେମାନଙ୍କ ପ୍ରତି ସଦ୍‌ଗ୍ରନ୍ଥ ପ୍ରକଟ କଲେ ଯେପରିକି ଲୋକମାନଙ୍କ ବିବାଦର ସମାଧାନ ହେଉ । ମତଭେଦ ସେହିମାନେ କରିଥିଲେ ଯେଉଁମାନଙ୍କୁ ପୂର୍ବରୁ ଗ୍ରନ୍ଥ ଦିଆ ଯାଇଥିଲା । ସେମାନଙ୍କୁ ସ୍ପଷ୍ଟ ପ୍ରମାଣ ମିଳିବା ସତ୍ତ୍ୱେ କେବଳ ପରସ୍ପରର ଜିଦ୍ ଯୋଗୁଁ ସେମାନେ ଏହା କରିଥିଲେ । ପୁଣି ଯେଉଁମାନେ ବିଶ୍ୱାସ କରିନେଲେ, ଅଲ୍ଲାହ୍ ନିଜ କୃପାରୁ ସେମାନଙ୍କୁ ମତଭେଦର ବାସ୍ତବତା ବିଷୟରେ ମାର୍ଗଦର୍ଶନ କଲେ । ଅଲ୍ଲାହ୍ ଯାହାକୁ ଚାହାନ୍ତି ସଳଖ ବାଟ ଦେଖାଇଦିଅନ୍ତି ।

୨୧୪. (ହେ ମୁସଲମାନମାନେ !) କ'ଣ ତୁମେମାନେ ଭାବିଛ ଯେ ସ୍ୱର୍ଗରେ (ସହଜରେ) ପ୍ରବେଶ କରିଯିବ ଅଥଚ ଏପର୍ଯ୍ୟନ୍ତ ତୁମେ ସେହି ଅବସ୍ଥା ଭୋଗିନାହଁ ଯାହା ତୁମ ପୂର୍ବଜମାନେ ଭୋଗିଥିଲେ । ସେମାନଙ୍କ ଉପରେ ଏତେ

ଦୁଃଖବିପଦ ପଡ଼ିଥିଲା ଯେ ସେମାନେ ଥରି ଉଠିଥିଲେ ଏବଂ ରସୁଲ ଏବଂ ତାଙ୍କ ଅନୁଗାମୀମାନେ (ବିକଳ ହୋଇ) ଡ଼ାକିଥିଲେ, "ଆଉ କେବେ ଅଲ୍ଲାହଙ୍କଠାରୁ ସାହାଯ୍ୟ ଆସିବ ?" ଜାଣିରଖ, ଅଲ୍ଲାହଙ୍କର ସାହଯ୍ୟ ଖୁବ୍ ନିକଟରେ ଅଛି ।

୨୧୫. (ହେ ବାର୍ତ୍ତାବହ!) ଲୋକମାନେ ତୁମକୁ ପଚାରୁଛନ୍ତି ଯେ ସେମାନେ (ଅଲ୍ଲାହଙ୍କ ମାର୍ଗରେ) କ'ଣ ଖର୍ଚ୍ଚ କରିବେ । ସେମାନଙ୍କୁ କୁହ "ଯାହା ଧନ ତୁମେମାନେ ଖର୍ଚ୍ଚ କରିବ, ତାହାକୁ ତୁମ ପିତାମାତା, ଆତ୍ମୀୟ-ସ୍ୱଜନ, ଅନାଥ, ଦୀନଦରିଦ୍ର ଏବଂ (ଅସହାୟ) ପଥିକମାନଙ୍କ ପାଇଁ ଖର୍ଚ୍ଚ କର । ଯାହା ପୁଣ୍ୟ ତୁମେମାନେ କରିବ, ଅଲ୍ଲାହ୍ ନିଶ୍ଚୟ ଜାଣିବେ ।"

୨୧୬. ତୁମମାନଙ୍କୁ ଯୁଦ୍ଧର ଆଦେଶ ଦିଆଗଲା ଅଥଚ ଏହା ତୁମମାନଙ୍କୁ ଅପ୍ରିୟ ଲାଗୁଛି । ଏହା ମଧ୍ୟ ସମ୍ଭବ ଯେ କୌଣସି କଥା ତୁମମାନଙ୍କୁ ଭଲ ଲାଗେନାହିଁ ଅଥଚ ତାହା ତୁମପାଇଁ ହିତକର ହୋଇଥାଏ ଏବଂ ଏହା ମଧ୍ୟ ସଂଭବ ଯେ କୌଣସି କଥା ତୁମକୁ ଭଲଲାଗେ କିନ୍ତୁ ତାହା ପ୍ରକୃତରେ ତୁମପାଇଁ କ୍ଷତିକର ହୋଇଥାଏ । (ପ୍ରକୃତ କଥା) ଅଲ୍ଲାହ୍ ଜାଣନ୍ତି କିନ୍ତୁ ତୁମେମାନେ ଜାଣନାହିଁ ।

୨୧୭. ଲୋକମାନେ ତୁମକୁ ପବିତ୍ର ମାସରେ ଯୁଦ୍ଧ କରିବା ବିଷୟରେ ପ୍ରଶ୍ନ କରୁଛନ୍ତି । କୁହ, "ଏହି ମାସରେ ଯୁଦ୍ଧ କରିବା ମହାପାପ କିନ୍ତୁ (ଲୋକମାନଙ୍କୁ) ଅଲ୍ଲାହଙ୍କ ମାର୍ଗରୁ ରୋକିବା, ତାଙ୍କର ଅବମାନନା କରିବା, ପବିତ୍ର ମସଜିଦକୁ ଯିବାରେ ବାଧା ଦେବା ଏବଂ ଲୋକଙ୍କୁ ମସଜିଦରୁ ବାହାର କରିଦେବା, ଏହାଠାରୁ ଅଧିକ ଗୁରୁତର ଅପରାଧ । ଉତ୍ପୀଡ଼ନ ନରହତ୍ୟାଠାରୁ ଅଧିକ ମାରାତ୍ମକ ।" ଯଦି ସେମାନଙ୍କ ପକ୍ଷରେ ସମ୍ଭବ ହୁଏ, ସେମାନେ ତୁମମାନଙ୍କୁ ତୁମ ଧର୍ମରୁ ବିଚ୍ୟୁତ କରିବା ପର୍ଯ୍ୟନ୍ତ ତୁମ ସହିତ ଲଢୁଥିବେ । ଯଦି ତୁମମାନଙ୍କ ମଧ୍ୟରୁ କେହି ତା' ଧର୍ମ ତ୍ୟାଗ କରେ ଏବଂ ନାସ୍ତିକ ଅବସ୍ଥାରେ ମରିଯାଏ, ତେବେ ଏଭଳି ଲୋକମାନଙ୍କର କର୍ମ ଇହଲୋକରେ ଓ ପରଲୋକରେ ବ୍ୟର୍ଥ ହୋଇଯିବ । ଏମାନେ ନର୍କକୁ ଯିବେ ଏବଂ ସେଠାରେ ସର୍ବଦା ରହିବେ । ୨୧୮. ଯେଉଁମାନେ ବିଶ୍ୱାସ କଲେ, ଦେଶତ୍ୟାଗ କଲେ ଏବଂ ଅଲ୍ଲାହଙ୍କ ମାର୍ଗରେ ସଂଘର୍ଷ କଲେ, ସେମାନେ ଅଲ୍ଲାହଙ୍କ କରୁଣାର ଅଶା ରଖିଛନ୍ତି । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ କୃପାଶୀଳ ।

୨୧୯. ଲୋକମାନେ ତୁମକୁ ମଦ୍ୟପାନ ଓ ଜୁଆଖେଳ ବିଷୟରେ ପ୍ରଶ୍ନ କରୁଛନ୍ତି । କହିଦିଅ, "ଏହି ଦୁଇଟିଯାକ ମହାପାପ । ଯଦିଓ ଏଥିରୁ ଲୋକଙ୍କର କିଛି ଲାଭ ହୁଏ, କିନ୍ତୁ ଲାଭ ତୁଳନାରେ ଏଗୁଡ଼ିକର ପାପ ଢ଼େର ବେଶୀ ।" ସେମାନେ ତୁମକୁ ପଚାରୁଛନ୍ତି ଯେ (ଅଲ୍ଲାହଙ୍କ ପ୍ରସନ୍ନତା ପାଇଁ) କେତେ ଧନ ଖର୍ଚ୍ଚ କରିବେ ? କହିଦିଅ, "ଯାହା ଧନ (ଆବଶ୍ୟକତା ପୂରଣ ହେଲା ପରେ) ବଳକା ରହିଯାଏ ।" ଏହିପରି ଅଲ୍ଲାହ୍ ତୁମମାନଙ୍କ ପାଇଁ ନିଜର ଆଦେଶଗୁଡ଼ିକୁ ପରିଷ୍କାର ଭାବରେ ବର୍ଣ୍ଣନା କରୁଛନ୍ତି ଯେପରିକି ତୁମେମାନେ ବିଚାର କରିବ – ୨୨୦. ଇହଲୋକ ଓ ପରଲୋକ ବିଷୟରେ । ସେମାନେ ତୁମକୁ ଅନାଥମାନଙ୍କ ବିଷୟରେ ପଚାରୁଛନ୍ତି । କହିଦିଅ ଯେ ଯେଉଁଥିରେ ସେମାନଙ୍କର ହିତ ଥାଏ ତାହାହିଁ କରିବା ଉଚିତ । ଯଦି ତୁମେମାନେ ସେମାନଙ୍କ ସହିତ ମିଳିମିଶି ରୁହ, (ତେବେ ଖୁବ୍ ଭଲ, କାରଣ) ସେମାନେ ମଧ୍ୟ ତୁମର ଭାଇ । ଅଲ୍ଲାହ୍ ବେଶ୍ ଜାଣନ୍ତି ଯେ କିଏ ଭ୍ରଷ୍ଟାଚାରୀ ଏବଂ କିଏ ହିତକାରୀ । ଯଦି ଅଲ୍ଲାହ ଚାହାନ୍ତେ, ତୁମମାନଙ୍କୁ କଠିନ ଆଦେଶ ଦିଅନ୍ତେ । ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ ।

୨୨୧. (ହେ ମୁସଲମାନଗଣ!) ବହୁଈଶ୍ୱରବାଦିନୀ ମହିଳାମାନେ (ଅଲ୍ଲାହଙ୍କୁ) ବିଶ୍ୱାସ ନକରିବା ପର୍ଯ୍ୟନ୍ତ ସେମାନଙ୍କୁ ବିବାହ କରନାହିଁ । ଜଣେ ବହୁଈଶ୍ୱରବାଦିନୀ ମହିଳା ତୁମକୁ ଯେତେ ଭଲ ଲାଗିଲେ ମଧ୍ୟ ସଦ୍‌ବିଶ୍ୱାସିନୀ ଦାସୀ ତା'ଠାରୁ ଭଲ ଏବଂ ବହୁଈଶ୍ୱରବାଦୀ ପୁରୁଷମାନେ (ଅଲ୍ଲାହଙ୍କୁ) ବିଶ୍ୱାସ ନକରିବା ପର୍ଯ୍ୟନ୍ତ ସେମାନଙ୍କ ସହ ନିଜ ମହିଳାମାନଙ୍କର ବିବାହ ଦିଅନାହିଁ କାରଣ ବହୁଈଶ୍ୱରବାଦୀ ପୁରୁଷ ତୁମକୁ ଯେତେ ଭଲ ଲାଗୁଥିଲେ ମଧ୍ୟ ଜଣେ ସଦ୍‌ବିଶ୍ୱାସୀ ଦାସ ତା' ଅପେକ୍ଷା ଭଲ । ସେମାନେ ନର୍କକୁ ଡାକନ୍ତି କିନ୍ତୁ ଅଲ୍ଲାହ ତାଙ୍କ କରୁଣାରୁ ସ୍ୱର୍ଗ ଏବଂ ମୁକ୍ତିର ମାର୍ଗକୁ ଡ଼ାକନ୍ତି । ସେ ଲୋକମାନଙ୍କ ପାଇଁ ତାଙ୍କର ବାଣୀଗୁଡ଼ିକୁ ପରିଷ୍କାର ଭାବରେ ବର୍ଣ୍ଣନା କରୁଛନ୍ତି ଯେପରିକି ସେମାନେ ଶିକ୍ଷାଲାଭ କରିବେ ।

୨୨୨. ଲୋକମାନେ ତୁମକୁ ଋତୁସ୍ରାବ ବିଷୟରେ ପଚାରୁଛନ୍ତି । କହିଦିଅ ଯେ ଏହା ଏକ ଅଶୁଦ୍ଧତା । ତେଣୁ, ଋତୁସ୍ରାବ କାଳରେ ପତ୍ନୀମାନଙ୍କଠାରୁ ଦୂରେଇ ରୁହ ଏବଂ ସେମାନେ ଶୁଦ୍ଧ ନହେବା ପର୍ଯ୍ୟନ୍ତ ସେମାନଙ୍କ ପାଖକୁ

ଯାଅନାହିଁ । ପୁଣି ଯେତେବେଳେ ସେମାନେ (ଋତୁସ୍ନାନ ପରେ) ଶୁଦ୍ଧ ହୋଇଯାଆନ୍ତି, ସେତେବେଳେ ଅଲ୍ଲାହଙ୍କ ନିର୍ଦ୍ଦେଶ ଅନୁଯାୟୀ ସେମାନଙ୍କ ପାଖକୁ ଯାଅ । ଅଲ୍ଲାହ୍ ଅବଶ୍ୟ ସେମାନଙ୍କୁ ପ୍ରେମ କରନ୍ତି ଯେଉଁମାନେ ଅନୁତାପ କରନ୍ତି ଏବଂ ଶୁଦ୍ଧ ଓ ପବିତ୍ର ରହନ୍ତି । ୨୨୩. ତୁମମାନଙ୍କ ପତ୍ନୀମାନେ ତୁମମାନଙ୍କ ପାଇଁ କ୍ଷେତ ସଦୃଶ (ଅର୍ଥାତ୍ ବଂଶବିସ୍ତାରର ମାଧ୍ୟମ) । ତେଣୁ ଇଚ୍ଛାମତେ ନିଜ କ୍ଷେତକୁ ଯାଅ ଏବଂ ନିଜ ଭବିଷ୍ୟତ ପାଇଁ ଭଲ କର୍ମ କର । ଅଲ୍ଲାହ୍‌ଙ୍କୁ ଭୟ କରୁଥାଅ ଏବଂ ଜାଣିରଖ ଯେ ତାଙ୍କ ସହିତ ତୁମେମାନେ ନିଶ୍ଚୟ ସାକ୍ଷାତ କରିବ । (ହେ ବାର୍ତ୍ତାବହ!) ସଦ୍‌ବିଶ୍ୱାସୀମାନଙ୍କୁ ସୁସମାଚାର ଦେଇଦିଅ ।

୨୨୪. ଅଲ୍ଲାହଙ୍କ ନାଁକୁ ଏଭଳି ରାଣନିୟମରେ ଏକ ବାହାନା ରୂପେ ବ୍ୟବହାର କରନାହିଁ ଯାହାଫଳରେ ତୁମମାନଙ୍କୁ ପୁଣ୍ୟ କାର୍ଯ୍ୟରୁ, ସଦାଚାରିତାରୁ ବା ଲୋକଙ୍କ ମଧ୍ୟରେ ଶାନ୍ତି ସ୍ଥାପନ କରିବାରୁ ବଂଚିତ ରହିବାକୁ ପଡ଼ିବ । ଅଲ୍ଲାହ୍ ସବୁ ଶୁଣନ୍ତି ଓ ସବୁ ଜାଣନ୍ତି । ୨୨୫. ଅଲ୍ଲାହ୍ ତୁମମାନଙ୍କର ନିରର୍ଥକ ରାଣ-ନିୟମଗୁଡିକୁ ଧରିବେ ନାହିଁ କିନ୍ତୁ ସେ ତୁମକୁ ସେହି ସଂକଳ୍ପ ପାଇଁ ଉତ୍ତରଦାୟୀ କରିବେ ଯାହା ତୁମର ଅନ୍ତର କରିଥାଏ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଏବଂ ସହନଶୀଳ ।

୨୨୬. ଯେଉଁମାନେ ପତ୍ନୀମାନଙ୍କଠାରୁ ପୃଥକ ରହିବାର ପ୍ରତିଜ୍ଞା କରନ୍ତି, ସେମାନଙ୍କୁ ଚାରିମାସ ସମୟ ଦିଆଯାଉଛି । ଯଦି ଏହି ସମୟ ମଧ୍ୟରେ ସେମାନେ ମନ ପରିବର୍ତ୍ତନ କରିନିଅନ୍ତି ତେବେ ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଏବଂ କରୁଣାମୟ । ୨୨୭. ଏବଂ ଯଦି ସେମାନେ ତଲାକ୍‌ର (ଅର୍ଥାତ୍ ବିବାହ-ବିଚ୍ଛେଦର) ନିଷ୍ପତ୍ତି ନିଅନ୍ତି, ତେବେ ଅଲ୍ଲାହ୍ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି । ୨୨୮. ତଲାକ୍ ନେଇଥିବା ମହିଳାମାନେ ତିନୋଟି ଋତୁକାଳ ଅପେକ୍ଷା କରନ୍ତୁ । ଯଦି ସେମାନଙ୍କର ଅଲ୍ଲାହଙ୍କୁ ଏବଂ ବିଚାର ଦିନକୁ ବିଶ୍ୱାସ କରୁଥାଆନ୍ତି, ତେବେ ଅଲ୍ଲାହ୍ ସେମାନଙ୍କ ଗର୍ଭରେ ଯାହା ସୃଷ୍ଟି କରିଛନ୍ତି, ତାକୁ ଲୁଚାଇବା ସେମାନଙ୍କ ପାଇଁ ବୈଧ ନୁହେଁ । ଏହି ଅବଧିରେ ଯଦି ସେମାନଙ୍କର ସ୍ୱାମୀମାନେ କଥାର ଆପୋଷ ସମାଧାନ କରିବାକୁ ଚାହାନ୍ତି, ତେବେ ପତ୍ନୀମାନଙ୍କୁ ଫେରାଇ ନେବାର ଅଧିକାର ସେମାନଙ୍କର

ଅଛି । ପୁରୁଷମାନଙ୍କ ପରି ନାରୀମାନଙ୍କର ନ୍ୟାୟସଂଗତ ଭାବରେ ସମାନ ଅଧିକାର ରହିଛି ଏବଂ ସେମାନଙ୍କ ଉପରେ ପୁରୁଷମାନଙ୍କର କିଛି ପ୍ରାଧାନ୍ୟ ରହିଛି । ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଓ ମହାଜ୍ଞାନୀ ।

୨୨୯. ତଲାକ୍ ଦୁଇଥର । ଏହାପରେ ନିୟମାନୁଯାୟୀ (ପତ୍ନୀମାନଙ୍କୁ) ଅଟକାଇ ନେବା ଉଚିତ କିମ୍ବା ବଦାନ୍ୟତାର ସହିତ ବିଦାୟ ଦେବା ଉଚିତ ଏବଂ ତୁମମାନେ ଯାହା ସେମାନଙ୍କୁ ଦେଇସାରିଛ, ସେଥିରୁ କିଛି ଫେରାଇନେବା ତୁମମାନଙ୍କ ପାଇଁ ବୈଧ ନୁହେଁ । ହଁ, ଯଦି ଉଭୟଙ୍କର ଆଶଙ୍କା ହୁଏ ଯେ ସେମାନେ ଅଲ୍ଲାହଙ୍କ ଦ୍ୱାରା ଧାର୍ଯ୍ୟ କରା ଯାଇଥିବା ସୀମା ମଧ୍ୟରେ ରହିପାରିବେ ନାହିଁ ତେବେ ଭିନ୍ନ କଥା । ଯଦି ତୁମମାନଙ୍କର ଆଶଙ୍କା ହୁଏ ଯେ ଦୁହେଁ ଅଲ୍ଲାହଙ୍କ ଦ୍ୱାରା ଧାର୍ଯ୍ୟ କରା ଯାଇଥିବା ସୀମାର ଆଦର କରିବେନାହିଁ, ତେବେ ଏଭଳି କ୍ଷେତ୍ରରେ ଯଦି ପତ୍ନୀ କିଛି ଧନ ଦେଇ ନିଜକୁ (ବିବାହ ବନ୍ଧନରୁ) ମୁକ୍ତ କରିନିଏ, ତା'ହେଲେ ଉଭୟଙ୍କୁ କୌଣସି ପାପ ହେବନାହିଁ । ଏହା ଅଲ୍ଲାହ୍ ଧାର୍ଯ୍ୟ କରିଥିବା ସୀମା । ତେଣୁ, ଏହାର ଉଲ୍ଲଂଘନ କରନାହିଁ । ଯେଉଁମାନେ ଅଲ୍ଲାହଙ୍କ ଦ୍ୱାରା ନର୍ଦ୍ଧାରିତ ସୀମାର ଉଲ୍ଲଂଘନ କରନ୍ତି ସେମାନେ ଭ୍ରଷ୍ଟାଚାରୀ । ୨୩୦. ଯଦି ପତି ପୁଣି (ତୃତୀୟ) ତଲାକ୍ ଦିଏ, ତେବେ ଯେପର୍ଯ୍ୟନ୍ତ ସେହି ନାରୀ ଅନ୍ୟ ପୁରୁଷ ସହ ବିବାହ ନକରେ, ସେ ତା' ପୂର୍ବ ସ୍ୱାମୀର ବିବାହଯୋଗ୍ୟା ନୁହେଁ । ଯଦି ଦ୍ୱିତୀୟ ପତି ତାକୁ ଛାଡ଼ପତ୍ର ଦେଇଦିଏ ଏବଂ ଉଭୟଙ୍କର (ପ୍ରଥମ ପତିପତ୍ନୀଙ୍କର) ହୃଦବୋଧ ହୁଏ ଯେ ଏବେ ସେମାନେ ଅଲ୍ଲାହଙ୍କ ସୀମାର ଆଦର କରିବେ, ତେବେ ଉଭୟ ପୁନର୍ବାର (ବିବାହ କରି) ପରସ୍ପର ସହିତ ମିଶିବାରେ କୌଣସି ପାପ ନାହିଁ । ଏଗୁଡ଼ିକ ଅଲ୍ଲାହ୍ ଧାର୍ଯ୍ୟ କରିଥିବା ସୀମା ଯାହାକୁ ସେ ଜ୍ଞାନୀ ଲୋକମାନଙ୍କ ପାଇଁ ବର୍ଣ୍ଣନା କରୁଛନ୍ତି । ୨୩୧. ଯଦି ତୁମେମାନେ ପତ୍ନୀମାନଙ୍କୁ ତଲାକ୍ ଦିଅ ଏବଂ ସେମାନଙ୍କର ଇଦ୍ଦତ୍ (ଅର୍ଥାତ୍ ପ୍ରତୀକ୍ଷା କାଳ) ଅତିବାହିତ ହୋଇଯାଏ, ତେବେ ସେମାନଙ୍କୁ ଭଲ ଭାବରେ ଗ୍ରହଣ କର କିମ୍ବା ଭଲ ଭାବରେ ବିଦାୟ ଦିଅ । ସେମାନଙ୍କୁ କଷ୍ଟ ବା ନିର୍ଯ୍ୟାତନା ଦେବା ଉଦ୍ଦେଶ୍ୟରେ ଅଟକାଇ ରଖନାହିଁ । ଯିଏ ଏଭଳି କରେ ସେ ପ୍ରକୃତରେ ନିଜର ଅନିଷ୍ଟ କରେ । ଅଲ୍ଲାହଙ୍କ ଆଦେଶକୁ ଖେଳ ତାମସା ମନେ କରନାହିଁ ଏବଂ ଅଲ୍ଲାହ୍ ତୁମମାନଙ୍କ ପ୍ରତି କରିଥିବା ଉପକାରଗୁଡ଼ିକୁ

ସ୍ମରଣ କର ଏବଂ (ଏହା ମନେରଖ ଯେ) ସେ ତୁମମାନଙ୍କ ପାଇଁ ଗ୍ରନ୍ଥ ଓ ତତ୍ତ୍ୱଜ୍ଞାନ ପଠାଇ ତୁମମାନଙ୍କୁ ଶିକ୍ଷା ଦେଉଛନ୍ତି । ଅଲ୍ଲାହଙ୍କୁ ଭୟ କର ଏବଂ ଜାଣିରଖ ଯେ ଅଲ୍ଲାହ୍ ସବୁ ଜାଣନ୍ତି ।

୨୩୨. ଯଦି ତୁମେ ପତ୍ନୀମାନଙ୍କୁ (ପ୍ରଥମ ବା ଦ୍ୱିତୀୟ ଥର) ତଲାକ ଦିଅ ଏବଂ ସେମାନଙ୍କର ଇଦ୍ଦତ୍ ସମୟ (ଅର୍ଥାତ୍ ପ୍ରତୀକ୍ଷା କାଳ) ଅତିବାହିତ ହୋଇଯାଏ ଏବଂ ଯଦି ଉଭୟ ପକ୍ଷ ଏଥିପାଇଁ ଉଚିତ ଭାବରେ ସମ୍ମତ ଥାଆନ୍ତି, ତେବେ (ହେ ଅଭିଭାବକମାନେ !) ପତିମାନଙ୍କ ସହିତ ସେମାନଙ୍କ ପୁର୍ନବିବାହରେ ପ୍ରତିବନ୍ଧକ ସୃଷ୍ଟି କରନାହିଁ । ଏହି ଉପଦେଶ ସେମାନଙ୍କୁ ଦିଆଯାଉଛି ଯେଉଁମାନେ ଅଲ୍ଲାହଙ୍କୁ ଏବଂ ପରଲୋକକୁ ବିଶ୍ୱାସ କରନ୍ତି । ଏହା ତୁମମାନଙ୍କ ପାଇଁ ଅତି ବିଶୁଦ୍ଧ ଓ ପବିତ୍ର ପନ୍ଥା । ଅଲ୍ଲାହ୍ ଜାଣନ୍ତି କିନ୍ତୁ ତୁମେମାନେ ଜାଣନାହିଁ ।

୨୩୩. ମାଆମାନେ ସେମାନଙ୍କର ସନ୍ତାନମାନଙ୍କୁ ସଂପୂର୍ଣ୍ଣ ଦୁଇ ବର୍ଷ ଦୁଗ୍ଧପାନ କରାନ୍ତୁ । ଏହା ସେମାନଙ୍କ ପାଇଁ, ଯେଉଁମାନେ ଦୁଗ୍ଧପାନର ଅବଧି ପୂରଣ କରିବାକୁ ଚାହାନ୍ତି ଏବଂ ସନ୍ତାନର ପିତା ଉଚିତ ରୂପେ ସେହି ମାଆମାନଙ୍କର ଭରଣପୋଷଣ ଦାୟିତ୍ୱ ନେବେ । କାହାରିକୁ ତା' ସାମର୍ଥ୍ୟ ଅପେକ୍ଷା ଅଧିକ ଦାୟିତ୍ୱ ଦିଆଯିବା ଉଚିତ ନୁହେଁ । କୌଣସି ମାଆକୁ ତା' ସନ୍ତାନ ଯୋଗୁଁ ହଇରାଣ କରା ନଯାଉ କିମ୍ବା ବାପାକୁ ମଧ ତା' ସନ୍ତାନ ଯୋଗୁଁ ହଇରାଣ କରା ନଯାଉ । ଏହି ଦାୟିତ୍ୱ ଉତ୍ତରାଧିକାରୀମାନଙ୍କର ମଧ ରହିଛି । ପୁଣି ଯଦି ଉଭୟେ (ପିତାମାତା) ପରସ୍ପରର ସହମତି ଓ ପରାମର୍ଶ ଅନୁସାରେ (ଦୁଇ ବର୍ଷ ପୂର୍ବରୁ) ଦୁଗ୍ଧପାନ ବନ୍ଦ କରିବାକୁ ଚାହାନ୍ତି, ତେବେ ସେଥିରେ ସେମାନଙ୍କୁ ପାପ ହେବନାହିଁ । ଯଦି ତୁମେମାନେ ନିଜ ସନ୍ତାନମାନଙ୍କୁ ଅନ୍ୟ କୌଣସି ମହିଳାର ଦୁଗ୍ଧପାନ କରାଇବାକୁ ଚାହଁ, ସେଥିରେ ମଧ ତୁମକୁ କୌଣସି ପାପ ହେବନାହିଁ (ଏହି ସର୍ତ୍ତରେ ଯେ) ତୁମେ (ତାକୁ) ନ୍ୟାୟସଂଗତ ଭାବରେ ଯାହାକିଛି (ପାରିତୋଷିକ) ଦେବାକୁ ସମ୍ମତି ଦେଇଛ ତାହା ଦେଇଦିଅ । ଅଲ୍ଲାହଙ୍କୁ ଭୟ କରୁଥାଅ ଏବଂ ଜାଣିଥାଅ ଯେ ତୁମେମାନେ ଯାହା କରୁଛ ଅଲ୍ଲାହ୍ ଦେଖୁଛନ୍ତି ।

୨୩୪. ଯେଉଁମାନେ ପତ୍ନୀମାନଙ୍କୁ ଛାଡ଼ି ମରିଯାଆନ୍ତି, ସେମାନଙ୍କର ବିଧବାମାନେ ଚାରିମାସ ଦଶ ଦିନ ପ୍ରତୀକ୍ଷା କରିବେ । ପୁଣି ସେମାନଙ୍କର ଏହି

ସମୟ ଅତିବାହିତ ହେଲାପରେ ସେମାନେ ନିଜ ବିଷୟରେ ଉଚିତ ରୂପେ ଯାହା କରିବେ ସେଥିରେ ତୁମମାନଙ୍କର କୌଣସି ଦୋଷ ନାହିଁ । ତୁମେମାନେ ଯାହା କର, ଅଲ୍ଲାହ୍ ସବୁ ଜାଣନ୍ତି । ୨୩୫. ତୁମେମାନେ ସେହି ମହିଳାମାନଙ୍କୁ ସଂକେତରେ ବିବାହ ପ୍ରସ୍ତାବ ଦିଅ ବା ଏହାକୁ ମନରେ ଲୁଚାଇ ରଖ, ସେଥିଯୋଗୁଁ ତୁମମାନଙ୍କୁ ପାପ ହେବନାହିଁ । ଅଲ୍ଲାହ୍ ଜାଣନ୍ତି ଯେ ତୁମେମାନେ ସେମାନଙ୍କ ବିଷୟରେ ଚିନ୍ତା କରିବ, କିନ୍ତୁ ସେମାନଙ୍କ ସହିତ ଗୁପ୍ତ ରାଜିନାମା କରନାହିଁ । ସେମାନଙ୍କୁ ଭଦ୍ର ଭାବରେ କୌଣସି ଉଚିତ କଥା କହିପାର । ସେମାନଙ୍କର ଇଦ୍ଦତ୍‌ର ସମୟ ନସରିବା ପର୍ଯ୍ୟନ୍ତ ସେମାନଙ୍କ ସହିତ ବିବାହ କରିବାର ସଂକଳ୍ପ କରନାହିଁ ଏବଂ ଜାଣିଥାଅ ଯେ ଯାହା ତୁମମାନଙ୍କ ମନରେ ଅଛି ଅଲ୍ଲାହ୍ ଜାଣନ୍ତି । ତେଣୁ, ତାଙ୍କୁ ଭୟ କରୁଥାଅ ଏବଂ ଜାଣିରଖ ଯେ ଅଲ୍ଲାହ୍ ଭାରି କ୍ଷମାଶୀଳ ଏବଂ ସହନଶୀଳ ।

୨୩୬. ଯଦି ତୁମେମାନେ ପତ୍ନୀମାନଙ୍କୁ ସ୍ପର୍ଶ କରି ନଥିବା କିମ୍ବା ମେହେର୍ (ଅର୍ଥାତ୍ କନ୍ୟାର ସ୍ତ୍ରୀଧନ) ସ୍ଥିର କରି ନଥିବା ଅବସ୍ଥାରେ ତଲାକ୍ ଦିଅ, ତେବେ ଏଥିପାଇଁ ତୁମମାନଙ୍କୁ ପାପ ହେବନାହିଁ । (ଏଭଳି କ୍ଷେତ୍ରରେ) ତୁମେମାନେ ସେମାନଙ୍କୁ କିଛି ଉପହାର ଦିଅ । ଆର୍ଥିକ ରୂପେ ସ୍ୱଚ୍ଛଳ ବ୍ୟକ୍ତିମାନେ ସେମାନଙ୍କ ସାମର୍ଥ୍ୟ ଅନୁଯାୟୀ ଏବଂ ଦୁର୍ବଳ ବ୍ୟକ୍ତିମାନେ ସେମାନଙ୍କ ସାମର୍ଥ୍ୟ ଅନୁଯାୟୀ ଏହା ଦିଅନ୍ତୁ । ପୁଣ୍ୟବାନ ବ୍ୟକ୍ତିମାନଙ୍କର ଏହା କର୍ତ୍ତବ୍ୟ । ୨୩୭. ଯଦି ତୁମେମାନେ ସେମାନଙ୍କୁ ସ୍ପର୍ଶ କରି ନଥିବା ଅବସ୍ଥାରେ ତଲାକ୍ ଦିଅ ଏବଂ ତୁମେ କିଛି ମେହର୍ ଧାର୍ଯ୍ୟ କରିସାରିଛ, ତେବେ ଯାହା ଧାର୍ଯ୍ୟ ହୋଇଛି ତା'ର ଅଧା ଦେବାକୁ ହେବ । ହଁ, ଯଦି ମହିଳାମାନେ ମେହେର ନନିଅନ୍ତି କିମ୍ବା ବିବାହ କରିଥିବା ପୁରୁଷମାନେ ସଂପୂର୍ଣ୍ଣ ମେହେର ଦେଇଦିଅନ୍ତି, ତେବେ ଭିନ୍ନ କଥା । ଯଦି ତୁମେ ପୁରୁଷମାନେ (ନିଜର ପ୍ରାପ୍ୟ) କ୍ଷମା କରିଦିଅ, ତେବେ ଏହା ଅବଶ୍ୟ (ତୁମର) ଧର୍ମପରାୟଣତା । ପରସ୍ପର ପ୍ରତି ଉଦାରତା ପ୍ରଦର୍ଶନ କରିବାକୁ ଭୁଲନାହିଁ । ତୁମେମାନେ ଯାହା କରୁଛ, ଅଲ୍ଲାହ୍ ଅବଶ୍ୟ ଦେଖୁଛନ୍ତି ।

୨୩୮. ସବୁ ନମାଜ ପ୍ରତି ଯତ୍ନବାନ ରୁହ, ବିଶେଷତଃ ମଧ୍ୟବର୍ତ୍ତୀ ନମାଜ ପ୍ରତି ଏବଂ ଅଲ୍ଲାହଙ୍କ ସମ୍ମୁଖରେ ବିନମ୍ର ହୋଇ ଛିଡ଼ା ହୁଅ । ୨୩୯. ଯଦି

ତୁମମାନଙ୍କୁ (ଶତ୍ରୁର) ଆଶଂକା ଥାଏ, ତେବେ ଚାଲୁଥିବା ଅବସ୍ଥାରେ ହେଉ ବା ବାହନରେ ବସିଥିବା ଅବସ୍ଥାରେ ହେଉ (ନମାଜ ସଂପାଦନ କରିନିଅ) । ପରେ ଯେତେବେଳେ ତୁମେମାନେ ନିଜକୁ ନିରାପଦ ମନେକର ସେତେବେଳେ ଅଲ୍ଲାହଙ୍କୁ ସେହିପରି ସ୍ମରଣ କର ଯେପରି ସେ ତୁମମାନଙ୍କୁ ଶିକ୍ଷା ଦେଇଛନ୍ତି ଯାହା ତୁମେମାନେ ପୂର୍ବରୁ ଜାଣି ନଥିଲ ।

୨୪୦. ତୁମମାନଙ୍କ ମଧ୍ୟରୁ ଯେଉଁମାନେ ପତ୍ନୀମାନଙ୍କୁ ଛାଡ଼ି ମୃତ୍ୟୁବରଣ କରନ୍ତି, ସେମାନେ ପତ୍ନୀମାନଙ୍କ ପାଇଁ ଇଚ୍ଛାପତ୍ର କରିବା ଉଚିତ ଯେ ସେମାନଙ୍କୁ ଭରଣପୋଷଣ ସହ ଗୋଟିଏ ବର୍ଷ ଘରେ ରହିବାକୁ ଦିଆଯାଉ । ଯଦି ସେମାନେ ନିଜ ଇଚ୍ଛାରେ ଘରୁ ଚାଲିଯାଆନ୍ତି ତେବେ ନିଜ ବିଷୟରେ ସେମାନେ ଉଚିତ ରୂପେ ଯାହା କରିବେ ସେଥିରେ ତୁମମାନଙ୍କର କୌଣସି ଦୋଷ ନାହିଁ । ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ । ୨୪୧. ତଲାକ୍ ଦିଆ ଯାଇଥିବା ମହିଳାମାନଙ୍କୁ ଉଚିତ ଭାବରେ ଖର୍ଚ୍ଚ ଦିଆଯିବା ଉଚିତ । ଏହା ଧର୍ମପରାୟଣ ଲୋକମାନଙ୍କର କର୍ତ୍ତବ୍ୟ । ୨୪୨. ଅଲ୍ଲାହ୍ ତାଙ୍କର ଆଦେଶଗୁଡ଼ିକୁ ଏହିପରି ବିଶଦ୍ ଭାବରେ ବର୍ଣ୍ଣନା କରୁଛନ୍ତି ଯେପରିକି ତୁମେମାନେ ବୁଝିବ ।

୨୪୩. କ'ଣ ସେହି ଲୋକମାନଙ୍କ କଥା ତୁମକୁ ଜଣାନାହିଁ ଯେଉଁମାନେ ପ୍ରାଣ ଭୟରେ ନିଜ ଘରୁ ବାହାରି ଆସିଥିଲେ ଏବଂ ସେମାନେ ସହସ୍ର ସଂଖ୍ୟାରେ ଥିଲେ ? ପୁଣି ଅଲ୍ଲାହ୍ ସେମାନଙ୍କୁ ଆଦେଶ ଦେଲେ, "ମରିଯାଅ" । ପୁଣି ସେ ସେମାନଙ୍କୁ ଜୀବିତ କଲେ । ବାସ୍ତବରେ ଅଲ୍ଲାହ୍ ଲୋକମାନଙ୍କ ପ୍ରତି କରୁଣାଶୀଳ କିନ୍ତୁ ଅଧିକାଂଶ ଲୋକ କୃତଜ୍ଞ ହୁଅନ୍ତିନାହିଁ । ୨୪୪. ଅଲ୍ଲାହଙ୍କ ମାର୍ଗରେ ଯୁଦ୍ଧ କର ଏବଂ ଜାଣିରଖ ଯେ ଅଲ୍ଲାହ୍ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି । ୨୪୫. କ'ଣ କେହି ଅଛି ଯିଏ ଅଲ୍ଲାହଙ୍କୁ ଭଲ ମନରେ ଋଣ ଦେବ ଯାହାକୁ ସେ ବହୁଗୁଣିତ କରି ପରିଶୋଧ କରିବେ ? ଅଲ୍ଲାହ୍ ହିଁ ଅଭାବଅନାଟନରେ ଏବଂ ପ୍ରାଚୁର୍ଯ୍ୟ ମଧ୍ୟରେ ରଖିଥାଆନ୍ତି ଏବଂ ତାଙ୍କରି ନିକଟକୁ ତୁମେମାନେ ଫେରିବ ।

୨୪୬. କ'ଣ ତୁମେ ମୁ'ସାଙ୍କ ପରେ ଘଟିଥିବା ଇସରାଇଲ ବଂଶର ସର୍ଦ୍ଦାରମାନଙ୍କର ଘଟଣା ବିଷୟରେ ଜାଣିଛ ? ସେମାନେ ସେମାନଙ୍କ ଈଶ୍ୱରଦୂତଙ୍କୁ

କହିଲେ, "ଆମପାଇଁ ଜଣେ ରାଜାଙ୍କୁ ନିଯୁକ୍ତ କରିଦିଅ ଯେପରିକି ଆମେ ଅଲ୍ଲାହଙ୍କ ମାର୍ଗରେ ଯୁଦ୍ଧ କରିବୁ?" ଈଶ୍ୱରଦୂତ ଉତ୍ତର ଦେଲେ, "ଏପରି ନହେଉ ଯେ ତୁମମାନଙ୍କୁ ଯୁଦ୍ଧର ଆଦେଶ ଦିଆଯିବ କିନ୍ତୁ ତୁମେମାନେ ଯୁଦ୍ଧ କରିବନାହିଁ?" ସେମାନେ କହିଲେ "ଭଲା ଆମେ ଅଲ୍ଲାହଙ୍କ ମାର୍ଗରେ କାହିଁକି ଯୁଦ୍ଧ ନକରିବୁ? ଆମକୁ ଆମ ଘରୁ ବାହାର କରି ଦିଆଯାଇଛି ଏବଂ ଆମକୁ ଆମ ପିଲାମାନଙ୍କଠାରୁ ଅଲଗା କରି ଦିଆଯାଇଛି।" କିନ୍ତୁ ଯେତେବେଳେ ସେମାନଙ୍କୁ ଯୁଦ୍ଧର ଆଦେଶ ଦିଆଗଲା, କେବଳ ଅଳ୍ପ କେତେଜଣଙ୍କ ବ୍ୟତୀତ ଅନ୍ୟ ସମସ୍ତେ ପଛଘୁଂଚା ଦେଲେ। ଅଲ୍ଲାହ୍ ଦୁଷ୍ଟମାନଙ୍କୁ ଭଲରୂପେ ଜାଣନ୍ତି। ୨୪୭. ସେମାନଙ୍କ (ପାଇଁ ନିଯୁକ୍ତ ହୋଇଥିବା) ଈଶ୍ୱରଦୂତ ସେମାନଙ୍କୁ କହିଲେ, "ଅଲ୍ଲାହ୍ ତାଲୁତ୍‌କୁ ତୁମମାନଙ୍କ ପାଇଁ ରାଜା ନିଯୁକ୍ତ କରିଛନ୍ତି।" ସେମାନେ କହିଲେ, "ସେ କେମିତି ଆମକୁ ଶାସନ କରିବେ? ଶାସନ କରିବା ପାଇଁ ବରଂ ଆମେମାନେ ତାଙ୍କଠାରୁ ଅଧିକ ଯୋଗ୍ୟ। ତାଙ୍କର ତ ବେଶୀ ଧନସଂପତ୍ତି ମଧ୍ୟ ନାହିଁ।" ଈଶ୍ୱରଦୂତ କହିଲେ "ଅଲ୍ଲାହ୍ ତୁମମାନଙ୍କ ମଧ୍ୟରୁ ତାଙ୍କୁ ପସନ୍ଦ କରିଛନ୍ତି ଏବଂ ତାଙ୍କୁ ଜ୍ଞାନୀ ଓ ବଳବାନ କରିଛନ୍ତି। ଅଲ୍ଲାହ୍ ଯାହାକୁ ଚାହାନ୍ତି କ୍ଷମତା ଦିଅନ୍ତି। ଅଲ୍ଲାହ୍ ସକଳ ପ୍ରାଚୁର୍ଯ୍ୟର ଅଧିକାରୀ ଏବଂ ସର୍ବଜ୍ଞ।" ୨୪୮. ଏବଂ କହିଲେ, "ତାଙ୍କର ରାଜା ହେବାର ଲକ୍ଷଣ ହେଉଛି ଯେ ତୁମମାନଙ୍କ ପାଖକୁ ଗୋଟିଏ ବାକ୍ସ ଆସିବ ଯେଉଁଥିରେ ତୁମ ପ୍ରଭୁଙ୍କ ତରଫରୁ ତୁମମାନଙ୍କ ପାଇଁ ସାନ୍ତ୍ୱନାଦାୟକ ବସ୍ତୁ ଥିବ ଏବଂ ମୁ'ସା ଓ ହାରୁନଙ୍କ ବଂଶଧରମାନଙ୍କର କିଛି ପରିତ୍ୟକ୍ତ ସ୍ମୃତି ମଧ୍ୟ ଥିବ ଏବଂ ଏହାକୁ ଦେବଦୂତମାନେ ଆଣିବେ। ଯଦି ତୁମେମାନେ ପ୍ରକୃତରେ ବିଶ୍ୱାସ କର ତେବେ ଏଥିରେ ତୁମମାନଙ୍କ ପାଇଁ ଏକ ନିଦର୍ଶନ ଅଛି।"

୨୪୯. ପୁଣି ଯେତେବେଳେ ତାଲୁତ୍ ତାଙ୍କ ସୈନ୍ୟବାହିନୀ ସହିତ ବାହାରିଲେ, ସେ ସେମାନଙ୍କୁ କହିଲେ, "ଅଲ୍ଲାହ୍ ଗୋଟିଏ ନଈ ଦ୍ୱାରା ତୁମମାନଙ୍କୁ ପରୀକ୍ଷା କରିବେ। ଯିଏ ସେହି ନଈର ପାଣି ପିଇବ ସେ ମୋ' ଲୋକ ନୁହେଁ ବୋଲି ଧରାଯିବ ଏବଂ ଯିଏ ଆଦୌ ନପିଇବ କିମ୍ୱା ଆଂଜୁଳାଏ ପିଇବ, ସେ ଅବଶ୍ୟ ମୋ' ଲୋକ।" ମାତ୍ର ଅଳ୍ପ କେତେଜଣଙ୍କ ବ୍ୟତୀତ ବାକି ସମସ୍ତେ ସେଥିରୁ (ମନଭରି) ପାଣି ପିଇଲେ। ପୁଣି ଯେତେବେଳେ ତାଲୁତ୍ ଏବଂ ତାଙ୍କ ସହିତ ଥିବା

ସଦ୍‌ବିଶ୍ୱାସୀମାନେ ନଈ ପାରି ହୋଇଗଲେ, ଏମାନେ କହିଲେ,“ଆଜି ଜାଲୁତ୍ ଓ ତା’ ସେନାର ସମ୍ମୁଖୀନ ହେବାର ଶକ୍ତି ଆମର ନାହିଁ।” ଯେଉଁମାନେ ଜାଣୁଥିଲେ ଯେ ସେମାନେ ଅଲ୍ଲାହଙ୍କୁ ସାକ୍ଷାତ କରିବେ, ସେମାନେ କହିଲେ, “ଅନେକ ସମୟରେ କ୍ଷୁଦ୍ର ସେନା ମଧ୍ୟ ଅଲ୍ଲାହଙ୍କ କୃପାରୁ ବିଶାଳ ସୈନ୍ୟବାହିନୀକୁ ପରାଜିତ କରିଛି”। ଅଲ୍ଲାହ୍ ଧୈର୍ଯ୍ୟବାନ ଲୋକମାନଙ୍କର ସହିତ ଥାଆନ୍ତି। ୨୫୦. ଯେତେବେଳେ ସେମାନେ ଜାଲୁତ୍ ଓ ତା’ ସେନାର ସମ୍ମୁଖୀନ ହେଲେ, ପ୍ରାର୍ଥନା କଲେ, “ହେ ଈଶ୍ୱର ! ଆମକୁ ଧୈର୍ଯ୍ୟ ଦିଅ, ଆମ ପାଦକୁ ମଜବୁତ୍ କର ଏବଂ ନାସ୍ତିକମାନଙ୍କ ବିରୁଦ୍ଧରେ ଆମକୁ ସାହାଯ୍ୟ କର।” ୨୫୧. ଶେଷରେ ଅଲ୍ଲାହଙ୍କ ଆଜ୍ଞାରୁ ସେମାନେ ଜାଲୁତ୍ ସେନାକୁ ପରାସ୍ତ କଲେ ଏବଂ ଦାଉଦ୍ (ଅର୍ଥାତ୍ ଡେଭିଡ୍) ଜାଲୁତକୁ ହତ୍ୟା କଲେ। ଅଲ୍ଲାହ୍ ଦାଉଦଙ୍କୁ କ୍ଷମତା ଓ ବୁଦ୍ଧିମତା ପ୍ରଦାନ କରିଥିଲେ ଏବଂ ତାଙ୍କୁ ନିଜ ଇଚ୍ଛା ଅନୁଯାୟୀ ଶିକ୍ଷା ପ୍ରଦାନ କରିଥିଲେ। ଯଦି ଅଲ୍ଲାହ କିଛି ଲୋକଙ୍କୁ ଅନ୍ୟ କିଛି ଲୋକଙ୍କ ଦ୍ୱାରା ନିୟନ୍ତ୍ରଣ ନକରନ୍ତେ ତେବେ ବିଶ୍ୱ ଅଶାନ୍ତ ହୋଇପଡ଼ନ୍ତା, ମାତ୍ର ଅଲ୍ଲାହ୍ ବିଶ୍ୱବାସୀଙ୍କ ପ୍ରତି ଅତ୍ୟନ୍ତ କରୁଣାଶୀଳ।

୨୫୨. ଏଗୁଡ଼ିକ ଅଲ୍ଲାହଙ୍କର ବାଣୀ ଯାହା ଆମେ ତୁମକୁ ଠିକ୍ ଭାବରେ ପଢ଼ି ଶୁଣାଉଛୁ ଏବଂ (ହେ ମୁହମ୍ମଦ !) ତୁମେ ଅବଶ୍ୟ (ଅଲ୍ଲାହଙ୍କର) ଜଣେ ବାର୍ତ୍ତାବହ।

୨୫୩. ଏହି ବାର୍ତ୍ତାବହମାନଙ୍କ ମଧ୍ୟରୁ ଆମ୍ଭେ କେତେକଙ୍କୁ ଅନ୍ୟମାନଙ୍କ ତୁଳନାରେ ଶ୍ରେଷ୍ଠତା ପ୍ରଦାନ କଲୁ। ଏମାନଙ୍କ ମଧ୍ୟରୁ କେତେକଙ୍କ ସହିତ ଅଲ୍ଲାହ୍ ବାର୍ତ୍ତାଳାପ କଲେ ଏବଂ କେତେକଙ୍କର ମର୍ଯ୍ୟାଦା ବୃଦ୍ଧି କଲେ। ମରିୟମଙ୍କ ପୁତ୍ର ଯୀଶୁଙ୍କୁ ଆମ୍ଭେ ଅନେକ ସ୍ପଷ୍ଟ ପ୍ରମାଣ (ଅର୍ଥାତ୍ ଅଲୌକିକ ନିଦର୍ଶନ) ଦେଇଥିଲୁ ଏବଂ ପବିତ୍ର ଆତ୍ମା (ଅର୍ଥାତ୍ ଦେବଦୂତ ଜିବ୍ରାଇଲଙ୍କ) ଦ୍ୱାରା ତାଙ୍କର ସହାୟତା କରିଥିଲୁ। ଅଲ୍ଲାହ୍ ଚାହିଁଥିଲେ ସେମାନଙ୍କ ପରବର୍ତ୍ତୀ ଲୋକମାନେ ସ୍ପଷ୍ଟ ପ୍ରମାଣ ଦେଖିବା ପରେ ବିବାଦ କରି ନଥାନ୍ତେ କିନ୍ତୁ ସେମାନେ ମତଭେଦ କଲେ। ପୁଣି ସେମାନଙ୍କ ମଧ୍ୟରୁ କିଛି ଲୋକ ବିଶ୍ୱାସ କଲେ ଏବଂ କିଛି ଲୋକ ନାସ୍ତିକ ହୋଇଗଲେ। ଅଲ୍ଲାହ୍ ଇଚ୍ଛା କରିଥିଲେ ସେମାନେ ପରସ୍ପର ସହିତ ଲଢ଼ି ନଥାନ୍ତେ, କିନ୍ତୁ ଅଲ୍ଲାହ୍ ତାହାହିଁ କରନ୍ତି ଯାହା ସେ ଚାହାନ୍ତି।

୨୫୪. ହେ ମୁସଲମାନମାନେ! ସେହି ଦିନଟି ଆସିବା ପୂର୍ବରୁ ଆମ୍ଭେ ତୁମମାନଙ୍କୁ ଯାହା ଦେଇଛୁ ସେଥିରୁ (ଅଲ୍ଲାହଙ୍କ ପ୍ରସନ୍ନତା ପାଇଁ) ଖର୍ଚ୍ଚ କର, ଯେଉଁଦିନ (କର୍ମର) କୌଣସି ସଉଦା ହେବନାହିଁ କିମ୍ବା କାହାରି ବନ୍ଧୁତା ବା ସୁପାରିଶ ଚଳିବ ନାହିଁ। ଯେଉଁମାନେ (ସତ୍ୟକୁ) ଅସ୍ୱୀକାର କରୁଛନ୍ତି, ସେମାନେ ଦୁରାଚାରୀ।

୨୫୫. ଅଲ୍ଲାହ୍ଙ୍କ ବ୍ୟତୀତ କେହି ଉପାସ୍ୟ ନାହାନ୍ତି। ସେ ଚିରଂଜୀବୀ ଏବଂ ସୃଷ୍ଟିର ଧାରଣକର୍ତ୍ତା ଯାହାଙ୍କୁ ତନ୍ଦ୍ରା ଲାଗେନାହିଁ ବା ନିଦ ଆସେନାହିଁ। ଯାହା ଆକାଶରେ ଅଛି ଏବଂ ଯାହା ପୃଥିବୀରେ ଅଛି, ସବୁ ତାଙ୍କରି। କିଏ ଅଛି ଯିଏ ତାଙ୍କ ପାଖରେ ତାଙ୍କର ବିନା ଅନୁମତିରେ (ଅନ୍ୟ ପାଇଁ) ସୁପାରିଶ କରିପାରିବ? ସେ ସେମାନଙ୍କର ପୂର୍ବାପର ଅବସ୍ଥା ସଂପର୍କରେ ସବୁ ଜାଣନ୍ତି ଏବଂ ସେମାନେ ତାଙ୍କ ଜ୍ଞାନରୁ କିଛି ହାସଲ କରିପାରିବେ ନାହିଁ, ମାତ୍ର ସେ ଯେତିକି ଚାହିଁବେ। ତାଙ୍କର ସିଂହାସନ ସମଗ୍ର ପୃଥିବୀ ଓ ଆକାଶମଣ୍ଡଳକୁ ଘେରି ରହିଛି ଏବଂ ସେଗୁଡିକର ସୁରକ୍ଷା ତାଙ୍କୁ କ୍ଲାନ୍ତ କରେନାହିଁ । ସେ ସର୍ବଶେଷ୍ଠ ଏବଂ ଅତି ମହାନ।

୨୫୬. ଧର୍ମ ବିଷୟରେ କୌଣସି ବାଧବାଧକତା ନାହିଁ। ସତ୍‌ମାର୍ଗକୁ ଅସତ୍ ମାର୍ଗଠାରୁ ସଂପୂର୍ଣ୍ଣ ପୃଥକ କରି ଦିଆଯାଇଛି। ସୁତରାଂ, ଯିଏ ମିଥ୍ୟା ଉପାସ୍ୟମାନଙ୍କୁ ପ୍ରତ୍ୟାଖ୍ୟାନ କରି ଅଲ୍ଲାହଙ୍କୁ ମାନିନିଏ, ସେ ଏଭଳି ଏକ ଦୃଢ଼ ଆଶ୍ରୟ ଧରେ ଯାହା କଦାପି ଛିନ୍ନ ହେବନାହିଁ। ଅଲ୍ଲାହ୍ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି। ୨୫୭. ଯେଉଁମାନେ ଅଲ୍ଲାହଙ୍କୁ ବିଶ୍ୱାସ କରନ୍ତି, ଅଲ୍ଲାହ୍ ସେମାନଙ୍କର ରକ୍ଷାକାରୀ ବନ୍ଧୁ ଯିଏ ସେମାନଙ୍କୁ ଅନ୍ଧକାରରୁ ବାହାର କରି ଆଲୋକକୁ ଆଣନ୍ତି। ଯେଉଁମାନେ ଅବିଶ୍ୱାସ କଲେ, ସେମାନଙ୍କ ବନ୍ଧୁ ହେଉଛନ୍ତି ଶଇତାନ ଯେଉଁମାନେ ଏମାନଙ୍କୁ ଆଲୋକରୁ ବାହାରି କରି ଅନ୍ଧକାର ଭିତରକୁ ନେଇଯାଆନ୍ତି । ଏମାନେ ନର୍କବାସୀ ହେବେ ଏବଂ ସେଠାରେ ସର୍ବଦା ରହିବେ।

୨୫୮. କ'ଣ ତୁମେ ସେହି ବ୍ୟକ୍ତି ବିଷୟରେ ଜାଣିନାହଁ ଯାହାକୁ ଅଲ୍ଲାହ୍ ଗୋଟିଏ ରାଜ୍ୟ ଦେଇଥିଲେ ଏବଂ ସେ ଇବ୍ରାହିମଙ୍କ ସହିତ ଈଶ୍ୱରଙ୍କ (ଅସ୍ତିତ୍ୱ) ସଂପର୍କରେ ଯୁକ୍ତି କରିଥିଲା? ଯେତେବେଳ ଇବ୍ରାହିମ କହିଲେ, "ମୋ ଈଶ୍ୱର ସେଇ, ଯିଏ ଜୀବନ ଦିଅନ୍ତି ଏବଂ ମୃତ୍ୟୁ ମଧ୍ୟ ଦିଅନ୍ତି ।" ସେ କହିଲା "ମୁଁ

ମଧ୍ୟ ଜୀବଦାନ କରେ ଏବଂ ମୃତ୍ୟୁ ଦିଏ ।" ଇବ୍ରାହିମ୍ କହିଲେ, "ଅଲ୍ଲାହ୍ ସୂର୍ଯ୍ୟକୁ ପୂର୍ବ ଦିଗରୁ ଉଦୟ କରନ୍ତି । ତୁମେ ଏହାକୁ ପଶ୍ଚିମ ଦିଗରୁ ଉଦୟ କରିଦିଅ ।" (ଏହା ଶୁଣି) ସେହି ନାସ୍ତିକ ଆଶ୍ଚର୍ଯ୍ୟ ହୋଇଗଲା । ଅଲ୍ଲାହ୍ ଭ୍ରଷ୍ଟାଚାରୀମାନଙ୍କର ମାର୍ଗଦର୍ଶନ କରନ୍ତିନାହିଁ ।

୨୫୯. କିମ୍ବା କ'ଣ ସେହି ବ୍ୟକ୍ତି ବିଷୟରେ ଜାଣିଛ ଯିଏ ଏମିତି ଏକ ଗାଁ ବାଟ ଦେଇ ଗଲା ଯାହା ସଂପୂର୍ଣ୍ଣ ଧ୍ୱସ୍ତବିଧ୍ୱସ୍ତ ହୋଇ ପଡ଼ିଥିଲା । ସେ କହିଲା, "ମୃତ୍ୟୁ ପରେ ଅଲ୍ଲାହ୍ ଏହାର ବାସିନ୍ଦାମାନଙ୍କୁ କିପରି ଜୀବିତ କରିବେ ?" ଏହାପରେ ଅଲ୍ଲାହ୍ ସେହି ବ୍ୟକ୍ତିର ଆତ୍ମାକୁ ହରଣ କରିନେଲେ ଏବଂ ତାକୁ ଶହେବର୍ଷ ମୃତାବସ୍ଥାରେ ରଖିଲେ ଏବଂ ପୁନର୍ବାର ଜୀବିତ କରିଦେଲେ । ପୁଣି ସେ ତାକୁ ପଚାରିଲେ "ତୁମେ କେତେ ସମୟ ଏହି ଅବସ୍ଥାରେ ରହିଲ ?" ସେ ଉତ୍ତର ଦେଲା, "ଦିନେ ବା ଦିନକରୁ କିଛି କମ୍ ସମୟ ।" ଅଲ୍ଲାହ୍ କହିଲେ "ନାଁ, ତୁମେ ଶହେ ବର୍ଷ (ମୃତାବସ୍ଥାରେ) ରହିଲ । ଏବେ ନିଜ ଖାଦ୍ୟପେୟକୁ ଲକ୍ଷ୍ୟ କର କିପରି ସେଗୁଡ଼ିକ ଟିକିଏହେଲେ ନଷ୍ଟ ହୋଇନାହିଁ ଏବଂ ନିଜର ଗଧର ଅବସ୍ଥାକୁ ମଧ୍ୟ ଦେଖ । ଏହିପରି ଆମ୍ଭେ ତୁମକୁ ଲୋକମାନଙ୍କ ପାଇଁ ଏକ ନିଦର୍ଶନ କରିବୁ । ଏବେ (ତୁମ ଗଧର) ହାଡ଼ଗୁଡ଼ିକୁ ଦେଖ ଯେ କିପରି ଆମ୍ଭେ ସେଗୁଡ଼ିକୁ ଖଂଜିଦେଇ ଏହା ଉପରେ ମାଂସର ଆବରଣ ଚଢାଉଛୁ ।" ପୁଣି ଯେତେବେଳେ ତା' ସାମନାରେ ପ୍ରକୃତ କଥା ପରିଷ୍କାର ହୋଇଗଲା, ସେ କହିଉଠିଲା, "ମୁଁ ଜାଣିଗଲି ଯେ ଅଲ୍ଲାହ୍ ସବୁକିଛି କରିପାରନ୍ତି ।"

୨୬୦. ଯେତେବେଳେ ଇବ୍ରାହିମ କହିଥିଲେ, "ହେ ପ୍ରଭୁ! ତୁମେ ମୃତମାନଙ୍କୁ କିପରି ଜୀବିତ କରିବ ମୋତେ ଦେଖାଇଦିଅ ।" ଅଲ୍ଲାହ୍ ପଚାରିଲେ, "କଣ ତୁମର ଏଥିରେ ବିଶ୍ୱାସ ନାହିଁ ?" ଇବ୍ରାହିମ କହିଲେ, "ଅବଶ୍ୟ ଅଛି କିନ୍ତୁ ମନର ସନ୍ତୁଷ୍ଟି ଚାହୁଁଛି ।" ଅଲ୍ଲାହ୍ କହିଲେ, "ଚାରୋଟି ପକ୍ଷୀ ଆଣ ଆଉ ସେମାନଙ୍କୁ ପୋଷା ମନେଇନିଅ ଏବଂ (ସେମାନଙ୍କୁ କାଟି ଖଣ୍ଡଖଣ୍ଡ କରି) ସେହି ଖଣ୍ଡଗୁଡ଼ିକୁ ପୃଥକପୃଥକ ପାହାଡ଼ ଉପରେ ରଖିଦିଅ । ପୁଣି ସେମାନଙ୍କୁ ଡ଼ାକ । ସେମାନେ ତୁମ ପାଖକୁ ଦଉଡ଼ି ଆସିବେ । ଆଉ ଜାଣିରଖ ଯେ ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ ।"

୨୬୧. ଯେଉଁମାନେ ଅଲ୍ଲାହଙ୍କ ମାର୍ଗରେ ଧନ ଖର୍ଚ୍ଚ କରନ୍ତି ସେମାନଙ୍କ ଧନର ଦୃଷ୍ଟାନ୍ତ ଏଭଳି ଶସ୍ୟଦାନା ପରି ଯେଉଁଥିରୁ ସାତୋଟି ଶସ୍ୟଗୁଚ୍ଛ ଉତ୍ପନ୍ନ ହୁଏ ଏବଂ ପ୍ରତି ଗୁଚ୍ଛରେ ଶହେଟି ଦାନା ଥାଏ। ଅଲ୍ଲାହ୍ ଯାହାପାଇଁ ଇଚ୍ଛା କରନ୍ତି, ବୃଦ୍ଧି କରିଦିଅନ୍ତି। ଅଲ୍ଲାହ୍ ଅତ୍ୟନ୍ତ ବଦାନ୍ୟ ଏବଂ ସର୍ବଜ୍ଞ। ୨୬୨. ଯେଉଁମାନେ ଅଲ୍ଲାହଙ୍କ ମାର୍ଗରେ ଧନ ଖର୍ଚ୍ଚ କରନ୍ତି କିନ୍ତୁ ଖର୍ଚ୍ଚ କରି ନିଜର ଉପକାର ବଖାଣନ୍ତି ନାହିଁ କିମ୍ବା କଷ୍ଟ ଦିଅନ୍ତିନାହିଁ, ସେମାନଙ୍କ ପାଇଁ ଈଶ୍ୱରଙ୍କ ପାଖରେ ଏହାର (ଉପଯୁକ୍ତ) ପୁରସ୍କାର ରହିଛି। ସେମାନଙ୍କର କୌଣସି ଭୟ ନାହିଁ କିମ୍ବା ସେମାନେ ଦୁଃଖ ଭୋଗିବେ ନାହିଁ। ୨୬୩. କାହାରିକୁ ଦାନ ଦେଇସାରି କୌଣସି ଦୁଃଖ ଦେବା ଅପେକ୍ଷା ବରଂ ପଦେ ଭଲକଥା କହିଦେବା ଏବଂ କ୍ଷମା କରିଦେବା ଭଲ। ଜାଣିରଖ, ଅଲ୍ଲାହ୍ ଆବଶ୍ୟକତାରହିତ ଏବଂ ସହନଶୀଳ। ୨୬୪. ହେ ମୁସଲମାନମାନେ! ଉପକାର ବଖାଣି ବା ଦୁଃଖ ଦେଇ ନିଜର ଦାନକୁ ସେହି ଲୋକ ପରି ନଷ୍ଟ କରିଦିଅ ନାହିଁ ଯିଏ ଲୋକ ଦେଖାଣିଆ ଖର୍ଚ୍ଚ କରେ ଏବଂ ଅଲ୍ଲାହଙ୍କୁ କିମ୍ବା ବିଚାର ଦିନକୁ ବିଶ୍ୱାସ କରେନାହିଁ। ଏହାର ଦୃଷ୍ଟାନ୍ତ ହେଉଛି ଏକ ଚିକ୍କଣ ପଥର ପରି ଯେଉଁଥିରେ କିଛି ମାଟି ଜମି ଯାଇଥାଏ ପୁଣି ତା' ଉପରେ ଖୁବ ଜୋରରେ ବର୍ଷା ହୁଏ ଏବଂ ତାକୁ (ପୁନରାୟ ଧୋଇ) ପରିଷ୍କାର କରିଦିଏ। ଏଭଳି ଲୋକମାନଙ୍କର କର୍ମ ଦ୍ୱାରା ସେମାନଙ୍କର କିଛି ଲାଭ ହୁଏନାହିଁ। ଅଲ୍ଲାହ୍ (ସତ୍ୟକୁ) ଅବିଶ୍ୱାସ କରୁଥିବା ଲୋକମାନଙ୍କର ମାର୍ଗଦର୍ଶନ କରନ୍ତିନାହିଁ।

୨୬୫. ଯେଉଁମାନେ ଅଲ୍ଲାହଙ୍କର ପ୍ରସନ୍ନତା ପାଇଁ ଏବଂ ମନର ଦୃଢ଼ତା ପାଇଁ ଧନ ଖର୍ଚ୍ଚ କରନ୍ତି, ସେମାନଙ୍କ ଖର୍ଚ୍ଚର ଦୃଷ୍ଟାନ୍ତ କୌଣସି ଉଚ୍ଚ ଜାଗାରେ ଥିବା ବଗିଚା ପରି ଯେଉଁଥିରେ ଅଧିକ ବର୍ଷା ହେଲେ ଏହା ଦୁଇଗୁଣ ଫଳ ଦିଏ ଏବଂ ଯଦି ଅଧିକ ବର୍ଷା ନହୁଏ, ତେବେ ସାମାନ୍ୟ ବର୍ଷା ମଧ୍ୟ ଏଥିପାଇଁ ଯଥେଷ୍ଟ ହୁଏ। ତୁମେମାନେ ଯାହା କରୁଛ, ଅଲ୍ଲାହ ଦେଖୁଛନ୍ତି। ୨୬୬. କ'ଣ ତୁମମାନଙ୍କ ମଧ୍ୟରୁ କେହି ଏହା ଚାହୁଁଛି ଯେ ତା'ର ଖଜୁରୀ ଓ ଅଂଗୁରର ବଗିଚାଟିଏ ଥିବ ଯାହା ତଳେ ନଦୀ ବୋହୁଥିବ, ସେଥିରେ ବିଭିନ୍ନ ଫଳ ଫଳିଥିବ ଏବଂ ସେ ବୃଦ୍ଧ ହୋଇ ଯାଇଥିବ ଆଉ ତା' ସନ୍ତାନମାନେ ଦୁର୍ବଳ ଥିବେ ଏବଂ ଏହି ସମୟରେ ଏକ ଉତପ୍ତ ଝଡ଼ ପ୍ରବାହିତ ହୋଇ ସେହି ବଗିଚାକୁ ନଷ୍ଟ କରିଦେବ? ଅଲ୍ଲାହ୍ ତୁମମାନଙ୍କ ପାଇଁ

ନିଜ ଉପଦେଶ ଏହିପରି ସ୍ପଷ୍ଟ ଭାବରେ ବର୍ଣ୍ଣନା କରନ୍ତି ଯେପରିକି ତୁମେମାନେ (ଏବିଷୟରେ) ଚିନ୍ତା କରିବ ।

୨୬୭. ହେ ମୁସଲମାନମାନେ! ନିଜ ଅର୍ଜିତ ଧନରୁ ଏବଂ ଆମ୍ଭେ ତୁମମାନଙ୍କ ପାଇଁ ଉତ୍ପନ୍ନ କରିଥିବା ଭୂମିଜ ଦ୍ରବ୍ୟରୁ ଏକ ଉତ୍କୃଷ୍ଟ ଭାଗ (ଅଲ୍ଲାହଙ୍କ ପ୍ରସନ୍ନତା ପାଇଁ) ଖର୍ଚ୍ଚ କର ଏବଂ ନିକୃଷ୍ଟ ବସ୍ତୁ ଦାନ କରିବା କଥା ଚିନ୍ତା ମଧ୍ୟ କରନାହିଁ ଯାହାକୁ ତୁମେ ନିଜେ ମଧ୍ୟ ନେବନାହିଁ, ମାତ୍ର ଯଦି ନେଲାବେଳେ ଆଖି ବନ୍ଦ କରିଦିଅ ତେବେ ଭିନ୍ନ କଥା । ଜାଣିଥାଅ ଯେ ଅଲ୍ଲାହ୍ ଅଭାବରହିତ ଏବଂ ସ୍ତୁତିଯୋଗ୍ୟ । ୨୬୮. ଶଇତାନ ତୁମମାନଙ୍କ ମନରେ ଦାରିଦ୍ର୍ୟର ଭୟ ସୃଷ୍ଟି କରେ ଏବଂ ତୁମମାନଙ୍କୁ ଅଶ୍ଳୀଳ କର୍ମ କରିବାକୁ ପ୍ରବର୍ତ୍ତାଇ ଥାଏ, କିନ୍ତୁ ଅଲ୍ଲାହ୍ ତୁମମାନଙ୍କୁ ନିଜର କ୍ଷମା ଓ କୃପା ପ୍ରଦାନ କରିବାର ବଚନ ଦେଉଛନ୍ତି । ଅଲ୍ଲାହ୍ ଅତ୍ୟନ୍ତ ବଦାନ୍ୟ ଏବଂ ସର୍ବଜ୍ଞ । ୨୬୯. ସେ ଯାହାକୁ ଚାହାନ୍ତି ତତ୍ତ୍ୱଜ୍ଞାନ ଦିଅନ୍ତି । ଯାହାକୁ ତତ୍ତ୍ୱଜ୍ଞାନ ମିଳିଯାଏ ତାକୁ ବହୁତ ବଡ଼ ସଂପଦ ମିଳିଯାଏ ଏବଂ ଉପଦେଶ କେବଳ ସେହିମାନେ ଗ୍ରହଣ କରନ୍ତି ଯେଉଁମାନେ ବୁଦ୍ଧିମାନ ।

୨୭୦. ତୁମେମାନେ (ତାଙ୍କ ମାର୍ଗରେ) ଯାହା ଖର୍ଚ୍ଚ କର ବା କୌଣସି ମାନସିକ କର, ଅଲ୍ଲାହ୍ ତାହା ଜାଣନ୍ତି । ଦୁରାଚରୀମାନଙ୍କୁ କେହି ସାହାଯ୍ୟ କରିବେନାହିଁ । ୨୭୧. ଯଦି ତୁମେମାନେ ଖୋଲାଖୋଲି ଭାବରେ ଦାନ କର ତେବେ ଭଲ, କିନ୍ତୁ ଯଦି ଗରିବ ଲୋକମାନଙ୍କୁ ଗୋପନରେ ଦାନ କର ତେବେ ଏହା ତୁମମାନଙ୍କ ପାଇଁ ଆହୁରି ଭଲ । ଏହା ତୁମମାନଙ୍କର ପାପ କ୍ଷୟ କରିବ । ତୁମେମାନେ ଯାହାକିଛି କର ଅଲ୍ଲାହ୍ ସବୁ ଜାଣନ୍ତି । ୨୭୨. (ହେ ବାର୍ତ୍ତାବହ!) ସେମାନଙ୍କୁ ବାଟକୁ ଆଣିବା ତୁମର ଦାୟିତ୍ୱ ନୁହେଁ ବରଂ ଅଲ୍ଲାହ୍ ଯାହାକୁ ଚାହାନ୍ତି ତାକୁ ବାଟକୁ ଆଣନ୍ତି । ତୁମେମାନେ (ଦାନପୁଣ୍ୟରେ) ଯାହା ଖର୍ଚ୍ଚ କରିବ, ନିଜର ମଙ୍ଗଳ ପାଇଁ କରିବ ଯଦି ଅଲ୍ଲାହଙ୍କ ପ୍ରସନ୍ନତା ଲାଭ କରିବା ଉଦ୍ଦେଶ୍ୟରେ ଖର୍ଚ୍ଚ କରୁଥାଅ । ତୁମେମାନେ ଯାହା ଖର୍ଚ୍ଚ କରିବ ତାହାର ସଂପୂର୍ଣ୍ଣ ଫଳ ତୁମକୁ ଦିଆଯିବ ଏବଂ ତୁମମାନଙ୍କ ପ୍ରତି ଅନ୍ୟାୟ ହେବନାହିଁ । ୨୭୩. ସେହି ଅଭାବଗ୍ରସ୍ତ ଲୋକମାନଙ୍କୁ ଦାନ କରିବା ଉଚିତ ଯେଉଁମାନେ ଅଲ୍ଲାହଙ୍କ କାର୍ଯ୍ୟରେ ବ୍ୟସ୍ତ

ରହିଛନ୍ତି ଏବଂ (ଜୀବିକାର୍ଜନ ପାଇଁ) କୁଆଡ଼େ ଯିବାଆସିବା କରି ପାରୁନାହାନ୍ତି। ସେମାନେ ମାଗନ୍ତିନାହିଁ ବୋଲି ନିର୍ବୋଧ ବ୍ୟକ୍ତି ସେମାନଙ୍କୁ ଧନବାନ ମନେ କରିଥାଏ। ତୁମେ ସେମାନଙ୍କ ମୁହଁ ଦେଖି ସେମାନଙ୍କ ଅବସ୍ଥା ଜାଣିପାରବ। ସେମାନେ ପଛରେ ପଡ଼ି ମାଗନ୍ତିନାହିଁ। ଯାହା ଧନ ତୁମେମାନେ ଖର୍ଚ୍ଚ କରିବ ଅଲ୍ଲାହ୍ ତାହା ଜାଣିବେ। ୨୭୪. ଯେଉଁମାନେ ଦିନରେ ବା ରାତିରେ, ପ୍ରକାଶ୍ୟରେ ବା ଗୋପନରେ (ଅଲ୍ଲାହଙ୍କ ମାର୍ଗରେ) ନିଜର ଧନ ଖର୍ଚ୍ଚ କରନ୍ତି, ସେମାନଙ୍କ ପାଇଁ ସେମାନଙ୍କ ପ୍ରଭୁଙ୍କ ନିକଟରେ ଉଚିତ ପୁରସ୍କାର ଅଛି। ସେମାନଙ୍କ ପାଇଁ କିଛି ଭୟ ନାହିଁ କିମ୍ବା ସେମାନେ ଦୁଃଖ ଭୋଗିବେ ନାହିଁ।

୨୭୫. ଯେଉଁମାନେ ସୁଧ ନିଅନ୍ତି, ସେମାନେ ସେହି ଲୋକ ପରି ସମାଧିରୁ ଉଠିବେ ଯାହାକୁ କୌଣସି ଜିନ୍ ବଶୀଭୂତ କରି ପାଗଳ କରି ଦେଇଥାଏ କାରଣ ସେମାନେ କହନ୍ତି ଯେ ବ୍ୟବସାୟ ମଧ୍ୟ ସୁଧ ପରି, ଅଥଚ ଅଲ୍ଲାହ୍ ବ୍ୟବସାୟକୁ ବୈଧ ଏବଂ ସୁଧକୁ ଅବୈଧ କରିଛନ୍ତି। ପୁଣି ଯାହା ପାଖରେ ତା' ପ୍ରଭୁଙ୍କର ଉପଦେଶ ପହଁଚିଗଲା ଏବଂ ସେ ସେଥିରୁ ନିବୃତ୍ତ ରହିଲା, ତେବେ ଯାହା ସେ ପୂର୍ବରୁ ନେଇ ସାରିଛି ତାହା ତା'ର ଏବଂ ତା' ବିଚାର ଅଲ୍ଲାହଙ୍କ ହାତରେ। ଯିଏ ପୁନର୍ବାର ସୁଧ ନିଏ, ଏହିଭଳି ଲୋକମାନେ ନର୍କବାସୀ ହେବେ ଏବଂ ସେଥିରେ ସର୍ବଦା ରହିବେ। ୨୭୬. ଅଲ୍ଲାହ୍ ସୁଧର ବିନାଶ କରନ୍ତି ଏବଂ ଦାନର ବିକାଶ କରନ୍ତି ଏବଂ ଅଲ୍ଲାହ କୌଣସି କୃତଘ୍ନ ଓ ପାପୀଷ୍ଟକୁ ପସନ୍ଦ କରନ୍ତି ନାହିଁ। ୨୭୭. ଯେଉଁମାନେ (ଈଶ୍ୱର ଓ ଈଶ୍ୱରଦୂତଙ୍କୁ) ବିଶ୍ୱାସ କରନ୍ତି, ଭଲ କର୍ମ କରନ୍ତି, ନମାଜପାଠ କରନ୍ତି ଏବଂ ଜକାତ୍ ଦିଅନ୍ତି, ସେମାନଙ୍କୁ ଈଶ୍ୱରଙ୍କଠାରୁ ଏହାର ଉଚିତ ପୁରସ୍କାର ମିଳିବ। ସେମାନଙ୍କ ପାଇଁ କିଛି ଭୟ ନାହିଁ କିମ୍ବା ସେମାନେ ଦୁଃଖ ଭୋଗିବେ ନାହିଁ।

୨୭୮. ହେ ସଦ୍‌ବିଶ୍ୱାସୀମାନେ! ଅଲ୍ଲାହଙ୍କୁ ଭୟ କର ଏବଂ ଯଦି ପ୍ରକୃତରେ ତୁମେମାନେ ସଦ୍‌ବିଶ୍ୱାସୀ, ତେବେ ଯାହା ସୁଧ (ଲୋକଙ୍କ ଉପରେ) ରହିଯାଇଛି ତାହା ଛାଡ଼ିଦିଅ। ୨୭୯. ଯଦି ତୁମେମାନେ ଏହା ନକର, ତେବେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ ତରଫରୁ (ତୁମ ବିରୁଦ୍ଧରେ) ଯୁଦ୍ଧ ଘୋଷଣା ହେଲା

ବୋଲି ଜାଣିନିଅ। କିନ୍ତୁ ଯଦି ତୁମେମାନେ ଅନୁତାପ କରିବ ତେବେ ନିଜର ମୂଳଧନ ପାଇବାର ଅଧିକାର ତୁମମାନଙ୍କର ଅଛି। କାହାରି ପ୍ରତି ଅନ୍ୟାୟ କରନାହିଁ ଏବଂ କେହି ତୁମ ପ୍ରତି ମଧ ଅନ୍ୟାୟ ନକରୁ। ୨୮୦. ଯଦି କେହି (ଋଣୀ ବ୍ୟକ୍ତି) ଅଭାବଗ୍ରସ୍ତ ଥାଏ, ତେବେ ତା' ଅବସ୍ଥା ସୁଧୁରିବା ପର୍ଯ୍ୟନ୍ତ ତାକୁ ସମୟ ଦିଅ ଏବଂ ଯଦି ଦାନ ମନେକରି ତା'ର ଋଣ କ୍ଷମା କରିଦିଅ ତେବେ ଏହା ତୁମମାନଙ୍କ ପକ୍ଷରେ ଏକ ମହତ କାର୍ଯ୍ୟ ହେବ, ଯଦି ତୁମେମାନେ ଏହା ବୁଝିପାର। ୨୮୧. ସେହି ଦିନକୁ ଭୟ କର ଯେଉଁଦିନ ତୁମେମାନେ ଅଲ୍ଲାହଙ୍କ ପାଖକୁ ଫେରିଯିବ। ପୁଣି ପ୍ରତ୍ୟେକ ବ୍ୟକ୍ତି ଯାହା (ପାପ-ପୁଣ୍ୟ) ଅର୍ଜନ କରିଛି ତାହାର ସଂପୂର୍ଣ୍ଣ ଫଳ ପାଇବ। କାହାରି ପ୍ରତି ଅନ୍ୟାୟ କରାଯିବ ନାହିଁ।

୨୮୨. ହେ ସଦ୍‌ବିଶ୍ୱାସୀମାନେ! ଯଦି କୌଣସି ନିର୍ଦ୍ଧିଷ୍ଟ ସମୟ ପାଇଁ ଋଣ ଦିଆନିଆ କର ତେବେ ତାକୁ ଲେଖି ରଖ। ଲେଖିବା ବ୍ୟକ୍ତି ଉଭୟ ପକ୍ଷ ବିଷୟରେ ନ୍ୟାୟସଂଗତ ଭାବରେ ଲେଖୁ। ଯେହେତୁ ଅଲ୍ଲାହ୍ ତାକୁ ଲେଖିବା ଶିଖାଇଛନ୍ତି, ସେ ଲେଖିବାକୁ ମନା ନକରୁ ବରଂ (ଚୁକ୍ତିପତ୍ର) ଲେଖିଦେଉ। ଋଣ ନେଉଥିବା ବ୍ୟକ୍ତି ଚୁକ୍ତିପତ୍ର ଲେଖାଇ ନେଉ ଏବଂ ନିଜ ପ୍ରଭୁଙ୍କୁ ଭୟ କରୁ ଏବଂ (ସେଥିରେ) କିଛି କମ୍-ବେଶୀ ନକରୁ। ଯଦି କରଜ ନେଉଥିବା ବ୍ୟକ୍ତି ଅଜ୍ଞ, ଦୁର୍ବଳ ବା ଚୁକ୍ତିପତ୍ର ଲେଖାଇବା ପାଇଁ ଅକ୍ଷମ, ତେବେ (ତା' ତରଫରୁ) ତା' ଅଭିଭାବକ ନ୍ୟାୟସଂଗତ ଭାବରେ ଏହା ଲେଖାଇ ନିଅନ୍ତୁ ଏବଂ ଦୁଇଜଣ ପୁରୁଷଙ୍କୁ ଏହାର ସାକ୍ଷୀ କରିନିଅ। ଯଦି ଦୁଇଜଣ ପୁରୁଷ ନଥାଆନ୍ତି, ତେବେ ଜଣେ ପୁରୁଷ ଓ ତୁମେ ଉପଯୁକ୍ତ ମନେ କରୁଥିବା ଦୁଇଜଣ ମହିଳାଙ୍କୁ ସାକ୍ଷୀ ରୂପେ ନିଅ। ତା'ହେଲେ ଯଦି ଜଣେ ଭୁଲିଯାଏ, ଅନ୍ୟ ମହିଳାଟି ତାକୁ ମନେ ପକାଇଦେବ। ସାକ୍ଷୀମାନଙ୍କୁ ଯେତେବେଳେ ଡକାଯିବ, ସେମାନେ ଯେପରି ଆସିବାକୁ ମନା ନକରନ୍ତୁ। (ଋଣ ପରିମାଣ) କମ୍ ହେଉ ବା ବେଶୀ, ପରିଶୋଧର ଅବଧି ସହିତ ଚୁକ୍ତିପତ୍ର ଲେଖାଇ ନେବାରେ ଅବହେଳା କରନାହିଁ। ଅଲ୍ଲାହଙ୍କ ଦୃଷ୍ଟିରେ ଏହି ଉପାୟ ଅଧିକ ନ୍ୟାୟସଂଗତ ଯାହା ସାକ୍ଷ୍ୟପ୍ରମାଣକୁ ଅଧିକ ଦୃଢ଼ କରିଥାଏ ଆଉ ତୁମମାନଙ୍କୁ ସନ୍ଦେହରେ ପକାଏ ନାହିଁ। ହଁ, ଯାହା ତୁମେମାନେ ପରସ୍ପର ମଧ୍ୟରେ ନଗଦ ଦିଆନିଆ କର, ତାହାକୁ ନଲେଖିଲେ ତୁମମାନଙ୍କୁ କୌଣସି ପାପ

ହେବନାହିଁ, କିନ୍ତୁ କୌଣସି ବ୍ୟବସାୟିକ ଚୁକ୍ତି କଲେ ସାକ୍ଷୀ ରଖ । କୌଣସି ଲିପିକାର ବା ସାକ୍ଷୀକୁ ହଇରାଣ କରା ନଯାଉ ଏବଂ ଯଦି ତୁମେମାନେ ଏହା କର, ତେବେ ତୁମମାନଙ୍କୁ ପାପ ହେବ । ଅଲ୍ଲାହଙ୍କୁ ଭୟ କରୁଥାଅ ଯେ ସେ ତୁମମାନଙ୍କୁ (ଏଭଳି ସୁନ୍ଦର) ଶିକ୍ଷା ଦେଉଛନ୍ତି ଏବଂ ଅଲ୍ଲାହ୍ ସବୁକିଛି ଜାଣନ୍ତି । ୨୮୩. ଯଦି ତୁମେମାନେ ଯାତ୍ରା କରୁଥାଅ ଏବଂ (ବାଟରେ) ଚୁକ୍ତିପତ୍ର ଲେଖିବା ପାଇଁ ତୁମକୁ କେହି ନମିଳନ୍ତି, ତେବେ (ଋଣ ପରିଶୋଧର ଜମାନତ ରୂପେ) କୌଣସି ବସ୍ତୁ ବନ୍ଧକ ରଖିବା ଉଚିତ । ଯଦି କେହି କାହାରି ପ୍ରତି ଭରସା କରେ (ଅର୍ଥାତ୍ ବିନା ବନ୍ଧକରେ ଋଣ ଦିଏ), ତେବେ ଯାହା ଉପରେ ଭରସା କରାଯାଇଛି, ସେ ଦେୟ ଠିକ ଭାବରେ ପରିଶୋଧ କରିଦେଉ ଏବଂ ଅଲ୍ଲାହଙ୍କୁ ଭୟ କରୁ, ଯିଏ ତା'ର ପାଳନକର୍ତ୍ତା । ସାକ୍ଷ୍ୟପ୍ରମାଣକୁ ଲୁଚାଅନାହିଁ । ଯିଏ ଏହାକୁ ଲୁଚାଏ, ତା' ମନ ଅବଶ୍ୟ ପାପଗ୍ରସ୍ତ । ତୁମେମାନେ ଯାହା କର, ଅଲ୍ଲାହ୍ ସବୁ ଜାଣନ୍ତି ।

୨୮୪. ପୃଥିବୀ ଓ ଆକାଶମଣ୍ଡଳରେ ଯାହାକିଛି ଅଛି ସବୁ ଅଲ୍ଲାହଙ୍କର । ତୁମମାନଙ୍କ ମନରେ ଯାହା ଅଛି, ତୁମେମାନେ ତାହା ପ୍ରକାଶ କର ବା ଗୋପନ ରଖ, ଅଲ୍ଲାହ୍ ତୁମମାନଙ୍କଠାରୁ ତାହାର ହିସାବ ନେବେ । ପୁଣି ଯାହାକୁ ଚାହିଁବେ କ୍ଷମା କରିଦେବେ ଏବଂ ଯାହାକୁ ଚାହିଁବେ ଦଣ୍ଡ ଦେବେ । ଅଲ୍ଲାହ୍ ସବୁକିଛି କରିପାରନ୍ତି ।

୨୮୫. ରସୁଲ ସେଥିରେ ବିଶ୍ୱାସ କଲେ, ଯାହା ତାଙ୍କ ପ୍ରଭୁ ତାଙ୍କ ପ୍ରତି ପ୍ରକଟ କଲେ ଏବଂ ସଦ୍‌ବିଶ୍ୱାସୀମାନେ ମଧ୍ୟ ବିଶ୍ୱାସ କଲେ । ସେମାନେ ସମସ୍ତେ ଅଲ୍ଲାହଙ୍କୁ, ତାଙ୍କ ଦେବଦୂତମାନଙ୍କୁ, ତାଙ୍କର ଗ୍ରନ୍ଥସମୂହକୁ ଏବଂ ତାଙ୍କ ବାର୍ତ୍ତାବହମାନଙ୍କୁ ବିଶ୍ୱାସ କରନ୍ତି । (ସେମାନେ କହନ୍ତି) "ଆମେ ଅଲ୍ଲାହଙ୍କ ବାର୍ତ୍ତାବହମାନଙ୍କ ମଧ୍ୟରେ କୌଣସି ପ୍ରକାର ଭେଦଭାବ କରୁନାହୁଁ ଏବଂ କହନ୍ତି ଯେ ଆମେ (ତୁମ କଥା) ଶୁଣିଲୁ ଏବଂ ମାନିନେଲୁ । ହେ ପାଳନକର୍ତ୍ତା ! ଆମେ ତୁମ ପାଖରେ କ୍ଷମା ପ୍ରାର୍ଥନା କରୁଛୁ ଏବଂ ଆମେ ତୁମରି ପାଖକୁ ଫେରିବୁ ।"

୨୮୬. ଅଲ୍ଲାହ୍ କୌଣସି ବ୍ୟକ୍ତିକୁ ତା' ସାମର୍ଥ୍ୟଠାରୁ ଅଧିକ ଦାୟିତ୍ୱ ଦିଅନ୍ତିନାହିଁ । ଯାହା ପୁଣ୍ୟ ସେ ଅର୍ଜନ କରିବ, ନିଜ ମଙ୍ଗଳ ପାଇଁ କରିବ ଏବଂ ଯାହା ପାପ କରିବ, ତାହାର ଫଳ ମଧ୍ୟ ସେ ହିଁ ଭୋଗିବ । (ତୁମେମାନେ ପ୍ରାର୍ଥନା କର) "ହେ

ପ୍ରଭୁ! ଯଦି ଆମେ ଭୁଲିଯାଉ ବା କୌଣସି ଦୋଷତ୍ରୁଟି କରୁ, ତେବେ ଆମ ଦୋଷ ଧରନାହିଁ। ହେ ପାଳନକର୍ତ୍ତା! ଆମମାନଙ୍କ ଉପରେ ସେହିପରି ବୋଝ ରଖନାହିଁ ଯେମିତି ଆମ ପୂର୍ବଜଙ୍କ ଉପରେ ରଖିଥିଲ। ହେ ପ୍ରଭୁ! ଆମ ଉପରେ ଏମିତି ବୋଝ ରଖନାହିଁ ଯାହାକୁ ବହନ କରିବାର ଶକ୍ତି ଆମର ନାହିଁ। ଆମମାନଙ୍କର ଦୋଷ ମାର୍ଜନା କର, ଆମକୁ କ୍ଷମା କର ଏବଂ ଆମପ୍ରତି ଦୟା କର। ତୁମେହିଁ ଆମର ଆଶ୍ରୟଦାତା। ତେଣୁ, ନାସ୍ତିକମାନଙ୍କ ବିରୁଦ୍ଧରେ ଆମକୁ ସାହାଯ୍ୟ କର।"

## ଅଧ୍ୟାୟ ୩, ଆଲେ ଇମରାନ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲିଫ୍ ଲାମ ମୀମ୍। ୨. ସେ ଅଲ୍ଲାହ୍। ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନୁହନ୍ତି। ସେ ଚିରଂଜୀବୀ ଏବଂ (ସୃଷ୍ଟିର) ଧାରଣକର୍ତ୍ତା। ୩. (ହେ ବାର୍ତ୍ତାବହ!) ସେ ତୁମ ପାଖକୁ ଏକ ଉଚିତ୍ ଲକ୍ଷ୍ୟରେ ଏହି ଗ୍ରନ୍ଥ ପଠାଇଛନ୍ତି ଯାହା ପୂର୍ବ ଗ୍ରନ୍ଥମାନଙ୍କର ସମର୍ଥନ କରେ। (ଏହା ପୂର୍ବରୁ) ସେ ତୌରାତ୍ ଓ ଇନଜିଲ୍ ମଧ୍ୟ ପଠାଇଥିଲେ, ୪. ଯାହା ପୂର୍ବ ଲୋକମାନଙ୍କର ମାର୍ଗଦର୍ଶନ ପାଇଁ ଥିଲା ଏବଂ (ଏବେ) ସେ ଫୁରକାନ୍ (ଅର୍ଥାତ୍ ଠିକ୍ ଓ ଭୁଲ ମଧ୍ୟରେ ପ୍ରଭେଦ କରିବାର ଗ୍ରନ୍ଥ) ପଠାଇଲେ। ଯେଉଁମାନେ ଅଲ୍ଲାହ୍‌ଙ୍କ ବାଣୀକୁ ପ୍ରତ୍ୟାଖ୍ୟାନ କରୁଛନ୍ତି ସେମାନେ କଠୋର ଶାସ୍ତି ଭୋଗିବେ। ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ପ୍ରତିଶୋଧ ନେବାପାଇଁ ସକ୍ଷମ।

୫. ପୃଥିବୀ ଓ ଆକାଶର କୌଣସି କଥା ଅଲ୍ଲାହ୍‌ଙ୍କଠାରୁ ଲୁଚି ରହେନାହିଁ। ୬. ସେ ଯେପରି ଚାହାନ୍ତି ମାତୃଗର୍ଭରେ ତୁମମାନଙ୍କୁ ରୂପ ଦିଅନ୍ତି। ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସନାଯୋଗ୍ୟ ନୁହନ୍ତି। ସେ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ।

୭. (ହେ ବାର୍ତ୍ତାବହ!) ସେ ହିଁ ତୁମ ପ୍ରତି (କୁରଆନ) ଗ୍ରନ୍ଥ ପ୍ରକଟ କରିଛନ୍ତି ଯାହାର କେତେକ ବାଣୀ ସ୍ୱଷ୍ଟ ଅର୍ଥ ପ୍ରକାଶ କରେ ଏବଂ ସେହି ବାଣୀଗୁଡ଼ିକ ଗ୍ରନ୍ଥର ଆଧାର। ଏହାର ଅନ୍ୟ କେତେକ ବାଣୀ ସ୍ୱଷ୍ଟ ନୁହେଁ। ଯେଉଁମାନଙ୍କ ମନରେ କୁଟିଳତା ଭରି ରହିଛି, ସେମାନେ ଅସ୍ୱଷ୍ଟ ବାଣୀଗୁଡ଼ିକ ପଛରେ ଏହି ଉଦ୍ଦେଶ୍ୟରେ ପଡ଼ିଥାଆନ୍ତି ଯେ ସେଗୁଡ଼ିକ ମାଧ୍ୟମରେ ମତାନ୍ତର ସୃଷ୍ଟି

କରିବେ ଏବଂ ସେଗୁଡ଼ିକର ଅନ୍ତର୍ନିହିତ ଅର୍ଥ ଜାଣିବେ, ମାତ୍ର ସେଗୁଡ଼ିକର ସଠିକ୍ ଅର୍ଥ ଅଲ୍ଲାହ୍‌ଙ୍କ ବ୍ୟତୀତ କେହି ଜାଣନ୍ତିନାହିଁ । ଯେଉଁମାନଙ୍କର ଜ୍ଞାନ ଗଭୀର, ସେମାନେ କହନ୍ତି ଯେ ଆମେ ସେଗୁଡ଼ିକୁ ବିଶ୍ୱାସ କରୁ । ସବୁତକ ଆମ ଈଶ୍ୱରଙ୍କର ବାଣୀ ଏବଂ ଏକଥା କେବଳ ବୁଦ୍ଧିମାନ ଲୋକମାନେ ହିଁ ବୁଝିପାରନ୍ତି । ୮. (ସେମାନେ ପ୍ରାର୍ଥନା କରନ୍ତି) "ହେ ପ୍ରଭୁ! ଆମକୁ ସତ୍‌ମାର୍ଗକୁ ଆଣିବା ପରେ ପୁଣି ଆମ ମନକୁ ବିଭ୍ରାନ୍ତ ହେବାକୁ ଦିଅନାହିଁ । ଆମ ପ୍ରତି ନିଜର କରୁଣା କର । ତୁମେ ପରମ ଦାତା । ୯. ହେ ପାଳନକର୍ତ୍ତା! ଏଥିରେ ସନ୍ଦେହ ନାହିଁ ଯେ ତୁମେ ନିଶ୍ଚୟ ଦିନେ ସବୁ ମଣିଷଙ୍କୁ ଏକାଠି କରିବ । ଅଲ୍ଲାହ୍ ଆଦୌ ବଚନ ଭଙ୍ଗ କରନ୍ତିନାହିଁ ।"

୧୦. ଯେଉଁମାନେ (ଅଲ୍ଲାହ୍ ଓ ତାଙ୍କ ବାର୍ତ୍ତାବହଙ୍କୁ) ଅବିଶ୍ୱାସ କଲେ, ସେମାନଙ୍କର ଧନସମ୍ପତ୍ତି ବା ସନ୍ତାନସନ୍ତତି ସେମାନଙ୍କୁ ଅଲ୍ଲାହଙ୍କ ଶାସ୍ତିରୁ ଆଦୌ ରକ୍ଷା କରି ପାରିବନାହିଁ । ସେମାନେ ନର୍କର ଇନ୍ଧନ ହେବେ । ୧୧. ସେମାନଙ୍କର ପରିଣାମ ଫିରଔନର (ଅର୍ଥାତ୍ ଫ୍ୟାରୋର) ଅନୁଚର ତଥା ସେମାନଙ୍କ ପୂର୍ବର ଲୋକମାନଙ୍କ ପରି ହେବ, ଯେଉଁମାନେ ଆମ୍ଭର ବାଣୀକୁ ମିଥ୍ୟା ବୋଲି କହିଥିଲେ । ତେଣୁ, ସେମାନଙ୍କ ପାପ ଯୋଗୁଁ ଅଲ୍ଲାହ୍ ସେମାନଙ୍କୁ ଶାସ୍ତି ଦେଲେ ଏବଂ ଅଲ୍ଲାହ୍ କଠୋର ଶାସ୍ତି ଦିଅନ୍ତି । ୧୨. ନାସ୍ତିକମାନଙ୍କୁ କହିଦିଅ, "ତୁମମାନେ ନିକଟରେ ପରାଜିତ ହେବ ଏବଂ (ପରଲୋକରେ) ତୁମମାନଙ୍କୁ ନର୍କକୁ ଘଉଡ଼ାଇ ନିଆଯିବ, ଯାହା ଅତି କଦର୍ଯ୍ୟ ସ୍ଥାନ ।" ୧୩. ସେହି ଦୁଇ ଗୋଷ୍ଠୀଙ୍କ ମଧ୍ୟରେ ତୁମମାନଙ୍କ ପାଇଁ ପରିଷ୍କାର ସଂକେତ ଥିଲା ଯେଉଁମାନେ (ବଦର୍ ଯୁଦ୍ଧରେ) ମୁହାଁମୁହିଁ ହୋଇଥିଲେ । ଗୋଟିଏ ଗୋଷ୍ଠୀ ଅଲ୍ଲାହଙ୍କ ମାର୍ଗରେ ଯୁଦ୍ଧ କରୁଥିଲା ଏବଂ ଅନ୍ୟଟି ନାସ୍ତିକମାନଙ୍କର ଥିଲା ଯେଉଁମାନଙ୍କ ଆଖିରେ ସେମାନଙ୍କର ସଂଖ୍ୟା ଏମାନଙ୍କର ଦୁଇଗୁଣ ଦିଶୁଥିଲା । ଅଲ୍ଲାହ୍ ଯାହାକୁ ଚାହାନ୍ତି ନିଜ ସହାୟତାରୁ ଶକ୍ତି ପ୍ରଦାନ କରନ୍ତି । ଏଥିରେ ସେମାନଙ୍କ ପାଇଁ ଶିକ୍ଷା ରହିଛି ଯେଉଁମାନଙ୍କର (ଦେଖିବା ପାଇଁ) ଆଖି ଅଛି ।

୧୪. ଲୋକମାନଙ୍କ ପାଇଁ ସେମାନଙ୍କ ବାଂଛିତ ବସ୍ତୁ, ଯଥା; ନାରୀ, ସନ୍ତାନ, ସୁନାରୂପାର ଭଣ୍ଡାର, ଉଚ୍ଚଜାତୀୟ ଅଶ୍ୱ, ପଶୁସଂପଦ ଓ ଶସ୍ୟକ୍ଷେତ୍ର ଆଦିକୁ

ଆକର୍ଷଣୀୟ କରି ଦିଆଯାଇଛି । ଏଗୁଡ଼ିକ କେବଳ ସଂସାରର ଭୋଗ୍ୟ ବସ୍ତୁ କିନ୍ତୁ ଅଲ୍ଲାହ୍‌ଙ୍କ ପାଖରେ ଯାହା ଅଛି ତାହା ସବୁଠାରୁ ଭଲ । ୧୫. କୁହ, "କଣ ମୁଁ ତୁମମାନଙ୍କୁ ଏହାଠାରୁ ଭଲ ଜିନିଷ ବିଷୟରେ କହିବି ? ସଦାଚାରୀ ଲୋକଙ୍କ ପାଇଁ ସେମାନଙ୍କ ପାଳନକର୍ତ୍ତାଙ୍କ ନିକଟରେ ଏଭଳି ଉଦ୍ୟାନମାନ ରହିଛି ଯାହା ତଳେ ଝରଣା ପ୍ରବାହିତ ହୁଏ । ସେମାନେ ସେଠାରେ ସର୍ବଦା ରହିବେ । (ସେଠାରେ) ସେମାନେ ପବିତ୍ର ଜୀବନସାଥୀ ଲାଭ କରିବେ ଏବଂ ଅଲ୍ଲାହ୍‌ଙ୍କର ପ୍ରସନ୍ନତା ମଧ୍ୟ । ଅଲ୍ଲାହ୍ ନିଜର ଭକ୍ତମାନଙ୍କ ଉପରେ ନଜର ରଖିଛନ୍ତି । ୧୬. ଯେଉଁମାନେ ପ୍ରାର୍ଥନା କରନ୍ତି, "ହେ ଈଶ୍ୱର ! ଆମେମାନେ (ତୁମକୁ) ବିଶ୍ୱାସ କଲୁ, ତେଣୁ ଆମର ପାପ କ୍ଷମା କରିଦିଅ ଏବଂ ଆମକୁ ନର୍କଦଣ୍ଡରୁ ରକ୍ଷା କର ।" ୧୭. ଏହି ଲୋକମାନେ ସହନଶୀଳ, ସତ୍ୟନିଷ୍ଠ, ଆଜ୍ଞାବହ ଏବଂ ଏମାନେ ଅଲ୍ଲାହଙ୍କ ମାର୍ଗରେ ଖର୍ଚ୍ଚ କରନ୍ତି ଏବଂ ରାତିର ଅନ୍ତିମ ପ୍ରହରରେ କ୍ଷମାପ୍ରାର୍ଥନା କରିଥାଆନ୍ତି ।

୧୮. ସ୍ୱୟଂ ଅଲ୍ଲାହ୍, ତାଙ୍କ ଦେବଦୂତଗଣ ତଥା ଜ୍ଞାନୀଜନମାନେ ଏହାର ସାକ୍ଷୀ ଯେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନୁହନ୍ତି ଏବଂ ସେ ହିଁ ନ୍ୟାୟର ପ୍ରତିଷ୍ଠାତା । ତାଙ୍କ ବ୍ୟତୀତ ଆଉ କେହି ଈଶ୍ୱର ନାହାନ୍ତି । ସେ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ । ୧୯. ବାସ୍ତବରେ କେବଳ ଇସଲାମ୍ (ଅର୍ଥାତ୍ ଈଶ୍ୱରଶରଣ) ହେଉଛି ଅଲ୍ଲାହଙ୍କ ଦୃଷ୍ଟିରେ ଧର୍ମ । ଯେଉଁମାନଙ୍କୁ ଦିବ୍ୟଗ୍ରନ୍ଥ ଦିଆ ଯାଇଥିଲା, ସେମାନେ ସଦ୍‌ଜ୍ଞାନ ପାଇ ସାରିବା ପରେ କେବଳ ପରସ୍ପର ପ୍ରତି ଈର୍ଷାପରାୟଣ ହୋଇ ମତଭେଦ କଲେ । ଯିଏ ଅଲ୍ଲାହଙ୍କ ବାଣୀକୁ ଅସ୍ୱୀକାର କରେ, ଅଲ୍ଲାହ୍ ଶୀଘ୍ର ତା'ଠାରୁ ହିସାବ ନେବେ । ୨୦. ଯଦି ସେମାନେ ତୁମ ସହିତ ଯୁକ୍ତିତର୍କ କରନ୍ତି, ତେବେ ସେମାନଙ୍କୁ କୁହ ଯେ ମୁଁ ନିଜକୁ ଅଲ୍ଲାହଙ୍କଠାରେ ସମର୍ପଣ କରିଦେଇଛି ଏବଂ ମୋ'ର ଅନୁଗାମୀମାନେ ମଧ୍ୟ । ଗ୍ରନ୍ଥବିଶ୍ୱାସୀ ଏବଂ ଅଶିକ୍ଷିତ ଲୋକମାନଙ୍କୁ ପଚାର ଯେ କ'ଣ ତୁମେମାନେ ସମର୍ପଣ କରିବ ?" ଯଦି ସେମାନେ ସମର୍ପଣ କରନ୍ତି ତେବେ ନିଶ୍ଚୟ ସତପଥ ପାଇବେ, ମାତ୍ର ଯଦି ମନା କରନ୍ତି ତେବେ ସେମାନଙ୍କୁ କେବଳ ମୋ'ର ବାର୍ତ୍ତା ଦେଇଦେବା ତୁମର ଦାୟିତ୍ୱ । ଅଲ୍ଲାହ୍ ନିଜ ଭକ୍ତମାନଙ୍କ ପ୍ରତି ନଜର ରଖିଛନ୍ତି ।

୨୧. ଯେଉଁମାନେ ଅଲ୍ଲାହଙ୍କ ବାଣୀକୁ ଅସ୍ୱୀକାର କରନ୍ତି, ଈଶ୍ୱରଦୂତମାନଙ୍କୁ ଅନ୍ୟାୟରେ ହତ୍ୟା କରନ୍ତି ଏବଂ ନ୍ୟାୟର କଥା କହୁଥିବା ଲୋକମାନଙ୍କୁ ମଧ୍ୟ ହତ୍ୟା କରନ୍ତି, ସେମାନଙ୍କୁ କଠୋର ଦଣ୍ଡ ମିଳିବ ବୋଲି ଜଣାଇଦିଅ । ୨୨. ଏହି ଲୋକମାନଙ୍କର କର୍ମଗୁଡ଼ିକ ଇହଲୋକରେ ଏବଂ ପରଲୋକରେ ଅକାରଣ ହେଲା ଏବଂ ଏମାନଙ୍କୁ କେହି ସାହାଯ୍ୟ କରିବେନାହିଁ ।

୨୩. ଯେଉଁମାନଙ୍କୁ ଗ୍ରନ୍ଥର କିଛି ଅଂଶ ମିଳିଛି, କ'ଣ ତୁମେ ସେମାନଙ୍କୁ ଦେଖିଲନାହଁ ଯେ ଯେତେବେଳେ ସେମାନଙ୍କୁ ଅଲ୍ଲାହଙ୍କ ଗ୍ରନ୍ଥର ନିଷ୍ପତ୍ତିକୁ ଗ୍ରହଣ କରିନେବା ପାଇଁ ଡକାଯାଏ, ସେମାନଙ୍କ ମଧ୍ୟରୁ ଦଳେ ଲୋକ (କିପରି) ଏହାକୁ ପ୍ରତ୍ୟାଖ୍ୟାନ କରି ଚାଲିଯାଆନ୍ତି ? ୨୪. କାରଣ, ସେମାନେ ଏହା କହନ୍ତି ଯେ ନର୍କର ନିଆଁ ଆମକୁ ସ୍ପର୍ଶ କରିବନାହିଁ, (ଯଦି ନର୍କଦଣ୍ଡ ହେବ, ତେବେ) ମାତ୍ର କିଛିଦିନ ପାଇଁ । ସେମାନଙ୍କର ଏହି ମନଗଢ଼ା ଚିନ୍ତାଧାରା ସେମାନଙ୍କୁ ନିଜ ଧର୍ମ ବିଷୟରେ ବିଭ୍ରାନ୍ତ କରିଦେଇଛି । ୨୫. ପୁଣି ସେଦିନ ସେମାନଙ୍କ ଅବସ୍ଥା କଣ ହେବ ଯେଉଁଦିନ ଆମ୍ଭେ ସେମାନଙ୍କୁ ଏକାଠି କରିବୁ, ଯେଉଁଥିରେ ତିଳେହେଲେ ସନ୍ଦେହ ନାହିଁ ? ସେଦିନ ପ୍ରତ୍ୟେକ ବ୍ୟକ୍ତି ଯାହା (ପାପ ପୁଣ୍ୟ) କରିଥିବ, ତା' କର୍ମର ସଂପୂର୍ଣ୍ଣ ଫଳ ପାଇବ ଏବଂ ସେମାନଙ୍କ ପ୍ରତି ଅବିଚାର କରାଯିବ ନାହିଁ ।

୨୬. ତୁମେ କୁହ, "ହେ ଅଲ୍ଲାହ୍ ! ବ୍ରହ୍ମାଣ୍ଡର ଅଧୀଶ୍ୱର ! ତୁମେ ଯାହାକୁ ଚାହଁ କ୍ଷମତା ଦିଅ ଏବଂ ଯାହାଠାରୁ ଚାହଁ କ୍ଷମତା ଛଡ଼ାଇନିଅ, ଯାହାକୁ ଚାହଁ ସମ୍ମାନ ଦିଅ ଏବଂ ଯାହାକୁ ଚାହଁ ଲାଂଛିତ କର । ତୁମରି ହାତରେ ରହିଛି ସକଳ କଲ୍ୟାଣ । ତୁମେ ସବୁକିଛି କରିବାକୁ ସକ୍ଷମ ।" ୨୭. "ତୁମେ ରାତିକୁ ଦିନ ମଧ୍ୟରେ ଏବଂ ଦିନକୁ ରାତି ମଧ୍ୟରେ ବିଲୀନ କରିଦିଅ ଏବଂ ନିର୍ଜୀବରୁ ସଜୀବ ଏବଂ ସଜୀବରୁ ନିର୍ଜୀବ ଉତ୍ପନ୍ନ କର ଏବଂ ତୁମେ ଯାହାକୁ ଚାହଁ ଅମାପ ସାଂସାରିକ ସାଧନ ଦେଇଥାଅ ।"

୨୮. ମୁସଲମାନମାନେ ସଦ୍‌ବିଶ୍ୱାସୀମାନଙ୍କୁ ଛାଡ଼ି ମିଥ୍ୟାବିଶ୍ୱାସୀମାନଙ୍କୁ ନିଜର ମିତ୍ର ନକରନ୍ତୁ । ଯିଏ ଏଭଳି କରିବ, ଅଲ୍ଲାହଙ୍କ ସହିତ ତା'ର କିଛି ସଂପର୍କ ନାହିଁ । ହଁ, ଯଦି ତୁମେମାନେ ସେମାନଙ୍କ ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ଏଭଳି କର,

ତେବେ ଭିନ୍ନ କଥା । ଅଲ୍ଲାହ୍ ନିଜ ବିଷୟରେ ତୁମମାନଙ୍କୁ ସାବଧାନ କରୁଛନ୍ତି ଏବଂ (ତୁମମାନଙ୍କୁ) ତାଙ୍କରି ନିକଟକୁ ଫେରିବାକୁ ହେବ । ୨୯. କହିଦିଅ, "ଯାହା ତୁମମାନଙ୍କ ମନରେ ଅଛି, ତାହାକୁ ଲୁଚାଇ ରଖ ବା ପ୍ରକାଶ କର, ଅଲ୍ଲାହ୍ ସବୁ ଜାଣନ୍ତି ଏବଂ ପୃଥିବୀ ଓ ଆକାଶରେ ଯାହା ଅଛି ସେ ତାହା ମଧ୍ୟ ଜାଣନ୍ତି । ଅଲ୍ଲାହ୍ ସବୁକିଛି କରିପାରନ୍ତି ।" ୩୦. ଯେଉଁଦିନ ପ୍ରତ୍ୟେକ ବ୍ୟକ୍ତି ନିଜେ କରିଥିବା ପୁଣ୍ୟ ଏବଂ ପାପ ଦେଖିବ, ସେଦିନ ସେ କାମନା କରିବ ଯେ କେତେ ଭଲ ହୋଇଥାଆନ୍ତା ଯଦି ସେ କୁକର୍ମରୁ ଦୂରେଇ ରହିଥାଆନ୍ତା । ଅଲ୍ଲାହ୍ ତୁମମାନଙ୍କୁ ତାଙ୍କ ବିଷୟରେ ସାବଧାନ କରୁଛନ୍ତି ଏବଂ ଅଲ୍ଲାହ୍ ନିଜର ସେବକମାନଙ୍କ ପ୍ରତି ଅତ୍ୟନ୍ତ ଦୟାଳୁ ।

୩୧. (ହେ ବାର୍ତ୍ତାବହ !) କହିଦିଅ, "ଯଦି ତୁମେମାନେ ଅଲ୍ଲାହ୍‌ଙ୍କୁ ପ୍ରେମ କରୁଥାଅ ତେବେ ମୋ' କଥା ମାନ, ତା'ହେଲେ ଅଲ୍ଲାହ୍ ତୁମମାନଙ୍କୁ ପ୍ରେମ କରିବେ ଏବଂ ତୁମମାନଙ୍କ ପାପ କ୍ଷମା କରିଦେବେ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ ।" ୩୨. କହିଦିଅ, "ଅଲ୍ଲାହଙ୍କ କଥା ମାନ ଏବଂ ରସୁଲଙ୍କ କଥା ମାନ ।" ଯଦି ସେମାନେ ନମାନନ୍ତି, ତେବେ (ଜାଣି ରଖନ୍ତୁ ଯେ) ଅଲ୍ଲାହ୍ ନାସ୍ତିକମାନଙ୍କୁ ପସନ୍ଦ କରନ୍ତିନାହିଁ ।

୩୩. ଅଲ୍ଲାହ୍ ବିଶ୍ୱବାସୀଙ୍କ ମଧ୍ୟରୁ ଆଦମ୍ ଓ ନୁହ୍‌ଙ୍କୁ ଏବଂ ଇବ୍ରାହିମ ଓ ଇମ୍‌ରାନଙ୍କ ବଂଶଧରମାନଙ୍କୁ ମନୋନୀତ କରିଥିଲେ । ୩୪. ଏମାନଙ୍କ ମଧ୍ୟରୁ କେତେକ ଅନ୍ୟ କେତେକଙ୍କର ସନ୍ତାନ । ଅଲ୍ଲାହ୍ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି । ୩୫. ଯେତେବେଳେ ଇମରାନଙ୍କ ପତ୍ନୀ କହିଲେ, "ହେ ପ୍ରଭୁ ! ମୋ' ଗର୍ଭରେ ଯେଉଁ ସନ୍ତାନ ଅଛି, ମୁଁ ତାକୁ ତୁମ ସେବାରେ ଉତ୍ସର୍ଗ କରିବି ବୋଲି ମାନସିକ କରିଛି । ତେଣୁ, ଏହାକୁ ସ୍ୱୀକାର କର । ତୁମେ ସବୁ ଶୁଣ ଏବଂ ସବୁ ଜାଣ ।" ୩୬. ପୁଣି ଯେତେବେଳେ ସେ ଜନ୍ମ ଦେଲେ, (ଅବଶୋଷ କରି) କହିଲେ, "ହେ ପାଳନକର୍ତ୍ତା ! ମୁଁ ତ ଝିଅଟିଏ ଜନ୍ମ ଦେଇଛି ।" ଅଲ୍ଲାହ୍ ଜାଣନ୍ତି ସେ କ'ଣ ଜନ୍ମ ଦେଲେ । "ପୁଅଟିଏ (ହୋଇଥିଲେ ସେ) ଝିଅ ପରି ହୁଅନ୍ତାନାହିଁ । ମୁଁ ତା' ନାଁ ମରିୟମ ରଖିଛି ଏବଂ ତାକୁ ଏବଂ ତା' ସନ୍ତାନମାନଙ୍କୁ ଅଭିଶପ୍ତ ଶଇତାନଠାରୁ ସୁରକ୍ଷିତ ରଖିବା ପାଇଁ ତୁମ ଶରଣରେ ଦେଉଛି ।" ୩୭. ସୁତରାଂ ଈଶ୍ୱର ତାଙ୍କୁ

ସାଦରେ ଗ୍ରହଣ କଲେ ଏବଂ ଭଲରୂପେ ତାଙ୍କର ଲାଳନପାଳନ କଲେ ଏବଂ ଜକରିୟାଙ୍କୁ ତାଙ୍କର ଅଭିଭାବକ ରୂପେ ନିଯୁକ୍ତ କରିଦେଲେ । ଯେତେବେଳେ ଜକରିୟା ତାଙ୍କର ଉପାସନା କକ୍ଷକୁ ଯାଆନ୍ତି, ତାଙ୍କ ନିକଟରେ କିଛିନା କିଛି ଖାଦ୍ୟବସ୍ତୁ ଦେଖନ୍ତି । ସେ ପଚାରନ୍ତି "ହେ ମରିୟମ, ଏଗୁଡ଼ିକ ତୁମ ପାଖକୁ କୁଆଡୁ ଆସିଲା ?" ମରିୟମ କହନ୍ତି, "ଅଲ୍ଲାହଙ୍କଠାରୁ । ଅଲ୍ଲାହ୍ ଯାହାକୁ ଇଚ୍ଛା କରନ୍ତି, ଅପର୍ଯ୍ୟାପ୍ତ ଆହାର ଦିଅନ୍ତି ।" ୩୮. ସେତେବେଳେ ଜକରିୟା ଈଶ୍ୱରଙ୍କୁ ପ୍ରାର୍ଥନା କଲେ, "ହେ ପ୍ରଭୁ! ମୋତେ ନିଜ କୃପାରୁ ପୁଣ୍ୟବାନ ସନ୍ତାନଟିଏ ଦିଅ । ତୁମେ ଅବଶ୍ୟ ପ୍ରାର୍ଥନା ଶୁଣିଥାଅ ।" ୩୯. ପୁଣି (ଦିନେ) ଯେତେବେଳେ ଜକରିୟା ଉପାସନା କକ୍ଷରେ ଠିଆ ହୋଇ ପ୍ରାର୍ଥନା କରୁଥିଲେ, ଦେବଦୂତମାନେ ତାଙ୍କୁ କହିଲେ ଯେ ଅଲ୍ଲାହ୍ ତୁମକୁ ୟହୟାଙ୍କ ଜନ୍ମର ଶୁଭସୂଚନା ଦେଉଛନ୍ତି । ସେ ଅଲ୍ଲାହଙ୍କର ଏକ କଥାର ସମର୍ଥନ କରିବେ, ଜନନାୟକ ହେବେ, ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିବେ, ଜଣେ ଈଶ୍ୱରଦୂତ ହେବେ ଏବଂ ପୁଣ୍ୟବାନ ବ୍ୟକ୍ତି ରୂପେ ପରିଗଣିତ ହେବେ । ୪୦. ଜକରିୟା କହିଲେ "ପ୍ରଭୁ! ମୋର ପୁଅ କିପରି ହେବ ? ମୁଁ ତ ବୃଦ୍ଧ ହୋଇଯାଇଛି ଆଉ ମୋ ପତ୍ନୀ ମଧ୍ୟ ବନ୍ଧ୍ୟା । ଉତ୍ତର ମିଳିଲା "ଅଲ୍ଲାହ୍ ଏହିପରି ଯାହା ଇଚ୍ଛା କରନ୍ତି, ତାହା କରନ୍ତି ।" ୪୧. ଜକରିୟା ନିବେଦନ କଲେ, "ପ୍ରଭୁ! ମୋ ପାଇଁ ଏହାର କୌଣସି ସଂକେତ ନିରୂପଣ କରିଦିଅ ।" ଉତ୍ତର ମିଳିଲା "ଏହାର ସଂକେତ ହେଉଛି ଯେ ତୁମେ ତିନିଦିନ ପର୍ଯ୍ୟନ୍ତ କେବଳ ଇଂଗିତରେ ଲୋକଙ୍କ ସହ କଥାବାର୍ତ୍ତା କରିବ । ନିଜ ପ୍ରଭୁଙ୍କୁ ସବୁବେଳେ ସ୍ମରଣ କର ଏବଂ ସକାଳ ଓ ସଂଧ୍ୟାରେ ତାଙ୍କର ଗୁଣଗାନ କର ।"

୪୨. (ସ୍ମରଣ କର) ଯେତେବେଳେ ଦେବଦୂତମାନେ (ମେରୀଙ୍କୁ) କହିଲେ "ହେ ମରିୟମ୍! ଅଲ୍ଲାହ୍ ତୁମକୁ ମନୋନୀତ କରିଛନ୍ତି, ତୁମକୁ ପବିତ୍ର କରିଛନ୍ତି ଏବଂ ବିଶ୍ୱର ନାରୀଜାତିଙ୍କ ମଧ୍ୟରୁ ତୁମକୁ (ତାଙ୍କ ସେବା ପାଇଁ) ବାଛି ନେଇଛନ୍ତି । ୪୩. ହେ ମରିୟମ! ନିଜ ପାଳନକର୍ତ୍ତାଙ୍କର ଆଜ୍ଞାକାରିଣୀ ହୁଅ, ତାଙ୍କୁ ପ୍ରଣିପାତ କର ଏବଂ ତାଙ୍କ ପାଖରେ ନଇଁ ଯାଉଥିବା ଭକ୍ତମାନଙ୍କ ସହିତ ତୁମେ ମଧ୍ୟ ନଇଁଯାଅ ।"

୪୪. (ହେ ବାର୍ତ୍ତାବହ!) ଏହା ଅଦୃଷ୍ଟ ଜଗତର ଖବର ଯାହାକୁ ଆମ୍ଭେ ଦୈବବାଣୀ ମାଧ୍ୟମରେ ତୁମକୁ ଜଣାଉଛୁ। ଯେତେବେଳେ ମରିୟମଙ୍କ ଅଭିଭାବକ କିଏ ହେବ ବୋଲି (ନିଷ୍ପତ୍ତି କରିବା ପାଇଁ) ସେମାନେ ଧର୍ମଗୁଳା ପକାଉଥିଲେ, ତୁମେ ସେମାନଙ୍କ ପାଖରେ ନଥିଲ କିମ୍ବା ସେତେବେଳେ ମଧ୍ୟ ନଥିଲ ଯେତେବେଳେ ସେମାନେ ପରସ୍ପର ମଧ୍ୟରେ ଝଗଡ଼ା କରୁଥିଲେ।

୪୫. ଯେତେବେଳେ ଦେବଦୂତମାନେ (ମରିୟମଙ୍କୁ) କହିଲେ "ହେ ମରିୟମ! ଅଲ୍ଲାହ୍ ତୁମକୁ ତାଙ୍କର ଏକ ଆଜ୍ଞାର (ଅର୍ଥାତ୍ ପିତା ବିନା ଈଶ୍ୱରଦୂତ ଯୀଶୁଙ୍କ ଜନ୍ମର) ଶୁଭସୂଚନା ଦେଉଛନ୍ତି, ଯାହାଙ୍କର ନାମ ମରିୟମପୁତ୍ର ଇସା-ମସୀହ ହେବ। ସେ ଇହଲୋକ ଓ ପରଲୋକରେ ଅତ୍ୟନ୍ତ ଗୌରବଶାଳୀ ହେବେ ଏବଂ ଅଲ୍ଲାହଙ୍କର ନିକଟତମ ବ୍ୟକ୍ତି ହେବେ। ୪୬. ସେ ଉଭୟ ଶିଶୁ ଅବସ୍ଥାରେ ଏବଂ ପ୍ରାପ୍ତବୟସରେ ଲୋକଙ୍କ ସହିତ କଥାବାର୍ତ୍ତା କରିବେ ଏବଂ ପୁଣ୍ୟବାନ ହେବେ।" ୪୭. ମରିୟମ ପଚାରିଲେ, "ପ୍ରଭୁ! ମୋ'ର ପୁଅ କିପରି ହେବ? ମୋତେ ତ କୌଣସି ପୁରୁଷ ସ୍ପର୍ଶ କରିନାହିଁ? ଉତ୍ତର ମିଳିଲା, "ଅଲ୍ଲାହ୍ ଏହିପରି ଯାହା ଚାହାନ୍ତି ତାହା ସୃଷ୍ଟି କରନ୍ତି। ଯେତେବେଳେ ସେ କୌଣସି କାର୍ଯ୍ୟ କରିବାକୁ ସ୍ଥିର କରନ୍ତି, କହନ୍ତି, 'ହୋଇଯା' ଏବଂ ତାହା ହୋଇଯାଏ। ୪୮. ଅଲ୍ଲାହ୍ ତାଙ୍କୁ ଗ୍ରନ୍ଥ ଓ ତତ୍ତ୍ୱର ଶିକ୍ଷା ଦେବେ ଏବଂ ତୌରାତ୍ ଓ ଇଂଜିଲ୍ ଗ୍ରନ୍ଥର ଜ୍ଞାନ ମଧ୍ୟ ପ୍ରଦାନ କରିବେ।

୪୯. ସେ ଇସ୍ରାଇଲ ବଂଶଧରମାନଙ୍କ ପାଇଁ ରସୁଲ ହେବେ (ଏବଂ ସେମାନଙ୍କୁ କହିବେ) "ମୁଁ ତୁମମାନଙ୍କ ପାଖକୁ ତୁମ ଈଶ୍ୱରଙ୍କର (କେତେକ ଅଲୌକିକ) ନିଦର୍ଶନ ନେଇ ଆସିଛି। ମୁଁ ତୁମମାନଙ୍କ ସମ୍ମୁଖରେ ମାଟିରୁ ପକ୍ଷୀର ପ୍ରତିରୂପ ଗଢ଼ି ସେଥିରେ ଫୁଙ୍କି ଦେଲେ ତାହା ଅଲ୍ଲାହଙ୍କ ଆଜ୍ଞାରୁ ଜୀବନ୍ତ ପକ୍ଷୀ ହୋଇଯାଏ। ମୁଁ ଅଲ୍ଲାହଙ୍କ ଆଜ୍ଞାରୁ ଜନ୍ମାନ୍ଧ ଓ କୁଷ୍ଠରୋଗୀଙ୍କୁ ଆରୋଗ୍ୟ କରେ ଏବଂ ଅଲ୍ଲାହଙ୍କ ଆଜ୍ଞାରୁ ମୃତକୁ ଜୀବିତ କରିଦିଏ ଏବଂ ମୁଁ ଏହା ମଧ୍ୟ କହିଦିଏ ଯେ ତୁମେମାନେ ନିଜ ଘରେ କ'ଣ ଖାଅ ବା କ'ଣ ସଂଚୟ କରି ରଖ। ଯଦି ତୁମେମାନେ ବିଶ୍ୱାସ କର, ତେବେ ଏଗୁଡ଼ିକରେ ତୁମମାନଙ୍କ ପାଇଁ ଯଥେଷ୍ଟ ପ୍ରମାଣ

ରହିଛି । ୫୦. ମୁଁ ମୋ' ପୂର୍ବରୁ ଆସିଥିବା ତୌରାତ୍ ଗ୍ରନ୍ଥର ସମର୍ଥନ କରୁଛି ଏବଂ ମୋତେ ଏଥିପାଇଁ ମଧ୍ୟ ପଠାଯାଇଛି ଯେ ମୁଁ ତୁମମାନଙ୍କ ପାଇଁ ନିଷିଦ୍ଧ ଥିବା କେତେକ ବସ୍ତୁକୁ ବୈଧ କରିବି । ମୁଁ ତୁମ ପାଳନକର୍ତ୍ତାଙ୍କ ପାଖରୁ ନିଦର୍ଶନ ନେଇ ଆସିଛି । ତେଣୁ, ତୁମେମାନେ ଅଲ୍ଲାହଙ୍କୁ ଭୟ କର ଏବଂ ମୋ' କଥା ମାନ । ୫୧. ଅଲ୍ଲାହ୍ ମୋ'ର ମଧ୍ୟ ଈଶ୍ୱର ଏବଂ ତୁମମାନଙ୍କର ମଧ୍ୟ ଈଶ୍ୱର । ତେଣୁ, ତାଙ୍କରି ଉପାସନା କର । ଏହାହିଁ ସଳଖ ବାଟ ।"

୫୨. ପୁଣି ଯେତେବେଳେ ଇସା (ଅର୍ଥାତ୍ ଯୀଶୁ) ସେମାନଙ୍କଠାରେ ଅବିଶ୍ୱାସଭାବ ଲକ୍ଷ୍ୟ କଲେ, ସେମାନଙ୍କୁ ପଚାରିଲେ, "ମୋତେ ଅଲ୍ଲାହଙ୍କ ମାର୍ଗରେ କିଏ ସାହାଯ୍ୟ କରିବ ?" ତାଙ୍କ ଶିଷ୍ୟମାନେ ଉତ୍ତର ଦେଲେ, "ଆମେ ଆପଣଙ୍କୁ ଅଲ୍ଲାହଙ୍କ ମାର୍ଗରେ ସାହାଯ୍ୟ କରିବୁ । ଆମେ ଅଲ୍ଲାହଙ୍କୁ ବିଶ୍ୱାସ କଲୁ ଏବଂ ଆପଣ ଏହାର ସାକ୍ଷୀ ରୁହନ୍ତୁ ଯେ ଆମେ ମୁସଲିମ୍ (ଅର୍ଥାତ୍ ତୁମର ଆଜ୍ଞାଧୀନ) । ୫୩. ହେ ଈଶ୍ୱର ! ତୁମେ ଯେଉଁ ଦୈବବାଣୀ ପଠାଇଛ, ଆମେ ସେଥିରେ ବିଶ୍ୱାସ କଲୁ ଏବଂ ତୁମ ବାର୍ତ୍ତାବହଙ୍କର ଅନୁଗତ ହୋଇଗଲୁ । ତେଣୁ, ଆମମାନଙ୍କୁ ସତ୍ୟର ସାକ୍ଷୀ ରୂପେ ଲେଖିନିଅ ।" ୫୪. ନାସ୍ତିକମାନେ (ଯୀଶୁଙ୍କୁ ହତ୍ୟା କରିବାର) ଗୁପ୍ତ ଯୋଜନା ପ୍ରସ୍ତୁତ କଲେ ଏବଂ ଅଲ୍ଲାହ୍ ମଧ୍ୟ (ନିଜର) ଯୋଜନା ପ୍ରସ୍ତୁତ କଲେ ଏବଂ ଅଲ୍ଲାହ୍ ସବୁଠାରୁ ଭଲ ଯୋଜନା କରନ୍ତି ।

୫୫. ସେତେବେଳେ ଅଲ୍ଲାହ୍ କହିଲେ, "ହେ ଇସା ! ମୁଁ ତୁମକୁ ଫେରାଇ ନେବି ଏବଂ ତୁମକୁ (ସଶରୀରେ) ମୋ'ପାଖକୁ ନେଇ ଆସିବି । ତୁମକୁ ନାସ୍ତିକମାନଙ୍କ କବଳରୁ ମୁକ୍ତ କରିବି ଏବଂ ତୁମର ଅନୁଗାମୀମାନଙ୍କୁ ପ୍ରଳୟ ପର୍ଯ୍ୟନ୍ତ ନାସ୍ତିକମାନଙ୍କଠାରୁ ଆଗରେ ରଖିବି । ପୁଣି ତୁମେ ସବୁ ମୋ'ରି ନିକଟକୁ ଫେରିବ ଏବଂ ମୁଁ ତୁମମାନଙ୍କ ମଧ୍ୟରେ ଥିବା ବିବାଦର ନିଷ୍ପତ୍ତି କରିଦେବି ।" ୫୬. ପୁଣି ଯେଉଁମାନେ ପ୍ରତ୍ୟାଖ୍ୟାନ କରିବେ, ମୁଁ ସେମାନଙ୍କୁ ଇହଲୋକ ଓ ପରଲୋକରେ କଠିନ ଦଣ୍ଡ ଦେବି ଏବଂ ସେମାନଙ୍କୁ କାହାରି ସାହାଯ୍ୟ ମିଳିବନାହିଁ । ୫୭. ଯେଉଁମାନେ ବିଶ୍ୱାସ ରଖିଲେ ଏବଂ ଭଲ କର୍ମକଲେ, ଅଲ୍ଲାହ୍ ସେମାନଙ୍କୁ ସଂପୂର୍ଣ୍ଣ କର୍ମଫଳ ଦେବେ । ଅଲ୍ଲାହ୍ ଅନ୍ୟାୟୀମାନଙ୍କୁ ଭଲ ପାଆନ୍ତିନାହିଁ । ୫୮. (ହେ

ବାର୍ତ୍ତାବହ !) ଯାହା ଆମ୍ଭେ ତୁମକୁ ପଢ଼ି ଶୁଣାଉଅଛୁ, ସେଗୁଡ଼ିକ ଆମ୍ଭର ବାଣୀ ଏବଂ ବିଜ୍ଞତାପୂର୍ଣ୍ଣ ଉପଦେଶ ।

୫୯. ଅଲ୍ଲାହଙ୍କ ନିକଟରେ ଇସାଙ୍କ ଉଦାହରଣ ଠିକ୍ ଆଦମଙ୍କ ପରି । ତାଙ୍କୁ ସେ ମାଟିରୁ ଗଢ଼ିଲେ ଏବଂ କହିଲେ "ହୋଇଯା" ଏବଂ ସେ ସୃଷ୍ଟି ହୋଇଗଲେ । ୬୦. ଏହି ସତ୍ୟ ତୁମ ପାଳନକର୍ତ୍ତାଙ୍କ ଠାରୁ ଆସିଛି । ତେଣୁ, ତୁମେ ସନ୍ଦେହରେ ପଡ଼ନାହିଁ । ୬୧. ତୁମକୁ (ଯୀଶୁଙ୍କ ବିଷୟରେ) ଏହି ଜ୍ଞାନ ମିଳିବା ପରେ ଯଦି କେହି ତୁମ ସହିତ ଏ ବିଷୟରେ ଯୁକ୍ତିତର୍କ କରେ, ତେବେ କୁହ, "ଆସ, ଆମେମାନେ ନିଜନିଜର ପୁତ୍ର ଓ ପତ୍ନୀମାନଙ୍କୁ ଡାକିବା ଏବଂ ଆମେ ନିଜେ ମଧ୍ୟ ଏକାଠି ହେବା । ପୁଣି (ସମସ୍ତେ ମିଶି) ପ୍ରାର୍ଥନା କରିବା ଯେ ଯିଏ ମିଛ କହୁଥିବ, ତା'ଉପରେ ଅଲ୍ଲାହଙ୍କ ଅଭିଶାପ ପଡୁ ।" ୬୨. ଏହାହିଁ ଘଟଣାର ବାସ୍ତବତା । ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଈଶ୍ୱର ନାହାନ୍ତି । ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ । ୬୩. ଯଦି ସେମାନେ ଏହାକୁ ଗ୍ରହଣ ନକରନ୍ତି, ତେବେ (ଜାଣିରଖ) ଅଲ୍ଲାହ୍ ଦୁଷ୍ଟମାନଙ୍କୁ ଭଲରୂପେ ଜାଣନ୍ତି ।

୬୪. ସେମାନଙ୍କୁ କୁହ, "ହେ ଗ୍ରନ୍ଥବିଶ୍ୱାସୀମାନେ ! ଆସ ଏଭଳି କଥାଟିଏ ଗ୍ରହଣ କରିନେବା ଯାହା ତୁମ ଓ ଆମ ଭିତରେ ସମାନ ଭାବରେ ରହିଛି ଯେ ଆମେ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କାହାରି ସେବା-ଉପାସନା କରିବା ନାହିଁ କିମ୍ବା ଅଲ୍ଲାହ୍‌ଙ୍କ ଈଶ୍ୱରତ୍ୱରେ କାହାରିକୁ ଅଂଶୀଦାର କରିବା ନାହିଁ କିମ୍ବା ଅଲ୍ଲାହଙ୍କୁ ଛାଡ଼ି ଆମ ଭିତରୁ କେହି କାହାରିକୁ ଈଶ୍ୱର (ରୂପେ ଗ୍ରହଣ) କରିବା ନାହିଁ ।" ତା'ପରେ ଯଦି ସେମାନେ ନମାନନ୍ତି ତେବେ କହିଦିଅ "ତୁମେମାନେ ସାକ୍ଷୀ ଥାଅ ଯେ ଆମେମାନେ ମୁସଲିମ୍ (ଅର୍ଥାତ୍ ଈଶ୍ୱରଙ୍କର ଆଜ୍ଞାବହ) ।" ୬୫. ହେ ଗ୍ରନ୍ଥବିଶ୍ୱାସୀମାନେ ! ତୁମେମାନେ ଇବ୍ରାହିମଙ୍କ ବିଷୟରେ କାହିଁକି ଯୁକ୍ତି କରୁଛ ଅଥଚ ତୌରାତ୍ ଓ ଇନ୍‌ଜିଲ୍ ତ ତାଙ୍କ ପରେ ପଠାଗଲା ? କ'ଣ ତୁମେମାନେ ଏତିକି ବୁଝି ପାରୁନାହଁ ? ୬୬. ତୁମେମାନେ ତ ସେବିଷୟରେ ଯୁକ୍ତିତର୍କ କଲ ଯାହା ବିଷୟରେ ତୁମମାନଙ୍କର କିଛି ଜ୍ଞାନ ଥିଲା କିନ୍ତୁ ବର୍ତ୍ତମାନ ଏବିଷୟରେ କାହିଁକି ଝଗଡ଼ା କରୁଛ ଯାହା ସଂପର୍କରେ ତୁମର ଆଦୌ ଜ୍ଞାନ ନାହିଁ ? ଅଲ୍ଲାହ୍ ଜାଣନ୍ତି, ମାତ୍ର ତୁମେମାନେ

ଜାଣନାହିଁ । ୬୭. ଇବ୍ରାହିମ୍ (ଅର୍ଥାତ୍ ଆବ୍ରାହମ୍) ଇହୁଦୀ ନଥିଲେ କି ଖ୍ରୀଷ୍ଟିୟାନ ନଥିଲେ ବରଂ ସେ ସ୍ୱଭାବ ଅନୁଯାୟୀ ଜଣେ ଏକନିଷ୍ଠ ମୁସଲିମ୍ ଥିଲେ । ସେ ବହୁଇଶ୍ୱରବାଦୀ ନଥିଲେ । ୬୮. ବାସ୍ତବରେ ଇବ୍ରାହିମଙ୍କ ପାଖଲୋକ ସେଇମାନେ, ଯେଉଁମାନେ ତାଙ୍କୁ ମାନି ଚଳିଲେ ଏବଂ ଏହି ବାର୍ତ୍ତାବହ (ଅର୍ଥାତ୍ ମହାମାନ୍ୟ ମୁହମ୍ମଦ) ଏବଂ ତାଙ୍କୁ ବିଶ୍ୱାସ କରିଥିବା ଲୋକମାନେ ମଧ୍ୟ । ଅଲ୍ଲାହ୍ ସଦବିଶ୍ୱାସୀମାନଙ୍କର ଆଶ୍ରୟଦାତା ।

୬୯. ଗ୍ରନ୍ଥବିଶ୍ୱାସୀମାନଙ୍କ ମଧ୍ୟରୁ କିଛି ଲୋକ ତୁମମାନଙ୍କୁ ପଥଭ୍ରଷ୍ଟ କରି ଦେବାକୁ ଚାହାନ୍ତି, ଅଥଚ ସେମାନେ ନିଜେ ନିଜକୁ ହିଁ ପଥଭ୍ରଷ୍ଟ କରୁଛନ୍ତି ମାତ୍ର ଏହା ବୁଝି ପାରୁନାହାନ୍ତି । ୭୦. ହେ ଗ୍ରନ୍ଥବିଶ୍ୱାସୀମାନେ ! କାହିଁକି ଅଲ୍ଲାହଙ୍କ ବାଣୀକୁ ଜାଣିଶୁଣି ଅସ୍ୱୀକାର କରୁଛ ଯଦିଓ ତୁମେମାନେ ନିଜେ (ନିଜ ଗ୍ରନ୍ଥରେ ଥିବା ଏହି ସତ୍ୟର) ସାକ୍ଷୀ ରହିଛ । ୭୧. ହେ ଗ୍ରନ୍ଥବିଶ୍ୱାସୀମାନେ ! କାହିଁକି ଜାଣିଶୁଣି ସତକୁ ମିଛ ସହିତ ମିଶାଇ ଦେଉଛ ଏବଂ ସତକଥାକୁ କାହିଁକି ଲୁଚାଇ ଦେଉଛ ?

୭୨. ଗ୍ରନ୍ଥବିଶ୍ୱାସୀମାନଙ୍କର ଗୋଟିଏ ଗୋଷ୍ଠୀ (ଅନ୍ୟ ଗୋଷ୍ଠୀକୁ) କହୁଛି, "ମୁସଲମାନମାନଙ୍କ ପାଖକୁ ଯେଉଁ ଗ୍ରନ୍ଥ ଆସିଛି ତାହାକୁ ସକାଳେ ମାନିଯାଅ ଏବଂ ସଂଧ୍ୟାରେ ମନା କରିଦିଅ । ବୋଧହୁଏ ଏହିପରି କଲେ, ସେମାନେ (ନିଜ ଧର୍ମ) ପରିତ୍ୟାଗ କରିଦେବେ । ୭୩. ଏବଂ ନିଜ ଧର୍ମର ଲୋକଙ୍କ ବ୍ୟତୀତ ଅନ୍ୟ କାହାରିକୁ ବିଶ୍ୱାସ କରନାହିଁ ।" (ହେ ବାର୍ତ୍ତାବହ !) ସେମାନଙ୍କୁ କୁହ, "ଅଲ୍ଲାହ୍ ଯେଉଁ ବାଟ ଦେଖାଇଛନ୍ତି, ତାହା ହିଁ ପ୍ରକୃତ ବାଟ । (ସେମାନେ ଏହା ମଧ୍ୟ କହୁଛନ୍ତି ଯେ) ଏହା ମଧ୍ୟ ମାନନାହିଁ ଯେ ତୁମମାନଙ୍କୁ ଯେପରି ମିଳିଛି ସେହିପରି ଅନ୍ୟ କାହାରିକୁ ମିଳିବ, ନହେଲେ ଏମାନେ ଈଶ୍ୱରଙ୍କ ପାଖରେ ତୁମମାନଙ୍କ ବିରୋଧରେ ଯୁକ୍ତି ବାଢ଼ିବେ । କହିଦିଅ ! "ଶ୍ରେଷ୍ଠତା ପ୍ରଦାନ କରିବା ତ ଅଲ୍ଲାହଙ୍କ ହାତରେ । ସେ ଯାହାକୁ ଚାହାନ୍ତି, ତାକୁ ଶେଷ୍ଠତା ପ୍ରଦାନ କରନ୍ତି । ଅଲ୍ଲାହ୍ ଅତ୍ୟନ୍ତ ଉଦାର ଏବଂ ସର୍ବଜ୍ଞ । ୭୪. ସେ ଯାହାକୁ ଇଚ୍ଛା କରନ୍ତି, ତାକୁ ନିଜର କରୁଣାର ପାତ୍ର କରିନିଅନ୍ତି । ଅଲ୍ଲାହ୍ ପରମ ଅନୁଗ୍ରହକାରୀ ।" ୭୫. ଗ୍ରନ୍ଥବିଶ୍ୱାସୀମାନଙ୍କ ମଧ୍ୟରେ ଏଭଳି ଲୋକ ଅଛନ୍ତି, ଯଦି ତୁମେ ସେମାନଙ୍କ ପାଖରେ ଭରସା କରି ଧନର

ଭଣ୍ଡାର ରଖିଦିଅ, ସେମାନେ ତାହା ନିଶ୍ଚୟ ଫେରାଇ ଦେବେ । ଆଉ କେତେକ ମଧ୍ୟ ଅଛନ୍ତି, ଯଦି ତୁମେ ଟଙ୍କାଟିଏ ମଧ୍ୟ ଭରସା କରି ସେମାନଙ୍କ ପାଖରେ ରଖ, ସେମାନଙ୍କ ପଛରେ ନଲାଗିବା ପର୍ଯ୍ୟନ୍ତ ସେମାନେ ତାହା ଫେରାଇବେ ନାହିଁ । ଏହାର କାରଣ ସ୍ୱରୂପ ସେମାନେ କହନ୍ତି ଯେ ଅଣଇହୁଦୀଙ୍କ (ଅଧିକାର) ବାବଦରେ ଆମ ଦୋଷ ଧରାଯିବ ନାହିଁ । ସେମାନେ ଅଲ୍ଲାହଙ୍କ ବିଷୟରେ ଜାଣିଶୁଣି ମିଛ କହୁଛନ୍ତି । ୭୬. ବାସ୍ତବରେ ଯିଏ ନିଜର ବଚନ ରକ୍ଷା କରେ ଏବଂ କୁକର୍ମରୁ ନିବୃତ୍ତ ରହେ, ଏଭଳି ସଦାଚାରୀ ଲୋକମାନଙ୍କୁ ଅଲ୍ଲାହ୍ ଭଲ ପାଆନ୍ତି ।

୭୭. ଯେଉଁମାନେ ଅଲ୍ଲାହଙ୍କ ସହ କରିଥିବା ଚୁକ୍ତିକୁ ଏବଂ ନିଜର ରାଣନିୟମକୁ ତୁଚ୍ଛ ମୂଲ୍ୟରେ ବିକିଦିଅନ୍ତି, ସେମାନଙ୍କର ପରଲୋକରେ କୌଣସି ଭାଗ ନାହିଁ । ବିଚାର ଦିନ ଅଲ୍ଲାହ୍ ସେମାନଙ୍କ ସହିତ କଥାବାର୍ତ୍ତା କରିବେନାହିଁ ବା ସେମାନଙ୍କ ଆଡ଼କୁ ଚାହିଁବେନାହିଁ କିମ୍ବା ସେମାନଙ୍କୁ ଶୁଦ୍ଧ କରିବେନାହିଁ । ସେମାନଙ୍କୁ କଠୋର ଶାସ୍ତି ମିଳିବ । ୭୮. ସେମାନଙ୍କ ମଧ୍ୟରେ କେତେକ ଅଛନ୍ତି, ଯେଉଁମାନେ (ତୌରାତ୍) ଗ୍ରନ୍ଥପାଠ କଲାବେଳେ ପାଟିକୁ ଏଭଳି ଓଲଟପାଲଟ କରନ୍ତି, ଯେମିତକି ତୁମର ମନେ ହେବ ଯେ ଏହା ଗ୍ରନ୍ଥରେ ଅଛି, ମାତ୍ର ପ୍ରକୃତରେ ଏହା ଗ୍ରନ୍ଥରେ ନଥାଏ ଏବଂ ସେମାନେ କହନ୍ତି ଯେ ଏହା ଈଶ୍ୱରବାଣୀ, ମାତ୍ର ତାହା ଈଶ୍ୱରବାଣୀ ନୁହେଁ । ସେମାନେ ଅଲ୍ଲାହଙ୍କ ବିଷୟରେ ମିଛ କହନ୍ତି ଏବଂ ଏକଥା ଜାଣନ୍ତି ମଧ୍ୟ ।

୭୯. ଯେଉଁ ମନୁଷ୍ୟକୁ ଅଲ୍ଲାହ୍ ଦିବ୍ୟଗ୍ରନ୍ଥ ଏବଂ ତତ୍ତ୍ୱଜ୍ଞାନ ପ୍ରଦାନ କରି ନିଜର ପ୍ରତିନିଧି ନିଯୁକ୍ତ କରନ୍ତି, ତା' ପକ୍ଷରେ ଏହା ସମ୍ଭବ ନୁହେଁ ଯେ ସେ ଲୋକମାନଙ୍କୁ କହିବ ଯେ ତୁମେମାନେ ଅଲ୍ଲାହଙ୍କୁ ଛାଡ଼ି ମୋ'ର ଭକ୍ତ ହୋଇଯାଅ, ବରଂ ସେ କହିବ ଯେ ତୁମେମାନେ ଈଶ୍ୱରଭକ୍ତ ହୋଇଯାଅ କାରଣ ତୁମେମାନେ ଗ୍ରନ୍ଥପାଠ କର ଏବଂ ଅନ୍ୟମାନଙ୍କୁ ଏହାର ଶିକ୍ଷା ମଧ୍ୟ ଦେଇଥାଅ ।" ୮୦. ସେ ଏହା ମଧ୍ୟ କହିବନାହିଁ ଯେ ତୁମେମାନେ ଦେବଦୂତମାନଙ୍କୁ ବା ଈଶ୍ୱରଦୂତମାନଙ୍କୁ ଈଶ୍ୱର ରୂପେ ଗ୍ରହଣ କରିନିଅ । ତୁମେମାନେ ମୁସଲିମ୍ (ଅର୍ଥାତ୍ ଈଶ୍ୱରଙ୍କ ଆଜ୍ଞାବହ) ହେଲାପରେ କ'ଣ ସେ ତୁମମାନଙ୍କୁ ନାସ୍ତିକ ହେବାକୁ କହିବ ?

୮୧. ଯେତେବେଳେ ଅଲ୍ଲାହ୍ ବାର୍ତ୍ତାବହମାନଙ୍କଠାରୁ ବଚନ ନେଇଥିଲେ – "ଯଦି ମୁଁ ତୁମମାନଙ୍କୁ ଗ୍ରନ୍ଥ ଏବଂ ତତ୍ତ୍ୱଜ୍ଞାନ ପ୍ରଦାନ କରେ ଏବଂ ତୁମମାନଙ୍କ ପାଖକୁ କୌଣସି ବାର୍ତ୍ତାବହ ଆସନ୍ତି ଯିଏ ତୁମ ପାଖରେ ଥିବା ଗ୍ରନ୍ଥର ସମର୍ଥନ କରନ୍ତି, ତେବେ ତୁମମାନଙ୍କୁ ତାଙ୍କୁ ମାନିବାକୁ ହେବ ଏବଂ ତାଙ୍କୁ ସାହାଯ୍ୟ କରିବାକୁ ହେବ ।" ଏବଂ ପଚାରିଥିଲେ "ମୁଁ ଯେଉଁ ଦାୟିତ୍ୱ ଦେଉଛି, କ'ଣ ତୁମେମାନେ ଏହା ଗ୍ରହଣ କରିବ ବୋଲି ସ୍ୱୀକାର କରୁଛ ?" ସେମାନେ ଉତ୍ତର ଦେଇଥିଲେ, "ଆମେ ସ୍ୱୀକାର କରୁଛୁ ।" ସେ କହଥିଲେ, "ତେବେ ତୁମେମାନେ (ପରସ୍ପରର) ସାକ୍ଷୀ ରୁହ, ମୁଁ ସ୍ୱୟଂ ମଧ୍ୟ ତୁମମାନଙ୍କ ସହିତ ଏହାର ସାକ୍ଷୀ ରହିଲି ।" ୮୨. ପୁଣି ଯେଉଁମାନେ ଏଥିରୁ ଓହରି ଯିବେ, ସେମାନେ ଅବଜ୍ଞାକାରୀ ।

୮୩. କ'ଣ ଏହି ନାସ୍ତିକମାନେ ଅଲ୍ଲାହଙ୍କ ଧର୍ମ ବ୍ୟତୀତ ଅନ୍ୟ କୌଣସି ଧର୍ମ ଚାହୁଁଛନ୍ତି, ଅଥଚ ପୃଥିବୀ ଓ ଆକାଶମଣ୍ଡଳରେ ଥିବା ପ୍ରତ୍ୟେକ ସୃଷ୍ଟି ଇଚ୍ଛାରେ ହେଉ ବା ଅନିଚ୍ଛାରେ ହେଉ, ତାଙ୍କରି ଆଜ୍ଞା ପାଳନ କରିଥାଏ ? ସମସ୍ତେ ତାଙ୍କରି ପାଖକୁ ଫେରିବେ । ୮୪. କହିଦିଅ, "ଆମେ ଅଲ୍ଲାହ୍‌ଙ୍କୁ ବିଶ୍ୱାସ କରୁ ଏବଂ ସେହି ଗ୍ରନ୍ଥକୁ ମଧ୍ୟ ବିଶ୍ୱାସ କରୁ ଯାହା ଆମମାନଙ୍କ ପାଖକୁ ପଠାଯାଇଛି ଏବଂ ଯାହା ଇବ୍ରାହିମ୍, ଇସମାଇଲ୍, ଇସହାକ୍, ୟାକୁବ୍ ଓ ତାଙ୍କ ସନ୍ତାନମାନଙ୍କ ପାଖକୁ ପଠା ଯାଇଥିଲା ଏବଂ ଯାହା ମୁ'ସା, ଈସା ଏବଂ ଅନ୍ୟ ବାର୍ତ୍ତାବହମାନଙ୍କୁ ସେମାନଙ୍କ ପ୍ରଭୁଙ୍କ ଦ୍ୱାରା ଦିଆ ଯାଇଥିଲା । ଆମେ ସେଗୁଡ଼ିକଙ୍କ ମଧ୍ୟରେ କୌଣସି ପ୍ରଭେଦ କରୁନାହୁଁ ଏବଂ ଆମେମାନେ ତାଙ୍କରି ଆଜ୍ଞାବହ ।" ୮୫. "ଯିଏ ଇସଲାମ ବ୍ୟତୀତ ଅନ୍ୟ କୌଣସି ଧର୍ମ ଗ୍ରହଣ କରିବାକୁ ଚାହିଁବ, ତାହା ତା'ଠାରୁ କଦାପି ସ୍ୱୀକାର କରାଯିବ ନାହିଁ ଏବଂ ସେ ପରଲୋକରେ କ୍ଷତିଗ୍ରସ୍ତ ହେବ ।"

୮୬. ଅଲ୍ଲାହ୍ ଏଭଳି ଲୋକମାନଙ୍କର କିପରି ବା ମାର୍ଗଦର୍ଶନ କରିବେ ଯେଉଁମାନେ ଆସ୍ଥା ରଖିବା ପରେ ନାସ୍ତିକ ହୋଇଗଲେ, ଅଥଚ ସେମାନେ ରସୁଲଙ୍କ ସତ୍ୟତା ସମ୍ବନ୍ଧରେ ସାକ୍ଷ୍ୟ ଦେଇ ସାରିଛନ୍ତି ଏବଂ ସେମାନଙ୍କୁ ଏହାର ସ୍ପଷ୍ଟ ପ୍ରମାଣ ମଧ୍ୟ ମିଳିସାରିଛି ? ଅଲ୍ଲାହ୍ ଅନ୍ୟାୟୀ ଲୋକମାନଙ୍କର ମାର୍ଗଦର୍ଶନ କରନ୍ତିନାହିଁ । ୮୭. ଏଭଳି ଲୋକମାନଙ୍କର ଶାସ୍ତି ହେଉଛି ଯେ ଏମାନେ ଅଲ୍ଲାହ୍, ଦେବଦୂତ

ଏବଂ ମନୁଷ୍ୟ – ସମସ୍ତଙ୍କ ଦ୍ୱାରା ଅଭିଶପ୍ତ ହେବେ । ୮୮. ସେମାନେ ଚିରଦିନ ଏହି ଅବସ୍ଥାରେ ରହିବେ । ସେମାନଙ୍କର ଶାସ୍ତି କୋହଳ କରାଯିବ ନାହିଁ କିମ୍ବା ସେମାନଙ୍କୁ ଟିକିଏ ବିରାମ ଦିଆଯିବ ନାହିଁ । ୮୯. ମାତ୍ର ଏହାପରେ ଯେଉଁମାନେ ଅନୁତାପ କରନ୍ତି ଏବଂ ନିଜକୁ ସଂଶୋଧନ କରିନିଅନ୍ତି, (ସେମାନେ ଜାଣି ରଖନ୍ତୁ ଯେ) ଅଲ୍ଲାହ୍ ଅବଶ୍ୟ କ୍ଷମାଶୀଳ ଓ କରୁଣାମୟ । ୯୦. ଯେଉଁମାନେ ବିଶ୍ୱାସ କରିସାରିବା ପରେ ନାସ୍ତିକ ହୋଇଗଲେ ଏବଂ ନାସ୍ତିକତା ପଥରେ ଆଗେଇ ଚାଲିଲେ, ସେମାନଙ୍କର ପଶ୍ଚାତାପ କଦାପି ସ୍ୱୀକାର କରାଯିବ ନାହିଁ । ସେମାନେ ପଥଭ୍ରଷ୍ଟ ହୋଇ ସାରିଛନ୍ତି । ୯୧. ଯେଉଁମାନେ (ଈଶ୍ୱର ଓ ଈଶ୍ୱରଦୂତଙ୍କୁ) ପ୍ରତ୍ୟାଖ୍ୟାନ କଲେ ଏବଂ ସେହି ଅବସ୍ଥାରେ ମରିଗଲେ, ଯଦି ସେମାନେ ନିଜ ମୁକ୍ତି ବଦଳରେ ପୃଥିବୀ ପରିମାଣର ସୁନା ମଧ୍ୟ ଦିଅନ୍ତି ତଥାପି ତାହା ସ୍ୱୀକାର କରାଯିବ ନାହିଁ । ସେମାନଙ୍କୁ କଠୋର ଶାସ୍ତି ମିଳିବ ଏବଂ ସେମାନଙ୍କୁ କେହି ସାହାଯ୍ୟ କରିବେନାହିଁ ।

୯୨. ଯେପର୍ଯ୍ୟନ୍ତ ତୁମେମାନେ ନିଜର ପ୍ରିୟ ବସ୍ତୁଗୁଡ଼ିକୁ (ଅଲ୍ଲାହଙ୍କ ମାର୍ଗରେ) ଖର୍ଚ୍ଚ ନକରିଛ, ତୁମେମାନେ କଦାପି ପୁଣ୍ୟ ଲାଭ କରିପାରିବ ନାହିଁ । ତୁମେମାନେ ଯାହା ଖର୍ଚ୍ଚ କରିବ, ଅଲ୍ଲାହ୍ ଜାଣନ୍ତି ।

୯୩. ତୌରାତ୍ ଗ୍ରନ୍ଥ ଆସିବା ପୂର୍ବରୁ ଇସ୍ରାଇଲ୍ (ଅର୍ଥାତ୍ ୟାକୁବ୍) ନିଜପାଇଁ ଯାହା ନିଷିଦ୍ଧ କରି ନେଇଥିଲେ ତାହା ବ୍ୟତୀତ ଅବଶିଷ୍ଟ ସବୁ ଖାଦ୍ୟ (ଯାହା ଏବେ ବୈଧ ଅଛି) ଇସ୍ରାଇଲଙ୍କ ବଂଶଧରମାନଙ୍କ ପାଇଁ ମଧ୍ୟ ବୈଧ ଥିଲା । (ହେ ବାର୍ତ୍ତାବହ!) ତୁମେ ସେମାନଙ୍କୁ କୁହ, "ଯଦି ତୁମେମାନେ ସତ୍ୟବାଦୀ, ତା'ହେଲେ ତୌରାତ୍ ଆଣି ପଢ଼ ।" ୯୪. ଏହାପରେ ମଧ୍ୟ ଯେଉଁମାନେ ଅଲ୍ଲାହଙ୍କ ପ୍ରତି ମିଥ୍ୟାରୋପ କରିବେ, ସେମାନେ ଭ୍ରଷ୍ଟାଚାରୀ । ୯୫. କହିଦିଅ, "ଅଲ୍ଲାହ୍ ସତ କହିଛନ୍ତି । ତେଣୁ, ତୁମେମାନେ ଇବ୍ରାହିମଙ୍କ ପନ୍ଥା ଅବଲମ୍ବନ କର ଯିଏ ବିଶୁଦ୍ଧ ଏକେଶ୍ୱରବାଦୀ ଥିଲେ, ମାତ୍ର ବହୁଈଶ୍ୱରବାଦୀ ନଥିଲେ ।"

୯୬. ବାସ୍ତବରେ ମନୁଷ୍ୟମାନଙ୍କର (ଉପାସନା) ପାଇଁ ଯେଉଁ ଗୃହଟି ସର୍ବପ୍ରଥମେ ନିର୍ମାଣ କରା ଯାଇଥିଲା, ତାହା ମକ୍କାରେ ଅବସ୍ଥିତ । ଏହା ସାରା ବିଶ୍ୱ

ପାଇଁ ମଙ୍ଗଳଦାୟକ ଏବଂ ମାର୍ଗଦର୍ଶନର ଉତ୍ସ । ୯୭. ଏଥିରେ ଅନେକ ସ୍ପଷ୍ଟ ସଙ୍କେତ ଅଛି, ତନ୍ମଧ୍ୟରୁ ଇବ୍ରାହିମଙ୍କ ଛିଡ଼ା ହେବାର ସ୍ଥାନ ଅନ୍ୟତମ । ଯିଏ ଏଥିରେ ପ୍ରବେଶ କରେ, ସେ ଭୟମୁକ୍ତ ହୋଇଯାଏ । ଏହା ମନୁଷ୍ୟମାନଙ୍କ ଉପରେ ଅଲ୍ଲାହଙ୍କର ଅଧିକାର ଯେ ଯେଉଁମାନେ ଏଠାକୁ ଯାତ୍ରା କରିବା ପାଇଁ ସକ୍ଷମ, ସେମାନେ ନିଶ୍ଚିତ ରୂପେ ଏହି ଗୃହର ହଜ୍ କରିବାକୁ ଯାଆନ୍ତୁ । ଯଦି କେହି ନମାନିବ, ତେବେ (ସେ ଜାଣି ରଖୁ ଯେ) ଅଲ୍ଲାହ୍‌ଙ୍କୁ ବିଶ୍ୱବାସୀଙ୍କର ଆବଶ୍ୟକତା ନାହିଁ । ୯୮. କୁହ, "ହେ ଗ୍ରନ୍ଥବିଶ୍ୱାସୀମାନେ ! କାହିଁକି ଅଲ୍ଲାହଙ୍କ ବାଣୀକୁ ମାନୁନାହଁ ? ତୁମେମାନେ ଯାହା କରୁଛ, ଅଲ୍ଲାହ୍ ଦେଖୁଛନ୍ତି ।" ୯୯. କୁହ, "ହେ ଗ୍ରନ୍ଥବିଶ୍ୱାସୀମାନେ ! କାହିଁକି ମୁସଲମାନମାନଙ୍କୁ ଅଲ୍ଲାହଙ୍କ ମାର୍ଗରେ ବାଧା ଦେଉଛ ଏବଂ ସେଥିରେ ଦୋଷ ଖୋଜୁଛ, ଅଥଚ ତୁମେମାନେ ନିଜେ ଏହାର ସାକ୍ଷୀ ରହିଛ । ଅଲ୍ଲାହ୍ ତୁମମାନଙ୍କର କାର୍ଯ୍ୟକଳାପ ବିଷୟରେ ଅନଭିଜ୍ଞ ନୁହନ୍ତି ।"

୧୦୦. ହେ ସଦ୍‌ବିଶ୍ୱାସୀଗଣ ! ଯଦି ତୁମେମାନେ ଗ୍ରନ୍ଥବିଶ୍ୱାସୀମାନଙ୍କର କୌଣସି ଗୋଷ୍ଠୀ କଥାରେ ପଡ଼ିବ, ତେବେ ତୁମମାନଙ୍କର ଆସ୍ଥା ଥିବା ସତ୍ତ୍ୱେ ସେମାନେ ତୁମମାନଙ୍କୁ ନାସ୍ତିକ କରିଦେବେ । ୧୦୧. ତୁମେମାନେ କିପରି ଅବିଶ୍ୱାସ କରିପାରୁଛ ଅଥଚ ତୁମମାନଙ୍କ ପାଖରେ ଅଲ୍ଲାହଙ୍କର ବାଣୀ ପାଠ କରାଯାଉଛି ଏବଂ ତୁମମାନଙ୍କ ମଧ୍ୟରେ ତାଙ୍କର ରସୁଲ ମଧ୍ୟ ଉପସ୍ଥିତ ଅଛନ୍ତି ? ଯିଏ ଅଲ୍ଲାହଙ୍କର ଦୃଢ଼ ଆଶ୍ରୟ ନେବ, ସେ ଅବଶ୍ୟ ସତପଥ ପାଇବ । ୧୦୨. ହେ ସଦ୍‌ବିଶ୍ୱାସୀଗଣ ! ଅଲ୍ଲାହଙ୍କୁ ଏମିତି ଭୟକର ଯେମିତି ତାଙ୍କୁ ଭୟ କରିବା ଉଚିତ ଏବଂ ମୁସଲିମ୍ ଥିବା ଅବସ୍ଥାରେ ପ୍ରାଣତ୍ୟାଗ କର । ୧୦୩. ଏବଂ ସମସ୍ତେ ମିଶି ଅଲ୍ଲାହଙ୍କ ଦଉଡ଼ିକୁ ଦୃଢ଼ତାର ସହ ଧରିଥାଅ ଏବଂ ଭାଗଭାଗ ହୋଇଯାଅ ନାହିଁ । ତୁମମାନଙ୍କ ପ୍ରତି ଅଲ୍ଲାହ୍ କରିଥିବା ଉପକାରଗୁଡ଼ିକୁ ମନେପକାଅ ଯେ ଯେତେବେଳେ ତୁମେମାନେ ପରସ୍ପରର ଶତ୍ରୁ ଥିଲ ଆଉ ସେ ତୁମମାନଙ୍କ ହୃଦୟକୁ (ପରସ୍ପର ସହିତ) ଯୋଡ଼ିଦେଲେ, ପୁଣି ତାଙ୍କରି କୃପାରୁ ତୁମେମାନେ ଭାଇଭାଇ ହୋଇଗଲ । ତୁମେମାନେ ନର୍କକୁଣ୍ଡର ଦାଢ଼ରେ ଛିଡ଼ା ହୋଇଥିଲ ଏବଂ ସେ ତୁମମାନଙ୍କୁ ସେଥିରୁ ରକ୍ଷା କଲେ । ଏହିପରି ଅଲ୍ଲାହ୍ ତାଙ୍କ କଥାଗୁଡ଼ିକୁ ପରିଷ୍କାର ଭାବରେ ବର୍ଣ୍ଣନା କରୁଛନ୍ତି ଯେପରିକି ତୁମେମାନେ ସତପଥ ପାଇବ ।

୧୦୪. ତୁମମାନଙ୍କ ମଧ୍ୟରୁ କିଛି ଲୋକ ଅବଶ୍ୟ ରହିବା ଉଚିତ, ଯେଉଁମାନେ ଲୋକମାନଙ୍କୁ ଭଲ ବାଟକୁ ଡାକିବେ, ଭଲ କର୍ମ କରିବାକୁ କରିବାକୁ କହିବେ ଏବଂ ମନ୍ଦ କର୍ମ କରିବାରୁ ବାରଣ କରିବେ । ଏହି ଲୋକମାନେ ସଫଳ ହେବେ । ୧୦୫. ସେହି ଲୋକମାନଙ୍କ ପରି ହୁଅନାହିଁ ଯେଉଁମାନଙ୍କୁ ସ୍ପଷ୍ଟ ପ୍ରମାଣ ମିଳିବା ପରେ ମଧ୍ୟ ସେମାନେ ଭାଗଭାଗ ହୋଇଗଲେ ଏବଂ ପରସ୍ପର ମଧ୍ୟରେ ମତଭେଦ କଲେ । ସେମାନଙ୍କୁ କଠୋର ଶାସ୍ତି ମିଳିବ । ୧୦୬. ସେଦିନ ଅନେକଙ୍କର ମୁହଁ ଉଜ୍ଜ୍ୱଳ ଦିଶୁଥିବ ଏବଂ ଅନେକଙ୍କ ମୁହଁ ମଳିନ ପଡ଼ି ଯାଇଥିବ । ଯେଉଁମାନଙ୍କର ମୁହଁ ମଳିନ ପଡ଼ି ଯାଇଥିବ ସେମାନଙ୍କୁ କୁହାଯିବ "କ'ଣ ତୁମେମାନେ ବିଶ୍ୱାସ କଲାପରେ ପୁଣି ନାସ୍ତିକ ହୋଇ ଯାଇ ନଥିଲ ? ଏବେ ନାସ୍ତିକ ହେବାର ମଜା ଚାଖ ।" ୧୦୭. ଯେଉଁମାନଙ୍କ ମୁହଁ ଉଜ୍ଜ୍ୱଳ ଦିଶୁଥିବ, ସେମାନେ ଅଲ୍ଲାହ୍‌ଙ୍କ କରୁଣାର ଛାୟାରେ ରହିବେ ଏବଂ ସେଥିରେ ଚିରଦିନ ରହିବେ । ୧୦୮. ଏହା ଅଲ୍ଲାହ୍‌ଙ୍କର ବାଣୀ ଯାହାକୁ ଆମ୍ଭେ ତୁମକୁ ସଠିକ୍ ଭାବରେ ପଢ଼ି ଶୁଣାଉଛୁ । ଅଲ୍ଲାହ୍ ମାନବଜାତି ପ୍ରତି ଅନ୍ୟାୟ କରିବାକୁ ଚାହାନ୍ତି ନାହିଁ । ୧୦୯. ପୃଥିବୀ ଓ ଆକାଶରେ ଯାହା ଅଛି, ସବୁ ଅଲ୍ଲାହ୍‌ଙ୍କର ଏବଂ ପ୍ରତ୍ୟେକ ବିଷୟ (ନିଷ୍ପତ୍ତି ପାଇଁ) ଅଲ୍ଲାହ୍‌ଙ୍କ ନିକଟରେ ଉପସ୍ଥାପିତ କରାଯିବ ।

୧୧୦. (ହେ ସଦ୍‌ବିଶ୍ୱାସୀମାନେ!) ତୁମେମାନେ ସର୍ବୋତ୍ତମ ସମାଜ ଯାହାକୁ ମାନବଜାତିର କଲ୍ୟାଣ ପାଇଁ ସୃଷ୍ଟି କରାଯାଇଛି । ତୁମେମାନେ ଲୋକଙ୍କୁ ଭଲକର୍ମ କରିବାକୁ କୁହ ଏବଂ ମନ୍ଦ କର୍ମ କରିବାକୁ ବାରଣ କର ଏବଂ ଅଲ୍ଲାହ୍‌ଙ୍କୁ ବିଶ୍ୱାସ କର । ଯଦି ଗ୍ରନ୍ଥବିଶ୍ୱାସୀମାନେ ମଧ୍ୟ ବିଶ୍ୱାସ କରିନିଅନ୍ତେ ତେବେ ସେମାନଙ୍କ ପାଇଁ ଭାରି ଭଲ ହୁଅନ୍ତା । ସେମାନଙ୍କ ମଧ୍ୟରେ କେତେକ ସଦ୍‌ବିଶ୍ୱାସୀ ଅଛନ୍ତି କିନ୍ତୁ ଅଧିକାଂଶ ଭ୍ରଷ୍ଟାଚାରୀ । ୧୧୧. ସାମାନ୍ୟ କଷ୍ଟ ଦେବା ବ୍ୟତୀତ ସେମାନେ ତୁମମାନଙ୍କର ଅଧିକ କିଛି କ୍ଷତି କରିପାରିବେ ନାହିଁ ଏବଂ ଯଦି ତୁମମାନଙ୍କ ସହିତ ଲଢ଼ନ୍ତି ତେବେ ପୃଷ୍ଠଭଂଗ ଦେଇ ପଳାୟନ କରିବେ ଏବଂ ସେମାନଙ୍କୁ କାହାରି ସାହାଯ୍ୟ ମଧ୍ୟ ମିଳିବ ନାହିଁ । ୧୧୨. ସେମାନେ ଯୁଆଡ଼େ ଯିବେ ଲାଂଛିତ ହେବେ । ହଁ, ଯଦି ଅଲ୍ଲାହ୍‌ଙ୍କର କିମ୍ବା ଲୋକମାନଙ୍କର ଶରଣ ମିଳିଲା, ତେବେ ଭିନ୍ନ କଥା । ସେମାନେ ଅଲ୍ଲାହ୍‌ଙ୍କର କୋପଭାଜନ ହେଲେ ଏବଂ ସେମାନଙ୍କ ଉପରେ ଅଭାବଅନାଟନ ଲଦି ଦିଆଗଲା କାରଣ ସେମାନେ ଅଲ୍ଲାହ୍‌ଙ୍କ

ବାଣୀକୁ ଅସ୍ୱୀକାର କଲେ ଏବଂ ଈଶ୍ୱରଦୂତମାନଙ୍କୁ ଅନ୍ୟାୟରେ ହତ୍ୟା କଲେ । ଏହା ସେମାନଙ୍କର ଅବାଧ ହେବାର ଏବଂ ସୀମା ଲଂଘନ କରିବାର ପରିଣାମ ।

୧୧୩. ଏମାନେ ସମସ୍ତେ ସମାନ ନୁହନ୍ତି । ଗ୍ରନ୍ଥବିଶ୍ୱାସୀମାନଙ୍କ ମଧ୍ୟରେ କେତେକ ଲୋକ ଏବେ ମଧ୍ୟ ଠିକ୍ ବାଟରେ ଅଛନ୍ତି । ସେମାନେ ରାତି ବେଳେ ଅଲ୍ଲାହଙ୍କ ବାଣୀ ପାଠ କରନ୍ତି ଏବଂ ତାଙ୍କୁ ପ୍ରଣାମ କରନ୍ତି । ୧୧୪. ଏମାନେ ଅଲ୍ଲାହଙ୍କୁ ଏବଂ ପୁନର୍ଜୀବନ ଦିନକୁ ବିଶ୍ୱାସ କରନ୍ତି, ଲୋକମାନଙ୍କୁ ଭଲ କର୍ମ କରିବାକୁ କହନ୍ତି, ମନ୍ଦ କର୍ମ କରିବାରୁ ବାରଣ କରନ୍ତି ଏବଂ ପୁଣ୍ୟକାର୍ଯ୍ୟ କରିବାରେ ସବୁବେଳେ ଆଗଭର ଥାଆନ୍ତି । ଏହିମାନେ ପୁଣ୍ୟବାନ । ୧୧୫. ଏମାନେ ଯାହା ପୁଣ୍ୟ କରିବେ, ତାହାର ଅନାଦର କରାଯିବ ନାହିଁ । ଅଲ୍ଲାହ୍ ସଦାଚାରୀମାନଙ୍କୁ ଭଲରୂପେ ଜାଣନ୍ତି । ୧୧୬. ଯେଉଁମାନେ ଅବିଶ୍ୱାସ କଲେ, ସେମାନଙ୍କ ଧନସମ୍ପତ୍ତି ବା ସନ୍ତାନସନ୍ତତି ଅଲ୍ଲାହଙ୍କ ପାଖରେ ସେମାନଙ୍କର କୌଣସି କାମରେ ଆସିବନାହିଁ । ସେମାନେ ନର୍କବାସୀ ହେବେ ଏବଂ ସେଠାରେ ସର୍ବଦା ରହିବେ । ୧୧୭. ସେମାନେ ସଂସାରରେ ଯାହା ଧନ ଖର୍ଚ୍ଚ କରନ୍ତି, ତାହା ଏହିପରି (ବୃଥା ହୋଇଯାଏ) ଯେପରି ତୁଷାରଝଡ଼ ଦ୍ୱାରା ଦୁରାଚାରୀମାନଙ୍କ କ୍ଷେତର ଫସଲ ନଷ୍ଟ ହୋଇଯାଏ । ଅଲ୍ଲାହ୍ ସେମାନଙ୍କ ପ୍ରତି ଅନ୍ୟାୟ କରନ୍ତିନାହିଁ ବରଂ ସେମାନେ ନିଜେ ନିଜ ପ୍ରତି ଅନ୍ୟାୟ କରନ୍ତି ।

୧୧୮. ହେ ସଦ୍‌ବିଶ୍ୱାସୀମାନେ! ନିଜ ଲୋକଙ୍କ ବ୍ୟତୀତ ବାହାର ଲୋକଙ୍କ ସହିତ ଘନିଷ୍ଠତା କରନାହିଁ । ସେମାନେ ତୁମମାନଙ୍କର ଅନିଷ୍ଟ କରିବାରେ ଆଦୌ ହେଳା କରନ୍ତିନାହିଁ । ସେମାନେ ଚାହାନ୍ତି ଯେ ତୁମମାନେ କଷ୍ଟ ଭୋଗ । ସେମାନଙ୍କର ଶତ୍ରୁତା ସେମାନଙ୍କ କଥାରୁ ଜଣା ପଡ଼ିଯାଏ ଏବଂ ଯାହା ସେମାନଙ୍କ ମନ ଭିତରେ ଲୁଚି ରହିଛି, ତାହା ଆହୁରି ମାରାତ୍ମକ । ତୁମମାନଙ୍କ ବୁଝିବାପାଇଁ ଆମ୍ଭେ କଥାକୁ ପରିଷ୍କାର ଭାବରେ ବର୍ଣ୍ଣନା କରିଦେଲୁ । ୧୧୯. ଦେଖ, ତୁମେମାନେ ଏଭଳି (ସରଳ ଲୋକ ଯେ) ସେମାନଙ୍କୁ ଭଲପାଅ କିନ୍ତୁ ସେମାନେ ତୁମମାନଙ୍କୁ ଭଲ ପଆନ୍ତିନାହିଁ । ତୁମେମାନେ ତ ସବୁ ଦିବ୍ୟଗ୍ରନ୍ଥକୁ ବିଶ୍ୱାସ କର (କିନ୍ତୁ ସେମାନେ ତୁମ ଗ୍ରନ୍ଥକୁ ବିଶ୍ୱାସ କରନ୍ତିନାହିଁ) । ତୁମମାନଙ୍କ ସହିତ ଦେଖା

ହେଲେ କହନ୍ତି ଯେ ଆମେ (କୁରଆନକୁ) ବିଶ୍ୱାସ କରୁଛୁ କିନ୍ତୁ ତୁମମାନଙ୍କ ପାଖରୁ ଗଲାପରେ ରାଗରେ ରାମ୍ପିବିଦାରି ହୁଅନ୍ତି । ସେମାନଙ୍କୁ କୁହ, "ତୁମେମାନେ କ୍ରୋଧରେ ମରିଯାଅ । ଅଲ୍ଲାହ୍ ତୁମମାନଙ୍କ ମନର କଥା ଭଲଭାବରେ ଜାଣନ୍ତି ।" ୧୨୦. ତୁମମାନଙ୍କର କିଛି ଭଲ ହେଲେ ସେମାନଙ୍କୁ ଭାରି କଷ୍ଟ ହୁଏ କିନ୍ତୁ ତୁମମାନେ କଷ୍ଟ ପାଇଲେ ସେମାନେ ଖୁସି ହୁଅନ୍ତି । ଯଦି ତୁମେମାନେ ଧୈର୍ଯ୍ୟ ଅବଲମ୍ବନ କର ଏବଂ (ଅଲ୍ଲାହଙ୍କୁ) ଭୟ କରୁଥାଅ, ତେବେ ସେମାନଙ୍କ ଚକ୍ରାନ୍ତ ଦ୍ୱାରା ତୁମମାନଙ୍କର କିଛି କ୍ଷତି ହେବନାହିଁ । ଅଲ୍ଲାହ୍ ସେମାନଙ୍କର ସମସ୍ତ କାର୍ଯ୍ୟକଳାପକୁ ଘେରି ରହିଛନ୍ତି ।

୧୨୧. (ଉହଦ୍ ଯୁଦ୍ଧ କଥା ମନେ ପକାଅ) ଯେତେବେଳେ ତୁମେ ସକାଳୁ ନିଜ ଘରୁ ବାହାରି ରଣଭୂମୀରେ ମୁସଲମାନମାନଙ୍କୁ ଯୁଦ୍ଧ ପାଇଁ ମୁତୟନ କରୁଥିଲ । ଅଲ୍ଲାହ୍ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି । ୧୨୨. ସେତେବେଳେ ତୁମମାନଙ୍କ ମଧ୍ୟରୁ ଦୁଇଟି ଗୋଷ୍ଠୀ ପଛଘୁଂଚା ଦେବାକୁ ମନସ୍ଥ କରି ସାରିଥିଲେ, ଅଥଚ ଅଲ୍ଲାହ୍ ସେମାନଙ୍କର ରକ୍ଷକ ଥିଲେ । ସଦ୍‌ବିଶ୍ୱାସୀମାନେ ଅଲ୍ଲାହଙ୍କ ଉପରେ ଭରସା ରଖିବା ଉଚିତ । ୧୨୩. ବଦର୍ ଯୁଦ୍ଧରେ ମଧ୍ୟ ଯେତେବେଳେ ତୁମେମାନେ ଅତି ଦୁର୍ବଳ ଥିଲ, ଅଲ୍ଲାହ୍ ତୁମମାନଙ୍କୁ ସାହାଯ୍ୟ କରିଥିଲେ । ତେଣୁ, ଅଲ୍ଲାହଙ୍କୁ ଭୟ କରୁଥାଅ, ଯେପରିକି ତୁମେମାନେ (ତାଙ୍କ ପ୍ରତି) କୃତଜ୍ଞ ରହିବ । ୧୨୪. (ହେ ବାର୍ତ୍ତାବହ ! ସ୍ମରଣ କର) ଯେତେବେଳେ ତୁମେ ସଦ୍‌ବିଶ୍ୱାସୀମାନଙ୍କୁ ଆଶ୍ୱାସନା ଦେଉଥିଲ, "କ'ଣ ତୁମ ପ୍ରଭୁ ତିନି ହଜାର ଦେବଦୂତଙ୍କୁ ତୁମମାନଙ୍କର ସହାୟତା ପାଇଁ ପଠାଇବା ତୁମମାନଙ୍କ ପାଇଁ ଯଥେଷ୍ଟ ହେବନାହିଁ ?" ୧୨୫. "ନିଶ୍ଚୟ । ଯଦି ତୁମେମାନେ ଧୈର୍ଯ୍ୟ ଅବଲମ୍ବନ କରିବ ଏବଂ ଅଲ୍ଲାହଙ୍କ ପ୍ରତି ଭୟ ରଖିବ, ତେବେ ଶତ୍ରୁ ତୁମମାନଙ୍କ ଉପରେ ଅତର୍କିତ ଭାବରେ ଆକ୍ରମଣ କଲେ ତୁମ ପ୍ରଭୁ ପାଂଚ ହଜାର ପଦକଧାରୀ ଦେବଦୂତଙ୍କୁ ପଠାଇ ତୁମମାନଙ୍କର ସହାୟତା କରିବେ ।" ୧୨୬. ଅଲ୍ଲାହ୍ ଏହା ଏଇଥିପାଇଁ କଲେ ଯେ ତୁମେମାନେ ଖୁସି ହେବ ଏବଂ ତୁମମାନଙ୍କ ମନକୁ ଶାନ୍ତି ମିଳିବ, ଅନ୍ୟଥା ବିଜୟ ତ କେବଳ ଅଲ୍ଲାହଙ୍କ ହାତରେ ଥାଏ ଯିଏ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ । ୧୨୭. ନାସ୍ତିକମାନଙ୍କର ଗୋଟିଏ

ଗୋଷ୍ଠୀର ମୂଳୋତ୍ପାଟନ କରିବା କିମ୍ବା ସେମାନଙ୍କୁ ଲାଂଛିତ କରିବା ଏହାର ଉଦ୍ଦେଶ୍ୟ ଥିଲା, ଯେପରିକି ସେମାନେ ନିରାଶ ହୋଇ ଫେରିଯିବେ।

୧୨୮. (ହେ ବାର୍ତ୍ତାବହ!) ଅଲ୍ଲାହ୍ ସେମାନଙ୍କ ପଶ୍ଚାତାପ ସ୍ୱୀକାର କରନ୍ତୁ ବା ସେମାନଙ୍କୁ ଶାସ୍ତି ଦିଅନ୍ତୁ, ତୁମର ଏଥିରେ କିଛି କରିବାର ନାହିଁ କାରଣ ସେମାନେ ଭ୍ରଷ୍ଟାଚାରୀ। ୧୨୯. ଯାହାକିଛି ପୃଥିବୀ ଓ ଆକାଶମଣ୍ଡଳରେ ଅଛି ସବୁ ଅଲ୍ଲାହଙ୍କର। ସେ ଯାହାକୁ ଚାହାନ୍ତି କ୍ଷମା କରିଦିଅନ୍ତି ଏବଂ ଯାହାକୁ ଚାହାନ୍ତି ଶାସ୍ତି ଦିଅନ୍ତି। ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଏବଂ କରୁଣାମୟ।

୧୩୦. ହେ ସଦ୍‌ବିଶ୍ୱାସୀମାନେ! ବହୁଗୁଣିତ କରି ସୁଧ ନିଅନାହିଁ ଏବଂ ଅଲ୍ଲାହଙ୍କୁ ଭୟ କରୁଥାଅ। ତା'ହେଲେ ତୁମମାନେ ସଫଳ ହେବ। ୧୩୧. ନର୍କର ସେହି ନିଆଁକୁ ଭୟ କର ଯାହା ନାସ୍ତିକମାନଙ୍କ ପାଇଁ ପ୍ରସ୍ତୁତ ରଖାଯାଇଛି। ୧୩୨. ଅଲ୍ଲାହଙ୍କର ଓ ତାଙ୍କ ରସୁଲଙ୍କର ଆଜ୍ଞା ପାଳନ କର, ତା'ହେଲେ ତୁମମାନଙ୍କ ପ୍ରତି କରୁଣା ହେବ। ୧୩୩. ନିଜ ପ୍ରଭୁଙ୍କର କ୍ଷମା ସହିତ ସେହି ବୈକୁଣ୍ଠ ଲାଭ କରିବାପାଇଁ ତତ୍ପର ହୋଇଉଠ ଯାହା ପୃଥିବୀ ଓ ଆକାଶମଣ୍ଡଳ ପରି ବିଶାଳ। ଏହା ସଦାଚାରୀ ଲୋକମାନଙ୍କ ପାଇଁ ପ୍ରସ୍ତୁତ ରଖାଯାଇଛି। ୧୩୪. ଯେଉଁମାନେ ସ୍ୱଚ୍ଛଳ ଅବସ୍ଥାରେ ଏବଂ ଅଭାବ ଅନାଟନରେ (ଅଲ୍ଲାହଙ୍କ ମାର୍ଗରେ) ଧନ ଖର୍ଚ୍ଚ କରନ୍ତି, କ୍ରୋଧ ସମ୍ୱରଣ କରନ୍ତି ଏବଂ ଲୋକମାନଙ୍କର ଦୋଷ କ୍ଷମା କରିଦିଅନ୍ତି, ଏଭଳି ପରୋପକାରୀମାନଙ୍କୁ ଅଲ୍ଲାହ୍ ପ୍ରେମ କରନ୍ତି। ୧୩୫. ଯଦି ଏମାନେ କୌଣସି ଅଶ୍ଳୀଳ କର୍ମ କରନ୍ତି ବା କୌଣସି ପାପ କରିବସନ୍ତି, ତେବେ ଧ୍ୟାନମଗ୍ନ ହୋଇ ଅଲ୍ଲାହଙ୍କଠାରୁ କ୍ଷମାପ୍ରାର୍ଥନା କରନ୍ତି। ଅଲ୍ଲାହଙ୍କ ବ୍ୟତୀତ ଆଉ କିଏ ଦୋଷ କ୍ଷମା କରିପାରିବ? ସେମାନେ ଜାଣିଶୁଣି ନିଜ କୁକର୍ମରେ ଅଡ଼ିବସନ୍ତି ନାହିଁ। ୧୩୬. ଏହି ଲୋକମାନଙ୍କୁ ଏମାନଙ୍କ କର୍ମର ଫଳ ସ୍ୱରୂପ ପ୍ରଭୁଙ୍କର କ୍ଷମା ପ୍ରାପ୍ତ ହେବ ଏବଂ ସ୍ୱର୍ଗର ଉଦ୍ୟାନ ଯାହା ତଳେ ଝରଣା ବହୁଥିବ। ସେମାନେ ସେଠାରେ ସର୍ବଦା ରହିବେ। ଭଲ କର୍ମ କରୁଥିବା ଲୋକମାନଙ୍କ ପାଇଁ ଖୁବ୍ ସୁନ୍ଦର ପୁରସ୍କାର। ୧୩୭. ତୁମମାନଙ୍କ ପୂର୍ବରୁ ମଧ୍ୟ ଏଭଳି ଅନେକ ଘଟଣା ଘଟି ସାରିଛି। ଧରାପୃଷ୍ଠରେ ବୁଲାବୁଲି କରି ଦେଖ ଯେ (ଈଶ୍ୱରଦୂତମାନଙ୍କୁ) ପ୍ରତ୍ୟାଖ୍ୟାନ କରିଥିବା

ଲୋକମାନେ କଭଳି ପରିଣାମ ଭୋଗିଲେ । ୧୩୮. ଏହା (ଅର୍ଥାତ୍ କୁରଆନ୍) ମାନବଜାତି ପାଇଁ ଏକ ସନ୍ଦେଶ ଯାହା ଉଚିତ ମାର୍ଗଦର୍ଶନ କରେ ଏବଂ ଏଥିରେ ଈଶ୍ୱରଙ୍କୁ ଭୟ କରୁଥିବା ଲୋକମାନଙ୍କ ପାଇଁ ଉପଦେଶ ରହିଛି ।

୧୩୯. ମନ କଷ୍ଟ କରନାହିଁ ବା ଦୁଃଖ କରନାହିଁ । ଯଦି ତୁମେମାନେ ପ୍ରକୃତରେ ସଦ୍‌ବିଶ୍ୱାସୀ ହୋଇଥାଅ, ତେବେ ତୁମେମାନେ ହିଁ ବିଜୟୀ ହେବ । ୧୪୦. ଯଦି ତୁମମାନଙ୍କୁ ଆଘାତ ଲାଗିଛି, ତେବେ ବିପକ୍ଷ ଦଳକୁ ମଧ୍ୟ ସେହିପରି ଆଘାତ ଲାଗିସାରିଛି । ଆମ୍ଭେ ଲୋକମାନଙ୍କ ପାଇଁ ସମୟଚକ୍ରରେ ପରିବର୍ତ୍ତନ କରିଥାଉ । (ଏହି ପରାଜୟର) ଉଦ୍ଦେଶ୍ୟ ଥିଲା ଯେ ଅଲ୍ଲାହ୍ ସଦ୍‌ବିଶ୍ୱାସୀମାନଙ୍କର ପରୀକ୍ଷା ନେବେ ଏବଂ ତୁମମାନଙ୍କ ମଧ୍ୟରୁ କେତେକଙ୍କୁ ଶହୀଦ୍ ହେବାର (ଅର୍ଥାତ୍ ବୀରଗତିକୁ ପ୍ରାପ୍ତ ହେବାର) ସୁଯୋଗ ଦେବେ । ଅଲ୍ଲାହ୍ ଅନ୍ୟାୟୀମାନଙ୍କୁ ଭଲ ପାଆନ୍ତିନାହିଁ । ୧୪୧. ଆଉ ଏହା ମଧ୍ୟ (ଉଦ୍ଦେଶ୍ୟ ଥିଲା) ଯେ ଅଲ୍ଲାହ୍ ସଦ୍‌ବିଶ୍ୱାସୀମାନଙ୍କୁ ଶୁଦ୍ଧ କରିବେ ଏବଂ ଅସଦବିଶ୍ୱାସୀମାନଙ୍କୁ ନିର୍ମୂଳ କରିବେ । ୧୪୨. କ'ଣ ତୁମେମାନେ ଭାବିଛ ଯେ ସହଜରେ ସ୍ୱର୍ଗକୁ ଚାଲିଯିବ ଅଥଚ ଅଲ୍ଲାହ୍ ଏପର୍ଯ୍ୟନ୍ତ ତୁମମାନଙ୍କର ପରୀକ୍ଷା ନେଇନାହାନ୍ତି ଯେ ତୁମମାନଙ୍କ ମଧ୍ୟରୁ କେଉଁମାନେ (ତାଙ୍କ ମାର୍ଗରେ) ଯୁଦ୍ଧ କରୁଛନ୍ତି ଏବଂ ଧୈର୍ଯ୍ୟ ଅବଲମ୍ବନ କରୁଛନ୍ତି ? ୧୪୩. ଯୁଦ୍ଧ ପୂର୍ବରୁ ତ ତୁମେମାନେ ଶହୀଦ୍ ହେବାର କାମନା କରୁଥିଲ । ଏବେ ତ ତୁମେମାନେ ନିଜ ଆଖିରେ ଏହା ଦେଖିନେଲ ।

୧୪୪. ମୁହମ୍ମଦ୍ କେବଳ ଜଣେ ବାର୍ତ୍ତାବହ । ତାଙ୍କ ପୂର୍ବରୁ ମଧ୍ୟ ଅନେକ ବାର୍ତ୍ତାବହଙ୍କର ଆବିର୍ଭାବ ହୋଇସାରିଛି । ତା'ହେଲେ ଯଦି ସେ ମୃତ୍ୟୁ ବରଣ କରନ୍ତି କିମ୍ବା (ଯୁଦ୍ଧରେ) ନିହତ ହୁଅନ୍ତି, କ'ଣ ତୁମେମାନେ (ଇସ୍‌ଲାମରୁ) ଫେରିଯିବ ? ଯିଏ (ଇସ୍‌ଲାମରୁ) ଫେରିଯିବ, ସେ ଅଲ୍ଲାହଙ୍କର କୌଣସି କ୍ଷତି କରିବନାହିଁ । ଅଲ୍ଲାହ୍ କୃତଜ୍ଞ ଭକ୍ତମାନଙ୍କୁ ନିଶ୍ଚୟ ପୁରସ୍କୃତ କରିବେ । ୧୪୫. ଅଲ୍ଲାହଙ୍କ ଆଜ୍ଞା ବିନା କୌଣସି ଜୀବର ମୃତ୍ୟୁ ସମ୍ଭବ ନୁହେଁ ଯେଉଁଥିପାଇଁ ଏକ ନିଶ୍ଚିତ ସମୟ ଲେଖା ହୋଇ ରହିଛି । ଯିଏ ସଂସାରରେ ନିଜ କର୍ମର ଫଳ ଚାହେଁ ଆମ୍ଭେ ତାକୁ ଏହା ଦେଇଦେବୁ ଏବଂ ଯିଏ ପରଲୋକରେ ଚାହେଁ, ଆମ୍ଭେ ତାକୁ ପରଲୋକରେ

ଦେବୁ । ଆମ୍ଭେ କୃତଜ୍ଞ ଲୋକମାନଙ୍କୁ ସେମାନଙ୍କର ପୁରସ୍କାର ନିଶ୍ଚୟ ଦେବୁ । ୧୪୬. ପୂର୍ବରୁ ଅନେକ ଈଶ୍ୱରଦୂତ ଯାଇ ସାରିଛନ୍ତି ଯେଉଁମାନଙ୍କ ସହିତ ମିଶି ବହୁ ଈଶ୍ୱରଭକ୍ତ ଯୁଦ୍ଧ କରିଛନ୍ତି । ଅଲ୍ଲାହଙ୍କ ମାର୍ଗରେ ସେମାନଙ୍କ ଉପରେ ଯାହା ବିପଦ ପଡ଼ିଥିଲା, ସେଥିରେ ସେମାନେ କେବେ ହତୋତ୍ସାହ ହୋଇନାହାନ୍ତି, ଦୁର୍ବଳତା ପ୍ରକାଶ କରିନାହାନ୍ତି କିମ୍ବା ପଛଘୁଂଚା ଦେଇନାହାନ୍ତି । ଅଲ୍ଲାହ୍ ସହିଷ୍ଣୁ ବ୍ୟକ୍ତିମାନଙ୍କୁ ଖୁବ୍ ଭଲ ପାଆନ୍ତି । ୧୪୭. ସେମାନେ କେବଳ ଏହାହିଁ ପ୍ରାର୍ଥନା କରୁଥିଲେ, “ହେ ପ୍ରଭୁ ! ଆମମାନଙ୍କ ଦୋଷତ୍ରୁଟି ମାର୍ଜନା କର, ଆମ କର୍ତ୍ତବ୍ୟରେ ଯାହା ଅବହେଳା ହୋଇଛି, ତାହା କ୍ଷମାକର ଏବଂ ଆମକୁ ଆମ ଲକ୍ଷ୍ୟରେ ଅଟଳ ରଖ ଏବଂ ନାସ୍ତିକମାନଙ୍କ ବିରୁଦ୍ଧରେ ଆମକୁ ସାହାଯ୍ୟ କର ।” ୧୪୮. ସୁତରାଂ ଅଲ୍ଲାହ୍ ସେମାନଙ୍କୁ ଇହଲୋକରେ ପୁରସ୍କାର ଦେଲେ ଏବଂ ପରଲୋକରେ ମଧ୍ୟ ଖୁବ୍ ଭଲ ପୁରସ୍କାର ଦେବେ । ଅଲ୍ଲାହ୍ ପୁଣ୍ୟବାନ ଲୋକମାନଙ୍କୁ ପ୍ରେମ କରନ୍ତି ।

୧୪୯. ହେ ସଦ୍‌ବିଶ୍ୱାସୀମାନେ ! ଯଦି ତୁମେ ନାସ୍ତିକମାନଙ୍କ କଥା ମାନିବ ତେବେ ସେମାନେ ତୁମମାନଙ୍କୁ ଧର୍ମଚ୍ୟୁତ କରିଦେବେ ଯାହାଫଳରେ ତୁମେମାନେ କ୍ଷତିଗ୍ରସ୍ତ ହେବ । ୧୫୦. ବରଂ ଅଲ୍ଲାହ୍ ତୁମମାନଙ୍କର ଆଶ୍ରୟଦାତା ଏବଂ ସେ ସର୍ବୋତ୍ତମ ସାହାଯ୍ୟକାରୀ । ୧୫୧. ଆମ୍ଭେ ଅତି ନିକଟରେ ନାସ୍ତିକମାନଙ୍କ ମନରେ ଭୟ ସଂଚାର କରିବୁ କାରଣ ସେମାନେ ଅଲ୍ଲାହଙ୍କର ଈଶ୍ୱରତ୍ୱରେ (ଅନ୍ୟମାନଙ୍କୁ) ଅଂଶୀଦାର କଲେ ଯାହା ବିଷୟରେ ଆମ୍ଭେ କୌଣସି ପ୍ରମାଣ ପଠାଇନାହୁଁ । ନର୍କ ସେମାନଙ୍କର ନିବାସ ହେବ ଏବଂ ନାସ୍ତିକମାନଙ୍କ ପାଇଁ ଏହା ଏକ କଦର୍ଯ୍ୟ ସ୍ଥାନ ।

୧୫୨. ଅଲ୍ଲାହ୍ (ସେତେବେଳେ) ତାଙ୍କର ପ୍ରତିଶ୍ରୁତି ପୁରଣ କରିଥିଲେ ଯେତେବେଳେ ତୁମେମାନେ ତାଙ୍କ ଆଜ୍ଞାରୁ ଶତ୍ରୁମାନଙ୍କୁ ହତ୍ୟା କରୁଥିଲ । ଯେତେବେଳେ ଅଲ୍ଲାହ୍ ତୁମମାନଙ୍କୁ ତୁମର ପ୍ରିୟ ବସ୍ତୁ (ଅର୍ଥାତ୍ ବିଜୟଲବ୍ଧ ଧନ) ଦେଖାଇଦେଲେ, ତୁମେମାନେ ଢ଼ିଲା ପଡ଼ିଗଲ ଏବଂ ଈଶ୍ୱରଦୂତଙ୍କ ଆଦେଶ ବିଷୟରେ (ନିଜନିଜ ମଧ୍ୟରେ) ଯୁକ୍ତିତର୍କ କଲ ଏବଂ ତାଙ୍କ ଆଜ୍ଞା ଉଲ୍ଲଂଘନ କରିବସିଲ । ତୁମମାନଙ୍କ ମଧ୍ୟରୁ କେତେଜଣ ପାର୍ଥିବ ବସ୍ତୁ ପାଇଁ ଲାଳାୟିତ ଥିଲେ ଏବଂ ଆଉ କେତେଜଣ ପରଲୋକର ଅଭିଳାଷୀ ଥିଲେ । ପୁଣି ଅଲ୍ଲାହ୍ ତୁମମାନଙ୍କୁ

ପରୀକ୍ଷା କରିବା ପାଇଁ ଶତ୍ରୁମାନଙ୍କଠାରୁ ତୁମମାନଙ୍କୁ ହଟାଇ ଦେଇଥିଲେ । ସେ ତୁମମାନଙ୍କୁ ଅବଶ୍ୟ କ୍ଷମା କରି ଦେଇଛନ୍ତି । ସଦ୍‌ବିଶ୍ୱାସୀମାନଙ୍କ ଉପରେ ସର୍ବଦା ଅଲ୍ଲାହ୍‌ଙ୍କର କୃପା ଥାଏ । ୧୫୩. (ମନେ ପକାଅ) ଯେତେବେଳେ ତୁମେମାନେ ପଳାଇ ଯାଉଥିଲ ଆଉ ପଛକୁ ଫେରି କାହାରିକୁ ଚାହୁଁ ନଥିଲ ଏବଂ ରସୁଲ୍ ତୁମମାନଙ୍କୁ ପଛରୁ ଡାକୁଥିଲେ । ଅଲ୍ଲାହ୍ ତୁମମାନଙ୍କୁ ଦୁଃଖ ପରେ ଦୁଃଖ ଦେଲେ ଯେପରିକି କିଛି ହରାଇଲେ ବା କୌଣସି ବିପଦ ପଡ଼ିଲେ ତୁମେମାନେ ଦୁଃଖ କରିବନାହିଁ । ତୁମେମାନେ ଯାହା କର ଅଲ୍ଲାହ୍ ସବୁ ଜାଣନ୍ତି । ୧୫୪. ପୁଣି ଏହି ଦୁଃଖ ପରେ ଅଲ୍ଲାହ୍ ତୁମମାନଙ୍କ ମନକୁ ଶାନ୍ତି ଦେଲେ । ତୁମମାନଙ୍କ ମଧ୍ୟରୁ କେତେକ ଲୋକଙ୍କୁ ତନ୍ଦ୍ରା ମାଡ଼ି ଆସିଥିଲା ଏବଂ ଆଉ କେତେକଙ୍କୁ ପ୍ରାଣର ଚିନ୍ତା ଘାରିଥିଲା । ଏମାନେ ଅଲ୍ଲାହ୍‌ଙ୍କ ସଂପର୍କରେ ଅବାସ୍ତବ ଓ ମୁର୍ଖତାପୂର୍ଣ୍ଣ କଳ୍ପନାଜଳ୍ପନା କରୁଥିଲେ । ସେମାନେ କହୁଥିଲେ, "କ'ଣ କୌଣସି ବିଷୟରେ ଆମର ଅଧିକାର ଅଛି ?" ତୁମେ କୁହ, "ଅଧିକାର କେବଳ ଅଲ୍ଲାହ୍‌ଙ୍କର ଅଛି ।" ଏମାନେ ମନରେ ଏଭଳି କଥା ଲୁଚାଇ ରଖିଛନ୍ତି ଯାହା ତୁମ ପାଖରେ ପ୍ରକାଶ କରୁନାହାନ୍ତି । ସେମାନେ କହୁଛନ୍ତି, "ଯଦି ଏ ବିଷୟରେ ଆମର କିଛି କର୍ତ୍ତୃତ୍ୱ ଥାଆନ୍ତା ତେବେ ଆମେ ଏଠାରେ ମରନ୍ତୁନାହିଁ" । କହିଦିଅ, "ତୁମେମାନେ ନିଜ ଘରେ ରହିଥିଲେ ମଧ ଯେଉଁମାନଙ୍କ ଭାଗ୍ୟରେ ନିହତ ହେବାର ଲେଖା ଥିଲା, ସେମାନେ ନିଜର ବଧଭୂମି ଅଭିମୁଖେ ନିଶ୍ଚୟ ବାହାରି ଆସିଥାଆନ୍ତେ ।" ଏହାର ଉଦ୍ଦେଶ୍ୟ ଥିଲା ଯେ ଅଲ୍ଲାହ୍ ତୁମମାନଙ୍କ ମନରେ ଥିବା କଥାକୁ ପରୀକ୍ଷା କରିବେ ଏବଂ ତୁମମାନଙ୍କର ମନକୁ ନିର୍ମଳ କରିବେ । ଅଲ୍ଲାହ୍ ଅନ୍ତର କଥା ଭଲ ଭାବରେ ଜାଣନ୍ତି । ୧୫୫. ତୁମମାନଙ୍କ ମଧ୍ୟରୁ ଯେଉଁମାନେ ସେଦିନ (ଉହଦ୍ ଯୁଦ୍ଧରେ) ପୃଷ୍ଠଭଂଗ ଦେଇଥିଲେ, ଯେଉଁଦିନ ଦୁଇ ଗୋଷ୍ଠୀ ପରସ୍ପରର ସମ୍ମୁଖୀନ ହୋଇଥିଲେ, ସେଦିନ ସେମାନଙ୍କର କେତେକ କର୍ମ ଯୋଗୁଁ ଶଇତାନ ସେମାନଙ୍କ ପାଦ ଖସାଇ ଦେଇଥିଲା । ଅବଶ୍ୟ ଅଲ୍ଲାହ୍ ସେମାନଙ୍କୁ କ୍ଷମା କରି ଦେଇଛନ୍ତି । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ ସହନଶୀଳ ।

୧୫୬. ହେ ସଦ୍‌ବିଶ୍ୱାସୀଗଣ ! ସେହି ନାସ୍ତିକମାନଙ୍କ ପରି ହୁଅନାହିଁ ଯେଉଁମାନେ ଯୁଦ୍ଧଯାତ୍ରାରେ ବାହାରିଥିବା ବା ଯୁଦ୍ଧରେ ଭାଗ ନେଉଥିବା ସେମାନଙ୍କ

ଭାଇମାନଙ୍କ ବିଷୟରେ କହିଲେ ଯେ ଯଦି ସେମାନେ ଆମ ପାଖରେ ରହି ଥାଆନ୍ତେ, ତା' ହେଲେ ମରି ନଥାଆନ୍ତେ ବା ନିହତ ହୋଇ ନଥାଆନ୍ତେ । ଏଭଳି କଥା ଦ୍ୱାରା ଅଲ୍ଲାହ୍ ସେମାନଙ୍କ ମନରେ ହତାଶା ସୃଷ୍ଟି କରିଦିଅନ୍ତି, ଅନ୍ୟଥା ଅଲ୍ଲାହହିଁ ଜୀବିତ ରଖନ୍ତି ଏବଂ ମୃତ୍ୟୁ ଦିଅନ୍ତି । ତୁମେମାନେ ଯାହା କରୁଛ ଅଲ୍ଲାହ୍ ଦେଖୁଛନ୍ତି । ୧୫୭. ଯଦି ତୁମେମାନେ ଅଲ୍ଲାହଙ୍କ ମାର୍ଗରେ ନିହତ ହୁଅ ବା ମୃତ୍ୟୁ ବରଣ କର, ତେବେ (ଅଲ୍ଲାହଙ୍କର) ଯେଉଁ କ୍ଷମା ଓ ଅନୁଗ୍ରହ ଲାଭ କରିବ, ତାହା ସେଗୁଡ଼ିକଠାରୁ ଢ଼େର ଭଲ ଯାହା ସେମାନେ ସାଇତି ରଖୁଛନ୍ତି । ୧୫୮. ତୁମେମାନେ (ସ୍ୱଭାବିକ ଭାବରେ) ମୃତ୍ୟୁ ବରଣ କର ବା (ଯୁଦ୍ଧରେ) ନିହତ ହୁଅ, ଅଲ୍ଲାହଙ୍କ ପାଖରେ (ପୁନର୍ଜୀବନ ପାଇ) ନିଶ୍ଚୟ ଉପସ୍ଥିତ ହେବ ।

୧୫୯. (ହେ ବାର୍ତ୍ତାବହ!) ଏହା ଅଲ୍ଲାହଙ୍କର ଅପାର କରୁଣା ଯେ ତୁମେ ସେମାନଙ୍କ ସହିତ ନମ୍ର ବ୍ୟବହାର କରୁଛ । ଯଦି ତୁମେ କଟୁଭାଷୀ ବା କଠୋରମନା ହୋଇଥାଆନ୍ତ, ତେବେ ସେମାନେ ତୁମକୁ ଛାଡ଼ି ପଳାଇ ଯାଆନ୍ତେ । ସେମାନଙ୍କୁ କ୍ଷମା କର ଏବଂ ସେମାନଙ୍କ ପାଇଁ ପ୍ରାର୍ଥନା କର ଏବଂ ନିଜ କାର୍ଯ୍ୟରେ ସେମାନଙ୍କ ସହିତ ବିଚାରବିମର୍ଶ କରୁଥାଅ । ଯଦି ତୁମେ କୌଣସି ବିଷୟରେ ସଂକଳ୍ପ କର ତେବେ ଅଲ୍ଲାହଙ୍କ ଉପରେ ଭରସା ରଖ । ତାଙ୍କ ଉପରେ ଭରସା ରଖୁଥିବା ଲୋକମାନଙ୍କୁ ଅଲ୍ଲାହ୍ ଅବଶ୍ୟ ଭଲ ପାଆନ୍ତି । ୧୬୦. ଯଦି ଅଲ୍ଲାହ୍ ତୁମମାନଙ୍କୁ ସାହାଯ୍ୟ କରନ୍ତି ତେବେ କେହି ତୁମକୁ ପରାଜିତ କରି ନପାରେ ଏବଂ ଯଦି ସେ (ସାହାଯ୍ୟ ନକରି) ଛାଡ଼ିଦିଅନ୍ତି ତେବେ ତାଙ୍କ ଛଡ଼ା ଆଉ କିଏ ଅଛି ଯେ ତୁମମାନଙ୍କୁ ସାହାଯ୍ୟ କରିବ? ବିଶ୍ୱାସ ରଖିଥିବା ଲୋକମାନେ ଅଲ୍ଲାହଙ୍କ ଉପରେ ଭରସା ରଖିବା ଉଚିତ ।

୧୬୧. ଜଣେ ଈଶ୍ୱରଦୂତଙ୍କ ପକ୍ଷରେ (ବିଜୟଲବ୍ଧ ଧନ) ଆତ୍ମସାତ୍ କରିବା ଆଦୌ ସମ୍ଭବପର ନୁହେଁ । ଆତ୍ମସାତ୍ କରୁଥିବା ବ୍ୟକ୍ତି ବିଚାର ଦିନ ଆତ୍ମସାତ କରିଥିବା ବସ୍ତୁ ସହିତ ଉପସ୍ଥିତ ହେବ । ପୁଣି ପ୍ରତ୍ୟେକ ବ୍ୟକ୍ତିକୁ ତା ଅର୍ଜିତ କର୍ମର ସଂପୂର୍ଣ୍ଣ ଫଳ ମିଳିବ ଏବଂ କାହାରି ପ୍ରତି ଅନ୍ୟାୟ ହେବନାହିଁ । ୧୬୨. ଯିଏ ଅଲ୍ଲାହଙ୍କର ପ୍ରସନ୍ନତା ଚାହେଁ, ସେ କ'ଣ ଏଭଳି ବ୍ୟକ୍ତି ପରି

ହୋଇପାରେ ଯିଏ ଅଲ୍ଲାହଙ୍କ ଆକ୍ରୋଶର ଶିକାର ହୁଏ ଏବଂ ଯିଏ ନର୍କକୁ ଯିବ ? ନର୍କ ଏକ କଦର୍ଯ୍ୟ ସ୍ଥାନ । ୧୬୩. ଅଲ୍ଲାହଙ୍କ ପାଖରେ (ସେମାନଙ୍କ ପାଇଁ) ପୃଥକପୃଥକ ଶ୍ରେଣୀ ଅଛି । ସେମାନେ ଯାହା କରୁଛନ୍ତି ଅଲ୍ଲାହ୍ ସବୁ ଦେଖୁଛନ୍ତି । ୧୬୪. ବାସ୍ତବରେ ସଦ୍‌ବିଶ୍ୱାସୀମାନଙ୍କ ପ୍ରତି ଅଲ୍ଲାହ୍ ଅନୁଗ୍ରହ କଲେ ଯେ ସେ ସେମାନଙ୍କ ପାଇଁ ସେହିମାନଙ୍କ ଭିତରୁ ଜଣେ ରସୁଲ୍ ନିଯୁକ୍ତ କଲେ ଯିଏ ସେମାନଙ୍କୁ ତାଙ୍କର ବାଣୀ ପାଠକରି ଶୁଣାନ୍ତି, ସେମାନଙ୍କର ଚିତ୍ତଶୁଦ୍ଧି କରନ୍ତି ଏବଂ ସେମାନଙ୍କୁ ଗ୍ରନ୍ଥ ଓ ତତ୍ତ୍ୱର ଶିକ୍ଷା ଦିଅନ୍ତି ଅଥଚ ଏହା ପୂର୍ବରୁ ସେମାନେ ସମ୍ପୂର୍ଣ୍ଣ ବିଭ୍ରାନ୍ତ ଥିଲେ ।

୧୬୫. (ଉହଦ୍ ଯୁଦ୍ଧ ଦିନ) ଯେତେବେଳେ ତୁମମାନଙ୍କ ଉପରେ ବିପଦ ଆସିଲା, ତୁମେମାନେ କହିଲ ଯେ ଏହି ବିପଦ କୁଆଡୁ ଆସିଲା, ଅଥଚ (ବଦର ଯୁଦ୍ଧରେ) ତୁମେମାନେ ସେମାନଙ୍କୁ ଏହାର ଦୁଇଗୁଣ ବିପଦରେ ପକାଇ ସାରିଛ । (ହେ ବାର୍ତ୍ତାବହ !) ସେମାନଙ୍କୁ କହିଦିଅ, "ଏହି ବିପଦ ତୁମମାନଙ୍କର ନିଜ ଅର୍ଜିତ କର୍ମ ଯୋଗୁଁ ଆସିଲା ।" ଅଲ୍ଲାହ୍ ସବୁକିଛି କରିବାକୁ ସକ୍ଷମ । ୧୬୬. ଯେଉଁଦିନ ଦୁଇ ଗୋଷ୍ଠୀ ପରସ୍ପର ମୁହାଁମୁହିଁ ହୋଇଥିଲେ, ସେଦିନ ତୁମମାନଙ୍କ ଉପରେ ଯେଉଁ ବିପଦ ଆସିଥିଲା ତାହା ଅଲ୍ଲାହଙ୍କ ଆଜ୍ଞାରୁ ଆସିଥିଲା ଏବଂ ସେ ସଦ୍‌ବିଶ୍ୱାସୀମାନଙ୍କୁ ପରୀକ୍ଷା କରି ଦେଖିବାକୁ ଚାହୁଁଥିଲେ । ୧୬୭. ସେ କପଟୀମାନଙ୍କୁ ମଧ୍ୟ ପରୀକ୍ଷା କରିବାକୁ ଚାହୁଁଥିଲେ, ଯେଉଁମାନଙ୍କୁ କୁହା ଯାଇଥିଲା ଯେ ଆସ, ଅଲ୍ଲାହଙ୍କ ମାର୍ଗରେ ଯୁଦ୍ଧ କର ଏବଂ (ଶତ୍ରୁ ଆକ୍ରମଣକୁ) ପ୍ରତିରୋଧ କର । ସେମାନେ ଉତ୍ତର ଦେଇଥିଲେ, "ଯଦି ପ୍ରକୃତରେ ଯୁଦ୍ଧ ହେବ ବୋଲି ଆମେ ଜାଣି ଥାଆନ୍ତୁ ତା' ହେଲେ ତୁମମାନଙ୍କ ସହିତ ନିଶ୍ଚୟ ଯାଇଥାଆନ୍ତୁ ।" ସେଦିନ ସେମାନେ ଆସ୍ଥା ଅପେକ୍ଷା ଅନାସ୍ଥାର ଅଧିକ ନିକଟବର୍ତ୍ତୀ ଥିଲେ । ସେମାନେ ମୁହଁରେ ଯାହା କହନ୍ତି ତାହା ସେମାନଙ୍କ ଅନ୍ତରରେ ନଥାଏ ଏବଂ ଯାହା ସେମାନେ ଲୁଚାଇ ରଖନ୍ତି, ଅଲ୍ଲାହ୍ ଭଲ ରୂପେ ଜାଣନ୍ତି । ୧୬୮. ସେମାନେ ନିଜେ ତ ବସି ରହିଲେ ଏବଂ ନିଜର (ଶହୀଦ୍ ହୋଇଥିବା) ଭାଇମାନଙ୍କ ବିଷୟରେ ମଧ୍ୟ କହିଲେ, "ଯଦି ସେମାନେ ଆମ କଥା ମାନି ନେଇ ଥାଆନ୍ତେ, ତା'ହେଲେ ପ୍ରାଣ ହରାଇ ନଥାଆନ୍ତେ ।" ସେମାନଙ୍କୁ କୁହ, "ଯଦି ତୁମେମାନେ ସତ କହୁଛ, ତା'ହେଲେ ନିଜର ମୃତ୍ୟୁକୁ ଅଟକାଇ ଦିଅ ।"

୧୬୯. ଯେଉଁମାନେ ଅଲ୍ଲାହଙ୍କ ମାର୍ଗରେ ଶହୀଦ୍ ହେଲେ (ଅର୍ଥାତ୍ ବୀରଗତିକୁ ପ୍ରାପ୍ତ ହେଲେ), ସେମାନଙ୍କୁ ମୃତ ମନେକର ନାହିଁ। ସେମାନେ ସେମାନଙ୍କ ପ୍ରଭୁଙ୍କ ପାଖରେ ଜୀବିତ ଅଛନ୍ତି ଏବଂ ସେମାନଙ୍କୁ ଆହାର ଦିଆଯାଉଛି। ୧୭୦. ଅଲ୍ଲାହ୍ ତାଙ୍କ କୃପାରୁ ସେମାନଙ୍କୁ ଯାହା ଦେଇଛନ୍ତି, ସେମାନେ ସେଥିରେ ଖୁସି ଅଛନ୍ତି ଏବଂ ଯେଉଁମାନେ ସେମାନଙ୍କ ପଛରେ ଅଛନ୍ତି ଏବଂ ଏପର୍ଯ୍ୟନ୍ତ (ଶହୀଦ ହୋଇ) ଏମାନଙ୍କ ସହିତ ଆସି ମିଶିନାହାନ୍ତି, ସେମାନଙ୍କ ପାଇଁ ମଧ୍ୟ ଖୁସି ହେଉଛନ୍ତି ଯେ ସେମାନଙ୍କ ପାଇଁ କୌଣସି ଭୟ ନାହିଁ କିମ୍ବା ସେମାନେ ମଧ୍ୟ ଦୁଃଖ ଭୋଗିବେନାହିଁ। ୧୭୧. ସେମାନେ ଅଲ୍ଲାହଙ୍କ ଅନୁଗ୍ରହ ଓ କରୁଣା ଲାଭକରି ଖୁସି ଅଛନ୍ତି ଏବଂ ଏଥିପାଇଁ ମଧ୍ୟ ଖୁସି ଅଛନ୍ତି ଯେ ଅଲ୍ଲାହ୍ ସଦ୍‌ବିଶ୍ୱାସୀମାନଙ୍କର ଶ୍ରମ ବ୍ୟର୍ଥ କରନ୍ତିନାହିଁ।

୧୭୨. ଯେଉଁମାନେ (ଉହଦ୍ ଯୁଦ୍ଧରେ) ଆହତ ହେବା ସତ୍ତ୍ୱେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କର ଆଜ୍ଞା ପାଳନ କଲେ, ଏଭଳି ପୁଣ୍ୟବାନ ଓ ସଦାଚାରୀ ଲୋକମାନଙ୍କ ପାଇଁ ସୁନ୍ଦର ପୁରସ୍କାର ଅଛି। ୧୭୩. ଯେଉଁମାନଙ୍କୁ ଲୋକେ କହିଥିଲେ ଯେ ତୁମମାନଙ୍କ ବିରୁଦ୍ଧରେ ଶତ୍ରୁପକ୍ଷ ବିଶାଳ ସେନା ପ୍ରସ୍ତୁତ କରିଛି, ତେଣୁ ସେମାନଙ୍କୁ ଭୟ କର। ମାତ୍ର ଏହି ଖବର ସେମାନଙ୍କ ଆସ୍ଥାକୁ ଅଧିକ ଦୃଢ଼ କରିଥିଲା ଏବଂ ସେମାନେ କହିଥିଲେ "ଆମମାନଙ୍କ ପାଇଁ ଅଲ୍ଲାହ୍ ହିଁ ଯଥେଷ୍ଟ ଏବଂ ସେ (ଖୁବ୍ ଭଲ) କାର୍ଯ୍ୟସିଦ୍ଧି କରନ୍ତି।" ୧୭୪. ପୁଣି ସେମାନେ ଅଲ୍ଲାହଙ୍କର ଅନୁଗ୍ରହ ଓ କରୁଣା ଲାଭକରି ଫେରିଲେ ଏବଂ ସେମାନଙ୍କର କିଛି କ୍ଷତି ହେଲାନାହିଁ। ସେମାନେ ଅଲ୍ଲାହଙ୍କ ଇଚ୍ଛା ଅନୁଯାୟୀ କର୍ମ କଲେ। ଅଲ୍ଲାହ୍ ପରମ ଅନୁଗ୍ରହଶୀଳ। ୧୭୫. ସେ ଜଣେ ଶଇତାନ ଯିଏ ତା' ବନ୍ଧୁମାନଙ୍କ ମାଧ୍ୟମରେ ତୁମମାନଙ୍କ ମନରେ ଭୟ ସୃଷ୍ଟି କରେ। ତୁମେମାନେ ସେମାନଙ୍କୁ ଭୟ କରନାହିଁ। ଯଦି ତୁମେମାନେ ପ୍ରକୃତରେ ସଦ୍‌ବିଶ୍ୱାସୀ, ତେବେ କେବଳ ମୋତେ ଭୟ କର।

୧୭୬. (ହେ ବାର୍ତ୍ତାବହ!) ଯେଉଁମାନେ ସତ୍ୟର ବିରୋଧ କରିବା ପାଇଁ ସଦା ତତ୍ପର ଥାଆନ୍ତି, ସେମାନଙ୍କ ଯୋଗୁଁ ତୁମେ ଦୁଃଖ କରନାହିଁ। ସେମାନେ ଅଲ୍ଲାହଙ୍କର କିଛି କ୍ଷତି କରିପାରିବେ ନାହିଁ। ଅଲ୍ଲାହ୍ ଚାହାନ୍ତି ଯେ ସେମାନଙ୍କୁ ପରଲୋକରେ କୌଣସି ଭାଗ ନମିଳୁ । ସେମାନେ କଠୋର ଶାସ୍ତି ଭୋଗିବେ।

୧୭୭. ଯେଉଁମାନେ ଆସ୍ତିକତା ବଦଳରେ ନାସ୍ତିକତାର ସଉଦା କଲେ, ସେମାନେ ଅଲ୍ଲାହ୍ଙ୍କର କିଛି କ୍ଷତି କରିପାରିବେ ନାହିଁ । ସେମାନେ କଠୋର ଶାସ୍ତି ଭୋଗିବେ । ୧୭୮. ଆମ୍ଭେ ସେମାନଙ୍କୁ କୋହଳ ଛାଡ଼ି ଦେଇଛୁ ବୋଲି ନାସ୍ତିକମାନେ ଏହାକୁ ନିଜ ପକ୍ଷରେ ଭଲ ବୋଲି ଭାବନ୍ତୁନାହିଁ । ଆମ୍ଭେ ସେମାନଙ୍କୁ କେବଳ ଏଇଥିପାଇଁ ସମୟ ଦେଉଛୁ ଯେ ସେମାନେ ଆହୁରି ପାପ କରନ୍ତୁ । ସେମାନଙ୍କ ପାଇଁ ଅପମାନଜନକ ଶାସ୍ତି ପ୍ରସ୍ତୁତ ରହିଛି । ୧୭୯. ଅଲ୍ଲାହ୍ ଯେପର୍ଯ୍ୟନ୍ତ ଶୁଦ୍ଧ ଓ ଅଶୁଦ୍ଧକୁ ପୃଥକ ନକରିଛନ୍ତି, ସେ ସଦ୍‌ବିଶ୍ୱାସୀମାନଙ୍କୁ ସେମାନଙ୍କର ବର୍ତ୍ତମାନ ଅବସ୍ଥାରେ ରହିବାକୁ ଦେବେନାହିଁ ଏବଂ ଅଲ୍ଲାହ୍ ଏହା ମଧ୍ୟ କରିବେନାହିଁ ଯେ ତୁମମାନଙ୍କୁ ଅଦୃଷ୍ଟର ଖବର ଦେଇଦେବେ, ବରଂ ଏଥିପାଇଁ ଅଲ୍ଲାହ୍ ନିଜ ରସୁଲମାନଙ୍କ ମଧ୍ୟରୁ ଯାହାକୁ ଚାହାନ୍ତି ବାଛିନିଅନ୍ତି । ତେଣୁ ତୁମେମାନେ ଅଲ୍ଲାହ୍ ଏବଂ ତାଙ୍କର ରସୁଲମାନଙ୍କୁ ମାନିନିଅ । ଯଦି ତୁମେମାନେ ମାନିବ ଏବଂ କୁକର୍ମରୁ ନିବୃତ୍ତ ରହିବ, ତା'ହେଲେ ତୁମମାନଙ୍କୁ ଖୁବ୍ ଭଲ ପୁରସ୍କାର ମିଳିବ ।

୧୮୦. ଯେଉଁମାନଙ୍କୁ ଅଲ୍ଲାହ୍ ନିଜ କୃପାରୁ ଧନ ଦେଇଛନ୍ତି ମାତ୍ର ସେମାନେ କୃପଣତା କରୁଛନ୍ତି, ସେମାନେ ଏହାକୁ ନିଜ ପକ୍ଷରେ ଭଲ ବୋଲି ଭାବନ୍ତୁନାହିଁ ବରଂ ଏହା ସେମାନଙ୍କ ପାଇଁ ଭାରି ଅନିଷ୍ଟକର । ଯେଉଁ ଧନ ପାଇଁ ସେମାନେ କୃପଣତା କରୁଛନ୍ତି, ବିଚାର ଦିନ ଏହା ସେମାନଙ୍କ ବେକର ଯୁଆଳି ହେବ । ପୃଥିବୀ ଓ ଆକାଶମଣ୍ଡଳର ଅଲ୍ଲାହ୍ ହିଁ ମାଲିକ । ତୁମେମାନେ ଯାହା କରୁଛ ଅଲ୍ଲାହ୍ ତାହାର ଖବର ରଖୁଛନ୍ତି ।

୧୮୧. ଯେଉଁମାନେ କହିଲେ ଯେ ଅଲ୍ଲାହ୍ ଗରିବ ଏବଂ ଆମେ ଧନୀ, ଅଲ୍ଲାହ୍ ସେମାନଙ୍କ କଥା ଶୁଣିଲେ । ସେମାନଙ୍କର ଏହି କଥାକୁ ଆମ୍ଭେ (ସେମାନଙ୍କ କର୍ମ ପଂଜିକାରେ) ଲେଖି ରଖୁଛୁ ଏବଂ ସେମାନେ ବାର୍ତ୍ତାବହମାନଙ୍କୁ ଯେଉଳି ଅନ୍ୟାୟରେ ହତ୍ୟା କରିଛନ୍ତି, ସେକଥାକୁ ମଧ୍ୟ । (ବିଚାର ଦିନ) ଆମ୍ଭେ ସେମାନଙ୍କୁ କହିବୁ ଯେ ଜଳନ୍ତା ନିଆଁର ମଜା ଚାଖ । ୧୮୨. ଏହା ତୁମେମାନେ ଅର୍ଜନ କରିଥିବା କର୍ମର ଫଳ, ଅନ୍ୟଥା ଅଲ୍ଲାହ୍ ନିଜ ଭକ୍ତମାନଙ୍କ ପ୍ରତି ଅନ୍ୟାୟ କରନ୍ତିନାହିଁ ।

୧୮୩. ଯେଉଁମାନେ କହନ୍ତି ଯେ ଅଲ୍ଲାହ୍ ଆମମାନଙ୍କୁ ଆଜ୍ଞା ଦେଇଛନ୍ତି ଯେ ଆମେ କୌଣସି ବାର୍ତ୍ତାବହଙ୍କୁ ସେପର୍ଯ୍ୟନ୍ତ ସ୍ୱୀକାର କରିବୁନାହିଁ ଯେପର୍ଯ୍ୟନ୍ତ ସେ ଆମପାଇଁ ଏଭଳି ବଳି ଉତ୍ସର୍ଗ ନକରନ୍ତି ଯାହାକୁ (ଆକାଶରୁ) ନିଆଁ ଆସି ଗ୍ରାସ କରିନିଏ। ସେମାନଙ୍କୁ ପଚାର, "(ଆଚ୍ଛା) ମୋ' ପୂର୍ବରୁ ଯେଉଁ ବାର୍ତ୍ତାବହମାନେ ତୁମମାନଙ୍କ ପାଖକୁ ସ୍ପଷ୍ଟ ପ୍ରମାଣ ନେଇ ଯାଇଥିଲେ ଏବଂ ତୁମେ ଯେଉଁ ଚମତ୍କାର କଥା ଏବେ କହୁଛ ତାହା ମଧ୍ୟ ଦେଖାଇଥିଲେ, ତେବେ ପୁଣି କାହିଁକି ସେମାନଙ୍କୁ ହତ୍ୟା କରୁଥିଲ ? ଯଦି ତୁମେମାନେ ସତ୍ୟବାଦୀ ତେବେ ଉତ୍ତର ଦିଅ।" ୧୮୪. ତଥାପି ଯଦି ସେମାନେ ତୁମକୁ ମିଥ୍ୟାବାଦୀ ବୋଲି କହନ୍ତି, ତେବେ (ଏହା କିଛି ନୂଆକଥା ନୁହେଁ)। ତୁମ ପୂର୍ବରୁ ମଧ୍ୟ ଅନେକ ବାର୍ତ୍ତାବହଙ୍କୁ ମିଥ୍ୟାବାଦୀ ବେଲି କୁହାଯାଇଛି ଯେଉଁମାନେ ସ୍ପଷ୍ଟ ପ୍ରମାଣ ସହିତ ଲିଖିତ ଆଦେଶନାମା ନେଇ ଯାଇଥିଲେ ଏବଂ ଜ୍ଞାନାଲୋକ ପ୍ରଦାନକାରୀ ଗ୍ରନ୍ଥ ମଧ୍ୟ। ୧୮୫. ପ୍ରତ୍ୟେକ ଜୀବ ମୃତ୍ୟୁର ସ୍ୱାଦ ଚାଖିବ ଏବଂ ତୁମମାନଙ୍କୁ ସଂପୂର୍ଣ୍ଣ କର୍ମଫଳ ପୁନର୍ଜୀବନ ପାଇବା ଦିନ ମିଳିବ। ପୁଣି ଯେଉଁ ବ୍ୟକ୍ତି ନର୍କଦଣ୍ଡରୁ ରକ୍ଷା ପାଇଯିବ, ସେହି କେବଳ ସଫଳ ହେବ। ପାର୍ଥିବ ଜୀବନର ସୁଖ କେବଳ ଏକ ମାୟା ବ୍ୟତୀତ କିଛି ନୁହେଁ।

୧୮୬. ତୁମମାନଙ୍କୁ ତୁମମାନଙ୍କର ଧନଜୀବନ ଦ୍ୱାରା ନିଶ୍ଚୟ ପରୀକ୍ଷା କରାଯିବ ଏବଂ ଏହା ମଧ୍ୟ ନିଶ୍ଚିତ ଯେ ତୁମେମାନେ ତୁମ ପୂର୍ବର ଗ୍ରନ୍ଥବିଶ୍ୱାସୀ ଏବଂ ବହୁଈଶ୍ୱରବାଦୀମାନଙ୍କଠାରୁ ଅନେକ ପୀଡ଼ାଦାୟକ କଥା ଶୁଣିବ। ଯଦି ତୁମେମାନେ ସଂଯମ ରକ୍ଷା କର ଏବଂ କୁକର୍ମରୁ ନିବୃତ୍ତ ରୁହ, ତେବେ ଏହା ଅତି ସାହସିକ କାର୍ଯ୍ୟ। ୧୮୭. ଯେତେବେଳେ ଅଲ୍ଲାହ୍ ଗ୍ରନ୍ଥବିଶ୍ୱାସୀମାନଙ୍କଠାରୁ ବଚନ ନେଇଥିଲେ ଯେ ତୁମେମାନେ ଅଲ୍ଲାହଙ୍କ ଗ୍ରନ୍ଥକୁ ଲୋକମାନଙ୍କ ଆଗରେ ପରିଷ୍କାର ଭାବରେ ବର୍ଣ୍ଣନା କରିବ ଏବଂ ତାକୁ ଲୁଚାଇବ ନାହିଁ, ସେମାନେ ନିଜ କଥାରୁ ଓହରିଗଲେ ଏବଂ ନିଜ ବଚନ ବଦଳରେ ତୁଚ୍ଛ ଫାଇଦା ହାସଲ କଲେ। ସେମାନେ ଅତି ଜଘନ୍ୟ ବ୍ୟବସାୟ କଲେ। ୧୮୮. ଯେଉଁମାନେ ନିଜ କାର୍ଯ୍ୟକଳାପ ଦ୍ୱାରା ଖୁସି ଅଛନ୍ତି ଏବଂ ଚାହୁଁଛନ୍ତି ଯେ ସେହି କାର୍ଯ୍ୟ ପାଇଁ ସେମାନଙ୍କର ପ୍ରଶଂସା ହେଉ ଯାହା ସେମାନେ କରିନାହାନ୍ତି, ଏଭଳି ଲୋକଙ୍କ ବିଷୟରେ ତୁମେ ଭାବନାହିଁ ଯେ ସେମାନେ ଶାସ୍ତିରୁ ଛାଡ଼ ପାଇଯିବେ। ସେମାନେ କଠୋର ଶାସ୍ତି ଭୋଗିବେ।

୧୮୯. ପୃଥିବୀ ଓ ଆକାଶମଣ୍ଡଳରେ ଅଲ୍ଲାହଙ୍କର ହିଁ ଆଧିପତ୍ୟ ରହିଛି ଏବଂ ସେ ସବୁକିଛି କରିପାରନ୍ତି ।

୧୯୦. ପୃଥିବୀ ଓ ଆକାଶମଣ୍ଡଳର ସୃଷ୍ଟିରେ ଏବଂ କ୍ରମାଗତ ଭାବରେ ରାତି ଓ ଦିନର ପରିବର୍ତ୍ତନରେ ବୁଦ୍ଧିମାନ ଲୋକମାନଙ୍କ ପାଇଁ (ତାଙ୍କ ମହିମାର) ଅନେକ ସଂକେତ ଅଛି । ୧୯୧. ଯେଉଁମାନେ ବସିବା, ଉଠିବା ଏବଂ ଶୋଇବା ବେଳେ ମଧ୍ୟ ଅଲ୍ଲାହଙ୍କୁ ସ୍ମରଣ କରନ୍ତି ଏବଂ ଧରିତ୍ରୀ ଓ ଆକାଶର ଉତ୍ପତ୍ତି ସଂପର୍କରେ ଚିନ୍ତା କରନ୍ତି ଏବଂ କହନ୍ତି, "ହେ ଈଶ୍ୱର! ଏଗୁଡ଼ିକୁ ତୁମେ ଅକାରଣରେ ସୃଷ୍ଟି କରିନାହଁ । ତୁମେ ପରମ ପବିତ୍ର । ଆମମାନଙ୍କୁ ନର୍କଦଣ୍ଡରୁ ରକ୍ଷା କର । ୧୯୨. ହେ ପ୍ରଭୁ! ତୁମେ ଯାହାକୁ ନର୍କଦଣ୍ଡ ଦେବ, ତାକୁ ନିଶ୍ଚୟ ଲାଂଛିତ କରିବ । ଦୁରାଚାରୀମାନଙ୍କୁ କେହି ସାହାଯ୍ୟକାରୀ ମିଳିବେନାହିଁ । ୧୯୩. ହେ ପ୍ରଭୁ! ଆମ୍ଭେ ଜଣେ ବ୍ୟକ୍ତିଙ୍କୁ ଈଶ୍ୱରଙ୍କଠାରେ ଆସ୍ଥା ରଖିବା ପାଇଁ ବୁଝାଉଥିବାର ଶୁଣିଲୁ ଯିଏ କହୁଥିଲେ, "(ଭାଇମାନେ!) ନିଜ ପାଳନକର୍ତ୍ତାଙ୍କୁ ମାନିନିଅ", ତେଣୁ ଆମେ ମାନିନେଲୁ । ହେ ପାଳନକର୍ତ୍ତା! ଆମ ପାପ କ୍ଷମା କର, ଆମର ଦୋଷ ଦୂର କର ଏବଂ (ମୃତ୍ୟୁ ପରେ) ଆମକୁ ପୁଣ୍ୟବାନ ଲୋକଙ୍କ ସହିତ ରଖ । ୧୯୪. ହେ ପାଳନକର୍ତ୍ତା! ତୁମେ ତୁମ ବାର୍ତ୍ତାବହମାନଙ୍କ ମାଧ୍ୟମରେ ଆମମାନଙ୍କୁ ଯାହା ପ୍ରତିଶ୍ରୁତି ଦେଇଛ ତାହା ପୂରଣ କର ଏବଂ ବିଚାର ଦିନ ଆମକୁ ଅପମାନିତ କରନାହିଁ । ତୁମେ କଦାପି ବଚନ ଭଙ୍ଗ କରନାହିଁ ।"

୧୯୫. ତେଣୁ, ସେମାନଙ୍କର ପ୍ରଭୁ ସେମାନଙ୍କ ପ୍ରାର୍ଥନା ସ୍ୱୀକାର କଲେ (ଏବଂ କହିଲେ) "ପୁରୁଷ ହେଉ ବା ନାରୀ, ମୁଁ ତୁମମାନଙ୍କ ମଧ୍ୟରୁ କାହାରି କର୍ମ ବ୍ୟର୍ଥ କରିବିନାହିଁ । ତୁମେମାନେ ସମସ୍ତେ ଗୋଟିଏ ଜାତି । ଯେଉଁମାନେ ଦେଶତ୍ୟାଗ କଲେ, ନିଜ ଘରୁ ବିତାଡ଼ିତ ହେଲେ, ମୋ' ମାର୍ଗରେ କଷ୍ଟ ଭୋଗିଲେ, ଯୁଦ୍ଧ କଲେ ଏବଂ ଶହୀଦ ହେଲେ, ମୁଁ ନିଶ୍ଚୟ ସେମାନଙ୍କ ପାପ କ୍ଷମା କରିଦେବି ଏବଂ ସେମାନଙ୍କୁ ଏଭଳି ଉଦ୍ୟାନମାନଙ୍କରେ ରଖିବି ଯାହା ତଳେ ଝରଣା ପ୍ରବାହିତ ହୁଏ । ଏହା ସେମାନଙ୍କ ପାଇଁ ଅଲ୍ଲାହଙ୍କର ପୁରସ୍କାର ହେବ ଏବଂ ଅଲ୍ଲାହଙ୍କ ପାଖରେ ହିଁ ଭଲ ପୁରସ୍କାର ଥାଏ ।

୧୯୬. ସହରରେ ନାସ୍ତିକମାନଙ୍କର ଥାଟବାଟ ତୁମମାନଙ୍କ ମନରେ ଭ୍ରମ ସୃଷ୍ଟି ନକରୁ । ୧୯୭. ଏହା ଏକ କ୍ଷଣସ୍ଥାୟୀ ସୁଖ । ଏହାପରେ ନର୍କ ସେମାନଙ୍କର ଘର ହେବ ଯାହା ଅତି କଦର୍ଯ୍ୟ ସ୍ଥାନ । ୧୯୮. ମାତ୍ର ଯେଉଁମାନେ ନିଜ ପାଳନକର୍ତ୍ତାଙ୍କୁ ଭୟ କରନ୍ତି, ସେମାନଙ୍କ ପାଇଁ ଏଭଳି ଉଦ୍ୟାନ ଅଛି ଯାହା ତଳେ ଝରଣା ପ୍ରବାହିତ ହୁଏ ଏବଂ ସେମାନେ ସେଠାରେ ସର୍ବଦା ରହିବେ । ଏହା ଅଲ୍ଲାହଙ୍କ ତରଫରୁ ସେମାନଙ୍କ ପାଇଁ ଆତିଥ୍ୟ ହେବ । ପୁଣ୍ୟବାନ ଲୋକଙ୍କପାଇଁ ଅଲ୍ଲାହଙ୍କ ପାଖରେ ଯାହା ରହିଛି, ତାହା ସବୁଠାରୁ ଭଲ । ୧୯୯. ଗ୍ରନ୍ଥବିଶ୍ୱାସୀମାନଙ୍କ ମଧ୍ୟରେ ଏଭଳି ଲୋକ ମଧ୍ୟ ଅଛନ୍ତି ଯେଉଁମାନେ ଅଲ୍ଲାହଙ୍କୁ ବିଶ୍ୱାସ କରନ୍ତି, ଏହି ଗ୍ରନ୍ଥକୁ ବିଶ୍ୱାସ କରନ୍ତି ଯାହା ତୁମ ପାଖକୁ ପଠାଯାଇଛି ଏବଂ ସେହି ଗ୍ରନ୍ଥଗୁଡ଼ିକୁ ମଧ୍ୟ ବିଶ୍ୱାସ କରନ୍ତି ଯାହା ପୂର୍ବରୁ ସେମାନଙ୍କ ପାଖକୁ ପଠାଯାଇ ଥିଲା, ସେମାନେ ଅଲ୍ଲାହଙ୍କୁ ଭୟ କରନ୍ତି ଏବଂ ଅଲ୍ଲାହଙ୍କ ବାଣୀକୁ ସାମାନ୍ୟ ମୂଲ୍ୟରେ ବିକି ଦିଅନ୍ତିନାହିଁ । ସେମାନଙ୍କର ପୁରସ୍କାର ଅଲ୍ଲାହଙ୍କ ପାଖରେ ଅଛି । ଅଲ୍ଲାହ୍ ଅତିଶୀଘ୍ର (ଲୋକମାନଙ୍କ କର୍ମର) ହିସାବ ନେବେ ।

୨୦୦. ହେ ସଦ୍‌ବିଶ୍ୱାସୀମାନେ ! ଧୈର୍ଯ୍ୟ ଅବଲମ୍ବନ କର ଏବଂ ଅଟଳ ରୁହ । ସର୍ବଦା (ସଂଘର୍ଷ ପାଇଁ) ପ୍ରସ୍ତୁତ ଥାଅ ଏବଂ ଅଲ୍ଲାହଙ୍କୁ ଭୟ କରୁଥାଅ, ତା'ହେଲେ ତୁମେମାନେ ସଫଳ ହେବ ।

## ଅଧ୍ୟାୟ ୪, ଅନ୍ ନିସା

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ହେ ମନୁଷ୍ୟଗଣ! ଈଶ୍ୱରଙ୍କୁ ଭୟ କର ଯିଏ ତୁମମାନଙ୍କୁ ଜଣେ ମନୁଷ୍ୟରୁ ସୃଷ୍ଟି କଲେ ଏବଂ ତା'ଠାରୁ ତା' ପତ୍ନୀକୁ ସୃଷ୍ଟି କଲେ ଏବଂ ଉଭୟଙ୍କ ମଧ୍ୟରୁ ବହୁସଂଖ୍ୟକ ପୁରୁଷ ଓ ନାରୀ ସୃଷ୍ଟି କରି (ପୃଥିବୀରେ) ଖେଳାଇ ଦେଲେ। ଆତ୍ମୀୟସ୍ୱଜନଙ୍କ (ଅଧିକାର) ବିଷୟରେ ଅଲ୍ଲାହଙ୍କୁ ଭୟ କର ଯାହାଙ୍କ ନାଁରେ ତୁମେମାନେ ପରସ୍ପରଠାରୁ ନିଜର ଅଧିକାର ମାଗିଥାଅ। ଅଲ୍ଲାହ୍ ଅବଶ୍ୟ ତୁମମାନଙ୍କ ଉପରେ ନଜର ରଖିଛନ୍ତି।

୨. ଅନାଥମାନଙ୍କୁ ସେମାନଙ୍କର ଧନ ଫେରାଇଦିଅ। ସେମାନଙ୍କ ଭଲ ସଂପତ୍ତିକୁ ଖରାପ ସଂପତ୍ତି ଦ୍ୱାରା ବଦଳି ଦିଅନାହିଁ ଏବଂ ସେମାନଙ୍କ ଧନକୁ ନିଜ ଧନ ସହିତ ମିଶାଇ ଖାଇଯାଅ ନାହିଁ। ଏହା ଅବଶ୍ୟ ମହାପାପ। ୩. ଯଦି ତୁମମାନଙ୍କର ଆଶଙ୍କା ହୁଏ ଯେ ଅନାଥ ଝିଅମାନଙ୍କ ସହିତ ତୁମେ ନ୍ୟାୟ କରିପାରିବ ନାହିଁ, ତେବେ (ସେମାନଙ୍କ ସହିତ ବିବାହ ନକରି) ନିଜ ପସନ୍ଦର ଅନ୍ୟ ନାରୀମାନଙ୍କ ମଧ୍ୟରୁ ଦୁଇ, ତିନି ବା ଚାରି ଜଣଙ୍କୁ ବିବାହ କରିନିଅ। କିନ୍ତୁ ଯଦି ତୁମମାନଙ୍କର ଭୟ ହୁଏ ଯେ ତୁମେମାନେ (ସମସ୍ତଙ୍କ ସହିତ) ଉଚିତ ନ୍ୟାୟ କରିପାରିବ ନାହିଁ, ତା'ହେଲେ କେବଳ ଜଣକୁ ବିବାହ କର କିମ୍ୱା ତୁମମାନଙ୍କର ଅଧୀନକୁ ଆସିଥିବା ଦାସୀକୁ। ଏହାଦ୍ୱାରା ତୁମେମାନେ ଅନ୍ୟାୟ କରିବାରୁ ରକ୍ଷା ପାଇଯିବ। ୪. ପତ୍ନୀମାନଙ୍କୁ ଖୁସି ମନରେ ସେମାନଙ୍କର ମେହେର୍ (ଅର୍ଥାତ୍ କନ୍ୟାର ସ୍ତ୍ରୀଧନ) ଦିଅ। ତା'ପରେ ଯଦି ସେମାନେ ସ୍ୱଇଚ୍ଛାରେ ସେଥିରୁ କିଛି (ତୁମ ପାଇଁ) ଛାଡ଼ିଦିଅନ୍ତି, ତେବେ ଆନନ୍ଦରେ ଭୋଗ କର।

୫. ଯେଉଁ ଧନକୁ ଅଲ୍ଲାହ୍ ତୁମମାନଙ୍କର ଜୀବନ ନିର୍ବାହର ସାଧନ କରିଛନ୍ତି, ତାହାକୁ ଅବୋଧମାନଙ୍କ ହାତରେ ଦିଅନାହିଁ। ହଁ, ସେଥିରୁ ସେମାନଙ୍କୁ ଖୁଆଅ, ପିନ୍ଧାଅ ଏବଂ ସେମାନଙ୍କୁ ଭଲ ଭାବରେ ବୁଝାଅ। ୬. ଅନାଥ ପିଲାମାନଙ୍କୁ ବିବାହଯୋଗ୍ୟ ହେବା ପର୍ଯ୍ୟନ୍ତ ପରୀକ୍ଷା କରୁଥାଅ। ପୁଣି ଯେତେବେଳେ ସେମାନଙ୍କୁ ଯୋଗ୍ୟ ମନେକର, ସେମାନଙ୍କର ଧନସଂପତ୍ତି ସେମାନଙ୍କୁ ହସ୍ତାନ୍ତର କରିଦିଅ।

ସେମାନେ ବଡ଼ ହୋଇଗଲେ ନିଜର ଅଧିକାର ମାଗିବେ ବୋଲି ଭୟରେ ସେମାନଙ୍କର ସଂପତ୍ତିର ଅପବ୍ୟୟ କରନାହିଁ କିମ୍ବା ଏହାକୁ ଶୀଘ୍ରଶୀଘ୍ର ଖର୍ଚ୍ଚ କରିଦିଅ ନାହିଁ। ଯେଉଁ ଅଭିଭାବକମାନଙ୍କର ଆର୍ଥିକ ଅବସ୍ଥା ଭଲ, ସେମାନେ (ଅନାଥର ଧନ ଭୋଗ କରିବାରୁ) ବିରତ ରୁହନ୍ତୁ ଆଉ ଯେଉଁମାନେ ଗରିବ, ସେମାନେ (ନିଜ ସେବା ବିନିମୟରେ) ନ୍ୟାୟସଂଗତ ଭାବରେ କିଛି ନିଅନ୍ତୁ। ପୁଣି ଯେତେବେଳେ ସେମାନଙ୍କର ସଂପତ୍ତି ସେମାନଙ୍କୁ ହସ୍ତାନ୍ତର କର, ଏହାର ସାକ୍ଷୀ ରଖ। ଅଲ୍ଲାହ୍ (ତୁମମାନଙ୍କର) ହିସାବ ନେବା ପାଇଁ ଯଥେଷ୍ଟ।

୭. ବାପାମାଆ ଓ ଆତ୍ମୀୟମାନେ ଛାଡ଼ି ଯାଇଥିବା ସଂପତ୍ତି ଅଳ୍ପ ହେଉ ବା ବେଶୀ, ସେଥିରେ ପୁରୁଷମାନଙ୍କର ଭାଗ ଅଛି ଏବଂ ନାରୀମାନଙ୍କର ମଧ୍ୟ ଭାଗ ଅଛି ଏବଂ ଏହି ଭାଗ (ଅଲ୍ଲାହଙ୍କ ଦ୍ୱାରା) ନିର୍ଦ୍ଧାରିତ କରାଯାଇଛି। ୮. (ମୃତ ଆତ୍ମୀୟଙ୍କ) ସଂପତ୍ତି ବଣ୍ଟନ ବେଳେ ଯଦି ଅନାଥ, ସଂପର୍କୀୟ ଏବଂ ଦୀନଦୁଃଖୀମାନେ ଉପସ୍ଥିତ ଥାଆନ୍ତି, ତେବେ ସେହି ଧନରୁ ସେମାନଙ୍କୁ ମଧ୍ୟ କିଛି ଦିଅ ଏବଂ ସେମାନଙ୍କ ସହିତ ସୌହାର୍ଦ୍ଦ୍ୟପୂର୍ଣ୍ଣ କଥାବାର୍ତ୍ତା କର। ୯. ଏଭଳି ଲୋକମାନେ (ଏହା ଭାବି) ଭୟ କରିବା ଉଚିତ ଯେ ଯଦି ସେମାନେ ନିଜ ପଛରେ ଅସହାୟ ସନ୍ତାନମାନଙ୍କୁ ଛାଡ଼ିଯାଆନ୍ତେ ତେବେ ସେମାନଙ୍କ ବିଷୟରେ କିଭଳି ଚିନ୍ତିତ ହୁଅନ୍ତେ। ତେଣୁ, ସେମାନେ ଅଲ୍ଲାହଙ୍କୁ ଭୟ କରନ୍ତୁ ଏବଂ ଉଚିତ୍ କଥା କୁହନ୍ତୁ। ୧୦. ଯେଉଁମାନେ ଅନ୍ୟାୟରେ ଅନାଥମାନଙ୍କର ଧନ ଖାଆନ୍ତି, ସେମାନେ ନିଜ ପେଟରେ ନିଆଁ ଭର୍ତ୍ତି କରନ୍ତି। ସେମାନେ ଜଳନ୍ତା ନିଆଁରେ ଦଗ୍ଧ ହେବେ।

୧୧. ତୁମ ସନ୍ତାନମାନଙ୍କ ବିଷୟରେ ଅଲ୍ଲାହ୍ ଆଦେଶ ଦେଉଛନ୍ତି ଯେ ଜଣେ ପୁଅର ଭାଗ ଦୁଇଜଣ ଝିଅଙ୍କ ଭାଗ ସହ ସମାନ। ଯଦି ଦୁଇଜଣରୁ ଅଧିକ କେବଳ ଝିଅ ଥାଆନ୍ତି, ତେବେ ସେମାନଙ୍କ ଭାଗ ମୃତକ ଛାଡ଼ି ଯାଇଥିବା ସଂପତ୍ତିର ଦୁଇ-ତୃତୀୟାଂଶ ଆଉ ଯଦି ଜଣେ ଝିଅ ଥାଏ ତେବେ ସେ ଅର୍ଦ୍ଧାଂଶ ପାଇବ। ଯଦି ମୃତକର ସନ୍ତାନ ଥାଆନ୍ତି ତେବେ ମୃତ ବ୍ୟକ୍ତିର ବାପାମାଆଙ୍କ ମଧ୍ୟରୁ ପ୍ରତ୍ୟେକ ମୃତକର ସଂପତ୍ତିରୁ ଏକଷଷ୍ଠାଂଶ ପାଇବେ ଏବଂ ଯଦି ତା'ର ସଂତାନ ନଥାଆନ୍ତି ଏବଂ ତା' ବାପାମାଆ ହିଁ ତା' ଉତ୍ତରାଧିକାରୀ ହୋଇଥାଆନ୍ତି, ତେବେ ତା' ମାଆର

ଭାଗ ଏକତୃତୀୟାଂଶ ଏବଂ ଯଦି ତା'ର ଭାଇ ଭଉଣୀ ଥାଆନ୍ତି, ତେବେ ମାଆର ଏକଷଷ୍ଠାଂଶ । (ଏହି ଭାଗବଣ୍ଟନ) ତା' ଇଚ୍ଛାପତ୍ର (କାର୍ଯ୍ୟକାରୀ ହେଲା) ପରେ ଏବଂ ଋଣ ପରିଶୋଧ ପରେ କରାଯିବ ଯାହା ସେ କରି ଯାଇଥିବ । ତୁମମାନଙ୍କୁ ଜଣାନାହିଁ ଯେ ତୁମ ବାପା ବା ତୁମ ପୁଅଙ୍କ ମଧ୍ୟରୁ କାହାଦ୍ୱାରା ତୁମମାନଙ୍କର ଅଧିକ ହିତ ସାଧନ ହେବ । ଏହା (ତୁମମାନଙ୍କ ପାଇଁ) ଅଲ୍ଲାହ୍ ନିର୍ଦ୍ଧାରିତ କରିଥିବା କର୍ତ୍ତବ୍ୟ । (ଜାଣି ରଖ ଯେ) ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ ।

୧୨. ତୁମମାନଙ୍କ ପତ୍ନୀମାନେ ଯାହା ଛାଡ଼ିଯାଆନ୍ତି, ଯଦି ସେମାନେ ନିଃସନ୍ତାନ ଥିବେ ତେବେ ତୁମେ ତାହାର ଅଧା ପାଇବ ଏବଂ ଯଦି ସେମାନଙ୍କର ସନ୍ତାନ ଥିବେ ତେବେ ଇଚ୍ଛାପତ୍ର (କାର୍ଯ୍ୟକାରୀ ହେଲା) ପରେ ଏବଂ ଋଣ ପରିଶୋଧ ପରେ ତୁମେମାନେ ସେହି ସଂପତ୍ତିର ଏକଚତୁର୍ଥାଂଶ ପାଇବ । ଯଦି ତୁମର ସନ୍ତାନ ନାହାନ୍ତି, ତେବେ ତୁମେମାନେ ଯାହା ଛାଡ଼ିଯାଅ ତାହାର ଏକଚତୁର୍ଥାଂଶ ତୁମ ପତ୍ନୀମାନଙ୍କର ହେବ । ଯଦି ତୁମମାନଙ୍କର ସନ୍ତାନ ଥିବେ ତେବେ ତୁମ ଇଚ୍ଛାପତ୍ର (କାର୍ଯ୍ୟକାରୀ ହେଲା) ପରେ ଏବଂ ଋଣ ପରିଶୋଧ ପରେ ତୁମ ସଂପତ୍ତିର ଏକ ଅଷ୍ଟମାଂଶ ସେମାନଙ୍କୁ ମିଳିବ । ଯଦି ସେହି ମୃତ ପୁରୁଷ ବା ମହିଳାର ପିତାମାତା ବା ସନ୍ତାନ (ଜୀବିତ) ନଥାଆନ୍ତି ଏବଂ କେବଳ ଗୋଟିଏ ଭାଇ ଓ ଗୋଟିଏ ଭଉଣୀ ଥାଆନ୍ତି, ତେବେ ଉଭୟଙ୍କ ମଧ୍ୟରୁ ପ୍ରତ୍ୟେକ ଏକଷଷ୍ଠାଂଶର ମାଲିକ ହେବେ ଏବଂ ଯଦି (ଭାଇ ଭଉଣୀ) ଅଧିକ ହୁଅନ୍ତି, ତେବେ ସେମାନେ ଇଚ୍ଛାପତ୍ର (କାର୍ଯ୍ୟକାରୀ ହେଲା) ପରେ ଏବଂ ଋଣ ପରିଶୋଧ ପରେ (ଅବଶିଷ୍ଟ ସଂପତ୍ତିର) ଏକତୃତୀୟାଂଶରେ ସମସ୍ତେ ଅଂଶୀଦାର ହେବେ ଏହି ସର୍ତ୍ତରେ ଯେ ଅନ୍ୟ କାହାରି କ୍ଷତି ନହୁଏ । ଏହା ତୁମମାନଙ୍କ ପାଇଁ ଅଲ୍ଲାହଙ୍କର ଆଦେଶ ଏବଂ ଅଲ୍ଲାହ୍ ସର୍ବଜ୍ଞ ଏବଂ ସହନଶୀଳ ।

୧୩. ଏଗୁଡ଼ିକ ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ସୀମା । ଯିଏ ଅଲ୍ଲାହ୍ ଓ ତାଙ୍କ ବାର୍ତ୍ତାବହଙ୍କ ଆଜ୍ଞା ପାଳନ କରିବ, ତାକୁ ସେ ଏଭଳି ଉଦ୍ୟାନରେ ରଖିବେ ଯାହା ତଳେ ଝରଣା ପ୍ରବାହିତ ହୁଏ ଏବଂ ସେମାନେ ସେଠାରେ ସର୍ବଦା ରହିବେ । ଏହା ଏକ ବଡ଼ ସଫଳତା । ୧୪. ଏବଂ ଯିଏ ଅଲ୍ଲାହ୍ ଏବଂ ତାଙ୍କ ରସୁଲଙ୍କୁ ଅବଜ୍ଞା

କରିବ ଏବଂ ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ସୀମା ଅତିକ୍ରମ କରିବ, ସେ ତାକୁ ନର୍କଦଣ୍ଡ ଦେବେ ଯେଉଁଠି ସେ ସର୍ବଦା ରହିବ ଏବଂ ଅପମାନଜନକ ଶାସ୍ତି ଭୋଗିବ ।

୧୫. ଯଦି ତୁମ୍ଭ ପତ୍ନୀମାନଙ୍କ ମଧ୍ୟରୁ କେହି ବ୍ୟଭିଚାର କରନ୍ତି, ତେବେ ନିଜ ମଧ୍ୟରୁ ଚାରିଜଣ ପୁରୁଷଙ୍କର ସାକ୍ଷୀ ନିଅ । ଯଦି ସେମାନେ ଏହାର ସାକ୍ଷ୍ୟ ଦିଅନ୍ତି ତେବେ ସେହି ମହିଳାମାନଙ୍କୁ ସେମାନଙ୍କ ମୃତ୍ୟୁ ପର୍ଯ୍ୟନ୍ତ ବା ସେମାନଙ୍କ ପାଇଁ ଅଲ୍ଲାହ୍ କୌଣସି ବାଟ ବାହାର କରିବା ପର୍ଯ୍ୟନ୍ତ ଘର ଭିତରେ ବନ୍ଦ କରିରଖ । ୧୬. ତୁମ୍ଭମାନଙ୍କ ମଧ୍ୟରୁ ଯଦି ଦୁଇଜଣ ପୁରୁଷ ସେହିପରି ଦୁଷ୍କର୍ମ (ଅର୍ଥାତ୍ ପରସ୍ପର ଯୌନକ୍ରିୟା) କରନ୍ତି, ତେବେ ଉଭୟଙ୍କୁ ଦଣ୍ଡ ଦିଅ ଏବଂ ଯଦି ସେମାନେ ଅନୁତାପ କରନ୍ତି ଏବଂ ନିଜର ଆଚରଣ ସଂଶୋଧନ କରିନିଅନ୍ତି, ତେବେ ସେମାନଙ୍କୁ ଛାଡ଼ିଦିଅ । ଅଲ୍ଲାହ୍ କ୍ଷମାଶୀଳ ଓ କରୁଣାମୟ ।

୧୭. ଅଲ୍ଲାହ୍ କେବଳ ସେହି ଲୋକମାନଙ୍କର ପଶ୍ଚାତାପ ଗ୍ରହଣ କରନ୍ତି ଯେଉଁମାନେ ଅଜ୍ଞାନତାବଶତଃ କୁକର୍ମ କରିଦିଅନ୍ତି ଏବଂ ତୁରନ୍ତ ପଶ୍ଚାତାପ କରନ୍ତି । ଏହିମାନଙ୍କର ପଶ୍ଚାତାପ ଅଲ୍ଲାହ୍ ଗ୍ରହଣ କରନ୍ତି । ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ । ୧୮. ଏଭଳି ଲୋକଙ୍କର ପଶ୍ଚାତାପ ଗ୍ରହଣୀୟ ନୁହେଁ ଯେଉଁମାନେ ବାରମ୍ବାର କୁକର୍ମ କରୁଥାଆନ୍ତି ଏବଂ ଯେତେବେଳେ ସେମାନଙ୍କ ମଧ୍ୟରୁ କାହାରି ମୃତ୍ୟୁ ବେଳ ଆସେ, ସେ କହେ ଯେ ମୁଁ ଅନୁତାପ କରୁଛି କିମ୍ବା ସେମାନଙ୍କର ପଶ୍ଚାତାପ ମଧ୍ୟ ଗ୍ରହଣୀୟ ନୁହେଁ ଯେଉଁମାନେ (ଈଶ୍ୱର ଓ ଈଶ୍ୱରଦୂତଙ୍କୁ) ଅବିଶ୍ୱାସ କରିଥିବା ଅବସ୍ଥାରେ ମୃତ୍ୟୁ ବରଣ କରନ୍ତି । ଏଭଳି ଲୋକମାନଙ୍କ ପାଇଁ ଆମ୍ଭେ କଠୋର ଶାସ୍ତି ପ୍ରସ୍ତୁତ କରି ରଖିଛୁ ।

୧୯. ହେ ସଦ୍‌ବିଶ୍ୱାସୀଗଣ ! ବଳପୂର୍ବକ ନାରୀମାନଙ୍କର ଉତ୍ତରାଧିକାରୀ ହୋଇଯିବା ତୁମ୍ଭମାନଙ୍କ ପାଇଁ ବୈଧ ନୁହେଁ ଏବଂ ତୁମେମାନେ ସେମାନଙ୍କୁ ଯାହା ଦେଇଛ ସେଥିରୁ କିଛି ଫେରାଇନେବା ଉଦ୍ଦେଶ୍ୟରେ ସେମାନଙ୍କୁ ଘରେ ଅଟକାଇ ରଖନାହିଁ । ହଁ, ଯଦି ସେମାନେ ସ୍ପଷ୍ଟ ବ୍ୟଭିଚାର କରିଥାଆନ୍ତି ତବେ ଭିନ୍ନ କଥା । ସେମାନଙ୍କ ସହିତ ଭଲରୂପେ ବସବାସ କର । ଯଦି ସେମାନେ ତୁମ୍ଭକୁ ପସନ୍ଦ ହେଉନାହାନ୍ତି, ତେବେ ଏହା ମଧ୍ୟ ସମ୍ଭବ ଯେ କୌଣସି କଥା ତୁମ୍ଭମାନଙ୍କୁ ଭଲ

ଲାଗେନାହିଁ ଅଥଚ ଅଲ୍ଲାହ୍ ସେଥିରେ ତୁମମାନଙ୍କ ପାଇଁ ଅଶେଷ କଲ୍ୟାଣ ରଖିଛନ୍ତି। ୨୦. ଯଦି ତୁମେ ଜଣେ ପତ୍ନୀ ସ୍ଥାନରେ ଆଉ ଜଣେ ପତ୍ନୀ ଗ୍ରହଣ କରିବାକୁ ଚାହଁ ଏବଂ ତୁମେ ପ୍ରଥମ ପତ୍ନୀକୁ ବହୁତ ଧନ ଦେଇସାରିଛ, ତେବେ ସେଥିରୁ କିଛି ଫେରାଇ ନିଅନାହିଁ। କ'ଣ ତୁମେ ତାକୁ ଅପବାଦ ଦେଇ ଏବଂ ଖୋଲାଖୋଲି ଭାବରେ ପାପ କରି ଏହା ଫେରାଇ ନେବ? ୨୧. ତୁମେ ଏହା କେମିତି ଫେରାଇ ନେବ ଯଦିଓ ତୁମମାନଙ୍କ ମଧ୍ୟରେ ମିଳନ ହୋଇସାରିଛି ଏବଂ ଏହି ମହିଳାମାନେ ତୁମଠାରୁ ଦୃଢ଼ ପ୍ରତିଶ୍ରୁତି ନେଇ ସାରିଛନ୍ତି?

୨୨. ସେହି ନାରୀମାନଙ୍କୁ ବିବାହ କରନାହିଁ ଯେଉଁମାନଙ୍କୁ ତୁମ ପିତୃପିତାମହ ବିବାହ କରିଥିଲେ। ଯାହା ପୂର୍ବରୁ ହୋଇଯାଇଛି, ତାହା ହୋଇଯାଇଛି। ଏହା ଏକ ନିର୍ଲଜ ଓ ଘୃଣ୍ୟ ଆଚରଣ ଏବଂ ଏକ ଅନୈତିକ ପ୍ରଥା।

୨୩. ତୁମମାନଙ୍କର ବିବାହ ପାଇଁ ଯେଉଁମାନେ ନିଷିଦ୍ଧ ସେମାନେ ହେଲେ ତୁମମାନଙ୍କର ମାଆ, ତୁମ ଝିଅ, ତୁମ ଭଉଣୀ, ତୁମ ପିଉସୀ, ତୁମ ମାଉସୀ, ତୁମ ଝିଆରୀ, ତୁମ ଭାଣିଜୀ ଏବଂ ତୁମମାନଙ୍କର ସେହି ମା' ଯେଉଁମାନେ ତୁମକୁ ସ୍ତନ୍ୟପାନ କରାଇଛନ୍ତି ଏବଂ ତୁମର ଦୁଗ୍ଧ-ସଂପର୍କୀୟା ଭଉଣୀ, ତୁମ ପତ୍ନୀମାନଙ୍କର ମା' ଏବଂ ତୁମର ସାବତ କନ୍ୟା ଯେଉଁମାନଙ୍କର ତୁମେମାନେ ଲାଳନପାଳନ କରୁଛ ଆଉ ସେମାନେ ତୁମର ସେହି ପତ୍ନୀଙ୍କ ଗର୍ଭରୁ ଜାତ ଯାହାଙ୍କ ସହିତ ତୁମେ ସହବାସ କରିସାରିଛ। କିନ୍ତୁ ଯଦି ତୁମେମାନେ ସେମାନଙ୍କ ସହିତ ସହବାସ କରି ନଥାଅ, ତେବେ (ସେମାନଙ୍କ କନ୍ୟାମାନଙ୍କ ସହିତ ବିବାହ କରିବାରେ) ତୁମମାନଙ୍କର କୌଣସି ଦୋଷ ହେବନାହିଁ। ତୁମ ଔରସରୁ ଜାତ ପୁତ୍ରମାନଙ୍କର ପତ୍ନୀ (ସହିତ ତୁମର ବିବାହ ଅବୈଧ) ଏବଂ ଏକକାଳୀନ ଦୁଇ ଭଉଣୀଙ୍କୁ ବିବାହ କରି ଏକାଠି ରଖିବା ମଧ୍ୟ ଅବୈଧ। ପୂର୍ବରୁ ଯାହା ହୋଇଯାଇଛି, ତାହା ହୋଇଯାଇଛି। ଅଲ୍ଲାହ୍ ଅବଶ୍ୟ କ୍ଷମାଶୀଳ ଓ କରୁଣାମୟ।

୨୪. ବିବାହିତା ମହିଳାମାନଙ୍କ ସହିତ ମଧ୍ୟ ତୁମମାନଙ୍କର ବିବାହ ନିଷିଦ୍ଧ। ହଁ, ଯଦି ସେମାନେ (ଯୁଦ୍ଧ ବନ୍ଦୀ ଭାବରେ) ତୁମର ହସ୍ତଗତ ହୁଅନ୍ତି ତେବେ ଭିନ୍ନ କଥା। ଏହା ତୁମମାନଙ୍କ ପାଇଁ ଅଲ୍ଲାହଙ୍କର ଆଦେଶ। ଏମାନଙ୍କ

ବ୍ୟତୀତ ଅନ୍ୟ ମହିଳାମାନେ ତୁମମାନଙ୍କ (ବିବାହ) ପାଇଁ ବୈଧ ଏହି ସର୍ତ୍ତରେ ଯେ ତୁମେମାନେ ସେମାନଙ୍କର ମେହେର ଦେଇ ଦୁଷ୍କର୍ମରୁ ସୁରକ୍ଷିତ ରହିବା ପାଇଁ ବିବାହ କରିବାକୁ ଚାହଁ, ମାତ୍ର ବ୍ୟଭିଚାର କରିବା ପାଇଁ ନୁହେଁ । ଯଦି ତୁମେମାନେ ସେହି ନାରୀମାନଙ୍କଠାରୁ ଉପକାର ପାଅ ତେବେ ସେମାନଙ୍କୁ ସେମାନଙ୍କ ନିର୍ଦ୍ଧାରିତ ମେହେର (ଅର୍ଥାତ୍ ସ୍ତ୍ରୀଧନ) ଅବଶ୍ୟ ଦିଅ । ମେହେର ନିର୍ଦ୍ଧାରିତ ହେଲା ପରେ ଯଦି ତୁମେମାନେ ପରସ୍ପର ମଧ୍ୟରେ ଏବିଷୟରେ କୌଣସି ବୁଝାମଣା କରିନିଅ, ସେଥିରେ ତୁମମାନଙ୍କୁ ପାପ ହେବ ନାହିଁ । ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ । ୨୫. ତୁମମାନଙ୍କ ମଧ୍ୟରୁ ଯିଏ ସ୍ୱାଧୀନ ମୁସଲିମ୍ ମହିଳାକୁ ବିବାହ କରିବାକୁ ସମର୍ଥ ନୁହେଁ, ସେ ତୁମମାନଙ୍କ ଅଧୀନକୁ (ଯୁଦ୍ଧବନ୍ଦୀ ରୂପେ) ଆସିଥିବା କୌଣସି ମୁସଲିମ୍ ଦାସୀକୁ ବିବାହ କରିନେଉ । ଅଲ୍ଲାହ୍ ତୁମମାନଙ୍କର ବିଶ୍ୱାସ ବିଷୟରେ ଭଲରୂପେ ଜାଣନ୍ତି । ତୁମେମାନେ ପରସ୍ପର ଅଭିନ୍ନ । ତେଣୁ, ସେମାନଙ୍କ ମାଲିକମାନଙ୍କ ଅନୁମତି ନେଇ ସେମାନଙ୍କୁ ବିବାହ କର ଏବଂ ବିଧିମତେ ସେମାନଙ୍କ ମେହେର ଦିଅ ଯାହାଫଳରେ ସେମାନେ ବିବାହ ବନ୍ଧନରେ ସୁରକ୍ଷିତ ରୁହନ୍ତୁ ଏବଂ ବ୍ୟଭିଚାର ନକରନ୍ତୁ ବା ଗୁପ୍ତ ସଂବନ୍ଧ ସ୍ଥାପନ ନକରନ୍ତୁ । ପୁଣି ଯଦି ସେମାନେ ବିବାହ ବନ୍ଧନରେ ରହି ବ୍ୟଭିଚାର କରନ୍ତି, ତେବେ ସେମାନଙ୍କର ଶାସ୍ତି ସ୍ୱାଧୀନ ଥିବା ନାରୀମାନଙ୍କ ଶାସ୍ତି ତୁଳନାରେ ଅଧା ହେବ । ଏହି ବ୍ୟବସ୍ଥା ସେହି ଲୋକମାନଙ୍କ ପାଇଁ ଯେଉଁମାନଙ୍କର (ଅବିବାହିତ ରହିବା ଯୋଗୁଁ) କୁକର୍ମରେ ଲିପ୍ତ ହେବାର ଆଶଂକା ଥାଏ । ସୁତରାଂ, ଯଦି ତୁମେମାନେ ସଂଯମ ଆଚରଣ କର ତେବେ ଏହା ତୁମମାନଙ୍କ ପାଇଁ ଖୁବ୍ ଭଲ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ ପରମ ଦୟାଳୁ ।

୨୬. ଅଲ୍ଲାହ୍ ଚାହାନ୍ତି ଯେ ସେ ତୁମମାନଙ୍କ ପାଇଁ ନିଜର ଆଦେଶ ପରିଷ୍କାର ଭାବରେ ବର୍ଣ୍ଣନା କରିବେ, ତୁମମାନଙ୍କୁ ପୂର୍ବର (ପୁଣ୍ୟବାନ) ଲୋକମାନଙ୍କ ବାଟରେ ନେଇଯିବେ ଏବଂ ତୁମମାନଙ୍କ ପ୍ରତି କରୁଣା କରିବେ । ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ । ୨୭. ଅଲ୍ଲାହ୍ ତ ତୁମମାନଙ୍କ ପ୍ରତି କରୁଣା କରିବାକୁ ଚାହାନ୍ତି କିନ୍ତୁ ଯେଉଁ ଲୋକମାନେ ଇନ୍ଦ୍ରିୟ ବଶବର୍ତ୍ତୀ ହୋଇଯାଇଛନ୍ତି ସେମାନେ ଚାହାନ୍ତି ଯେ ତୁମେମାନେ ଠିକ୍ ବାଟରୁ ଦୂରେଇ ଯାଅ । ୨୮. ଅଲ୍ଲାହ୍ ତୁମମାନଙ୍କର ବୋଝ ହାଲୁକା କରିବାକୁ ଚାହାନ୍ତି କାରଣ ମଣିଷ ଏକ ଦୁର୍ବଳ ସୃଷ୍ଟି ।

୨୯. ହେ ମୁସଲମାନଗଣ ! ଅସଦୁପାୟରେ ପରସ୍ପରର ଧନ ଖାଇଯାଅ ନାହିଁ ବରଂ ପରସ୍ପର ସହମତି କ୍ରମେ ବ୍ୟବସାୟ କର ଏବଂ ପରସ୍ପରକୁ ହତ୍ୟା କରନାହିଁ । ଅଲ୍ଲାହ୍ ତୁମମାନଙ୍କ ପ୍ରତି ସଦା କରୁଣାଶୀଳ । ୩୦. ଯିଏ (ଅନ୍ୟ ପ୍ରତି) ଅତ୍ୟାଚାର କରି ଏଭଳି କାର୍ଯ୍ୟ କରିବ, ଆମ୍ଭେ ଶୀଘ୍ର ତାକୁ ନିଆଁରେ ଦଗ୍ଧ କରିବୁ । ଅଲ୍ଲାହଙ୍କ ପାଇଁ ଏହା କରିବା ଭାରି ସହଜ । ୩୧. ଯେଉଁ ମହାପାପଗୁଡ଼ିକରୁ ତୁମମାନଙ୍କୁ ବାରଣ କରାଯାଉଛି, ଯଦି ତୁମେମାନେ ସେଗୁଡ଼ିକରୁ ନିବୃତ୍ତ ରୁହ, ତା'ହେଲେ ଆମ୍ଭେ ତୁମମାନଙ୍କର (ସାଧାରଣ) ଦୋଷତ୍ରୁଟି କ୍ଷମା କରିଦେବୁ ଏବଂ ତୁମମାନଙ୍କୁ ଏକ ଗୌରବମୟ ଧାମରେ ରଖିବୁ ।

୩୨. ଯେଉଁ କ୍ଷେତ୍ରରେ ଅଲ୍ଲାହ୍ ତୁମମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟମାନଙ୍କଠାରୁ ଅଧିକ ଦେଇଛନ୍ତି, ତୁମେମାନେ ତାହାର କାମନା କରନାହିଁ । ପୁରୁଷମାନେ ଯାହା କର୍ମ କରିବେ ତାହାର ଫଳ ସେମାନଙ୍କୁ ମିଳିବ ଏବଂ ନାରୀମାନେ ଯାହା କର୍ମ କରିବେ ତାହାର ଫଳ ସେମାନଙ୍କୁ ମିଳିବ । ଅଲ୍ଲାହଙ୍କଠାରୁ ତାଙ୍କର କରୁଣା ଭିକ୍ଷା କରୁଥାଅ । ଅଲ୍ଲାହ୍ ସବୁକିଛି ଜାଣନ୍ତି ।

୩୩. ବାପାମାଆ ଓ ଆତ୍ମୀୟମାନେ ଯାହା (ସଂପତ୍ତି) ଛାଡ଼ି ଯାଆନ୍ତି, ସେଥିରେ ଆମ୍ଭେ ପ୍ରତ୍ୟେକଙ୍କ ପାଇଁ ଉତ୍ତରାଧିକାର ସ୍ୱତ୍ୱ ନିର୍ଦ୍ଧାରିତ କରିଦେଇଛୁ ଏବଂ ଯେଉଁମାନଙ୍କ ସହିତ ତୁମେ ଚୁକ୍ତିବଦ୍ଧ, ସେମାନଙ୍କ ପ୍ରାପ୍ୟ ମଧ୍ୟ ସେମାନଙ୍କୁ ଦେଇଦିଅ । ଅଲ୍ଲାହ୍ ପ୍ରତ୍ୟେକ ବିଷୟ ପ୍ରତି ନଜର ରଖିଛନ୍ତି ।

୩୪. ପୁରୁଷମାନେ ନାରୀମାନଙ୍କର ଅଭିଭାବକ କାରଣ ଅଲ୍ଲାହ୍ ସେମାନଙ୍କ ମଧ୍ୟରୁ ଜଣକୁ ଅନ୍ୟଜଣକ ଅପେକ୍ଷା ଶ୍ରେଷ୍ଠ କରିଛନ୍ତି ଏବଂ ପରୁଷମାନେ (ସେମାନଙ୍କ ପ୍ରତିପୋଷଣ ପାଇଁ) ନିଜର ଧନ ଖର୍ଚ୍ଚ କରିଥାଆନ୍ତି । ତେଣୁ, ପୁଣ୍ୟବତୀ ନାରୀ ଆଜ୍ଞାକାରିଣୀ ହୁଅନ୍ତି ଏବଂ ଅଲ୍ଲାହଙ୍କ ସହାୟତା ବଳରେ ପତିଙ୍କ ଅନୁପସ୍ଥିତିରେ (ସେମାନଙ୍କ ଅଧିକାରର) ସୁରକ୍ଷା କରନ୍ତି । ଯେଉଁ ନାରୀମାନଙ୍କ ବିଷୟରେ ଔଦ୍ଧତ୍ୟର ଆଶଙ୍କା ହୁଏ, ସେମାନଙ୍କୁ ବୁଝାଅ, (ଯଦି ନମାନନ୍ତି) ବିଛଣାରେ ଏକୁଟିଆ ଛାଡ଼ିଦିଅ ଏବଂ (ତଥାପି ଯଦି ଅବାଧ୍ୟ ହୁଅନ୍ତି) ସେମାନଙ୍କୁ ମାର । ଏହାପରେ ଯଦି ସେମାନେ କଥା ମାନନ୍ତି, ତେବେ (ସେମାନଙ୍କୁ ପୀଡ଼ା

ଦେବାପାଇଁ) ଆଉ ବାହାନା ଖୋଜନାହିଁ । ଅଲ୍ଲାହ୍ ସର୍ବଶ୍ରେଷ୍ଠ ଏବଂ ମହାନ । ୩୫. ଯଦି ତୁମମାନଙ୍କୁ ପତି-ପତ୍ନୀଙ୍କ ମଧ୍ୟରେ ମନାନ୍ତରର ଆଶଙ୍କା ହୁଏ, ତେବେ (ବୁଝାମଣା ପାଇଁ) ପତିର ଆତ୍ମୀୟମାନଙ୍କ ମଧ୍ୟରୁ ଏବଂ ପତ୍ନୀର ଆତ୍ମୀୟମାନଙ୍କ ମଧ୍ୟରୁ ଜଣେ ଲେଖାଏଁ ନିଷ୍ପତ୍ତିକାରୀ ନିଯୁକ୍ତ କର । ଯଦି ସେ ଦୁହେଁ ବୁଝାମଣା କରାଇ ଦେବାପାଇଁ ଚାହିଁବେ ତେବେ ଅଲ୍ଲାହ୍ ପତିପତ୍ନୀଙ୍କ ମଧ୍ୟରେ ମିଳାମିଶା କରାଇ ଦେବେ । ଅବଶ୍ୟ ଅଲ୍ଲାହ୍ ସବୁ ଜାଣନ୍ତି ଏବଂ ସବୁ ଖବର ରଖନ୍ତି ।

୩୬. ଅଲ୍ଲାହଙ୍କର ଉପାସନା କର ଏବଂ ତାଙ୍କ ଈଶ୍ୱରତ୍ୱରେ ଅନ୍ୟ କାହାରିକୁ ଅଂଶୀଦାର କରନାହିଁ । ବାପାମାଆ, ଆତ୍ମୀୟସ୍ୱଜନ, ଅନାଥ, ଦରିଦ୍ର, ସଂପର୍କୀୟ ପଡ଼ୋଶୀ ଓ ଅପରିଚିତ ପଡ଼ୋଶୀ, ତୁମମାନଙ୍କ ସହିତ ବସାଉଠା କରୁଥିବା ବ୍ୟକ୍ତି, ପଥିକ ଏବଂ ଦାସଦାସୀମାନଙ୍କ ସହିତ ଭଲ ବ୍ୟବହାର କର ଏବଂ (ଜାଣିରଖ) ଅଲ୍ଲାହ୍ କୌଣସି ଆତ୍ମାଭିମାନୀ ଓ ଅହଂକାରୀ ବ୍ୟକ୍ତିକୁ ଆଦୌ ଭଲ ପାଆନ୍ତିନାହିଁ । ୩୭. ଯେଉଁମାନେ ନିଜେ କୃପଣତା କରନ୍ତି ଏବଂ ଅନ୍ୟମାନଙ୍କୁ ମଧ୍ୟ କୃପଣତାର ଶିକ୍ଷା ଦିଅନ୍ତି ଏବଂ ଅଲ୍ଲାହ୍ ସେମାନଙ୍କୁ କୃପା କରି ଯାହା ଦେଇଛନ୍ତି ତାହାକୁ ଲୁଚାଇ ରଖନ୍ତି, ଏଭଳି କୃତଘ୍ନ ଲୋକମାନଙ୍କ ପାଇଁ ଆମ୍ଭେ ଅପମାନଜନକ ଶାସ୍ତି ପ୍ରସ୍ତୁତ କରି ରଖିଛୁ । ୩୮. ଯେଉଁମାନେ ଲୋକଦେଖାଣିଆ ଧନ ଖର୍ଚ୍ଚ କରନ୍ତି କିନ୍ତୁ ଅଲ୍ଲାହଙ୍କୁ କିମ୍ବା (ପରଲୋକର) ବିଚାର ଦିନକୁ ବିଶ୍ୱାସ କରନ୍ତିନାହିଁ । ଶଇତାନ ଯାହାର ବନ୍ଧୁ ହୋଇଯାଏ, ତାକୁ ଅତି କଦର୍ଯ୍ୟ ବନ୍ଧୁଟିଏ ମିଳିଯାଏ । ୩୯. ଯଦି ସେମାନେ ଅଲ୍ଲାହଙ୍କୁ ଏବଂ ପରଲୋକକୁ ମାନି ନିଅନ୍ତେ ଏବଂ ଅଲ୍ଲାହ୍ ସେମାନଙ୍କୁ ଯାହା ଦେଇଛନ୍ତି, ସେଥିରୁ ଖର୍ଚ୍ଚ କରନ୍ତେ ତେବେ ସେମାନଙ୍କର କି କ୍ଷତି ହୁଅନ୍ତା ? ଅଲ୍ଲାହ୍ ସେମାନଙ୍କୁ ଭଲରୂପେ ଜାଣନ୍ତି । ୪୦. ଅଲ୍ଲାହ୍ କାହାରି ପ୍ରତି ତିଳେହେଲେ ଅନ୍ୟାୟ କରନ୍ତିନାହିଁ । ଯଦି କାହାରି କିଛି ପୁଣ୍ୟ ଥାଏ, ସେ ତାହାକୁ ବହୁଗୁଣିତ କରିଦେବେ ଏବଂ ନିଜ ଆଡୁ ଭଲ ପୁରସ୍କାର ମଧ୍ୟ ଦେବେ । ୪୧. (ହେ ବାର୍ତ୍ତାବହ !) ସେତେବେଳେ ସେମାନଙ୍କର ଅବସ୍ଥା କ'ଣ ହେବ ଯେତେବେଳେ ଆମ୍ଭେ ପ୍ରତ୍ୟେକ ସମୁଦାୟରୁ ଜଣେ ଲେଖାଏଁ ସାକ୍ଷୀ ଆଣିବୁ ଏବଂ ତୁମକୁ ସେମାନଙ୍କ ବିରୁଦ୍ଧରେ ସାକ୍ଷୀ ରୂପେ ଛିଡ଼ା କରିବୁ ? ୪୨. ସେଦିନ ନାସ୍ତିକ ଏବଂ ରସୁଲଙ୍କର ଅବମାନନା କରିଥିବା ଲୋକମାନେ ଏହି କାମନା

କରିବେ ଯେ ଧରିତ୍ରୀ ଫାଟିଯାଉ ଏବଂ ସେମାନେ ମାଟିରେ ମିଶିଯାଆନ୍ତୁ! ସେମାନେ ଅଲ୍ଲାହଙ୍କଠାରୁ କିଛି ଲୁଚାଇ ପାରିବେନାହିଁ।

୪୩. ହେ ମୁସଲମାନଗଣ! ଯଦି ତୁମେମାନେ ନିଶାଗ୍ରସ୍ତ ଅବସ୍ଥାରେ ଥାଅ ତେବେ କ'ଣ ପଢୁଛ ତାହା ନବୁଝିବା ପର୍ଯନ୍ତ ନମାଜପାଠ କରିବା ପାଇଁ ଯାଅନାହିଁ। ସେହିପରି ସହବାସ ଜନିତ ଅଶୁଦ୍ଧତାରେ ମଧ୍ୟ ସ୍ନାନ ନକରିବା ପର୍ଯ୍ୟନ୍ତ ନମାଜ ପାଠ କରନାହିଁ। ହଁ, ଯଦି ତୁମେମାନେ ଯାତ୍ରା କରୁଥାଅ ତେବେ ଭିନ୍ନ କଥା। ଯଦି ତୁମେମାନେ ଅସୁସ୍ଥ ଥାଅ ବା ଯାତ୍ରା କରୁଥାଅ ବା ଶୌଚାଳୟରୁ ଆସିଥାଅ କିମ୍ବା ସ୍ତ୍ରୀ ସହବାସ କରିଥାଅ ଏବଂ ତୁମମାନଙ୍କୁ ପାଣି ନମିଳେ, ତେବେ ଶୁଦ୍ଧ ମାଟିରେ ତୟମ୍ମୁମ୍ କରିନିଅ, ଅର୍ଥାତ୍ ତାହାକୁ ଦୁଇ ହାତରେ ସ୍ପର୍ଶ କରି ମୁହଁ ଓ ଦୁଇ ହାତରେ ଘଷିନିଅ। ଅଲ୍ଲାହ୍ ଦୋଷ ମାର୍ଜନାକାରୀ ଏବଂ କ୍ଷମାଶୀଳ।

୪୪. ଯେଉଁମାନଙ୍କୁ ଦିବ୍ୟଗ୍ରନ୍ଥର କିଛି ଜ୍ଞାନ ମିଳିଥିଲା, କ'ଣ ତୁମେ ସେମାନଙ୍କୁ ଦେଖୁନାହଁ ଯେ ସେମାନେ କିପରି ଜାଣିଶୁଣି ପଥଭ୍ରଷ୍ଟ ହେଉଛନ୍ତି ଏବଂ ଚାହୁଁଛନ୍ତି ଯେ ତୁମେମାନେ ମଧ୍ୟ ବିଭ୍ରାନ୍ତ ହୋଇଯାଅ? ୪୫. ଅଲ୍ଲାହ୍ ତୁମ ଶତ୍ରୁମାନଙ୍କୁ ଭଲ ଭାବରେ ଜାଣନ୍ତି ଏବଂ ତୁମର ସୁରକ୍ଷା ଏବଂ ସହାୟତା ପାଇଁ ଅଲ୍ଲାହ୍ ଯଥେଷ୍ଟ। ୪୬. ଇହୁଦୀମାନଙ୍କ ମଧ୍ୟରେ କେତେକ ଅଛନ୍ତି ଯେଉଁମାନେ ଗ୍ରନ୍ଥବାଣୀର ସ୍ଥାନ ପରିବର୍ତ୍ତନ କରନ୍ତି ଏବଂ ଧର୍ମକୁ ବିଦ୍ରୂପ କରିବା ଉଦ୍ଦେଶ୍ୟରେ ଜିଭକୁ ବୁଲାଇ କହନ୍ତି, "ସମିଅନା ଓ ଅସୈନା", "ଇସମାଅ ଗୈରା ମୁସମାଅ" ଏବଂ "ରାଇନା"। କିନ୍ତୁ ଯଦି ସେମାନେ ଏପରି କହନ୍ତେ, "ସମିଅନା ଓ ଅତାଅନା", "ଓ୍ୱସ୍‌ମଆ" ଏବଂ ଓ୍ୱନ୍‌ଜୁର୍‌ନା", ତେବେ ଏହା ସେମାନଙ୍କ ପକ୍ଷରେ ଭଲ ହୁଅନ୍ତା ଏବଂ ଉଚିତ ମଧ୍ୟ। ମାତ୍ର ସେମାନଙ୍କର ଅଧର୍ମ ଯୋଗୁଁ ଅଲ୍ଲାହ୍ ସେମାନଙ୍କୁ ଧିକ୍କାର କରିଛନ୍ତି। ତେଣୁ, ସେମାନଙ୍କ ମଧ୍ୟରୁ ବହୁତ କମ୍ ଲୋକ ବିଶ୍ୱାସ କରନ୍ତି।

୪୭. ହେ ଗ୍ରନ୍ଥବିଶ୍ୱାସୀମାନେ! ଆମ୍ଭେ ପଠାଇଥିବା ଏହି ଗ୍ରନ୍ଥଟିକୁ ମାନିନିଅ ଯାହା ତୁମମାନଙ୍କ ପାଖରେ ଥିବା ଗ୍ରନ୍ଥର ସମର୍ଥନ କରେ ଏବଂ ଏହା ସେହି ସମୟ ପୂର୍ବରୁ କର ଯେତେବେଳେ ଆମ୍ଭେ ତୁମମାନଙ୍କ ରୂପକୁ ବିକୃତ

କରି ମୁହଁକୁ ପଛ ଆଡ଼କୁ ବୁଲାଇଦେବୁ କିମ୍ବା ତୁମମାନଙ୍କୁ ସେହିପରି ଅଭିଶପ୍ତ କରିବୁ ଯେପରି ସେମାନଙ୍କୁ କରିଥିଲୁ ଯେଉଁମାନେ ଶନିବାର ଦିନ ବିଷୟରେ ଆଦେଶର ଉଲଂଘନ କରିଥିଲେ। (ମନେରଖ) ଅଲ୍ଲାହଙ୍କ ଆଦେଶ ଅବଶ୍ୟ କାର୍ଯ୍ୟକାରୀ ହୁଏ। ୪୮. ଅଲ୍ଲାହଙ୍କ ଈଶ୍ୱରତ୍ୱରେ ଅନ୍ୟ କାହାରିକୁ ଅଂଶୀଦାର କରିବା (ଅପରାଧକୁ) ଅଲ୍ଲାହ୍ ଆଦୌ କ୍ଷମା କରିବେନାହିଁ। ଏହା ବ୍ୟତୀତ ସେ ଯାହାର ଯେଉଁ ପାପ ଚାହିଁବେ କ୍ଷମା କରିଦେବେ। ଯିଏ ଅଲ୍ଲାହଙ୍କ ଈଶ୍ୱରତ୍ୱରେ ଅନ୍ୟକୁ ଅଂଶୀଦାର କରେ, ସେ ତାଙ୍କ ପ୍ରତି ଏକ ଗୁରୁତର ଆରୋପ କରେ ଏବଂ ମହାପାପ କରେ।

୪୯. କ'ଣ ତୁମେ ସେମାନଙ୍କୁ ଦେଖିନାହଁ ଯେଉଁମାନେ ନିଜକୁ ଭାରି ଶୁଦ୍ଧ ବୋଲି ଦମ୍ଭୋକ୍ତି କରନ୍ତି ? ଅଥଚ କେବଳ ଅଲ୍ଲାହ ଯାହାକୁ ଚାହାନ୍ତି ଶୁଦ୍ଧ କରନ୍ତି ଏବଂ କାହାରି ପ୍ରତି ଟିକିଏ ହେଲେ ଅନ୍ୟାୟ ହେବନାହିଁ। ୫୦. ଦେଖ ତ ! ଏମାନେ କିପରି ଅଲ୍ଲାହଙ୍କ ବିଷୟରେ ମିଥ୍ୟା ଗଢୁଛନ୍ତି। ପାପିଷ୍ଠ ହେବାପାଇଁ ଏହା ହିଁ ଯଥେଷ୍ଟ।

୫୧. ଯେଉଁମାନଙ୍କୁ ଦିବ୍ୟଗ୍ରନ୍ଥର କିଛି ଜ୍ଞାନ ମିଳିଥିଲା, କ'ଣ ତୁମେ ଦେଖୁନାହଁ ଯେ ସେମାନେ କିପରି ଅଣଈଶ୍ୱରକୁ (ଈଶ୍ୱର ବୋଲି) ମାନନ୍ତି ଏବଂ ନାସ୍ତିକମାନଙ୍କୁ ସମର୍ଥନ କରି କହନ୍ତି ଯେ ସେମାନେ ସଦ୍‌ବିଶ୍ୱାସୀମାନଙ୍କ ଅପେକ୍ଷା ଅଧିକ ସତ୍‌ପଥରେ ଅଛନ୍ତି ? ୫୨. ଅଲ୍ଲାହ୍ ଏମାନଙ୍କୁ ଧିକ୍କାର କରିଛନ୍ତି ଏବଂ ଅଲ୍ଲାହ୍ ଯାହାକୁ ଧିକ୍କାର କରନ୍ତି, ତାକୁ କେହି ସାହାଯ୍ୟ କରିବାର ତୁମେ ଦେଖିବନାହିଁ। ୫୩. କ'ଣ ଅଲ୍ଲାହଙ୍କ ଆଧିପତ୍ୟରେ ସେମାନଙ୍କର କିଛି ଭାଗ ଅଛି ? ଯଦି ଏପରି ହୁଅନ୍ତା, ସେମାନେ ଲୋକମାନଙ୍କୁ କାଣି କଉଡ଼ିଟିଏ ମଧ୍ୟ ଦିଅନ୍ତେନାହିଁ। ୫୪. କ'ଣ ସେମାନେ ଲୋକମାନଙ୍କୁ ଏହି କାରଣରୁ ଈର୍ଷା କରୁଛନ୍ତି ଯେ ଅଲ୍ଲାହ୍ ସେମାନଙ୍କ ପ୍ରତି କରୁଣା କଲେ ? ଆମ୍ଭେ ତ ଇବ୍ରାହିମଙ୍କ ବଂଶଜମାନଙ୍କୁ ମଧ୍ୟ ଗ୍ରନ୍ଥ ଓ ତତ୍ତ୍ୱଜ୍ଞାନ ଦେଇଥିଲୁ ଏବଂ ସେମାନଙ୍କୁ ବିଶାଳ ସାମ୍ରାଜ୍ୟର ଅଧିକାରୀ କରିଥିଲୁ। ୫୫. ପୁଣି ସେମାନଙ୍କ ମଧ୍ୟରୁ କେତେକ ଏହାକୁ ବିଶ୍ୱାସ କଲେ ଏବଂ ଆଉ କେତେକ ଅସ୍ୱୀକାର କରିଦେଲେ। ଏଭଳି ଲୋକମାନଙ୍କ

ପାଇଁ ଜଳନ୍ତା ନିଆଁ ଯଥେଷ୍ଟ ହେବ । ୫୬. ଯେଉଁମାନେ ଆମ ବାଣୀକୁ ଅବିଶ୍ୱାସ କଲେ, ଆମ୍ଭେ ନିଶ୍ଚୟ ସେମାନଙ୍କୁ ନିଆଁରେ ଦଗ୍ଧ କରିବୁ । ଯେତେବେଳେ ସେମାନଙ୍କର ଚମଡ଼ା ପୋଡ଼ିଯିବ, ଆମ୍ଭେ ତା' ସ୍ଥାନରେ ନୂଆ ଚମଡ଼ା ସୃଷ୍ଟି କରିଦେବୁ ଯେପରିକି ସେମାନେ ସର୍ବଦା ଶାସ୍ତିର ମଜା ଚାଖୁଥିବେ । ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ । ୫୭. ଯେଉଁମାନେ ବିଶ୍ୱାସ କଲେ ଏବଂ ଭଲ କର୍ମ କଲେ, ଆମ୍ଭେ ସେମାନଙ୍କୁ ସ୍ୱର୍ଗର ଏଭଳି ଉଦ୍ୟାନମାନଙ୍କରେ ରଖିବୁ ଯାହା ତଳେ ଝରଣା ପ୍ରବାହିତ ହୁଏ ଏବଂ ସେମାନେ ସେଠାରେ ଚିରକାଳ ରହିବେ । ସେଠାରେ ସେମାନଙ୍କୁ ପବିତ୍ର ଜୀବନସାଥୀ ମିଳିବେ ଏବଂ ଆମ୍ଭେ ସେମାନଙ୍କୁ (ସ୍ୱର୍ଗୋଦ୍ୟାନର) ଘନ ଛାୟାରେ ରଖିବୁ ।

୫୮. ଅଲ୍ଲାହ୍ ତୁମମାନଙ୍କୁ ନିର୍ଦ୍ଦେଶ ଦେଉଛନ୍ତି ଯେ ତୁମମାନଙ୍କ ପାଖରେ ଭରସା କରି ରଖାଯାଇଥିବା ଜିନିଷ ତା' ମାଲିକକୁ ଫେରସ୍ତ କର ଏବଂ ଯେତେବେଳେ ଲୋକଙ୍କ ମଧ୍ୟରେ ନିଷ୍ପତ୍ତି କର, ନ୍ୟାୟସଂଗତ ଭାବରେ କର । ଅଲ୍ଲାହ୍ ତୁମମାନଙ୍କୁ ଖୁବ୍ ଭଲ ଉପଦେଶ ଦେଉଛନ୍ତି । ଅଲ୍ଲାହ୍ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି ।

୫୯. ହେ ମୁସଲମାନଗଣ ! ଅଲ୍ଲାହଙ୍କର ଆଦେଶ ପାଳନ କର ଏବଂ ରସୁଲଙ୍କର ଆଦେଶ ପାଳନ କର ଏବଂ ତୁମମାନଙ୍କ ମଧ୍ୟରେ ଥିବା କ୍ଷମତାପ୍ରାପ୍ତ ବ୍ୟକ୍ତିମାନଙ୍କର ଆଦେଶ ମଧ୍ୟ ପାଳନ କର । ପୁଣି ଯଦି କୌଣସି ବିଷୟରେ ତୁମମାନଙ୍କ ମଧ୍ୟରେ ମତଭେଦ ହୁଏ, ତେବେ ଏହାକୁ ଅଲ୍ଲାହ୍ ଏବଂ ତାଙ୍କ ରସୁଲଙ୍କ ନିଷ୍ପତ୍ତି ପାଇଁ ସମର୍ପିତ କର ଯଦି ପ୍ରକୃତରେ ତୁମମାନେ ଅଲ୍ଲାହଙ୍କୁ ଏବଂ ବିଚାର ଦିନକୁ ବିଶ୍ୱାସ କରୁଥାଅ । ଏହା ସବୁଠାରୁ ଭଲ ପନ୍ଥା ଏବଂ ଏହାର ପରିଣାମ ମଧ୍ୟ ଭଲ ।

୬୦. (ହେ ବାର୍ତ୍ତାବହ !) କଣ ତୁମେ ସେହି ଲୋକମାନଙ୍କୁ ଦେଖିଲ ନାହଁ ଯେଉଁମାନେ ଦାବୀ କରନ୍ତି ଯେ ସେମାନେ ତୁମ ପାଖକୁ ପଠା ଯାଇଥିବା ଏବଂ ତୁମ ପୂର୍ବରୁ ପଠା ଯାଇଥିବା ଗ୍ରନ୍ଥଗୁଡ଼ିକୁ ବିଶ୍ୱାସ କରନ୍ତି କିନ୍ତୁ ସେମାନେ (ସେମାନଙ୍କ ବିବାଦର) ନିଷ୍ପତ୍ତି ମାନବରୂପୀ ଶଇତାନ ଦ୍ୱାରା କରାଇବାକୁ

ଚାହାନ୍ତି, ଅଥଚ ସେମାନଙ୍କୁ ତାକୁ ନମାନିବାକୁ ନିର୍ଦ୍ଦେଶ ଯାଇଥିଲା । ଶଇତାନ ସେମାନଙ୍କୁ ପଥଭ୍ରଷ୍ଟ କରି ବହୁଦୂର ନେଇ ଯିବାକୁ ଚାହେଁ । ୬୧. ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଅଲ୍ଲାହଙ୍କ ଗ୍ରନ୍ଥ ଏବଂ ତାଙ୍କ ରସୁଲଙ୍କ ଶିକ୍ଷା ଗ୍ରହଣ କରିନିଅ, ତୁମେ ଦେଖ ଯେ କପଟୀମାନେ ତୁମ ପାଖକୁ ଆସିବାକୁ କୁଣ୍ଠାବୋଧ କରୁଛନ୍ତି । ୬୨. ପୁଣି ଏହା କିପରି ହୁଏ ଯେ ଯେତେବେଳେ ସେମାନଙ୍କ ଉପରେ ସେମାନଙ୍କ କର୍ମ ଯୋଗୁଁ କିଛି ବିପଦ ପଡ଼େ, ସେମାନେ ତୁମ ପାଖକୁ ଆସି ଅଲ୍ଲାହଙ୍କ ରାଣ ଖାଇ କହନ୍ତି, "ଆମର କେବଳ ଶାନ୍ତି ଓ ସଂହତି ଛଡ଼ା ଅନ୍ୟ କିଛି ଉଦ୍ଦେଶ୍ୟ ନଥିଲା ?" ୬୩. ସେମାନଙ୍କ ମନରେ ଯାହା ଅଛି ଅଲ୍ଲାହ୍ ଜାଣନ୍ତି । ତେଣୁ, ସେମାନଙ୍କୁ ଛାଡ଼ିଦିଅ । ସେମାନଙ୍କୁ ବୁଝାଉ ଥାଅ ଏବଂ ସେମାନଙ୍କ ମନକୁ ଛୁଇଁଲା ପରି କଥା କହୁଥାଅ ।

୬୪. ଆମ୍ଭେ ଏଇଥିପାଇଁ ରସୁଲ ପଠାଇଥାଉ ଯେ ଅଲ୍ଲାହଙ୍କ ନିର୍ଦ୍ଦେଶ ଅନୁଯାୟୀ ତାଙ୍କର ଆଜ୍ଞାର ପାଳନ ହେଉ । ଯେଉଁମାନେ ନିଜ ପ୍ରତି ଅବିଚାର କଲେ, ଯଦି ସେମାନେ ତୁମ ପାଖକୁ ଆସି ଅଲ୍ଲାହଙ୍କଠାରୁ କ୍ଷମାପ୍ରାର୍ଥନା କରନ୍ତେ ଏବଂ ରସୁଲ୍ ମଧ୍ୟ ସେମାନଙ୍କ ପାଇଁ ପ୍ରାର୍ଥନା କରନ୍ତେ, ତା'ହେଲେ ସେମାନେ ଜାଣି ଥାଆନ୍ତେ ଯେ ଅଲ୍ଲାହ୍ କିଭଳି କ୍ଷମାଶୀଳ ଏବଂ କିଭଳି ଦୟାଳୁ ! ୬୫. (ହେ ରସୁଲ୍) ତୁମ ଈଶ୍ୱରଙ୍କ ରାଣ ! ଯେପର୍ଯ୍ୟନ୍ତ ସେମାନେ ପରସ୍ପର ମଧ୍ୟରେ ଥିବା ବିବାଦର ନିଷ୍ପତ୍ତି ପାଇଁ ତୁମକୁ ବିଚାରକ ନମାନିଛନ୍ତି, ସେପର୍ଯ୍ୟନ୍ତ ମୁସଲମାନ ହୋଇପାରିବେ ନାହିଁ । ପୁଣି ତୁମେ ଯାହା ନିଷ୍ପତ୍ତି କରିବ, ତାହାକୁ ଗ୍ରହଣ କରିବାରେ କୁଣ୍ଠାବୋଧ ନକରନ୍ତୁ ବରଂ ଖୁସି ମନରେ ମାନିନିଅନ୍ତୁ । ୬୬. ଯଦି ଆମ୍ଭେ ସେମାନଙ୍କୁ ନିଜର ପ୍ରାଣ ଦେବାର କିମ୍ବା ଘରଦ୍ୱାର ଛାଡ଼ିବାର ଆଦେଶ ଦେଇଥାଆନ୍ତୁ, ତେବେ ଖୁବ୍ ଅଳ୍ପ ଲୋକ ଏହା କରିଥାଆନ୍ତେ । ସେମାନଙ୍କୁ ଯାହା ଉପଦେଶ ଦିଆଯାଉଛି, ଯଦି ସେମାନେ ପାଳନ କରନ୍ତେ ତେବେ ସେମାନଙ୍କ ପକ୍ଷରେ ଖୁବ୍ ଭଲ ହୁଅନ୍ତା ଏବଂ ଏହା ସେମାନଙ୍କ ବିଶ୍ୱାସକୁ ଅଧିକ ଦୃଢ଼ କରନ୍ତା । ୬୭. ଆମ୍ଭେ ନିଜ ଆଡ଼ୁ ସେମାନଙ୍କୁ ଭଲ ପୁରସ୍କାର ଦିଅନ୍ତୁ ୬୮. ଏବଂ ସେମାନଙ୍କୁ ଠିକ୍ ବାଟରେ ନେଇ ଯାଆନ୍ତୁ । ୬୯. ଯିଏ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କର ଆଜ୍ଞା ପାଳନ କରେ, ସେ ଈଶ୍ୱରଦୂତ, ସାଧୁ, ଶହୀଦ୍ ଓ

ସଦାଚରୀମାନଙ୍କ ଗହଣରେ ରହିବ ଯେଉଁମାନଙ୍କୁ ଅଲ୍ଲାହ୍ ପୁରସ୍କୃତ କରିଛନ୍ତି । ସେମାନେ ସର୍ବୋତ୍ତମ ସାଥୀ । ୭୦. ଏହା ଅଲ୍ଲାହଙ୍କର କରୁଣା ଏବଂ ଅଲ୍ଲାହଙ୍କର ଜାଣିବା ହିଁ ଯଥେଷ୍ଟ ।

୭୧. ହେ ମୁସଲମାନଗଣ ! ନିଜର ସୁରକ୍ଷା ସରଂଜାମ ପ୍ରସ୍ତୁତ ରଖ । ଛୋଟଛୋଟ ଦଳରେ କିମ୍ବା ସମସ୍ତେ ଏକାଠି ମିଶି (ଯୁଦ୍ଧଯାତ୍ରାରେ) ବାହାର । ୭୨. ତୁମମାନଙ୍କ ଭିତରେ ଏମିତି ବ୍ୟକ୍ତି ମଧ୍ଯ ଅଛି ଯିଏ ଜାଣିଶୁଣି ପଛରେ ରହେ । ଯଦି (ରଣକ୍ଷେତ୍ରରେ) ତୁମମାନଙ୍କ ଉପରେ କୌଣସି ବିପଦ ପଡ଼େ, ତେବେ କହେ, “ଯାହାହେଉ, ଅଲ୍ଲାହଙ୍କ କୃପା ହେଲା ଯେ ମୁଁ ସେମାନଙ୍କ ସହିତ ନଥିଲି ।” ୭୩. ଏବଂ ଯଦି ତୁମମାନଙ୍କ ପ୍ରତି ଅଲ୍ଲାହଙ୍କର କୃପା ହୁଏ, ତେବେ ଅବଶୋଷ କରି କହେ, “ଆହା ! ଯଦି ମୁଁ ସେମାନଙ୍କ ସହିତ ଥାଆନ୍ତି ତେବେ ମୋତେ ବହୁତକିଛି ମିଳି ଥାଆନ୍ତା ।” ସେ ଏମିତି କହେ ସତେଯେମିତି ତୁମମାନଙ୍କ ସହିତ ତା’ର କୌଣସି ସଂପର୍କ ନଥିଲା । ୭୪. ଯେଉଁମାନେ ପରଲୋକ ବିନିମୟରେ ଇହଲୋକର ଜୀବନକୁ ବିକିଦେବା ପାଇଁ ଇଚ୍ଛୁକ, ସେମାନେ ଅଲ୍ଲାହଙ୍କ ମାର୍ଗରେ ଯୁଦ୍ଧ କରିବା ଉଚିତ ଏବଂ ଯିଏ ଅଲ୍ଲାହଙ୍କ ମାର୍ଗରେ ଯୁଦ୍ଧ କରେ, ସେ ନିହତ ହେଉ ବା ବିଜୟୀ ହେଉ, ଆମ୍ଭେ ତାକୁ ଖୁବ୍ ଭଲ ପୁରସ୍କାର ଦେବୁ ।

୭୫. ତୁମମାନଙ୍କର କ’ଣ ହେଲା ଯେ ତୁମେମାନେ ଅଲ୍ଲାହଙ୍କ ମାର୍ଗରେ ସେହି ଅସହାୟ ପୁରୁଷ, ମହିଳା ଓ ଶିଶୁମାନଙ୍କ ପାଇଁ ଲଢୁନାହଁ ଯେଉଁମାନେ ବିକଳ ହୋଇ ଗୁହାରି କରୁଛନ୍ତି, “ହେ ପ୍ରଭୁ ! ଆମକୁ ଏହି ସହରରୁ ଉଦ୍ଧାର କର ଯାହାର ବାସିନ୍ଦାମାନେ ଅତ୍ୟାଚାରୀ ଏବଂ ଆମମାନଙ୍କୁ ରକ୍ଷା କରିବା ପାଇଁ ନିଜ ତରଫରୁ କାହାରିକୁ ପଠାଅ ଏବଂ କାହାରିକୁ ଆମର ସହାୟ୍ୟକାରୀ ରୂପେ ନିଯୁକ୍ତ କରିଦିଅ ।” ୭୬. ଯେଉଁମାନେ ସଦ୍‌ବିଶ୍ୱାସୀ, ସେମାନେ ଅଲ୍ଲାହଙ୍କ ମାର୍ଗରେ ଲଢ଼ନ୍ତି ଏବଂ ଯେଉଁମାନେ ମିଥ୍ୟାବିଶ୍ୱାସୀ, ସେମାନେ ଶଇତାନର ମାର୍ଗରେ ଲଢ଼ନ୍ତି । ତେଣୁ, ତୁମେମାନେ ଶଇତାନର ସାଥୀମାନଙ୍କ ବିରୁଦ୍ଧରେ ଲଢ଼ । ଶଇତାନର ଚାଲ୍ ପ୍ରକୃତରେ ଦୁର୍ବଳ ।

୭୭. କ’ଣ ତୁମେ ସେମାନଙ୍କୁ ଦେଖିନାହିଁ ଯେଉଁମାନଙ୍କୁ କୁହା ଯାଇଥିଲା ଯେ ଶକ୍ତିପ୍ରୟୋଗରୁ ବିରତ ରୁହ, ନମାଜପାଠ କର ଏବଂ ଜକାତ୍ ଦିଅ, କିନ୍ତୁ

ଯେତେବେଳେ ସେମାନଙ୍କୁ ଯୁଦ୍ଧର ଆଦେଶ ଦିଆଗଲା, ସେମାନଙ୍କ ମଧ୍ୟରୁ କିଛି ଲୋକ ମନୁଷ୍ୟମାନଙ୍କୁ ଏମିତି ଭୟ କଲେ ଯେମିତି ଅଲ୍ଲାହଙ୍କୁ ଭୟ କରାଯାଏ, ବରଂ ତାହାଠାରୁ ଅଧିକ। ସେମାନେ କହିଲେ, "ହେ ପ୍ରଭୁ! ଆମକୁ ଯୁଦ୍ଧର ଆଦେଶ କାହିଁକି ଦେଲ? ଆମକୁ କାହିଁକି ଆଉ ଟିକିଏ ସମୟ ଦେଲନାହିଁ ?" କହିଦିଅ! "ସଂସାରର ସୁଖ କ୍ଷଣସ୍ଥାୟୀ କିନ୍ତୁ ଧର୍ମପରାୟଣ ଲୋକଙ୍କ ପାଇଁ ପରଲୋକ ସବୁଠାରୁ ଭଲ। ତୁମମାନଙ୍କ ପ୍ରତି ତିଳେହେଲେ ଅନ୍ୟାୟ ହେବନାହିଁ। ୭୮. ତୁମେମାନେ ଯେଉଁଠି ଥିଲେ ମଧ୍ୟ ମୃତ୍ୟୁ ତୁମମାନଙ୍କୁ ଛାଡ଼ିବନାହିଁ ଯଦିଓ ତୁମେମାନେ ସୁଦୃଢ଼ ଦୁର୍ଗ ଭିତରେ ଥାଅ।" ଯେତେବେଳେ ସେମାନଙ୍କର କୌଣସି ଫାଇଦା ହୁଏ, ସେମାନେ କହନ୍ତି ଯେ ଏହା ଅଲ୍ଲାହଙ୍କ କୃପାରୁ ହେଲା କିନ୍ତୁ ଯେତେବେଳେ କିଛି କ୍ଷତି ହୁଏ, ସେତେବେଳେ ତୁମକୁ କହନ୍ତି ଯେ ଏତକ ତୁମ ଯୋଗୁଁ ହେଲା। କହିଦିଅ ଯେ ସବୁକିଛି ଅଲ୍ଲାହଙ୍କ ଆଜ୍ଞାରୁ ହୁଏ। ସେମାନଙ୍କର କ'ଣ ହେଲା ଯେ କୌଣସି କଥା ବୁଝୁନାହାନ୍ତି? ୭୯. (ହେ ମନୁଷ୍ୟ!) ତୋ'ର ଯାହା ମଂଗଳ ହୁଏ ତାହା ଅଲ୍ଲାହଙ୍କ କୃପାରୁ ହୁଏ ଏବଂ ଯାହା ଅମଂଗଳ ହୁଏ ତାହା ତୋ' ନିଜ କର୍ମ ଯୋଗୁଁ ହୁଏ। (ହେ ରସୁଲ!) ଆମ୍ଭେ ତୁମକୁ ଲୋକମାନଙ୍କ ପାଖକୁ ବାର୍ତ୍ତାବହ କରି ପଠାଇଛୁ ଏବଂ ଅଲ୍ଲାହ୍ ଏହାର ସାକ୍ଷୀ ରୂପେ ଯଥେଷ୍ଟ।

୮୦. ଯିଏ ରସୁଲଙ୍କର ଆଜ୍ଞା ପାଳନ କରେ ସେ ଅଲ୍ଲାହଙ୍କର ଆଜ୍ଞା ପାଳନ କରେ ଏବଂ ଯିଏ ଅବଜ୍ଞା କରେ (ସେ ଜାଣିରଖୁ ଯେ) ଆମ୍ଭେ ତୁମକୁ ସେମାନଙ୍କୁ ଜଗିବା ପାଇଁ ପଠାଇନାହୁଁ। ୮୧. ସେମାନେ ତୁମ ଆନୁଗତ୍ୟର କଥା କହନ୍ତି, କିନ୍ତୁ ତୁମ ପାଖରୁ ଯିବାପରେ ରାତିରେ ସେମାନଙ୍କ ମଧ୍ୟରୁ ଦଳେ ଲୋକ ତୁମ ବିରୁଦ୍ଧରେ ମନ୍ତ୍ରଣା କରନ୍ତି। ସେମାନେ ଯାହା ମନ୍ତ୍ରଣା କରନ୍ତି, ଅଲ୍ଲାହ୍ ତାହା ଲେଖି ରଖୁଛନ୍ତି। ତୁମେ ସେମାନଙ୍କ ପ୍ରତି ଧ୍ୟାନ ଦିଅନାହିଁ ଏବଂ ଅଲ୍ଲାହଙ୍କ ପ୍ରତି ଭରସା ରଖ। ତୁମର କାର୍ଯ୍ୟସିଦ୍ଧି ପାଇଁ ଅଲ୍ଲାହ୍ ଯଥେଷ୍ଟ। ୮୨. କ'ଣ ସେମାନେ କୁରଆନ ପ୍ରତି ଧ୍ୟାନ ଦେଉନାହାନ୍ତି? ଯଦି ଏହା ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ରଚନା ହୋଇ ଥାଆନ୍ତା, ତେବେ ସେମାନେ ଏଥିରେ ଅନେକ ଭିନ୍ନତା ଦେଖିବାକୁ ପାଆନ୍ତେ।

୮୩. ଯେତେବେଳେ ସେମାନଙ୍କୁ କୌଣସି ଶାନ୍ତିପ୍ରଦ କିମ୍ବା ଭୀତିପ୍ରଦ ସୂଚନା ମିଳେ, ସେମାନେ (ସତ୍ୟାସତ୍ୟ ଅନୁସନ୍ଧାନ ନକରି) ଏହାକୁ ପ୍ରଚାର କରିଦିଅନ୍ତି । ଯଦି ସେମାନେ ରସୁଲଙ୍କୁ କିମ୍ବା ସେମାନଙ୍କ ମଧ୍ୟରେ ଥିବା କ୍ଷମତାପ୍ରାପ୍ତ ବ୍ୟକ୍ତିମାନଙ୍କୁ ଏହି ଖବର ଦିଅନ୍ତେ, ତା'ହେଲେ ସେମାନେ ଘଟଣାର ଅନୁସନ୍ଧାନ କରି ଏହାର ପ୍ରକୃତ ସତ୍ୟତା ଜାଣିପାରନ୍ତେ । ଯଦି ତୁମମାନଙ୍କ ପ୍ରତି ଅଲ୍ଲାହଙ୍କର କୃପା ଓ କରୁଣା ନଥାଆନ୍ତା ତେବେ ଅଳ୍ପ କେଇଜଣଙ୍କ ବ୍ୟତୀତ ତୁମେ ସମସ୍ତେ ଶଇତାନର ଅନୁଗତ ହୋଇ ଯାଇଥାଆନ୍ତ ।

୮୪. ସୁତରାଂ (ହେ ରସୁଲ !) ଅଲ୍ଲାହଙ୍କ ମାର୍ଗରେ ଯୁଦ୍ଧ କର । ତୁମ ଉପରେ ତୁମ ନିଜ ବ୍ୟତୀତ ଅନ୍ୟ କାହାରି ଦାୟିତ୍ୱ ନାହିଁ । ହଁ, ସଦ୍‌ବିଶ୍ୱାସୀମାନଙ୍କୁ ଉତ୍ସାହିତ କରୁଥାଅ । ଖୁବ୍‌ଶୀଘ୍ର ଅଲ୍ଲାହ୍ ନାସ୍ତିକମାନଙ୍କର ପରାକ୍ରମ ଭାଂଗିଦେବେ । ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ସେ କଠୋର ଶାସ୍ତି ଦିଅନ୍ତି । ୮୫. ଯିଏ କୌଣସି ଭଲ କର୍ମ କରିବା ପାଇଁ ଅନ୍ୟକୁ ପ୍ରୋତ୍ସାହିତ କରିବ, ସେଥିରେ ତା'ର ଭାଗ ରହିବ ଏବଂ ଯିଏ କୌଣସି କୁକର୍ମ ପାଇଁ ପ୍ରରୋଚିତ କରିବ, ସେ ସେହି ପାପରେ ଭାଗୀଦାର ହେବ । ଅଲ୍ଲାହ୍ ସବୁକିଛି କରିପାରନ୍ତି ।

୮୬. ଯଦି କେହି ତୁମକୁ ଶୁଭେଚ୍ଛା ଜଣାଏ, ତେବେ ତୁମେ (ପ୍ରତ୍ୟୁତ୍ତରରେ) ତା' ଅପେକ୍ଷା ଭଲ ଶୁଭେଚ୍ଛା ଜଣାଅ କିମ୍ବା ଅନ୍ତତଃ ସେହିଭଳି (ଶବ୍ଦରେ) ପ୍ରତ୍ୟୁତ୍ତର ଦିଅ । ଅଲ୍ଲାହ୍ ସବୁ କଥାର ହିସାବ ନେବେ । ୮୭. ଅଲ୍ଲାହ୍ ସିଏ, ଯାହାଙ୍କ ବ୍ୟତୀତ କେହି ଈଶ୍ୱର ନାହାନ୍ତି । ସେ ତୁମ ସମସ୍ତଙ୍କୁ ପ୍ରଳୟ ଦିନ ନିଶ୍ଚୟ ଏକାଠି କରିବେ ଯେଉଁଥିରେ କୌଣସି ସନ୍ଦେହ ନାହିଁ । ଅଲ୍ଲାହଙ୍କ ଅପେକ୍ଷା ଆଉ କାହା କଥା ଅଧିକ ସତ ହୋଇପାରେ ?

୮୮. ତୁମମାନଙ୍କର କ'ଣ ହେଲା ଯେ ତୁମେମାନେ କପଟୀମାନଙ୍କ ବିଷୟରେ ଦୁଇ ଦଳ ହୋଇଗଲ, ଅଥଚ ଅଲ୍ଲାହ୍ ସେମାନଙ୍କୁ ସେମାନଙ୍କ କର୍ମ ଯୋଗୁଁ ପଥଭ୍ରଷ୍ଟ କରି ଦେଇଛନ୍ତି । କ'ଣ ଅଲ୍ଲାହ୍ ଯାହାକୁ ପଥଭ୍ରଷ୍ଟ କରିଛନ୍ତି ତୁମେମାନେ ତାକୁ ବାଟକୁ ଆଣିବାକୁ ଚାହୁଁଛ ? (ହେ ବାର୍ତ୍ତାବହ !) ଅଲ୍ଲାହ୍ ଯାହାକୁ ପଥଭ୍ରଷ୍ଟ କରିଦିଅନ୍ତି, ତୁମେ ତାକୁ ବାଟ ଦେଖାଇ ପାରିବନାହିଁ । ୮୯. ସେମାନେ

ଚାହୁଁଛନ୍ତି ଯେ ଯେମିତି ସେମାନେ ନାସ୍ତିକ ହେଲେ ତୁମେମାନେ ମଧ୍ୟ ସେମିତି ନାସ୍ତିକ ହୋଇଯାଅ ଯେପରିକି ସେମାନଙ୍କ ସହିତ ସମାନ ହୋଇଯିବ । ତେଣୁ, (ହେ ମୁସଲମାନଗଣ !), ସେମାନେ ଅଲ୍ଲାହଙ୍କ ମାର୍ଗରେ ଘରଦ୍ୱାର ନଛାଡ଼ିବା ପର୍ଯ୍ୟନ୍ତ ସେମାନଙ୍କ ମଧ୍ୟରୁ କାହାରି ସହିତ ବନ୍ଧୁତା କରନାହିଁ । ଯଦି ସେମାନେ ଏହା ନକରନ୍ତି, ତେବେ ସେମାନଙ୍କୁ ଧର ଏବଂ ଯେଉଁଠି ପାଅ ହତ୍ୟା କର । ସେମାନଙ୍କ ମଧ୍ୟରୁ କାହାରିକୁ ନିଜର ମିତ୍ର ବା ସାହାଯ୍ୟକାରୀ ମନେ କରନାହିଁ । ୯୦. ଅବଶ୍ୟ ସେମାନଙ୍କ ବ୍ୟତୀତ, ଯେଉଁମାନଙ୍କର ଏଭଳି ଗୋଷ୍ଠୀ ସହିତ ସଂପର୍କ ଅଛି ଯେଉଁମାନଙ୍କ ସହିତ ତୁମମାନଙ୍କର ସନ୍ଧି ହୋଇଛି ବା ଯେଉଁମାନେ ଏଭଳି ଅବସ୍ଥାରେ ଆସନ୍ତି ଯେ ସେମାନେ ତୁମମାନଙ୍କ ବିରୁଦ୍ଧରେ ଲଢ଼ିବାକୁ ଚାହାନ୍ତି ନାହିଁ କିମ୍ବା ସେମାନଙ୍କ ନିଜ ସଂପ୍ରଦାୟ ବିରୁଦ୍ଧରେ ମଧ୍ୟ (ଲଢ଼ିବାକୁ ଚାହାନ୍ତି ନାହିଁ) । ଯଦି ଅଲ୍ଲାହ୍ ଇଚ୍ଛା କରନ୍ତେ, ସେମାନଙ୍କୁ ତୁମମାନଙ୍କ ବିରୁଦ୍ଧରେ ଠିଆ କରିଦିଅନ୍ତେ ଏବଂ ସେମାନେ ନିଶ୍ଚୟ ତୁମମାନଙ୍କ ବିରୁଦ୍ଧରେ ଲଢ଼ନ୍ତେ । ତେଣୁ, ଯଦି ସେମାନେ ତୁମମାନଙ୍କଠାରୁ ଦୂରେଇ ରହନ୍ତି ଏବଂ ତୁମମାନଙ୍କ ସହ ଯୁଦ୍ଧ ନକରନ୍ତି ବା ତୁମମାନଙ୍କୁ ସନ୍ଧି ପ୍ରସ୍ତାବ ଦିଅନ୍ତି, ତେବେ ସେମାନଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ କରିବାର ଅଧିକାର ଅଲ୍ଲାହ୍ ତୁମମାନଙ୍କୁ ଦେଇନାହାନ୍ତି । ୯୧. ତୁମେ ଏଭଳି ଆଉ କିଛି ଲୋକଙ୍କୁ ଦେଖିବ ଯେଉଁମାନେ ତୁମମାନଙ୍କଠାରୁ ଏବଂ ନିଜ ସଂପ୍ରଦାୟଠାରୁ ମଧ୍ୟ ନିରାପଦରେ ରହିବାକୁ ଚାହାନ୍ତି ମାତ୍ର ଯେତେବେଳେ ସେମାନଙ୍କୁ ଅଶାନ୍ତି ସୃଷ୍ଟି କରିବାର ସୁଯୋଗ ମିଳେ, ସେମାନେ ସେଥିରେ ଡେଇଁପଡନ୍ତି । ତେଣୁ, ଯଦି ଏଭଳି ଲୋକମାନେ ତୁମମାନଙ୍କଠାରୁ ହଟି ନଯାଆନ୍ତି ବା ସନ୍ଧି ପ୍ରସ୍ତାବ ନଦିଅନ୍ତି ବା ତୁମ ସହିତ ଲଢ଼ିବାରୁ କ୍ଷାନ୍ତ ନହୁଅନ୍ତି, ତେବେ ସେମାନଙ୍କୁ ଧର ଏବଂ ଯେଉଁଠି ପାଅ ହତ୍ୟା କର । ଏହିଭଳି ଲୋକମାନଙ୍କ ବିରୁଦ୍ଧରେ ଆମ୍ଭେ ତୁମମାନଙ୍କୁ ପରିଷ୍କାର କ୍ଷମତା ଦେଇଛୁ ।

୯୨. ଜଣେ ସଦ୍‌ବିଶ୍ୱାସୀ ପକ୍ଷରେ କୌଣସି ସଦ୍‌ବିଶ୍ୱାସୀକୁ ହତ୍ୟା କରିବା ଆଦୌ ଉଚିତ ନୁହେଁ କିନ୍ତୁ ଯଦି ଏହା ଭୁଲବଶତଃ ହୋଇଯାଏ ତେବେ ଭିନ୍ନ କଥା । ଯିଏ କୌଣସି ସଦ୍‌ବିଶ୍ୱାସୀକୁ ଭୁଲ୍‌ବଶତଃ ହତ୍ୟା କରିଦିଏ, ତେବେ (ଏହାର ପ୍ରାୟଶ୍ଚିତ ରୂପେ) ସେ ଜଣେ ମୁସଲମାନ ଦାସକୁ ମୁକ୍ତ କରୁ ଏବଂ ନିହତ ବ୍ୟକ୍ତିର

ପରିଜନଙ୍କୁ (ନରହତ୍ୟାର) କ୍ଷତିପୂରଣ ଦେଉ, ମାତ୍ର ଯଦି ସେମାନେ କ୍ଷମା କରିଦିଅନ୍ତି ତେବେ ଭିନ୍ନ କଥା। ଯଦି ସେ ନିହତ ବ୍ୟକ୍ତି ଏଭଳି ସଂପ୍ରଦାୟର ହୋଇଥାଏ ଯାହା ସହିତ ତୁମର ଶତ୍ରୁତା ଅଛି କିନ୍ତୁ ସେ ଜଣେ ସଦ୍‌ବିଶ୍ୱାସୀ ଥିଲା ତେବେ ଜଣେ ମୁସଲମାନ ଦାସକୁ ମୁକ୍ତ କରିବା ବିଧେୟ, ଆଉ ଯଦି ସେ ଏଭଳି ସଂପ୍ରଦାୟର ଥିଲା ଯାହା ସହିତ ତୁମମାନଙ୍କର ସନ୍ଧି ହୋଇଛି ତେବେ ତା' ପରିଜନମାନଙ୍କୁ କ୍ଷତିପୂରଣ ଦେବା ଏବଂ ଜଣେ ମୁସଲମାନ ଦାସକୁ ମୁକ୍ତ କରିବା ବିଧେୟ। ଯାହାର ଏହି ସାମର୍ଥ୍ୟ ନାହିଁ, ତା'ପକ୍ଷରେ କ୍ରମାଗତ ଭାବରେ ଦୁଇମାସ ଉପବାସ ପାଳନ କରିବା ବିଧେୟ। ତୁମମାନଙ୍କ ପାପର ପ୍ରାୟଶ୍ଚିତ ପାଇଁ ଏହା ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ପନ୍ଥା। ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ। ୯୩. ଯିଏ କୌଣସି ସଦ୍‌ବିଶ୍ୱାସୀକୁ ଜାଣିଶୁଣି ହତ୍ୟା କରେ, ସେ ନର୍କଦଣ୍ଡ ଭୋଗିବ ଏବଂ ସେଠାରେ ସର୍ବଦା ରହିବ। ସେ ଅଲ୍ଲାହଙ୍କ କ୍ରୋଧର ଶିକାର ହେବ ଏବଂ ତାଙ୍କଦ୍ୱାରା ଅଭିଶପ୍ତ ହେବ। ଅଲ୍ଲାହ୍ ତା'ପାଇଁ କଠିନ ଶାସ୍ତି ପ୍ରସ୍ତୁତ କରି ରଖିଛନ୍ତି।

୯୪. ହେ ମୁସଲମାନଗଣ! ଅଲ୍ଲାହଙ୍କ ମାର୍ଗରେ ବାହାରିଥିବା ବେଳେ ଭଲ ଭାବରେ ଅନୁସନ୍ଧାନ କର ଏବଂ ଯଦି କେହି ତୁମକୁ (ସଲାମ କହି) ଶୁଭେଚ୍ଛା ଜଣାଏ ତେବେ କିଛି ପାର୍ଥିବ ବସ୍ତୁ ହାସଲ କରିବା ପାଇଁ ତାକୁ ଏହା କହିଦିଅନା ଯେ ତୁ ମୁସଲମାନ ନୁହଁ। ଅଲ୍ଲାହଙ୍କ ପାଖରେ ବିଜୟଲବ୍ଧ ଧନର ବିପୁଳ ଭଣ୍ଡାର ଅଛି। ଏହାପୂର୍ବରୁ ତୁମେମାନେ ମଧ୍ୟ ଏହିପରି ଥିଲ। ପୁଣି ଅଲ୍ଲାହ୍ ତୁମମାନଙ୍କ ପ୍ରତି କୃପା କଲେ। ତେଣୁ, ଭଲ ଭାବରେ ଅନୁସନ୍ଧାନ କର। ତୁମେମାନେ ଯାହା କରୁଛ ଅଲ୍ଲାହ୍ ଜାଣନ୍ତି।

୯୫. ନିଜ ଧନ ଓ ଜୀବନ ଉତ୍ସର୍ଗ କରି ଅଲ୍ଲାହଙ୍କ ମାର୍ଗରେ ସଂଘର୍ଷ କରୁଥିବା ମୁସଲମାନମାନେ ସେହି ମୁସଲମାନମାନଙ୍କ ସହିତ ସମାନ ନୁହନ୍ତି ଯେଉଁମାନେ ଯଥାର୍ଥ କାରଣ ବିନା (ଘରେ) ବସିରହନ୍ତି। ଘରେ ବସି ରହିଥିବା ଲୋକମାନଙ୍କ ତୁଳନାରେ ନିଜର ଧନଜୀବନ ଦେଇ ଜିହାଦ୍ କରୁଥିବା ଲୋକମାନଙ୍କୁ ଅଲ୍ଲାହ୍ ଅଧିକ ମର୍ଯ୍ୟାଦା ଦେଇଛନ୍ତି। (ଅବଶ୍ୟ) ଅଲ୍ଲାହ୍ ସମସ୍ତଙ୍କୁ ଭଲ ପୁରସ୍କାର ଦେବାର ପ୍ରତିଶ୍ରୁତି ଦେଇଛନ୍ତି ମାତ୍ର ବସି ରହିଥିବା ଲୋକଙ୍କ

ତୁଳନାରେ ଜିହାଦ୍ କରୁଥିବା ଲୋକଙ୍କ ପାଇଁ ସେ ବିଶେଷ ପୁରସ୍କାର ରଖିଛନ୍ତି । ୯୬. ସେମାନଙ୍କୁ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ମିଳିବ ଏବଂ ଅଲ୍ଲାହଙ୍କର ଅପାର କ୍ଷମା ଓ ଅସୀମ କରୁଣା ମଧ୍ୟ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ ।

୯୭. ଯେଉଁମାନେ ନିଜ ପ୍ରତି ଅନ୍ୟାୟ କଲେ, ଦେବଦୂତମାନେ ସେମାନଙ୍କ ଆତ୍ମାକୁ ହରଣ କଲାବେଳେ ପଚାରିବେ, “ତୁମେମାନେ କିପରି ଅବସ୍ଥାରେ ଥିଲ ?” ସେମାନେ ଉତ୍ତର ଦେବେ “ଆମେ (ସେହି) ଦେଶରେ ଭାରି ଅସହାୟ ଥିଲୁ ।” ଦେବଦୂତମାନେ ପଚାରିବେ, “କ’ଣ ଅଲ୍ଲାହଙ୍କ ପୃଥିବୀ ଯଥେଷ୍ଟ ବିଶାଳ ନଥିଲା ? ତୁମେମାନେ ସେହି ଅଂଚଳରୁ ଅନ୍ୟ ସ୍ଥାନକୁ ଯାଇପାରି ଥାଆନ୍ତ ।” ଏଭଳି ଲୋକମାନେ ନର୍କରେ ରହିବେ ଏବଂ ଏହା ଏକ କଦର୍ଯ୍ୟ ସ୍ଥାନ । ୯୮. ହଁ, ସେହି ପୁରୁଷ, ମହିଳା ଓ ପିଲାମାନଙ୍କର କଥା ଭିନ୍ନ ଯେଉଁମାନେ ଅସହାୟ ହୋଇ ପଡ଼ିଛନ୍ତି ଏବଂ (ବାହାରି ଯିବାର) କୌଣସି ବାଟ ପାଉନାହାନ୍ତି, ୯୯. ଅଲ୍ଲାହ୍ ସେମାନଙ୍କୁ କ୍ଷମା କରିଦେଇ ପାରନ୍ତି । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଏବଂ ଦୋଷମାର୍ଜନାକାରୀ । ୧୦୦. ଯିଏ ଅଲ୍ଲାହଙ୍କ ମାର୍ଗରେ ଘରଦ୍ୱାର ଛାଡ଼ିବ, ସେ ଧରାପୃଷ୍ଠରେ ବସବାସ କରିବା ପାଇଁ ଯଥେଷ୍ଟ ସ୍ଥାନ ଓ ପର୍ଯ୍ୟାପ୍ତ ସାଧନ ପାଇବ । ଯେଉଁ ବ୍ୟକ୍ତି ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ ମାର୍ଗରେ ଘରଦ୍ୱାର ଛାଡ଼ି ବାହାରେ ଏବଂ ପୁଣି ତା’ର ମୃତ୍ୟୁ ହୋଇଯାଏ, ତାକୁ ପୁରସ୍କୃତ କରିବା ଅଲ୍ଲାହଙ୍କ ଦାୟିତ୍ୱ ହୋଇଗଲା । (ଜାଣିରଖ) ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ ।

୧୦୧. ଯାତ୍ରା କରୁଥିବା ସମୟରେ ନମାଜ ସଂକ୍ଷିପ୍ତ କରିଦେଲେ ତୁମମାନଙ୍କର ଦୋଷ ହେବନାହିଁ (ବିଶେଷତଃ) ଯେତେବେଳେ ତୁମମାନଙ୍କୁ ଆଶଂକା ହୁଏ ଯେ ମିଥ୍ୟାବିଶ୍ୱାସୀମାନେ ତୁମକୁ କଷ୍ଟ ଦେବେ । ମିଥ୍ୟାବିଶ୍ୱାସୀମାନେ ତୁମମାନଙ୍କର ପରମ ଶତ୍ରୁ । ୧୦୨. (ହେ ବାର୍ତ୍ତାବହ!) ଯଦି ତୁମେ ମୁସଲମାନମାନଙ୍କ ଗହଣରେ ଥାଅ ଏବଂ (ଯୁଦ୍ଧ ସମୟରେ) ସେମାନଙ୍କୁ ନମାଜପାଠ କରାଉଥାଅ, ତେବେ (ମୁସଲମାନମାନଙ୍କର) ଗୋଟିଏ ଦଳ ଅସ୍ତ୍ର ଧରି ତୁମ ସହିତ (ନମାଜରେ) ଠିଆହେଉ । ପୁଣି ପ୍ରଣାମ କରିସାରିବା ପରେ ଏମାନେ ତୁମ ପଛକୁ ଚାଲିଯାଆନ୍ତୁ ଏବଂ ନମାଜପାଠ କରି ନଥିବା ଅନ୍ୟ ଦଳଟି ଆସି ତୁମ

ସହିତ ନମାଜରେ ଯୋଗଦେଉ। ସେମାନେ ମଧ୍ୟ ସାବଧାନ ରହନ୍ତୁ ଏବଂ ଶସ୍ତ୍ରଧାରଣ କରିଥାଆନ୍ତୁ। ନାସ୍ତିକ ଶତ୍ରୁମାନେ ଛକି ରହିଛନ୍ତି ଯେ ତୁମେମାନେ ନିଜର ଅସ୍ତ୍ରଶସ୍ତ୍ର ବା ଯୁଦ୍ଧ ସରଂଜାମ ବିଷୟରେ ଟିକିଏ ଅସାବଧାନ ହେଲେ, ସେମାନେ ତୁମମାନଙ୍କ ଉପରେ ଅତର୍କିତ ଆକ୍ରମଣ କରିଦେବେ। ହଁ, ଯଦି ବର୍ଷା ଯୋଗୁଁ ତୁମମାନଙ୍କୁ ଅସୁବିଧା ହୁଏ ବା ତୁମେମାନେ ଅସୁସ୍ଥ ଥାଅ ତେବେ ଅସ୍ତ୍ରଶସ୍ତ୍ର କାଢ଼ିଦେଲେ ତୁମମାନଙ୍କର ଦୋଷ ହେବନାହିଁ, ମାତ୍ର ସାବଧାନ ଅବଶ୍ୟ ରୁହ। ଅଲ୍ଲାହ୍ ନାସ୍ତିକମାନଙ୍କ ପାଇଁ ଲାଂଛନାଦାୟକ ଶାସ୍ତି ପ୍ରସ୍ତୁତ କରି ରଖିଛନ୍ତି। ୧୦୩. ପୁଣି ନମାଜ ସଂପାଦନ କରି ସାରିଲା ପରେ ମଧ୍ୟ ଛିଡ଼ା ହୋଇଥିବା, ବସିଥିବା ଏବଂ ଶୋଇଥିବା ଅବସ୍ଥାରେ ଅଲ୍ଲାହଙ୍କୁ ସ୍ମରଣ କରୁଥାଅ। ପୁଣି ଯେତେବେଳେ ନିଜକୁ ନିରାପଦ ମନେକର, ସେତେବେଳେ (ଯଥାବିଧି) ନମାଜ ସଂପାଦନ କର। ବିଶ୍ୱାସ କରିଥିବା ଲୋକଙ୍କ ପାଇଁ ନିର୍ଦ୍ଧାରିତ ସମୟାନୁଯାୟୀ ନମାଜ ସଂପାଦନ କରିବା ଅପରିହାର୍ଯ୍ୟ। ୧୦୪. ସେମାନଙ୍କର ପିଛା କରିବାରେ ହେଳା କରନାହିଁ। ଯଦି ତୁମମାନଙ୍କୁ କଷ୍ଟ ହେଉଛି, ତେବେ ସେମାନେ ମଧ୍ୟ ତୁମମାନଙ୍କ ପରି କଷ୍ଟ ଭୋଗୁଛନ୍ତି କିନ୍ତୁ ତୁମେମାନେ ଅଲ୍ଲାହଙ୍କଠାରୁ ଏଭଳି ଆଶା ରଖିଛ, ଯେଭଳି ଆଶା ସେମାନଙ୍କର ନାହିଁ। ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ।

୧୦୫. (ହେ ବାର୍ତ୍ତାବହ!) ଆମ୍ଭେ ତୁମ ପାଖକୁ ସଦ୍‌ଗ୍ରନ୍ଥ ପଠାଇଛୁ ଯେପରିକି ତୁମେ ଅଲ୍ଲାହଙ୍କ ଶିକ୍ଷା ଅନୁଯାୟୀ ଲୋକଙ୍କ ମଧ୍ୟରେ ନିଷ୍ପତ୍ତି କରିବ। ତୁମେ କଦାପି ବିଶ୍ୱାସଘାତକମାନଙ୍କର ପକ୍ଷ ସମର୍ଥନ କରନାହିଁ। ୧୦୬. ଅଲ୍ଲାହଙ୍କ ପାଖରେ କ୍ଷମାପ୍ରାର୍ଥନା କରୁଥାଅ। ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ। ୧୦୭. ଯେଉଁମାନେ ନିଜ ସହିତ ଛଳନା କରନ୍ତି, ସେମାନଙ୍କର ପକ୍ଷ ନେଇ ଓକିଲାତି କରନାହିଁ। ଅଲ୍ଲାହ୍ ଏଭଳି ବିଶ୍ୱାସଘାତକ ପାପୀମାନଙ୍କୁ ପସନ୍ଦ କରନ୍ତିନାହିଁ। ୧୦୮. ସେମାନେ ମଣିଷମାନଙ୍କଠାରୁ (ନିଜର କୁକର୍ମ) ଲୁଚାଇ ଦିଅନ୍ତି କିନ୍ତୁ ଅଲ୍ଲାହଙ୍କଠାରୁ ଲୁଚାଇ ପାରିବେନାହିଁ। ଅଲ୍ଲାହ୍ ତ ସେତେବେଳେ ମଧ୍ୟ ସେମାନଙ୍କ ସହିତ ଥାଆନ୍ତି ଯେତେବେଳେ ରାତିରେ ସେମାନେ ଅଲ୍ଲାହଙ୍କ ଇଚ୍ଛା ବିରୁଦ୍ଧରେ ଗୁପ୍ତ ମନ୍ତ୍ରଣା କରନ୍ତି। ସେମାନେ ଯାହା କରୁଛନ୍ତି, ଅଲ୍ଲାହ୍ ସେଥିପ୍ରତି ତୀକ୍ଷ୍ଣ ନଜର ରଖିଛନ୍ତି। ୧୦୯. ତୁମେମାନେ ତ ସାଂସାରିକ ଜୀବନରେ

ସେମାନଙ୍କ ପକ୍ଷରୁ ଓକିଲାତି କଲ କିନ୍ତୁ ବିଚାର ଦିନ ଅଲ୍ଲାଙ୍କ ସମ୍ମୁଖରେ ସେମାନଙ୍କ ପାଇଁ କିଏ ଓକିଲାତି କରିବ ବା ସେମାନଙ୍କର ପକ୍ଷ ସମର୍ଥନ କରିବ ?

୧୧୦. ଯିଏ କୌଣସି କୁକର୍ମ କରେ ବା ନିଜ ଆତ୍ମା ପ୍ରତି ଅତ୍ୟାଚାର କରିବସେ ଏବଂ ଏହାପରେ ଅଲ୍ଲାହଙ୍କଠାରେ (ଅନୁତାପ କରି) କ୍ଷମା ପ୍ରାର୍ଥନା କରେ, ସେ ଦେଖିବ ଯେ ଅଲ୍ଲାହ୍ କିଭଳି କ୍ଷମାଶୀଳ ଆଉ କିଭଳି ଦୟାଳୁ । ୧୧୧. ଯିଏ କୌଣସି ପାପ କରେ, (ସେ ଜାଣିରଖୁ ଯେ) ତା'ପାପ ତା' ନିଜର ହିଁ କ୍ଷତି କରିବ । ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ । ୧୧୨. ଯିଏ ନିଜେ କୌଣସି ଦୋଷ ବା ପାପ କରେ କିନ୍ତୁ ଏହାର ଆରୋପ କୌଣସି ନିର୍ଦ୍ଦୋଷ ବ୍ୟକ୍ତି ପ୍ରତି କରେ, ସେ ଏକ ଜଘନ୍ୟ ଆରୋପ କରେ ଏବଂ ଏକ ଗୁରୁତର ପାପର ବୋଝ ମୁଣ୍ଡାଏ ।

୧୧୩. (ହେ ବାର୍ତ୍ତାବହ !) ଯଦି ତୁମ ପ୍ରତି ଅଲ୍ଲାହଙ୍କ ଅନୁଗ୍ରହ ଓ କରୁଣା ନଥାଆନ୍ତା ତେବେ ସେମାନଙ୍କ ମଧ୍ୟରୁ ଗୋଟିଏ ଗୋଷ୍ଠୀ ତୁମକୁ ବିଭ୍ରାନ୍ତ କରିବାକୁ ସ୍ଥିର କରିସାରିଥିଲା । ସେମାନେ ନିଜ ବ୍ୟତୀତ ଅନ୍ୟ କାହାରିକୁ ବିଭ୍ରାନ୍ତ କରୁନାହାନ୍ତି ଏବଂ ସେମାନେ ତୁମର କିଛି କ୍ଷତି କରି ପାରିବେନାହିଁ । ଅଲ୍ଲାହ୍ ତୁମକୁ ଦିବ୍ୟଗ୍ରନ୍ଥ ଓ ତତ୍ତ୍ୱଜ୍ଞାନ ପ୍ରଦାନ କରିଛନ୍ତି ଏବଂ ତୁମକୁ ତାହାର ଶିକ୍ଷା ଦେଇଛନ୍ତି ଯାହା ତୁମେ ଜାଣି ନଥିଲ । ତୁମ ପ୍ରତି ଅଲ୍ଲାହଙ୍କର ବିଶେଷ କରୁଣା ରହିଛି ।

୧୧୪. ଲୋକମାନଙ୍କର ଅଧିକାଂଶ ମନ୍ତ୍ରଣା ଭଲ ନୁହେଁ । ହଁ, ଯଦି କେହି ଦାନ କରିବା, ଭଲ କର୍ମ କରିବା କିମ୍ବା ଲୋକମାନଙ୍କ ମଧ୍ୟରେ ବୁଝାମଣା କରାଇଦେବା ଉଦ୍ଦେଶ୍ୟରେ ଏହା କରେ ତେବେ ଭଲ କଥା । ଯିଏ ଅଲ୍ଲାହଙ୍କ ପ୍ରସନ୍ନତା ପାଇଁ ଏହା କରିବ, ଆମ୍ଭେ ତାକୁ ଅଜସ୍ର ପୁରସ୍କାର ଦେବୁ । ୧୧୫. ନିଜ ପାଖରେ ସତ୍‌ମାର୍ଗ ପରିଷ୍କାର ହୋଇଗଲା ପରେ ଯିଏ ରସୁଲ୍‌ଙ୍କର ବିରୋଧ କରିବ ଏବଂ ସଦ୍‌ବିଶ୍ୱାସୀମାନଙ୍କ ବାଟ ବ୍ୟତୀତ ଅନ୍ୟ ବାଟ ଧରିବ, ତେବେ ସେ ଯେଉଁ ବାଟ ବାଛିଥିବ, ଆମ୍ଭେ ତାକୁ ସେହି ବାଟରେ (ଯିବା ପାଇଁ) ଛାଡ଼ିଦେବୁ ଏବଂ ତାକୁ ନର୍କରେ ନିକ୍ଷେପ କରିବୁ । ଏହା ଭାରି କଦର୍ଯ୍ୟ ସ୍ଥାନ ।

୧୧୬. ଅଲ୍ଲାହଙ୍କ ସହିତ ଅନ୍ୟ କାହାରିକୁ ସମକକ୍ଷ କଲେ ଅଲ୍ଲାହ୍ ଏହା ଆଦୌ କ୍ଷମା କରିବେନାହିଁ । ହଁ, ଏହା ବ୍ୟତୀତ ଅନ୍ୟ କୌଣସି ପାପ ପାଇଁ ସେ

ଯାହାକୁ ଚାହିଁବେ କ୍ଷମା କରିଦେବେ। ଯିଏ (ଅନ୍ୟର ଉପାସନା କରି) ତାକୁ ଅଲ୍ଲାହଙ୍କର ସମକକ୍ଷ କରେ, ସେ ପଥଭ୍ରଷ୍ଟ ହୋଇ ବହୁ ଦୂରକୁ ଚାଲିଯାଏ। ୧୧୭. ଏମାନେ ଅଲ୍ଲାହଙ୍କୁ ଛାଡ଼ି (କାଳ୍ପନିକ) ଦେବୀମାନଙ୍କୁ ଡାକନ୍ତି ଏବଂ ଈଶ୍ୱରଦ୍ରୋହୀ ଶଇତାନର ପୂଜା କରନ୍ତି, ୧୧୮. ଯିଏ ଅଲ୍ଲାହଙ୍କ ଦ୍ୱାରା ଶାପଗ୍ରସ୍ତ। ସେ (ଅଲ୍ଲାହଙ୍କୁ) କହିଥିଲା, "ମୁଁ ନିଶ୍ଚୟ ତୁମର ବହୁସଂଖ୍ୟକ ଭକ୍ତଙ୍କୁ ନିଜର ସାଥୀ କରିନେବି। ୧୧୯. ମୁଁ ସେମାନଙ୍କୁ ବାଟବଣା କରିବି, ସେମାନଙ୍କ ମନରେ କାମନା ଜାତ କରିବି ଏବଂ ସେମାନଙ୍କୁ ପ୍ରବର୍ତ୍ତାଇବି ଯେ ସେମାନେ ପଶୁମାନଙ୍କର କାନ ଚିରନ୍ତୁ ଏବଂ ଅଲ୍ଲାହଙ୍କ ସୃଷ୍ଟିକୁ ବିକୃତ କରନ୍ତୁ।" ଯିଏ ଅଲ୍ଲାହଙ୍କୁ ଛାଡ଼ି ଶଇତାନକୁ ମିତ୍ର ରୂପେ ଗ୍ରହଣ କରିବ, ସେ ସମ୍ପୂର୍ଣ୍ଣ ରୂପେ କ୍ଷତିଗ୍ରସ୍ତ ହେବ। ୧୨୦. ସେ ସେମାନଙ୍କୁ ମିଥ୍ୟା ପ୍ରତିଶ୍ରୁତି ଦିଏ ଏବଂ ସେମାନଙ୍କ ମନରେ କାମନା ଜାତ କରେ। ଶଇତାନର ପ୍ରତିଶ୍ରୁତି କେବଳ ମାୟା ଛଡ଼ା ଆଉ କିଛି ନୁହେଁ। ୧୨୧. ନର୍କ ଏଭଳି ଲୋକମାନଙ୍କର ଘର ହେବ ଏବଂ ସେମାନେ ସେଠାରୁ ମୁକ୍ତି ପାଇବେ ନାହିଁ। ୧୨୨. ଯେଉଁମାନେ (ସତ୍ୟରେ) ବିଶ୍ୱାସ କଲେ ଏବଂ ସତକର୍ମ କଲେ, ଆମ୍ଭେ ସେମାନଙ୍କୁ ଏଭଳି ଉଦ୍ୟାନରେ ରଖିବୁ ଯାହା ତଳେ ଝରଣା ପ୍ରବାହିତ ହୁଏ ଏବଂ ସେଠାରେ ସେମାନେ ସର୍ବଦା ରହିବେ। ଅଲ୍ଲାହଙ୍କର ବଚନ ସତ୍ୟ ଏବଂ ଅଲ୍ଲାହଙ୍କ ଅପେକ୍ଷା ଅଧିକ ସତ୍ୟବାଦୀ ଆଉ କିଏ ହୋଇପାରେ ?

୧୨୩. ତୁମମାନଙ୍କ ଇଚ୍ଛା ଅନୁସାରେ (ସ୍ୱର୍ଗପ୍ରାପ୍ତି) ହେବନାହିଁ କିମ୍ବା ଗ୍ରନ୍ଥବିଶ୍ୱାସୀମାନଙ୍କର ଇଚ୍ଛା ଅନୁସାରେ ମଧ୍ୟ ହେବନାହିଁ। ଯିଏ କୁକର୍ମ କରିବ ସେ ତାହାର ଫଳ ଭୋଗିବ ଏବଂ ଅଲ୍ଲାହଙ୍କ ବ୍ୟତୀତ ତାକୁ କେହି ବନ୍ଧୁ ବା ସାହାଯ୍ୟକାରୀ ମିଳିବେ ନାହିଁ। ୧୨୪. ପୁରୁଷ ହେଉ ବା ନାରୀ, ଯିଏ ଭଲ କର୍ମ କରିବ, ଯଦି ସେ ସଦ୍‌ବିଶ୍ୱାସୀ ହୋଇଥାଏ ତେବେ ଏଭଳି ଲୋକମାନେ ସ୍ୱର୍ଗଲାଭ କରିବେ ଏବଂ ସେମାନଙ୍କ ପ୍ରତି ତିଳେହେଲେ ଅନ୍ୟାୟ ହେବନାହିଁ।

୧୨୫. ତା'ଠାରୁ ଭଲ ଧର୍ମ କାହାର ହୋଇପାରେ ଯିଏ ଅଲ୍ଲାହଙ୍କ ପାଖରେ ନିଜକୁ ସମର୍ପଣ କରିଦେଇଛି, ଭଲ କର୍ମ କରୁଛି ଏବଂ ଇବ୍ରାହିମଙ୍କ ପନ୍ଥା ଅବଲମ୍ବନ କରୁଛି ଯିଏ (ସ୍ୱଭାବ ଅନୁଯାୟୀ) ଏକ ଈଶ୍ୱରଙ୍କର ଉପାସକ

ଥିଲେ । ଅଲ୍ଲାହ୍ ଇବ୍ରାହିମଙ୍କୁ ନିଜର ବନ୍ଧୁ ରୂପେ ଗ୍ରହଣ କରିଥିଲେ । ୧୨୬. ପୃଥିବୀ ଓ ଆକାଶରେ ଯାହା ଅଛି, ସବୁ ଅଲ୍ଲାହଙ୍କର ଏବଂ ଅଲ୍ଲାହ୍ ପ୍ରତ୍ୟେକ ବସ୍ତୁକୁ ଘେରି ରହିଛନ୍ତି ।

୧୨୭. (ହେ ବାର୍ତ୍ତାବହ!) ଲୋକମାନେ ତୁମକୁ ଅନାଥ କନ୍ୟାମାନଙ୍କ ବିଷୟରେ ଶାସ୍ତ୍ରବିଧି ପଚାରୁଛନ୍ତି । ସେମାନଙ୍କୁ କୁହ, "ଅଲ୍ଲାହ୍ ସେମାନଙ୍କ ବିଷୟରେ ଆଦେଶ ଦେଉଛନ୍ତି ଏବଂ ଅନାଥ କନ୍ୟାମାନଙ୍କ ବିଷୟରେ ତୁମମାନଙ୍କୁ ଗ୍ରନ୍ଥବାଣୀ ମଧ୍ୟ ପଢ଼ି ଶୁଣାଇ ଦିଆଯାଉଛି ଯେଉଁମାନଙ୍କର ପ୍ରାପ୍ୟ ତୁମେମାନେ ସେମାନଙ୍କୁ ଦେଉନାହଁ ଅଥଚ ସେମାନଙ୍କୁ ବିବାହ କରିବାକୁ ଚାହୁଁଛ ଏବଂ ଦୁର୍ବଳ ଓ ଅନାଥ ପିଲାଙ୍କ ସଂପର୍କରେ ମଧ୍ୟ ଆଦେଶ ଦିଆଯାଉଛି ଯେ ଅନାଥମାନଙ୍କ ସହିତ ଉଚିତ ନ୍ୟାୟ କର । ତୁମେମାନେ ଯାହା ପୁଣ୍ୟ କାର୍ଯ୍ୟ କରିବ ଅଲ୍ଲାହ୍ ଅବଶ୍ୟ ଜାଣନ୍ତି ।"

୧୨୮. ଯଦି କୌଣସି ନାରୀକୁ ତା' ପତି ଦ୍ୱାରା ଦୁର୍ବ୍ୟବହାର ବା ଉପେକ୍ଷାର ଆଶଂକା ଥାଏ ଏବଂ ସେମାନେ ପରସ୍ପର ମଧ୍ୟରେ ଏବିଷୟରେ କୌଣସି ବୁଝାମଣା କରିନିଅନ୍ତି, ତେବେ ସେମାନଙ୍କୁ ପାପ ହେବନାହିଁ । ବୁଝାମଣା ସବୁଠାରୁ ଭଲ । ମନରେ ଲୋଭ ଜାତ ହେବା ସ୍ୱାଭାବିକ । ଯଦି ତୁମେମାନେ ଉପକାର କର ଏବଂ ଧର୍ମପରାୟଣ ହୁଅ, ତେବେ (ଜାଣିରଖ) ତୁମେ ଯାହା କର, ଅଲ୍ଲାହ୍ ଜାଣନ୍ତି । ୧୨୯. ତୁମେମାନେ ଚାହିଁଲେ ମଧ୍ୟ ନିଜର ପତ୍ନୀମାନଙ୍କ ପ୍ରତି ଆଦୌ ସମାନ ଭାବରେ ନ୍ୟାୟ କରିପାରିବ ନାହିଁ । ତେବେ ଅନ୍ତତଃ ଜଣକ ପ୍ରତି ପୂରାପୂରି ଢ଼ଳିଯାଇ ଅନ୍ୟ ଜଣକୁ ମଝିରେ ଝୁଲିବା ଅବସ୍ଥାରେ ଛାଡ଼ିଦିଅ ନାହିଁ । ଯଦି ତୁମେମାନେ ନିଜର ଆଚରଣ ସଂଶୋଧନ କର ଏବଂ ସଦାଚାରୀ ହୁଅ, ତା'ହେଲେ (ଜାଣିରଖ ଯେ) ଅଲ୍ଲାହ୍ କ୍ଷମାଶୀଳ ଓ କରୁଣାମୟ । ୧୩୦. ଯଦି ପତିପତ୍ନୀ ପରସ୍ପରଠାରୁ ଅଲଗା ହୋଇଯାଆନ୍ତି, ତେବେ ଅଲ୍ଲାହ୍ ନିଜ ଭଣ୍ଡାରରୁ ଉଭୟଙ୍କର ଅଭାବ ଦୂର କରିଦେବେ । ଅଲ୍ଲାହ୍ ସକଳ ପ୍ରାଚୁର୍ଯ୍ୟର ଅଧିକାରୀ ଏବଂ ମହାଜ୍ଞାନୀ । ୧୩୧. ଯାହାକିଛି ପୃଥିବୀ ଓ ଆକାଶରେ ଅଛି, ସବୁ ଅଲ୍ଲାହଙ୍କର । ଯେଉଁମାନଙ୍କୁ ତୁମ ପୂର୍ବରୁ ଗ୍ରନ୍ଥ ଦିଆ ଯାଇଥିଲା, ସେମାନଙ୍କୁ ଏବଂ ତୁମମାନଙ୍କୁ ମଧ୍ୟ ଆମ୍ଭେ ଏହି ଆଦେଶ ଦେଇଛୁ ଯେ ଅଲ୍ଲାହଙ୍କୁ ଭୟ କର । ଯଦି ତୁମେମାନେ ନମାନିବ, ତେବେ

(ଜାଣି ରଖ ଯେ) ପୃଥିବୀ ଓ ଆକାଶରେ ଯାହା ଅଛି ସବୁ ଅଲ୍ଲାହଙ୍କର । ଅଲ୍ଲାହ୍ ଆବଶ୍ୟକତାରହିତ ଓ ସ୍ତୁତିଯୋଗ୍ୟ । ୧୩୨. ପୃଥିବୀ ଓ ଆକାଶରେ ଥିବା ସକଳ ସୃଷ୍ଟିର ଅଲ୍ଲାହ୍ ହିଁ ମାଲିକ ଏବଂ ତୁମମାନଙ୍କର କାର୍ଯ୍ୟସିଦ୍ଧି ପାଇଁ ଅଲ୍ଲାହ୍ ହିଁ ଯଥେଷ୍ଟ । ୧୩୩. ହେ ମନୁଷ୍ୟଗଣ ! ଯଦି ଅଲ୍ଲାହ୍ ଚାହିଁବେ ତୁମମାନଙ୍କୁ ବିନାଶ କରି (ତୁମ ସ୍ଥାନରେ) ଅନ୍ୟ ଲୋକମାନଙ୍କୁ ସୃଷ୍ଟି କରିଦେବେ । ଅଲ୍ଲାହ୍ ଏହା କରିବାକୁ ସମ୍ପୂର୍ଣ୍ଣ ସକ୍ଷମ । ୧୩୪. ଯିଏ ଇହଲୋକରେ ତା' କର୍ମର ଫଳ ପାଇବାକୁ ଚାହେଁ, (ସେ ଜାଣିନେଉ ଯେ) ଅଲ୍ଲାହଙ୍କ ପାଖରେ ଇହଲୋକ ପାଇଁ ପୁରସ୍କାର ରହିଛି ଏବଂ ପରଲୋକ ପାଇଁ ମଧ୍ୟ । ଅଲ୍ଲାହ୍ ସବୁ ଶୁଣନ୍ତି ଏବଂ ସବୁ ଦେଖନ୍ତି ।

୧୩୫. ହେ ସଦ୍‌ବିଶ୍ୱାସୀଗଣ ! ନ୍ୟାୟରେ ଅଟଳ ରହି ଅଲ୍ଲାହ୍‌ଙ୍କ ପାଇଁ ସାକ୍ଷ୍ୟ ଦିଅ ଯଦିଓ ଏହା ତୁମ ନିଜ ବିରୁଦ୍ଧରେ ଯାଉ କିମ୍ବା ତୁମ ବାପାମାଆ ବା ଆତ୍ମୀୟସ୍ୱଜନଙ୍କ ବିରୁଦ୍ଧରେ ଯାଉ । (ଯାହା ବିରୁଦ୍ଧରେ ସାକ୍ଷ୍ୟ ଦିଆଯାଉଛି) ସେ ଧନୀ ହୋଇଥାଉ ବା ଗରିବ, ଅଲ୍ଲାହ୍ ଉଭୟଙ୍କର (ତୁମମାନଙ୍କ ଅପେକ୍ଷା) ଅଧିକ ହିତାକାଂକ୍ଷୀ । ସୁତରାଂ, ଇନ୍ଦ୍ରିୟାଧୀନ ହୋଇ ନ୍ୟାୟପଥରୁ କଦାପି ବିଚ୍ୟୁତ ହୁଅନାହିଁ । ଯଦି ତୁମେମାନେ (ସାକ୍ଷ୍ୟ ଦେବାରେ) ଏପଟ ସେପଟ କର ବା ଏହାକୁ ଏଡ଼ାଇ ଯିବାକୁ ଚେଷ୍ଟା କର, ତେବେ ଜାଣିରଖ ଯେ ଅଲ୍ଲାହ୍ ତୁମମାନଙ୍କର କାର୍ଯ୍ୟକଳାପ ବିଷୟରେ ସବୁ ଜାଣନ୍ତି ।

୧୩୬. ହେ ସଦ୍‌ବିଶ୍ୱାସୀଗଣ ! ବିଶ୍ୱାସ କର ଅଲ୍ଲାହଙ୍କୁ, ତାଙ୍କ ବାର୍ତ୍ତାବହଙ୍କୁ ଏବଂ ସେହି ଗ୍ରନ୍ଥକୁ ଯାହା ବାର୍ତ୍ତାବହଙ୍କ ପାଖକୁ ପଠାଯାଇଛି ଏବଂ ସେହି ଗ୍ରନ୍ଥଗୁଡ଼ିକୁ ମଧ୍ୟ ଯାହା ତାଙ୍କ ପୂର୍ବରୁ ପଠା ଯାଇଥିଲା । ଯିଏ ଅଲ୍ଲାହଙ୍କୁ, ତାଙ୍କ ଦେବଦୂତମାନଙ୍କୁ, ତାଙ୍କ ଗ୍ରନ୍ଥସମୂହକୁ, ତାଙ୍କର ବାର୍ତ୍ତାବହମାନଙ୍କୁ ଏବଂ (ପରଲୋକର) ବିଚାର ଦିନକୁ ଅସ୍ୱୀକାର କଲା, ସେ ପଥଭ୍ରଷ୍ଟ ହୋଇ ବହୁ ଦୂରକୁ ଚାଲିଗଲା । ୧୩୭. ଯେଉଁମାନେ ଆସ୍ଥା ରଖିଲେ ଏବଂ ପୁଣି ନାସ୍ତିକ ହୋଇଗଲେ, ପୁଣି ଆସ୍ଥା ରଖିଲେ ଏବଂ ପୁଣି ନାସ୍ତିକ ହୋଇଗଲେ ଏବଂ ନାସ୍ତିକତା ବାଟରେ ଆଗେଇ ଚାଲିଲେ, ଅଲ୍ଲାହ୍ ସେମାନଙ୍କୁ କଦାପି କ୍ଷମା କରିବେନାହିଁ କିମ୍ବା ସେମାନଙ୍କର ମାର୍ଗଦର୍ଶନ କରିବେନାହିଁ । ୧୩୮. କପଟୀମାନଙ୍କୁ ଜଣାଇଦିଅ ଯେ ସେମାନଙ୍କ ପାଇଁ କଠୋର ଶାସ୍ତି ପ୍ରସ୍ତୁତ ହୋଇ

ରହିଛି । ୧୩୯. ଯେଉଁମାନେ ସଦବିଶ୍ୱାସୀମାନଙ୍କୁ ଛାଡ଼ି ମିଥ୍ୟାବିଶ୍ୱାସୀମାନଙ୍କ ସହିତ ବନ୍ଧୁତା କରନ୍ତି । କ'ଣ ଏମାନେ ସେମାନଙ୍କଠାରୁ ସମ୍ମାନ ଚାହାନ୍ତି ? ସକଳ ସମ୍ମାନ ତ ଅଲ୍ଲାହଙ୍କ ହାତରେ ରହିଛି ।

୧୪୦. ସେ ତୁମମାନଙ୍କ ପାଇଁ ଗ୍ରନ୍ଥରେ ଏହି ଆଦେଶ ଦେଇ ସାରିଛନ୍ତି ଯେ ଯଦି ତୁମେମାନେ ଏହା ଶୁଣ ଯେ ଅଲ୍ଲାହଙ୍କ ବାଣୀ ପ୍ରତି ଅବଜ୍ଞା ପ୍ରଦର୍ଶନ କରାଯାଉଛି ବା ଉପହାସ କରାଯାଉଛି, ତେବେ ଏଭଳି ଲୋକମାନେ ଅନ୍ୟ କଥାରେ ମଗ୍ନ ନହେବା ପର୍ଯ୍ୟନ୍ତ ସେମାନଙ୍କ ପାଖରେ ବସନାହିଁ, ନହେଲେ ତୁମେମାନେ ମଧ୍ୟ ସେହିମାନଙ୍କ ପରି ହୋଇଯିବ । ଅଲ୍ଲାହ୍ ସବୁ କପଟୀ ଓ ନାସ୍ତିକମାନଙ୍କୁ ନର୍କରେ ନିଶ୍ଚୟ ଏକତ୍ର କରିବେ । ୧୪୧. ଏହି କପଟୀମାନେ ତୁମମାନଙ୍କ ପରିଣାମ ଅପେକ୍ଷାରେ ଥାଆନ୍ତି । ଯଦି ଅଲ୍ଲାହଙ୍କ କୃପାରୁ ତୁମମାନଙ୍କର ବିଜୟ ହୁଏ ତେବେ (ତୁମମାନଙ୍କୁ) କହନ୍ତି, “କ'ଣ ଆମେ ତୁମମାନଙ୍କ ସହିତ ନଥିଲୁ ?” କିନ୍ତୁ ଯଦି ଅସଦ୍‌ବିଶ୍ୱାସୀମାନଙ୍କର ବିଜୟ ହୁଏ ତେବେ (ସେମାନଙ୍କୁ) କହନ୍ତି, “କ'ଣ ଆମେ ତୁମମାନଙ୍କୁ ଆୟତ୍ତ କରିନେଇ ନଥିଲୁ ? ଏହାସତ୍ତ୍ୱେ କ'ଣ ଆମେ ମୁସଲମାନମାନଙ୍କଠାରୁ ତୁମମାନଙ୍କୁ ରକ୍ଷା କରିନାହୁଁ ?” ହେଉ, ବିଚାର ଦିନ ଅଲ୍ଲାହ୍ ତୁମମାନଙ୍କ ମଧ୍ୟରେ ନିଷ୍ପତ୍ତି କରିବେ ଏବଂ ଅଲ୍ଲାହ୍ ନାସ୍ତିକମାନଙ୍କୁ କଦାପି ସଦ୍‌ବିଶ୍ୱାସୀମାନଙ୍କୁ ଟପି ଯିବାର ସୁଯୋଗ ଦେବେନାହିଁ ।

୧୪୨. କପଟୀମାନେ (ଭାବୁଛନ୍ତି ଯେ ସେମାନେ) ଅଲ୍ଲାହଙ୍କୁ ଠକୁଛନ୍ତି, ମାତ୍ର ପ୍ରକୃତରେ ଅଲ୍ଲାହ୍ ସେଇମାନଙ୍କୁ ଠକାମିରେ ପକାଇ ଦେଇଛନ୍ତି । ଯେତେବେଳେ ସେମାନେ ନମାଜ ପାଠ କରିବାପାଇଁ ଛିଡ଼ା ହୁଅନ୍ତି, ଆଳସ୍ୟର ସହିତ କେବଳ ଲୋକଙ୍କୁ ଦେଖାଇବା ପାଇଁ ଛିଡ଼ା ହୁଅନ୍ତି ଏବଂ ଅଲ୍ଲାହଙ୍କୁ ନାମକୁ ମାତ୍ର ସ୍ମରଣ କରନ୍ତି । ୧୪୩. ସେମାନେ ଦୋଦୁଲ୍ୟମାନ ଅବସ୍ଥାରେ ରହିଛନ୍ତି । ନା ଏମାନଙ୍କ ପଟେ ଅଛନ୍ତି ନା ସେମାନଙ୍କ ପଟେ ଅଛନ୍ତି । ଅଲ୍ଲାହ୍ ଯାହାକୁ ପଥଭ୍ରଷ୍ଟ କରିଦିଅନ୍ତି, ତା'ପାଇଁ ତୁମକୁ କୌଣସି ବାଟ ମିଳିବନାହିଁ ।

୧୪୪. ହେ ମୁସଲମାନଗଣ ! ସଦ୍‌ବିଶ୍ୱାସୀମାନଙ୍କୁ ଛାଡ଼ି ଅସଦବିଶ୍ୱାସୀମାନଙ୍କୁ ବନ୍ଧୁ କରନାହିଁ । କ'ଣ ତୁମେମାନେ ଅଲ୍ଲାହଙ୍କୁ ନିଜ ବିରୁଦ୍ଧରେ

ସ୍ପଷ୍ଟ ପ୍ରମାଣ ଦେବାକୁ ଚାହଁ? ୧୪୫. କପଟୀମାନେ ନର୍କର ସବୁଠାରୁ ନିମ୍ନ ଭାଗରେ ରହିବେ ଏବଂ ତୁମେ ସେମାନଙ୍କ ପାଇଁ କୋଣସି ସାହାଯ୍ୟକାରୀ ପାଇବନାହିଁ। ୧୪୬. ହଁ, ଯେଉଁମାନେ ପଶ୍ଚାତାପ କରିବେ, ନିଜକୁ ସଂଶୋଧନ କରିବେ, ଅଲ୍ଲାହଙ୍କର ଦୃଢ଼ ଆଶ୍ରୟ ନେବେ ଏବଂ ନିଜ ଧର୍ମକୁ ଅଲ୍ଲାହଙ୍କ ପାଇଁ ନିଷ୍ଠାର ସହିତ ପାଳନ କରିବେ, ସେମାନେ ସଦ୍‌ବିଶ୍ୱାସୀ ରୂପେ ପରିଗଣିତ ହେବେ ଏବଂ ଅଲ୍ଲାହ୍ ସେମାନଙ୍କୁ ଅଜସ୍ର ପୁରସ୍କାର ଦେବେ। ୧୪୭. ଯଦି ତୁମେମାନେ କୃତଜ୍ଞ ହୁଅ ଏବଂ ଅଲ୍ଲାହଙ୍କୁ ବିଶ୍ୱାସ କର, ତେବେ ଅଲ୍ଲାହ୍ ତୁମମାନଙ୍କୁ ଦଣ୍ଡ ଦେଇ କି ଲାଭ ପାଇବେ ? ଅଲ୍ଲାହ୍ ଗୁଣଗ୍ରାହୀ ଏବଂ ସେ ସବୁ ଜାଣନ୍ତି।

୧୪୮. ଅଲ୍ଲାହ୍ ଏହା ପସନ୍ଦ କରନ୍ତିନାହିଁ ଯେ କେହି ପ୍ରକାଶ୍ୟରେ ପରନିନ୍ଦା କରୁ, ମାତ୍ର ଯଦି କାହାରି ପ୍ରତି ଅତ୍ୟାଚାର ହୋଇଥାଏ, ତା’ କଥା ଭିନ୍ନ। ଅଲ୍ଲାହ୍ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି। ୧୪୯. ଯଦି ତୁମେମାନେ ପ୍ରକାଶ୍ୟ ରୂପେ ବା ଗୋପନରେ ଭଲ ବ୍ୟବହାର କର କିମ୍ବା (ପ୍ରତିଶୋଧ ପରାୟଣ ନହୋଇ) ଅନ୍ୟର ଦୁର୍ବ୍ୟବହାର କ୍ଷମା କରିଦିଅ, ତେବେ (ଜାଣିରଖ ଯେ) ଅଲ୍ଲାହ୍ ମଧ୍ୟ ଅତ୍ୟନ୍ତ କ୍ଷମାଶୀଳ ଏବଂ ପ୍ରବଳ କ୍ଷମତାଶାଳୀ।

୧୫୦. ଯେଉଁମାନେ ଅଲ୍ଲାହ୍ ଏବଂ ତାଙ୍କ ବାର୍ତ୍ତାବହମାନଙ୍କୁ ଅସ୍ୱୀକାର କରନ୍ତି, ଅଲ୍ଲାହ୍ ଏବଂ ତାଙ୍କ ବାର୍ତ୍ତାବହମାନଙ୍କ ମଧ୍ୟରେ ପ୍ରଭେଦ କରିବାକୁ ଚାହାନ୍ତି ଏବଂ କହନ୍ତି, “ଆମେ କେତେଜଣଙ୍କୁ ମାନୁଛୁ ଏବଂ ଆଉ କେତେଜଣଙ୍କୁ ମାନୁନାହୁଁ”, ସେମାନେ ଚାହାନ୍ତି ଯେ (ଆସ୍ତିକତା ଓ ନାସ୍ତିକତା) ମଝିରୁ କୌଣସି ବାଟ ବାହାର କରିବେ। ୧୫୧. ପ୍ରକୃତରେ ସେମାନେ ପକ୍କା ନାସ୍ତିକ ଏବଂ ନାସ୍ତିକମାନଙ୍କ ପାଇଁ ଆମ୍ଭେ ଅପମାନଜନକ ଶାସ୍ତି ପ୍ରସ୍ତୁତ କରି ରଖିଛୁ। ୧୫୨. ଯେଉଁମାନେ ଅଲ୍ଲାହଙ୍କୁ ଏବଂ ତାଙ୍କର ରସୁଲ୍‌ମାନଙ୍କୁ ବିଶ୍ୱାସ କରନ୍ତି ଏବଂ ସେମାନଙ୍କ ମଧ୍ୟରେ କୌଣସି ପ୍ରଭେଦ ନକରନ୍ତି, ଅଲ୍ଲାହ୍ ସେମାନଙ୍କର ପୁରସ୍କାର ନିଶ୍ଚୟ ଦେବେ। ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ ପରମ ଦୟାଳୁ।

୧୫୩. (ହେ ବାର୍ତ୍ତାବହ!) ଗ୍ରନ୍ଥବିଶ୍ୱାସୀମାନେ ତୁମକୁ କହୁଛନ୍ତି ଯେ ସେମାନଙ୍କ ପାଇଁ ସ୍ୱର୍ଗରୁ ଗୋଟିଏ ଗ୍ରନ୍ଥ ନେଇଆସ। ସେମାନେ ତ ମୁ’ସାଙ୍କ

ନିକଟରେ ଏହାଠାରୁ ବଡ଼ ଦାବୀ କରିଥିଲେ। ସେମାନେ ତାଙ୍କୁ କହିଥିଲେ, "ଆମକୁ ପ୍ରତ୍ୟକ୍ଷ ରୂପେ ଅଲ୍ଲାହଙ୍କୁ ଦେଖାଅ।" ତେଣୁ, ଏହି ଦୁଷ୍ଟାମି ଯୋଗୁଁ ସେମାନଙ୍କ ଉପରେ ବଜ୍ରପାତ ହୋଇଥିଲା। ଏହାପରେ ଅନେକ ସ୍ପଷ୍ଟ ପ୍ରମାଣ ପାଇ ସାରିବା ସତ୍ତ୍ୱେ ସେମାନେ ବାଛୁରୀକୁ ଉପାସ୍ୟ ରୂପେ ଗ୍ରହଣ କରି ନେଇଥିଲେ ଏବଂ ତାହା ମଧ୍ୟ ଆମ୍ଭେ କ୍ଷମା କରିଦେଲୁ। ଆମ୍ଭେ ମୁ'ସାଙ୍କୁ ସ୍ପଷ୍ଟ ବିଜୟ ପ୍ରଦାନ କରିଥିଲୁ। ୧୫୪. ଆମ୍ଭେ ସେମାନଙ୍କ ଉପରେ ସିନାଇ ପାହାଡ଼କୁ ଉଠାଇ ରଖି ସେମାନଙ୍କଠାରୁ ବଚନ ନେଇଥିଲୁ ଏବଂ ଆଦେଶ ଦେଇଥିଲୁ ଯେ ସେମାନେ ସହରର ଦ୍ୱାରରେ ମୁଣ୍ଡ ନୁଆଇଁ ପ୍ରବେଶ କରିବେ ଏବଂ ଏହା ମଧ୍ୟ ଆଦେଶ ଦେଇଥିଲୁ ଯେ ଶନିବାର ଦିନ ସଂକ୍ରାନ୍ତରେ ନିୟମଭଙ୍ଗ କରିବେନାହିଁ। ଆମ୍ଭେ ସେମାନଙ୍କଠାରୁ ଦୃଢ଼ ବଚନ ନେଇଥିଲୁ। ୧୫୫. (ଆମ୍ଭେ ସେମାନଙ୍କୁ ଧିକ୍କାର କଲୁ) କାରଣ ସେମାନେ ବଚନ ଭଂଗ କଲେ, ଅଲ୍ଲାହଙ୍କର ବାଣୀକୁ ପ୍ରତ୍ୟାଖ୍ୟାନ କଲେ, ଈଶ୍ୱରଦୂତମାନଙ୍କୁ ଅନ୍ୟାୟରେ ହତ୍ୟା କଲେ ଏବଂ କହିଲେ ଯେ ଆମ ହୃଦୟ ଏକ ଆବରଣ ଦ୍ୱାରା ସୁରକ୍ଷିତ। ପ୍ରକୃତରେ ସତ୍ୟକୁ ଅସ୍ୱୀକାର କରିଥିବା ଯୋଗୁଁ ଅଲ୍ଲାହ୍ ସେମାନଙ୍କ ହୃଦୟର ଦ୍ୱାର ବନ୍ଦ କରି ଦେଇଛନ୍ତି। ସେମାନଙ୍କ ମଧ୍ୟରୁ ଅତି ଅଳ୍ପ ଲୋକ ବିଶ୍ୱାସ କରନ୍ତି। ୧୫୬. (ଏହି କାରଣରୁ ଯେ) ସେମାନେ ନାସ୍ତିକତାର ବାଟ ଧରିଲେ ଏବଂ ମରିୟମଙ୍କ (ଅର୍ଥାତ୍ ମେରୀଙ୍କ) ପ୍ରତି ଗୁରୁତର ଆରୋପ କଲେ। ୧୫୭. ଏବଂ ଏହା କହଥିବା ଯୋଗୁଁ ଯେ "ଆମେମାନେ ମରିୟମଙ୍କ ପୁତ୍ର ଈଶ୍ୱରଦୂତ ଈସାଙ୍କୁ (ଅର୍ଥାତ୍ ଯୀଶୁଙ୍କୁ) ହତ୍ୟା କରିଛୁ", ଅଥଚ ସେମାନେ ଈସାଙ୍କୁ ହତ୍ୟା କରି ନଥିଲେ ବା ତାଙ୍କୁ କ୍ରୁଶବିଦ୍ଧ ମଧ୍ୟ କରି ନଥିଲେ ବରଂ ଘଟଣାଟି ସେମାନଙ୍କୁ ସେହପରି ଜଣା ପଡ଼ିଥିଲା। ଯେଉଁମାନେ ଏବିଷୟରେ ମତଭେଦ କରୁଛନ୍ତି, ସେମାନେ ଅବଶ୍ୟ ତାଙ୍କ ବିଷୟରେ ସନ୍ଦେହରେ ପଡ଼ିଛନ୍ତି। ସେମାନଙ୍କୁ ଏହାର କୌଣସି ଜ୍ଞାନ ନାହିଁ ଏବଂ ସେମାନେ କେବଳ ଅନୁମାନ କରୁଛନ୍ତି। ଏହା ନିଶ୍ଚିତ ଯେ ସେମାନେ ତାଙ୍କୁ ହତ୍ୟା କରିନାହାନ୍ତି। ୧୫୮. ବରଂ ଅଲ୍ଲାହ୍ ତାଙ୍କୁ ନିଜ ପାଖକୁ ଉଠାଇ ନେଇଥିଲେ। ଅଲ୍ଲାହ୍ ପ୍ରବଳ କ୍ଷମତାଶାଳୀ ଏବଂ ତତ୍ତ୍ୱଜ୍ଞ। ୧୫୯. ଗ୍ରନ୍ଥବିଶ୍ୱାସୀମାନଙ୍କ ମଧ୍ୟରେ ଏପରି କେହି ନାହିଁ ଯିଏ ତାଙ୍କ ମୃତ୍ୟୁ ପୂର୍ବରୁ ତାଙ୍କ ପ୍ରତି ବିଶ୍ୱାସ ସ୍ଥାପନ ନକରିବ ଏବଂ ବିଚାର ଦିନ ସେ ସେମାନଙ୍କ ବିରୁଦ୍ଧରେ ସାକ୍ଷୀ ହେବେ।

୧୬୦. ଇହୁଦୀମାନଙ୍କର ଅନ୍ୟାୟ-ଅତ୍ୟାଚାର ଯୋଗୁଁ ଆମ୍ଭେ ସେମାନଙ୍କ ପାଇଁ କେତେକ ଶୁଦ୍ଧ ଖାଦ୍ୟ ନିଷିଦ୍ଧ କରି ଦେଇଥିଲୁ ଯାହା ପୂର୍ବରୁ ସେମାନଙ୍କ ପାଇଁ ବୈଧ ଥିଲା । ଏହି କାରଣରୁ ମଧ୍ୟ ଯେ ସେମାନେ ଅଲ୍ଲାହଙ୍କ ମାର୍ଗରେ ବାରମ୍ବାର ବାଧା ଦେଉଥିଲେ । ୧୬୧. (ଏହା ବ୍ୟତୀତ) ସେମାନଙ୍କୁ ବାରଣ କରାଯିବା ସତ୍ତ୍ୱେ ସେମାନେ ସୁଧ ନେଉଥିଲେ ଏବଂ ଲୋକମାନଙ୍କ ଧନ ଅସଦୁପାୟରେ ଖାଇ ଯାଉଥିଲେ । ସେମାନଙ୍କ ମଧ୍ୟରେ ଥିବା ଅଧର୍ମୀମାନଙ୍କ ପାଇଁ ଆମ୍ଭେ ଯନ୍ତ୍ରଣାଦାୟକ ଶାସ୍ତି ପ୍ରସ୍ତୁତ କରି ରଖିଛୁ । ୧୬୨. ସେମାନଙ୍କ ମଧ୍ୟରୁ ଯେଉଁମାନଙ୍କର ଜ୍ଞାନ ଗଭୀର ଏବଂ ଯେଉଁମାନେ ସଦ୍‌ବିଶ୍ୱାସୀ, ସେମାନେ ତୁମ ପାଖକୁ ପଠା ଯାଇଥିବା ଗ୍ରନ୍ଥକୁ ବିଶ୍ୱାସ କରନ୍ତି ଏବଂ ତୁମ ପୂର୍ବରୁ ପଠାଯାଇଥିବା ଗ୍ରନ୍ଥଗୁଡ଼ିକୁ ମଧ୍ୟ ବିଶ୍ୱାସ କରନ୍ତି । ସେମାନେ ନମାଜ ପାଠ କରନ୍ତି, ଜକାତ୍ ଦିଅନ୍ତି ଏବଂ ଅଲ୍ଲାହଙ୍କୁ ଓ ବିଚାର ଦିନକୁ ବିଶ୍ୱାସ କରନ୍ତି । ଏମାନଙ୍କୁ ଆମ୍ଭେ ନିଶ୍ଚୟ ଭଲ ପୁରସ୍କାର ଦେବୁ ।

୧୬୩. (ହେ ବାର୍ତ୍ତାବହ!) ଆମ୍ଭେ ତୁମକୁ ଠିକ୍ ସେହିପରି ଦୈବବାଣୀ କରିଛୁ ଯେପରି ଆମ୍ଭେ ନୁହଙ୍କୁ ତଥା ତାଙ୍କ ପରବର୍ତ୍ତୀ ବାର୍ତ୍ତାବହମାନଙ୍କୁ ଦୈବବାଣୀ କରିଥିଲୁ ଏବଂ ଯେପରି ଇବ୍ରାହିମ୍ (ଅର୍ଥାତ୍ ଆବ୍ରାହମ୍), ଇସମାଇଲ, ଇସହାକ (ଅର୍ଥାତ୍ ଆଇଜାକ୍), ୟାକୁବ (ଅର୍ଥାତ୍ ଯାକବ୍) ଓ ତାଙ୍କ ବଂଶଧରମାନଙ୍କୁ ଏବଂ ଇସା (ଅର୍ଥାତ୍ ଯୀଶୁ), ଅୟୁବ (ଅର୍ଥାତ୍ ଯବ୍), ୟୁନୁସ୍ (ଅର୍ଥାତ୍ ଯୋନାହ୍), ହାରୁନ (ଅର୍ଥାତ୍ ଆରୋନ୍) ଏବଂ ସୁଲେମାନଙ୍କୁ (ଅର୍ଥାତ୍ ସଲୋମନ୍‌ଙ୍କୁ) ମଧ୍ୟ ଦୈବବାଣୀ କରିଥିଲୁ । ଆମ୍ଭେ ଦାଉଦ୍‌ଙ୍କୁ (ଅର୍ଥାତ୍ ଡେଭିଡ୍‌ଙ୍କୁ) ଜବୁର୍ ଗ୍ରନ୍ଥ ପ୍ରଦାନ କରିଥିଲୁ । ୧୬୪. କେତେକ ଈଶ୍ୱରଦୂତଙ୍କ ବିଷୟରେ ଆମ୍ଭେ ତୁମ ପାଖରେ ପୂର୍ବରୁ ବର୍ଣ୍ଣନା କରିସାରିଛୁ ଏବଂ କେତେକଙ୍କ ବିଷୟରେ ଆମ୍ଭେ ତୁମ ପାଖରେ ବର୍ଣ୍ଣନା କରିନାହୁଁ । ମୁ'ସାଙ୍କ (ଅର୍ଥାତ୍ ମୋସେସ୍‌ଙ୍କ) ସହିତ ଅଲ୍ଲାହ୍ ପ୍ରତ୍ୟକ୍ଷ ରୂପେ କଥାବାର୍ତ୍ତା କରିଥିଲେ । ୧୬୫. ଆମ୍ଭେ ବାର୍ତ୍ତାବହମାନଙ୍କୁ (ସ୍ୱର୍ଗର) ସୁସମାଚାର ଦେବାପାଇଁ ଏବଂ (ନର୍କ ବିଷୟରେ) ସାବଧାନ କରିବା ପାଇଁ ପଠାଇଥାଉ ଯେପରିକି ବାର୍ତ୍ତାବହମାନଙ୍କ ଆଗମନ ପରେ ଲୋକମାନେ ଅଲ୍ଲାହଙ୍କ ପାଖରେ କିଛି ବାହାନା କରି ପାରିବେନାହିଁ । ଅଲ୍ଲାହ୍ ପ୍ରବଳ କ୍ଷମତାଶାଳୀ ଏବଂ ତତ୍ତ୍ୱଜ୍ଞ ।

୧୬୬. ଅଲ୍ଲାହ୍ ତୁମ ପାଖକୁ ଯାହା ପଠାଇଛନ୍ତି, ତାହା ନିଜ ଜ୍ଞାନରୁ ପଠାଇଛନ୍ତି ବୋଲି ସ୍ୱୟଂ ଅଲ୍ଲାହ୍ ଏହାର ସାକ୍ଷୀ ଅଛନ୍ତି ଏବଂ ଦେବଦୂତମାନେ ମଧ୍ୟ ସାକ୍ଷୀ ଅଛନ୍ତି । (କେବଳ) ଅଲ୍ଲାହ ସାକ୍ଷୀ ରହିବା ହିଁ ଯଥେଷ୍ଟ । ୧୬୭. ଯେଉଁମାନେ ଏହାକୁ ଅସ୍ୱୀକାର କଲେ ଏବଂ ଅଲ୍ଲାହଙ୍କ ମାର୍ଗରେ ଲୋକମାନଙ୍କୁ ବାଧା ଦେଲେ, ସେମାନେ ପଥଭ୍ରଷ୍ଟ ହୋଇ ବହୁ ଦୂରକୁ ଚାଲିଗଲେ । ୧୬୮. ଯେଉଁମାନେ (ସତ୍ୟକୁ) ଅସ୍ୱୀକାର କରିଛନ୍ତି ଏବଂ ଅନ୍ୟାୟ-ଅତ୍ୟାଚାର କରିଛନ୍ତି, ଅଲ୍ଲାହ୍ ସେମାନଙ୍କୁ କଦାପି କ୍ଷମା କରିବେନାହିଁ କିମ୍ବା ସେମାନଙ୍କର ମାର୍ଗଦର୍ଶନ କରିବେନାହିଁ । ୧୬୯. (ସେମାନଙ୍କୁ) ସେ କେବଳ ନର୍କର ମାର୍ଗ ଦେଖାଇବେ ଯେଉଁଠି ସେମାନେ ସର୍ବଦା ରହିବେ । ଏହା ଅଲ୍ଲାହଙ୍କ ପାଇଁ ଏକ ସାମାନ୍ୟ କଥା । ୧୭୦. ହେ ମନୁଷ୍ୟଗଣ! ଏହି ବାର୍ତ୍ତାବହ (ଅର୍ଥାତ୍ ମହାମାନ୍ୟ ମୁହମ୍ମଦ) ତୁମ ଈଶ୍ୱରଙ୍କଠାରୁ ସତ୍ୟର ବାର୍ତ୍ତା ଧରି ତୁମମାନଙ୍କ ପାଖକୁ ଆସିଛନ୍ତି । ଏହାକୁ ମାନିନିଅ, ଯାହାଫଳରେ ତୁମମାନଙ୍କର ମଂଗଳ ହେବ । ଯଦି ନମାନିବ, ତେବେ (ଜାଣିରଖ) ଯାହା ପୃଥିବୀରେ ଅଛି ଏବଂ ଯାହା ଆକାଶରେ ଅଛି, ସବୁ ଅଲ୍ଲାହଙ୍କର ଏବଂ ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ ।

୧୭୧. ହେ ଗ୍ରନ୍ଥବିଶ୍ୱାସୀମାନେ! ନିଜ ଧର୍ମକୁ ଅତିରଂଜିତ କରନାହିଁ ଏବଂ ଅଲ୍ଲାହଙ୍କ ବିଷୟରେ କେବଳ ସତ ଛଡ଼ା ଆଉ କିଛି କୁହନାହିଁ । ମରିୟମଙ୍କ ପୁତ୍ର ଯୀଶୁ ମସିହ ଅଲ୍ଲାହଙ୍କର ଜଣେ ବାର୍ତ୍ତାବହ ଥିଲେ ଏବଂ ମରିୟମଙ୍କ ଗର୍ଭକୁ ପଠା ଯାଇଥିବା ଏକ 'ଆଜ୍ଞା' ତଥା ତାଙ୍କଦ୍ୱାରା ପ୍ରେରିତ ଜଣେ ଆତ୍ମା ଥିଲେ । ତେଣୁ, ଅଲ୍ଲାହ୍ ଓ ତାଙ୍କ ବାର୍ତ୍ତାବହମାନଙ୍କୁ ମାନିନିଅ ଏବଂ "ଈଶ୍ୱର ତିନିଜଣ" ବୋଲି କୁହନାହିଁ । ସେଥିରୁ ବିରତ ରୁହ । ଏଇଥିରେ ହିଁ ତୁମମାନନଙ୍କର ମଂଗଳ । ଏକମାତ୍ର ଅଲ୍ଲାହ୍ ହିଁ ଉପାସନାଯୋଗ୍ୟ । ସେ ପରମ ପବିତ୍ର ଏବଂ ତାଙ୍କର ପୁତ୍ର ଜାତ ହେବା ତାଙ୍କର ମହିମା-ବିରୋଧୀ । ଯାହା ପୃଥିବୀରେ ଅଛି ଏବଂ ଯାହା ଆକାଶରେ ଅଛି, ସବୁ ଅଲ୍ଲାହଙ୍କର ଏବଂ ଅଲ୍ଲାହ୍ (ସମସ୍ତଙ୍କର) କାର୍ଯ୍ୟସିଦ୍ଧି ପାଇଁ ଯଥେଷ୍ଟ ।

୧୭୨. ଯୀଶୁ ମସିହ ଅଲ୍ଲାହଙ୍କର ସେବକ ହେବାକୁ ସଂକୋଚ କରନ୍ତିନାହିଁ କିମ୍ବା ତାଙ୍କ ପାଖରେ ରହୁଥିବା ଦେବଦୂତମାନେ ମଧ୍ୟ । ଯିଏ ଅଲ୍ଲାହଙ୍କ

ଉପାସନା କରିବାକୁ ସଂକୋଚ ବା ଅହଙ୍କାର କରିବ, (ସେ ଜାଣିରଖୁ ଯେ) ଅଲ୍ଲାହ୍ (ଦିନେ) ସମସ୍ତଙ୍କୁ ଏକାଠି କରି ନିଜ ପାଖରେ ହାଜର କରିବେ । ୧୭୩. ଯେଉଁମାନେ (ସତ୍ୟରେ) ବିଶ୍ୱାସ କଲେ ଏବଂ ସତକର୍ମ କଲେ ଅଲ୍ଲାହ୍ ସେମାନଙ୍କୁ ସେମାନଙ୍କ କର୍ମର ସମ୍ପୂର୍ଣ୍ଣ ଫଳ ଦେବେ ଏବଂ ନିଜ କରୁଣାରୁ ଅଧିକ ମଧ୍ୟ ଦେବେ । ଯେଉଁମାନେ (ତାଙ୍କର ଭକ୍ତ ହେବାକୁ) ଅପସନ୍ଦ କଲେ ଏବଂ ଅହଂକାର କଲେ, ସେମାନଙ୍କୁ ସେ ଦୁଃଖଦାୟକ ଶାସ୍ତି ଦେବେ । ସେମାନଙ୍କୁ ଅଲ୍ଲାହଙ୍କ ବ୍ୟତୀତ କେହି ବନ୍ଧୁ ବା ସାହାଯ୍ୟକାରୀ ମିଳିବେ ନାହିଁ ।

୧୭୪. ହେ ମନୁଷ୍ୟଗଣ! ତୁମମାନଙ୍କ ପାଖରେ ତୁମ ଈଶ୍ୱରଙ୍କଠାରୁ ବଳିଷ୍ଠ ପ୍ରମାଣ ଆସି ସାରିଛି ଏବଂ ଆମ୍ଭେ ତୁମମାନଙ୍କ ପାଖକୁ ଏକ ଆଲୋକ ପଠାଇଛୁ, ଯାହା ପରିଷ୍କାର ବାଟ ଦେଖାଏ । ୧୭୫. ତେଣୁ, ଯେଉଁମାନେ ଅଲ୍ଲାହଙ୍କୁ ବିଶ୍ୱାସ କଲେ ଏବଂ ତାଙ୍କର ଦୃଢ଼ ଆଶ୍ରୟ ନେଲେ, ସେ ସେମାନଙ୍କୁ ନିଜର କୃପା ଓ କରୁଣାର ଛାୟାରେ ରଖିବେ ଏବଂ ସେମାନଙ୍କୁ ସଳଖ ବାଟରେ ନେଇଯିବେ ।

୧୭୬. ଲୋକମାନେ ଶାସ୍ତ୍ରନିୟମ ପଚାରୁଛନ୍ତି । ଅଲ୍ଲାହ୍ ତୁମକୁ ଆଦେଶ ଦେଉଛନ୍ତି ଯେ ଯଦି କୌଣସି ବ୍ୟକ୍ତି ସନ୍ତାନହୀନ ଅବସ୍ଥାରେ ମୃତ୍ୟୁ ବରଣ କରେ ଏବଂ ତା'ର ଗୋଟିଏ ଭଉଣୀ ଥାଏ, ତେବେ ସେ ତା' ସଂପତ୍ତିର ଅଧା ଭାଗ ପାଇବ ଆଉ ଯଦି ସେହି ଭଉଣୀର ସନ୍ତାନ ନଥାଆନ୍ତି (ସେ ମୃତ୍ୟୁ ବରଣ କରେ ଏବଂ ତା' ଭାଇ ଜୀବିତ ଥାଏ) ତେବେ ସେ ନିଜ ଭଉଣୀର ଉତ୍ତରାଧିକାରୀ ହେବ । ଯଦି ଦୁଇଜଣ ଭଉଣୀ ଥାଆନ୍ତି, ତେବେ ଭାଇ ସଂପତ୍ତିର ଦୁଇ-ତୃତୀୟାଂଶର ଅଧିକାରୀ ହେବ । ଯଦି ମୃତ ବ୍ୟକ୍ତିର ଭାଇ ଓ ଭଉଣୀ ମଧ୍ୟ ଥାଆନ୍ତି, ତେବେ ଜଣେ ପୁରୁଷର ଭାଗ ଦୁଇଜଣ ନାରୀଙ୍କ ଭାଗ ସହ ସମାନ ହେବ । ଅଲ୍ଲାହ୍ ତୁମମାନଙ୍କ ପାଇଁ (ତାଙ୍କର ନିୟମ) ପରିଷ୍କାର ଭାବରେ ବର୍ଣ୍ଣନା କରୁଛନ୍ତି ଯେପରିକି ତୁମେମାନେ ବିଭ୍ରାନ୍ତ ନହୁଅ । ଅଲ୍ଲାହ୍ ପ୍ରତ୍ୟେକ କଥା ଜାଣନ୍ତି ।

## ଅଧ୍ୟାୟ ୫, ଅଲ୍ ମାଇଦା

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ହେ ସଦ୍‌ବିଶ୍ୱାସୀଗଣ ! ନିଜର ବଚନ ରକ୍ଷାକର । ତୁମ୍ଭମାନଙ୍କ (ଖାଇବା) ପାଇଁ ସବୁ ତୃଣଭୋଜୀ ପଶୁ ବୈଧ, କେବଳ ସେହି ପଶୁମାନଙ୍କ ବ୍ୟତୀତ ଯେଉଁମାନଙ୍କ ବିଷୟରେ ତୁମ୍ଭମାନଙ୍କୁ ପଢ଼ି ଶୁଣାଇ ଦିଆଯିବ, ମାତ୍ର ଏହରାମ୍ ଅବସ୍ଥାରେ ତୁମ୍ଭମାନଙ୍କ ପାଇଁ ଶିକାର କରିବା ବୈଧ ନୁହେଁ । ଅଲ୍ଲାହ୍ ଯାହା ଚାହାନ୍ତି ତାହା ଆଦେଶ ଦିଅନ୍ତି ।

୨. ହେ ସଦ୍‌ବିଶ୍ୱାସୀଗଣ ! ଅଲ୍ଲାହ୍‌ଙ୍କ କୌଣସି ନିଦର୍ଶନର ବା କୌଣସି ପବିତ୍ର ମାସର କିମ୍ବା ବଳି ପାଇଁ ଅଣା ଯାଇଥିବା ପଶୁମାନଙ୍କର କିମ୍ବା ସେହି ପଶୁଙ୍କର ଯେଉଁମାନଙ୍କ ବେକରେ ବଳିର (ସଂକେତ ରୂପେ) ମାଳ ପଡ଼ିଥାଏ କିମ୍ବା ସେହି ବ୍ୟକ୍ତିମାନଙ୍କର ଅସମ୍ମାନ କରନାହିଁ ଯେଉଁମାନେ ଅଲ୍ଲାହ୍‌ଙ୍କ କରୁଣା ଓ ପ୍ରସନ୍ନତା ଲାଭ କରିବାପାଇଁ ପବିତ୍ର କାବା ଉଦ୍ଦେଶ୍ୟରେ ଯାତ୍ରା କରନ୍ତି । ହଁ, ଯେତେବେଳେ ତୁମେମାନେ ଏହରାମ୍‌ରୁ ନିବୃତ୍ତ ହୋଇଯାଅ, ସେତେବେଳେ ଶିକାର କରିପାର । ପବିତ୍ର କାବା ମସଜିଦରେ ପ୍ରବେଶ କଲାବେଳେ ତୁମ୍ଭମାନଙ୍କୁ କୌଣସି ଗୋଷ୍ଠୀ ବାଧା ଦେଇଥିଲା ବୋଲି ସେମାନଙ୍କ ସହିତ ଶତ୍ରୁତା ତୁମ୍ଭମାନଙ୍କୁ ସୀମାଲଂଘନ କରିବା ପାଇଁ ଉତ୍ତେଜିତ ନକରୁ । ପୁଣ୍ୟକାର୍ଯ୍ୟ ଏବଂ ସଦାଚାରିତାରେ ପରସ୍ପରକୁ ସାହାଯ୍ୟ କର କିନ୍ତୁ ପାପ ଓ ଅତ୍ୟାଚାରରେ କାହାରିକୁ ସହଯୋଗ କରନାହିଁ । ଅଲ୍ଲାହ୍‌ଙ୍କୁ ଭୟ କରୁଥାଅ । ଅଲ୍ଲାହ୍ ଅବଶ୍ୟ କଠୋର ଶାସ୍ତି ଦିଅନ୍ତି ।

୩. ତୁମ୍ଭମାନଙ୍କ (ଖାଇବା) ପାଇଁ ଯାହା ନିଷିଦ୍ଧ କରାଗଯାଇଛି, ତାହା ହେଉଛି ମୃତ ପଶୁପକ୍ଷୀର ମାଂସ, ରକ୍ତ, ଘୁଷୁରୀମାଂସ ଏବଂ (ସେହି ପଶୁର ମାଂସ) ଯାହାକୁ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କାହାରି ନାମରେ ବଧ କରା ଯାଇଥାଏ, ଯିଏ କଣ୍ଠରୋଧ ହେବା ଦ୍ୱାରା ବା କୌଣସି ଆଘାତ ଦ୍ୱାରା ବା ଉପରୁ ଖସିପଡ଼ି ମରି ଯାଇଥାଏ ବା ଯିଏ ଶିଂଗ ଆଘାତରେ ମରିଥାଏ କିମ୍ବା ଯାହାକୁ କୌଣସି ହିଂସ୍ର ଜନ୍ତୁ ଆକ୍ରମଣ କରିଥାଏ । ହଁ, ଯଦି ତୁମେ ତାହାକୁ ଅଲ୍ଲାହ୍‌ଙ୍କ ନାମ ନେଇ ବଧ କରିଛ (ଅର୍ଥାତ୍ ସଂସ୍କୃତ କରିଛ), ତା'ହେଲେ ଏହା ଅବୈଧ ନୁହେଁ । (ସେହି ପଶୁର

ଭୋଜନ ମଧ୍ୟ ନିଷିଦ୍ଧ) ଯାହାକୁ କୌଣସି ବେଦୀରେ ବଳି ଦିଆ ଯାଇଥାଏ ଏବଂ ତୀର (ବା ଧର୍ମଗୁଳା) ବ୍ୟବହାର କରି ଭାଗ୍ୟଫଳ ଜାଣିବା ମଧ୍ୟ ନିଷିଦ୍ଧ। ଏଗୁଡ଼ିକ ସବୁ ପାପାଚାର। ଆଜି ଅସଦ୍‌ବିଶ୍ୱାସୀମାନେ (ବାରମ୍ବାର ବିରୋଧ କରି) ତୁମ ଧର୍ମରୁ ନିରାଶ ହୋଇ ଯାଇଛନ୍ତି। ତେଣୁ, ତୁମେମାନେ ସେମାନଙ୍କୁ ଭୟ କରନାହିଁ ବରଂ ମୋତେ ଭୟ କର। ଆଜି ଦିନରେ ମୁଁ ତୁମମାନଙ୍କ ପାଇଁ ତୁମ ଧର୍ମକୁ ସମ୍ପୂର୍ଣ୍ଣ କଲି ଏବଂ ତୁମମାନଙ୍କ ପ୍ରତି ମୋ' ଅନୁଗ୍ରହ ମଧ୍ୟ ସଂପୂର୍ଣ୍ଣ କଲି ଏବଂ ଇସଲାମ୍‌କୁ ତୁମମାନଙ୍କ ଧର୍ମ ରୂପେ ପସନ୍ଦ କଲି। ତେଣୁ, ଯଦି କୌଣସି ବ୍ୟକ୍ତିର ପାପ ମନୋବୃତ୍ତି ନଥାଏ ମାତ୍ର ସେ ଭୋକ ବିକଳରେ ନିରୁପାୟ ହୋଇ କୌଣସି ନିଷିଦ୍ଧ ଖାଦ୍ୟ ଖାଇଦିଏ, ତେବେ ଅଲ୍ଲାହ୍ ଅବଶ୍ୟ କ୍ଷମାଶୀଳ ଓ କରୁଣାମୟ।

୪. (ହେ ବାର୍ତ୍ତାବହ!) ଲୋକେ ତୁମକୁ ପଚାରୁଛନ୍ତି ଯେ ସେମାନଙ୍କ ପାଇଁ କ'ଣ ସବୁ ବୈଧ। ସେମାନଙ୍କୁ କୁହ "ସବୁ ଶୁଦ୍ଧ ଖାଦ୍ୟ ତୁମମାନଙ୍କ ପାଇଁ ବୈଧ। ଯେଉଁ ଶିକାରୀ ପଶୁଙ୍କୁ ତୁମେମାନେ ପୋଷା ମନେଇଛ ଏବଂ ଅଲ୍ଲାହ୍ ପ୍ରଦାନ କରିଥିବା ଜ୍ଞାନରୁ ସେମାନଙ୍କୁ ପ୍ରଶିକ୍ଷିତ କରିଛ, ସେମାନେ ଯେଉଁ ପଶୁଙ୍କୁ ଧରନ୍ତି ସେମାନଙ୍କୁ ତୁମେ ଖାଇପାର, ମାତ୍ର ସେମାନଙ୍କୁ ଅଲ୍ଲାହଙ୍କ ନାମରେ (ସଂସ୍କୃତ କରି) ବଧ କର ଏବଂ ଅଲ୍ଲାହଙ୍କ ପ୍ରତି ଭୟ ରଖିଥାଅ। ଅଲ୍ଲାହ୍ ଖୁବ୍‌ଶୀଘ୍ର (ତୁମମାନଙ୍କ କାର୍ଯ୍ୟକଳାପର) ହିସାବ ନେବେ। ୫. ଆଜି ତୁମମାନଙ୍କ ପାଇଁ ସବୁ ଶୁଦ୍ଧ ଖାଦ୍ୟ ପଦାର୍ଥ ବୈଧ କରି ଦିଆଗଲା। ଗ୍ରନ୍ଥବିଶ୍ୱାସୀମାନଙ୍କର ଖାଦ୍ୟ ତୁମମାନଙ୍କ ପାଇଁ ବୈଧ ଏବଂ ତୁମମାନଙ୍କର ଖାଦ୍ୟ ସେମାନଙ୍କ ପାଇଁ ମଧ୍ୟ ବୈଧ। ସତୀ ମୁସଲିମ୍ ନାରୀ ଏବଂ ଯେଉଁମାନଙ୍କୁ ତୁମ ପୂର୍ବରୁ ଗ୍ରନ୍ଥ ଦିଆ ଯାଇଥିଲା ସେମାନଙ୍କ ମଧ୍ୟରେ ଥିବା ସତୀ ନାରୀମାନଙ୍କ ସହିତ ତୁମମାନଙ୍କର ବିବାହ ମଧ୍ୟ ବୈଧ, ଏହି ସର୍ତ୍ତରେ ଯେ ତୁମେମାନେ ସେମାନଙ୍କୁ ମେହେର ଦେଇ ରୀତିମତେ ବିବାହ କରି ରଖିବ, କିନ୍ତୁ (ବିନା ବିବାହରେ) ବ୍ୟଭିଚାର ବା ଗୁପ୍ତ ପ୍ରଣୟ କରିବା ପାଇଁ ନୁହେଁ। ଯିଏ (ଈଶ୍ୱରଙ୍କୁ) ବିଶ୍ୱାସ କରେନାହିଁ ତା'ର ସବୁ କର୍ମ ବ୍ୟର୍ଥ ହୋଇଯିବ ଏବଂ ସେ ପରଲୋକରେ ନିଶ୍ଚୟ କ୍ଷତିଗ୍ରସ୍ତ ହେବ।

୬. ହେ ମୁସଲମାନଗଣ! ନମାଜ ପାଇଁ ପ୍ରସ୍ତୁତ ହେବାବେଳେ ନିଜର ମୁହଁ ଧୁଅ, କହୁଣୀ ପର୍ଯ୍ୟନ୍ତ ହାତ ଧୁଅ, ପାଣି ହାତ କରି ମୁଣ୍ଡ ପୋଛିନିଅ ଏବଂ

ବଳାଗଣ୍ଠି ପର୍ଯ୍ୟନ୍ତ ପାଦ ଧୋଇନିଅ । ଯଦି ତୁମେ ସହବାସ କରିଥାଅ, ତେବେ (ସ୍ନାନ କରି) ଶୁଦ୍ଧ ହୁଅ ଏବଂ ଯଦି ଅସୁସ୍ଥ ଥାଅ ବା ଯାତ୍ରା କରୁଥାଅ ବା ତୁମ ମଧ୍ୟରୁ କେହି ଶୌଚାଳୟରୁ ଆସିଥାଏ କିମ୍ବା ତୁମେ ପତ୍ନୀ ସହିତ ସହବାସ କରିଥାଅ କିନ୍ତୁ ତୁମକୁ ପାଣି ନମିଳେ ତେବେ ଶୁଦ୍ଧ ମାଟି ଦ୍ୱାରା ମୁହଁ ଓ ହାତ ଘଷି ତୟମ୍ମୁମ୍ କରିନିଅ । ଅଲ୍ଲାହ୍ ତୁମମାନଙ୍କୁ କଷ୍ଟ ଦେବାକୁ ଚାହାନ୍ତି ନାହିଁ, ବରଂ ଶୁଦ୍ଧ କରିବାକୁ ଚାହାନ୍ତି ଏବଂ ତୁମମାନଙ୍କ ପ୍ରତି ତାଙ୍କର ଅନୁଗ୍ରହ ସଂପୂର୍ଣ୍ଣ କରିବାକୁ ଚାହାନ୍ତି, ଯେପରିକି ତୁମେମାନେ (ତାଙ୍କ ପ୍ରତି) କୃତଜ୍ଞ ହେବ ।

୭. ତୁମମାନଙ୍କ ପ୍ରତି ଅଲ୍ଲାହ କରିଥିବା ଉପକାରଗୁଡ଼ିକୁ ମନେପକାଅ ଏବଂ ସେ ତୁମମାନଙ୍କଠାରୁ ନେଇଥିବା ସେହି ବଚନକୁ ମଧ୍ୟ ଯେତେବେଳେ ତୁମେମାନେ କହିଥିଲ ଯେ ଆମେ (ଅଲ୍ଲାହଙ୍କର ଆଜ୍ଞା) ଶୁଣିଲୁ ଏବଂ ମାନିଲୁ । ଅଲ୍ଲାହଙ୍କୁ ଭୟ କରୁଥାଅ । ଅଲ୍ଲାହ୍ ଅନ୍ତର କଥା ଜାଣନ୍ତି । ୮. ହେ ସଦ୍‌ବିଶ୍ୱାସୀଗଣ ! ଅଲ୍ଲାହଙ୍କ ପାଇଁ ସତ୍ୟରେ ଅଟଳ ରହି ନ୍ୟାୟପୂର୍ବକ ସାକ୍ଷ୍ୟ ଦିଅ ଏବଂ କୌଣସି ସଂପ୍ରଦାୟର ଶତ୍ରୁତା ତୁମମାନଙ୍କୁ ନ୍ୟାୟର ପନ୍ଥା ଛାଡ଼ିଦେବା ପାଇଁ ଉତ୍ତେଜିତ ନକରୁ । ସର୍ବଦା ନ୍ୟାୟ କର । ଏହା ଧର୍ମପରାୟଣତା । ଅଲ୍ଲାହ୍‌ଙ୍କୁ ଭୟ କରୁଥାଅ । ଯାହା ତୁମେମାନେ କର, ଅଲ୍ଲାହ୍ ଅବଶ୍ୟ ଜାଣନ୍ତି । ୯. ଯେଉଁମାନେ ବିଶ୍ୱାସ ରଖି ସତକର୍ମ କରନ୍ତି, ଅଲ୍ଲାହ୍ ବଚନ ଦେଇଛନ୍ତି ଯେ ସେ ସେମାନଙ୍କୁ କ୍ଷମା କରିଦେବେ ଏବଂ ଭଲ ପୁରସ୍କାର ଦେବେ । ୧୦. ଯେଉଁମାନେ ଅବିଶ୍ୱାସ କଲେ ଏବଂ ଆମ୍ଭର ବାଣୀକୁ ପ୍ରତ୍ୟାଖ୍ୟାନ କଲେ, ସେମାନେ ନର୍କବାସୀ ହେବେ । ୧୧. ହେ ମୁସଲମାନଗଣ ! ତୁମମାନଙ୍କ ପ୍ରତି ଅଲ୍ଲାହ କରିଥିବା ସେହି ଉପକାରକୁ ସ୍ମରଣ କର ଯେତେବେଳେ ଦଳେ ଲୋକ ତୁମମାନଙ୍କ ଉପରେ ଆକ୍ରମଣ କରିବାକୁ ମନସ୍ଥ କରିଥିଲେ ମାତ୍ର ଅଲ୍ଲାହ୍ ସେମାନଙ୍କୁ ଅଟକାଇ ଦେଇଥିଲେ । ଅଲ୍ଲାହଙ୍କୁ ଭୟ କରୁଥାଅ । ସଦ୍‌ବିଶ୍ୱାସୀମାନେ ଅଲ୍ଲାହଙ୍କ ଉପରେ ଭରସା ରଖିବା ଉଚିତ ।

୧୨. ଅଲ୍ଲାହ୍ ଇସ୍ରାଇଲଙ୍କ ବଂଶଧରଠାରୁ ବଚନ ନେଇଥିଲେ ଏବଂ ସେମାନଙ୍କ ମଧ୍ୟରୁ ବାରଜଣଙ୍କୁ ମୁଖିଆ ନିଯୁକ୍ତ କରିଥିଲେ । ଅଲ୍ଲାହ୍ ସେମାନଙ୍କୁ କହିଥିଲେ, "ମୁଁ ତୁମମାନଙ୍କ ସହିତ ଅଛି । ଯଦି ତୁମେମାନେ ନମାଜ ସଂପାଦନ

କର, ଜକାତ୍ ଦିଅ, ମୋ' ରସୁଲମାନଙ୍କ କଥା ମାନ, ସେମାନଙ୍କୁ ସାହାଯ୍ୟ କର ଏବଂ ଅଲ୍ଲାହଙ୍କୁ ଭଲ ମନରେ ଋଣ ଦିଅ, ମୁଁ ତୁମମାନଙ୍କର ପାପ ଧୋଇଦେବି ଏବଂ ତୁମମାନଙ୍କୁ ଏଭଳି ଉଦ୍ୟାନରେ ରଖିବି ଯାହା ତଳେ ଝରଣା ବହୁଥିବ । ଯଦି ତୁମମାନଙ୍କ ମଧ୍ୟରୁ କେହି ଅଧର୍ମର ବାଟ ଧରେ, ସେ ନିଶ୍ଚୟ ସତପଥରୁ ବିଚ୍ୟୁତ ହୋଇଯିବ ।" ୧୩. ପୁଣି ବଚନଭଂଗ କରିଥିବା ଯୋଗୁଁ ଆମ୍ଭେ ସେମାନଙ୍କୁ ଅଭିଶାପ ଦେଲୁ ଏବଂ ସେମାନଙ୍କ ହୃଦୟକୁ କଠୋର କରିଦେଲୁ । ସେମାନେ ଗ୍ରନ୍ଥବାଣୀରେ ପରିବର୍ତ୍ତନ କରନ୍ତି ଏବଂ ସେମାନଙ୍କୁ ଦିଆ ଯାଇଥିବା ଅଧିକାଂଶ ଶିକ୍ଷା ଭୁଲି ଯାଇଛନ୍ତି । ଅଳ୍ପ କେଇଜଣଙ୍କୁ ଛାଡ଼ିଦେଲେ, ତୁମେ ସେମାନଙ୍କ ବିଶ୍ୱାସଘାତକତାର ଖବର ନିୟମିତ ପାଉଥିବ । ତେବେ ସେମାନଙ୍କୁ କ୍ଷମା କର ଏବଂ ଅଣଦେଖା କର । ବାସ୍ତବରେ ଅଲ୍ଲାହ ପରୋପକାରୀମାନଙ୍କୁ ଭଲ ପାଆନ୍ତି ।

୧୪. ଯେଉଁମାନେ ନିଜକୁ ଖ୍ରୀଷ୍ଟିୟାନ ବୋଲି କହନ୍ତି, ଆମ୍ଭେ ସେମାନଙ୍କଠାରୁ ମଧ୍ୟ ବଚନ ନେଇଥିଲୁ କିନ୍ତୁ ସେମାନେ ମଧ୍ୟ ସେମାନଙ୍କୁ ଦିଆଯାଇଥିବା ଅଧିକାଂଶ ଶିକ୍ଷା ଭୁଲିଗଲେ । ତେଣୁ, ଆମ୍ଭେ ପ୍ରଳୟ ପର୍ଯ୍ୟନ୍ତ ସେମାନଙ୍କ ମନରେ ପରସ୍ପର ପ୍ରତି ଘୃଣା ଓ ବିଦ୍ୱେଷ ସୃଷ୍ଟି କରିଦେଇଛୁ । ସେମାନେ ଯାହା କରୁଛନ୍ତି, ଅଲ୍ଲାହ୍ ଖୁବ୍‌ଶୀଘ୍ର ସେମାନଙ୍କୁ ଜଣାଇ ଦେବେ ।

୧୫. ହେ ଗ୍ରନ୍ଥବିଶ୍ୱାସୀମାନେ! ଆମ୍ଭର ବାର୍ତ୍ତାବହ (ମହାମାନ୍ୟ ମୁହମ୍ମଦ୍) ଅବଶ୍ୟ ତୁମମାନଙ୍କ ପାଖକୁ ଆସି ସାରିଛନ୍ତି । ସେ ପୂର୍ବ ଗ୍ରନ୍ଥରେ ଥିବା ଅନେକ କଥା ତୁମ ନିକଟରେ ପରିଷ୍କାର ଭାବରେ ବର୍ଣ୍ଣନା କରୁଛନ୍ତି ଯାହା ତୁମେମାନେ ଲୁଚାଉଥିଲ । ଅନେକ କଥା ମଧ୍ୟ ସେ ଧରୁନାହାନ୍ତି । ତୁମମାନଙ୍କ ପାଖକୁ ଅଲ୍ଲାହଙ୍କଠାରୁ ଏକ ଦିବ୍ୟାଲୋକ ତଥା ସ୍ୱଷ୍ଟ ଗ୍ରନ୍ଥ ଆସିସାରିଛି । ୧୬. ଏହାଦ୍ୱାରା ଅଲ୍ଲାହ୍ ସେହି ଲୋକମାନଙ୍କୁ କଲ୍ୟାଣର ବାଟ ଦେଖାଇ ଦିଅନ୍ତି ଯେଉଁମାନେ ଅଲ୍ଲାହଙ୍କ ପ୍ରସନ୍ନତାର ଅଭିଳାଷୀ, ସେମାନଙ୍କୁ ନିଜ ଆଜ୍ଞା ବଳରେ ଅନ୍ଧକାର ମଧ୍ୟରୁ ଆଲୋକକୁ ନେଇଆସନ୍ତି ଏବଂ ସେମାନଙ୍କୁ ସଳଖ ବାଟରେ ନେଇଯାଆନ୍ତି ।

୧୭. ସେମାନେ ଅବଶ୍ୟ ନାସ୍ତିକ ହୋଇଗଲେ ଯେଉଁମାନେ କହିଲେ ଯେ ମରିୟମଙ୍କ (ଅର୍ଥାତ୍ ମେରୀଙ୍କ) ପୁତ୍ର ଯୀଶୁହିଁ ଅଲ୍ଲାହ୍ । ସେମାନଙ୍କୁ କୁହ "ଯଦି

ଅଲ୍ଲାହ୍; ମେରୀଙ୍କ ପୁତ୍ର ଯୀଶୁ, ତାଙ୍କ ମାଆ ଏବଂ ପୃଥିବୀର ସମସ୍ତ ଲୋକଙ୍କର ବିନାଶ କରିବାକୁ ଚାହିଁବେ, ତେବେ ତାଙ୍କୁ ବିରୋଧ କରିବାର କ୍ଷମତା କାହାର ଅଛି ?" ପୃଥିବୀ ଓ ଆକାଶ ଏବଂ ଏଗୁଡ଼ିକ ମଧ୍ୟରେ ଯାହାକିଛି ଅଛି, ଅଲ୍ଲାହ୍ ସେଗୁଡ଼ିକର ମାଲିକ । ସେ ଯାହା ଚାହାନ୍ତି ତାହା ସୃଷ୍ଟି କରନ୍ତି । ଅଲ୍ଲାହ୍ ସବୁକିଛି କରିବାକୁ ସକ୍ଷମ ।

୧୮. ୟିହୁଦୀ ଓ ଖ୍ରୀଷ୍ଟିୟାନମାନେ କହନ୍ତି ଯେ ଆମେମାନେ ଅଲ୍ଲାହଙ୍କର ପୁତ୍ର ଏବଂ ତାଙ୍କର ପ୍ରିୟପାତ୍ର । ସେମାନଙ୍କୁ ପଚାର, "ତା'ହେଲେ ପୁଣି ତୁମମାନଙ୍କ ପାପ ପାଇଁ ସେ ତୁମକୁ ଶାସ୍ତି କାହିଁକି ଦିଅନ୍ତି ?" ଏକଥା ନୁହେଁ, ବରଂ ତୁମେମାନେ ମଧ୍ୟ ଅନ୍ୟମାନଙ୍କ ପରି ଅଲ୍ଲାହଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ମଣିଷ । ସେ ଯାହାକୁ ଚାହାନ୍ତି କ୍ଷମା କରନ୍ତି ଏବଂ ଯାହାକୁ ଚାହାନ୍ତି ଶାସ୍ତି ଦିଅନ୍ତି । ସମଗ୍ର ଧରିତ୍ରୀ ଓ ଆକାଶ ଏବଂ ଯାହା ସେଗୁଡ଼ିକ ମଧ୍ୟରେ ଅଛି, ସେସବୁର ଅଲ୍ଲାହହିଁ ମାଲିକ ଏବଂ ତାଙ୍କରି ନିକଟକୁ (ସମସ୍ତଙ୍କୁ) ଫେରିବାକୁ ହେବ । ୧୯. ହେ ଗ୍ରନ୍ଥବିଶ୍ୱାସୀମାନେ ! ବାର୍ତ୍ତାବହମାନଙ୍କ ଆବିର୍ଭାବ କ୍ରମର ଏକ ବିରତି ପରେ, (ପ୍ରକୃତ) କଥାକୁ ସ୍ପଷ୍ଟ କରିଦେବା ପାଇଁ ତୁମମାନଙ୍କ ନିକଟକୁ ଆମ୍ଭର ରସୁଲ (ମହାମାନ୍ୟ ମୁହମ୍ମଦ) ଆସି ଯାଇଛନ୍ତି ଯାହା ଫଳରେ ତୁମେମାନେ ଆଉ ଏହା କହିପାରିବ ନାହିଁ ଯେ ତୁମମାନଙ୍କୁ (ସ୍ୱର୍ଗ ବିଷୟରେ) ସୁସମାଚାର ଦେବାପାଇଁ ବା (ନର୍କ ବିଷୟରେ) ସତର୍କ କରିବା ପାଇଁ କେହି ଆସିଲେନାହିଁ । ଏବେତ ତୁମମାନଙ୍କ ପାଖକୁ ସୁସମାଚାର ଦେବା ଏବଂ ସାବଧାନ କରିବା ଲାଗି ଜଣେ ଈଶ୍ୱରଦୂତ ଆସି ସାରିଛନ୍ତି । ଅଲ୍ଲାହ୍ ସବୁକିଛି କରିବାକୁ ସକ୍ଷମ ।

୨୦. ଯେତେବେଳେ ମୁ'ସା ତାଙ୍କ ସମାଜକୁ କହିଥିଲେ, "ଭାଇମାନେ ! ତୁମମାନଙ୍କ ପ୍ରତି ଅଲ୍ଲାହ୍ କରିଥିବା ଉପକାରଗୁଡ଼ିକୁ ମନେପକାଅ ଯେ ସେ ତୁମରିମାନଙ୍କ ଭିତରୁ ନିଜର ବାର୍ତ୍ତାବହମାନଙ୍କୁ ନିଯୁକ୍ତ କଲେ ଏବଂ (କେତେକଙ୍କୁ) ଶାସକ କଲେ ଏବଂ ତୁମମାନଙ୍କୁ ତାହା ଦେଲେ ଯାହା ଏଥିପୂର୍ବରୁ ସେ ସଂସାରରେ କାହାରିକୁ ଦେଇ ନଥିଲେ । ୨୧. ଭାଇମାନେ ! ଏହି ପବିତ୍ର ଭୂମିରେ (ଅର୍ଥାତ୍ ପାଲେଷ୍ଟାଇନରେ) ପ୍ରବେଶ କର ଯାହାକୁ ଅଲ୍ଲାହ୍ ତୁମମାନଙ୍କ

ନାଁରେ ଲେଖି ଦେଇଛନ୍ତି ଏବଂ ପଛଘୁଂଚା ଦିଅନାହିଁ, ନହେଲେ ତୁମେମାନେ କ୍ଷତିଗ୍ରସ୍ତ ହେବ ।" ୨୨. ସେମାନେ କହିଲେ, "ହେ ମୁ'ସା ! ସେଠାରେ ତ ଭାରି ବଳବାନ ଲୋକମାନେ ରହନ୍ତି । ସେମାନେ ସେଠାରୁ ନବାହାରିଲେ ଆମେ ତା'ଭିତରେ ଆଦୌ ପ୍ରବେଶ କରିବୁନାହିଁ । ଯଦି ସେମାନେ ସେଠାରୁ ବାହାରିଯାଆନ୍ତି, ତା'ହେଲେ ଆମେ ପ୍ରବେଶ କରିବୁ ।" ୨୩. ଈଶ୍ୱରଙ୍କୁ ଭୟ କରୁଥିବା ଦୁଇଜଣ ବ୍ୟକ୍ତି ଯେଉଁମାନଙ୍କ ଉପରେ ଅଲ୍ଲାହଙ୍କର ବିଶେଷ କୃପା ଥିଲା, ସେମାନଙ୍କୁ କହିଲେ, "ତୁମେମାନେ ସେମାନଙ୍କୁ (ସହରର) ପ୍ରବେଶ ଦ୍ୱାରରେ ଆକ୍ରମଣ କର । ଥରେ ଭିତରେ ପଶିଗଲେ ତୁମେମାନେହିଁ ବିଜୟୀ ହେବ ଏବଂ ଅଲ୍ଲାହଙ୍କ ଉପରେ ଭରସା ରଖ, ଯଦି ତୁମେ ପ୍ରକୃତରେ ସଦ୍‌ବିଶ୍ୱାସୀ ହୋଇଥାଅ ।" ୨୪. ସେମାନେ କହିଲେ "ହେ ମୁ'ସା ! ସେମାନେ ସେଠାରେ ଥିବା ପର୍ଯ୍ୟନ୍ତ ଆମେ ଆଦୌ ତା'ଭିତରେ ପଶିବୁନାହିଁ । ତେଣୁ, ତୁମେ ଓ ତୁମ ଈଶ୍ୱର ଦୁହେଁ ଯାଇ ଲଢ଼ ।  ଆମେ ଏଇଠି ବସୁଛୁ ।" ୨୫. ମୁ'ସା କହିଲେ "ହେ ପ୍ରଭୁ ! ମୋ' ଭାଇ ଏବଂ ମୋ' ନିଜ ବ୍ୟତୀତ ଅନ୍ୟ କାହାରି ଉପରେ ମୋ'ର ବଳ ନାହିଁ । ତେଣୁ, ତୁମେ ଆମମାନଙ୍କୁ ଏହି ଅବଜ୍ଞାକାରୀ ଲୋକମାନଙ୍କଠାରୁ ଅଲଗା କରିଦିଅ ।" ୨୬. ଅଲ୍ଲାହ୍ କହିଲେ, "ସେମାନଙ୍କୁ ଚାଳିଶ ବର୍ଷ ପାଇଁ ସେହି ଦେଶରୁ ବଂଚିତ କରାଗଲା । ସେମାନେ ଧରାପୃଷ୍ଠରେ ବିଭ୍ରାନ୍ତ ହୋଇ ବୁଲୁଥିବେ । ଏଭଳି ଦୁଷ୍ଟ ଲୋକମାନଙ୍କ ପାଇଁ ତୁମେ ଦୁଃଖ କରନାହିଁ ।"

୨୭. (ହେ ବାର୍ତ୍ତାବହ !) ସେମାନଙ୍କୁ ଆଦମଙ୍କ ଦୁଇ ପୁଅଙ୍କର (ଅର୍ଥାତ୍ ହାବିଲ ଓ କାବିଲ୍‌ଙ୍କର) ସତ୍ୟ ଘଟଣା ମଧ୍ୟ ପଢ଼ି ଶୁଣାଅ ଯେତେବେଳେ ସେମାନେ ପ୍ରତ୍ୟେକ ଗୋଟିଏ ଲେଖାଏଁ ବଳି ଉତ୍ସର୍ଗ କରିଥିଲେ, ମାତ୍ର ସେମାନଙ୍କ ମଧ୍ୟରୁ ଜଣକର ବଳି ସ୍ୱୀକାର ହେଲା ମାତ୍ର ଅନ୍ୟ ଜଣକର ସ୍ୱୀକାର ହେଲା ନାହିଁ । ତେଣୁ ସେ (ଅନ୍ୟ ଭାଇକୁ) କହିଲା "ମୁଁ ତୋତେ ହତ୍ୟା କରିବି ।" ସେ ଉତ୍ତର ଦେଲା "ଅଲ୍ଲାହ୍ କେବଳ ସଦାଚାରୀମାନଙ୍କର ସେବା ସ୍ୱୀକାର କରନ୍ତି । ୨୮. ତୁ ମୋତେ ହତ୍ୟା କରିବାକୁ ହାତ ଉଠାଇଲେ ସୁଦ୍ଧା ମୁଁ ତୋତେ ମାରିବା ପାଇଁ ହାତ ଉଠାଇବି ନାହିଁ । ମୁଁ ଅଲ୍ଲାହଙ୍କୁ ଭୟ କରେ ଯିଏ ସାରା ଜଗତର ପାଳନକର୍ତ୍ତା । ୨୯. ମୁଁ ଚାହେଁ ଯେ ତୁ ମୋ'ର ଆଉ ତୋ'ର, ଉଭୟଙ୍କର ପାପ ମୁଣ୍ଡାଇ ନର୍କବାସୀ ହୁଅ ।

ଏହାହିଁ ଅତ୍ୟାଚାରୀମାନଙ୍କର ଶାସ୍ତି ।" ୩୦. ପୁଣି ତା' ମନ ତାକୁ ନିଜ ଭାଇକୁ ହତ୍ୟା କରିବାକୁ କହିଲା । ତେଣୁ, ସେ ତାକୁ ହତ୍ୟା କରିଦେଲା ଏବଂ ନିଜର ସର୍ବନାଶ କଲା । ୩୧. ଏହାପରେ ଅଲ୍ଲାହ୍ କାଉଟିଏ ପଠାଇଲେ ଯିଏ (ଥଣ୍ଟରେ) ମାଟି ଖୋଳିବାକୁ ଲାଗିଲା ଯାହାଦ୍ୱାରା ସେ ତାକୁ ଦେଖାଇ ଦେବ ଯେ ସେ ତା' ଭାଇର ଶବକୁ କିପରି ଲୁଚାଇବ । ଏହା ଦେଖି ସେ କହିଲା "ମୋର ଦୁର୍ଭାଗ୍ୟ ! ମୁଁ ସାମାନ୍ୟ କାଉ ପରି ମଧ୍ୟ ହେଲିନାହିଁ ଯେ ନିଜ ଭାଇର ଶବକୁ ଲୁଚାଇଦିଅନ୍ତି ।" ପୁଣି (ଏଥିପାଇଁ) ସେ ଅନୁତାପ କଲା ।

୩୨. ଏହି କାରଣରୁ ଆମ୍ଭେ ଇସ୍ରାଇଲଙ୍କ ବଂଶଜମାନଙ୍କୁ ଆଦେଶ ଦେଇଥିଲୁ ଯେ ଯଦି କେହି ଏଭଳି କୌଣସି ବ୍ୟକ୍ତିକୁ ହତ୍ୟା କରେ ଯିଏ ନରହତ୍ୟା କରିନାହିଁ ବା ଧରାପୃଷ୍ଠରେ ଅଶାନ୍ତି ସୃଷ୍ଟି କରିନାହିଁ, ତେବେ ସେ ସମଗ୍ର ମାନବଜାତିକୁ ହତ୍ୟା କଲା ଏବଂ ଯିଏ ଜଣେ ବ୍ୟକ୍ତିର ପ୍ରାଣ ରକ୍ଷାକଲା, ସେ ସମଗ୍ର ମାନବଜାତିକୁ ରକ୍ଷା କଲା । ଆମ୍ଭର ବାର୍ତ୍ତାବହମାନେ ସେମାନଙ୍କ ପାଖକୁ ପରିଷ୍କାର ଆଦେଶ ନେଇ ଗଲେ, ତଥାପି ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଧରାପୃଷ୍ଠରେ ଅନ୍ୟାୟ-ଅତ୍ୟାଚାର କଲେ ।

୩୩. ଯେଉଁମାନେ ଅଲ୍ଲାହ୍ ଏବଂ ତାଙ୍କ ରସୁଲଙ୍କ ବିରୁଦ୍ଧରେ ଲଢ଼ନ୍ତି ଏବଂ ଧରାପୃଷ୍ଠରେ ଅଶାନ୍ତି ସୃଷ୍ଟି କରିବା ପାଇଁ ସବୁବେଳେ ତତ୍ପର ଥାଆନ୍ତି, ସେମାନଙ୍କର ଶାସ୍ତି ହେଉଛି ଯେ ସେମାନଙ୍କୁ ହତ୍ୟା କରାଯାଉ ବା ଶୂଳି ଦିଆଯାଉ ବା ସେମାନଙ୍କର ହାତ ଓ ଗୋଡ଼ ବିପରୀତ ଦିଗରୁ କାଟି ଦିଆଯାଉ କିମ୍ବା ସେମାନଙ୍କୁ ଦେଶରୁ ନିର୍ବାସିତ କରାଯାଉ । ସେମାନେ ସଂସାରରେ ଏହିପରି ଅପମାନ ଭୋଗିବେ ଏବଂ ପରଲୋକରେ ମଧ୍ୟ କଠୋର ଶାସ୍ତି ଭୋଗିବେ । ୩୪. ମାତ୍ର ଯେଉଁମାନେ ତୁମ ଆୟତ୍ତକୁ ଆସିବା ପୂର୍ବରୁ ଅନୁତାପ କରନ୍ତି, ତେବେ ଜାଣିରଖ ଯେ ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ ପରମ ଦୟାଳୁ ।

୩୫. ହେ ସଦ୍‌ବିଶ୍ୱାସୀମାନେ ! ଅଲ୍ଲାହଙ୍କୁ ଭୟ କର, ତାଙ୍କର ସାନ୍ନିଧ୍ୟ ଲାଭ କରିବାର ଉପାୟ ଖୋଜ ଏବଂ ତାଙ୍କ ମାର୍ଗରେ ସଂଘର୍ଷ କର ଯାହାଫଳରେ ତୁମେମାନେ ସଫଳ ହେବ । ୩୬. ଯେଉଁମାନେ ବିଶ୍ୱାସ କଲେନାହିଁ, ବିଚାର ଦିନ

ଯଦି ସେମାନେ ନିଜର ମୁକ୍ତି ବିନିମୟରେ ସଂସାରର ସବୁତକ ବସ୍ତୁ ଦିଅନ୍ତି ଏବଂ ତା'ସହିତ ଆହୁରି ସେତିକି ଦିଅନ୍ତି ତଥାପି ତାହା ସ୍ୱୀକାର କରାଯିବ ନାହିଁ ଏବଂ ସେମାନଙ୍କୁ କଠୋର ଶାସ୍ତି ଭୋଗିବାକୁ ହେବ। ୩୭. ସେମାନେ ନର୍କରୁ ବାହାରିବା ପାଇଁ ଚାହିଁବେ କିନ୍ତୁ ବାହାରି ପାରିବେନାହିଁ ଏବଂ ସେମାନଙ୍କୁ ଏଭଳି ଶାସ୍ତି ମିଳିବ ଯାହା ସେମାନେ ଚିରଦିନ ଭୋଗିବେ।

୩୮. ଚୋରି କରୁଥିବା ପୁରୁଷ ବା ଚୋରି କରୁଥିବା ମହିଳାର ହାତ କାଟିଦିଅ। ଏହା ସେମାନଙ୍କର ଅର୍ଜିତ କର୍ମର ଫଳ ଏବଂ ଅଲ୍ଲାହଙ୍କର ଏକ ଦୃଷ୍ଟାନ୍ତମୂଳକ ଶାସ୍ତି। ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ। ୩୯. ପୁଣି ଯିଏ ଦୋଷ କଲା ପରେ ପଶ୍ଚାତାପ କରେ ଏବଂ ନିଜ ଆଚରଣ ସଂଶୋଧନ କରିନିଏ, ତା'ହେଲେ ଅଲ୍ଲାହ୍ ତାକୁ ନିଶ୍ଚୟ କ୍ଷମା କରିଦେବେ। ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ। ୪୦. ତୁମେ କ'ଣ ଏହା ଜାଣନା ଯେ ପୃଥିବୀ ଓ ଆକାଶରେ କେବଳ ଅଲ୍ଲାହଙ୍କର ଶାସନ ଚାଲେ? ସେ ଯାହାକୁ ଚାହାନ୍ତି ଶାସ୍ତି ଦିଅନ୍ତି ଏବଂ ଯାହାକୁ ଚାହାନ୍ତି କ୍ଷମା କରିଦିଅନ୍ତି ଏବଂ ଅଲ୍ଲାହ୍ ସବୁକିଛି କରିପାରନ୍ତି।

୪୧. ହେ ବାର୍ତ୍ତାବହ! ଯେଉଁମାନେ ଅଧର୍ମ କରିବା ପାଇଁ ସର୍ବଦା ତତ୍ପର ଥାଆନ୍ତି, ସେମାନଙ୍କ ପାଇଁ ତୁମେ ଦୁଃଖ କରନାହିଁ। ସେମାନେ କେବଳ ମୁହଁରେ କହନ୍ତି ଯେ ଆମେ ବିଶ୍ୱାସ କରୁ କିନ୍ତୁ ଅନ୍ତରରେ ବିଶ୍ୱାସ କରନ୍ତି ନାହିଁ ବା ସେହି ଇହୁଦୀମାନଙ୍କ ପାଇଁ ମଧ୍ୟ (ଦୁଃଖ କରନାହିଁ) ଯେଉଁମାନେ ମିଛ ଶୁଣିବାରେ ଅଭ୍ୟସ୍ତ ଏବଂ ସେମାନେ ସେହି ଲୋକମାନଙ୍କର ଗୁପ୍ତଚର ଭାବରେ (ତୁମକଥା) ଶୁଣନ୍ତି ଯେଉଁମାନେ ତୁମ ପାଖକୁ ଆସନ୍ତିନାହିଁ। ସେମାନେ ଗ୍ରନ୍ଥବାଣୀରେ ପରିବର୍ତ୍ତନ କରନ୍ତି ଏବଂ (ଲୋକମାନଙ୍କୁ) କହନ୍ତି, "ଯଦି ତୁମମାନଙ୍କୁ ଏମିତି ଆଦେଶ ଦିଆଯାଏ, ତେବେ ମାନିନେବ କିନ୍ତୁ ଯଦି ଏମିତି ଆଦେଶ ନଦିଆଯାଏ, ତେବେ ସେମାନଙ୍କଠାରୁ ଦୂରେଇଯିବ।" ଅଲ୍ଲାହ୍ ଯାହାକୁ ପଥଭ୍ରଷ୍ଟ କରିବାକୁ ଚାହିଁବେ, ଅଲ୍ଲାହଙ୍କଠାରୁ ତାକୁ ରକ୍ଷା କରିବାକୁ ତୁମର କୌଣସି କ୍ଷମତା ନାହିଁ। ଅଲ୍ଲାହ୍ ଏମାନଙ୍କ ମନକୁ ଶୁଦ୍ଧ କରିବାକୁ ଚାହାନ୍ତିନାହିଁ। ସେମାନେ ଇହଲୋକରେ ଲାଂଛନା ଭୋଗିବେ ଏବଂ ପରଲୋକରେ କଠୋର ଦଣ୍ଡ ଭୋଗିବେ। ୪୨. ସେମାନେ

ଭାରି ଆଗ୍ରହରେ ମିଛକଥା ଶୁଣନ୍ତି ଏବଂ ମନଭରି ନିଷିଦ୍ଧ ଖାଦ୍ୟ ଖାଆନ୍ତି । ଯଦି ସେମାନେ ତୁମ ପାଖକୁ (ନିଷ୍ପତ୍ତି ପାଇଁ) ଆସନ୍ତି, ତେବେ ତୁମେ ଯଦି ଚାହଁ ସେମାନଙ୍କର ନିଷ୍ପତ୍ତି କରିଦିଅ କିମ୍ବା ସେମାନଙ୍କୁ ଏଡ଼ାଇଦିଅ । ଯଦି ତୁମେ ସେମାନଙ୍କୁ ଏଡ଼ାଇଦେବ ତଥାପି ସେମାନେ ତୁମର କୌଣସି କ୍ଷତି କରିପାରିବେ ନାହିଁ ଆଉ ଯଦି ତୁମେ ସେମାନଙ୍କ ମଧ୍ୟରେ ନିଷ୍ପତ୍ତି କର, ତେବେ ନ୍ୟାୟସଙ୍ଗତ ଭାବରେ କର । ଅଲ୍ଲାହ୍ ନ୍ୟାୟପରାୟଣ ଲୋକମାନଙ୍କୁ ଭଲ ପାଆନ୍ତି । ୪୩. ସେମାନେ ତୁମ ଦ୍ୱାରା ନିଷ୍ପତ୍ତି କରାଇବା ପାଇଁ କିପରି ଚାହୁଁଛନ୍ତି, ଅଥଚ ସେମାନଙ୍କ ପାଖରେ ତୌରାତ୍ ଗ୍ରନ୍ଥ ଅଛି ଏବଂ ସେଥିରେ ଅଲ୍ଲାହଙ୍କ ଆଦେଶ ମଧ୍ୟ ରହିଛି । ଏହାପରେ ମଧ୍ୟ ସେମାନେ ସେଥିରୁ ମୁହଁ ଫେରାଇ ନିଅନ୍ତି । ସେମାନେ ସଦ୍‌ବିଶ୍ୱାସୀ ନୁହନ୍ତି ।

୪୪. ବାସ୍ତବରେ ଆମ୍ଭେ ତୌରାତ୍ ପଠାଇଥିଲୁ ଯେଉଁଥିରେ (ଲୋକମାନଙ୍କ ପାଇଁ) ଦିଗ୍‌ଦର୍ଶନ ଏବଂ ଦିବ୍ୟାଲୋକ ଥିଲା । ଅଲ୍ଲାହଙ୍କର ଆଜ୍ଞାବହ ବାର୍ତ୍ତାବହମାନେ ତାହାରି ଅନୁସାରେ ଇହୁଦୀମାନଙ୍କ ମଧ୍ୟରେ ନିଷ୍ପତ୍ତି କରୁଥିଲେ ଏବଂ ବିଦ୍ୱାନ ଓ ଶାସ୍ତ୍ରବିତ୍‌ମାନେ ମଧ୍ୟ । କାରଣ ସେମାନଙ୍କୁ ଅଲ୍ଲାହଙ୍କ ଗ୍ରନ୍ଥର ସୁରକ୍ଷାର ଦାୟିତ୍ୱ ଦିଆ ଯାଇଥିଲା ଆଉ ସେମାନେ ତାହାର ସାକ୍ଷୀ ଥିଲେ । ସୁତରାଂ, ତୁମେମାନେ ମନୁଷ୍ୟମାନଙ୍କୁ ଭୟ କରନାହିଁ ବରଂ ମୋତେ ଭୟ କର ଏବଂ ମୋ' ବାଣୀକୁ ତୁଚ୍ଛ ମୂଲ୍ୟରେ ବିକି ଦିଅନାହିଁ । ଯେଉଁମାନେ ଅଲ୍ଲାହଙ୍କଠାରୁ ଆସିଥିବା ନିର୍ଦ୍ଦେଶ ଅନୁଯାୟୀ ନିଷ୍ପତ୍ତି ନକରନ୍ତି, ସେମାନେ ନାସ୍ତିକ । ୪୫. ଆମ୍ଭେ ସେଥିରେ ସେମାନଙ୍କ ପାଇଁ ଆଦେଶ ଦେଇଥିଲୁ ଯେ ପ୍ରାଣ ବଦଳରେ ପ୍ରାଣ, ଆଖି ବଦଳରେ ଆଖି, ନାକ ବଦଳରେ ନାକ, କାନ ବଦଳରେ କାନ, ଦାନ୍ତ ବଦଳରେ ଦାନ୍ତ ଏବଂ କ୍ଷତ ପାଇଁ ଅନୁରୂପ କ୍ଷତର ପ୍ରତିବଦଳ ନିଆଯିବ । ହଁ, ଯଦି କେହି (ପ୍ରତିବଦଳ ନନେଇ ଦୋଷୀକୁ) କ୍ଷମା କରିଦିଏ ତେବେ ଏହା ତା' ପାପର ପ୍ରାୟଶ୍ଚିତ ହୋଇଯିବ । ଯେଉଁମାନେ ଅଲ୍ଲାହଙ୍କଠାରୁ ଆସିଥିବା ଆଦେଶ ଅନୁଯାୟୀ ନିଷ୍ପତ୍ତି ନକରନ୍ତି, ସେମାନେ ଭ୍ରଷ୍ଟାଚାରୀ । ୪୬. ପୁଣି ସେମାନଙ୍କ ପରେପରେ ଆମ୍ଭେ ମରିୟମଙ୍କ ପୁତ୍ର ଯୀଶୁଙ୍କୁ ପଠାଇଲୁ ଯିଏ ତାଙ୍କ ପୂର୍ବରୁ ଆସିଥିବା ଗ୍ରନ୍ଥ ତୌରାତ୍‌ର ସମର୍ଥନ କଲେ ଏବଂ ଆମ୍ଭେ ତାଙ୍କୁ ଇନ୍‌ଜିଲ ଗ୍ରନ୍ଥ ପ୍ରଦାନ କଲୁ ଯେଉଁଥିରେ

(ଲୋକମାନଙ୍କ ପାଇଁ) ଦିଗ୍‌ଦର୍ଶନ ଏବଂ ଦିବ୍ୟାଲୋକ ଥିଲା ଏବଂ ଏହା ପୂର୍ବ ଗ୍ରନ୍ଥ ତୌରାତ୍‌ର ସମର୍ଥନ କରୁଥିଲା । ସେଥିରେ ଧର୍ମପରାୟଣ ଲୋକମାନଙ୍କ ପାଇଁ ମାର୍ଗଦର୍ଶନ ଓ ହିତୋପଦେଶ ଥିଲା । ୪୭. ଇଂଜିଲ୍ ଗ୍ରନ୍ଥରେ ବିଶ୍ୱାସ ରଖିଥିବା ଲୋକମାନେ ସେଥିରେ ଥିବା ଅଲ୍ଲାହଙ୍କ ଆଦେଶ ଅନୁଯାୟୀ ନିଷ୍ପତ୍ତି କରିବା ଉଚିତ ଏବଂ ଯେଉଁମାନେ ଅଲ୍ଲାହଙ୍କ ପ୍ରଦତ୍ତ ବିଧାନ ଅନୁଯାୟୀ ନିଷ୍ପତ୍ତି ନକରନ୍ତି, ସେମାନେ ପାପୀ ।

୪୮. (ହେ ବାର୍ତ୍ତାବହ!) ଆମ୍ଭେ ତୁମ ପାଖକୁ ସଦ୍‌ଗ୍ରନ୍ଥ ପଠାଇଛୁ ଯାହା ତୁମ ପୂର୍ବରୁ ଆସିଥିବା ଗ୍ରନ୍ଥମାନଙ୍କର ସମର୍ଥନ କରେ ଏବଂ ସେଗୁଡ଼ିକର ସଂରକ୍ଷଣ କରିଥାଏ । ତେଣୁ, ଅଲ୍ଲାହ୍ ପଠାଇଥିବା ଏହି ଗ୍ରନ୍ଥ ଅନୁଯାୟୀ ଲୋକମାନଙ୍କ ମଧ୍ୟରେ ନିଷ୍ପତ୍ତି କର ଏବଂ ଯେଉଁ ସତ୍ୟ ତୁମ ପାଖରେ ପହଁଚି ସାରିଛି, ତାକୁ ଛାଡ଼ି ସେମାନଙ୍କ ଇଚ୍ଛା ଅନୁସାରେ ଚାଲନାହିଁ । ପ୍ରତ୍ୟେକ ସମାଜ ପାଇଁ ଆମ୍ଭେ ଏକ ସ୍ୱତନ୍ତ୍ର ବିଧି ଓ ପନ୍ଥା ନିର୍ଦ୍ଧାରିତ କରିଛୁ । ଯଦି ଅଲ୍ଲାହ୍ ଇଚ୍ଛା କରିଥାଆନ୍ତେ ତେବେ ତୁମମାନଙ୍କୁ ଗୋଟିଏ ସଂପ୍ରଦାୟ କରି ପାରିଥାଆନ୍ତେ (ଅର୍ଥାତ୍ ସମସ୍ତଙ୍କ ପାଇଁ ସମାନ ଧର୍ମବିଧି ଦେଇ ପାରିଥାଆନ୍ତେ), କିନ୍ତୁ ଅଲ୍ଲାହ୍ ଏହି ଆଦେଶ ଦେଇ ତୁମମାନଙ୍କୁ ପରୀକ୍ଷା କରିବାକୁ ଇଚ୍ଛା କଲେ । ତେଣୁ, ତୁମେମାନେ ସତକର୍ମରେ ପରସ୍ପରଠାରୁ ଆଗେଇ ଯିବାକୁ ଚେଷ୍ଟା କର । ଶେଷରେ ତୁମମାନଙ୍କୁ ଅଲ୍ଲାହଙ୍କ ପାଖକୁ ଫେରିବାକୁ ହେବ । ପୁଣି ସେ ତୁମମାନଙ୍କୁ ତୁମମାନଙ୍କର ମତଭେଦର ବାସ୍ତବିକତା ଜଣାଇଦେବେ । ୪୯. ଅଲ୍ଲାହ୍ ପଠାଇଥିବା ଆଦେଶ ଅନୁଯାୟୀ ସେମାନଙ୍କ ମଧ୍ୟରେ ନିଷ୍ପତ୍ତି କର ଏବଂ ସେମାନଙ୍କ ଇଚ୍ଛା ଅନୁଯାୟୀ ଚାଲନାହିଁ ଏବଂ ସାବଧାନ ରୁହ ଯେପରିକି ସେମାନେ ତୁମକୁ ପ୍ରଲୋଭନ ଦେଇ ଅଲ୍ଲାହଙ୍କର କୌଣସି ଆଦେଶ ପାଳନ କରିବାରୁ ରୋକି ନଦିଅନ୍ତୁ ଯାହା ଅଲ୍ଲାହ୍ ତୁମ ପାଖକୁ ପଠାଇଛନ୍ତି । ଯଦି ସେମାନେ ନମାନନ୍ତି, ତେବେ ଜାଣିନିଅ ଯେ ସେମାନଙ୍କର କେତେକ ପାପ ଯୋଗୁଁ ଅଲ୍ଲାହ୍ ସେମାନଙ୍କୁ ବିପଦରେ ପକାଇବାକୁ ମନସ୍ଥ କରିଛନ୍ତି । ପ୍ରକୃତରେ ଅଧିକାଂଶ ମନୁଷ୍ୟ ଭ୍ରଷ୍ଟାଚାରୀ । ୫୦. କ'ଣ ଏମାନେ ଅଜ୍ଞାନ ଯୁଗର ନ୍ୟାୟ ଚାହାନ୍ତି ? ଦୃଢ଼ବିଶ୍ୱାସୀ ଲୋକମାନଙ୍କ ପାଇଁ ଅଲ୍ଲାହଙ୍କଠାରୁ ଅଧିକ ଭଲ ବିଚାରକ ଆଉ କିଏ ଅଛି ?

୫୧. ହେ ମୁସଲମାନଗଣ! (ତୁମମାନଙ୍କ ସହିତ ଶତ୍ରୁତା କରୁଥିବା) ଇହୁଦୀ ଓ ଖ୍ରୀଷ୍ଟିୟାନମାନଙ୍କୁ ନିଜର ବନ୍ଧୁ କରନାହିଁ। ସେମାନେ ପରସ୍ପରର ବନ୍ଧୁ। ତୁମମାନଙ୍କ ମଧ୍ୟରୁ ଯିଏ ସେମାନଙ୍କ ସହିତ ବନ୍ଧୁତା କରିବ, ସେ ସେଇମାନଙ୍କ ମଧ୍ୟରେ ଗଣାଯିବ। ବାସ୍ତବରେ ଅଲ୍ଲାହ୍ ଅନ୍ୟାୟୀ ଲୋକମାନଙ୍କର ମାର୍ଗଦର୍ଶନ କରନ୍ତି ନାହିଁ। ୫୨. ଯେଉଁମାନଙ୍କ ମନରେ (ଛଳ-କପଟ) ରୋଗ ଅଛି, ତୁମେ ଦେଖିବ ଯେ ସେମାନେ ସେଇମାନଙ୍କ ପାଖକୁ ଧାଇଁ ଥାଆନ୍ତି। ସେମାନେ କହନ୍ତି, "ଆମର ଭୟ ହେଉଛି କାଳେ ଆମେ କୌଣସି ବିପଦରେ ପଡ଼ିଯିବୁ।" ଖୁବସଂଭବ, ଅଲ୍ଲାହ୍ (ମୁସଲମାନମାନଙ୍କୁ) ବିଜୟୀ କରିବେ ବା ନିଜର କୌଣସି ନିଷ୍ପତ୍ତି ନେବେ। ଏହାପରେ ସେମାନେ ନିଜ ମନରେ ଲୁଚାଇ ରଖିଥିବା କଥା ଯୋଗୁଁ ଲଜ୍ଜିତ ହେବେ। ୫୩. (ସେତେବେଳେ) ମୁସଲମାନମାନେ (ପରସ୍ପରକୁ) କହିବେ, "କ'ଣ ଏମାନେ ସେହି ଲୋକ ଯେଉଁମାନେ ଅଲ୍ଲାହଙ୍କ ନାଁରେ ବଡ଼ବଡ଼ ରାଣନିୟମ କରି କହୁଥିଲେ ଯେ ଆମେମାନେ ତୁମମାନଙ୍କ ସହିତ ଅଛୁ?" ସେମାନଙ୍କର ସବୁକର୍ମ ବୃଥା ହେଲା ଏବଂ ସେମାନେ କ୍ଷତିରେ ରହିଲେ।

୫୪. ହେ ମୁସଲମାନଗଣ! ତୁମମାନଙ୍କ ମଧ୍ୟରୁ ଯଦି କେହି ନିଜର ଧର୍ମ ତ୍ୟାଗ କରିବ, (ସେ ଜାଣିରଖୁ ଯେ) ଅଲ୍ଲାହ୍ ଏଭଳି ଲୋକଙ୍କୁ ସୃଷ୍ଟି କରିଦେବେ ଯେଉଁମାନେ ଅଲ୍ଲାହଙ୍କର ପ୍ରିୟ ହେବେ ଏବଂ ଅଲ୍ଲାହ୍ ସେମାନଙ୍କର ପ୍ରିୟ ହେବେ। ସେମାନେ ସଦ୍‌ବିଶ୍ୱାସୀମାନଙ୍କ ପ୍ରତି ନମ୍ର ଏବଂ ଅଧର୍ମୀମାନଙ୍କ ପ୍ରତି କଠୋର ହେବେ, ଅଲ୍ଲାହଙ୍କ ମାର୍ଗରେ ସଂଘର୍ଷ କରିବେ ଏବଂ କୌଣସି ନିନ୍ଦୁକର ନିନ୍ଦାଭର୍ତ୍ସନାକୁ ଭୃକ୍ଷେପ କରିବେନାହିଁ। ଏହା ଅଲ୍ଲାହଙ୍କର ଅନୁଗ୍ରହ। ସେ ଯାହାପ୍ରତି ଚାହାନ୍ତି ଅନୁଗ୍ରହ କରନ୍ତି ଏବଂ ଅଲ୍ଲାହ୍ ସକଳ ପ୍ରାଚୁର୍ଯ୍ୟର ଅଧିକାରୀ ଏବଂ ସର୍ବଜ୍ଞ।

୫୫. (ପ୍ରକୃତରେ) ତୁମମାନଙ୍କର ବନ୍ଧୁ କେବଳ ଅଲ୍ଲାହ୍, ତାଙ୍କ ବାର୍ତ୍ତାବହ ଏବଂ ସେହି ସଦ୍‌ବିଶ୍ୱାସୀମାନେ, ଯେଉଁମାନେ ନମାଜ ପାଠ କରନ୍ତି, ଜକାତ୍ ଦିଅନ୍ତି ଏବଂ (ଅଲ୍ଲାହଙ୍କ ସମ୍ମୁଖରେ) ମୁଣ୍ଡ ନୁଆଁଇ ଦିଅନ୍ତି। ୫୬. ଯିଏ ଅଲ୍ଲାହ୍, ତାଙ୍କ ବାର୍ତ୍ତାବହ ଓ ସଦ୍‌ବିଶ୍ୱାସୀମାନଙ୍କୁ ନିଜର ବନ୍ଧୁ ରୂପେ ଗ୍ରହଣ କରେ, (ସେ ନିଶ୍ଚିତ ରହୁ ଯେ) ଅଲ୍ଲାହଙ୍କ ପକ୍ଷହିଁ ବିଜୟୀ ହେବ।

୫୭. ହେ ମୁସଲମାନଗଣ! ସେମାନଙ୍କ ସହିତ ବନ୍ଧୁତା କରନାହିଁ ଯେଉଁମାନେ ତୁମ ଧର୍ମକୁ ଥଟ୍ଟା-ତାମସା ମନେ କରିଛନ୍ତି । ସେମାନେ ତୁମ ପୂର୍ବର ଗ୍ରନ୍ଥବିଶ୍ୱାସୀ ହୋଇଥାଆନ୍ତୁ ବା ନାସ୍ତିକ । ଅଲ୍ଲାହଙ୍କୁ ଭୟ କର, ଯଦି (ପ୍ରକୃତରେ) ତୁମେମାନେ ସଦବିଶ୍ୱାସୀ । ୫୮. ଯେତେବେଳେ ତୁମେମାନେ (ଲୋକମାନଙ୍କୁ) ନମାଜପାଠ ପାଇଁ ଡାକ, ଏମାନେ ତାହା ସହିତ ଥଟ୍ଟା କରନ୍ତି କାରଣ ଏହି ଲୋକମାନଙ୍କର ବୁଦ୍ଧି ନାହିଁ । ୫୯. (ସେମାନଙ୍କୁ) ପଚାର, "ହେ ଗ୍ରନ୍ଥବିଶ୍ୱାସୀମାନେ! କ'ଣ ଆମକୁ ଏଇଥିପାଇଁ ଦୋଷ ଦେଉଛ ଯେ ଆମେ ଅଲ୍ଲାହଙ୍କୁ ବିଶ୍ୱାସ କଲୁ ଏବଂ ଆମ ପାଖକୁ ପଠାଯାଇଥିବା ଗ୍ରନ୍ଥକୁ ତଥା ଆମ ପୂର୍ବରୁ ଆସିଥିବା ଗ୍ରନ୍ଥଗୁଡ଼ିକୁ ବିଶ୍ୱାସ କଲୁ? ତୁମମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ପାପାଚାରୀ ।" ୬୦. କୁହ, "କ'ଣ ମୁଁ ତୁମମାନଙ୍କୁ ସେମାନଙ୍କ ବିଷୟରେ କହିବି ଯେଉଁମାନେ ଅଲ୍ଲାହଙ୍କ ପାଖରେ ଏହାଠାରୁ ଅଧିକ ମନ୍ଦ ପରିଣାମ ଭୋଗିବେ? ଏହା ସେହିମାନେ ଭୋଗିବେ ଯେଉଁମାନଙ୍କୁ ଅଲ୍ଲାହ୍ ଧିକ୍କାର କଲେ, ଯେଉଁମାନଙ୍କ ଉପରେ ସେ କ୍ଷୁବ୍ଧ ହେଲେ ଏବଂ ସେମାନଙ୍କ ମଧ୍ୟରୁ କେତେକଙ୍କୁ ବାନର ଓ ଶୂକର କରିଦେଲେ । ସେମାନେ ଶଇତାନର ସେବା କରୁଥିଲେ । ସେମାନେ ସତପଥରୁ ବହୁ ଦୂରକୁ ଚାଲିଯାଇଥିବା ଅତି ନୀଚ ଶ୍ରେଣୀର ଲୋକ ।

୬୧. ସେମାନେ ଯେତେବେଳେ ତୁମମାନଙ୍କ ପାଖକୁ ଆସନ୍ତି, କୁହନ୍ତି "ଆମେ ବିଶ୍ୱାସ କଲୁ", ଅଥଚ ସେମାନେ ନାସ୍ତିକ ହୋଇ ଆସିଥାଆନ୍ତି ଏବଂ ସେହି ଅବସ୍ଥାରେ ଚାଲିଯାଆନ୍ତି । ସେମାନେ ଯାହା ଲୁଚାଇ ରଖନ୍ତି, ଅଲ୍ଲାହ୍ ଜାଣନ୍ତି । ୬୨. ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକଙ୍କୁ ତୁମେ ପାପ କାର୍ଯ୍ୟ କରିବା, ଅତ୍ୟାଚାର କରିବା ଏବଂ ନିଷିଦ୍ଧ ଭୋଜନ କରିବା ଲାଗି ସଦା ତତ୍ପର ଥିବାର ଦେଖିବ । ସେମାନେ ଅତି ହୀନ କର୍ମ କରୁଛନ୍ତି । ୬୩. ସେମାନଙ୍କର ଶାସ୍ତ୍ରବିତ୍ ଓ ବିଦ୍ୱାନମାନେ ସେମାନଙ୍କୁ ପାପ କଥାରୁ ଏବଂ ନିଷିଦ୍ଧ ଭୋଜନରୁ କାହିଁକି ମନା କରୁନାହାନ୍ତି? ସେମାନେ ଅତ୍ୟନ୍ତ ମନ୍ଦ କାର୍ଯ୍ୟ କରୁଛନ୍ତି ।

୬୪. ଇହୁଦୀମାନେ କହନ୍ତି, "ଅଲ୍ଲାହଙ୍କ ହାତ ବନ୍ଧା ହୋଇଛି (ଅର୍ଥାତ୍ ସେ କିଛି ଦିଅନ୍ତି ନାହିଁ) ।" ସେଇମାନଙ୍କର ହାତ ବାନ୍ଧି ହୋଇଯାଉ । ଏଭଳି କଥା

କହିବା ଯୋଗୁଁ ସେମାନଙ୍କୁ ଧିକ୍କାର । ଅଲ୍ଲାହଙ୍କର ଦୁଇ ହାତ ସଦାବେଳେ ଖୋଲା । ସେ ନିଜ ଇଚ୍ଛା ଅନୁଯାୟୀ ଦେଇଥାଆନ୍ତି । (ହେ ବାର୍ତ୍ତାବହ!) ତୁମ ପାଖକୁ ଈଶ୍ୱରଙ୍କ ଦ୍ୱାରା ପଠାଯାଇଥିବା ଗ୍ରନ୍ଥ ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକଙ୍କର ଦୁଷ୍ଟାମି ଓ ଅଧାର୍ମିକତା ବଢ଼ାଇ ଦେଇଛି । ଆମ୍ଭେ ପ୍ରଳୟ ପର୍ଯ୍ୟନ୍ତ ସେମାନଙ୍କ ମନରେ ପରସ୍ପର ପ୍ରତି ଘୃଣା ଓ ବିଦ୍ୱେଷ ସୃଷ୍ଟି କରିଦେଇଛୁ । ଯେତେବେଳେ ସେମାନେ ଯୁଦ୍ଧର ନିଆଁ ଲଗାଇବାକୁ ଉଦ୍ୟମ କରନ୍ତି, ଅଲ୍ଲାହ୍ ତାହାକୁ ଲିଭାଇ ଦିଅନ୍ତି । ସେମାନେ ଦେଶରେ କେବଳ ଅଶାନ୍ତି ସୃଷ୍ଟି କରିବାରେ ଲାଗିଥାଆନ୍ତି କିନ୍ତୁ ଅଲ୍ଲାହ୍ ଅଶାନ୍ତି ସୃଷ୍ଟି କରୁଥିବା ଲୋକମାନଙ୍କୁ ଭଲ ପାଆନ୍ତିନାହିଁ ।

୬୫. ଯଦି ଗ୍ରନ୍ଥବିଶ୍ୱାସୀମାନେ ମାନି ନିଅନ୍ତେ ଏବଂ ସଦାଚାରୀ ହୁଅନ୍ତେ, ଆମ୍ଭେ ନିଶ୍ଚୟ ସେମାନଙ୍କର ପାପ କ୍ଷମା କରିଦିଅନ୍ତୁ ଏବଂ ସେମାନଙ୍କୁ ସୁଖଭରା ଉଦ୍ୟାନମାନଙ୍କରେ ରଖନ୍ତୁ । ୬୬. ଯଦି ସେମାନେ ତୌରାତ୍ ଓ ଇଂଜିଲକୁ ଏବଂ ଈଶ୍ୱର ସେମାନଙ୍କ ପାଖକୁ ଯେଉଁ ଗ୍ରନ୍ଥ ପଠାଇଛନ୍ତି, ତାହାକୁ ମାନି ଚଳନ୍ତେ ତା'ହେଲେ ସେମାନଙ୍କୁ ଧରିତ୍ରୀ ଓ ଆକାଶରୁ ଯଥେଷ୍ଟ ଆହାର ମିଳନ୍ତା । ସେମାନଙ୍କ ମଧ୍ୟରୁ କେତେକ ଠିକ୍ ବାଟରେ ଅଛନ୍ତି, କିନ୍ତୁ ଅଧିକାଂଶ ଲୋକଙ୍କର ଆଚରଣ ଭାରି ଖରାପ ।

୬୭. ହେ ବାର୍ତ୍ତାବହ! ତୁମ ଈଶ୍ୱରଙ୍କ ଦ୍ୱାରା ତୁମ ପାଖକୁ ଯେଉଁ ବାର୍ତ୍ତା ପଠାଯାଇଛି ତାହା ପହଁଚାଇ ଦିଅ । ଯଦି ତୁମେ ଏହା ନକର, ତେବେ (ଏହାର ଅର୍ଥ ହେବ) ତୁମେ ବାର୍ତ୍ତା ଦେବାରେ ବ୍ୟର୍ଥ ହେଲ । ଅଲ୍ଲାହ୍ ତୁମକୁ ଲୋକଙ୍କଠାରୁ ନିଶ୍ଚୟ ରକ୍ଷା କରିବେ । ଅଲ୍ଲାହ୍ (ସତ୍ୟକୁ) ମାନୁ ନଥିବା ଲୋକମାନଙ୍କର ମାର୍ଗଦର୍ଶନ କରନ୍ତି ନାହିଁ । ୬୮. କହିଦିଅ, "ହେ ଗ୍ରନ୍ଥବିଶ୍ୱାସୀମାନେ! ଯେପର୍ଯ୍ୟନ୍ତ ତୁମେମାନେ ତୌରାତ୍, ଇଂଜିଲ୍ ଏବଂ ତୁମ ଈଶ୍ୱରଙ୍କ ଦ୍ୱାରା ତୁମମାନଙ୍କ ପାଖକୁ ଏବେ ପଠା ଯାଇଥିବା ଗ୍ରନ୍ଥର (ଆଦେଶ) ପାଳନ ନକରିଛ, ତୁମମାନଙ୍କର କୌଣସି ଆଧାର ନାହିଁ ।" (ହେ ବାର୍ତ୍ତାବହ!) ତୁମ ପ୍ରଭୁଙ୍କ ଦ୍ୱାରା ତୁମ ପାଖକୁ ଯାହା ପଠାଯାଇଛି, ତାହାଦ୍ୱାରା ନିଶ୍ଚୟ ବହୁ ଲୋକଙ୍କର ଦୁଷ୍ଟାମି ଓ ଅଧର୍ମାଚରଣ ବଢ଼ିବ । ତେଣୁ, ତୁମେ ଏହି ଅଧର୍ମୀମାନଙ୍କ ପାଇଁ ଦୁଃଖ କରନାହିଁ । ୬୯. ମୁସଲ୍‌ମାନ ହୁଅନ୍ତୁ କିମ୍ବା ୟହୁଦୀ, ସାବୀ ବା ଖ୍ରୀଷ୍ଟିୟାନ ହୁଅନ୍ତୁ, ଯେଉଁମାନେ ଅଲ୍ଲାହଙ୍କୁ ବିଶ୍ୱାସ

କରିବେ, ପରଲୋକରେ ବିଶ୍ୱାସ କରିବେ ଏବଂ ଭଲ କର୍ମ କରିବେ, ସେମାନଙ୍କର କୌଣସି ଭୟ ନାହିଁ ବା ସେମାନେ ଦୁଃଖ ଭୋଗିବେ ନାହିଁ ।

୭୦. ଆମ୍ଭେ ଇସରାଇଲଙ୍କ ବଂଶଜଙ୍କଠାରୁ ବଚନ ନେଇଥିଲୁ ଏବଂ ସେମାନଙ୍କ ନିକଟକୁ ଅନେକ ବାର୍ତ୍ତାବହଙ୍କୁ ପଠାଇଥିଲୁ, ମାତ୍ର ଯେତେବେଳେ କୌଣସି ବାର୍ତ୍ତାବହ ସେମାନଙ୍କ ଇଚ୍ଛା ବିରୁଦ୍ଧରେ କିଛି ଶିକ୍ଷା ନେଇ ଆସିଲେ, ଏମାନେ ସେମାନଙ୍କ ମଧ୍ୟରୁ କେତେକଙ୍କୁ ମିଥ୍ୟାବାଦୀ କହିଲେ ଏବଂ କେତେକଙ୍କୁ ହତ୍ୟା କରିଦେଲେ । ୭୧. ସେମାନେ ଭାବିଥିଲେ ଯେ ସେମାନଙ୍କୁ କୌଣସି ଶାସ୍ତି ଦିଆଯିବ ନାହିଁ । ତେଣୁ, ସେମାନେ ଅନ୍ଧ ଓ ବଧିର ହୋଇ ଯାଇଥିଲେ । ଏହାପରେ ଅଲ୍ଲାହ୍ ସେମାନଙ୍କୁ କ୍ଷମା କରିଥିଲେ । ତା'ପରେ ମଧ୍ୟ ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ପୁଣି ଅନ୍ଧ ଓ ବଧିର ପାଲଟିଗଲେ । ଅଲ୍ଲାହ ସେମାନଙ୍କର ସବୁ କର୍ମ ଦେଖୁଛନ୍ତି ।

୭୨. ଯେଉଁମାନେ କହିଲେ ଯେ ମରିୟମଙ୍କ ପୁତ୍ର ଯୀଶୁ ମସୀହ ହେଉଛନ୍ତି ଅଲ୍ଲାହ୍, ସେମାନେ ନାସ୍ତିକ ହୋଇଗଲେ, ଅଥଚ ଯୀଶୁ ମସୀହ ନିଜେ କହିଥିଲେ, "ହେ ଇସ୍ରାଇଲଙ୍କ ବଂଶଧର ! ଅଲ୍ଲାହଙ୍କର ଉପାସନା କର । ସେ ମୋ'ର ମଧ୍ୟ ଈଶ୍ୱର ଏବଂ ତୁମମାନଙ୍କର ମଧ୍ୟ ଈଶ୍ୱର ।" ଯିଏ ଅଲ୍ଲାହଙ୍କ ଈଶ୍ୱରତ୍ୱରେ ଅନ୍ୟକୁ ଅଂଶୀଦାର ମାନେ, ଅଲ୍ଲାହ୍ ତା'ପାଇଁ ବୈକୁଣ୍ଠ ନିଷିଦ୍ଧ କରି ଦେଇଛନ୍ତି ଏବଂ ନର୍କ ତା'ର ନିବାସ ହେବ । ଦୁରାଚାରୀମାନଙ୍କର କେହି ସାହାଯ୍ୟକାରୀ ନାହାନ୍ତି । ୭୩. ସେମାନେ (ମଧ୍ୟ) ନାସ୍ତିକ ହୋଇଗଲେ ଯେଉଁମାନେ କହିଲେ ଯେ ତିନିଜଣଙ୍କ ମଧ୍ୟରୁ ତୃତୀୟ ଜଣକ ଅଲ୍ଲାହ୍, ଅଥଚ ଜଣେ ଈଶ୍ୱରଙ୍କ ବ୍ୟତୀତ ଅନ୍ୟ କେହି ଈଶ୍ୱର ନାହାନ୍ତି । ସେମାନେ ଯାହା କହୁଛନ୍ତି, ଯଦି ସେଥିରୁ କ୍ଷାନ୍ତ ନହୁଅନ୍ତି ତେବେ ସେମାନଙ୍କ ମଧ୍ୟରେ ଥିବା ନାସ୍ତିକମାନଙ୍କୁ କଠୋର ଶାସ୍ତି ମିଳିବ । ୭୪. ସେମାନେ କାହିଁକି ଅଲ୍ଲାହଙ୍କ ନିକଟରେ ପଶ୍ଚାତାପ କରୁନାହାନ୍ତି ବା ନିଜ ପାପ ଲାଗି କ୍ଷମା ମାଗୁନାହାନ୍ତି ? ଅଲ୍ଲାହ୍ ତ କ୍ଷମାଶୀଳ ଓ କରୁଣାମୟ । ୭୫. ମରିୟମଙ୍କ ପୁତ୍ର ଯୀଶୁ ମସୀହ କେବଳ ଜଣେ ବାର୍ତ୍ତାବହ ଥିଲେ । ତାଙ୍କ ପୂର୍ବରୁ ଅନେକ ବାର୍ତ୍ତାବହ ଯାଇ ସାରିଛନ୍ତି । ତାଙ୍କର ମାଆ ଜଣେ ସତ୍ୟବତୀ ମହିଳା

ଥିଲେ । ଉଭୟେ (ମନୁଷ୍ୟ ଥିବା ହେତୁ) ଖାଦ୍ୟ ଖାଉଥିଲେ । ଦେଖତ ! ଆମ୍ଭେ ଏମାନଙ୍କ ପାଖରେ ପ୍ରମାଣଗୁଡ଼ିକୁ କିଭଳି ପରିଷ୍କାର ଭାବରେ ବର୍ଣ୍ଣନା କରୁଛୁ ଅଥଚ ଦେଖ, ଏମାନେ କେମିତି ଓଲଟା (ବାଟରେ) ଯାଉଛନ୍ତି । ୭୬. ତୁମେ ସେମାନଙ୍କୁ ପଚାର, "କ'ଣ ତୁମେମାନେ ଅଲ୍ଲାହଙ୍କୁ ଛାଡ଼ି ସେମାନଙ୍କର ଉପାସନା କରିବ ଯେଉଁମାନେ ତୁମର କିଛି ହାନି ବା ଲାଭ କରିବାକୁ ସମର୍ଥ ନୁହଁନ୍ତି ? ଅଲ୍ଲାହ୍ ହିଁ ସର୍ବଶ୍ରୋତା ଏବଂ ସର୍ବଜ୍ଞ ।" ୭୭. ସେମାନଙ୍କୁ କୁହ, "ହେ ଗ୍ରନ୍ଥବିଶ୍ୱାସୀମାନେ ! ନିଜ ଧର୍ମକୁ ଅଯଥାରେ ଅତିରଂଜିତ କରନାହିଁ ଏବଂ ସେହି ଲୋକମାନଙ୍କର ଇଚ୍ଛା ଅନୁଯାୟୀ ଚାଲନାହିଁ ଯେଉଁମାନେ ତୁମମାନଙ୍କ ପୂର୍ବରୁ ପଥଭ୍ରଷ୍ଟ ହୋଇଗଲେ । ସେମାନେ ବହୁଲୋକଙ୍କୁ ପଥଭ୍ରଷ୍ଟ କଲେ ଏବଂ ସତପଥରୁ ବିଚ୍ୟୁତ ହୋଇଗଲେ ।"

୭୮. ଇସ୍ରାଇଲଙ୍କ ବଂଶଧରମାନଙ୍କ ମଧ୍ୟରୁ ଯେଉଁମାନେ ନାସ୍ତିକ ହୋଇ ଯାଇଥିଲେ ସେମାନଙ୍କୁ ଦାଉଦ୍ ଓ ମରିୟମଙ୍କ ପୁତ୍ର ଯୀଶୁଙ୍କ ଦ୍ୱାରା ଅଭିଶାପ ଦିଆ ଯାଇଥିଲା କାରଣ ସେମାନେ (ଈଶ୍ୱର ଓ ଈଶ୍ୱରଦୂତଙ୍କର) ଅବମାନନା କରୁଥିଲେ ଏବଂ ସୀମା ଟପି ଯାଉଥିଲେ । ୭୯. ଯେଉଁ କୁକର୍ମ ସେମାନେ ନିଜେ କରୁଥିଲେ, ସେଥିରୁ ପରସ୍ପରକୁ ବାରଣ କରୁ ନଥିଲେ । ପ୍ରକୃତରେ ସେମାନେ ଅତି ହୀନ କାର୍ଯ୍ୟ କରୁଥିଲେ । ୮୦. ତୁମେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକଙ୍କୁ ନାସ୍ତିକମାନଙ୍କ ସହିତ ବନ୍ଧୁତା କରୁଥିବାର ଦେଖିବ । ସେମାନେ ଯେଉଁ କର୍ମ କରିଛନ୍ତି, ସେଥିପାଇଁ ଅଲ୍ଲାହ୍ ସେମାନଙ୍କ ପ୍ରତି କ୍ଷୁବ୍ଧ ହୋଇଛନ୍ତି ଏବଂ ସେମାନେ ଚିରକାଳ ଶାସ୍ତି ଭୋଗିବେ । ୮୧. ଯଦି ସେମାନେ ଅଲ୍ଲାହଙ୍କୁ, ତାଙ୍କର ବାର୍ତ୍ତାବହଙ୍କୁ ଏବଂ ତାଙ୍କ ନିକଟକୁ ପଠାଯାଇଥିବା ଗ୍ରନ୍ଥକୁ ବିଶ୍ୱାସ କରିଥାଆନ୍ତେ, ତା'ହେଲେ ନାସ୍ତିକମାନଙ୍କୁ ବନ୍ଧୁ କରି ନଥାଆନ୍ତେ । ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ପାପାଚାରୀ ।

୮୨. (ହେ ବାର୍ତ୍ତାବହ !) ତୁମେ ଦେଖିବ ଯେ ମୁସଲମାନମାନଙ୍କ ସହିତ ଶତ୍ରୁତା କରିବାରେ ଇହୁଦୀ ଏବଂ ବହୁଈଶ୍ୱରବାଦୀମାନେ ବହୁ ଆଗରେ ଅଛନ୍ତି ଏବଂ ମୁସଲମାନମାନଙ୍କ ସହିତ ବନ୍ଧୁତାର ନିକଟତର ସେମାନଙ୍କୁ ଦେଖିବ ଯେଉଁମାନେ ନିଜକୁ ଖ୍ରୀଷ୍ଟିୟାନ ବୋଲି କହନ୍ତି । ଏହାର କାରଣ ସେମାନଙ୍କ ମଧ୍ୟରେ (ଅନେକ) ବିଦ୍ୱାନ ଏବଂ ସାଧୁସନ୍ଥ ଅଛନ୍ତି ଏବଂ ସେମାନେ ଅହଂକାରୀ ନୁହନ୍ତି ।

୮୩. ତୁମେ ଦେଖିବ ଯେତେବେଳେ ସେମାନେ ରସୁଲଙ୍କ ପାଖକୁ ପଠାଯାଇଥିବା ବାଣୀ (ଅର୍ଥାତ୍ କୁର୍ଆନ) ଶୁଣନ୍ତି, ସେମାନଙ୍କ ଆଖି ଲୁହରେ ଭିଜିଯାଏ। ଏହାର କାରଣ, ସତ କ'ଣ ସେମାନେ ଜାଣିଗଲେ। ସେମାନେ କହନ୍ତି, "ହେ ପାଳନକର୍ତ୍ତା! ଆମେ ବିଶ୍ୱାସ କରିନେଲୁ। ତେଣୁ (ସତ୍ୟର) ସାକ୍ଷ୍ୟ ଦେଉଥିବା ଲୋକମାନଙ୍କ ମଧ୍ୟରେ ଆମର ନାମ ଲେଖିଦିଅ। ୮୪. ଆମର କ'ଣ ଅସୁବିଧା ହେଉଛି ଯେ ଆମେ ଅଲ୍ଲାହଙ୍କୁ ଏବଂ ଆମ ପାଖକୁ ଆସିଥିବା ସତ୍ୟକୁ ମାନିବୁନାହିଁ? ଆମେ ଆଶା ରଖିଛୁ ଯେ ଆମ ପ୍ରଭୁ ଆମମାନଙ୍କୁ ପୁଣ୍ୟବାନ ଲୋକମାନଙ୍କ ସହିତ ରଖିବେ।" ୮୫. ସେମାନଙ୍କର ଏହି କଥା ଯୋଗୁଁ ଅଲ୍ଲାହ୍ ସେମାନଙ୍କୁ ସ୍ୱର୍ଗରେ ଏଭଳି ଉଦ୍ୟାନ ଦେବେ ଯାହା ତଳେ ଝରଣା ବହେ। ସେମାନେ ସେଠାରେ ସର୍ବଦା ରହିବେ। ଏହା ଭଲ କର୍ମ କରୁଥିବା ଲୋକମାନଙ୍କ ପାଇଁ ପୁରସ୍କାର। ୮୬. ଯେଉଁମାନେ ଅବିଶ୍ୱାସ କଲେ ଏବଂ ଆମ୍ଭର ବାଣୀକୁ ମିଥ୍ୟା ମନେକଲେ, ସେମାନେ ନର୍କବାସୀ ହେବେ।

୮୭. ହେ ମୁସଲମାନଗଣ! ଅଲ୍ଲାହ୍ ଯେଉଁ ଶୁଦ୍ଧ ବସ୍ତୁଗୁଡ଼ିକୁ ତୁମମାନଙ୍କ ପାଇଁ ବୈଧ କରିଛନ୍ତି, ସେଗୁଡ଼ିକୁ ନିଷିଦ୍ଧ ଆଖ୍ୟା ଦିଅନାହିଁ ଏବଂ ସୀମା ଅତିକ୍ରମ କରନାହିଁ। ସୀମା ଅତିକ୍ରମ କରୁଥିବା ଲୋକମାନଙ୍କୁ ଅଲ୍ଲାହ୍ ଆଦୌ ପସନ୍ଦ କରନ୍ତି ନାହିଁ। ୮୮. ଅଲ୍ଲାହ୍ ତୁମମାନଙ୍କୁ ଯେଉଁ ଶୁଦ୍ଧ ଓ ବୈଧ ଆହାର ଦେଇଛନ୍ତି, ତାହା ଖାଅ ଏବଂ ଅଲ୍ଲାହଙ୍କୁ ଭୟ କର ଯାହାଙ୍କ ପ୍ରତି ତୁମେମାନେ ଆସ୍ଥା ରଖିଛ।

୮୯. ତୁମର ନିରର୍ଥକ ରାଣ-ନିୟମଗୁଡିକୁ ଅଲ୍ଲାହ୍ ଧରିବେନାହିଁ କିନ୍ତୁ ସେ ତୁମମାନଙ୍କର ସେହି ରାଣନିୟମର ହିସାବ ନେବେ ଯାହାର ସଂକଳ୍ପ ତୁମେ କର। ତେଣୁ, ଏହାର ପ୍ରାୟଶ୍ଚିତ ହେଉଛି, ଦଶଜଣ ଗରିବ ଲୋକଙ୍କୁ ମଧ୍ୟମ ଧରଣର ଭୋଜନ ଦିଅ ଯେମିତି ତୁମେମାନେ ନିଜ ପରିବାର ଲୋକଙ୍କୁ ଦେଇଥାଅ ବା ସେମାନଙ୍କୁ ବସ୍ତ୍ର ଦାନ କର ବା ଜଣେ କ୍ରୀତଦାସକୁ ମୁକ୍ତ କର। ଯାହାର ଏହି ସାମର୍ଥ୍ୟ ନଥିବ, ସେ ତିନିଦିନ ଉପବାସ ପାଳନ କରୁ। ରାଣ-ନିୟମ କରି ଭାଙ୍ଗିଥିବା ଯୋଗୁଁ ଏହା ତୁମମାନଙ୍କର ପ୍ରାୟଶ୍ଚିତ ହେବ। ନିଜର ବଚନ ରକ୍ଷାକର। ଏହିପରି ଅଲ୍ଲାହ୍ ତୁମମାନଙ୍କ ପାଇଁ ନିଜର ବାଣୀଗୁଡ଼ିକୁ ପରିଷ୍କାର ଭାବରେ ବର୍ଣ୍ଣନା କରୁଛନ୍ତି ଯେପରିକି ତୁମେମାନେ କୃତଜ୍ଞ ହେବ।

୯୦. ହେ ମୁସଲମାନଗଣ ! ମଦ୍ୟପାନ, ଜୁଆଖେଳ, ବିଗ୍ରହ ସମ୍ମୁଖରେ ବଳି ଦେବା ଏବଂ ତୀର ଦ୍ୱାରା ଭାଗ୍ୟ ନିର୍ଣ୍ଣୟ କରିବା ଆଦି କୁତ୍ସିତ ଶଇତାନୀ କାର୍ଯ୍ୟ । ତେଣୁ ଏଗୁଡ଼ିକରୁ ଦୂରେଇ ରୁହ, ତା'ହେଲେ ତୁମେମାନେ ସଫଳ ହେବ । ୯୧. ଶଇତାନ ଚାହେଁ ଯେ ମଦ ଓ ଜୁଆ ଦ୍ୱାରା ତୁମମାନଙ୍କ ମଧ୍ୟରେ ଘୃଣା ଓ ବିଦ୍ୱେଷ ସୃଷ୍ଟି କରିବ ଏବଂ ତୁମମାନଙ୍କୁ ଅଲ୍ଲାହଙ୍କ ସ୍ମରଣଚିନ୍ତନରୁ ଏବଂ ନମାଜପାଠରୁ ରୋକିବ । ତଥାପି କ'ଣ ତୁମେମାନେ ଏଗୁଡ଼ିକୁ ଛାଡ଼ିବନାହିଁ ? ୯୨. ଅଲ୍ଲାହଙ୍କ କଥା ମାନ ଏବଂ ରସୁଲଙ୍କର କଥା ମାନ ଏବଂ ସାବଧାନ ରୁହ । ଯଦି ତୁମେମାନେ ନମାନିବ ତେବେ ଜାଣିରଖ ଯେ କେବଳ ପରିଷ୍କାର ଭାବରେ ବାର୍ତ୍ତା ଦେଇଦେବା ହେଉଛି ଆମ୍ଭ ବାର୍ତ୍ତାବହଙ୍କର ଦାୟିତ୍ୱ । ୯୩. ଯେଉଁମାନେ ବିଶ୍ୱାସ କଲେ ଏବଂ ଭଲ କର୍ମ କଲେ, ସେମାନେ ପୂର୍ବରୁ ଯାହା ନିଷିଦ୍ଧ ଖାଦ୍ୟ ଖାଇ ସାରିଛନ୍ତି ସେଥିପାଇଁ ସେମାନଙ୍କୁ ପାପ ହେବନାହିଁ ଏହି ସର୍ତ୍ତରେ ଯେ ସେମାନେ ଭବିଷ୍ୟତରେ ପାପରୁ ନିବୃତ୍ତ ରହିବେ, (ଅଲ୍ଲାହ୍ ଓ ରସୁଲଙ୍କ ଉପରେ) ବିଶ୍ୱାସ ରଖିବେ, ଭଲ କର୍ମ କରିବେ, କୁକର୍ମରୁ ନିବୃତ୍ତ ରହିବେ, ନିଜ ବିଶ୍ୱାସରେ ଅଟଳ ରହିବେ, ଅଲ୍ଲାହଙ୍କୁ ଭୟ କରିବେ ଏବଂ ପରୋପକାର କରିବେ । ଅଲ୍ଲାହ୍ ପରୋପକାରୀମାନଙ୍କୁ ଭଲ ପଆନ୍ତି ।

୯୪. ହେ ମୁସଲମାନଗଣ ! ଅଲ୍ଲାହ୍ ଏଭଳି ପଶୁଙ୍କ ଶିକାର ଦ୍ୱାରା ତୁମମାନଙ୍କର ପରୀକ୍ଷା ନେବେ ଯେଉଁମାନଙ୍କ ପାଖରେ ତୁମ ହାତ ଓ ତୁମ ବର୍ଚ୍ଛା ସହଜରେ ପହଁଚି ପାରୁଥିବ, ଯାହାଦ୍ୱାରା ଅଲ୍ଲାହ୍ ଜାଣିବେ ଯେ କିଏ ତାଙ୍କୁ ବିନା ଦେଖି ଭୟ କରେ । ଯିଏ ସୀମା ଅତିକ୍ରମ କରିବ, ତା' ପାଇଁ କଠିନ ଶାସ୍ତି ପ୍ରସ୍ତୁତ ହୋଇ ରହିଛି । ୯୫. ହେ ମୁସଲମାନଗଣ ! (ହଜ କାଳରେ) ଏହରାମ ଅବସ୍ଥାରେ ଥିବାବେଳେ ଶିକାର କରନାହିଁ । ଯଦି ତୁମମାମନଙ୍କ ମଧ୍ୟରୁ କେହି ଜାଣିଶୁଣି ପଶୁ ଶିକାର କରେ, ତେବେ ଏହାର ପ୍ରାୟଶ୍ଚିତ କରିବା ଅନିବାର୍ଯ୍ୟ ହେବ ଏବଂ ଏଥିପାଇଁ ସେ ଯେମିତି ପଶୁ ମାରିଥିବ ତାହା ବଦଳରେ ସେମିତି ପଶୁଟିଏ (ବଳି ରୂପେ) ଉତ୍ସର୍ଗ କରିବ ଯାହାର ନିଷ୍ପତ୍ତି ତୁମମାନଙ୍କ ମଧ୍ୟରୁ ଦୁଇଜଣ ବିଚାରବନ୍ତ ଲୋକ କରିବେ । ପୁଣି ସେହି ପଶୁକୁ (ବଳି ପାଇଁ) କାବାରେ ପହଁଚାଇ ଦିଅ ଅଥବା ଏହାର ପ୍ରାୟଶ୍ଚିତ ରୂପେ ଗରିବମାନଙ୍କୁ (ସେହି ମୂଲ୍ୟର) ଭୋଜନ ଦେବାକୁ ହେବ କିମ୍ବା

ସେହି ଅନୁଯାୟୀ ଉପବାସ ପାଳନ କରିବାକୁ ହେବ ଯେପରିକି ସେ ବ୍ୟକ୍ତି ନିଜ ଅର୍ଜିତ କର୍ମର ଫଳ ଭୋଗ କରୁ । ପୂର୍ବରୁ ଯାହା ହୋଇଯାଇଛି ଅଲ୍ଲାହ୍ ତାହା କ୍ଷମା କଲେ ମାତ୍ର ପୁନର୍ବାର ଯିଏ ଏଭଳି କର୍ମ କରିବ, ଅଲ୍ଲାହ୍ (ତାକୁ ଶାସ୍ତି ଦେଇ) ପ୍ରତିଶୋଧ ନେବେ । ଅଲ୍ଲାହ୍ ପ୍ରବଳ ପ୍ରଭୁତ୍ୱଶାଳୀ ଏବଂ ସେ ପ୍ରତିଶୋଧ ନେବାପାଇଁ ଅବଶ୍ୟ ସକ୍ଷମ ।

୯୬. ତୁମମାନଙ୍କର ଏବଂ ଯାତ୍ରୀମାନଙ୍କର ଉପକାର ପାଇଁ ସମୁଦ୍ରରୁ ଶିକାର କରିବା ଏବଂ ଖାଇବା ବୈଧ କରାଗଲା ମାତ୍ର ଯେପର୍ଯ୍ୟନ୍ତ ତୁମେମାନେ (ହଜ ବା ଉମରା ପାଇଁ) ଏହରାମ ଅବସ୍ଥାରେ ଥିବ, ତୁମପାଇଁ ସ୍ଥଳଭାଗର ଶିକାର ନିଷିଦ୍ଧ । ଅଲ୍ଲାହଙ୍କୁ ଭୟ କରୁଥାଅ ଯାହାଙ୍କ ପାଖରେ ତୁମେମାନେ ଏକାଠି ହୋଇ ଉପସ୍ଥିତ ହେବ । ୯୭. ଅଲ୍ଲାହ୍ ପବିତ୍ର କାବାଗୃହକୁ ଲୋକମାନଙ୍କ ପାଇଁ ଶାନ୍ତିପୂର୍ଣ୍ଣ ବସବାସର ଏକ ମାଧ୍ୟମ କରିଛନ୍ତି ଏବଂ ପବିତ୍ର ମାସଗୁଡ଼ିକୁ, ବଳି ପାଇଁ ଉତ୍ସର୍ଗ କରା ଯାଇଥିବା ପଶୁ ତଥା ବେକରେ ପଟି ପଡ଼ିଥିବା ପଶୁମାନଙ୍କୁ ମଧ୍ୟ, ଯେପରିକି ତୁମେମାନେ ଜାଣିବ ଯେ ପୃଥିବୀ ଓ ଆକାଶରେ ଯାହା ଅଛି ଅଲ୍ଲାହ୍ ସବୁ ଜାଣନ୍ତି ଏବଂ ଅଲ୍ଲାହ୍ ସର୍ବଜ୍ଞ । ୯୮. ଜାଣିରଖ ଯେ ଅଲ୍ଲାହ୍ କଠୋର ଶାସ୍ତି ଦିଅନ୍ତି ଏବଂ ସେ ଅତ୍ୟନ୍ତ କ୍ଷମାଶୀଳ ଓ ପରମ ଦୟାଳୁ । ୯୯. କେବଳ ବାର୍ତ୍ତା ଦେଇଦେବା ହେଉଛି ବାର୍ତ୍ତାବହଙ୍କର ଦାୟିତ୍ୱ । ତୁମେମାନେ ପ୍ରକାଶ୍ୟ ଭାବରେ ଯାହା କର ବା ଯାହା ଗୋପନରେ କର, ଅଲ୍ଲାହ୍ ସବୁ ଜାଣନ୍ତି । ୧୦୦. (ହେ ବାର୍ତ୍ତାବହ!) କହିଦିଅ, "ଶୁଦ୍ଧ ଓ ଅଶୁଦ୍ଧ ସମାନ ନୁହେଁ ଯଦିଓ ଅଶୁଦ୍ଧ ବସ୍ତୁଗୁଡିକର ପ୍ରାଚୁର୍ଯ୍ୟ ତୁମମାନଙ୍କୁ ଭଲ ଲାଗିଥାଏ । ତେଣୁ ହେ ବୁଦ୍ଧିମାନ ଲୋକମାନେ! ଅଲ୍ଲାହଙ୍କୁ ଭୟ କରୁଥାଅ, ତା'ହେଲେ ତୁମେମାନେ ସଫଳ ହେବ ।"

୧୦୧. ହେ ମୁସଲମାନଗଣ! ଏଭଳି କଥା ପଚାର ନାହିଁ ଯାହା ତୁମମାନଙ୍କ ପାଖରେ ପ୍ରକାଶ କରିଦେଲେ ତୁମମାନଙ୍କୁ ଅପ୍ରିୟ ଲାଗିବ । ଯଦି କୁରଆନ ପ୍ରକଟ ହେଉଥିବା ସମୟରେ ତୁମେମାନେ ପ୍ରଶ୍ନ କରିବ, ତେବେ ତାହା ତୁମମାନଙ୍କ ପାଖରେ ପ୍ରକାଶ କରି ଦିଆଯିବ । ପଛକଥା ଅଲ୍ଲାହ୍ କ୍ଷମା କରି ଦେଇଛନ୍ତି । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ ସହନଶୀଳ । ୧୦୨. ଏଇଭଳି ପ୍ରଶ୍ନ

ତୁମମାନଙ୍କ ପୂର୍ବରୁ ଅନ୍ୟ ଲୋକମାନେ ମଧ୍ୟ କରିଥିଲେ କିନ୍ତୁ (ଯେତେବେଳେ ଉତ୍ତର ଦିଆଗଲା) ସେମାନେ ତାହାକୁ ଅସ୍ୱୀକାର କରିଦେଲେ । ୧୦୩. ବହୀରା, ସାଏବା, ଓ୍ୱସୀଲା ବା ହାମ୍ (ଆଦି ପଶୁଙ୍କ) ବିଷୟରେ ଅଲ୍ଲାହ୍ କୌଣସି ଆଜ୍ଞା ଦେଇନାହାନ୍ତି । ଅଧର୍ମୀମାନେ ଅଲ୍ଲାହଙ୍କ ନାଁରେ ଏହି ମିଥ୍ୟା (କୁସଂସ୍କାର) ଗୁଡ଼ିକ ଗଢ଼ିଛନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକଙ୍କର ବୁଦ୍ଧି ନାହିଁ । ୧୦୪. ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଅଲ୍ଲାହ୍ ଯେଉଁ ଗ୍ରନ୍ଥ (ଅର୍ଥାତ୍ କୁର୍‌ଆନ) ପ୍ରକଟ କରିଛନ୍ତି ତାହାକୁ ମାନ ଏବଂ ରସୁଲଙ୍କ କଥା ମଧ୍ୟ ମାନ, ସେମାନେ ଉତ୍ତର ଦିଅନ୍ତି, "ଆମ ପାଇଁ ଆମ ପୂର୍ବପୁରୁଷଙ୍କ ପନ୍ଥା ଯଥେଷ୍ଟ ।" ଯଦିଓ ସେମାନଙ୍କ ପୂର୍ବପୁରୁଷମାନେ କିଛି ଜାଣି ନଥିଲେ ବା ଠିକ୍ ବାଟରେ ନଥିଲେ (ତଥାପି ସେମାନଙ୍କର ଅନୁକରଣ କରିବେ ?) ୧୦୫. ହେ ମୁସଲମାନଗଣ ! ନିଜ କଥା ଚିନ୍ତା କର । ଯଦି ତୁମେମାନେ ଠିକ୍ ବାଟରେ ଥାଅ, ତେବେ ଅନ୍ୟ କେହି ପଥଭ୍ରଷ୍ଟ ହେଲେ ତୁମର କିଛି କ୍ଷତି ହେବନାହିଁ । ତୁମ ସମସ୍ତଙ୍କୁ ଅଲ୍ଲାହଙ୍କ ନିକଟକୁ ଫେରିବାକୁ ହେବ । ପୁଣି ତୁମେମାନେ ଯାହା କରୁଥିଲ, ସେ ତୁମମାନଙ୍କୁ ଜଣାଇ ଦେବେ ।

୧୦୬. ହେ ମୁସଲମାନଗଣ ! ଯଦି ତୁମମାନଙ୍କ ମଧ୍ୟରୁ କାହାରି ମୃତ୍ୟୁ ସମୟ ଆସିଯାଏ, ତେବେ (ତା'ର) ଇଚ୍ଛାପତ୍ର କରିବା ବେଳେ ତୁମମାନଙ୍କ ମଧ୍ୟରୁ ଦୁଇଜଣ ଭରସାଯୋଗ୍ୟ ଲୋକଙ୍କୁ ଏହାର ସାକ୍ଷୀ ରଖ । ଯଦି ତୁମେମାନେ ଯାତ୍ରା କରୁଥିବା ବେଳେ ବାଟରେ କେହି ମୃତ୍ୟୁର ସମ୍ମୁଖୀନ ହୁଏ, ତେବେ ଅନ୍ୟ ଲୋକମାନଙ୍କ ମଧ୍ୟରୁ ଦୁଇଜଣଙ୍କୁ ସାକ୍ଷୀ କରିନିଅ । ଯଦି (ସେମାନଙ୍କ ସାଧୁତା ବିଷୟରେ) ତୁମମାନଙ୍କର ସନ୍ଦେହ ହୁଏ, ତେବେ ଉଭୟ ସାକ୍ଷୀଙ୍କୁ ନମାଜ ସରିଲା ପରେ ଅଟକାଅ ଏବଂ ସେମାନେ ଅଲ୍ଲାହଙ୍କ ନାମରେ ନିୟମ କରି କହନ୍ତୁ "ଆମେ ଏହି ସାକ୍ଷ୍ୟ ବଦଳରେ କାହାରିଠାରୁ କୌଣସି ମୂଲ୍ୟ ନେବୁନାହିଁ ଯଦିଓ ଏଥିରେ ଆମ ନିଜର ଆତ୍ମୀୟ ସଂପୃକ୍ତ ଥାଆନ୍ତୁନା କାହିଁକି । ଆମେ ଅଲ୍ଲାହଙ୍କ (ପାଇଁ ଦିଆ ଯାଉଥିବା) ସାକ୍ଷ୍ୟପ୍ରମାଣକୁ ଲୁଚାଇବୁ ନାହିଁ । ଯଦି ଆମେ ଏହା କରୁ ତେବେ ନିଶ୍ଚୟ ପାପୀ ହେବୁ ।" ୧୦୭. ଯଦି ପରେ ଏହା ଜଣାପଡ଼େ ଯେ ସେ ଦୁହେଁ (ମିଥ୍ୟା ନିୟମ କରି) ପାପ କରିଛନ୍ତି ତେବେ ସେମାନଙ୍କ ଜାଗାରେ ଆଉ ଦୁଇଜଣ ବ୍ୟକ୍ତିଙ୍କୁ

ସେମାନଙ୍କ ମଧ୍ୟରୁ ସାକ୍ଷୀ କରାଯାଉ ଯେଉଁମାନଙ୍କର ଅଧିକାର ଛଡ଼ାଇ ନେବାକୁ ପୂର୍ବ ସାକ୍ଷୀମାନେ ଚାହୁଁଥିଲେ । ପୁଣି ଏଦୁହେଁ ଅଲ୍ଲାହଙ୍କ ନାମରେ ନିୟମ କରି କୁହନ୍ତୁ "ଆମେ କରୁଥିବା ନିୟମ ପୂର୍ବ ଦୁଇ ସାକ୍ଷୀଙ୍କ ତୁଳନାରେ ଅଧିକ ସତ ଏବଂ ଆମେ (କେବେହେଲେ) ଅନ୍ୟାୟ କରିନାହୁଁ । ଯଦି ଆମେ ଏପରି କରୁ, ତେବେ ନିଶ୍ଚୟ ଦୁରାଚାରୀ ହେବୁ ।" ୧୦୮. ବୋଧହୁଏ ଏହି ଉପାୟରେ ସେମାନେ ଠିକ୍ ସାକ୍ଷ୍ୟ ଦେବେ ବା ଭୟ କରିବେ ଯେ ହୁଏତ ସେମାନଙ୍କର ଶପଥ ପରେ (ତାହାକୁ ଖଣ୍ଡନ କରି) ଅନ୍ୟ କାହାରି ଶପଥ ନିଆଯିବ । ଅଲ୍ଲାହଙ୍କୁ ଭୟ କର ଏବଂ (ତାଙ୍କ କଥା) ଶୁଣ । ଅଲ୍ଲାହ୍ ଅବାଧ ଲୋକମାନଙ୍କର ମାର୍ଗଦର୍ଶନ କରନ୍ତି ନାହିଁ ।

୧୦୯. ଯେଉଁଦିନ ଅଲ୍ଲାହ୍ ସବୁ ବାର୍ତ୍ତାବହମାନଙ୍କୁ ଏକାଠି କରିବେ ଏବଂ ସେମାନଙ୍କୁ ପଚାରିବେ "ତୁମମାନଙ୍କୁ (ଲୋକମାନଙ୍କଠାରୁ) କି ଉତ୍ତର ମିଳିଥିଲା ?" ସେମାନେ ଉତ୍ତର ଦେବେ "ଆମକୁ କିଛି ଜଣାନାହିଁ । ଅଦୃଷ୍ଟ ବିଷୟରେ ତ କେବଳ ତୁମେହିଁ ଜାଣ ।" ୧୧୦. ସେତେବେଳେ (ବିଚାର ଦିନ ଯୀଶୁଙ୍କୁ) ଅଲ୍ଲାହ୍ କହିବେ, "ହେ ମରିୟମଙ୍କ ପୁତ୍ର ଇସା ! ତୁମ ପ୍ରତି ଓ ତୁମ ମାଆଙ୍କ ପ୍ରତି ମୁଁ ଯାହା ଉପକାର କରିଛି, ତାହା ମନେପକାଅ, ଯେତେବେଳେ ମୁଁ ଦେବଦୂତ ଜିବ୍ରାଇଲ୍‌ଙ୍କ ମାଧ୍ୟମରେ ତୁମକୁ ଶକ୍ତି ଦେଇଥିଲି ଯାହାଫଳରେ ତୁମେ ଝୁଲଣାରେ ଥିବା ଅବସ୍ଥାରେ (ଅର୍ଥାତ୍ ଶୈଶବ ଅବସ୍ଥାରେ) ଲୋକଙ୍କ ସହିତ କଥାବାର୍ତ୍ତା କରୁଥିଲ ଏବଂ ପ୍ରାପ୍ତ ବୟସରେ ମଧ୍ୟ କରୁଥିଲ ଏବଂ ମୁଁ ତୁମକୁ ଦିବ୍ୟଗ୍ରନ୍ଥ ଓ ତତ୍ତ୍ୱଜ୍ଞାନ ସହିତ ତୌରାତ୍ ଓ ଇଂଜିଲର ଶିକ୍ଷା ମଧ୍ୟ ଦେଇଥିଲି । ପୁଣି (ସେକଥା ମନେ ପକାଅ) ଯେତେବେଳେ ତୁମେ ମୋ' ଆଜ୍ଞାରୁ ମାଟିରେ ପକ୍ଷୀଟିଏ ଗଢ଼ି ସେଥିରେ ଫୁଙ୍କି ଦେଉଥିଲ ଏବଂ ତାହା ମୋ' ଆଜ୍ଞାରୁ (ଜୀବନ୍ତ) ପକ୍ଷୀ ହୋଇ ଯାଉଥିଲା । ମୋ' ଆଜ୍ଞା ବଳରେ ତୁମେ ଜନ୍ମାନ୍ଧ ଓ କୁଷ୍ଠରୋଗୀମାନଙ୍କୁ ଆରୋଗ୍ୟ କରୁଥିଲ ଏବଂ ମୋ' ଆଜ୍ଞାରୁ ମୃତମାନଙ୍କୁ ଜୀବିତ କରି ଦେଉଥିଲ ଏବଂ ଇସ୍ରାଇଲଙ୍କ ବଂଶଜମାନଙ୍କଠାରୁ ମୁଁ ତୁମକୁ (ସେତେବେଳେ) ରକ୍ଷା କରିଥିଲି, ଯେତେବେଳେ ତୁମେ ସେମାନଙ୍କ ପାଖକୁ ସ୍ୱଷ୍ଟ ପ୍ରମାଣ ନେଇ ଯାଇଥିଲ ଏବଂ ସେମାନଙ୍କ ମଧ୍ୟରେ ଥିବା ଅଧର୍ମୀମାନେ କହିଥିଲେ ଯେ ଏହା ପରିଷ୍କାର ଯାଦୁବିଦ୍ୟା ।

୧୧୧. (ମନେ ପକାଅ) ଯେତେବେଳେ ମୁଁ ଯୀଶୁଙ୍କ ଶିଷ୍ୟମାନଙ୍କୁ ଅନୁପ୍ରେରିତ କରିଥିଲି ଯେ ମୋ' ପ୍ରତି ଏବଂ ମୋ' ବାର୍ତ୍ତାବହଙ୍କ ପ୍ରତି ବିଶ୍ୱାସ ରଖ, ସେମାନେ ଉତ୍ତର ଦେଇଥିଲେ, "ଆମେ ବିଶ୍ୱାସ କଲୁ ଏବଂ ତୁମେ ସାକ୍ଷୀ ରୁହ ଯେ ଆମେ ମୁସଲିମ୍ ।" ୧୧୨. ଯେତେବେଳେ ଶିଷ୍ୟମାନେ (ଯୀଶୁଙ୍କୁ) କହିଥିଲେ, "ହେ ମରିୟମଙ୍କ ପୁତ୍ର ଇସା ! କ'ଣ ତୁମ ଈଶ୍ୱର ଆମମାନଙ୍କ ପାଇଁ ଶୂନ୍ୟରୁ କିଛି ଭୋଜନ ପରଷି ପାରିବେ ?" ଇସା କହଥିଲେ, "ଯଦି ତୁମେମାନେ ସଦ୍‌ବିଶ୍ୱାସୀ ହୋଇଥାଅ ତେବେ ଅଲ୍ଲାହଙ୍କୁ ଭୟ କର ।" ୧୧୩. ସେମାନେ କହିଲେ "ଆମର ଇଚ୍ଛା ଯେ ଆମେ ଏହା ଖାଇବୁ ଯାହାଦ୍ୱାରା ଆମ ମନ ସନ୍ତୁଷ୍ଟ ହୋଇଯିବ ଏବଂ ଆମେ ଜାଣିଯିବୁ ଯେ ତୁମେ ଆମକୁ ସତ କହିଛ ଏବଂ ଆମେମାନେ ଏହାର ସାକ୍ଷୀ ରହିବୁ ।" ୧୧୪. (ତେଣୁ) ମରିୟମଙ୍କ ପୁତ୍ର ଇସା ପ୍ରାର୍ଥନା କଲେ, "ହେ ଆମ ପାଳନକର୍ତ୍ତା ଅଲ୍ଲାହ୍ ! ଆମମାନଙ୍କ ପାଇଁ ଆକାଶରୁ କିଛି ଭୋଜନ ପଠାଇଦିଅ ଯେପରିକି ଆମ ମଧ୍ୟରୁ ଯେଉଁମାନେ ପ୍ରଥମେ ଆସିଛନ୍ତି ଏବଂ ଯେଉଁମାନେ ପରେ ଆସିଛନ୍ତି, ସମସ୍ତଙ୍କ ପାଇଁ ଏହା ଏକ ଆନନ୍ଦ-ଉଲ୍ଲାସର ବିଷୟ ହେଉ ଏବଂ ତୁମର ଏକ ନିଦର୍ଶନ ମଧ୍ୟ ହେଉ । ଆମମାନଙ୍କୁ ଆହାର ଦିଅ ଏବଂ ତୁମେ ସର୍ବୋତ୍ତମ ଆହାରଦାତା ।" ୧୧୫. ଅଲ୍ଲାହ୍ କହିଲେ "ମୁଁ ନିଶ୍ଚୟ ତୁମମାନଙ୍କ ପାଇଁ ଏହା ପଠାଇବି କିନ୍ତୁ ତା'ପରେ ତୁମମାନଙ୍କ ମଧ୍ୟରୁ ଯିଏ ନମାନିବ, ମୁଁ ତାକୁ ଏଭଳି ଶାସ୍ତି ଦେବି ଯାହା ସଂସାରରେ କାହାକୁ ଦେଇ ନଥିବି ।"

୧୧୬. ଯେତେବେଳେ ଅଲ୍ଲାହ୍ (ବିଚାର ଦିନ) ପଚାରିବେ "ହେ ମରିୟମଙ୍କ ପୁତ୍ର ଇସା ! କ'ଣ ତୁମେ ଲୋକମାନଙ୍କୁ କହିଥିଲ ଯେ "ଅଲ୍ଲାହଙ୍କୁ ଛାଡ଼ି ମୋତେ ଏବଂ ମୋ' ମାଆଙ୍କୁ ଈଶ୍ୱର ମାନିନିଅ ?" ସେ ଉତ୍ତର ଦେବେ "ତୁମେ ପରମ ପବିତ୍ର । ଏଭଳି କଥା ମୁଁ କିପରି କହିପାରେ ଯାହା କହିବାର ମୋ'ର ଅଧିକାର ନାହିଁ ? ଯଦି ମୁଁ ଏହା କହିଥାଆନ୍ତି ତେବେ ତୁମେ ନିଶ୍ଚୟ ଜାଣିଥାଆନ୍ତ । ମୋ' ଅନ୍ତର କଥା ତୁମେ ଜାଣ କିନ୍ତୁ ତୁମ ଅନ୍ତର କଥା ମୁଁ ଜାଣେନାହିଁ । ବାସ୍ତବରେ ତୁମେ ହିଁ ଅଦୃଷ୍ଟର ଜ୍ଞାତା ।" ୧୧୭. "ମୁଁ ସେମାନଙ୍କୁ କେବଳ ତାହାହିଁ କହିଥିଲି ଯାହା କହିବାର ଆଜ୍ଞା ତୁମେ ମୋତେ ଦେଇଥିଲ ଯେ, 'ଅଲ୍ଲାହଙ୍କର ଉପାସନା କର ଯିଏ

ମୋ'ର ମଧ୍ୟ ଈଶ୍ୱର ଏବଂ ତୁମମାନଙ୍କର ମଧ୍ୟ ଈଶ୍ୱର ।' ଯେପର୍ଯ୍ୟନ୍ତ ମୁଁ ସେମାନଙ୍କ ସହିତ ରହିଥିଲି, ସେମାନଙ୍କ ଖବର ଜାଣୁଥିଲି କିନ୍ତୁ ଯେତେବେଳେ ତୁମେ ମୋତେ (ନିଜ ପାଖକୁ) ନେଇଗଲ, ତୁମେ ସ୍ୱୟଂ ସେମାନଙ୍କ ଖବର ରଖିଲ ଏବଂ ତୁମେ ସବୁ କଥାର ସାକ୍ଷୀ ରହିଛ । ୧୧୮. ଯଦି ତୁମେ ସେମାନଙ୍କୁ ଶାସ୍ତି ଦିଅ, ତେବେ ସେମାନେ ତୁମର ସେବକ ଏବଂ ଯଦି ସେମାନଙ୍କୁ କ୍ଷମା କରିଦିଅ (ତେବେ ମଧ୍ୟ ସେମାନେ ତୁମର ସେବକ) । ତୁମେ ମହାଶକ୍ତିମାନ ଏବଂ ମହାଜ୍ଞାନୀ ।"

୧୧୯. ଅଲ୍ଲାହ୍ କହିବେ, "ଆଜିର ଏହି ଦିନରେ ସାଧୁ ଓ ସଚ୍ଚୋଟ ବ୍ୟକ୍ତିମାନଙ୍କର ସତ୍ୟନିଷ୍ଠା ସେମାନଙ୍କ କାମରେ ଆସିବ । ସେମାନଙ୍କ ପାଇଁ ସ୍ୱର୍ଗରେ ଏଭଳି ଉଦ୍ୟାନ ଅଛି ଯାହା ତଳେ ଝରଣା ପ୍ରବାହିତ ହୁଏ । ସେମାନେ ସେଠାରେ ସର୍ବଦା ରହିବେ । ଅଲ୍ଲାହ୍ ସେମାନଙ୍କ ପ୍ରତି ସନ୍ତୁଷ୍ଟ ଏବଂ ସେମାନେ ଅଲ୍ଲାହଙ୍କ ପ୍ରତି ସନ୍ତୁଷ୍ଟ । ଏହା ହିଁ ବଡ଼ ସଫଳତା ।" ୧୨୦. ପୃଥିବୀ ଓ ଆକାଶ ଏବଂ ସେଗୁଡ଼ିକରେ ଯାହା ଅଛି, ସବୁଥିରେ ଅଲ୍ଲାହଙ୍କର ଶାସନ ଚାଲେ । ସେ ସବୁକିଛି କରିବାକୁ ସକ୍ଷମ ।

## ଅଧ୍ୟାୟ ୬, ଅଲ୍ ଅନ୍ଆମ

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍ଙ୍କ ନାମରେ

୧. ସମସ୍ତ ପ୍ରଶଂସା ଅଲ୍ଲାହଙ୍କ ପାଇଁ ଯିଏ ପୃଥିବୀ ଓ ଆକାଶମଣ୍ଡଳ ସୃଷ୍ଟି କରିଛନ୍ତି ଏବଂ ଅନ୍ଧକାର ଓ ଆଲୋକ ସୃଷ୍ଟି କରିଛନ୍ତି । ତଥାପି ନାସ୍ତିକମାନେ ଅନ୍ୟମାନଙ୍କୁ ନିଜ ପାଳନକର୍ତ୍ତାଙ୍କର ସମକକ୍ଷ କରୁଛନ୍ତି । ୨. ସେ ତୁମମାନଙ୍କୁ ମାଟିରୁ ସୃଷ୍ଟି କରିଛନ୍ତି, ପୁଣି ତୁମମାନଙ୍କ ପାଇଁ (ମୃତ୍ୟୁର) ଏକ ସମୟ ନିଶ୍ଚିତ କରିଛନ୍ତି । ତାଙ୍କ ପାଖରେ ଆଉ ଏକ ସମୟ ମଧ୍ୟ ନିଶ୍ଚିତ ହୋଇ ରହିଛି, ତଥାପି ତୁମେମାନେ ସନ୍ଦେହରେ ପଡ଼ିଛ । ୩. ସେହି ଅଲ୍ଲାହ୍ ଆକାଶମଣ୍ଡଳରେ ଅଛନ୍ତି ଏବଂ ସେହି ଭୂମଣ୍ଡଳରେ ଅଛନ୍ତି । ସେ ତୁମମାନଙ୍କର ଗୁପ୍ତ ଅବସ୍ଥା ଜାଣନ୍ତି ଏବଂ ପ୍ରକାଶ୍ୟ ଅବସ୍ଥା ମଧ୍ୟ ଜାଣନ୍ତି ଏବଂ ତୁମେମାନେ ଯାହା କର, ତାହା ମଧ୍ୟ ଜାଣନ୍ତି ।

୪. ସେମାନଙ୍କ ପାଖକୁ ସେମାନଙ୍କ ଈଶ୍ୱରଙ୍କ ତରଫରୁ ଯାହା ପ୍ରମାଣ ଆସିଲେ ସୁଦ୍ଧା ସେମାନେ ଅସ୍ୱୀକାର କରିଦିଅନ୍ତି । ୫. ତେଣୁ, ସେମାନଙ୍କ ପାଖରେ ପହଁଚିଥିବା ସତ୍ୟକୁ ସେମାନେ ଅସ୍ୱୀକାର କରିଦେଲେ । ସେମାନେ ଯାହାକୁ ଥଟ୍ଟା କରୁଛନ୍ତି ଖୁବ ଶୀଘ୍ର ତାହାର ବାସ୍ତବିକତା ଜାଣିଯିବେ । ୬. କ'ଣ ସେମାନେ ଦେଖିନାହାନ୍ତି ଯେ ସେମାନଙ୍କ ପୂର୍ବରୁ ଆମ୍ଭେ କେତେ ବଂଶ ଧ୍ୱଂସ କରି ଦେଇଛୁ, ଯେଉଁମାନଙ୍କୁ ଆମ୍ଭେ ଧରାପୃଷ୍ଠରେ ତୁମମାନଙ୍କ ଅପେକ୍ଷା ଅଧିକ କ୍ଷମତାଶାଳୀ କରିଥିଲୁ ? ଆମ୍ଭେ ସେମାନଙ୍କ ପାଇଁ ଆକାଶରୁ ପ୍ରଚୁର ବର୍ଷା କଲୁ ଏବଂ ସେମାନଙ୍କ ପାଦ ତଳେ ନଦୀ ପ୍ରବାହିତ କଲୁ । ପୁଣି ସେମାନଙ୍କ ପାପ ଯୋଗୁଁ ଆମ୍ଭେ ସେମାନଙ୍କୁ ଧ୍ୱଂସ କରିଦେଲୁ । ତା'ପରେ ଅନ୍ୟ ସମୁଦାୟ ସୃଷ୍ଟି କଲୁ ।

୭. (ହେ ବାର୍ତ୍ତାବହ!) ଯଦି ଆମ୍ଭେ ତୁମ ପାଖକୁ କାଗଜରେ ଲେଖା ହୋଇଥିବା ଗ୍ରନ୍ଥ ପଠାଇ ଥାଆନ୍ତୁ ଏବଂ ସେମାନେ ନିଜ ହାତରେ ତାହାକୁ ସ୍ପର୍ଶ କରିଥାଆନ୍ତେ, ତଥାପି ଅଧର୍ମୀମାନେ କୁହନ୍ତେ ଯେ ଏହା ପରିଷ୍କାର ଯାଦୁବିଦ୍ୟା । ୮. ସେମାନେ କହୁଛନ୍ତି ଯେ ଏହି ଈଶ୍ୱରଦୂତଙ୍କ ପାଖରେ କୌଣସି ଦେବଦୂତ କାହିଁକି ଅବତରଣ କରୁନାହାନ୍ତି ? ଯଦି ଆମ୍ଭେ କୌଣସି ଦେବଦୂତଙ୍କୁ ପଠାଇଦିଅନ୍ତୁ, ତେବେ କଥାର ନିଷ୍ପତ୍ତି ହୋଇଯାଆନ୍ତା ଏବଂ ସେମାନଙ୍କୁ ଆଉ ଅବସର ମିଳନ୍ତା ନାହିଁ । ୯. ଯଦି ଆମ୍ଭେ କୌଣସି ଦେବଦୂତଙ୍କୁ ବାର୍ତ୍ତାବହ ରୂପେ ପଠାନ୍ତୁ, ତା'ହେଲେ ତାଙ୍କୁ ମଧ୍ୟ ମାନବ ରୂପରେ ପଠାନ୍ତୁ ଏବଂ ଯେଉଁ ସନ୍ଦେହରେ ସେମାନେ ଏବେ ଅଛନ୍ତି, ପୁଣି ସେମାନଙ୍କୁ ସେଇଭଳି ସନ୍ଦେହରେ ପକାଇ ଦିଅନ୍ତୁ । ୧୦. (ହେ ବାର୍ତ୍ତାବହ!) ତୁମ ପୂର୍ବରୁ ମଧ୍ୟ ଅନେକ ଈଶ୍ୱରଦୂତମାନଙ୍କୁ ବିଦ୍ରୂପ କରାଯାଇଛି । ଯେଉଁମାନେ ବିଦ୍ରୂପ କରିଥିଲେ, ସେମାନଙ୍କୁ ବିଦ୍ରୂପ କରିବାର ଶାସ୍ତି ମିଳିଥିଲା । ୧୧. ସେମାନଙ୍କୁ କୁହ ଯେ ଧରାପୃଷ୍ଠରେ ବୁଲାବୁଲି କରି ଦେଖ ଯେ (ଈଶ୍ୱରଦୂତମାନଙ୍କୁ) ପ୍ରତ୍ୟାଖ୍ୟାନ କରିବାର କିଭଳି ପରିଣାମ ହେଲା ।

୧୨. (ସେମାନଙ୍କୁ) ପଚାର ଯେ ପୃଥିବୀ ଓ ଆକାଶରେ ଯାହା ଅଛି, ସେସବୁ କାହାର ? କହିଦିଅ, "ସବୁ ଅଲ୍ଲାହଙ୍କର ।" ଦୟା କରିବାକୁ ସେ ନିଜର କର୍ତ୍ତବ୍ୟ ମାନି ନେଇଛନ୍ତି । ଏଥିରେ ସନ୍ଦେହ ନାହିଁ ଯେ ପ୍ରଳୟ ଦିନ ସେ ତୁମ

ସମସ୍ତଙ୍କୁ (ଜୀବିତ କରି) ଏକାଠି କରିବେ । ଯେଉଁମାନେ ସେମାନଙ୍କ ଆତ୍ମାକୁ ନଷ୍ଟ କରି ଦେଇଛନ୍ତି, ସେମାନେ ବିଶ୍ୱାସ କରିବେନାହିଁ । ୧୩. ରାତି ଓ ଦିନ (ଅର୍ଥାତ୍ ଅନ୍ଧାର ଓ ଆଲୋକ) ମଧ୍ୟରେ ଯାହାକିଛି ଅଛି, ସବୁ ତାଙ୍କରି । ସେ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି । ୧୪. କହିଦିଅ, "କ'ଣ ମୁଁ ପୃଥିବୀ ଓ ଆକାଶର ସ୍ରଷ୍ଟାଙ୍କୁ ଛାଡ଼ି ଅନ୍ୟ କାହାରିକୁ ତ୍ରାଣକର୍ତ୍ତା ମାନିନେବି, ଯିଏ ସମସ୍ତଙ୍କୁ ଖାଇବାକୁ ଦିଅନ୍ତି କିନ୍ତୁ ତାଙ୍କୁ କେହି ଖାଇବାକୁ ଦିଏନାହିଁ?" ସେମାନଙ୍କୁ କୁହ, "ମୋତେ ଏହି ଆଦେଶ ଦିଆଯାଇଛି ଯେ ପ୍ରଥମେ ମୁଁ ନିଜକୁ (ଈଶ୍ୱରଙ୍କଠାରେ) ସମର୍ପଣ କରିବି ଏବଂ ବହୁଈଶ୍ୱରବାଦୀ ହେବିନାହିଁ ।" ୧୫. କୁହ, "ଯଦି ମୁଁ ମୋ' ଈଶ୍ୱରଙ୍କର ଅବମାନନା କରେ ତେବେ ଏକ ଭୟଙ୍କର ବିପଦର ଦିନ ବିଷୟରେ ମୋତେ ଭୟ ଲାଗୁଛି ।" ୧୬. ସେଦିନ ଯିଏ ରକ୍ଷା ପାଇଯିବ, ତା' ପ୍ରତି ଅବଶ୍ୟ ଅଲ୍ଲାହଙ୍କର କୃପା ହେବ । ଏହାହିଁ ପ୍ରକୃତ ସଫଳତା ।

୧୭. ଯଦି ଅଲ୍ଲାହ୍ ତୁମକୁ କୌଣସି ଦୁଃଖ ଦିଅନ୍ତି ତେବେ ତାଙ୍କ ବ୍ୟତୀତ ଆଉ କେହି ଏହା ଦୂର କରିପାରିବେ ନାହିଁ ଏବଂ ଯଦି ସେ ସୁଖ ଦିଅନ୍ତି, ତେବେ (ଜାଣିରଖ ଯେ) ସେ ସବୁକିଛି କରିପାରନ୍ତି । ୧୮. ନିଜ ଦାସମାନଙ୍କ ଉପରେ ତାଙ୍କର ନିରଙ୍କୁଶ କ୍ଷମତା । ସେ ତତ୍ତ୍ୱଜ୍ଞ ଯିଏ ସମସ୍ତଙ୍କର ଖବର ରଖନ୍ତି । ୧୯. ତୁମେ କୁହ, "କାହାର ସାକ୍ଷ୍ୟ ଗୁରୁତ୍ୱପୂର୍ଣ୍ଣ?" କହିଦିଅ, "ତୁମ ଓ ଆମ ମଧ୍ୟରେ ଅଲ୍ଲାହ୍ ସାକ୍ଷୀ ଅଛନ୍ତି । ମୋ' ପାଖକୁ କୁରଆନ୍ ଏଇଥିପାଇଁ ପଠାଯାଇଛି ଯେ ମୁଁ ଏହାଦ୍ୱାରା ତୁମମାନଙ୍କୁ ଏବଂ ଯେଉଁମାନଙ୍କ ପାଖରେ ଏହା ପହଁଚିବ, ସେମାନଙ୍କୁ ସାବଧାନ କରିବି । କ'ଣ (ସତରେ) ତୁମେମାନେ ଏହି ସ୍ୱୀକାରୋକ୍ତି ଦେବ ଯେ (ବ୍ରହ୍ମାଣ୍ଡରେ) ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ ଈଶ୍ୱରଗଣ ମଧ୍ୟ ଅଛନ୍ତି?" ତୁମେ କୁହ, "ମୁଁ ଏହି ସ୍ୱୀକାରୋକ୍ତି ଦେଇ ପାରିବିନାହିଁ ।" କହିଦିଅ, "ଉପାସ୍ୟ କେବଳ ସେ ଜଣେ ଏବଂ ତୁମମାନଙ୍କର ବହୁଈଶ୍ୱରବାଦ ସହିତ ମୋ'ର କୌଣସି ସଂପର୍କ ନାହିଁ ।" ୨୦. ଯେଉଁମାନଙ୍କୁ ଆମ୍ଭେ ଗ୍ରନ୍ଥ ଦେଇଥିଲୁ, ସେମାନେ ଏହାକୁ ଏମିତି ଚିହ୍ନନ୍ତି ଯେମିତି ନିଜ ପୁତ୍ରମାନଙ୍କୁ ଚିହ୍ନନ୍ତି । ଯେଉଁମାନେ ନିଜ ଆତ୍ମାକୁ ନଷ୍ଟ କରି ସାରିଛନ୍ତି, ସେମାନେ ବିଶ୍ୱାସ କରିବେ ନାହିଁ ।

୨୧. ଭଲା ସେହି ବ୍ୟକ୍ତିଠାରୁ ଅଧିକ ପାପୀ ଆଉ କିଏ ହେବ ଯିଏ ଅଲ୍ଲାହଙ୍କ ନାଁରେ ମିଥ୍ୟା ଗଢ଼େ ଏବଂ ତାଙ୍କ ବାଣୀକୁ ପ୍ରତ୍ୟାଖ୍ୟାନ କରେ ? ଏଭଳି ପାପିଷ୍ଠମାନେ ଆଦୌ ସଫଳ ହେବେନାହିଁ । ୨୨. ଯେଉଁଦିନ ଆମ୍ଭେ ସମସ୍ତଙ୍କୁ ଏକାଠି କରିବୁ ଏବଂ ବହୁଦେବବାଦୀମାନଙ୍କୁ ପଚାରିବୁ, "ତୁମମାନଙ୍କର ସେହି ଉପାସ୍ୟମାନେ କାହାନ୍ତି ଯେଉଁମାନଙ୍କୁ ତୁମେ ଈଶ୍ୱର ବୋଲି ଦାବି କରୁଥିଲ ?" ୨୩. ସେତେବେଳେ ସେମାନଙ୍କ ପାଖରେ ଆଉ କିଛି ବାହାନା ନଥିବ । ସେମାନେ କହିବେ, "ଆମ ପାଳନକର୍ତ୍ତା ଅଲ୍ଲାହଙ୍କ ରାଣ ! ଆମେ ବହୁଈଶ୍ୱରବାଦୀ ନଥିଲୁ ।" ୨୪. ଦେଖ, କିପରି ସେମାନେ ନିଜ ବିଷୟରେ ମିଛ କହିବେ ଏବଂ ଯାହା ମିଥ୍ୟା ସେମାନେ ଗଢ଼ିଥିଲେ, ସବୁ ଲୋପ ପାଇଯିବ ।

୨୫. ସେମାନଙ୍କ ମଧ୍ୟରେ ଏଭଳି କିଛି ଲୋକ ଅଛନ୍ତି ଯେଉଁମାନେ ତୁମ କଥାରେ କାନ ଦିଅନ୍ତି, କିନ୍ତୁ ଆମ୍ଭେ ସେମାନଙ୍କ ହୃଦୟକୁ ଢ଼ାଙ୍କି ଦେଇଛୁ, (ଅର୍ଥାତ୍ ବୁଝିବାର ଶକ୍ତି ଲୋପ କରିଦେଇଛୁ) ଯାହାଫଳରେ ସେମାନେ କିଛି ବୁଝି ପାରନ୍ତିନାହିଁ ଏବଂ ସେମାନଙ୍କ କାନକୁ ମଧ୍ୟ ବଧିର କରି ଦେଇଛୁ । ଯଦି ସେମାନେ ସବୁତକ ପ୍ରମାଣ ଦେଖନ୍ତି, ତଥାପି ବିଶ୍ୱାସ କରିବେନାହିଁ । ଯେତେବେଳେ ଏହି ଅଧର୍ମୀମାନେ ତୁମ ପାଖକୁ ଆସନ୍ତି, ସେମାନେ ତୁମ ସହିତ ଯୁକ୍ତିତର୍କ କରନ୍ତି ଏବଂ କହନ୍ତି ଯେ ଏହି କୁରଆନ୍ କେବଳ ପ୍ରାଚୀନ କାଳର କାହାଣୀ । ୨୬. ସେମାନେ ଲୋକମାନଙ୍କୁ ଏଥିରୁ ଦୁରେଇ ରଖନ୍ତି ଏବଂ ନିଜେ ମଧ୍ୟ ଦୂରେଇ ରହନ୍ତି । ଏହାଦ୍ୱାରା ସେମାନେ କେବଳ ନିଜର ସର୍ବନାଶ କରୁଛନ୍ତି ମାତ୍ର ତାହା ବୁଝି ପାରୁନାହାନ୍ତି । ୨୭. ଯଦି ତୁମେ ଏହା ଦେଖିପାରନ୍ତ, ଯେତେବେଳେ ସେମାନଙ୍କୁ ନର୍କଦ୍ୱାରରେ ଠିଆ କରାଯିବ ଏବଂ ସେମାନେ କହିବେ "ଆହା ! ଆମକୁ ଆଉଥରେ (ସଂସାରକୁ) ପଠାଇ ଦିଆଯାଆନ୍ତା କି ! ତା'ହେଲେ ଆମେ ଆମ ଈଶ୍ୱରଙ୍କ ବାଣୀକୁ ମିଥ୍ୟା ମଣନ୍ତୁ ନାହିଁ ବରଂ ସଦ୍‌ବିଶ୍ୱାସୀ ହୋଇଯାଆନ୍ତୁ ।" ୨୮. ବରଂ ଏହାପୂର୍ବେ ଯାହା ସେମାନେ ଲୁଚାଉଥିଲେ ତାହା ସେମାନଙ୍କ ସାମନାକୁ ଆସିଗଲା । ଯଦି ଆଉଥରେ ସେମାନଙ୍କୁ (ସଂସାରକୁ) ପଠାଇ ଦିଆଯାଏ, ତେବେ ସେମାନେ ପୁଣି ସେହି କର୍ମ କରିବେ ଯେଉଁଥିରୁ ସେମାନଙ୍କୁ ବାରଣ କରାଯାଇଛି । ପ୍ରକୃତରେ ସେମାନେ ମିଥ୍ୟାବାଦୀ ।

୨୯. ସେମାନେ କହନ୍ତି, "ଯାହାକିଛି ଅଛି, କେବଳ ଏହି ଜୀବନରେ ଅଛି ଏବଂ ଆମର ଆଉ ପୁନର୍ଜୀବନ ନାହିଁ।" ୩୦. ଯଦି ତୁମେ ଏହା ଦେଖନ୍ତ ଯେତେବେଳେ ସେମାନଙ୍କୁ ଈଶ୍ୱରଙ୍କ ସାମନାରେ ଛିଡ଼ା କରାଯିବ ଏବଂ ସେ ସେମାନଙ୍କୁ ପଚାରିବେ, "କଣ ଏହି ପୁନର୍ଜୀବନ ସତ୍ୟ ନୁହେଁ?" ସେମାନେ ଉତ୍ତର ଦେବେ, "ଆମ ପ୍ରଭୁଙ୍କ ରାଣ! ଏହା ସଂପୂର୍ଣ୍ଣ ସତ୍ୟ।" ଅଲ୍ଲାହ୍ କହିବେ, "ଯେହେତୁ ତୁମେମାନେ ଏହା ମାନି ନଥିଲ, ଏବେ ଶାସ୍ତିର ମଜା ଚାଖ ।" ୩୧. ଯେଉଁମାନେ (ପରଲୋକରେ) ଅଲ୍ଲାହଙ୍କ ସହ ସାକ୍ଷାତକୁ ମିଥ୍ୟା ମନେ କରନ୍ତି, ସେମାନେ ନିଶ୍ଚୟ କ୍ଷତିରେ ରହିବେ। ଯେତେବେଳେ ସେମାନଙ୍କ ସାମନାରେ ହଠାତ୍ ପ୍ରଳୟ ଆସିଯିବ, ସେମାନେ କହିବେ, "ହାୟ, ଆମର ଦୁର୍ଭାଗ୍ୟ! ଏ ବିଷୟରେ ଆମେ ଭାରି ଅବହେଳା କଲୁ।" ସେମାନଙ୍କ ପିଠି ଉପରେ (ପାପର) ବୋଝ ଥିବ। ଶୁଣ! ସେମାନେ ଅତି କଦର୍ଯ୍ୟ ବୋଝ ବହନ କରିବେ। ୩୨. ଏହି ପାର୍ଥିବ ଜୀବନ କେବଳ ଖେଳ-ତାମସା ବ୍ୟତୀତ ଆଉ କିଛି ନୁହେଁ। ଧର୍ମପରାୟଣ ଲୋକଙ୍କ ପାଇଁ ପରଲୋକର ଘର ଯଥେଷ୍ଟ ଭଲ। କ'ଣ ତୁମେମାନେ ଏହା ବୁଝିବନାହିଁ?

୩୩. (ହେ ବାର୍ତ୍ତାବହ!) ଆମ୍ଭକୁ ଜଣାଅଛି ଯେ ସେମାନଙ୍କର କଥା ତୁମକୁ କଷ୍ଟ ଦେଉଛି। ବାସ୍ତବରେ ସେମାନେ ତୁମକୁ ପ୍ରତ୍ୟାଖ୍ୟାନ କରୁନାହାନ୍ତି ବରଂ ଦୁରାଚାରୀମାନେ ଅଲ୍ଲାହଙ୍କ ବାଣୀକୁ ପ୍ରତ୍ୟାଖ୍ୟାନ କରୁଛନ୍ତି। ୩୪. ତୁମ ପୂର୍ବରୁ ମଧ୍ୟ ଅନେକ ରସୁଲଙ୍କୁ ପ୍ରତ୍ୟାଖ୍ୟାନ କରିଦିଆ ଯାଇଛି। ସେମାନଙ୍କୁ ପ୍ରତ୍ୟଖ୍ୟାନ କରିବା ଓ କଷ୍ଟ ଦେବା ସତ୍ତ୍ୱେ ସେମାନେ ଆମ୍ଭର ସାହାଯ୍ୟ ପହଁଚିବା ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ରହିଥିଲେ। ଅଲ୍ଲାହଙ୍କ କଥାକୁ କେହି ପରିବର୍ତ୍ତନ କରିପାରିବେ ନାହିଁ । ତୁମକୁ ତ ପୂର୍ବ ରସୁଲମାନଙ୍କ ବିଷୟରେ ଅନେକ ଖବର ମିଳିସାରିଛି। ୩୫. ସେମାନଙ୍କର ପ୍ରତ୍ୟାଖ୍ୟାନ ଯଦି ତୁମକୁ ଅସହ୍ୟ ବୋଧ ହେଉଛି ଏବଂ ଯଦି ତୁମର କ୍ଷମତା ଅଛି, ତେବେ ଭୂଗର୍ଭରେ (ପ୍ରବେଶ କରିବା ପାଇଁ) କୌଣସି ସୁଡ଼ଙ୍ଗ ବା ଆକାଶରେ (ଚଢ଼ିବା ପାଇଁ) କୌଣସି ସିଡ଼ି ଖୋଜ ଏବଂ ସେମାନଙ୍କ ପାଇଁ କୌଣସି ଅଲୌକିକ ନିଦର୍ଶନ ନେଇଆସ। ଯଦି ଅଲ୍ଲାହ୍ ଇଚ୍ଛା କରିଥାଆନ୍ତେ, ତେବେ ସମସ୍ତଙ୍କୁ ସତମାର୍ଗକୁ ନେଇ ଆସିଥାଆନ୍ତେ। ତେଣୁ, ତୁମେ ଅଜ୍ଞାନୀମାନଙ୍କ ପରି ହୁଅନାହିଁ। ୩୬. କଥା

ସେଇମାନେ  ମାନନ୍ତି, ଯେଉଁମାନେ ଶୁଣନ୍ତି । ମୃତମାନଙ୍କୁ ଅଲ୍ଲାହ୍ (ନିଶ୍ଚୟ) ଜୀବିତ କରିବେ ଏବଂ ସେମାନେ ତାଙ୍କ ସମ୍ମୁଖରେ ଉପସ୍ଥିତ ହେବେ ।

୩୭. ସେମାନେ କହନ୍ତି ଯେ (ଯଦି ମୁହମ୍ମଦ ଜଣେ ଈଶ୍ୱରଦୂତ, ତେବେ) ଈଶ୍ୱରଙ୍କ ଦ୍ୱାରା ତାଙ୍କୁ କୌଣସି ଅଲୌକିକ ନିଦର୍ଶନ କାହିଁକି ଦିଆ ନଗଲା ? ସେମାନଙ୍କୁ କହିଦିଅ, "ଅଲୌକିକ ନିଦର୍ଶନ ପଠାଇବା ପାଇଁ ଅଲ୍ଲାହ୍ ସଂପୂର୍ଣ୍ଣ ସକ୍ଷମ, ମାତ୍ର ଅଧିକାଂଶ ଲୋକ (ଏହାର ପରିଣାମ) ଜାଣନ୍ତି ନାହିଁ । ୩୮. ଭୂଇଁରେ ଚାଲବୁଲ କରୁଥିବା ପଶୁ ହୁଅନ୍ତୁ ବା ଦୁଇ ଡେଣାରେ ଉଡୁଥିବା ପକ୍ଷୀ ହୁଅନ୍ତୁ, ସମସ୍ତଙ୍କର ତୁମମାନଙ୍କ ପରି ସମାଜ ଅଛି । ଆମ୍ଭେ ମୂଳଗ୍ରନ୍ଥରେ କିଛି ନଲେଖି ଛାଡ଼ିନାହୁଁ । ପୁଣି ସମସ୍ତଙ୍କୁ ଏକାଠି କରି ପ୍ରଭୁଙ୍କ ସାମନାକୁ ଅଣାଯିବ । ୩୯.  ଯେଉଁମାନେ ଆମ୍ଭର ବାଣୀକୁ ଅସ୍ୱୀକାର କରୁଛନ୍ତି, ସେମାନେ ମୂକ ଓ ବଧିର ଏବଂ ସେମାନେ ଘୋର ଅନ୍ଧକାର ମଧ୍ୟରେ ରହିଛନ୍ତି । ଅଲ୍ଲାହ୍ ଯାହାକୁ ଚାହାନ୍ତି ପଥଭ୍ରଷ୍ଟ କରନ୍ତି ଏବଂ ଯାହାକୁ ଚାହାନ୍ତି ସଳଖ ବାଟକୁ ଆଣନ୍ତି ।

୪୦.  ସେମାନଙ୍କୁ ପଚାର, "ଯଦି ତୁମମାନଙ୍କ ଉପରେ ଅଲ୍ଲାହଙ୍କର କୌଣସି ବିପଦ ପଡ଼େ କିମ୍ବା ପ୍ରଳୟ ଆସିଯାଏ, କ'ଣ ସେତେବେଳେ ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରିକୁ ଡାକିବ ? କୁହ, ଯଦି (ପ୍ରକୃତରେ) ତୁମେମାନେ ସତ୍ୟବାଦୀ । ୪୧.  ନା, ବରଂ (ବିପଦରେ) ତୁମେମାନେ କେବଳ ତାଙ୍କୁ ହିଁ ଡାକିଥାଅ । ପୁଣି ଯେଉଁ ବିପଦ ସକାଶେ ତୁମେମାନେ ତାଙ୍କୁ ଡାକ, ସେ ଚାହିଁଲେ ତାହା ଦୂର ମଧ୍ୟ କରିଦିଅନ୍ତି ଆଉ (ସେତେବେଳେ) ତୁମେମାନେ ତାଙ୍କର ସମକକ୍ଷ ମାନିଥିବା ଉପାସ୍ୟମାନଙ୍କୁ ଭୁଲିଯାଅ ।"

୪୨.  ତୁମ ପୂର୍ବରୁ ଆମ୍ଭେ ବିଭିନ୍ନ ସମାଜ ନିକଟକୁ ଈଶ୍ୱରଦୂତ ପଠାଇଥିଲୁ । ଆମ୍ଭେ ସେମାନଙ୍କୁ ବିଭିନ୍ନ ପ୍ରକାରର  ଦୁଃଖ ଓ ବିପଦରେ ପକାଇଥିଲୁ ଯେପରିକି ସେମାନେ ବିନମ୍ର ହେବେ । ୪୩.  ଯେତେବେଳେ ଆମ୍ଭେ ସେମାନଙ୍କୁ ବିପଦରେ ପକାଇଲୁ ସେମାନେ କାହିଁକି ବିନମ୍ର ହେଲେନାହିଁ ? ବରଂ ସେମାନଙ୍କ ହୃଦୟ ଅଧିକ କଠିନ ହୋଇଗଲା । ଶଇତାନ ସେମାନଙ୍କୁ ବୁଝାଇ ଦେଲା ଯେ ସେମାନେ ଯାହା କରୁଛନ୍ତି, ସେଗୁଡ଼ିକ ଭାରି ଭଲ କାମ । ୪୪. ଯେତେବେଳେ

ସେମାନଙ୍କୁ ଦିଆ ଯାଇଥିବା ଶିକ୍ଷା ସେମାନେ ଭୁଲିଗଲେ, ଆମ୍ଭେ (ଭିନ୍ନ ଉପାୟରେ ପରୀକ୍ଷା ନେବା ଉଦ୍ଦେଶ୍ୟରେ) ସେମାନଙ୍କ ପାଇଁ ସବୁ ପ୍ରକାରର ସୁଖସମୃଦ୍ଧିର ଦ୍ୱାର ଖୋଲିଦେଲୁ । ଯେତେବେଳେ ସେମାନେ ସେଗୁଡ଼ିକୁ ଭୋଗ କରିବାରେ ମଗ୍ନ ହୋଇଗଲେ, ଆମ୍ଭେ ହଠାତ୍ ସେମାନଙ୍କୁ ଶାସ୍ତି ଦେଲୁ, ଯାହାଫଳରେ ସେମାନେ ହତାଶ ହୋଇଗଲେ । ୪୫. ସୁତରାଂ ଦୁରାଚାରୀମାନଙ୍କର ମୂଳୋତ୍ପାଟନ କରି ଦିଆଗଲା । ସର୍ବଲୋକେଶ୍ୱର ଅଲ୍ଲାହ୍ ହିଁ ସକଳ ପ୍ରଶଂସାର ଯୋଗ୍ୟ ।

୪୬. ସେମାନଙ୍କୁ ପଚାର, "କହିଲ ଭଲା, ଯଦି ଅଲ୍ଲାହ୍ ତୁମମାନଙ୍କର ଦେଖିବାର, ଶୁଣିବାର ବା ବିଚାର କରିବାର ଶକ୍ତି ଛିନ୍ନ କରିନିଅନ୍ତି, ତେବେ ଅଲ୍ଲାହଙ୍କ ବ୍ୟତୀତ କ'ଣ ଅନ୍ୟ କେହି ଈଶ୍ୱର ଅଛି ଯିଏ ସେଗୁଡ଼ିକୁ ତୁମମାନଙ୍କୁ ଫେରାଇ ଦେଇପାରିବ ?" ଦେଖ ! ଆମ୍ଭେ କେମିତି କଥାକୁ ବିଭିନ୍ନ ଶୈଳୀରେ ବୁଝାଉଛୁ, ତଥାପି ସେମାନେ ମୁହଁ ବୁଲାଇ ନେଉଛନ୍ତି । ୪୭. ପୁଣି ପଚାର, "ଭଲା କୁହତ ! ଯଦି ତୁମମାନଙ୍କ ଉପରେ ହଠାତ୍ ତୁମ ଜ୍ଞାତ ବା ଅଜ୍ଞାତରେ ଅଲ୍ଲାହଙ୍କଠାରୁ ବିପଦ ଆସେ, ତେବେ କ'ଣ ଦୁରାତ୍ମାମାନଙ୍କ ବ୍ୟତୀତ ଆଉ କେହି ଧ୍ୱଂସ ହେବେ ?" ୪୮. ଆମ୍ଭେ ବାର୍ତ୍ତାବହମାନଙ୍କୁ କେବଳ ଏହି ଉଦ୍ଦେଶ୍ୟରେ ପଠାଇଥାଉ ଯେ ସେମାନେ (ସଦାଚାରୀମାନଙ୍କୁ) ସୁସଂବାଦ ଦିଅନ୍ତୁ ଏବଂ (ଦୁରାଚାରୀମାନଙ୍କୁ) ସାବଧାନ କରିଦିଅନ୍ତୁ । ସୁତରାଂ, ଯେଉଁମାନେ ବିଶ୍ୱାସ କଲେ ଏବଂ ନିଜକୁ ସଂଶୋଧନ କରିନେଲେ, ସେମାନଙ୍କର କୌଣସି ଭୟ ନାହିଁ ବା ସେମାନେ ଦୁଃଖ ଭୋଗିବେ ନାହିଁ । ୪୯. ଯେଉଁମାନେ ଆମ୍ଭର ବାଣୀକୁ ପ୍ରତ୍ୟାଖ୍ୟାନ କଲେ, ସେମାନଙ୍କୁ ଅବଶ୍ୟ ଶାସ୍ତି ମିଳିବ କାରଣ ସେମାନେ ଅବଜ୍ଞା କଲେ ।

୫୦. କୁହ, "ମୁଁ ତୁମମାନଙ୍କୁ ଏହା କହୁନାହିଁ ଯେ ମୋ' ପାଖରେ ଅଲ୍ଲାହଙ୍କର ଭଣ୍ଡାର ଅଛି କିମ୍ବା ମୁଁ ଅଦୃଷ୍ଟ କଥା ଜାଣେ କିମ୍ବା ମୁଁ ଏହା ମଧ୍ୟ କହୁନାହିଁ ଯେ ମୁଁ ଜଣେ ଦେବଦୂତ । ମୁଁ କେବଳ ସେହି ଆଦେଶ ପାଳନ କରେ ଯାହା ମୋତେ ଦୈବବାଣୀ କରାଯାଏ ।" କହିଦିଅ, "କ'ଣ ଆଖି ଥିବା ଏବଂ ଆଖି ନଥିବା ବ୍ୟକ୍ତି ସମାନ ହୋଇପାରନ୍ତି ? କ'ଣ ତୁମେମାନେ ଏବିଷୟରେ ଚିନ୍ତା କରିବନାହିଁ ?''

୫୧. ଏହି କୁରଆନ ଦ୍ୱାରା ସେମାନଙ୍କୁ ସାବଧାନ କର ଯେଉଁମାନେ ଭୟ କରନ୍ତି ଯେ ଦିନେ ସେମାନେ ନିଜ ପାଳନକର୍ତ୍ତାଙ୍କ ସମ୍ମୁଖରେ ଉପସ୍ଥିତ ହେବେ ଏବଂ (ଏହା ମଧ୍ୟ ଜାଣନ୍ତି ଯେ) ତାଙ୍କ ବ୍ୟତୀତ କେହି ସେମାନଙ୍କର ସାହାଯ୍ୟକାରୀ ବା ସୁପାରିଶକାରୀ ନଥିବେ, ଏହାଦ୍ୱାରା ହୁଏତ ସେମାନେ ସଦାଚାରୀ ହେବେ । ୫୨. ଯେଉଁ (ଗରିବ) ଭକ୍ତମାନେ ନିଜ ପାଳନକର୍ତ୍ତାଙ୍କ ପ୍ରସନ୍ନତା ପାଇଁ ସକାଳେ ଓ ସନ୍ଧ୍ୟାରେ ତାଙ୍କୁ ଡାକନ୍ତି, ସେମାନଙ୍କୁ ନିଜ ପାଖରୁ ଦୂରେଇ ଦିଅନାହିଁ । ସେମାନଙ୍କ କର୍ମ ପାଇଁ ତୁମେ ଉତ୍ତରଦାୟୀ ନୁହଁ କିମ୍ବା ତୁମ କର୍ମ ପାଇଁ ସେମାନେ ଉତ୍ତରଦାୟୀ ନୁହନ୍ତି । ସେମାନଙ୍କୁ ଦୂରେଇ ଦେଲେ ତୁମେ ଅନ୍ୟାୟ କରିବ । ୫୩. ଏହିପରି ଆମ୍ଭେ ସେମାନଙ୍କ ମଧ୍ୟରୁ କିଛି ଲୋକଙ୍କୁ ଆଉ କିଛି ଲୋକଙ୍କ ଦ୍ୱାରା ପରୀକ୍ଷା କଲୁ ଯେପରିକି ସେମାନେ ଏହା କୁହନ୍ତୁ, "କ'ଣ ଆମମାନଙ୍କ ଭିତରୁ କେବଳ ଏହି (ଗରିବ) ଲୋକମାନଙ୍କ ପ୍ରତି ଅଲ୍ଲାହ୍ ଅନୁଗ୍ରହ କଲେ ?" କ'ଣ ଅଲ୍ଲାହଙ୍କୁ ଏହା ଜଣାନାହିଁ ଯେ କେଉଁମାନେ କୃତଜ୍ଞ ?

୫୪. ଯେତେବେଳେ ଆମ୍ଭ ବାଣୀକୁ ବିଶ୍ୱାସ କରୁଥିବା ଲୋକମାନେ ତୁମ ପାଖକୁ ଆସନ୍ତି, ସେମାନଙ୍କୁ "ସଲାମୁନ୍ ଅଲୈକୁମ୍" (ଅର୍ଥାତ୍ ତୁମର ମଂଗଳ ହେଉ) ବୋଲି କୁହ । ଦୟା କରିବାକୁ ତୁମ ପ୍ରଭୁ ନିଜର କର୍ତ୍ତବ୍ୟ ମାନି ନେଇଛନ୍ତି । ଯଦି ତୁମମାନଙ୍କ ମଧ୍ୟରୁ କେହି ଅଜାଣତରେ କୌଣସି କୁକର୍ମ କରି ବସେ ଏବଂ ତା'ପରେ ଅନୁତାପ କରି ନିଜର ଆଚରଣ ସଂଶୋଧନ କରିନିଏ, ତେବେ ଅଲ୍ଲାହ୍ ଅବଶ୍ୟ କ୍ଷମାଶୀଳ ଓ କରୁଣାମୟ ।" ୫୫. ଏହିପରି, ଆମ୍ଭେ ନିଜର ବାଣୀଗୁଡ଼ିକୁ ପରିଷ୍କାର ଭାବରେ ବର୍ଣ୍ଣନା କରିଥାଉ ଯେପରିକି ପାପୀମାନଙ୍କର ପନ୍ଥା ସ୍ପଷ୍ଟ ହୋଇଯାଉ ।

୫୬. ସେମାନଙ୍କୁ କୁହ "ତୁମେମାନେ ଅଲ୍ଲାହଙ୍କୁ ଛାଡ଼ି ଯେଉଁମାନଙ୍କୁ ଡାକ, ମୋତେ ସେମାନଙ୍କର ଉପାସନା କରିବାକୁ ମନା କରାଯାଇଛି ।" କହିଦିଅ, "ମୁଁ ତୁମମାନଙ୍କ ଇଚ୍ଛା ଅନୁଯାୟୀ ଚଳି ପାରିବିନାହିଁ । ଯଦି ମୁଁ ଏହା କରେ ତେବେ ପଥଭ୍ରଷ୍ଟ ହୋଇଯିବି ଏବଂ ସତପଥରୁ ବଂଚିତ ହେବି ।" ୫୭. କୁହ "ମୁଁ ମୋ ଈଶ୍ୱରଙ୍କ ନିକଟରୁ ଆସିଥିବା ପ୍ରମାଣକୁ ଆଧାର କରିଛି କିନ୍ତୁ ତୁମେମାନେ ତାହାକୁ ଅସ୍ୱୀକାର କରୁଛ । ଯାହାପାଇଁ ତୁମେମାନେ ଅଧୟ ହେଉଛ, ତାହା ମୋ ଆୟତ୍ତରେ

ନାହିଁ ଏବଂ ନିଷ୍ପତ୍ତି କରିବା କେବଳ ଅଲ୍ଲାହଙ୍କର ଅଧିକାର । ସେ ସତ କହନ୍ତି ଏବଂ ସେହିଁ ଠିକ୍ ବିଚାର କରନ୍ତି । ୫୮. କହିଦିଅ "ତୁମେମାନେ ଯେଉଁଥିପାଇଁ ଅଥୟ ହେଉଛ, ଯଦି ତାହା ମୋ ଆୟତ୍ତରେ ଥାଆନ୍ତା ତେବେ ଆମ ମଧ୍ୟରେ କଥାର ନିଷ୍ପତ୍ତି ସରି ଥାଆନ୍ତା । ଅଲ୍ଲାହ୍ ଦୁରାଚାରୀମାନଙ୍କୁ ଠିକ୍ ଜାଣନ୍ତି । ୫୯. ଅଦୃଷ୍ଟର ଚାବିକାଠି କେବଳ ତାଙ୍କରି ପାଖରେ ଅଛି, ଯାହା ବିଷୟରେ ତାଙ୍କ ବ୍ୟତୀତ ଆଉ କେହି ଜାଣନ୍ତିନାହିଁ । ଜଳଭାଗ ଓ ସ୍ଥଳଭାଗରେ ଯାହା ଅଛି, ସେ ଜାଣନ୍ତି । ତାଙ୍କ ଅଜ୍ଞାତସାରରେ ଗଛରୁ ପତ୍ରଟିଏ ମଧ୍ୟ ଝଡେନାହିଁ । ପୃଥିବୀର ଅନ୍ଧକାର ମଧ୍ୟରେ ପଡୁଥିବା ବୀଜଟିଏ ହେଉ କିମ୍ବା କୌଣସି ଶୁଷ୍କ ବା ଆର୍ଦ୍ର ବସ୍ତୁଟିଏ ହେଉ, ସବୁକଥା (ମୂଳଗ୍ରନ୍ଥରେ) ପରିଷ୍କାର ଭାବରେ ଲେଖା ହୋଇ ରହିଛି ।

୬୦. ସେଇ (ଅଲ୍ଲାହ୍) ରାତିରେ (ଶୋଇବା ଅବସ୍ଥାରେ) ତୁମମାନଙ୍କର ଆତ୍ମାକୁ (ସାମୟିକ ରୂପେ) ହରଣ କରିନିଅନ୍ତି ଏବଂ ଦିନରେ ତୁମମାନେ କରୁଥିବା କର୍ମଗୁଡ଼ିକର ଖବର ରଖନ୍ତି, ପୁଣି ନିର୍ଦ୍ଦିଷ୍ଟ ଆୟୁଷ ପୂରିବା ପର୍ଯ୍ୟନ୍ତ (ପ୍ରତିଦିନ) ତୁମମାନଙ୍କୁ ନିଦରୁ ଉଠାଇ ଦିଅନ୍ତି । ଏହାପରେ ତାଙ୍କରି ନିକଟକୁ ତୁମେମାନେ ଫେରିଯିବ ଏବଂ ଯାହ ତୁମେମାନେ କରୁଥିଲ, ସେ ତୁମମାନଙ୍କୁ ଜଣାଇ ଦେବେ । ୬୧. ନିଜର ସେବକମାନଙ୍କ ଉପରେ ତାଙ୍କର ନିରଙ୍କୁଶ କ୍ଷମତା । ସେ ତୁମମାନଙ୍କ ସୁରକ୍ଷା ପାଇଁ ଦେବଦୂତମାନଙ୍କୁ ନିଯୁକ୍ତ କରିଛନ୍ତି । ପୁଣି ଯେତେବେଳେ ତୁମମାନଙ୍କ ମଧ୍ୟରୁ କାହାରି ମୃତ୍ୟୁ ଆସି ପହଁଚେ, ଆମ୍ଭର ଦେବଦୂତମାନେ ତା' ପ୍ରାଣ ହରଣ କରିନିଅନ୍ତି । ସେମାନେ ଆଦୌ (କର୍ତ୍ତବ୍ୟରେ) ଅବହେଳା କରନ୍ତି ନାହିଁ । ୬୨. ଏହାପରେ ସେମାନଙ୍କୁ ସେମାନଙ୍କର ପ୍ରକୃତ ମାଲିକ ଅଲ୍ଲାହଙ୍କ ନିକଟକୁ ଫେରାଇ ନିଆଯିବ । ଜାଣିଥାଅ, ନିଷ୍ପତ୍ତି କେବଳ ଅଲ୍ଲାହଙ୍କର ହେବ ଏବଂ ସେ ଖୁବ ଶୀଘ୍ର ହିସାବ ନେବେ ।

୬୩. ତୁମେ (ସେମାନଙ୍କୁ) ପଚାର, "ଜଂଗଲ ଓ ସମୁଦ୍ରର ଅନ୍ଧକାର ମଧ୍ୟରୁ ସେତେବେଳେ କିଏ ତୁମମାନଙ୍କୁ ଉଦ୍ଧାର କରେ ଯେତେବେଳେ ତୁମେମାନେ ଆକୁଳ ହୋଇ ମନେମନେ ତାଙ୍କୁ ଡାକ ଯେ ଯଦି ସେ ତୁମମାନଙ୍କୁ ସେହି ବିପଦରୁ ଉଦ୍ଧାର କରନ୍ତି ତେବେ ତୁମେମାନେ ନିଶ୍ଚୟ ତାଙ୍କ ପ୍ରତି କୃତଜ୍ଞ ହେବ ?" ୬୪. କହିଦିଅ, "ଅଲ୍ଲାହ୍ ହିଁ ତୁମମାନଙ୍କୁ ସେହି ବିପଦରୁ ତଥା ଅନ୍ୟ ସମସ୍ତ ବିପଦଆପଦରୁ ଉଦ୍ଧାର

କରିଥାଆନ୍ତି । ତଥାପି ତୁମେମାନେ ଅନ୍ୟମାନଙ୍କୁ ତାଙ୍କର ସମକକ୍ଷ କରିଦିଅ ।” ୬୫. (ସେମାନଙ୍କୁ) କୁହ “ଅଲ୍ଲାହ୍ ଏଥିପାଇଁ ସକ୍ଷମ ଯେ ସେ ତୁମମାନଙ୍କ ମୁଣ୍ଡ ଉପରୁ ବା ପାଦତଳୁ ତୁମମାନଙ୍କ ପାଇଁ ବିପଦ ସୃଷ୍ଟି କରିଦେବେ ବା ତୁମମାନଙ୍କୁ (ବିଭିନ୍ନ ଗୋଷ୍ଠୀରେ) ବାଣ୍ଟିଦେଇ ପରସ୍ପର ସହ ଲଢ଼ାଇ ଦେବେ ।” ଦେଖ, ଆମ୍ଭେ କିପରି ନିଜର ବାଣୀଗୁଡ଼ିକୁ ଭିନ୍ନଭିନ୍ନ ଶୈଳୀରେ ବର୍ଣ୍ଣନା କରୁଛୁ ଯେପରି ସେମାନେ ବୁଝିପାରିବେ । ୬୬. (ହେ ବାର୍ତ୍ତାବହ!) ତୁମ ସଂପ୍ରଦାୟ କୁରଆନକୁ ପ୍ରତ୍ୟାଖ୍ୟାନ କରୁଛି ମାତ୍ର ଏହା ସଂପୂର୍ଣ୍ଣ ସତ୍ୟ । ତୁମେ କହିଦିଅ, “ମୋତେ ତୁମମାନଙ୍କୁ ଜଗିବାର ଦାୟିତ୍ୱ ଦିଆଯାଇ ନାହିଁ । ୬୭. ପ୍ରତ୍ୟେକ ଘଟଣାର ଏକ ନିର୍ଦ୍ଦିଷ୍ଟ ସମୟ ଥାଏ ଏବଂ ତୁମେମାନେ ଖୁବ୍ ଶୀଘ୍ର ଏହା ଜାଣିଯିବ ।”

୬୮. ଯେତେବେଳେ ତୁମେ ଏଭଳି ଲୋକଙ୍କୁ ଦେଖ ଯେଉଁମାନେ ଆମ୍ଭ ବାଣୀରେ ଦୋଷ ଖୋଜନ୍ତି, ସେମାନେ ଅନ୍ୟ କଥାରେ ଲିପ୍ତ ନହେବା ପର୍ଯ୍ୟନ୍ତ ତୁମେ ସେମାନଙ୍କଠାରୁ ଦୂରେଇ ରୁହ । ଯଦି ଶଇତାନ ତୁମକୁ ଭୁଲାଇ ଦିଏ ତେବେ ମନେ ପଡ଼ିବା ପରେ ପୁଣି ଏଭଳି ଦୁରାତ୍ମାମାନଙ୍କ ସହ ବସାଉଠା କରନାହିଁ । ୬୯. ସେହି ଅଧର୍ମୀମାନଙ୍କର କାର୍ଯ୍ୟକଳାପ ପାଇଁ ଧର୍ମପରାୟଣ ବ୍ୟକ୍ତିମାନେ ଉତ୍ତରଦାୟୀ ନୁହନ୍ତି । ଅବଶ୍ୟ ଉପଦେଶ ଦେବା ଏମାନଙ୍କର କର୍ତ୍ତବ୍ୟ ଯାହାଫଳରେ ସଂଭବତଃ ସେମାନେ କୁକର୍ମରୁ ବିରତ ରହିବେ ।

୭୦. ଯେଉଁମାନେ ନିଜ ଧର୍ମକୁ ଖେଳତାମସା ମନେ କରିଛନ୍ତି ଆଉ ପାର୍ଥିବ ଜୀବନ ଯେଉଁମାନଙ୍କୁ ମାୟାଗ୍ରସ୍ତ କରି ଦେଇଛି, ସେମାନଙ୍କୁ ଛାଡ଼ିଦିଅ । ହଁ, କୁରଆନ ଦ୍ୱାରା ଉପଦେଶ ଦେଉଥାଅ ଯେମିତି କୈଣସି ବ୍ୟକ୍ତି ନିଜର କୃତକର୍ମ ଯୋଗୁଁ ଏଭଳି ବିପଦରେ ନପଡୁ ଯେ ତା’ପାଇଁ ଅଲ୍ଲାହଙ୍କ ବ୍ୟତୀତ ଆଉ କେହି ତ୍ରାଣକର୍ତ୍ତା ବା ସୁପାରିଶକର୍ତ୍ତା ମିଳିବେ ନାହିଁ ଏବଂ (ନିଜର ମୁକ୍ତି) ବିନିମୟରେ ସେ ଯାହା ଦେଲେ ମଧ୍ୟ ତାହା ସ୍ୱୀକାର କରାଯିବ ନାହିଁ । ଏଭଳି ଲୋକମାନେ ନିଜ କୃତକର୍ମର ପରିଣାମ ଭୋଗିବେ । ଅବିଶ୍ୱାସ କରିଥିବା ଯୋଗୁଁ ସେମାନେ (ନର୍କର) ଫୁଟନ୍ତା ପାଣି ପିଇବେ ଏବଂ କଠୋର ଶାସ୍ତି ଭୋଗିବେ ।

୭୧. କହିଦିଅ, “କ’ଣ ଅଲ୍ଲାହଙ୍କୁ ଛାଡ଼ି ଆମେ ସେମାନଙ୍କୁ ଡ଼ାକିବୁ ଯେଉଁମାନେ ଆମର କୌଣସି ଲାଭ ବା କ୍ଷତି କରି ପାରନ୍ତିନାହିଁ? ଅଲ୍ଲାହ୍ ଆମମାନଙ୍କୁ ବାଟ ଦେଖାଇ ସାରିବା ପରେ କ’ଣ ଆମେ ସେହି ବ୍ୟକ୍ତି ପରି ପଛକୁ ଫେରିଯିବୁ ଯାହାକୁ ଶଇତାନ ଜଂଗଲ ମଧ୍ୟରେ ଦିଗହରା କରିଦିଏ ଏବଂ ସେ ହତାଶ ହୋଇ ବୁଲୁଥାଏ ଅଥଚ ତା’ ବନ୍ଧୁମାନେ ତାକୁ ଡାକୁଥାଆନ୍ତି ଯେ ଆମ ପାଖକୁ ଚାଲିଆ, ଏହାହିଁ ଠିକ୍ ବାଟ।” କହିଦିଅ ଯେ ଅଲ୍ଲାହ୍ ଯେଉଁ ବାଟ ଦେଖାଇଛନ୍ତି, ତାହାହିଁ ଠିକ୍ ବାଟ ଏବଂ ଆମମାନଙ୍କୁ ସର୍ବଲୋକଶ୍ୱରଙ୍କ ପାଖରେ ନିଜକୁ ସମର୍ପଣ କରିବାର ଆଦେଶ ଦିଆଯାଇଛି। ୭୨. ଏବଂ (କୁହାଯାଇଛି ଯେ) ନମାଜ ସଂପାଦନ କର ଏବଂ ଅଲ୍ଲାହ୍‌ଙ୍କୁ ଭୟ କର। ତାଙ୍କରି ପାଖରେ ଏକାଠି ହୋଇ ତୁମେମାନେ ଉପସ୍ଥିତ ହେବ।” ୭୩. ସେ ହିଁ ପୃଥିବୀ ଓ ଆକାଶମଣ୍ଡଳକୁ ଯଥାର୍ଥ ଉଦ୍ଦେଶ୍ୟରେ ସୃଷ୍ଟି କରିଛନ୍ତି। ଯେଉଁଦିନ ସେ କହିବେ “ହୋଇଯା”, ସେଦିନ ପ୍ରଳୟ ହୋଇଯିବ। ତାଙ୍କର ବାଣୀ ସତ୍ୟ। ଯେଉଁଦିନ ତୂରୀ ଫୁଙ୍କି ଦିଆଯିବ, ସେଦିନ କେବଳ ତାଙ୍କରି ଆଧିପତ୍ୟ ହେବ। ସେ ଦୃଷ୍ଟ ଓ ଅଦୃଷ୍ଟ କଥା ଜାଣନ୍ତି। ସେ ମହାଜ୍ଞାନୀ ଏବଂ ସେ ସବୁ ଖବର ରଖନ୍ତି।

୭୪. (ସେ ସମୟର ଘଟଣା ଶୁଣ) ଯେତେବେଳେ ଇବ୍ରାହିମ ନିଜ ପିତା ଆଜରଙ୍କୁ କହିଥିଲେ, “କ’ଣ ତୁମେ ପ୍ରତିମାଗୁଡ଼ିକୁ ନିଜର ଈଶ୍ୱର ରୂପେ ମାନିନେଇଛ? ମୁଁ ଦେଖୁଛି ଯେ ତୁମେ ସଂପୂର୍ଣ୍ଣ ରୂପେ ପଥଭ୍ରଷ୍ଟ ହୋଇଯାଇଛ ଏବଂ ତୁମର ସଂପ୍ରଦାୟ ମଧ୍ୟ।” ୭୫. ଏଣୁ ଆମ୍ଭେ ଇବ୍ରାହିମଙ୍କୁ ପୃଥିବୀ ଓ ଆକାଶରେ ଥିବା ଆମ୍ଭର ସାମ୍ରାଜ୍ୟ ଦେଖାଉଥିଲୁ ଯେପରିକି ତାଙ୍କୁ ସଂପୂର୍ଣ୍ଣ ବିଶ୍ୱାସ ହୋଇଯାଉ। ୭୬. ଯେତେବେଳେ ତାଙ୍କ ଉପରେ ରାତିର ଅନ୍ଧକାର ଘୋଟି ଆସିଲା, ସେ ଗୋଟିଏ ନକ୍ଷତ୍ର ଦେଖିଲେ। କହିଲେ “ଏହି (ନକ୍ଷତ୍ରଟି) ମୋ’ ଈଶ୍ୱର”। ପୁଣି ଯେତେବେଳେ ତାହା ଅସ୍ତ ହୋଇଗଲା, ସେ କହିଲେ “ଅସ୍ତ ହୋଇ ଯାଉଥିବା ବସ୍ତୁକୁ ମୁଁ ପସନ୍ଦ କରେନାହିଁ।” ୭୭. ପୁଣି ଯେତେବେଳେ ସେ ଚନ୍ଦ୍ର ଉଦୟ ହେବାର ଦେଖିଲେ, କହିଲେ “ଏହି (ଚନ୍ଦ୍ର) ମୋ’ ଈଶ୍ୱର”। ପୁଣି ଯେତେବେଳେ ତାହା ଲୁଚିଗଲା, ସେ କହିଲେ, “ଯଦି ମୋ’ ଈଶ୍ୱର ମୋତେ ଠିକ୍ ବାଟ ନଦେଖାଇବେ, ତା’ହେଲେ ମୁଁ ସେହି

ଲୋକମାନଙ୍କ ପରି ହୋଇଯିବି, ଯେଉଁମାନେ ପଥଭ୍ରଷ୍ଟ ହୋଇଗଲେ ।” ୭୮. ଏହାପରେ ଯେତେବେଳେ ସେ ଚମକୁଥିବା ସୂର୍ଯ୍ୟକୁ ଉଦୟ ହେବାର ଦେଖିଲେ, କହିଲେ “ଏହି (ସୂର୍ଯ୍ୟ) ମୋ’ ଈଶ୍ୱର । ଏହା ସମସ୍ତଙ୍କ ଅପେକ୍ଷା ବଡ଼ ।” ପୁଣି ଯେତେବେଳେ ତାହା ମଧ୍ୟ ଅସ୍ତ ହୋଇଗଲା, ସେ ତାଙ୍କ ସଂପ୍ରଦାୟର ଲୋକମାନଙ୍କୁ କହିଲେ, “ଭାଇମାନେ ! ତୁମେମାନେ ଯେଉଁ ବସ୍ତୁଗୁଡ଼ିକୁ ତାଙ୍କର ସମକକ୍ଷ କରୁଛ, ସେଗୁଡ଼ିକ ସହିତ ମୋ’ର କିଛି ସଂପର୍କ ନାହିଁ ।” ୭୯. ମୁଁ ଜଣେ ପ୍ରାକୃତିକ ଏକେଶ୍ୱରବାଦୀ ରୂପେ ତାଙ୍କଠାରେ ମନୋନିବେଶ କରୁଛି ଯିଏ ପୃଥିବୀ ଓ ଆକାଶମଣ୍ଡଳକୁ ସୃଷ୍ଟି କରିଛନ୍ତି ଏବଂ ମୁଁ ବହୁଈଶ୍ୱରବାଦୀ ନୁହେଁ ।” ୮୦. ଇବ୍ରାହିମଙ୍କ ସଂପ୍ରଦାୟର ଲୋକମାନେ ତାଙ୍କ ସହିତ ଯୁକ୍ତିତର୍କ କରିବାକୁ ଲାଗିଲେ । ସେ (ସେମାନଙ୍କୁ) କହିଲେ, “କଣ ତୁମେମାନେ ଅଲ୍ଲାହଙ୍କ ବିଷୟରେ ମୋ’ ସହିତ ଝଗଡ଼ା କରୁଛ କିନ୍ତୁ ସେହିଁ ମୋତେ ବାଟ ଦେଖାଇଛନ୍ତି । ଯେଉଁମାନଙ୍କୁ ତୁମେମାନେ ଅଲ୍ଲାହଙ୍କ ଈଶ୍ୱରତ୍ୱରେ ଅଂଶୀଦାର ମାନୁଛ, ସେମାନଙ୍କୁ ମୁଁ ଭୟ କରେନାହିଁ (ଯେ ସେମାନେ ମୋର କିଛି କ୍ଷତି କରିବେ) । ହଁ, ଯଦି ମୋ’ ପ୍ରଭୁ ଇଚ୍ଛା କରିବେ (ତେବେ ଭିନ୍ନ କଥା) । ମୋ’ ଈଶ୍ୱରଙ୍କୁ ପ୍ରତ୍ୟେକ ଜୀବଜଡ଼ ବିଷୟରେ ଭଲରୂପେ ଜାଣା ଅଛି । କ’ଣ ତୁମେମାନେ ଧ୍ୟାନ ଦେବନାହିଁ ? ୮୧. ମୁଁ ବା କାହିଁକି ସେମାନଙ୍କୁ ଭୟ କରିବି ଯେଉଁମାନଙ୍କୁ ତୁମେମାନେ ଅଲ୍ଲାହଙ୍କର ସମକକ୍ଷ କରିଛ ଅଥଚ ତୁମେମାନଙ୍କୁ ଏହାର ଭୟ ନାହିଁ ଯେ ଅଲ୍ଲାହ୍ କୌଣସି ପ୍ରମାଣ ପଠାଇ ନଥିବା ସତ୍ତ୍ୱେ ତୁମେମାନେ ସେମାନଙ୍କୁ ଅଲ୍ଲାହଙ୍କର ସମକକ୍ଷ କରିଦେଉଛ । ତେଣୁ, ଯଦି ତୁମମାନଙ୍କର ଜ୍ଞାନ ଥାଏ, ତେବେ କୁହ ଯେ ଆମ ଦୁଇ ପକ୍ଷ ମଧ୍ୟରୁ କିଏ ନିରାପଦରେ ରହିବାର ଅଧିକ ଯୋଗ୍ୟ ?”

୮୨. ଯେଉଁମାନେ (ବିଶୁଦ୍ଧ ଏକେଶ୍ୱରବାଦରେ) ବିଶ୍ୱାସ କରିଛନ୍ତି ଏବଂ ନିଜ ବିଶ୍ୱାସ ସହିତ ଅନ୍ୟାୟକୁ (ଅର୍ଥାତ୍ ବହୁଈଶ୍ୱରବାଦକୁ) ମିଶାଇ ନାହାନ୍ତି, ସେହିମାନେ ନିରାପଦରେ ତଥା ସତପଥରେ ଅଛନ୍ତି । ୮୩. ଆମ୍ଭେ ଇବ୍ରାହିମଙ୍କୁ ତାଙ୍କ ସଂପ୍ରଦାୟ ବିରୁଦ୍ଧରେ ଏହି ପ୍ରକାରର ତର୍କ ଦେଇଥିଲୁ । ଆମ୍ଭେ ଯାହାର ଇଚ୍ଛା କରୁ, ତା’ର ମର୍ଯ୍ୟାଦା ବୃଦ୍ଧି କରିଥାଉ । ତୁମ ପାଳନକର୍ତ୍ତା ବାସ୍ତବିକ ତତ୍ତ୍ୱଜ୍ଞାନୀ ଏବଂ ସର୍ବଜ୍ଞ ।

୮୪. ଇବ୍ରାହିମଙ୍କୁ ଆମ୍ଭେ ଇସହାକ୍ ଓ ୟାକୁବ ପ୍ରଦାନ କଲୁ ଏବଂ ସମସ୍ତଙ୍କର ମାର୍ଗଦର୍ଶନ କଲୁ । ଏହା ପୂର୍ବରୁ ଆମ୍ଭେ ନୁହଙ୍କର ମାର୍ଗଦର୍ଶନ କରିଥିଲୁ ଏବଂ ତାଙ୍କ ସନ୍ତାନମାନଙ୍କ ମଧ୍ୟରୁ ଦାଉଦ, ସୁଲେମାନ, ଅୟୁବ୍, ୟୁସୁଫ, ମୁ'ସା ଓ ହାରୁନଙ୍କର ମଧ୍ୟ । ଭଲ ଲୋକମାନଙ୍କୁ ଆମ୍ଭେ ଏହିଭଳି ପୁରସ୍କାର ଦେଇଥାଉ । ୮୫. ଆମ୍ଭେ ଜକରିୟା, ୟହ୍ୟା, ଇସା ଏବଂ ଇଲିୟାସଙ୍କର ମଧ୍ୟ (ପଥ ପ୍ରଦର୍ଶନ କରିଥିଲୁ) । ଏମାନେ ସମସ୍ତେ ସଦାଚାରୀ ଥିଲେ । ୮୬. ଏବଂ ଇସମାଇଲ, ୟସ୍ଆ, ୟୁନୁସ ଓ ଲୁତ୍ଙ୍କର ମଧ୍ୟ ମାର୍ଗଦର୍ଶନ କରିଥିଲୁ ଆଉ ସମସ୍ତଙ୍କୁ ଆମ୍ଭେ ବିଶ୍ୱବାସୀଙ୍କ ମଧ୍ୟରେ ଶ୍ରେଷ୍ଠତା ପ୍ରଦାନ କରିଥିଲୁ । ୮୭. ସେମାନଙ୍କ ପିତୃପିତାମହ, ସେମାନଙ୍କ ସନ୍ତାନ ଓ ଭାଇମାନଙ୍କ ମଧ୍ୟରୁ (ମଧ୍ୟ) ଅନେକଙ୍କର (ମାର୍ଗଦର୍ଶନ କଲୁ) ଏବଂ ସେମାନଙ୍କୁ ମନୋନିତ କରି ସତପଥରେ ପରିଚାଳିତ କଲୁ । ୮୮. ଏହା ଅଲ୍ଲାହଙ୍କର ମାର୍ଗଦର୍ଶନ, ଯାହାଦ୍ୱାରା ସେ ନିଜ ସେବକମାନଙ୍କ ମଧ୍ୟରୁ ଯାହାକୁ ଚାହାନ୍ତି ତାକୁ ବାଟ ଦେଖାଇ ଦିଅନ୍ତି । ଯଦି ସେମାନେ କାହାରିକୁ ତାଙ୍କର ସମକକ୍ଷ କରି ଥାଆନ୍ତେ, ତେବେ ସେମାନଙ୍କର ସବୁ କର୍ମ ବ୍ୟର୍ଥ ହୋଇ ଯାଇଥାଆନ୍ତା । ୮୯. ସେମାନଙ୍କୁ ଆମ୍ଭେ ଦିବ୍ୟଗ୍ରନ୍ଥ ଓ ତତ୍ୱଜ୍ଞାନ ପ୍ରଦାନ କରବା ସହିତ ନିଜର ବାର୍ତ୍ତାବହ ନିଯୁକ୍ତ କରିଥିଲୁ । ଯଦି ଏମାନେ ଏହାକୁ ମାନୁନାହାନ୍ତି ତେବେ ଆମ୍ଭେ ଏହି ଦାୟିତ୍ୱ ଅନ୍ୟ ଲୋକମାନଙ୍କୁ ଦେବୁ ଯେଉଁମାନେ ଏହାକୁ ଅବିଶ୍ୱାସ କରିବେନାହିଁ । ୯୦. ଅଲ୍ଲାହ୍ ଏହି ବ୍ୟକ୍ତିମାନଙ୍କର ମାର୍ଗଦର୍ଶନ କରିଥିଲେ । ତେଣୁ, (ହେ ବାର୍ତ୍ତାବହ !) ତୁମେ ମଧ୍ୟ ସେହିମାନଙ୍କ ପଥ ଅନୁସରଣ କର । ସେମାନଙ୍କୁ କୁହ, "ମୁଁ ଏଥିପାଇଁ ତୁମମାନଙ୍କଠାରୁ କୌଣସି ମୂଲ୍ୟ ମାଗୁନାହିଁ । ଏହାତ ବିଶ୍ୱବାସୀଙ୍କ ପାଇଁ ଏକ ଉପଦେଶ ।"

୯୧. ଅଲ୍ଲାହ୍ କୌଣସି ମଣିଷ ପାଖକୁ କିଛି ପଠାଇନାହାନ୍ତି ବୋଲି କହି ସେମାନେ ଅଲ୍ଲାହଙ୍କର ଉଚିତ ମୂଲ୍ୟାୟନ କଲେନାହିଁ । ସେମାନଙ୍କୁ ପଚାର "ସେହି ଗ୍ରନ୍ଥଟି କିଏ ପ୍ରକଟ କରିଥିଲେ ଯାହାକୁ ମୁ'ସା ଆଣିଥିଲେ ଏବଂ ଯାହା ଲୋକମାନଙ୍କ ପାଇଁ ଏକ ଜ୍ୟୋତି ଓ ହିତୋପଦେଶ ଥିଲା ଯାହାକୁ ତୁମେମାନେ ପୃଷ୍ଠାପୃଷ୍ଠା କରି ଅଲଗା କରି ରଖିଛ, ଯେଉଁଥିରୁ ତୁମେମାନେ କିଛି ପ୍ରକାଶ କରୁଛ କିନ୍ତୁ ଅଧିକାଂଶ କଥା ଲୁଚାଇ ଦେଉଛ ? ସେଥିରେ ତୁମମାନଙ୍କୁ ସେବିଷୟରେ ଶିକ୍ଷା ଦିଆଯାଇଥିଲା ଯାହା ତୁମେମାନେ

ଜାଣି ନଥିଲ କିମ୍ବା ତୁମର ବାପଅଜା ମଧ୍ୟ ଜାଣି ନଥିଲେ।" ତୁମେ କହିଦିଅ, "ଅଲ୍ଲାହ୍ ହିଁ ସେହି ଗ୍ରନ୍ଥ ପ୍ରକଟ କରିଥିଲେ।" ଏବେ ସେମାନଙ୍କୁ ସେମାନଙ୍କ ଖେଳ-ତାମସାରେ ମଗ୍ନ ରହିବାକୁ ଦିଅ। ୯୨. ଏହି ଶୁଭଗ୍ରନ୍ଥଟିକୁ ମଧ୍ୟ ଆମ୍ଭେ ପଠାଇଛୁ, ଯାହା ପୂର୍ବ ଗ୍ରନ୍ଥଗୁଡ଼ିକର ସମର୍ଥନ କରେ ଯେପରିକି ତୁମେ ମକ୍କା ଓ ଏହାର ଚାରିପାଖରେ ଥିବା ଲୋକମାନଙ୍କୁ ସାବଧାନ କରିବ। ଯେଉଁମାନେ ପରଲୋକରେ ବିଶ୍ୱାସ କରନ୍ତି, ସେମାନେ ଏହାକୁ ମଧ୍ୟ ବିଶ୍ୱାସ କରନ୍ତି ଏବଂ ସେମାନେ ନିଜର ନମାଜ (ଅର୍ଥାତ୍ ଦୈନିକ ଉପାସନା) ପ୍ରତି ଖୁବ ଯତ୍ନବାନ ଥାଆନ୍ତି।

୯୩. ସେହି ବ୍ୟକ୍ତି ଅପେକ୍ଷା ବଡ଼ ପାପୀ ଆଉ କିଏ ହୋଇପାରେ ଯିଏ ଅଲ୍ଲାହଙ୍କ ନାଁରେ ମିଥ୍ୟା ଗଢ଼େ କିମ୍ବା କହେ ଯେ ମୋ' ପ୍ରତି ଦୈବବାଣୀ ହୋଇଛି ଅଥଚ ତା' ପ୍ରତି କୌଣସି ଦୈବବାଣୀ ହୋଇନାହିଁ କିମ୍ବା ଏହା କହେ ଯେ ମୁଁ ମଧ୍ୟ ଅଲ୍ଲାହଙ୍କ ବାଣୀ ପରି ବାଣୀ ରଚନା କରିପାରେ? ଯଦି ତୁମେ ଏହି ପାପୀମାନଙ୍କୁ ସେତେବେଳେ ଦେଖନ୍ତ, ଯେତେବେଳେ ସେମାନେ ମୃତ୍ୟୁ ଯନ୍ତ୍ରଣା ଭୋଗିବେ ଆଉ ଦେବଦୂତଗଣ ହାତ ବଢାଇ ସେମାନଙ୍କୁ କହିବେ, "ନିଜର ପ୍ରାଣ ତ୍ୟାଗ କର। ଆଜି ତୁମମାନଙ୍କୁ କଠୋର ଶାସ୍ତି ମିଳିବ କାରଣ ତୁମେମାନେ ଅଲ୍ଲାହଙ୍କ ବିଷୟରେ ମିଛ କହୁଥିଲ ଏବଂ ତାଙ୍କ ବାଣୀଗୁଡ଼ିକୁ ହେୟ ମନେକରୁଥିଲ।" ୯୪. ଏବଂ (ଆମ୍ଭେ କହିବୁ) "ତୁମେମାନେ ଆମ୍ଭ ପାଖକୁ ସେମିତି ଏକୁଟିଆ ଫେରିଆସିଲ ଯେମିତି ଆମ୍ଭେ ତୁମକୁ ପ୍ରଥମେ ସୃଷ୍ଟି କରିଥିଲୁ ଏବଂ ଆମ୍ଭେ ଯାହା ତୁମମାନଙ୍କୁ ଦେଇଥିଲୁ, ସବୁ ପଛରେ ଛାଡିଦେଇ ଆସିଲ। ତୁମମାନଙ୍କର ଯେଉଁ ସୁପାରିଶକର୍ତ୍ତାମାନଙ୍କ ବିଷୟରେ ତୁମର ଧାରଣା ଥିଲା ଯେ ଆମ୍ଭ ଈଶ୍ୱରତ୍ୱରେ ସେମାନଙ୍କର ଭାଗିଦାରୀ ଅଛି, ସେମାନେ ତ କାହିଁ ଆମ୍ଭଙ୍କୁ ଦେଖାଯାଉ ନାହାନ୍ତି? ଏବେ ତୁମମାନଙ୍କ ମଧ୍ୟରେ ଥିବା ସବୁ ସମ୍ପର୍କ ଛିନ୍ନ ହୋଇଗଲା ଏବଂ ସେମାନଙ୍କ ବିଷୟରେ ତୁମମାନଙ୍କର ଦମ୍ଭୋକ୍ତି କୁଆଡ଼େ ଉଭେଇଗଲା।

୯୫. ଅଲ୍ଲାହ୍ ହିଁ ବୀଜ ଓ ଟାକୁଆକୁ ଅଂକୁରିତ କରନ୍ତି। ସେ ନିର୍ଜୀବରୁ ସଜୀବ ଏବଂ ସଜୀବରୁ ନିର୍ଜୀବ ଉତ୍ପନ୍ନ କରନ୍ତି। ସେଇ ତୁମମାନଙ୍କର ଅଲ୍ଲାହ୍। ପୁଣି ତୁମେମାନେ କୁଆଡ଼େ ବାଟବଣା ହୋଇଯାଉଛ? ୯୬. ସେ ହିଁ (ଅନ୍ଧକାର

ମଧ୍ୟରୁ) ପ୍ରଭାତକୁ ପ୍ରକାଶ କରନ୍ତି । ସେ ରାତିକୁ ବିଶ୍ରାମ ପାଇଁ ଗଢ଼ିଛନ୍ତି ଏବଂ ସୂର୍ଯ୍ୟ ଓ ଚନ୍ଦ୍ରକୁ ଏକ ନିୟମରେ ବାନ୍ଧି ରଖିଛନ୍ତି । ଏସବୁ ତାଙ୍କରି ଯୋଜନା ଯିଏ ପ୍ରବଳ ପରାକ୍ରମୀ ଏବଂ ସର୍ବଜ୍ଞ । ୯୭. ସେ ହିଁ ତୁମ ପାଇଁ ନକ୍ଷତ୍ର ସୃଷ୍ଟି କରିଛନ୍ତି ଯାହାଦ୍ୱାରା ତୁମେମାନେ ଜଳ ଓ ସ୍ଥଳର ଘନ ଅନ୍ଧକାର ମଧ୍ୟରେ ରାସ୍ତା ଜାଣିପାରିବ । ଜ୍ଞାନୀ ଲୋକମାନଙ୍କ ପାଇଁ ଆମ୍ଭେ ନିଜର ସଂକେତଗୁଡ଼ିକୁ ଖୁବ ପରିଷ୍କାର ଭାବରେ ବର୍ଣ୍ଣନା କରିଦେଇଛୁ ।

୯୮. ସେ ହିଁ ତୁମମାନଙ୍କୁ ଜଣେ ମନୁଷ୍ୟରୁ ସୃଷ୍ଟି କଲେ ଏବଂ (ସଂସାରରେ) ରହିବା ପାଇଁ ସ୍ଥାନ ଦେଲେ ଏବଂ (ମୃତ୍ୟୁ ପରେ ରହିବା ପାଇଁ) ଆଉ ଗୋଟିଏ ସ୍ଥାନ ନିରୂପଣ କଲେ । ବୁଦ୍ଧିମାନମାନଙ୍କ ପାଇଁ ନିଜର ସଂକେତଗୁଡିକୁ ଆମ୍ଭେ ଖୁବ ପରିଷ୍କାର ଭାବରେ ବର୍ଣ୍ଣନା କରଦେଇଛୁ । ୯୯. ସେ ହିଁ ଆକାଶରୁ ଜଳବର୍ଷା କରନ୍ତି । ପୁଣି ଆମ୍ଭେ ତାହାଦ୍ୱାରା ବିଭିନ୍ନ ପ୍ରକାରର ଉଦ୍ଭିଦର ଅଂକୁରୋଦ୍ଗମ କରୁ । ପୁଣି ସେଥିରୁ ସବୁଜ କ୍ଷେତ ଉତ୍ପନ୍ନ କରୁ, ଯହିଁରୁ ଆମ୍ଭେ ସ୍ତରସ୍ତର ରହିଥିବା ଦାନା ବାହାର କରୁ ଏବଂ ଖଜୁରୀ ଗଛର ମୁକୁଳରୁ ଗୁଚ୍ଛଗୁଚ୍ଛ ଫଳ ଉତ୍ପନ୍ନ କରୁ, ଯାହା ଫଳ ଭାରରେ ନଇଁ ପଡ଼େ । ତା' ଛଡ଼ା, ଆମ୍ଭେ ଅଂଗୁର, ଜଳପାଇ ଏବଂ ଡାଳିମ୍ବ ବଗିଚା ସୃଷ୍ଟି କରିଛୁ ଯାହାର ଫଳଗୁଡିକ (ଜାତିରେ) ପରସ୍ପର ସଦୃଶ ମାତ୍ର (ବିଶେଷତ୍ୱରେ) ଭିନ୍ନଭିନ୍ନ । ଫଳ ଧାରଣ କରିବା ବେଳେ ଫଳଗୁଡ଼ିକୁ ଲକ୍ଷ୍ୟକର ଏବଂ ସେଗୁଡ଼ିକର ପାଚିବା ଅବସ୍ଥାକୁ ଲକ୍ଷ୍ୟ କର । (ଈଶ୍ୱରଙ୍କୁ)) ବିଶ୍ୱାସ କରୁଥିବା ଲୋକମାନଙ୍କ ପାଇଁ ଏଥିରେ (ତାଙ୍କ ମହିମାର) ଅନେକ ସଙ୍କେତ ଅଛି ।

୧୦୦. ସେମାନେ ଜିନ୍‌ମାନଙ୍କୁ ଅଲ୍ଲାହଙ୍କର ସମକକ୍ଷ କରିଦେଲେ ଅଥଚ ଅଲ୍ଲାହ୍ ସେମାନଙ୍କୁ ସୃଷ୍ଟି କରିଛନ୍ତି । ନିଜର ମୁର୍ଖତା ଯୋଗୁଁ ସେମାନେ ତାଙ୍କ ପାଇଁ ପୁତ୍ର ଆଉ କନ୍ୟା ମଧ୍ୟ ଗଢ଼ିନେଲେ । ମାତ୍ର ସେ (ଏହି ଦୋଷରୁ) ପବିତ୍ର ଏବଂ ସେମାନଙ୍କ ମିଥ୍ୟା ଆରୋପରୁ ବହୁ ଉର୍ଦ୍ଧ୍ୱରେ । ୧୦୧. ସେ ପୃଥିବୀ ଓ ଆକାଶମଣ୍ଡଳର ସ୍ରଷ୍ଟା । ତାଙ୍କର ତ ପତ୍ନୀ ନାହିଁ, ପୁଣି ସନ୍ତାନ କୁଆଡୁ ଆସିବ ? ସେ ହିଁ ସକଳ ବସ୍ତୁ ସୃଷ୍ଟି କରିଛନ୍ତି ଏବଂ ସେ ସବୁକିଛି ଜାଣନ୍ତି । ୧୦୨. ଏହି ହେଉଛନ୍ତି ତୁମମାନଙ୍କର ପାଳନକର୍ତ୍ତା ଅଲ୍ଲାହ୍ । ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସନାଯୋଗ୍ୟ ନୁହନ୍ତି । ସେ ସମସ୍ତଙ୍କର ସ୍ରଷ୍ଟା ।

ତେଣୁ ତାଙ୍କରି ଉପାସନା କର । ସେ ସମସ୍ତଙ୍କର କାର୍ଯ୍ୟସିଦ୍ଧି କରିବାକୁ ସକ୍ଷମ । ୧୦୩. ଆଖି ତାଙ୍କ ପାଖରେ ପହଁଚି ପାରେନାହିଁ ମାତ୍ର ସେ ତାହା ପାଖରେ ପହଁଚି ପାରନ୍ତି । ସେ ସୂକ୍ଷ୍ମଦର୍ଶୀ ଏବଂ ସର୍ବଜ୍ଞ ।

୧୦୪. (ହେ ବାର୍ତ୍ତାବହ! କୁହ) "ଏବେ ତୁମମାନଙ୍କ ପାଖକୁ ତୁମ ପ୍ରଭୁଙ୍କଠାରୁ ସ୍ୱଷ୍ଟ ପ୍ରମାଣ ଆସି ସାରିଛି । ସୁତରାଂ, ଯିଏ ଏହାକୁ (ଆଖି ଖୋଲି) ଦେଖିବ ସେ ନିଜର ମଂଗଳ କରିବ ଏବଂ ଯିଏ (ଆଖି ଥାଉଥାଉ) ଅନ୍ଧ ହୋଇ ରହିବ, ସେ ନିଜର କ୍ଷତି କରିବ । ମୁଁ ତୁମମାନଙ୍କୁ ଜଗିବାକୁ ଆସି ନାହିଁ ।" ୧୦୫. ଏହିପରି ଆମ୍ଭେ ନିଜର ବାଣୀଗୁଡ଼ିକୁ ବିଭିନ୍ନ ଶୈଳୀରେ ବର୍ଣ୍ଣନା କରିଥାଉ ଯେପରିକି ସେମାନେ କହନ୍ତୁ ଯେ ତୁମେ କାହାଠାରୁ ଏହା ପଢ଼ି ଆସିଛ ଏବଂ ଜ୍ଞାନୀମାନଙ୍କ ନିକଟରେ କଥା ପରିଷ୍କାର ହୋଇଯାଉ ।

୧୦୬. ତୁମ ପ୍ରତି ତୁମ ଈଶ୍ୱରଙ୍କ ଦ୍ୱାରା ଯେଉଁ ଦୈବବାଣୀ ହୁଏ ତାହାକୁ ମାନି ଚଳ । (ଜାଣିରଖ) ତାଙ୍କ ବ୍ୟତୀତ କେହି ଉପାସ୍ୟ ନାହାନ୍ତି ଏବଂ ବହୁଈଶ୍ୱରବାଦୀ ମାନଙ୍କଠାରୁ ଦୂରେଇ ରୁହ । ୧୦୭. ଯଦି ଅଲ୍ଲାହ୍ ଇଚ୍ଛା କରିଥାଆନ୍ତେ ତେବେ ସେମାନେ ବହୁଈଶ୍ୱରବାଦୀ ହୋଇ ନଥାଆନ୍ତେ (ଅର୍ଥାତ୍ ସତମାର୍ଗରେ ଚାଲିବା ପାଇଁ ସେମାନଙ୍କୁ ବାଧ କରି ପାରିଥାଆନ୍ତେ କିନ୍ତୁ ଏହାଦ୍ୱାରା ସେମାନଙ୍କର ବୁଦ୍ଧିର ପରୀକ୍ଷା ହୋଇ ପାରନ୍ତାନାହିଁ ।) ଆମ୍ଭେ ତୁମକୁ ସେମାନଙ୍କୁ ଜଗିବାର ଦାୟିତ୍ୱ ଦେଇନାହୁଁ କିମ୍ବା ତୁମେ ସେମାନଙ୍କର ତତ୍ତ୍ୱାବଧାରକ ନୁହଁ । ୧୦୮. ଅଲ୍ଲାହଙ୍କ ପରିବର୍ତ୍ତେ ସେମାନେ ଯେଉଁମାନଙ୍କୁ ଡାକନ୍ତି, ସେମାନଙ୍କର ଅପମାନ କରନାହିଁ ଅନ୍ୟଥା ସେମାନେ ସୀମା ଲଂଘନ କରି ଅଜ୍ଞାନବଶତଃ ଅଲ୍ଲାହଙ୍କର ଅପମାନ କରିବେ । ଏହିଭଳି, ପ୍ରତ୍ୟେକ ସଂପ୍ରଦାୟ କରୁଥିବା କର୍ମଗୁଡ଼ିକୁ ଆମ୍ଭେ ସେମାନଙ୍କ ଦୃଷ୍ଟିରେ ସୁନ୍ଦର କରିଦେଇଛୁ । ପୁଣି ସମସ୍ତଙ୍କୁ ସେମାନଙ୍କ ପ୍ରଭୁଙ୍କ ନିକଟକୁ ଫେରିବାକୁ ହେବ ଏବଂ ସେମାନେ ଯାହା କରୁଥିଲେ, ସେ ସେମାନଙ୍କୁ ଜଣାଇ ଦେବେ ।

୧୦୯. ସେମାନେ ଭାରି ଦମ୍ଭର ସହିତ ଅଲ୍ଲାହଙ୍କ ନାଁରେ ନିୟମ କରି କହୁଛନ୍ତି ଯେ ଯଦି ସେମାନଙ୍କୁ କୌଣସି ଅଲୌକିକ ପ୍ରମାଣ ମିଳିଯାଏ ତେବେ

ସେମାନେ ମାନିନେବେ । କହିଦିଅ ! "ଚମତ୍କାର ସବୁ ଅଲ୍ଲାହଙ୍କ ହାତରେ ।" ଆଉ ତୁମେମାନେ ଏବିଷୟରେ କ'ଣ ଜାଣ, ଚମତ୍କାର ଦେଖିଲା ପରେ ମଧ୍ୟ ସେମାନେ ମାନିବେ ନାହିଁ । ୧୧୦. ଯେହେତୁ ସେମାନେ ପ୍ରଥମେ ଏହାକୁ (ଅର୍ଥାତ୍ କୁରଆନ ପରି ଏକ ଚମତ୍କାରକୁ) ବିଶ୍ୱାସ କଲେନାହିଁ, ଆମ୍ଭେ ସେମାନଙ୍କ ମନକୁ ଏବଂ ଦୃଷ୍ଟିକୁ ବିଭ୍ରାନ୍ତ କରିବୁ ଏବଂ ସେମାନଙ୍କୁ ନିଜ ଔଦ୍ଧତ୍ୟରେ ବିଭ୍ରାନ୍ତ ହୋଇ ବୁଲିବାକୁ ଛାଡ଼ିଦେବୁ ।

୧୧୧. ଯଦି ଆମ୍ଭେ ସେମାନଙ୍କ ପାଖକୁ ଦେବଦୂତମାନଙ୍କୁ ପଠାଇ ଦିଅନ୍ତୁ ଏବଂ ମୃତ ବ୍ୟକ୍ତିମାନେ ସେମାନଙ୍କ ସହିତ କଥାବାର୍ତ୍ତା ମଧ୍ୟ କରନ୍ତେ ଏବଂ (ସେମାନଙ୍କ ଦାବୀ ଅନୁଯାୟୀ) ଆମ୍ଭେ ସବୁକିଛି ଆଣି ସେମାନଙ୍କ ଆଖି ସାମନାରେ ଥୋଇଦିଅନ୍ତୁ ତଥାପି ସେମାନେ ମାନନ୍ତେ ନାହିଁ । ଅବଶ୍ୟ ଅଲ୍ଲାହ୍ ଇଚ୍ଛା କଲେ ଭିନ୍ନ କଥା । ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଅଜ୍ଞାନୀ । ୧୧୨. ଏହିପରି କେତେକ ଶଇତାନରୂପୀ ମାନବ ଓ ଜିନ୍‌ଙ୍କୁ ଆମ୍ଭେ ପ୍ରତ୍ୟେକ ବାର୍ତ୍ତାବହଙ୍କର ଶତ୍ରୁ କରିଦେଉ ଏବଂ ସେମାନଙ୍କ ମଧ୍ୟରୁ କେତେକ ଅନ୍ୟମାନଙ୍କୁ ଭ୍ରମରେ ପକାଇବା ପାଇଁ ଚିକ୍କଣ କଥା କହି ମୋହିତ କରନ୍ତି । ଯଦି ତୁମ ଈଶ୍ୱର ଇଚ୍ଛା କରନ୍ତେ ତେବେ ସେମାନେ ଏମିତି କରି ପାରନ୍ତେନାହିଁ । ତେଣୁ, ତୁମେ ସେମାନଙ୍କୁ ସେମାନେ ଗଢ଼ିଥିବା କୁସଂସ୍କାର ଭିତରେ ରହିବାକୁ ଦିଅ । ୧୧୩. (ସେମାନେ ଏହା ଏଇଥିପାଇଁ କରନ୍ତି) ଯାହାଫଳରେ ପରଲୋକକୁ ମାନୁ ନଥିବା ଲୋକମାନଙ୍କର ମନ ଏଥିପ୍ରତି ଢ଼ଳିଯାଉ, ସେମାନେ ଏହାକୁ ପସନ୍ଦ କରନ୍ତୁ ଏବଂ ଯାହା କରୁଥିଲେ ତାହାହିଁ କରନ୍ତୁ । ୧୧୪. (ସେମାନଙ୍କୁ କୁହ) "କ'ଣ ମୁଁ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରିକୁ ବିଚାରକ ମାନିବି ଅଥଚ ସେ ତୁମମାନଙ୍କ ନିକଟକୁ ଏମିତି ଏକ ଗ୍ରନ୍ଥ ପଠାଇଛନ୍ତି ଯେଉଁଥିରେ ସବୁକଥା ବିଶଦ ଭାବରେ ବର୍ଣ୍ଣନା କରାଯାଇଛି ?" ଯେଉଁମାନଙ୍କୁ ଆମ୍ଭେ ଏହାପୂର୍ବରୁ ଗ୍ରନ୍ଥ ଦେଇଥିଲୁ ସେମାନେ ଭଲରୂପେ ଜାଣନ୍ତି ଯେ ଏହା ପ୍ରକୃତରେ ଈଶ୍ୱରଙ୍କଠାରୁ ସତ୍ୟର ବାର୍ତ୍ତା ନେଇ ଆସିଛି । ତେଣୁ, ତୁମେ ସନ୍ଦେହ କରନାହିଁ । ୧୧୫. ତୁମ ପ୍ରଭୁଙ୍କର ଏହି ବାଣୀ ସତ୍ୟ ଓ ନ୍ୟାୟରେ ପୂର୍ଣ୍ଣତା ଲାଭ କରିଛି । ତାଙ୍କ ବାଣୀକୁ କେହି ପରିବର୍ତ୍ତନ କରିପାରିବେ ନାହିଁ । ସେ ସର୍ବଶ୍ରୋତା ଏବଂ ସର୍ବଜ୍ଞ । ୧୧୬. ପୃଥିବୀରେ ଅଧିକାଂଶ ଲୋକ ଏମିତି ଅଛନ୍ତି,

ଯଦି ତୁମେ ସେମାନଙ୍କ କଥା ମାନିବ ତେବେ ସେମାନେ ତୁମକୁ ଅଲ୍ଲାହଙ୍କ ମାର୍ଗରୁ ବିଚ୍ୟୁତ କରିଦେବେ। ସେମାନେ ତୁଚ୍ଛା ଅଟକଳ ପଛରେ ଚାଲନ୍ତି ଆଉ କେବଳ ଅନୁମାନ କରନ୍ତି। ୧୧୭. ବାସ୍ତବରେ ତୁମ ପାଳନକର୍ତ୍ତା ଭଲରୂପେ ଜାଣନ୍ତି ଯେ କିଏ ତାଙ୍କ ମାର୍ଗରୁ ବିଚ୍ୟୁତ ହୋଇଛି ଏବଂ ସେ ସେମାନଙ୍କୁ ମଧ୍ୟ ଜାଣନ୍ତି ଯେଉଁମାନେ ଠିକ୍ ବାଟରେ ଅଛନ୍ତି।

୧୧୮. ତେଣୁ, ଯଦି ତୁମେମାନେ (ପ୍ରକୃତରେ) ଅଲ୍ଲାହଙ୍କ ବାଣୀକୁ ବିଶ୍ୱାସ କର, ତା'ହେଲେ ସେହି ପଶୁର ମାଂସ ଖାଅ ଯାହାକୁ ଅଲ୍ଲାହଙ୍କ ନାମ ନେଇ ବଧ (ଅର୍ଥାତ୍ ସଂସ୍କୃତ) କରାଯାଇଛି। ୧୧୯. ତୁମେମାନେ କାହିଁକି ତାହାକୁ ଖାଇବନାହିଁ ଯାହାକୁ ଅଲ୍ଲାହଙ୍କ ନାମ ନେଇ ବଧ କରାଯାଇଛି ଅଥଚ ତୁମ ପାଇଁ ଯାହା ନିଷିଦ୍ଧ, ସେଗୁଡ଼ିକୁ ସେ ବିଶଦ ଭାବରେ ବର୍ଣ୍ଣନା କରି ସାରିଛନ୍ତି। ଯଦି ଏହି ନିଷିଦ୍ଧ ଖାଦ୍ୟ ମଧ୍ୟ (ନିରୂପାୟ ହୋଇ) ଖାଇବାକୁ ବାଧ୍ୟ ହୁଅ ତେବେ ଏହା ତୁମମାନଙ୍କ ପାଇଁ ବୈଧ। ଅଧିକାଂଶ ଲୋକ ସଠିକ୍ ଜ୍ଞାନ ବିନା କେବଳ ଇନ୍ଦ୍ରିୟ ବଶବର୍ତ୍ତୀ ହୋଇ ଅନ୍ୟମାନଙ୍କୁ ପଥଭ୍ରଷ୍ଟ କରିଥାଆନ୍ତି। ସୀମା ଅତିକ୍ରମ କରୁଥିବା ଲୋକମାନଙ୍କୁ ତୁମ ପ୍ରଭୁ ଭଲରୂପେ ଜାଣନ୍ତି। ୧୨୦. ଖୋଲାଖୋଲି ଭାବରେ କରୁଥିବା ଏବଂ ଲୁଚିଛପି କରୁଥିବା ସବୁ ପାପ ଛାଡ଼ିଦିଅ। ଯେଉଁମାନେ ପାପ କରୁଛନ୍ତି, ସେମାନଙ୍କୁ ଖୁବଶୀଘ୍ର ସେମାନଙ୍କ କର୍ମର ପ୍ରତିଫଳ ମିଳିଯିବ। ୧୨୧. ଯେଉଁ ପ୍ରାଣୀକୁ ଅଲ୍ଲାହଙ୍କ ନାମ ନେଇ ବଧ କରା ଯାଇନାହିଁ, ତାହାର ମାଂସ ଖାଅନାହିଁ। ନିଶ୍ଚିତ ଭାବରେ ଏହା ଖାଇବା ପାପ। ଶଇତାନମାନେ ସେମାନଙ୍କର (ମନୁଷ୍ୟରୂପୀ) ବନ୍ଧୁମାନଙ୍କୁ ତୁମମାନଙ୍କ ସହିତ ଯୁକ୍ତିତର୍କ କରିବାକୁ ପ୍ରରୋଚିତ କରନ୍ତି। ଯଦି ତୁମେମାନେ (ଅଲ୍ଲାହଙ୍କ କଥାକୁ ଉପେକ୍ଷା କରି) ସେମାନଙ୍କ କଥା ମାନିବ, ତେବେ ତୁମେମାନେ ମଧ୍ୟ ବହୁଈଶ୍ୱରବାଦୀ ହୋଇଯିବ।

୧୨୨. ଏଭଳି ଏକ ମନୁଷ୍ୟ ଯିଏ ଏକଦା ନିଷ୍ପ୍ରାଣ ଥିଲା, ପୁଣି ଆମ୍ଭେ ତା' ମଧ୍ୟରେ ପ୍ରାଣ ସଂଚାର କଲୁ ଏବଂ ତାକୁ (ସଦ୍‌ବିଶ୍ୱାସର) ଏକ ଜ୍ୟୋତି ପ୍ରଦାନ କଲୁ ଯାହାର ଆଲୋକରେ ସେ ଲୋକମାନଙ୍କ ମଧ୍ୟରେ ଚଲାବୁଲା କରେ, କ'ଣ ସେ ଏଭଳି ଲୋକ ପରି ହୋଇପାରେ ଯିଏ ଅନ୍ଧାରରେ ପଡ଼ିରହିଛି ଏବଂ ସେଠାରୁ

ବାହାରି ପାରୁନାହିଁ? ନାସ୍ତିକମାନଙ୍କୁ ଏହିପରି ସେମାନଙ୍କ ନିଜ କର୍ମଗୁଡ଼ିକ ଭାରି ସୁନ୍ଦର ଦେଖାଯାଏ। ୧୨୩. ପ୍ରତ୍ୟେକ ଜନବସତିର ବଡ଼ବଡ଼ ଅପରାଧୀମାନଙ୍କୁ ଆମ୍ଭେ ଏହିପରି (ସଦବିଶ୍ୱାସୀମାନଙ୍କ ବିରୁଦ୍ଧରେ) ଚକ୍ରାନ୍ତ କରିବାର ସୁଯୋଗ ଦେଇଛୁ। ପ୍ରକୃତରେ ସେମାନେ ନିଜ ବିରୁଦ୍ଧରେ ଚକ୍ରାନ୍ତ କରନ୍ତି ମାତ୍ର ତାହା ବୁଝି ପାରନ୍ତିନାହିଁ। ୧୨୪. ଯେତେବେଳେ ସେମାନଙ୍କ ପାଖକୁ କୌଣସି ନିଦର୍ଶନ ଆସେ ସେମାନେ କହନ୍ତି, "ଈଶ୍ୱରଦୂତମାନଙ୍କୁ ଯାହା ଦିଆଯାଇଛି, ଯେପର୍ଯ୍ୟନ୍ତ ଆମକୁ ତାହା ନଦିଆଯାଇଛି ଆମେ କଦାପି ବିଶ୍ୱାସ କରିବୁ ନାହିଁ।" ତାଙ୍କର ପ୍ରତିନିଧିତ୍ୱ କରିବା ପାଇଁ କିଏ ଯୋଗ୍ୟ ଏହା ଅଲ୍ଲାହ୍ ଭଲରୂପେ ଜାଣନ୍ତି। ଯେଉଁମାନେ ଏଭଳି ଅପରାଧ କରୁଛନ୍ତି ସେମାନେ ନିଜର କୁଚକ୍ରାନ୍ତ ଯୋଗୁଁ ଅଲ୍ଲାହଙ୍କ ସମ୍ମୁଖରେ ଲାଂଛିତ ହେବେ ଏବଂ କଠୋର ଶାସ୍ତି ଭୋଗିବେ।

୧୨୫. ଅଲ୍ଲାହ୍ ଯାହାକୁ ବାଟ ଦେଖାଇବାକୁ ଚାହାନ୍ତି, ଇସଲାମ୍ ପାଇଁ ତା ହୃଦୟର ଦ୍ୱାର ଖୋଲିଦିଅନ୍ତି ଏବଂ ଯାହାକୁ ବିପଥଗାମୀ କରିବାକୁ ଚାହାନ୍ତି, ତା ହୃଦୟକୁ ସଂକୁଚିତ କରିଦିଅନ୍ତି ଯାହାଦ୍ୱାରା ତାକୁ ଆକାଶରେ ଚଢ଼ିଲା ପରି ମନେହୁଏ। ଏହିପରି, ଯେଉଁମାନେ ସତ୍ୟକୁ ମାନନ୍ତି ନାହିଁ, ଅଲ୍ଲାହ୍ ସେମାନଙ୍କୁ (ବହୁଈଶ୍ୱରବାଦର) ଅଶୁଦ୍ଧତା ମଧ୍ୟରେ ରଖନ୍ତି। ୧୨୬. ଏହା ତୁମ ଈଶ୍ୱରଙ୍କର ସଳଖ ବାଟ। ବିଚାରବନ୍ତ ବ୍ୟକ୍ତିମାନଙ୍କ ପାଇଁ ଆମ୍ଭେ ନିଜର ବାଣୀଗୁଡ଼ିକୁ ସ୍ପଷ୍ଟ ଭାବରେ ବର୍ଣ୍ଣନା କରିଦେଇଛୁ। ୧୨୭. ସେମାନେ ଯାହା (ସତକର୍ମ) କରୁଥିଲେ ତାହାର ଫଳ ସ୍ୱରୂପ ସେମାନେ ଈଶ୍ୱରଙ୍କ ପାଖରେ ଶାନ୍ତିଧାମରେ ରହିବେ ଏବଂ ସେ ସେମାନଙ୍କର ବନ୍ଧୁ ହେବେ।

୧୨୮. ଯେଉଁଦିନ ସେ ସମସ୍ତଙ୍କୁ ଏକାଠି କରି କହିବେ, "ହେ ଜିନ୍ ସମାଜ! ତୁମେମାନେ ମନୁଷ୍ୟମାନଙ୍କ ମଧ୍ୟରୁ ଅନେକଙ୍କୁ ପଥଭ୍ରଷ୍ଟ କରିଦେଲ।" ମନୁଷ୍ୟମାନଙ୍କ ମଧ୍ୟରେ ଥିବା ସେମାନଙ୍କ ସମର୍ଥକମାନେ କହିବେ, "ହେ ପ୍ରଭୁ! ଆମେ ପରସ୍ପର ଦ୍ୱାରା ଲାଭବାନ ହୋଇଥିଲୁ ମାତ୍ର ଆମପାଇଁ ତୁମେ ନିଶ୍ଚିତ କରିଥିବା ଅବଧି ଶେଷ ହୋଇଗଲା।" ସେ କହିବେ, "ନର୍କ ତୁମମାନଙ୍କର ଘର ହେବ, ଯେଉଁଠି ତୁମେମାନେ ସର୍ବଦା ରହିବ ମାତ୍ର

ଅଲ୍ଲାହ୍ ଯଦି (ରକ୍ଷା କରିବାକୁ) ଚାହାନ୍ତି, ତେବେ ଭିନ୍ନ କଥା । ତୁମ ପ୍ରଭୁ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ ।" ୧୨୯. ଏହିପରି ଆମ୍ଭେ ଦୁରାଚାରୀମାନଙ୍କୁ ସେମାନଙ୍କର ଅର୍ଜିତ କର୍ମ ଯୋଗୁଁ ପରସ୍ପରର ବନ୍ଧୁ କରିଦେବୁ ।

୧୩୦. ହେ ମାନବ ଓ ଜିନ୍ ସମାଜ ! କ'ଣ ତୁମମାନଙ୍କ ପାଖକୁ ତୁମରି ମଧ୍ୟରୁ (ଆମ୍ଭର) ରସୁଲ ଆସି ନଥିଲେ ଯେଉଁମାନେ ତୁମମାନଙ୍କୁ ଆମ୍ଭର ବାଣୀ ପଢି ଶୁଣାଉଥିଲେ ଏବଂ ଆଜିର ଏହି ଦିନ ବିଷୟରେ ସାବଧାନ କରୁଥିଲେ ?" ସେମାନେ କହିବେ, "ଆମେମାନେ ଆମ ଦୋଷ ସ୍ୱୀକାର କରୁଛୁ ।" (ପ୍ରକୃତରେ) ପାର୍ଥିବ ଜୀବନ ସେମାନଙ୍କୁ ମାୟାଗ୍ରସ୍ତ କରି ଦେଇଥିଲା । ସେମାନେ ନିଜ ବିରୁଦ୍ଧରେ ସାକ୍ଷ୍ୟ ଦେବେ ଯେ ସେମାନେ ନାସ୍ତିକ ଥିଲେ । ୧୩୧. (ବାର୍ତ୍ତାବହ ପ୍ରେରଣର ପରମ୍ପରା) ଏଇଥିପାଇଁ ଯେ ତୁମ ଈଶ୍ୱର ସେହି ଜନବସତିଗୁଡ଼ିକୁ ଅନ୍ୟାୟରେ ଧ୍ୱଂସ କରି ଦିଅନ୍ତିନାହିଁ ଯାହାର ବାସିନ୍ଦାମାନେ କିଛି ଜାଣି ନଥାଆନ୍ତି ।

୧୩୨. ସମସ୍ତଙ୍କ ପାଇଁ ନିଜନିଜର କର୍ମ ଅନୁଯାୟୀ ଭିନ୍ନଭିନ୍ନ ଶ୍ରେଣୀ ଅଛି । ତୁମ ପାଳନକର୍ତ୍ତା ଲୋକମାନଙ୍କ କାର୍ଯ୍ୟକଳାପ ବିଷୟରେ ଅନଭିଜ୍ଞ ନୁହନ୍ତି । ୧୩୩. ତୁମ ଈଶ୍ୱର ଅଭାବରହିତ ଓ କରୁଣାମୟ । ଯଦି ସେ ଇଚ୍ଛା କରିବେ, ତୁମମାନଙ୍କର ବିନାଶ କରିଦେବେ ଏବଂ ଏହାପରେ ତୁମମାନଙ୍କ ଜାଗାରେ ଯାହାକୁ ଚାହିଁବେ ଆଣି ବସାଇଦେବେ ଯେମିତି ସେ ତୁମମାନଙ୍କୁ ଏକ ଭିନ୍ନ ବଂଶରୁ ସୃଷ୍ଟି କଲେ । ୧୩୪. ତୁମମାନଙ୍କୁ ଯେଉଁକଥାର ବଚନ ଦିଆଯାଇଛି ତାହା ଅବଶ୍ୟ ଘଟିବ । ତୁମେମାନେ ତାଙ୍କଠାରୁ ଖସିଯାଇ ପାରିବନାହିଁ । ୧୩୫. ତୁମେ କହଦିଅ, "ଭାଇମାନେ ! ତୁମେମାନେ ନିଜ ବାଟରେ କର୍ମ କର ଏବଂ ମୁଁ ମଧ୍ୟ ମୋ' ବାଟରେ କର୍ମ କରୁଛି । ଖୁବ୍‌ଶୀଘ୍ର ତୁମେମାନେ ଜାଣିଯିବ ଯେ ପରିଣାମ କାହା ପକ୍ଷରେ ଯିବ । ଦୁରାଚାରୀମାନେ ଆଦୌ ସଫଳ ହେବେନାହିଁ ।

୧୩୬. ଅଲ୍ଲାହ୍ ସୃଷ୍ଟି କରିଥିବା ଶସ୍ୟ ଓ ଗୃହପାଳିତ ପଶୁମାନଙ୍କ ମଧ୍ୟରୁ ସେମାନେ ତାଙ୍କ ପାଇଁ ଗୋଟିଏ ଭାଗ ନିର୍ଦ୍ଧାରିତ କରିଛନ୍ତି । ସେମାନେ ନିଜର ମିଥ୍ୟା ଧାରଣା ଅନୁଯାୟୀ କହନ୍ତି, "ଏହି ଭାଗଟି ଅଲ୍ଲାହଙ୍କର ଏବଂ ଏହି ଭାଗଟି ଆମ ଆରାଧ୍ୟମାନଙ୍କର ।" ପୁଣି ଯେଉଁ ଭାଗଟି ସେମାନଙ୍କ ଆରାଧ୍ୟମାନଙ୍କ ପାଇଁ ଉଦ୍ଦିଷ୍ଟ

ତାହା ତ ଅଲ୍ଲାହଙ୍କ ପାଖରେ ପହଁଚେନାହିଁ କିନ୍ତୁ ଅଲ୍ଲାହଙ୍କ ପାଇଁ ଉଦ୍ଦିଷ୍ଟ ଭାଗଟି ସେମାନଙ୍କ ଆରାଧ୍ୟମାନଙ୍କ ପାଖରେ ପହଁଚିଯାଏ । ସେମାନଙ୍କର କି କଦର୍ଯ୍ୟ ବିଚାର ! ୧୩୭. ଏହିପରି ଅଧିକାଂଶ ବହୁଈଶ୍ୱରବାଦୀଙ୍କୁ ସେମାନଙ୍କର ଈଶ୍ୱରମାନେ ବୁଝାଇ ଦେଇଛନ୍ତି ଯେ ନିଜ ସନ୍ତାନକୁ ହତ୍ୟା କରିବା ଖୁବ୍ ଭଲ କାମ । ଏହାର ଉଦ୍ଦେଶ୍ୟ ହେଉଛି ଯେ ସେମାନଙ୍କର ସର୍ବନାଶ କରିବେ ଏବଂ ସେମାନଙ୍କ ଧର୍ମରେ ଭ୍ରାନ୍ତି ସୃଷ୍ଟି କରିବେ । ଯଦି ଅଲ୍ଲାହ୍ ଇଚ୍ଛା କରନ୍ତେ ତେବେ ସେମାନେ ଏମିତି କରିପାରନ୍ତେ ନାହିଁ । ତେଣୁ, ସେମାନଙ୍କୁ ସେମାନେ ଗଢ଼ିଥିବା କୁସଂସ୍କାର ମଧ୍ୟରେ ରହିବାକୁ ଦିଅ ।

୧୩୮. ସେମାନେ ଏହା ମଧ୍ୟ କହନ୍ତି ଯେ ଅମୁକ ପଶୁ ଏବଂ ଅମୁକ ଶସ୍ୟ ଖାଇବା ନିଷିଦ୍ଧ ଏବଂ ତାହାକୁ କେବଳ ସେ ହିଁ ଖାଇବ ଯାହାକୁ ଆମେ ଅନୁମତି ଦେବୁ ଏବଂ କହନ୍ତି ଯେ ଅମୁକ ପଶୁ ପରିବହନ ପାଇଁ ନିଷିଦ୍ଧ । କେତେକ ପଶୁଙ୍କୁ ବଧ କଲାବେଳେ ସେମାନେ ଅଲ୍ଲାହଙ୍କ ନାମ ନେଇ ବଧ କରନ୍ତି ନାହିଁ । ଏସବୁ ମିଛ ସେମାନେ ଅଲ୍ଲାହଙ୍କ ନାଁରେ ଗଢିଛନ୍ତି । ସେ ସେମାନଙ୍କୁ ଶୀଘ୍ର ଏହି କୁସଂସ୍କାରଗୁଡ଼ିକୁ ଗଢିବାର ଫଳ ଦେବେ । ୧୩୯. ସେମାନେ ଏହା ମଧ୍ୟ କହନ୍ତି, "ଅମୁକ ଅମୁକ ପଶୁଙ୍କ ଗର୍ଭରେ ଯେଉଁ ଛୁଆ ଅଛନ୍ତି ସେଗୁଡିକ କେବଳ ଆମ ପୁରୁଷମାନଙ୍କ ଖାଇବା ପାଇଁ ଉଦ୍ଦିଷ୍ଟ ଏବଂ ଆମ ସ୍ତ୍ରୀମାନଙ୍କ ପାଇଁ ନିଷିଦ୍ଧ, କିନ୍ତୁ ଯଦି ତାହା ମୃତ ଜନ୍ମ ହୁଏ ତେବେ ସେଥିରେ (ପୁରୁଷ ଓ ମହିଳା) ସମସ୍ତେ ଭାଗ ହେବେ ।" ସେମାନଙ୍କର ଏହି ମିଥ୍ୟା ଆରୋପ ଯୋଗୁଁ ଅଲ୍ଲାହ୍ ସେମାନଙ୍କୁ ନିଶ୍ଚୟ ଶାସ୍ତି ଦେବେ । ଅଲ୍ଲାହ୍ ତତ୍ତ୍ୱଜ୍ଞାନୀ ଏବଂ ସର୍ବଜ୍ଞ । ୧୪୦. ଯେଉଁମାନେ ଅଜ୍ଞାନତା ଓ ନିର୍ବୋଧତା ଯୋଗୁଁ ନିଜ ସନ୍ତାନକୁ ହତ୍ୟା କଲେ ଏବଂ ଅଲ୍ଲାହ୍ଙ୍କ ନାଁରେ ମିଥ୍ୟା ଗଢ଼ି ତାଙ୍କ ଦ୍ୱାରା ଦିଆ ଯାଇଥିବା ଆହାରକୁ ନିଷିଦ୍ଧ ଘୋଷଣା କଲେ, ସେମାନେ ସର୍ବସ୍ୱାନ୍ତ ହେଲେ । ସେମାନେ ପଥଭ୍ରଷ୍ଟ ହୋଇଗଲେ ଏବଂ ସତପଥରୁ ବଂଚିତ ହେଲେ ।

୧୪୧. ସେ ହିଁ ସୃଷ୍ଟି କରିଛନ୍ତି ମଂଚା-ଆଶ୍ରିତ ଓ ମଂଚାବିହୀନ ଉଦ୍ୟାନ ଏବଂ ଖଜୁରୀ ଗଛ ଓ କ୍ଷେତରୁ ଉତ୍ପନ୍ନ ହେଉଥିବା ଶସ୍ୟ, ବିଭିନ୍ନ ପ୍ରକାରର ଖାଦ୍ୟ ଓ

ସମଜାତୀୟ ତଥା ଭିନ୍ନ ଜାତୀୟ ଜଏତୁନ୍ ଓ ଡାଳିମ୍ବ । ଗଛ ଫଳ ଦେଲେ ଖାଅ ଏବଂ ଫଳ ସଂଗ୍ରହ କରିବା ଦିନ ସେଥିରୁ ଅଲ୍ଲାହଙ୍କର ପ୍ରାପ୍ୟ (ଅର୍ଥାତ ଜକାତ୍) ଦିଅ ଏବଂ ବଦ୍‌ଖର୍ଚ୍ଚ କରନାହିଁ । ଅଲ୍ଲାହ୍ ବଦ୍‌ଖର୍ଚ୍ଚ କରୁଥିବା ଲୋକଙ୍କୁ ପସନ୍ଦ କରନ୍ତିନାହିଁ । ୧୪୨. ପଶୁମାନଙ୍କ ମଧ୍ୟରେ କେତେକ ଭାରବାହୀ ବଡ଼ ପଶୁ ଅଛନ୍ତି ଏବଂ ଆଉ କେତେକ ଛୋଟ ଆକାରର । ଅଲ୍ଲାହ୍ ତୁମମାନଙ୍କୁ ଯାହା ଦେଇଛନ୍ତି ସେଥିରୁ ଖାଅ ଏବଂ ଶଇତାନର ପିଛା ଧରି ଚାଲନାହିଁ । ସେ ତୁମମାନଙ୍କର ପରମ ଶତ୍ରୁ ।

୧୪୩. ଏହି ପଶୁ ଆଠ ଯୋଡ଼ା । ସେଥିରୁ ମେଣ୍ଢା ଜାତିର ଦୁଇଟି (ଅଣ୍ଡିରା ଓ ମାଈ) ଏବଂ ଛେଳି ଜାତିରୁ ମଧ୍ୟ ଦୁଇଟି । (ସେମାନଙ୍କୁ ପଚାର) "କଣ ସେ ଉଭୟ ଅଣ୍ଡିରାକୁ ନିଷିଦ୍ଧ କରିଛନ୍ତି ବା ଉଭୟ ମାଈକୁ କିମ୍ବା ଉଭୟ ମାଈ ପଶୁଙ୍କ ଗର୍ଭରେ ଥିବା ଛୁଆକୁ ନିଷିଦ୍ଧ କରିଛନ୍ତି ? ଯଦି ତୁମେ ସତ କହୁଛ, ତେବେ କୌଣସି ପ୍ରମାଣ ଆଧାରରେ ଉତ୍ତର ଦିଅ ।" ୧୪୪. (ଏହିପରି) ଓଟ ଏବଂ ଗୋରୁମାନଙ୍କ ମଧ୍ୟରେ ମଧ୍ୟ ଅଣ୍ଡିରା ଓ ମାଈ ଅଛନ୍ତି । ସେମାନଙ୍କୁ ପଚାର "କଣ ସେ ଉଭୟ ଅଣ୍ଡିରାକୁ ନିଷିଦ୍ଧ କରିଛନ୍ତି ବା ଉଭୟ ମାଈକୁ ବା ଉଭୟ ମାଈ ପଶୁଙ୍କ ଗର୍ଭରେ ଥିବା ଛୁଆକୁ ନିଷିଦ୍ଧ କରିଛନ୍ତି ? କ'ଣ ତୁମେମାନେ ସେତେବେଳେ ସେଠାରେ ଥିଲ ଯେତେବେଳେ ଅଲ୍ଲାହ୍ ତୁମମାନଙ୍କୁ ଏହି ଆଦେଶ ଦେଇଥିଲେ ?" ତେବେ ତା'ଠାରୁ ବଳି ଦୁରାଚାରୀ କିଏ ହେବ, ଯିଏ କୌଣସି ପ୍ରମାଣ ବିନା ଲୋକଙ୍କୁ ପଥଭ୍ରଷ୍ଟ କରିବା ପାଇଁ ଅଲ୍ଲାହଙ୍କ ନାଁରେ ମିଥ୍ୟା ଆରୋପ କରେ ? ବାସ୍ତବରେ ଅଲ୍ଲାହ୍ ଦୁରାଚାରୀମାନଙ୍କର ପଥ ପ୍ରଦର୍ଶନ କରନ୍ତିନାହିଁ । ୧୪୫. ତୁମେ କୁହ, "ମୋତେ ଯେଉଁ ଦୈବବାଣୀ ହୋଇଛି ମୁଁ ସେଥିରେ ଏଭଳି କୌଣସି ଖାଦ୍ୟ ଦେଖୁନାହିଁ ଯାହା ଖାଇବା ଲୋକ ପାଇଁ ଅବୈଧ; କିନ୍ତୁ ଯଦି ତାହା ମୃତ ପ୍ରାଣୀ ହୋଇଥାଏ, ବୋହି ଯାଉଥିବା ରକ୍ତ ବା ଘୁଷୁରୀ ମାଂସ ହୋଇଥାଏ (ତେବେ ଏହା ନିଷିଦ୍ଧ) କାରଣ ଏଗୁଡ଼ିକ ଅଶୁଦ୍ଧ କିମ୍ବା ଏଭଳି ପ୍ରାଣୀର ମାଂସ (ମଧ୍ୟ ନିଷିଦ୍ଧ) ଯାହାକୁ ବଧ କଲାବେଳେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ନାମ ଉଚ୍ଚାରଣ କରା ଯାଇଥାଏ । ହଁ, ଯଦି କେହି (ପ୍ରବଳ ଭୋକ ଯୋଗୁଁ ଏହା ଖାଇବାକୁ) ବାଧ୍ୟ ହୁଏ ମାତ୍ର ତା'ର ଇଚ୍ଛା ନଥାଏ ଏବଂ ସେ (ନିଜ ଆବଶ୍ୟକତାର) ସୀମା ଅତିକ୍ରମ ନକରେ, ତେବେ ତୁମ ଈଶ୍ୱର ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ ।"

୧୪୬. ଯହୁଦୀମାନଙ୍କ ପାଇଁ ଆମ୍ଭେ ଖୁରାଯୁକ୍ତ ସମସ୍ତ ପଶୁଙ୍କର ମାଂସ ନିଷିଦ୍ଧ କରିଥିଲୁ ଏବଂ ଗୋରୁ ଓ ଛେଳିମାନଙ୍କର ପିଠି, ଅନ୍ତକୁ ଲାଗିଥିବା ଚର୍ବି ଏବଂ ହାଡ଼କୁ ଲାଗିଥିବା ଚର୍ବି ବ୍ୟତୀତ ସବୁପ୍ରକାରର ଚର୍ବି ନିଷିଦ୍ଧ କରିଥିଲୁ । ସେମାନଙ୍କ ଔଦ୍ଧତ୍ୟ ଯୋଗୁଁ ଆମ୍ଭେ ସେମାନଙ୍କୁ ଏହି ଶାସ୍ତି ଦେଇଥିଲୁ ଏବଂ ଆମ୍ଭେ ଠିକ୍ ଆଦେଶ ଦେଉ । ୧୪୭. ତା'ପରେ ଯଦି ସେମାନେ ତୁମକୁ ମିଥ୍ୟାବାଦୀ ବୋଲି କହନ୍ତି, ତେବେ କହିଦିଅ, "ତୁମ ପ୍ରଭୁ ଅତ୍ୟନ୍ତ କୃପାଶୀଳ, ମାତ୍ର ଅପରାଧୀମାନଙ୍କ ଉପରୁ ତାଙ୍କର ଶାସ୍ତି ଟଳିବନାହିଁ ।"

୧୪୮. ବହୁଈଶ୍ୱରବାଦୀମାନେ ଏହା ନିଶ୍ଚୟ କହିବେ, "ଯଦି ଅଲ୍ଲାହ୍ ଇଚ୍ଛା କରିଥାଆନ୍ତେ, ତେବେ ଆମେ କାହାରିକୁ ତାଙ୍କର ସମକକ୍ଷ କରି ନଥାଆନ୍ତୁ ବା ଆମ ପିତୃପୁରୁଷମାନେ ମଧ୍ୟ ଏହା କରି ନଥାଆନ୍ତେ କିମ୍ବା ଆମେ କୌଣସି ଦ୍ରବ୍ୟକୁ ନିଷିଦ୍ଧ କରି ନଥାଆନ୍ତୁ ।" ଏହିପରି (ଅଯଥା ଯୁକ୍ତି କରି) ସେମାନଙ୍କ ପୂର୍ବଜମାନେ ମଧ୍ୟ ଆମ୍ଭର ବାର୍ତ୍ତାବହମାନଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ । ଶେଷରେ ସେମାନେ ଆମ୍ଭ ଶାସ୍ତିର ମଜା ଚାଖିଲେ । ସେମାନଙ୍କୁ ପଚାର, "କଣ ତୁମମାନଙ୍କ ପାଖରେ କୌଣସି (ପ୍ରାମାଣିକ) ଜ୍ଞାନ ଅଛି? ଯଦି ଥାଏ, ତେବେ ମୋତେ ଆଣି ଦେଖାଅ । ତୁମେମାନେ କେବଳ ଅନୁମାନ ପଛରେ ଧାଇଁଛ ଏବଂ ତୁଚ୍ଛା ଅଟକଳ କରୁଛ ।" ୧୪୯. କହିଦିଅ ଯେ ଅନ୍ତିମ ତର୍କ ଅଲ୍ଲାହଙ୍କର । ଯଦି ସେ ଇଚ୍ଛା କରିଥାଆନ୍ତେ, ତୁମ ସମସ୍ତଙ୍କୁ ବାଟକୁ ନେଇ ଆସି ଥାଆନ୍ତେ । ୧୫୦. ସେମାନଙ୍କୁ କୁହ "ତୁମ ସାକ୍ଷୀମାନଙ୍କୁ ଡାକ ଏବଂ ସେମାନେ ଏହା କହନ୍ତୁ ଯେ ଅଲ୍ଲାହ୍ ଏହି ବସ୍ତୁଗୁଡ଼ିକୁ ନିଷିଦ୍ଧ କରିଛନ୍ତି ।" ଯଦି ସେମାନେ ମିଥ୍ୟା ସାକ୍ଷ୍ୟ ଦିଅନ୍ତି ତେବେ ତୁମେ ସେମାନଙ୍କୁ ସମର୍ଥନ କରନାହିଁ । ସେହି ଲୋକମାନଙ୍କର ଇଚ୍ଛା ଅନୁଯାୟୀ କାର୍ଯ୍ୟ କରନାହିଁ ଯେଉଁମାନେ ଆମ୍ଭର (ପବିତ୍ର) ବାଣୀକୁ ମିଥ୍ୟା ବୋଲି କହନ୍ତି, ପରଲୋକକୁ ଅସ୍ୱୀକାର କରନ୍ତି ଏବଂ ଅନ୍ୟମାନଙ୍କୁ ନିଜ ପାଳନକର୍ତ୍ତାଙ୍କର ସମକକ୍ଷ କରନ୍ତି ।

୧୫୧. ସେମାନଙ୍କୁ କୁହ "ଆସ, ମୁଁ ତୁମମାନଙ୍କୁ ପଢ଼ି ଶୁଣାଉଛି ଯେ ତୁମମାନଙ୍କର ପାଳନକର୍ତ୍ତା ତୁମମାନଙ୍କ ପାଇଁ କ'ଣ ନିଷିଦ୍ଧ କରିଛନ୍ତି । ତାହା ହେଲା, କାହାରିକୁ ତାଙ୍କର ସମକକ୍ଷ କରନାହିଁ, ବାପାମାଆଙ୍କ ପ୍ରତି ଉଚିତ

କର୍ତ୍ତବ୍ୟ କର ଏବଂ ଗରିବ ହୋଇଯିବା ଭୟରେ ନିଜ ସଂତାନମାନଙ୍କୁ ହତ୍ୟା କରନାହିଁ । ଆମ୍ଭେ ତୁମମାନଙ୍କୁ ଆହାର ଦେଉ ଏବଂ ସେମାନଙ୍କୁ ମଧ୍ୟ । ଅଶ୍ଳୀଳତାର ପାଖ ମାଡ଼ନାହିଁ, ତାହା ଖୋଲାଖୋଲି ଭାବରେ ହେଉ ବା ଗୋପନରେ ହେଉ ଏବଂ ଅଲ୍ଲାହ୍ ଯେଉଁ ଜୀବର ହତ୍ୟା ନିଷିଦ୍ଧ କରିଛନ୍ତି ତାକୁ ଉଚିତ କାରଣ ବିନା ହତ୍ୟା କରନାହିଁ । ସେ ତୁମମାନଙ୍କୁ ଏହି ଆଦେଶ ଦେଉଛନ୍ତି ଯେପରିକି ତୁମେମାନେ ଏହା ବୁଝିପାରିବ । ୧୫୨. ଅନାଥ ପିଲାମାନେ ପ୍ରାପ୍ତବୟସ୍କ ନହେବା ପର୍ଯ୍ୟନ୍ତ ଯଥାର୍ଥ ଉଦ୍ଦେଶ୍ୟ ବିନା ସେମାନଙ୍କ ସମ୍ପତ୍ତିର ପାଖ ମାଡ଼ନାହିଁ ଏବଂ ନ୍ୟାୟର ସହିତ ମାପ ଓଜନ ସଂପୂର୍ଣ୍ଣ କର । ଆମ୍ଭେ କୌଣସି ବ୍ୟକ୍ତି ଉପରେ ତା' ସାମର୍ଥ୍ୟ ଠାରୁ ଅଧିକ ବୋଝ ଲଦି ଦେଉନା । ଯେତେବେଳେ କିଛି କୁହ ତାହା ନିଜ ଆତ୍ମୀୟଙ୍କ ବିରୁଦ୍ଧରେ ହେଉ ପଛେ, ନ୍ୟାୟସଂଗତ କଥା କୁହ ଏବଂ ଅଲ୍ଲାହଙ୍କୁ ଦେଇଥିବା କଥା ରକ୍ଷା କର । ସେ ତୁମମାନଙ୍କୁ ଏହି ଆଦେଶ ଦେଉଛନ୍ତି ଯେପରିକି ତୁମେମାନେ ଶିକ୍ଷାଲାଭ କରିବ । ୧୫୩. ଏହାହିଁ ମୋର ସଳଖ ବାଟ । ତେଣୁ ଏହି ବାଟରେ ଚାଲ । ଅନ୍ୟ ବାଟରେ ଚାଲନାହିଁ କାରଣ ସେଗୁଡ଼ିକ ତୁମମାନଙ୍କୁ ଅଲ୍ଲାହଙ୍କ ବାଟରୁ ଦୂରେଇ ଦେବ । ସେ ତୁମମାନଙ୍କୁ ଏ ବିଷୟରେ ଆକଟ କରୁଛନ୍ତି ଯେପରିକି ତୁମେମାନେ ସଦାଚାରୀ ହେବ ।

୧୫୪. ଆମ୍ଭେ ମୂ'ସାଙ୍କୁ ଗ୍ରନ୍ଥ ଦେଇଥିଲୁ ଯେପରିକି ଭଲ କର୍ମ କରୁଥିବା ଲୋକମାନଙ୍କ ପ୍ରତି ଆମ୍ଭର ଅନୁଗ୍ରହ ସଂପୂର୍ଣ୍ଣ ହେବ, ସେଥିରେ ପ୍ରତ୍ୟେକ କଥାର ବିଶଦ ବର୍ଣ୍ଣନା ରହିବ ଏବଂ ଏହା (ଲୋକମାନଙ୍କର) ମାର୍ଗଦର୍ଶନ କରିବା ସହିତ ଆମର ଏକ କରୁଣା ହେବ, ଯାହାଫଳରେ ସେମାନ (ପରଲୋକରେ) ନିଜ ପ୍ରଭୁଙ୍କ ସହ ସାକ୍ଷାତ କରିବାରେ ବିଶ୍ୱାସ କରିବେ । ୧୫୫. ଏହି କୁରଆନ ଏକ ଶୁଭଗ୍ରନ୍ଥ ଯାହାକୁ ଆମ୍ଭେ ପଠାଇଛୁ । ତେଣୁ, ଏହାକୁ ମାନି ଚଳ ଏବଂ (ଅଲ୍ଲାହଙ୍କୁ) ଭୟ କରୁଥାଅ, ଯାହାଫଳରେ ତୁମମାନଙ୍କ ପ୍ରତି (ଆମ୍ଭର) କୃପା ହେବ । ୧୫୬. ଅନ୍ୟଥା ତୁମେମାନେ କହିବ, "ଆମ ପୂର୍ବର ଦୁଇ ସମୁଦାୟଙ୍କ ପାଇଁ ଗ୍ରନ୍ଥ ପଠା ଯାଇଥିଲା କିନ୍ତୁ ସେମାନେ କ'ଣ ପଢୁଥିଲେ ଆମେ ଜାଣିପାରୁ ନଥିଲୁ ।" ୧୫୭. କିମ୍ବା କାଲେ ଏହା କହିବ, "ଯଦି ଆମମାନଙ୍କ ପାଖକୁ ଗ୍ରନ୍ଥ ପଠାଯାଇ ଥାଆନ୍ତା

ତେବେ ଆମେ ସେମାନଙ୍କ ଅପେକ୍ଷା ଅଧିକ ଧର୍ମପରାୟଣ ହୋଇଥାଆନ୍ତୁ ।” ଏବେତ ତୁମମାନଙ୍କର ମାର୍ଗଦର୍ଶନ ପାଇଁ ଈଶ୍ୱରଙ୍କଠାରୁ ତାଙ୍କର କରୁଣା ସ୍ୱରୂପ ଏକ ସ୍ପଷ୍ଟ ଗ୍ରନ୍ଥ ଆସିଯାଇଛି । ସେହି ବ୍ୟକ୍ତିଠାରୁ ବଡ଼ ପାପୀ ଆଉ କିଏ ଯିଏ ଅଲ୍ଲାହଙ୍କ ବାଣୀକୁ ପ୍ରତ୍ୟାଖ୍ୟାନ କରେ ଏବଂ ମୁହଁ ଫେରାଇ ନିଏ ? ଯେଉଁମାନେ ଆମ୍ଭର ବଣୀଗୁଡିକୁ ଅସ୍ୱୀକାର କରନ୍ତି, ଏହାର ଫଳ ସ୍ୱରୂପ ଆମ୍ଭେ ସେମାନଙ୍କୁ କଠିନ ଶାସ୍ତି ଦେବୁ । ୧୫୮. କ’ଣ ସେମାନେ ଅପେକ୍ଷା କରି ବସିଛନ୍ତି ଯେ ସେମାନଙ୍କ ପାଖକୁ ଦେବଦୂତମାନେ ଆସିବେ କିମ୍ବା ତୁମ ଈଶ୍ୱର ସ୍ୱୟଂ ପ୍ରକଟ ହେବେ ଅଥବା ଈଶ୍ୱର (ପ୍ରଳୟର) କିଛି ଲକ୍ଷଣ ପ୍ରକାଶ କରିବେ ? ଯେଉଁଦିନ ତୁମ ପ୍ରଭୁଙ୍କ ଦ୍ୱାରା (ପ୍ରଳୟର) ଲକ୍ଷଣ ପ୍ରକାଶ ପାଇବ, ସେଦିନ ଏଭଳି କୌଣସି ବ୍ୟକ୍ତିର ଆସ୍ଥା ତା’ପାଇଁ ଫଳପ୍ରଦ ହେବନାହିଁ ଯିଏ ପୂର୍ବରୁ ବିଶ୍ୱାସ ନରଖିଥିବ ବା ବିଶ୍ୱାସ ଅନୁଯାୟୀ ଭଲକର୍ମ କରି ନଥିବ । ତେଣୁ, (ସେମାନଙ୍କୁ) କହିଦିଅ, “ତୁମେମାନେ ଅପେକ୍ଷା କରୁଥାଅ ଏବଂ ଆମେ ମଧ୍ୟ ଅପେକ୍ଷା କରୁଛୁ ।”

୧୫୯. ଯେଉଁମାନେ ନିଜ ଧର୍ମକୁ ଖଣ୍ଡଖଣ୍ଡ କରିଦେଲେ ଏବଂ ବିଭିନ୍ନ ସଂପ୍ରଦାୟରେ ବାଣ୍ଟି ହୋଇଗଲେ, ସେମାନଙ୍କ ସହିତ ତୁମର କୌଣସି ସଂପର୍କ ନାହିଁ । ସେମାନଙ୍କର ବିଚାର ଅଲ୍ଲାହ୍ କରିବେ । ସେମାନେ ଯାହାକିଛି କରୁଥିଲେ ତାହା ସେ ସେମାନଙ୍କୁ ଜଣାଇଦେବେ । ୧୬୦. ଯେଉଁ ବ୍ୟକ୍ତି କୌଣସି ଭଲ କର୍ମ କରିଥିବ, ସେ ତାହାର ଦଶଗୁଣ ପୁଣ୍ୟ ଲାଭ କରିବ ଏବଂ ଯିଏ କୌଣସି ମନ୍ଦ କର୍ମ କରିଥିବ, ତାକୁ କେବଳ ସେହି କର୍ମର ଦଣ୍ଡ ଦିଆଯିବ ଏବଂ ତା’ପ୍ରତି ଅନ୍ୟାୟ ହେବନାହିଁ ।

୧୬୧. (ହେ ବାର୍ତ୍ତାବହ!) ତୁମେ କୁହ, “ମୋ’ ପ୍ରଭୁ ମୋତେ ସତ୍‌ମାର୍ଗ ଦେଖାଇ ଦେଇଛନ୍ତି । ଏହା ଚିରପ୍ରତିଷ୍ଠିତ ଧର୍ମ ଏବଂ ଇବ୍ରାହିମଙ୍କର ପନ୍ଥା ଯିଏ ବିଶୁଦ୍ଧ ଏକେଶ୍ୱରବାଦୀ ଥିଲେ କିନ୍ତୁ ବହୁଈଶ୍ୱରବାଦୀ ନଥିଲେ ।” ୧୬୨. କହିଦିଅ, “ମୋ ପ୍ରାର୍ଥନା, ମୋର ସବୁ ସେବା-ଉପାସନା, ମୋର ଜିଇଁବା ଓ ମରିବା, ସବୁକିଛି ସମଗ୍ର ଜଗତର ସ୍ୱାମୀ ଅଲ୍ଲାହଙ୍କ ପାଇଁ ଉଦ୍ଦିଷ୍ଟ । ୧୬୩. ତାଙ୍କର କେହି ଅଂଶୀଦାର ନାହାନ୍ତି । ମୋତେ ଏହି ଆଜ୍ଞା ଦିଆଯାଇଛି ଏବଂ ମୁଁ

ପ୍ରଥମ ମୁସଲିମ୍ (ଅର୍ଥାତ୍ ଆଜ୍ଞାବହ) ।" ୧୬୪. କହିଦିଅ, "କ'ଣ ମୁଁ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କୌଣସି ଈଶ୍ୱର ଖୋଜିବି ଅଥଚ ସେ ହିଁ ସକଳ ସୃଷ୍ଟିର ମାଲିକ? ମଣିଷ ଯାହା ଅର୍ଜନ କରେ ତାହା କେବଳ ନିଜପାଇଁ କରେ ଏବଂ କେହି କାହାରି (ପାପପୁଣ୍ୟର) ବୋଝ ମୁଣ୍ଡାଇବ ନାହିଁ । ପୁଣି ତୁମମାନଙ୍କୁ ତୁମ ପ୍ରଭୁଙ୍କ ନିକଟକୁ ଫେରି ଯିବାକୁ ହେବ ଏବଂ ଯେଉଁ ବିଷୟରେ ତୁମେମାନେ ବିବାଦ କରୁଥିଲ, ସେ ତୁମମାନଙ୍କୁ ସେବିଷୟରେ ଜଣାଇ ଦେବେ ।" ୧୬୫. ସେ ହିଁ ତୁମମାନଙ୍କୁ ଧରାପୃଷ୍ଠର ଅଧିକାରୀ କରିଛନ୍ତି ଏବଂ ତୁମମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟମାନଙ୍କ ତୁଳନାରେ ଏଇଥିପାଇଁ ଶ୍ରେଷ୍ଠ ସ୍ଥାନ ଦେଇଛନ୍ତି ଯେ ସେ ଯାହା ଦେଇଛନ୍ତି ତାହାଦ୍ୱାରା ତୁମମାନଙ୍କୁ ପରୀକ୍ଷା କରିବେ । ତୁମ ଈଶ୍ୱର (ଅଧର୍ମୀମାନଙ୍କୁ) ଅବିଳମ୍ବେ ଶାସ୍ତି ଦେବେ ଏବଂ ସେ ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ ।

## ଅଧ୍ୟାୟ ୭, ଅଲ୍ ଆରାଫ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲିଫ୍-ଲାମ୍-ମୀମ-ସ୍ୱାଦ୍ । ୨. ତୁମ ପାଖକୁ ଯେଉଁ ଗ୍ରନ୍ଥଟି ପଠାଯାଇଛି ତାହା ଯୋଗୁଁ ତୁମର ମନ ଭାରାକ୍ରାନ୍ତ ନହେଉ । ଏହାଦ୍ୱାରା ତୁମେ ଲୋକମାନଙ୍କୁ ସାବଧାନ କର ଏବଂ ସଦ୍‌ବିଶ୍ୱାସୀମାନଙ୍କୁ ଶିକ୍ଷା ଦିଅ ।

୩. (ହେ ମନୁଷ୍ୟଗଣ!) ତୁମ ଈଶ୍ୱରଙ୍କ ଦ୍ୱାରା ତୁମମାନଙ୍କ ପାଖକୁ ଯେଉଁ ଗ୍ରନ୍ଥ ପଠାଯାଇଛି ତାକୁ ମାନି ଚଳ ଏବଂ ତାଙ୍କ ବ୍ୟତୀତ ଅନ୍ୟ ବନ୍ଧୁମାନଙ୍କର କଥା ମାନନାହିଁ । ତୁମେମାନେ ଖୁବ୍ କମ୍ ଧ୍ୟାନ ଦିଅ । ୪. ଅନେକ ଜନବସତି ଆମ୍ଭେ ଧ୍ୱଂସ କରିଦେଇଛୁ ଯେଉଁମାନଙ୍କ ଉପରେ ରାତିରେ (ଶୋଇଥିବା ବେଳେ) ବା ଦ୍ୱିପହର ସମୟରେ ବିଶ୍ରାମ କରୁଥିବା ବେଳେ ବିପଦ ମାଡ଼ି ଆସିଥିଲା । ୫. ଯେତେବେଳେ ସେମାନଙ୍କ ଉପରେ ବିପଦ ଆସୁଥିଲା, ସେମାନଙ୍କ ମୁହଁରୁ କେବଳ ଏହିକଥା ପଦେ ବାହାରୁଥିଲା ଯେ ଆମେ ପ୍ରକୃତରେ ପାପୀ ।

୬. ଯେଉଁମାନଙ୍କ ପାଖକୁ ବାର୍ତ୍ତାବହମାନଙ୍କୁ ପଠାଯାଇଥିଲା ଆମ୍ଭେ ସେମାନଙ୍କୁ ନିଶ୍ଚୟ ପ୍ରଶ୍ନ କରିବୁ ଏବଂ ଆମ୍ଭେ ସେହି ବାର୍ତ୍ତାବହମାନଙ୍କୁ ମଧ୍ୟ ପ୍ରଶ୍ନ

କରିବୁ । ୭. ଯେହେତୁ ଆମ୍ଭେ ସର୍ବଜ୍ଞ ଆମ୍ଭେ ସେମାନଙ୍କ ନିକଟରେ ସେମାନଙ୍କର କାର୍ଯ୍ୟକଳାପଗୁଡ଼ିକୁ ବର୍ଣ୍ଣନା କରିଦେବୁ । ଆମ୍ଭେ କୁଆଡ଼େ ଚାଲିଯାଇ ନଥିଲୁ । ୮. ସେଦିନ କର୍ମର ଓଜନ ହେବା ଏକ ନିରାଟ ସତ୍ୟ । ପୁଣି ଯେଉଁମାନଙ୍କ ପୁଣ୍ୟର ଓଜନ ଅଧିକ ହେବ, ସେମାନେ ସଫଳ ହେବେ । ୯. ଏବଂ ଯେଉଁମାନଙ୍କ ପୁଣ୍ୟର ଓଜନ ହାଲୁକା ହେବ ସେମାନେ ନିଜର କ୍ଷତି କରିବେ କାରଣ ସେମାନେ ଆମ୍ଭର ବାଣୀକୁ ଅସ୍ୱୀକାର କରୁଥିଲେ ।

୧୦. ଆମ୍ଭେ ତୁମମାନଙ୍କୁ ପୃଥିବୀରେ ବସବାସ କରିବା ପାଇଁ ସ୍ଥାନ ଦେଲୁ ଏବଂ ସେଠାରେ ତୁମମାନଙ୍କ ପାଇଁ ଜୀବନଧାରଣର ବିଭିନ୍ନ ସାଧନ ଖଞ୍ଜିଦେଲୁ କିନ୍ତୁ ତୁମେମାନେ କ୍ୱଚିତ୍ ଉପକାର ମାନିଥାଅ । ୧୧. ଆମ୍ଭେ ତୁମମାନଙ୍କୁ ସୃଷ୍ଟି କଲୁ ଏବଂ ତୁମମମାନଙ୍କୁ ରୂପ ଦେଲୁ, ପୁଣି ଦେବଦୂତମାନଙ୍କୁ କହିଲୁ ଯେ ଆଦମଙ୍କୁ ପ୍ରଣାମ କର । କେବଳ ଇବ୍‌ଲିସ୍ ବ୍ୟତୀତ ସମସ୍ତେ ପ୍ରଣାମ କଲେ କିନ୍ତୁ ସେ ପ୍ରଣାମ କଲାନାହିଁ । ୧୨. (ଏହାପରେ ଅଲ୍ଲାହ୍) ପଚାରିଲେ, “ଆମ୍ଭେ ଆଜ୍ଞା ଦେବା ସତ୍ତ୍ୱେ ତୋ’ର ପ୍ରଣାମ କରିବାରେ କ’ଣ ଅସୁବିଧା ହେଲା ?” ସେ ଉତ୍ତର ଦେଲା, “ମୁଁ ତାଙ୍କଠାରୁ ଶ୍ରେଷ୍ଠ କାରଣ ତୁମେ ମୋତେ ନିଆଁରୁ ସୃଷ୍ଟି କରିଛ ଏବଂ ତାଙ୍କୁ (ଅର୍ଥାତ୍ ଆଦମଙ୍କୁ) ମାଟିରୁ ସୃଷ୍ଟି କରିଛ ।” ୧୩. ଅଲ୍ଲାହ୍ କହିଲେ, “ଓହ୍ଲାଇ ଯା’ । ତୋ’ର ଏଠାରେ ଅହଂକାର କରିବାର ଅଧିକାର ନାହିଁ । ତୁ ଜଣେ ଅଧମ । ୧୪. ସେ କହିଲା, “ତୁମେ ମୋତେ ସେହିଦିନ ପର୍ଯ୍ୟନ୍ତ ସମୟ ଦିଅ ଯେଉଁଦିନ ସମସ୍ତେ ପୁନର୍ଜୀବନ ପାଇ ଉଠିବେ ।” ୧୫. ଆମ୍ଭେ କହିଲୁ, “ତୋତେ ସମୟ ଦିଆଗଲା ।” ୧୬. ସେ କହିଲା, “ଯେହେତୁ ତୁମେ ମୋତେ ପଥଭ୍ରଷ୍ଟ କରିଛ, ମୁଁ ମଧ୍ୟ ଲୋକମାନଙ୍କୁ (ବିଭ୍ରାନ୍ତ କରିବା ପାଇଁ) ତୁମର ସଳଖ ମାର୍ଗରେ ଜଗି ବସିବି, ୧୭. ଏବଂ ସେମାନଙ୍କୁ ସେମାନଙ୍କ ଆଗ ଓ ପଛରୁ ଏବଂ ଡାହାଣ ଓ ବାମରୁ ଆକ୍ରମଣ କରିବି । ତୁମେ ଅଧିକାଂଶ ଲୋକଙ୍କୁ କୃତଜ୍ଞ ହେବାର ଦେଖିବନାହିଁ ।” ୧୮. ଆମ୍ଭେ କହିଲୁ, “ବାହାରି ଯା’ ଏଠାରୁ । ତୋତେ ଲାଂଛିତ କରି ବହିଷ୍କାର କରାଗଲା । ସେମାନଙ୍କ ମଧ୍ୟରୁ ଯିଏ ତୋ’ କଥାରେ ଚଳିବ, ଆମ୍ଭେ ତୁମ ସମସ୍ତଙ୍କ ଦ୍ୱାରା ନର୍କକୁ ପୂର୍ଣ୍ଣ କରିବୁ ।”

୧୯. (ଆମ୍ଭେ ଆଦମଙ୍କୁ କହିଲୁ) "ହେ ଆଦମ! ତୁମେ ଓ ତୁମ ପତ୍ନୀ ସ୍ୱର୍ଗରେ ରୁହ ଏବଂ ଯେଉଁଠାରୁ ଇଚ୍ଛା ସେଠାରୁ ଖାଅ କିନ୍ତୁ ସେହି ଗଛ ପାଖକୁ ଯିବନାହିଁ। ଯଦି ଯାଅ, ତେବେ ତୁମେମାନେ ଭୁଲ୍ କରିବ। ୨୦. ପୁଣି ଶଇତାନ ସେ ଦୁହିଁଙ୍କୁ ପ୍ରଲୋଭିତ କଲା ଯେପରକି ସେମାନଙ୍କର ଗୁପ୍ତାଙ୍ଗଗୁଡ଼ିକୁ ସେମାନଙ୍କ ସମ୍ମୁଖରେ ପ୍ରକାଶ କରିଦେବ। ସେ କହିଲା, "ତୁମ ଈଶ୍ୱର ଏହି ଗଛଠାରୁ ତୁମମାନଙ୍କୁ ଏଇଥିପାଇଁ ଦୂରେଇ ରଖିଛନ୍ତି ଯେ କାଳେ ତୁମେ ଦୁହେଁ ଦେବଦୂତ ହୋଇଯିବ ବା ଅମର ହୋଇଯିବ।" ୨୧. ସେ ସେମାନଙ୍କ ପାଖରେ ରାଣ ଖାଇ କହିଲା, "ବିଶ୍ୱାସ କର, ପ୍ରକୃତରେ ମୁଁ ତୁମ ଦୁହିଁଙ୍କର ହିତାକାଂକ୍ଷୀ।" ୨୨. ଏହିପରି ଛଳନା କରି ସେ ଉଭୟଙ୍କୁ (ବୈକୁଣ୍ଠରୁ) ତଳକୁ ଓହ୍ଲାଇ ଆଣିଲା। ଯେତେବେଳେ ସେ ଦୁହେଁ ସେହି ଗଛର ଫଳ ଚାଖିଲେ, ସେମାନଙ୍କ ସମ୍ମୁଖରେ ସେମାନଙ୍କର ଗୁପ୍ତାଂଗ ପ୍ରକାଶ ପାଇଗଲା ଏବଂ ସେମାନେ ବୈକୁଣ୍ଠର ପତ୍ର ଦ୍ୱାରା ନିଜନିଜର ଅଙ୍ଗଗୁଡ଼ିକୁ ଘୋଡ଼ାଇବାକୁ ଲାଗିଲେ। ତେଣୁ, ସେମାନଙ୍କର ପ୍ରଭୁ ସେମାନଙ୍କୁ ସମ୍ବୋଧନ କଲେ, "କ'ଣ ମୁଁ ତୁମମାନଙ୍କୁ ସେହି ଗଛ ପାଖକୁ ଯିବାକୁ ମନା କରି ନଥିଲି ଏବଂ କ'ଣ ଏହା କହି ନଥିଲି ଯେ ଶଇତାନ ତୁମର ପରମ ଶତ୍ରୁ?" ୨୩. ସେମାନେ କହିଲେ, "ହେ ପାଳନକର୍ତ୍ତା! ଆମେ ନିଜର ଅନିଷ୍ଟ କଲୁ। ଯଦି ତୁମେ ଆମକୁ କ୍ଷମା ନକର ଏବଂ ଆମ ପ୍ରତି ଦୟା ନକର ତେବେ ଆମେ ସର୍ବସ୍ୱାନ୍ତ ହୋଇଯିବୁ।" ୨୪. ଅଲ୍ଲାହ୍ କହିଲେ, "(ତୁମେ ସମସ୍ତେ ସ୍ୱର୍ଗରୁ) ଓହ୍ଲାଇ ଯାଅ। ତୁମେମାନେ ପରସ୍ପରର ଶତ୍ରୁ ହେବ ଏବଂ ତୁମମାନଙ୍କ ପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ପୃଥିବୀରେ ବସବାସ କରିବା ପାଇଁ ଜୀବନଧାରଣର ସାଧନ ରଖାଯାଇଛି। ୨୫. ତୁମେମାନେ ସେହିଠାରେ ଜୀବନ ଅତିବାହିତ କରିବ, ସେହିଠାରେ ମରିବ ଏବଂ ସେହିଠାରୁ ତୁମମାନଙ୍କୁ (ପୁନର୍ଜୀବିତ କରି) ବାହାର କରାଯିବ।"

୨୬. ହେ ଆଦମଙ୍କ ସଂତାନଗଣ! ଆମ୍ଭେ ତୁମମାନଙ୍କ ପାଇଁ ବସ୍ତ୍ର ସୃଷ୍ଟି କଲୁ ଯାହା ତୁମମାନଙ୍କର ଲଜ୍ୟା ନିବାରଣ କରେ ଏବଂ ଏହା ତୁମମାନଙ୍କର ସୌନ୍ଦର୍ଯ୍ୟର ସାଧନ ମଧ୍ୟ। ମାତ୍ର ଧର୍ମପରାୟଣତାର ପୋଷାକ ହେଉଛି ସବୁଠାରୁ ଭଲ। ଏହା ଅଲ୍ଲାହଙ୍କର ଏକ ନିଦର୍ଶନ। ସମ୍ଭବତଃ ଲୋକେ ଧ୍ୟାନ ଦେବେ। ୨୭. ହେ ଆଦମଙ୍କ ସନ୍ତାନଗଣ! ଶଇତାନ ତୁମମାନଙ୍କୁ ସେହିପରି ପ୍ରଲୋଭିତ ନକରୁ

ଯେପରି ସେ ତୁମ ପିତାମାତାଙ୍କୁ (ପ୍ରଲୋଭିତ କରି) ସ୍ୱର୍ଗରୁ ବାହାର କରି ଦେଇଥିଲା ଏବଂ ସେମାନଙ୍କ ଗୁପ୍ତାଙ୍ଗଗୁଡ଼ିକୁ ସେମାନଙ୍କୁ ଦେଖାଇବା ପାଇଁ ସେମାନଙ୍କୁ ନିବସ୍ତ୍ର କରାଇଥିଲା । ଶଇତାନ ଓ ତା' ସହଚରମାନେ ଏଭଳି ଜାଗାରୁ ତୁମମାନଙ୍କୁ ଦେଖନ୍ତି, ଯେଉଁଠାରୁ ତୁମେ ସେମାନଙ୍କୁ ଦେଖିପାର ନାହିଁ । ଆମ୍ଭେ ଶଇତାନମାନଙ୍କୁ ସେଇମାନଙ୍କର ସାଥୀ କରିଦେଇଛୁ ଯେଉଁମାନେ (ସତ୍ୟକୁ) ବିଶ୍ୱାସ କରନ୍ତିନାହିଁ ।

୨୮. ଏମାନେ ଯେତେବେଳେ କୌଣସି ନିର୍ଲଜ କର୍ମ କରନ୍ତି, କହନ୍ତି ଯେ ଆମେ ଆମ ବାପଅଜାଙ୍କୁ ଏମିତି କରିବାର ଦେଖିଛୁ ଏବଂ ଅଲ୍ଲାହ୍ ମଧ୍ୟ ଆମମାନଙ୍କୁ ଏହି ଅଜ୍ଞା ଦେଇଛନ୍ତି । (ସେମାନଙ୍କୁ) କୁହ, "ଅଲ୍ଲାହ୍ କଦାପି ଅଶ୍ଳୀଳତାର ଶିକ୍ଷା ଦିଅନ୍ତିନାହିଁ । କ'ଣ ତୁମେମାନେ ଅଲ୍ଲାହଙ୍କ ବିଷୟରେ ଏଭଳି କଥା କହିଦେଉଛ ଯାହା ବିଷୟରେ ତୁମର ଜ୍ଞାନ ନାହିଁ ?" ୨୯. କୁହ "ମୋ' ପ୍ରଭୁ ତ ନ୍ୟାୟ କରିବାର ଆଦେଶ ଦେଇଛନ୍ତି ଏବଂ (କହିଛନ୍ତି) "ପ୍ରତ୍ୟେକ ନମାଜ ସମୟରେ ମୁହଁକୁ ସଳଖ ରଖ ଏବଂ ଉପାସନାକୁ ତାଙ୍କ ପାଇଁ ବିଶୁଦ୍ଧ ରଖି (ଏକନିଷ୍ଠ ଭାବରେ) ତାଙ୍କୁ ପ୍ରାର୍ଥନା କର । ଯେମିତି ସେ ପ୍ରଥମ ଥର ତୁମମାନଙ୍କୁ ସୃଷ୍ଟି କରିଛନ୍ତି ସେମିତି ତୁମେମାନଙ୍କୁ ଆଉଥରେ ସୃଷ୍ଟି କରାଯିବ ।" ୩୦. (ତୁମମାନଙ୍କ ମଧ୍ୟରୁ) ସେ କେତେକଙ୍କର ମାର୍ଗଦର୍ଶନ କରିଛନ୍ତି କିନ୍ତୁ ଆଉ କେତେକଙ୍କର ପଥଭ୍ରଷ୍ଟ ହେବା ନିଶ୍ଚିତ । ସେମାନେ ଅଲ୍ଲାହଙ୍କୁ ଛାଡ଼ି ଶୈତାନକୁ ନିଜର ବନ୍ଧୁ କରି ନେଇଛନ୍ତି ଏବଂ ଭାବୁଛନ୍ତି ଯେ ସେମାନେ ଠିକ୍ ବାଟରେ ଅଛନ୍ତି ।

୩୧. ହେ ଆଦମଙ୍କ ସନ୍ତାନ! ତୁମେମାନେ ମସଜିଦକୁ ଯିବାବେଳେ ନିଜର ପୋଷାକ ପିନ୍ଧିନିଅ । ଖାଅ, ପିଅ କିନ୍ତୁ ଅପବ୍ୟୟ କରନାହିଁ । ଅପବ୍ୟୟ କରୁଥିବା ଲୋକମାନଙ୍କୁ ଅଲ୍ଲାହ୍ ପସନ୍ଦ କରନ୍ତିନାହିଁ । ୩୨. (ସେମାନଙ୍କୁ) ପଚାର, "ଅଲ୍ଲାହ୍ ନିଜ ଦାସମାନଙ୍କ ପାଇଁ ସୃଷ୍ଟି କରିଥିବା ସୌନ୍ଦର୍ଯ୍ୟର ସାଧନ ଏବଂ ଶୁଦ୍ଧ ଖାଦ୍ୟପଦାର୍ଥଗୁଡ଼ିକୁ କିଏ ନିଷିଦ୍ଧ କରିଛି ?" କହିଦିଅ, "ଏଗୁଡ଼ିକ ସାଂସାରିକ ଜୀବନରେ ତ ସଦ୍‌ବିଶ୍ୱାସୀମାନଙ୍କୁ ମିଳିଛି ଏବଂ ପରଲୋକରେ ମଧ୍ୟ ସେଇମାନଙ୍କୁ ମିଳିବ ।" ଆମ୍ଭେ ଜ୍ଞାନୀ ଲୋକମାନଙ୍କ ପାଇଁ ନିଜର ବାଣୀଗୁଡ଼ିକୁ ଏହିପରି ପରିଷ୍କାର ଭାବରେ ବର୍ଣ୍ଣନା କରୁ । ୩୩. କହିଦିଅ, "ମୋ' ଈଶ୍ୱର ଖୋଲାଖୋଲି ଭାବରେ ବା ଗୋପନରେ କରାଯାଉ ଥିବା (ସବୁ ପ୍ରକାରର) ଅଶ୍ଳୀଳ ଆଚରଣକୁ ନିଷିଦ୍ଧ

କରିଛନ୍ତି ଏବଂ ସବୁ ପ୍ରକାରର ପାପକର୍ମ ତଥା ଉଚିତ୍ କାରଣ ବିନା ଅନ୍ୟ ପ୍ରତି ଅତ୍ୟାଚାର ମଧ୍ୟ । ସେ (ଏହା ମଧ୍ୟ ନିଷିଦ୍ଧ କରିଛନ୍ତି ଯେ) ତୁମେମାନେ ଅଲ୍ଲାହଙ୍କ ଈଶ୍ୱରତ୍ୱରେ ଅନ୍ୟକୁ ଅଂଶୀଦାର କର ଯାହା ସପକ୍ଷରେ ଅଲ୍ଲାହ୍ କୌଣସି ପ୍ରମାଣ ପଠାଇନାହାନ୍ତି ଏବଂ ଅଲ୍ଲାହ୍‌ଙ୍କ ବିଷୟରେ ଏଭଳି କଥା କୁହ ଯାହା ବିଷୟରେ ତୁମର ଜ୍ଞାନ ନାହିଁ ।”

୩୪. ପ୍ରତ୍ୟେକ ସମାଜ ପାଇଁ ଏକ ସମୟ ନିଶ୍ଚିତ କରାଯାଇଛି । ଯେତେବେଳେ ସେମାନଙ୍କର ସେହି ସମୟ ଆସିଯିବ, ସେମାନେ ସେଥିରୁ ମୁହୂର୍ତ୍ତଟିଏ ପଛକୁ ଫେରି ପାରିବେନାହିଁ କିମ୍ବା ଆଗକୁ ଯାଇ ପାରିବେନାହିଁ । ୩୫. ହେ ଆଦମଙ୍କ ସନ୍ତାନଗଣ ! (ତୁମମାନଙ୍କୁ କୁହା ଯାଇଥିଲା ଯେ) ଯଦି ତୁମମାନଙ୍କ ପାଖକୁ ତୁମରିମାନଙ୍କ ଭିତରୁ ବାର୍ତ୍ତାବହମାନେ ଆସନ୍ତି ଏବଂ ସେମାନେ ତୁମମାନଙ୍କୁ ଆମ୍ଭର ବାଣୀ ପଢ଼ି ଶୁଣାନ୍ତି, ତେବେ ଯେଉଁମାନେ (ଏହାକୁ ମାନି) କୁକର୍ମରୁ ନିବୃତ୍ତ ରହିବେ ଏବଂ ନିଜ ଆଚରଣ ସଂଶୋଧନ କରିନେବେ, ସେମାନଙ୍କ ପାଇଁ କୌଣସି ଭୟ ନାହିଁ କିମ୍ବା ସେମାନେ ଦୁଃଖ ଭୋଗିବେ ନାହିଁ । ୩୬. ଏବଂ ଯେଉଁମାନେ ଆମ୍ଭର ବାଣୀଗୁଡ଼ିକୁ ମିଥ୍ୟା ବୋଲି କହିବେ ଏବଂ ଅହଂକାର କରି ସେଥିରୁ ମୁହଁ ମୋଡ଼ିବେ, ସେମାନେ ନର୍କବାସୀ ହେବେ ଏବଂ ସେଥିରେ ସର୍ବଦା ରହିବେ । ୩୭. ପୁଣି ତା’ଠାରୁ ବଡ଼ ପାପୀ ଆଉ କିଏ ହେବ ଯିଏ ଅଲ୍ଲାହଙ୍କ ନାଁରେ ମିଥ୍ୟା ଗଢ଼େ ଏବଂ ତାଙ୍କ ବାଣୀକୁ ମିଥ୍ୟା ବୋଲି କହେ ? ଏଭଳି ଲୋକମାନଙ୍କ ଭାଗ୍ୟରେ ଯାହା ଲେଖା ଅଛି (ସଂସାରରେ) ସେମାନଙ୍କୁ ମିଳିଯିବ । ପୁଣି ଯେତେବେଳେ ଆମ୍ଭର ଦେବଦୂତମାନେ ସେମାନଙ୍କର ଆତ୍ମାକୁ ହରଣ କରିବାପାଇଁ ଯିବେ ଏବଂ ସେମାନଙ୍କୁ ପଚାରିବେ, “ତୁମେମାନେ ଅଲ୍ଲାହଙ୍କୁ ଛାଡ଼ି ଯେଉଁମାନଙ୍କୁ (କାର୍ଯ୍ୟସିଦ୍ଧି ପାଇଁ) ଡାକୁଥିଲ, ସେମାନେ କାହାନ୍ତି ?” ଏମାନେ କହିବେ, “ସେମାନେ ଆମକୁ ଛାଡ଼ି ଅନ୍ତର୍ଦ୍ଧାନ ହୋଇଗଲେ ।” ସେମାନେ ନିଜେ ସ୍ୱୀକାର କରିବେ ଯେ ସେମାନେ ନାସ୍ତିକ ଥିଲେ ।

୩୮. ଅଲ୍ଲାହ୍ କହିବେ, “ଯାଅ, ତୁମ ପୂର୍ବରୁ ଯେଉଁ ମାନବ ଓ ଜିନ୍‌ମାନଙ୍କର ଦଳ ନର୍କକୁ ଯାଇଛନ୍ତି, ତୁମେମାନେ ମଧ୍ୟ ସେମାନଙ୍କ ସହିତ ଯାଇ ରୁହ ।” ଯେତେବେଳେ କୌଣସି ଦଳ ନର୍କରେ ପ୍ରବେଶ କରିବ, ସେ (ପୂର୍ବରୁ

ପ୍ରବେଶ କରିଥିବା) ନିଜର ମିତ୍ର ଦଳକୁ ଧିକ୍କାର କରିବ ଏବଂ ଯେତେବେଳେ ସମସ୍ତେ ସେଠାରେ ଏକାଠି ହୋଇଯିବେ ସେତେବେଳେ ପଛରେ ଆସିଥିବା ଦଳଗୁଡିକ ପୂର୍ବରୁ ଆସିଥିବା ଦଳ ବିଷୟରେ କହିବେ, "ହେ ପ୍ରଭୁ! ଏହିମାନେ ଆମକୁ ପଥଭ୍ରଷ୍ଟ କରିଥିଲେ, ତେଣୁ ଏମାନଙ୍କୁ ଦୁଇଗୁଣ ନର୍କଦଣ୍ଡ ଦିଅ ।" (ଅଲ୍ଲାହ) ଉତ୍ତର ଦେବେ, "ତୁମ ସମସ୍ତଙ୍କୁ ଦୁଇଗୁଣ ଦଣ୍ଡ ମିଳିବ ମାତ୍ର ତୁମମାନେ ଏହା ଜାଣନାହିଁ ।" ୩୯. ପୂର୍ବରୁ ଆସିଥିବା ଦଳ ପରେ ଆସିଥିବା ଦଳକୁ କହିବ, "(ଯଦି ଆମେ ଦୋଷୀ) ତୁମେମାନେ ଆମଠାରୁ କେଉଁ ଗୁଣରେ ଭଲ ? ତେଣୁ ଯେମିତି କର୍ମ କରିଛ ତାହାର ପରିଣାମ ସ୍ୱରୂପ ଶାସ୍ତିର ମଜା ଚାଖ ।"

୪୦. ଯେଉଁମାନେ ଆମ୍ଭର ବାଣୀକୁ ମିଛ ବୋଲି କହିଲେ ଏବଂ ଅହଂକାରରେ ମୁହଁ ମୋଡ଼ିଲେ, ସେମାନଙ୍କ ପାଇଁ ସ୍ୱର୍ଗର ଦ୍ୱାର ଖୋଲିବନାହିଁ ଏବଂ ସେମାନେ ବୈକୁଣ୍ଠରେ ପ୍ରବେଶ କରିବା ସେହିପରି ସମ୍ଭବ ନୁହେଁ, ଯେପରି ଛୁଂଚିରନ୍ଧ୍ର ମଧ୍ୟରେ ଓଟର ପ୍ରବେଶ କରିବା ସମ୍ଭବ ନୁହେଁ । ଆମ୍ଭେ ଅପରାଧୀମାନଙ୍କୁ ଏହିପରି ଶାସ୍ତି ଦେଉ । ୪୧. ନର୍କ ସେମାନଙ୍କର ବିଛଣା ହେବ ଏବଂ ତାହାହିଁ ସେମାନଙ୍କର ଚଦର ହେବ । ପାପୀମାନଙ୍କୁ ଆମ୍ଭେ ଏହିପରି ଶାସ୍ତି ଦେଉ । ୪୨. (ଅନ୍ୟ ପକ୍ଷରେ) ଯେଉଁମାନେ ବିଶ୍ୱାସ କରନ୍ତି ଏବଂ ଭଲ କର୍ମ କରନ୍ତି, (ସେମାନେ ମନେ ରଖନ୍ତୁ ଯେ) ଆମ୍ଭେ କାହାରିକୁ ତା' ସାମର୍ଥ୍ୟଠାରୁ ଅଧିକ ଦାୟିତ୍ୱ ଦେଉନା । ଏଭଳି ଲୋକମାନେ ସ୍ୱର୍ଗରେ ବାସ କରିବେ ଏବଂ ସେଠାରେ ସର୍ବଦା ରହିବେ । ୪୩. ଆମ୍ଭେ ସେମାନଙ୍କ ମନରେ (ପରସ୍ପର ପ୍ରତି) ଥିବା ମଳିନତା ଦୂର କରିଦେବୁ । ସେମାନଙ୍କ ପାଦ ତଳେ ଝରଣା ବହି ଯାଉଥିବ ଏବଂ ସେମାନେ କହିବେ, "ଅଲ୍ଲାହଙ୍କୁ ଅଶେଷ ଧନ୍ୟବାଦ ଯିଏ ଆମକୁ ବାଟ କଢ଼ାଇ ଏଠାକୁ ନେଇଆସିଲେ । ଯଦି ସେ ବାଟ ଦେଖାଇ ନଥାଆନ୍ତେ, ଆମେ ଠିକ୍ ବାଟ ପାଇ ନଥାଆନ୍ତୁ । ଆମ ଈଶ୍ୱରଙ୍କ ବାର୍ତ୍ତାବହମାନେ ଆମ ପାଖକୁ ଅବଶ୍ୟ ସଦ୍‌ବାର୍ତ୍ତା ନେଇ ଯାଇଥିଲେ ।" ସେତେବେଳେ ସେମାନଙ୍କୁ କୁହାଯିବ, "ତୁମମାନଙ୍କ ଭଲ କର୍ମ ଯୋଗୁଁ ତୁମମାନଙ୍କୁ ଏହି ସ୍ୱର୍ଗର ଅଧିକାରୀ କରି ଦିଆଗଲା ।"

୪୪. ସ୍ୱର୍ଗବାସୀମାନେ ନର୍କବାସୀମାନଙ୍କୁ ସମ୍ବୋଧନ କରି କହିବେ "ଆମ ପାଳନକର୍ତ୍ତା ଆମକୁ ଯାହା ବଚନ ଦେଇଥିଲେ, ଆମେ ତାହା ସତ ହେବାର

ଦେଖିଲୁ । କ'ଣ ପ୍ରଭୁ ତୁମମାନଙ୍କୁ ଯାହା କହିଥିଲେ, ତାହା ସତ ହେଲା ?" ସେମାନେ ଉତ୍ତର ଦେବେ, "ହଁ" । ପୁଣି ସେମାନଙ୍କ ମଧ୍ୟରେ ଜଣେ ଉଦ୍‌ଘୋଷକ ଘୋଷଣା କରିବ, "ପାପିଷ୍ଠମାନଙ୍କୁ ଅଲ୍ଲାହ୍ ଧିକ୍କାର କରନ୍ତୁ, ୪୫. ଯେଉଁମାନେ ଅଲ୍ଲାହଙ୍କ ମାର୍ଗରେ ବାଧା ଦେଉଥିଲେ, ସେଥିରେ ଦୋଷ ବାହାର କରୁଥିଲେ ଏବଂ ପରଲୋକକୁ ମାନୁ ନଥିଲେ ।"

୪୬. ଉଭୟ (ସ୍ୱର୍ଗ ଓ ନର୍କ) ମଧ୍ୟରେ (ଆରାଫ୍ ନାମକ) ଏକ ପ୍ରାଚୀର ଥିବ ଏବଂ ଏହାର ଶୀର୍ଷ ଭାଗରେ କିଛି ଲୋକ ଥିବେ ଯେଉଁମାନେ ଉଭୟ ଗୋଷ୍ଠୀଙ୍କୁ ସେମାନଙ୍କ ଲକ୍ଷଣରୁ ଚହ୍ନିନେବେ । ସେମାନେ ସ୍ୱର୍ଗବାସୀମାନଙ୍କୁ ସମ୍ବୋଧନ କରି କହିବେ, "ତୁମମାନଙ୍କର ମଂଗଳ ହେଉ ।" ଏହି ଲୋକମାନେ ସ୍ୱର୍ଗରେ ପ୍ରବେଶ କରି ନଥିବେ ମାତ୍ର ଏହାର ଆଶା ରଖିଥିବେ । ୪୭. ଯେତେବେଳେ ସେମାନଙ୍କ ଦୃଷ୍ଟି ନର୍କବାସୀଙ୍କ ଉପରେ ପଡିବ, ସେମାନେ କହିବେ, "ହେ ପ୍ରଭୁ ! ଆମକୁ ଦୁରାଚାରୀମାନଙ୍କ ସହିତ ରଖନାହିଁ ।" ୪୮. ଆରାଫ୍‌ରେ ଥିବା ଏହି ଲୋକମାନେ ନାସ୍ତିକମାନଙ୍କୁ ସେମାନଙ୍କ ଲକ୍ଷଣରୁ ଚିହ୍ନିପାରି ସେମାନଙ୍କୁ କହିବେ, "ଆଜି, ନା ତୁମମାନଙ୍କର ଲୋକବଳ ତୁମମାନଙ୍କର କିଛି କାମରେ ଆସିଲା ନା ତୁମର ସ୍ୱାଭିମାନ । ୪୯. କ'ଣ ଏମାନେ ସେହି ଲୋକ ନୁହନ୍ତି ଯେଉଁମାନଙ୍କ ବିଷୟରେ ତୁମେମାନେ ରାଣ ଖାଇ କହୁଥିଲ ଯେ ଏମାନଙ୍କ ପ୍ରତି ଅଲ୍ଲାହ୍ ଆଦୌ ଦୟା କରିବେ ନାହିଁ ? (ଦେଖ, ସେଇମାନଙ୍କୁ ଆଜି କୁହାଗଲା) "ବୈକୁଣ୍ଠରେ ପ୍ରବେଶ କର । ତୁମମାନଙ୍କ ପାଇଁ କୌଣସି ଭୟ ନାହିଁ ବା ତୁମେମାନେ ଦୁଃଖ ଭୋଗିବ ନାହିଁ ।"

୫୦. ନର୍କବାସୀମାନେ ସ୍ୱର୍ଗବାସୀମାନଙ୍କୁ ଡାକ ପକାଇ କହିବେ, "ଆମ ଉପରେ କିଛି ପାଣି ଢାଳିଦିଅ କିମ୍ବା ଅଲ୍ଲାହ୍ ତୁମମାନଙ୍କୁ ଖାଇବାପିଇବା ପାଇଁ ଯାହା ଦେଇଛନ୍ତି, ସେଥିରୁ କିଛି ପକାଇ ଦିଅ ।" ସେମାନେ ଉତ୍ତର ଦେବେ, "ଅଲ୍ଲାହ୍ ଉଭୟ ଜିନିଷକୁ ନାସ୍ତିକମାନଙ୍କ ପାଇଁ ନିଷିଦ୍ଧ କରିଛନ୍ତି, ୫୧. ଯେଉଁମାନେ ସେମାନଙ୍କ ଧର୍ମକୁ ଖେଳତାମସା ମନେ କରିଥିଲେ ଏବଂ ପାର୍ଥିବ ଜୀବନ ଯେଉଁମାନଙ୍କୁ ମାୟାଗ୍ରସ୍ତ କରି ଦେଇଥିଲା ।" ତେଣୁ, ଯେମିତି ସେମାନେ ଆଜିର

ଏହି ଦିନର ସାକ୍ଷାତକୁ ଭୁଲି ଯାଇଥିଲେ ଏବଂ ଆମ୍ଭର ବାଣୀକୁ ପ୍ରତ୍ୟାଖ୍ୟାନ କରିଦେଇ ଥିଲେ, ସେମିତି ଆମ୍ଭେ ମଧ୍ୟ ଆଜି ସେମାନଙ୍କୁ ଭୁଲିଯିବୁ ।

୫୨. ବାସ୍ତବରେ ଆମ୍ଭେ ସେମାନଙ୍କୁ ଏଭଳି ଗ୍ରନ୍ଥଟିଏ ଆଣି ଦେଇଛୁ ଯେଉଁଥିରେ ଆମ୍ଭେ ନିଜ ଜ୍ଞାନରୁ ସବୁକଥା ବିଶଦ ଭାବରେ ବର୍ଣ୍ଣନା କରିଛୁ । ଯେଉଁମାନେ ବିଶ୍ୱାସ କରନ୍ତି, ସେମାନଙ୍କ ପାଇଁ ଏହା ମାର୍ଗଦର୍ଶନକାରୀ ଗ୍ରନ୍ଥ ତଥା (ପ୍ରଭୁଙ୍କର) କରୁଣା । ୫୩. ଏବେ କ'ଣ ସେମାନେ ଏହାର ପରିଣାମକୁ ଅପେକ୍ଷା କରୁଛନ୍ତି ? ଯେଉଁଦିନ ଏହାର ଅନ୍ତିମ ପରିଣାମ ପ୍ରକାଶ ପାଇବ, ସେଦିନ ଏହାକୁ ଉପେକ୍ଷା କରିଥିବା ଲୋକମାନେ କହିବେ, "ପ୍ରକୃତରେ ଆମ ଈଶ୍ୱରଙ୍କ ବାର୍ତ୍ତାବହମାନେ ସଦ୍‌ବାର୍ତ୍ତା ଦେଇଥିଲେ । ଏବେ କ'ଣ କେହି ମଧ୍ୟସ୍ଥି ଅଛି ଯିଏ ଆମ ପାଇଁ ସୁପାରିଶ କରି ଦିଅନ୍ତା ଅଥବା ଆମମାନଙ୍କୁ ଆଉଥରେ (ସଂସାରକୁ) ପଠାଇ ଦିଆଯାଆନ୍ତା, ଯାହାଫଳରେ ଆମେ ପୂର୍ବ ପରି କର୍ମ ନକରି ଭଲ କର୍ମ କରନ୍ତୁ ।" ବାସ୍ତବରେ ସେମାନେ ନିଜର କ୍ଷତି କଲେ । ଯେଉଁ ମିଥ୍ୟା ଈଶ୍ୱରମାନଙ୍କୁ ସେମାନେ ଗଢ଼ିଥିଲେ, ସେମାନେ ଏମାନଙ୍କୁ ଛାଡ଼ି ଅନ୍ତର୍ଦ୍ଧାନ ହୋଇଯିବେ ।

୫୪. ଅଲ୍ଲାହ୍ ହିଁ ତୁମମାନଙ୍କର ପାଳନକର୍ତ୍ତା ଯିଏ ପୃଥିବୀ ଓ ଆକାଶମଣ୍ଡଳକୁ ଛଅ ଦିନରେ ସୃଷ୍ଟି କଲେ ଏବଂ ପୁଣି ଦିବ୍ୟାସନରେ ଅଧିଷ୍ଠିତ ହେଲେ । ସେ ରାତିକୁ ଦିନ ଉପରେ ଘୋଡ଼ାଇ ଦିଅନ୍ତି ଏବଂ ଦିନ ଏହା ପଛରେ ଗୋଡ଼ାଉଥାଏ ଏବଂ ସୂର୍ଯ୍ୟ, ଚନ୍ଦ୍ର ଓ ନକ୍ଷତ୍ର ସମସ୍ତେ ତାଙ୍କରି ଆଜ୍ଞା ଅନୁସାରେ କାର୍ଯ୍ୟ କରୁଛନ୍ତି । ମନେରଖ ! ସୃଷ୍ଟି ତାଙ୍କରି ଏବଂ ଆଜ୍ଞା (ଦେବାର ଅଧିକାର) ମଧ୍ୟ ତାଙ୍କରି । ସର୍ବଲୋକଶ୍ୱର ଅଲ୍ଲାହ୍ ଅତ୍ୟନ୍ତ ମଂଗଳମୟ । ୫୫. ତୁମେମାନେ ଏକାନ୍ତରେ ବିନୀତ ଭାବରେ ନିଜ ପ୍ରଭୁଙ୍କୁ ଡାକ । ସେ ସୀମାଲଂଘନ କରୁଥିବା ଲୋକଙ୍କୁ ପସନ୍ଦ କରନ୍ତିନାହିଁ । ୫୬. ଧରାପୃଷ୍ଠରେ ଶାନ୍ତି ପ୍ରତିଷ୍ଠା ହେଲାପରେ ସେଥିରେ ଅଶାନ୍ତି ସୃଷ୍ଟି କରନାହିଁ । ତାଙ୍କୁ ଭୟ କର ଏବଂ ତାଙ୍କଠାରେ ଆଶା ରଖି ପ୍ରାର୍ଥନା କରୁଥାଅ । ଭଲ କର୍ମ କରୁଥିବା ଲୋକମାନଙ୍କ ପ୍ରତି ଅବଶ୍ୟ ଅଲ୍ଲାହଙ୍କର କରୁଣା ଥାଏ ।

୫୭. ସେ ହିଁ ବର୍ଷା ପୂର୍ବରୁ ଏହାର ଶୁଭସୂଚନା ଦେଇ ବାୟୁ ପ୍ରବାହିତ କରନ୍ତି । ପୁଣି ଯେତେବେଳେ ଏହି ବାୟୁ ଓଜନିଆ ବାଦଲଗୁଡ଼ିକୁ ବୋହିନିଏ,

ଆମ୍ଭେ ତାକୁ କୌଣସି ନିର୍ଜୀବ ଭୂଇଁ ଆଡ଼କୁ ନେଇଯାଉ । ତା'ପରେ ବାଦଲରୁ ଜଳବର୍ଷା କରୁ ଏବଂ ଏହି ଜଳଦ୍ୱାରା (ସେହି ନିର୍ଜୀବ ଭୂଇଁରୁ) ବିଭିନ୍ନ ପ୍ରକାରର ଫଳମୂଳ ଉତ୍ପନ୍ନ କରୁ । ଏହିପରି ଆମ୍ଭେ ମୃତମାନଙ୍କୁ ଜୀବିତ କରି (ଧରିତ୍ରୀ ମଧ୍ୟରୁ) ବାହାର କରିବୁ । ହୁଏତ ତୁମେମାନେ ଏଥିରୁ ଶିକ୍ଷାଲାଭ କରିବ ।

୫୮. ଯେଉଁ ଜମି ଭଲ, ତାହା ପ୍ରଭୁଙ୍କ ଆଜ୍ଞାରୁ ପ୍ରଚୁର ଫସଲ ଦିଏ ମାତ୍ର ଯେଉଁ ଜମି ଅନୁର୍ବର, ସେଥିରେ ଖୁବ୍ ଅଳ୍ପ ଫସଲ ହୁଏ । ଏହିପରି ଆମ୍ଭେ କୃତଜ୍ଞ ଲୋକମାନଙ୍କ ପାଇଁ ନିଜର ବାଣୀଗୁଡ଼ିକୁ ବିଭିନ୍ନ ଶୈଳୀରେ ବର୍ଣ୍ଣନା କରିଥାଉ ।

୫୯. ଆମ୍ଭେ ନୁହ୍‌ଙ୍କୁ ତାଙ୍କ ସଂପ୍ରଦାୟ ପାଖକୁ ପଠାଇଲୁ । ସେ ସେମାନଙ୍କୁ କହିଲେ, "ଭାଇମାନେ ! ଅଲ୍ଲାହଙ୍କର ଉପାସନା କର । ତାଙ୍କ ବ୍ୟତୀତ ତୁମମାନଙ୍କର କେହି ଈଶ୍ୱର ନାହାନ୍ତି । ମୋ'ର ଭୟ ହେଉଛି ଯେ ହୁଏତ ତୁମମାନଙ୍କ ଉପରେ ଦିନେ ଏକ ଭୟଙ୍କର ବିପଦ ପଡ଼ିବ ।" ୬୦. ତାଙ୍କ ସଂପ୍ରଦାୟର ମୁଖିଆମାନେ ଉତ୍ତର ଦେଲେ, "ଆମେ ଦେଖୁଛୁ ଯେ ତୁମେ ପୂରାପୂରି ପଥଭ୍ରଷ୍ଟ ହୋଇସାରିଛ ।" ୬୧. ନୁହ୍ ଉତ୍ତର ଦେଲେ, "ଭାଇମାନେ ! ମୁଁ ଆଦୌ ପଥଭ୍ରଷ୍ଟ ହୋଇନାହିଁ ବରଂ ମୁଁ ଜଗତପାଳକଙ୍କର ଜଣେ ବାର୍ତ୍ତାବହ । ୬୨. ମୁଁ ତୁମମାନଙ୍କୁ ଈଶ୍ୱରଙ୍କର ବାର୍ତ୍ତା ଦିଏ, ତୁମମାନଙ୍କର ମଂଗଳ ଚାହେଁ ଏବଂ ମୁଁ ଅଲ୍ଲାହ୍‌ଙ୍କଠାରୁ ଏଭଳି କଥା ଜାଣିଛି ଯାହା ତୁମମାନେ ଜାଣନାହିଁ । ୬୩. କ'ଣ ତୁମେମାନଙ୍କୁ ଆଶ୍ଚର୍ଯ୍ୟ ଲାଗୁଛି ଯେ ତୁମମାନଙ୍କ ପାଖକୁ ଏଭଳି ଜଣେ ବ୍ୟକ୍ତି ମାଧ୍ୟମରେ ଈଶ୍ୱରଙ୍କର ବାର୍ତ୍ତା ଆସିଲା ଯିଏ ତୁମରି ସଂପ୍ରଦାୟର ଏବଂ ଯିଏ ତୁମେମାନଙ୍କୁ ସାବଧାନ କରୁଛି ଯେ ଅଲ୍ଲାହଙ୍କୁ ଭୟ କର ଯାହାଫଳରେ ସେ ତୁମମାନଙ୍କ ପ୍ରତି କୃପା କରିବେ ?" ୬୪. କିନ୍ତୁ ସେମାନେ ତାଙ୍କୁ ମିଥ୍ୟାବାଦୀ ବୋଲି କହିଲେ । ତେଣୁ, ଆମ୍ଭେ ନୁହଙ୍କୁ ଏବଂ ନୌକାରେ ଥିବା ତାଙ୍କର ସାଥୀମାନଙ୍କୁ ଉଦ୍ଧାର କଲୁ ଏବଂ ଯେଉଁମାନେ ଆମ୍ଭର ନିଦର୍ଶନକୁ ମିଥ୍ୟା ବୋଲି କହିଥିଲେ, ସେମାନଙ୍କୁ ଜଳମଗ୍ନ କରିଦେଲୁ । ସେମାନେ ଅନ୍ଧ ଥିଲେ ।

୬୫. ଆମ୍ଭେ ଆଦ୍ ସଂପ୍ରଦାୟ ପାଖକୁ ସେମାନଙ୍କ ଭାଇ ହୁଦ୍‌ଙ୍କୁ (ବାର୍ତ୍ତାବହ ରୂପେ) ପଠାଇଲୁ । ସେ ସେମାନଙ୍କୁ କହିଲେ, "ଭାଇମାନେ ! ଅଲ୍ଲାହଙ୍କର ଉପାସନା କର । ତାଙ୍କ ବ୍ୟତୀତ ତୁମର ଅନ୍ୟ କେହି ଈଶ୍ୱର ନାହାନ୍ତି ।

କ'ଣ ତୁମେମାନେ (ତାଙ୍କୁ) ଭୟ କରିବନାହିଁ?" ୬୬. ତାଙ୍କ ସଂପ୍ରଦାୟର ମୁଖିଆଗଣ ଯେଉଁମାନେ ନାସ୍ତିକ ଥିଲେ, କହିଲେ,"ଆମେ ଦେଖୁଛୁ ଯେ ତୁମେ ଜଣେ ନିର୍ବୋଧ ବ୍ୟକ୍ତି ଏବଂ ଆମେ ତୁମକୁ ଜଣେ ମିଥ୍ୟାବାଦୀ ବୋଲି ମନେକରୁ। ୬୭. ସେ ଉତ୍ତର ଦେଲେ, "ଭାଇମାନେ! ମୁଁ ଆଦୌ ନିର୍ବୋଧ ନୁହେଁ ବରଂ ମୁଁ ଜଗତପାଳକଙ୍କ ଜଣେ ବାର୍ତ୍ତାବହ। ୬୮. ମୁଁ ତୁମମାନଙ୍କୁ ଈଶ୍ୱରଙ୍କର ବାର୍ତ୍ତା ଦେଉଛି ଏବଂ ମୁଁ ତୁମମାନଙ୍କର ହିତାକାଂକ୍ଷୀ ଯାହା ଉପରେ ତୁମେମାନେ ଭରସା କରିପାର। ୬୯. କ'ଣ ତୁମମାନଙ୍କୁ ଆଶ୍ଚର୍ଯ୍ୟ ଲାଗୁଛି ଯେ ତୁମରି ସଂପ୍ରଦାୟରରୁ ତୁମମାନଙ୍କ ପାଖକୁ ଜଣେ ବ୍ୟକ୍ତି ଈଶ୍ୱରଙ୍କର ବାର୍ତ୍ତା ନେଇ ଆସିଲା ଯିଏ ତୁମମାନଙ୍କୁ (ଆସନ୍ନ ବିପଦରୁ) ସାବଧାନ କରୁଛି? ମନେପକାଅ ଯେ କିପରି ଅଲ୍ଲାହ୍ ତୁମମାନଙ୍କୁ ନୁହଙ୍କ ସଂପ୍ରଦାୟ ପରେ ଉତ୍ତରାଧିକାରୀ କଲେ ଏବଂ ତୁମମାନଙ୍କୁ (ଅନ୍ୟମାନଙ୍କ ତୁଳନାରେ) ଖୁବ୍ ହୃଷ୍ଟପୃଷ୍ଟ କଲେ। ତେଣୁ ଅଲ୍ଲାହଙ୍କ ଉପକାରଗୁଡ଼ିକୁ ମନେରଖ, ତା'ହେଲେ ତୁମେମାନେ ସଫଳ ହେବ।" ୭୦. ସେମାନେ ଉତ୍ତର ଦେଲେ, "କ'ଣ ତୁମେ ଆମ ପାଖକୁ ଏଇଥିପାଇଁ ଆସିଛ ଯେ ଆମେ ମାତ୍ର ଜଣେ ଅଲ୍ଲାହଙ୍କର ଉପାସନା କରିବୁ ଆଉ ଆମ ବାପାଅଜାମାନେ ଯେଉଁମାନଙ୍କର ପୂଜା କରି ଆସିଛନ୍ତି ସେମାନଙ୍କୁ ଛାଡ଼ିଦେବୁ? ଯଦି ତୁମେ ସତ୍ୟବାନ, ତେବେ ଯାହାର ଧମକ ଆମକୁ ଦେଉଛ, ତାହା ନେଇଆସ।" ୭୧. ହୁଦ୍ କହିଲେ, "ଈଶ୍ୱର ତୁମମାନଙ୍କ ଉପରେ କୋପ କରିଛନ୍ତି ଏବଂ ତୁମମାନଙ୍କ ପାଇଁ ତାଙ୍କର ଶାସ୍ତି ସ୍ଥିର ହୋଇସାରିଛି। ତୁମେମାନେ (ତୁମ ଦେବାଦେବୀଙ୍କର) କେତୋଟି ନାଁ ବିଷୟରେ ମୋ' ସହିତ କାହିଁକି ଝଗଡ଼ା କରୁଛ ଯେଉଁ ନାଁଗୁଡ଼ିକୁ ତୁମେ ଓ ତୁମ ପୂର୍ବପୁରୁଷମାନେ ରଖିଦେଇଛ ଏବଂ ଯାହାର ସମର୍ଥନରେ ଅଲ୍ଲାହ୍ କୌଣସି ପ୍ରମାଣ ପଠାଇନାହାନ୍ତି? ତୁମେମାନେ ଅପେକ୍ଷା କର ଏବଂ ମୁଁ ମଧ୍ୟ ତୁମମାନଙ୍କ ସହିତ ଅପେକ୍ଷା କରୁଛି।" ୭୨. ପୁଣି ଆମ୍ଭେ ନିଜ କୃପାରୁ ହୁଦ୍ ଓ ତାଙ୍କ ସାଥୀମାନଙ୍କୁ ରକ୍ଷା କଲୁ ଏବଂ ଯେଉଁମାନେ ଆମ୍ଭର ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିଥିଲେ, ସେମାନଙ୍କର ମୂଳୋତ୍ପାଟନ କରିଦେଲୁ। ସେମାନେ ବିଶ୍ୱାସ କରି ନଥିଲେ।

୭୩. ସମୁଦ୍ ସଂପ୍ରଦାୟ ନିକଟକୁ ଆମ୍ଭେ ସେମାନଙ୍କ ଭାଇ ସ୍ୱାଲେହଙ୍କୁ ପଠାଇଲୁ। ସେ ସେମାନଙ୍କୁ କହିଲେ, "ଭାଇମାନେ! ଅଲ୍ଲାହଙ୍କର ଉପାସନା କର।

ତାଙ୍କ ବ୍ୟତୀତ ତୁମର ଅନ୍ୟ କେହି ଈଶ୍ୱର ନାହାନ୍ତି । ତୁମ ଈଶ୍ୱରଙ୍କଠାରୁ ତୁମମାନଙ୍କ ପାଖକୁ ଏହାର (ଏକ ଅଲୌକିକ) ପ୍ରମାଣ ଆସି ସାରିଛି, (ତାହା ହେଉଛି) ଏହି ମାଈ ଓଟ ଯାହା ତୁମମାନଙ୍କ ପାଇଁ ଏକ ଚମତ୍କାର । ତେଣୁ, ତାକୁ ଅଲ୍ଲାହଙ୍କ ଜମିରେ ଚରିବା ପାଇଁ ଛାଡ଼ିଦିଅ । ତାକୁ କୌଣସି ମନ୍ଦ ଉଦ୍ଦେଶ୍ୟରେ ସ୍ପର୍ଶ କରନାହିଁ, ନହେଲେ ତୁମମାନଙ୍କ ଉପରେ ଏକ ଭୟଙ୍କର ବିପଦ ପଡ଼ିବ । ୭୪. ଏବଂ ମନେ ପକାଅ ଯେ କିପରି ସେ ଆଦ୍‌ଙ୍କ ପରେ ତୁମମାନଙ୍କୁ ଉତ୍ତରାଧିକାରୀ କଲେ ଏବଂ ଦେଶରେ ଅବସ୍ଥାପିତ କଲେ । ତୁମେମାନେ ସମତଳ ଜାଗାରେ କୋଠା କରୁଛ ଏବଂ ପାହାଡ଼ କାଟି ଘର ତିଆରି କରୁଛ । ଅଲ୍ଲାହଙ୍କ ଉପକାରଗୁଡ଼ିକୁ ମନେରଖ ଏବଂ ଧରାପୃଷ୍ଠରେ ଅଶାନ୍ତି ସୃଷ୍ଟି କରନାହିଁ ।

୭୫. (ତା'ପରେ) ତାଙ୍କ ସଂପ୍ରଦାୟର ଅହଂକାରୀ ସର୍ଦ୍ଦାରମାନେ ଆସ୍ଥା ରଖିଥିବା ଦୁର୍ବଳ ଲୋକମାନଙ୍କୁ ପଚାରିଲେ, "କ'ଣ ସ୍ୱାଲେହଙ୍କୁ ଈଶ୍ୱର ପଠାଇଛନ୍ତି ବୋଲି ତୁମେମାନେ ବିଶ୍ୱାସ କରୁଛ ?" ସେମାନେ ଉତ୍ତର ଦେଲେ, "ନିଶ୍ଚୟ ! ସେ ଯେଉଁ ବାର୍ତ୍ତା ନେଇ ଆସିଛନ୍ତି, ଆମେ ତାକୁ ମାନୁଛୁ ।" ୭୬. ସେହି ଅହଙ୍କାରୀମାନେ କହିଲେ, "ତୁମମାନେ ଯାହାକୁ ବିଶ୍ୱାସ କରୁଛ, ଆମେ ତାହାକୁ ବିଶ୍ୱାସ କରୁନାହୁଁ ।" ୭୭. ପୁଣି ସେମାନେ ସେହି ଓଟଟିକୁ ମାରିଦେଲେ ଏବଂ ପ୍ରଭୁଙ୍କ ଆଜ୍ଞାର ଅବମାନନା କଲେ ଏବଂ କହିଲେ, "ହେ ସ୍ୱାଲେହ, ଯଦି ପ୍ରକୃତରେ ତୁମେ ଜଣେ ରସୁଲ, ତେବେ ଯେଉଁ ଦୈବୀଦଣ୍ଡର ଧମକ ଆମକୁ ଦେଉଛ, ତାହା ନେଇଆସ ।" ୭୮. ସୁତରାଂ ସେମାନେ ଏକ ଭୂମିକମ୍ପର ଶିକାର ହେଲେ ଏବଂ ନିଜନିଜ ଘରେ ମୁହଁମାଡ଼ି ପଡ଼ିରହିଲେ । ୭୯. ଏହାପରେ ସ୍ୱାଲେହ (ନିରାଶ ହୋଇ) ଏହା କହି ଚାଲିଗଲେ, "ଭାଇମାନେ ! ମୁଁ ମୋ' ପ୍ରଭୁଙ୍କ ବାର୍ତ୍ତା ତୁମମାନଙ୍କୁ ପହଁଚାଇ ଦେଲି ଏବଂ ତୁମମାନଙ୍କୁ ଭଲ ଉପଦେଶ ଦେଲି ମାତ୍ର (ଦୁଃଖର କଥା) ତୁମେମାନେ ନିଜର ହିତାକାଂକ୍ଷୀକୁ ପସନ୍ଦ କଲନାହିଁ ।"

୮୦. ଆମ୍ଭେ ଲୁତ୍‌ଙ୍କୁ (ବାର୍ତ୍ତାବହ କରି) ପଠାଇଥିଲୁ । ଯେତେବେଳେ ସେ ତାଙ୍କ ସଂପ୍ରଦାୟକୁ କହିଲେ, "ତୁମେମାନେ ଏମିତି ନିର୍ଲଜ କର୍ମ କରୁଛ ଯାହା ତୁମ ପୂର୍ବରୁ ସଂସାରରେ କେହି କରିନାହିଁ ? ୮୧. ତୁମେମାନେ କାମ ବାସନା

ଚରିତାର୍ଥ କରିବା ପାଇଁ ନାରୀମାନଙ୍କୁ ଛାଡ଼ି ପୁରୁଷମାନଙ୍କ ପାଖକୁ ଯାଉଛ ? ପ୍ରକୃତରେ ତୁମେମାନେ (ନୈତିକତାର) ସବୁ ସୀମା ଟପିଯାଇଛ ।" ୮୨. ତାଙ୍କ ସଂପ୍ରଦାୟଠାରୁ ଏହାର ଏହି ଉତ୍ତର ମିଳିଥିଲା ଯେ ଏମାନଙ୍କୁ ନିଜ ବସ୍ତିରୁ ତଡ଼ିଦିଅ । ଏମାନେ ନିଜକୁ ଭାରି ପବିତ୍ର ମନେ କରୁଛନ୍ତି । ୮୩. ପୁଣି ଆମ୍ଭେ ତାଙ୍କୁ ଏବଂ ତାଙ୍କ ପରିଜନମାନଙ୍କୁ (ବିପଦରୁ) ରକ୍ଷା କଲୁ କିନ୍ତୁ ତାଙ୍କର ପତ୍ନୀ ରହିଗଲା । ୮୪. ପୁଣି ଆମ୍ଭେ ସେମାନଙ୍କ ଉପରେ ଏକ ପ୍ରକାର (ଗନ୍ଧକଯୁକ୍ତ) ପଥର ବର୍ଷା କଲୁ । ଦେଖିନିଅ, ପାପୀମାନଙ୍କର କିଭଳି ପରିଣାମ ହେଲା ।

୮୫. ମଦ୍‌ୟନ୍‌ବାସୀଙ୍କ ପାଖକୁ ଆମ୍ଭେ ସେମାନଙ୍କ ଭାଇ ଶୁଏବଙ୍କୁ ପଠାଇଥିଲୁ । ସେ କହିଲେ, "ଭାଇମାନେ ! ଅଲ୍ଲାହଙ୍କର ଉପାସନା କର । ତାଙ୍କ ବ୍ୟତୀତ କେହି ତୁମର ଈଶ୍ୱର ନାହାନ୍ତି । ତୁମମାନଙ୍କ ପାଖକୁ ତୁମ ଈଶ୍ୱରଙ୍କଠାରୁ ସ୍ପଷ୍ଟ ପ୍ରମାଣ ଆସିସାରିଛି । ତେଣୁ, ମାପ ଓ ଓଜନ ଠିକ୍ ଭାବରେ କର ଏବଂ ଲୋକମାନଙ୍କୁ ସେମାନଙ୍କର ପ୍ରାପ୍ୟ ଦେଲାବେଳେ କମ୍ କରନାହିଁ ଏବଂ ଦେଶରେ ଶାନ୍ତି ପ୍ରତିଷ୍ଠା ହେଲା ପରେ ସେଠାରେ ଅଶାନ୍ତି ସୃଷ୍ଟି କରନାହିଁ । ଯଦି ତୁମେମାନେ ବିଶ୍ୱାସ କର, ତେବେ (ଜାଣିରଖ ଯେ) ଏହା ତୁମମାନଙ୍କ ପାଇଁ ଖୁବ୍ ଭଲ । ୮୬. ରାସ୍ତା ଉପରେ ଏଇଥିପାଇଁ ବସନାହିଁ ଯେ ସଦ୍‌ବିଶ୍ୱାସୀ ଲୋକମାନଙ୍କୁ ଧମକ ଦେବ ବା ଅଲ୍ଲାହଙ୍କ ମାର୍ଗରେ ବାଧା ସୃଷ୍ଟି କରିବ କିମ୍ବା ସେଥିରେ ଦୋଷ ବାହାର କରିବ । ମନେପକାଅ, ଯେତେବେଳେ ତୁମେମାନେ ସଂଖ୍ୟାରେ ଅଳ୍ପ ଥିଲ, ଅଲ୍ଲାହ୍ ତୁମମାନଙ୍କର ସଂଖ୍ୟା ବୃଦ୍ଧି କରିଥିଲେ । ଦେଖିନିଅ, ଅଶାନ୍ତି ସୃଷ୍ଟି କରୁଥିବା ଲୋକମାନଙ୍କର କି ପରିଣାମ ହେଲା । ୮୭. ମୁଁ ଯେଉଁ ବାର୍ତ୍ତା ନେଇ ଆସିଛି, ଯଦି ଏହାକୁ ତୁମମାନଙ୍କ ମଧ୍ୟରୁ କିଛି ଲୋକ ବିଶ୍ୱାସ କରୁଛନ୍ତି ଏବଂ ଆଉ କେତେକ ବିଶ୍ୱାସ କରୁ ନାହାନ୍ତି, ତେବେ ଆମମାନଙ୍କ ମଧ୍ୟରେ ଅଲ୍ଲାହଙ୍କ ନିଷ୍ପତ୍ତି ହେବା ପର୍ଯ୍ୟନ୍ତ ଧୈର୍ଯ୍ୟ ଧର । ସେ ସର୍ବୋତ୍ତମ ବିଚାରକ ।"

୮୮. ତାଙ୍କ ସଂପ୍ରଦାୟର ଅହଂକାରୀ ସର୍ଦ୍ଦାରମାନେ କହିଲେ, "ହେ ଶୁଏବ, ତୁମେ ଓ ତୁମକୁ ମାନୁଥିବା ତୁମର ସାଥୀମାନେ ଆମ ଧର୍ମକୁ ଫେରିଆସ, ନହେଲେ ଆମେ ତୁମମାନଙ୍କୁ ବସ୍ତିରୁ ବାହାର କରିଦେବୁ ।" ସେ ଉତ୍ତର ଦେଲେ,

"କ'ଣ ଆମର ଇଚ୍ଛା ନଥିଲେ ମଧ୍ୟ (ଆମକୁ ବାହାର କରିଦେବ) ? ୮୯. ଅଲ୍ଲାହ୍ ଆମକୁ ତୁମ ଧର୍ମରୁ ମୁକ୍ତି ଦେଲାପରେ ଯଦି ଆମେ ପୁଣି ସେହି ଧର୍ମକୁ ଫେରିଯାଉ, ତେବେ ଆମେ ଅଲ୍ଲାହଙ୍କ ନାଁରେ ଏକ ମିଥ୍ୟା ଆରୋପ କରିବୁ । ଆମମାନଙ୍କ ପକ୍ଷରେ ତୁମ ଧର୍ମକୁ ଫେରିବା ଆଦୌ ସମ୍ଭବ ନୁହେଁ କିନ୍ତୁ ଯଦି ଏହା ଆମ ପ୍ରଭୁ ଅଲ୍ଲାହଙ୍କର ଇଚ୍ଛା ଥାଏ ତେବେ ଭିନ୍ନ କଥା । ଈଶ୍ୱରଙ୍କ ଜ୍ଞାନ ପ୍ରତ୍ୟେକ ସୃଷ୍ଟିକୁ ଘେରିରହିଛି । ଅଲ୍ଲାହଙ୍କ ଉପରେ ଆମେ ଭରସା କରିଛୁ । ହେ ପ୍ରଭୁ ! ନ୍ୟାୟସଂଗତ ଭାବରେ ଆମର ଏବଂ ଆମ ସଂପ୍ରଦାୟର ଏକ ନିଷ୍ପତ୍ତି କରିଦିଅ । ତୁମେ ସର୍ବୋତ୍ତମ ବିଚାରକ ।" ୯୦. ତାଙ୍କ ସଂପ୍ରଦାୟର ନାସ୍ତିକ ସର୍ଦ୍ଦାରମାନେ କହିଲେ "ଭାଇମାନେ ! ଯଦି ଶୁଏବଙ୍କ କଥା ମାନିବ ତେବେ ତୁମମାନଙ୍କର ସର୍ବନାଶ ହୋଇଯିବ ।" ୯୧. ସୁତରାଂ, ସେମାନେ ଏକ ଭୂମିକମ୍ପର ଶିକାର ହୋଇଗଲେ ଏବଂ ନିଜନିଜ ଘରେ ମୁହଁମାଡ଼ି ପଡ଼ିରହିଲେ । ୯୨. ଯେଉଁମାନେ ଶୁଏବଙ୍କୁ ମିଥ୍ୟାବାଦୀ ବୋଲି କହିଥିଲେ ସେମାନେ ଏମିତି ନିପାତ ହୋଇଗଲେ ସତେଯେମିତି ସେଠାରେ କେବେ ବସବାସ କରି ନଥିଲେ । ଶୁଏବଙ୍କୁ ପ୍ରତ୍ୟାଖ୍ୟାନ କରିଥିବା ଲୋକମାନେ କ୍ଷତିଗ୍ରସ୍ତ ହେଲେ । ୯୩. ଶୁଏବ ଏହା କହି ସେଠାରୁ ବାହାରିଗଲେ, "ଭାଇମାନେ ! ମୁଁ ତୁମମାନଙ୍କୁ ମୋ' ପାଳନକର୍ତ୍ତାଙ୍କର ବାର୍ତ୍ତା ଦେଇଦେଇଛି ଏବଂ ମୁଁ ତୁମମାନଙ୍କର ମଙ୍ଗଳ ଚାହୁଁଥିଲି । ଏବେ କୃତଘ୍ନ ଲୋକମାନଙ୍କ ପାଇଁ ମୁଁ କାହିଁକି ଦୁଃଖ କରିବି ?"

୯୪. ଆମ୍ଭେ ଯେଉଁ ସହରକୁ ବାର୍ତ୍ତାବହ ପଠାଇଲୁ, ସେଠାର ବାସିନ୍ଦାମାନେ ବିନମ୍ର ହେବେ ବୋଲି ଆମ୍ଭେ ସେମାନଙ୍କୁ ଅଭାବଅନାଟନ ଏବଂ ଦୁଃଖକଷ୍ଟରେ ପୀଡ଼ିତ କଲୁ । ୯୫. ପୁଣି ଆମ୍ଭେ ସେମାନଙ୍କର ଦୁଃଖକୁ ସୁଖରେ ପରିବର୍ତ୍ତନ କରିଦେଲୁ ଏବଂ ଯେତେବେଳେ ସେମାନେ ଖୁବ୍ ଉନ୍ନତି କଲେ ଆଉ କହିଲେ, "ଏଇଭଳି ଦୁଃଖସୁଖ ତ ଆମ ବାପଅଜାମାନେ ମଧ୍ୟ ଭୋଗିଛନ୍ତି", ସେତେବେଳେ ଆମ୍ଭେ ସେମାନଙ୍କୁ ହଠାତ୍ ଦଣ୍ଡ ଦେଲୁ ଏବଂ ସେମାନେ କିଛି ବୁଝି ପାରି ନଥିଲେ । ୯୬. ଯଦି ସେହି ସହରଗୁଡ଼ିକର ବାସିନ୍ଦାମାନେ ବିଶ୍ୱାସ କରନ୍ତେ ଏବଂ ସଦାଚାରୀ ହୁଅନ୍ତେ, ତେବେ ଆମ୍ଭେ ସେମାନଙ୍କ ପାଇଁ ଧରିତ୍ରୀ ଓ ଆକାଶରେ ଥିବା ସୁଖସମୃଦ୍ଧିର ଦ୍ୱାର ଖୋଲିଦିଅନ୍ତୁ । ମାତ୍ର ସେମାନେ (ସତ୍ୟକୁ) ପ୍ରତ୍ୟାଖ୍ୟାନ

କଲେ । ତେଣୁ, ସେମାନଙ୍କ କୁକର୍ମ ଯୋଗୁଁ ଆମ୍ଭେ ସେମାନଙ୍କୁ ଦଣ୍ଡ ଦେଲୁ । ୯୭. କ'ଣ ଏହି ସହରବାସୀମାନଙ୍କୁ ଏହାର ଭୟ ନାହିଁ ଯେ ହୁଏତ ରାତିରେ ଶୋଇଥିବା ଅବସ୍ଥାରେ ଆମ୍ଭ ଆଜ୍ଞାରୁ ସେମାନଙ୍କ ଉପରେ କୌଣସି ବିପଦ ଆସିଯିବ? ୯୮. ଅଥବା କ'ଣ ସହରବାସୀମାନଙ୍କୁ ଏହାର ଭୟ ନାହିଁ ଯେ ହୁଏତ ଆମ୍ଭେ ପଠାଇଥିବା ବିପଦ ସେମାନଙ୍କ ଉପରେ ଦ୍ୱିପହର ସମୟରେ ଆସିଯିବ ଯେତେବେଳେ ସେମାନେ ଖେଳତାମସାରେ ମାତିଥିବେ? ୯୯. କ'ଣ ଅଲ୍ଲାହଙ୍କ ଯୋଜନା ବିଷୟରେ ସେମାନେ ନିଶ୍ଚିନ୍ତ ହୋଇ ଯାଇଛନ୍ତି? ଅଲ୍ଲାହଙ୍କ ଯୋଜନା ବିଷୟରେ ଯେଉଁମାନେ ନିଶ୍ଚିନ୍ତ ହୋଇଯାଆନ୍ତି, ସେମାନେ କ୍ଷତିଗ୍ରସ୍ତ ହୁଅନ୍ତି ।

୧୦୦. ଯେଉଁମାନେ କୌଣସି ଅଂଚଳର ବାସିନ୍ଦାମାନଙ୍କର ମୃତ୍ୟୁ ପରେ ତାହାର ମାଲିକ ହୋଇ ଯାଇଛନ୍ତି, କ'ଣ ସେମାନଙ୍କୁ ଏଥିରୁ କିଛି ଶିକ୍ଷା ମିଳୁନାହିଁ ଯେ ଆମ୍ଭେ ଚାହିଁଲେ ସେମାନଙ୍କୁ ମଧ୍ୟ ପାପ ଯୋଗୁଁ ଦଣ୍ଡ ଦେଇପାରିବୁ କିମ୍ବା ସେମାନଙ୍କ ହୃଦୟର ଦ୍ୱାର ବନ୍ଦ କରିଦେବୁ ଯାହାଫଳରେ ସେମାନେ କିଛି ଶୁଣି ପାରିବେ ନାହିଁ? ୧୦୧. ଏଗୁଡ଼ିକ ସେହି ଗାଁ (ବା ସହର), ଯାହାର କେତେକ ଘଟଣା ଆମ୍ଭେ ତୁମକୁ ଶୁଣାଉଛୁ । ବାସ୍ତବରେ ସେମାନଙ୍କ ପାଖକୁ ବାର୍ତ୍ତାବହମାନେ ସ୍ପଷ୍ଟ ପ୍ରମାଣ ନେଇ ଯାଇଥିଲେ କିନ୍ତୁ ଯେଉଁ କଥାକୁ ସେମାନେ ଥରେ ଅସ୍ୱୀକାର କରି ସାରିଥିଲେ, ପୁଣିଥରେ ସେହି କଥାକୁ ମାନିବାକୁ ରାଜି ହେଲେନାହିଁ । ଏହିପରି ଅଲ୍ଲାହ୍ ସତ୍ୟକୁ ଅସ୍ୱୀକାର କରୁଥିବା ଲୋକମାନଙ୍କ ହୃଦୟର ଦ୍ୱାର ବନ୍ଦ କରିଦିଅନ୍ତି । ୧୦୨. ଆମ୍ଭେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକଙ୍କଠାରେ ବଚନବଦ୍ଧତା ଦେଖିଲୁ ନାହିଁ ବରଂ ଅଧିକାଂଶଙ୍କୁ ଭ୍ରଷ୍ଟାଚାରୀ ଦେଖିଲୁ ।

୧୦୩. ଏମାନଙ୍କ ପରେ ଆମ୍ଭେ ମୁ'ସାଙ୍କୁ ଚମତ୍କାର ଦେଇ ଫିରଔନ୍ (ଅର୍ଥାତ୍ ଫ୍ୟାରୋ) ଏବଂ ତା' ପାରିଷଦମାନଙ୍କ ପାଖକୁ ପଠାଇଲୁ କିନ୍ତୁ ସେମାନେ ତାଙ୍କ ପ୍ରତି ଅତ୍ୟାଚାର କଲେ । ଏବେ ଦେଖ, ଦୁଷ୍ଟମାନଙ୍କର କି ପରିଣାମ ହେଲା । ୧୦୪. ମୁ'ସା କହିଲେ, "ହେ ଫିରଔନ୍ ! ମୁଁ ଜଗତପାଳକଙ୍କର ଜଣେ ବାର୍ତ୍ତାବହ । ୧୦୫. ଏହା ମୋ'ର କର୍ତ୍ତବ୍ୟ ଯେ ଅଲ୍ଲାହଙ୍କ ବିଷୟରେ ମୁଁ ଯାହା କହିବି, ସତ କହିବି । ମୁଁ ତୁମମାନଙ୍କ ପାଖକୁ ଈଶ୍ୱରଙ୍କଠାରୁ ସ୍ପଷ୍ଟ ପ୍ରମାଣ ନେଇ

ଆସିଛି । ତେଣୁ, ଇସ୍ରାଇଲ ବଂଶଜମାନଙ୍କୁ ମୋ' ସହିତ ଯିବାକୁ ଦିଅ ।" ୧୦୬. ଫିରଔନ୍ କହିଲା, "ଯଦି ତୁମେ ସତ କହୁଛ ଯେ କୌଣସି ଚମତ୍କାର ନେଇ ଆସିଛ, ତା'ହେଲେ ଦେଖାଅ । ୧୦୭. ତେଣୁ, ମୁ'ସା ନିଜର ଲାଠି ତଳେ ପକାଇ ଦେଲେ ଏବଂ (ଚାହୁଁଚାହୁଁ) ତାହା ଏକ ଜିଅନ୍ତା ଅଜଗର ସାପରେ ପରିଣତ ହୋଇଗଲା । ୧୦୮. ତା'ପରେ ସେ ନିଜର ହାତ ବାହାରକୁ କାଢ଼ିଲେ ଯାହା ଦେଖଣାହାରୀଙ୍କୁ ଉଜ୍ୱଳ ଦେଖାଗଲା । ୧୦୯. ଫିରଔନ୍ ସମ୍ପ୍ରଦାୟର ମୁଖିଆମାନେ (ପରସ୍ପରକୁ) କହିଲେ, "ଏହି ବ୍ୟକ୍ତି ଜଣେ କୁଶଳୀ ଯାଦୁକର ।" ୧୧୦. ସେ ତୁମମାନଙ୍କୁ ତୁମ ଜନ୍ମମାଟିରୁ ବାହାର କରିବାକୁ ଚାହୁଁଛି । ତୁମମାନଙ୍କର ଏଥିରେ ମତ କ'ଣ ?" ୧୧୧. ସେମାନେ (ଫିରଔନକୁ) କହିଲେ, "ମୁ'ସା ଓ ତାଙ୍କ ଭାଇଙ୍କ ବିଷୟ କିଛି ସମୟ ପାଇଁ ସ୍ଥଗିତ ରଖନ୍ତୁ ଏବଂ ସବୁ ସହରଗୁଡିକରେ ଘୋଷଣା କରିବା ପାଇଁ ଲୋକ ପଠାନ୍ତୁ, ୧୧୨. ଯେପରିକି ସେମାନେ ସବୁ କୁଶଳୀ ଯାଦୁକରମାନଙ୍କୁ ଆପଣଙ୍କ ପାଖକୁ ନେଇଆସନ୍ତୁ ।"

୧୧୩. (ସୁତରାଂ ଏହିପରି ହେଲା) ଏବଂ ଯାଦୁକରମାନେ ଫିରଔନ୍ ସମ୍ମୁଖରେ ଉପସ୍ଥିତ ହେଲେ ଏବଂ ତାକୁ ପଚାରିଲେ, "ଯଦି ଆମେ ଜିତିଯାଉ ତେବେ ଆମମାନଙ୍କୁ କ'ଣ କିଛି ପୁରସ୍କାର ମିଳିବ ?" ୧୧୪. ସେ ଉତ୍ତର ଦେଲା, "ନିଶ୍ଚୟ ମିଳିବ ଏବଂ ତୁମେମାନେ ମୋ'ର ପାଖଲୋକ ମଧ୍ୟ ହୋଇଯିବ ।" ୧୧୫. ସେମାନେ (ମୁ'ସାଙ୍କୁ) କହିଲେ, "ହେ ମୁ'ସା! ତୁମେ ପ୍ରଥମେ ଦେଖାଇବା ଆରମ୍ଭ କରିବ ବା ଆମେ କରିବୁ? ୧୧୬. (ମୁ'ସା) ଉତ୍ତର ଦେଲେ, "ତୁମେମାନେ ପ୍ରଥମେ ଆରମ୍ଭ କର ।" ପୁଣି ସେମାନେ (ନିଜନିଜର ଲାଠି ଓ ଦଉଡ଼ି) ପକାଇଲେ ଏବଂ ଲୋକମାନଙ୍କର ଚକ୍ଷୁବନ୍ଧନ କରି ସେମାନଙ୍କ ମନରେ ଭୟ ସଂଚାର କରିଦେଲେ । ସେମାନେ ଏକ ବଡ଼ ଯାଦୁଖେଳ ପ୍ରଦର୍ଶନ କଲେ । ୧୧୭. ଆମ୍ଭେ ମୁ'ସାଙ୍କୁ ଦୈବବାଣୀ କଲୁ, "ନିଜର ବାଡ଼ିଟିକୁ ତଳେ ପକାଇଦିଅ ।" ପୁଣି ଦେଖୁଦେଖୁ ଏହା ଯାଦୁକରମାନଙ୍କର ମାୟାର ସାପଗୁଡ଼ିକୁ ଗିଳିବା ଆରମ୍ଭ କରିଦେଲା । ୧୧୮. ତେଣୁ ସତ କ'ଣ ଜଣା ପଡ଼ିଗଲା ଏବଂ ସେମାନଙ୍କର କୃତିଗୁଡ଼ିକ ମିଛ ପ୍ରମାଣିତ ହେଲା । ୧୧୯. ସେମାନେ ପରାଜିତ ଏବଂ ଅପମାନିତ ହେଲେ । ୧୨୦. ସୁତରାଂ, ସେହି ଯାଦୁକରମାନେ ଅଲ୍ଲାହଙ୍କୁ ଭୂମିଷ୍ଠ ପ୍ରଣାମ କଲେ, ୧୨୧. ଏବଂ କହିଲେ,

"ଆମେ ସମଗ୍ର ଜଗତର ପାଳନକର୍ତ୍ତାଙ୍କୁ ବିଶ୍ୱାସ କଲୁ, ୧୨୨. ଯିଏ ମୁ'ସାଙ୍କର ଏବଂ ହାରୁନଙ୍କର ମଧ୍ୟ ଈଶ୍ୱର ।

୧୨୩. ଫିରଔନ କହିଲା, "ତୁମେମାନେ ମୋ' ବିନା ଅନୁମତିରେ ଏହି ଲୋକଙ୍କୁ କାହିଁକି ମାନିଲ? ତୁମେମାନେ ନିଶ୍ଚୟ ନଗରବାସୀଙ୍କୁ ଏଠାରୁ ତଡ଼ିବା ପାଇଁ ମିଳିମିଶି ଷଡ଼ଯନ୍ତ୍ର କରିଛ । ଠିକ୍ ଅଛି, ଖୁବ୍‌ଶୀଘ୍ର ଏହାର ପରିଣାମ ଦେଖିବ ।" ୧୨୪. ମୁଁ ପ୍ରଥମେ ତୁମମାନଙ୍କ ହାତ ଓ ଗୋଡ଼ ବିପରୀତ ଦିଗରୁ କାଟିବି ଏବଂ ତା'ପରେ ତୁମମାନଙ୍କୁ ଶୂଳି ଦେବି ।" ୧୨୫. ସେମାନେ ଉତ୍ତର ଦେଲେ, "ଆମେମାନେ (ମରିଯିବା ପରେ) ଆମ ପ୍ରଭୁଙ୍କ ନିକଟକୁହିଁ ଫେରିବୁ । ୧୨୬. କ'ଣ ତୁମେ ଆମଠାରୁ ଏହାର ପ୍ରତିଶୋଧ ନେଉଛ ଯେ ଆମେ ଈଶ୍ୱରଙ୍କଠାରୁ ଆସିଥିବା ପ୍ରମାଣ ଦେଖିବା ପରେ ତାହାକୁ ବିଶ୍ୱାସ କଲୁ? ହେ ପାଳନକର୍ତ୍ତା! ଆମମାନଙ୍କୁ ଧୈର୍ଯ୍ୟ ଦିଅ ଏବଂ ଆମମାନଙ୍କୁ ମୁସଲିମ୍ (ଅର୍ଥାତ୍ ତୁମର ଆଜ୍ଞାବହ) ଥିବା ଅବସ୍ଥାରେ ମୃତ୍ୟୁ ଦିଅ ।"

୧୨୭. ଫିରଔନ ସଂପ୍ରଦାୟର ମୁଖିଆମାନେ ତାକୁ କହିଲେ, "କ'ଣ ତୁମେ ମୁ'ସା ଓ ତାଙ୍କ ଲୋକମାନଙ୍କୁ ସ୍ୱତନ୍ତ୍ର ଛାଡ଼ିଦେବ ଯେ ସେମାନେ ଦେଶରେ ଅଶାନ୍ତି ସୃଷ୍ଟି କରନ୍ତୁ ଏବଂ ତୁମକୁ ଓ ତୁମର ଆରାଧ୍ୟମାନଙ୍କୁ ପରିତ୍ୟାଗ କରିଦିଅନ୍ତୁ?" ସେ ଉତ୍ତର ଦେଲା, "ମୁଁ ସେମାନଙ୍କ ପୁତ୍ରମାନଙ୍କୁ ହତ୍ୟା କରିବି ଏବଂ କନ୍ୟାମାନଙ୍କୁ ଜୀବିତ ରଖିବି । ସେମାନଙ୍କ ଉପରେ ମୋ'ର ଅଗାଧ କ୍ଷମତା ଅଛି ।" ୧୨୮. ମୁ'ସା ନିଜର ଲୋକମାନଙ୍କୁ କହିଲେ,"ଅଲ୍ଲାହଙ୍କର ସାହାଯ୍ୟ ଭିକ୍ଷା କର ଏବଂ ଧୈର୍ଯ୍ୟ ଧର । ଏହି ପୃଥିବୀ ଅଲ୍ଲାହଙ୍କର । ସେ ନିଜ ସେବକମାନଙ୍କ ମଧ୍ୟରୁ ଯାହାକୁ ଚାହାନ୍ତି ତାକୁ ଏହାର ଅଧିକାରୀ କରିଦିଅନ୍ତି । ଶେଷରେ ସଦାଚାରୀ ଲୋକମାନଙ୍କୁ ହିଁ ସଫଳତା ମିଳେ ।" ୧୨୯. ସେମାନେ କହିଲେ, "ତୁମେ ଆସିବା ପୂର୍ବରୁ ଆମକୁ ନିର୍ଯ୍ୟାତନା ଦିଆଯାଉଥିଲା ଏବଂ ତୁମେ ଆସିବା ପରେ ମଧ୍ୟ ନିର୍ଯ୍ୟାତନା ଦିଆଯାଉଛି ।" ମୁ'ସା ଉତ୍ତର ଦେଲେ, "ତୁମମାନଙ୍କ ପ୍ରଭୁ ତୁମ ଶତ୍ରୁମାନଙ୍କୁ ଶୀଘ୍ର ଧ୍ୱଂସ କରିବେ ଏବଂ ଦେଶରେ ତୁମମାନଙ୍କୁ କ୍ଷମତା ଦେଇ ଦେଖିବେ ଯେ ତୁମେମାନେ କିଭଳି କର୍ମ କରୁଛ ।"

୧୩୦. ଆମ୍ଭେ ଫିରଔନ ସଂପ୍ରଦାୟର ଲୋକମାନଙ୍କୁ ଅନେକ ବର୍ଷ ପର୍ଯ୍ୟନ୍ତ ଦୁର୍ଭିକ୍ଷ ଓ ଫଳହାନୀ ଦ୍ୱାରା ଦଣ୍ଡିତ କରିଥିଲୁ ଯେପରିକି ସେମାନଙ୍କୁ ଶିକ୍ଷା ମିଳିବ। ୧୩୧. ମାତ୍ର ଯେତେବେଳେ ସେମାନଙ୍କର ଭଲ ସମୟ ଆସୁଥିଲା, ସେମାନେ କହୁଥିଲେ ଯେ ଆମେ ଏହାର ଯୋଗ୍ୟ (କାରଣ ଏହା ଆମ ପରିଶ୍ରମର ଫଳ) ଏବଂ ଯେତେବେଳେ ଖରାପ ସମୟ ଆସୁଥିଲା, ସେମାନେ ଏଥିପାଇଁ ମୁ'ସା ଓ ତାଙ୍କ ସାଥିମାନଙ୍କୁ ଅଶୁଭ ମାନୁଥିଲେ। ମନେରଖ, ଅଲ୍ଲାହଙ୍କ ଦୃଷ୍ଟିରେ ସେଇମାନେ ଅଶୁଭ ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଏହା ଜାଣନ୍ତିନାହିଁ। ୧୩୨. ଏବଂ ସେମାନେ ମୁ'ସାଙ୍କୁ କହୁଥିଲେ, "ତୁମେ ଆମମାନଙ୍କୁ ଯାଦୁବିଦ୍ୟା ଦ୍ୱାରା ପ୍ରଭାବିତ କରିବାପାଇଁ ଯେମିତି ଚମତ୍କାର ଆଣିଲେ ସୁଦ୍ଧା ଆମେ ତୁମ କଥା ମାନିବୁନାହିଁ।" ୧୩୩. ପୁଣି ଆମ୍ଭେ ସେମାନଙ୍କୁ ଦଣ୍ଡ ଦେବାପାଇଁ ବାତ୍ୟା, ପଙ୍ଗପାଳ, ଉକ୍କୁଣୀ, ବେଙ୍ଗ ଏବଂ ରକ୍ତ, ପଠାଇଲୁ ଯାହା ଗୋଟିଏ ଗୋଟିଏ ପରିଷ୍କାର ନିଦର୍ଶନ ଥିଲା। ମାତ୍ର ସେମାନେ ଅହଙ୍କାର କଲେ। ସେମାନେ ପାପୀ ଥିଲେ। ୧୩୪. ଯେତେବେଳେ ସେମାନଙ୍କ ଉପରେ କୌଣସି ବିପଦ ଆସୁଥିଲା, ସେମାନେ କହୁଥିଲେ,"ହେ ମୁ'ସା! ତୁମ ଈଶ୍ୱର ତୁମକୁ ଦେଇଥିବା ବଚନର ଦ୍ୱାହି ଦେଇ ତାଙ୍କଠାରେ ଆମପାଇଁ ପ୍ରାର୍ଥନା କର। ଯଦି ତୁମେ ଆମର ଏହି ବିପଦ ଦୂର କରିଦିଅ, ତେବେ ଆମେ ନିଶ୍ଚୟ ତୁମକୁ ମାନିନେବୁ ଏବଂ ଇସ୍ରାଇଲ ବଂଶଧରମାନଙ୍କୁ ତୁମ ସହିତ ପଠାଇଦେବୁ।" ୧୩୫. ପୁଣି ଯେତିକି ସମୟ ସେମାନଙ୍କର ଭୋଗିବାର ଥିଲା ତାହା ଭୋଗି ସାରିବା ପରେ ଯେତେବେଳେ ଆମ୍ଭେ ଦଣ୍ଡ ସ୍ଥଗିତ କରି ଦେଉଥିଲୁ, ସେମାନେ ପୁଣି ନିଜ କଥାରୁ ଫେରି ଯାଉଥିଲେ। ୧୩୬. ଆମ୍ଭେ ସେମାନଙ୍କଠାରୁ ପ୍ରତିଶୋଧ ନେଲୁ ଏବଂ ସେମାନଙ୍କୁ ସମୁଦ୍ରରେ ବୁଡ଼ାଇଦେଲୁ କାରଣ ସେମାନେ ଆମ୍ଭର ନିଦର୍ଶନଗୁଡ଼ିକୁ ମିଥ୍ୟା ବୋଲି କହିଲେ ଏବଂ ସେଗୁଡ଼ିକୁ ଭ୍ରୂକ୍ଷେପ କଲେନାହିଁ। ୧୩୭. ଏବଂ ଯେଉଁମାନଙ୍କୁ ଦୁର୍ବଳ ମନେ କରାଯାଉଥିଲା, ଆମ୍ଭେ ସେମାନଙ୍କୁ ସେହି ଅଂଚଳରେ ପୁର୍ବ ଓ ପଶ୍ଚିମର ଅଧିକାରୀ କରିଦେଲୁ ଯେଉଁଠାରେ ଆମ୍ଭର କରୁଣା ବର୍ଷା ହେଉଥିଲା। ଇସ୍ରାଇଲଙ୍କ ବଂଶଧରମାନେ ଧୈର୍ଯ୍ୟ ଅବଲମ୍ବନ କରିଥିବା ଯୋଗୁଁ ତୁମ ଈଶ୍ୱରଙ୍କର ଶୁଭ

ପ୍ରତିଶ୍ରୁତି ପୁରଣ ହେଲା ଏବଂ ଫିରଔନ ଓ ତା' ସଂପ୍ରଦୟର ଲୋକମାନେ ଯାହା କୋଠାବାଡ଼ି ଓ ବାଡ଼ିବଗିଚା ଆଦି କରିଥିଲେ, ସବୁ ଆମ୍ଭେ ଧୂଳିସାତ୍ କରିଦେଲୁ ।

୧୩୮. ଇସ୍ରାଇଲଙ୍କ ବଂଶଧରମାନଙ୍କୁ ଆମ୍ଭେ ସମୁଦ୍ର ପାରି କରିଦେଲୁ । ପୁଣି ସେମାନେ ବାଟରେ କିଛି ଲୋକଙ୍କୁ ଦେଖିଲେ ଯେଉଁମାନେ କେତୋଟି ମୂର୍ତ୍ତି ସହିତ (ପୂଜା-ଅର୍ଚ୍ଚନାରେ) ମଗ୍ନ ଥିଲେ । ଏହାଦେଖି ସେମାନେ ମୁ'ସାଙ୍କୁ କହିଲେ, "ହେ ମୁ'ସା ! ସେମାନଙ୍କର ଯେମିତି ଠାକୁର ଅଛନ୍ତି, ଆମପାଇଁ ମଧ୍ୟ ସେମିତି ଠାକୁରଟିଏ ଗଢ଼ିଦିଅ ।" ମୁ'ସା ଉତ୍ତର ଦେଲେ, "ପ୍ରକୃତରେ ତୁମେମାନେ ଭାରି ମୂର୍ଖ । ୧୩୯. ଏହି ଲୋକମାନେ ଯେଉଁ ବାଟ ଧରିଛନ୍ତି, ଏହାଦ୍ୱାରା ସେମାନଙ୍କର ସର୍ବନାଶ ହେବ ଏବଂ ସେମାନଙ୍କ କର୍ମଗୁଡ଼ିକ ବୃଥା ହୋଇଯିବ ।" ୧୪୦. ପୁଣି ସେ କହିଲେ, "କ'ଣ ଅଲ୍ଲାହଙ୍କୁ ଛାଡ଼ି ମୁଁ ତୁମମାନଙ୍କ ପାଇଁ ଅନ୍ୟ କୌଣସି ଈଶ୍ୱର ଖୋଜିବି ଅଥଚ ସେ ତୁମମାନଙ୍କୁ ବିଶ୍ୱବାସୀଙ୍କ ମଧ୍ୟରେ ଶ୍ରେଷ୍ଠତା ପ୍ରଦାନ କରିଛନ୍ତି ?" ୧୪୧. (ହେ ଇସ୍ରାଇଲଙ୍କ ବଂଶଧର !) ଆମ୍ଭେ ତୁମମାନଙ୍କୁ ଫିରଔନୀ ସେନା କବଳରୁ ମୁକ୍ତି ଦେଲୁ ଯେଉଁମାନେ ତୁମମାନଙ୍କୁ କଠୋର ଯାତନା ଦେଉଥିଲେ । ସେମାନେ ତୁମ ପୁତ୍ରମାନଙ୍କୁ ବଧ କରୁଥିଲେ ଏବଂ ତୁମ କନ୍ୟାମାନଙ୍କୁ ଜୀବିତ ରଖୁଥିଲେ । ଏହି ଘଟଣାରେ ତୁମମାନଙ୍କ ପାଇଁ ଈଶ୍ୱରଙ୍କର ଏକ କଠିନ ପରୀକ୍ଷା ଥିଲା ।

୧୪୨. ଆମ୍ଭେ ମୁ'ସାଙ୍କୁ ତିରିଶି ରାତି (ଏକାନ୍ତରେ ଉପାସନା କରିବା) ପାଇଁ (ତୁର୍ ପାହାଡ଼କୁ) ଡାକିଲୁ ଏବଂ ତା'ପରେ ଆଉ ଦଶ ରାତି ବଢ଼ାଇଲୁ । ଏହିପରି ତାଙ୍କ ପ୍ରଭୁଙ୍କ ଦ୍ୱାରା ସ୍ଥିର ହୋଇଥିବା ଚାଳିଶ ରାତିର ଅବଧି ପୂର୍ଣ୍ଣ ହେଲା । (ଯିବା ସମୟରେ) ମୁ'ସା ତାଙ୍କ ଭାଇ ହାରୁନଙ୍କୁ କହିଥିଲେ,"ମୋ' ଅନୁପସ୍ଥିତିରେ ତୁମେ ମୋ' ଲୋକମାନଙ୍କ ମଧ୍ୟରେ ମୋ'ର ପ୍ରତିନିଧିତ୍ୱ କରିବ, ସେମାନଙ୍କ ମଧ୍ୟରେ ସଂସ୍କାର ଆଣିବ ଏବଂ ଦୁଷ୍ଟମାନଙ୍କ ପନ୍ଥା ଧରିବନାହିଁ ।" ୧୪୩. ଯେତେବେଳେ ମୁ'ସା ନିଶ୍ଚିତ ସମୟରେ (ସେଠାରେ) ପହଁଚିଲେ ଏବଂ ଈଶ୍ୱର ତାଙ୍କ ସହିତ କଥାବାର୍ତ୍ତା କଲେ, ସେ ପ୍ରାର୍ଥନା କଲେ, "ହେ ପ୍ରଭୁ ! ମୋତେ ତୁମ ଦର୍ଶନର ସୁଯୋଗ ଦିଅ ।" ସେ ଉତ୍ତର ଦେଲେ, "ତୁମେ କଦାପି ଆମ୍ଭକୁ

ଦେଖିପାରିବ ନାହିଁ ।  ସେହି ପାହାଡ଼ ଆଡ଼କୁ ଚାହଁ । ଯଦି ଏହା ନିଜ ସ୍ଥାନରେ ସ୍ଥିର ରହିଯାଏ, ତେବେ ତୁମେ ଆମ୍ଭଙ୍କୁ ଦେଖିପାରିବ ।" ପୁଣି ଯେତେବେଳେ ଅଲ୍ଲାହ୍ ପାହାଡ଼ ଉପରେ ତାଙ୍କର ଜ୍ୟୋତି ପ୍ରକଟ କଲେ, ଏହା ଧ୍ୱସ୍ତବିଧ୍ୱସ୍ତ ହୋଇଗଲା ଏବଂ ମୁ'ସା ଚେତା ହରାଇ ପଡ଼ିଗଲେ । ଯେତେବେଳେ ତାଙ୍କର ଚେତା ଫେରିଲା, ସେ କହିଲେ, "ହେ ପ୍ରଭୁ ! ତୁମେ ପରମ ପବିତ୍ର । ମୁଁ ତୁମଠାରୁ କ୍ଷମା ମାଗୁଛି ଏବଂ ମୁଁ ପ୍ରଥମେ ବିଶ୍ୱାସ କରୁଛି । ୧୪୪.  ଈଶ୍ୱର କହିଲେ,"ହେ ମୁ'ସା, ମୁଁ ତୁମକୁ ଅନ୍ୟ ଲୋକମାନଙ୍କ ମଧ୍ୟରେ ପ୍ରାଥମିକତା ଦେଇ ମୋ'ର ବାର୍ତ୍ତାବହ ରୂପେ ବାଛିଲି ଏବଂ ତୁମ ସହିତ କଥାବାର୍ତ୍ତା କଲି । ତେଣୁ, ଯାହା ତୁମକୁ ଦେଇଛି ତାହା ଗ୍ରହଣ କର ଏବଂ ମୋ' ପ୍ରତି କୃତଜ୍ଞ ହୁଅ ।" ୧୪୫. ଆମ୍ଭେ ତାଙ୍କ ପାଇଁ ଗୋଟିଏ ଫଳକରେ ବିଭିନ୍ନ ଉପଦେଶ ସହିତ ପ୍ରତ୍ୟେକ ବିଷୟ ବିଶଦ ଭାବରେ ଲେଖିଦେଲୁ ଏବଂ ତାଙ୍କୁ ଆଦେଶ ଦେଲୁ, "ଏହି ଆଦେଶଗୁଡ଼ିକୁ କଡ଼ାକଡ଼ି ଭାବରେ ପାଳନ କର ଏବଂ ନିଜ ଲୋକମାନଙ୍କୁ ନିର୍ଦ୍ଦେଶ ଦିଅ ଯେ ସେମାନେ ଏଥିରେ ଥିବା ଭଲଭଲ ଉପଦେଶଗୁଡ଼ିକୁ ପାଳନ କରନ୍ତୁ । ମୁଁ ତୁମମାନଙ୍କୁ ଖୁବ୍ ଶୀଘ୍ର ଅଧର୍ମୀମାନଙ୍କର ଘର ଦେଖାଇ ଦେବି ।

୧୪୬.  ଯେଉଁମାନେ ଧରାପୃଷ୍ଠରେ ମିଥ୍ୟା ଅହଂକାର କରୁଛନ୍ତି, ଆମ୍ଭେ ଆମ୍ଭର ନିଦର୍ଶନଗୁଡ଼ିକରୁ ସେମାନଙ୍କର ଦୃଷ୍ଟି ଫେରାଇ ନେବୁ ଯାହାଫଳରେ ସେମାନେ ସବୁ ପ୍ରମାଣ ଦେଖି ସାରିବା ସତ୍ତ୍ୱେ ମାନିବେନାହିଁ, ଠିକ୍ ବାଟ ଦେଖିଲେ ସୁଦ୍ଧା ସେବାଟରେ ଯିବେନାହିଁ କିନ୍ତୁ ଭୁଲ ବାଟ ଦେଖିଲେ ସେହି ବାଟ ଧରିବେ, କାରଣ ସେମାନେ ଆମ୍ଭର ନିଦର୍ଶନଗୁଡ଼ିକୁ ମିଥ୍ୟା ବୋଲି କହିଲେ ଏବଂ ସେଗୁଡ଼ିକୁ ଭ୍ରୂକ୍ଷେପ କଲେନାହିଁ । ୧୪୭.  ଯେଉଁମାନେ ଆମ୍ଭର ବାଣୀକୁ ଏବଂ ପରଲୋକରେ (ସେମାନଙ୍କର) ଆମ୍ଭ ସହିତ ସାକ୍ଷାତକୁ ମିଥ୍ୟା ମନେକଲେ, ସେମାନଙ୍କର ସବୁ କର୍ମ ବୃଥା ହେଲା । ସେମାନେ ଯେମିତି କର୍ମ କରୁଥିଲେ ସେମିତି ଫଳ ଭୋଗିବେ ।

୧୪୮. ମୁ'ସାଙ୍କ ଅନୁପସ୍ଥିତିରେ ତାଙ୍କ ସଂପ୍ରଦାୟର ଲୋକମାନେ ସେମାନଙ୍କର ଅଳଙ୍କାରରୁ ଗୋଟିଏ ବାଛୁରୀର ପ୍ରତିମା ଗଢ଼ି ନେଇଥିଲେ ଯେଉଁଥିରୁ ବଳଦ ବୋବାଇବା ପରି ସ୍ୱର ବାହାରୁଥିଲା । କ'ଣ ସେମାନେ ଏତିକି ଚିନ୍ତା

କରିପାରିଲେ ନାହିଁ ଯେ ଏହା ସେମାନଙ୍କ ସହିତ କଥାବାର୍ତ୍ତା କରି ପାରୁନଥିଲା ବା ସେମାନଙ୍କୁ କୌଣସି ବାଟ ଦେଖାଇ ପାରୁନଥିଲା ? ତଥାପି ସେମାନେ ତାକୁ ଉପାସ୍ୟ ମାନିଲେ ଏବଂ ଏହାଦ୍ୱାରା ସେମାନେ ଘୋର ଅନ୍ୟାୟ କଲେ । ୧୪୯. ପୁଣି ଯେତେବେଳେ ସେମାନେ ଅନୁତପ୍ତ ହେଲେ ଏବଂ ଜାଣିଲେ ଯେ ସେମାନେ ପ୍ରକୃତରେ ପଥଭ୍ରଷ୍ଟ ହୋଇ ଯାଇଛନ୍ତି, କହିଲେ, "ଯଦି ଆମ ଈଶ୍ୱର ଆମ ପ୍ରତି ଦୟା ନକରନ୍ତି ଏବଂ ଆମକୁ କ୍ଷମା ନକରନ୍ତି ତେବେ ଆମେ ନିଶ୍ଚୟ ସର୍ବସ୍ୱାନ୍ତ ହୋଇଯିବୁ ।"

୧୫୦. ଯେତେବେଳେ ମୁ'ସା ଅତିଶୟ କ୍ରୋଧ ଓ ଦୁଃଖରେ ନିଜ ସଂପ୍ରଦାୟର ଲୋକଙ୍କ ପାଖକୁ ଫେରିଲେ, ସେମାନଙ୍କୁ କହିଲେ, "ମୋ' ଯିବା ପରେ ତୁମେମାନେ କି ଜଘନ୍ୟ କାର୍ଯ୍ୟ କଲ ? ତୁମେମାନେ ନିଜ ଈଶ୍ୱରଙ୍କ ଆଦେଶକୁ ଅପେକ୍ଷା ମଧ୍ୟ କଲନାହିଁ? ଏହା କହି ସେ ଫଳକଗୁଡ଼ିକୁ ତଳେ ପକାଇଦେଲେ ଏବଂ ନିଜ ଭାଇଙ୍କ କେଶ ଧରି ଟାଣିବାକୁ ଲାଗିଲେ । (ତାଙ୍କ ଭାଇ) ହାରୁନ୍ ତାଙ୍କୁ କହିଲେ, "ପ୍ରିୟ ଭାଇ! ପ୍ରକୃତରେ ଲୋକମାନେ ମୋତେ ଦୁର୍ବଳ ମନେ କଲେ ଏବଂ ସେମାନେ ମୋତେ ହତ୍ୟା କରିବା ପାଇଁ ପ୍ରସ୍ତୁତ ହୋଇ ଯାଇଥିଲେ । ତେଣୁ, ଏବେ ମୋ' ଶତ୍ରୁମାନଙ୍କୁ ହସିବାର ସୁଯୋଗ ଦିଅନାହିଁ ଏବଂ ମୋତେ ପାପୀଙ୍କ ମଧ୍ୟରେ ଗଣନାହିଁ ।" ୧୫୧. (ଏହା ଶୁଣି) ମୁ'ସା ପ୍ରାର୍ଥନା କଲେ,"ହେ ପ୍ରଭୁ! ମୋତେ ଓ ମୋ' ଭାଇକୁ କ୍ଷମା କର ଏବଂ ଆମ ପ୍ରତି କରୁଣା କର । ତୁମେ ସର୍ବଶ୍ରେଷ୍ଠ ଦୟାଳୁ ।" ୧୫୨. (ଅଲ୍ଲାହ୍ କହିଲେ) "ଯେଉଁମାନେ ବାଛୁରୀ ପୂଜା କଲେ, ସେମାନେ ଅବଶ୍ୟ ପ୍ରଭୁଙ୍କ କୋପର ଶିକାର ହେବେ ଏବଂ ସଂସାରରେ ମଧ୍ୟ ଲାଂଛନା ଭୋଗିବେ । (ଈଶ୍ୱରଙ୍କ ନାଁରେ) ମିଥ୍ୟା ଗଢୁଥିବା ଲୋକମାନଙ୍କୁ ଆମ୍ଭେ ଏହିପରି ଶାସ୍ତି ଦେଇଥାଉ ।" ୧୫୩. ଯେଉଁମାନେ କୁକର୍ମ କରିବା ପରେ ଅନୁତପ୍ତ ହୁଅନ୍ତି ଏବଂ (ସତ୍ୟକୁ) ମାନିନିଅନ୍ତି, ପଶ୍ଚାତାପ କଲାପରେ ଈଶ୍ୱର ସେମାନଙ୍କୁ ଅବଶ୍ୟ କ୍ଷମା କରିଦିଅନ୍ତି । ସେ ପରମ ଦୟାଳୁ ।

୧୫୪. ପୁଣି ଯେତେବେଳେ ମୁ'ସାଙ୍କ କ୍ରୋଧ ଶାନ୍ତ ହେଲା, ସେ ଫଳକଗୁଡ଼ିକୁ ଉଠାଇନେଲେ । ସେଗୁଡିକରେ ଈଶ୍ୱରଙ୍କୁ ଭୟ କରୁଥିବା

ଲୋକମାନଙ୍କ ପାଇଁ ମାର୍ଗଦର୍ଶନ ଥିଲା ଏବଂ ଏହା ତାଙ୍କର କରୁଣା ଥିଲା । ୧୫୫. ମୁ'ସା ନିର୍ଦ୍ଧାରିତ ସମୟରେ ନିଜ ସଂପ୍ରଦାୟ ଭିତରୁ ସତୁରୀ ଜଣ ଲୋକଙ୍କୁ (ସାକ୍ଷାତ ସ୍ଥଳକୁ) ନେବାପାଇଁ ମନୋନିତ କରିଥିଲେ । ପୁଣି ଯେତେବେଳେ ସେଠାରେ ଭୁମିକମ୍ପ ହେଲା, ମୁ'ସା ପ୍ରାର୍ଥନା କଲେ, "ହେ ପାଳନକର୍ତ୍ତା! ତୁମେ ଚାହିଁଥିଲେ ଏହାପୂର୍ବରୁ ସେମାନଙ୍କୁ ଏବଂ ମୋତେ ବିନାଶ କରି ପାରିଥାଆନ୍ତ । ଆମ ଭିତରେ ଥିବା କେତେକ ନିର୍ବୋଧ ଲୋକଙ୍କ ଆଚରଣ ଯୋଗୁଁ କ'ଣ ତୁମେ ଆମ ସମସ୍ତଙ୍କୁ ମାରିଦେବ ? ଏହା କେବଳ ତୁମର ଏକ ପରୀକ୍ଷା ଥିଲା । ଏହାଦ୍ୱାରା ତୁମେ ଯହାକୁ ଚାହଁ ପଥଭ୍ରଷ୍ଟ କର ଏବଂ ଯାହାକୁ ଚାହଁ ସତପଥରେ ନେଇଯାଅ । ତୁମେହିଁ ଆମର ଆଶ୍ରୟଦାତା । ତେଣୁ ଆମକୁ କ୍ଷମା କର ଏବଂ ଆମ ପ୍ରତି ଦୟା କର । ତୁମେ ସମସ୍ତଙ୍କ ଅପେକ୍ଷା ଅଧିକ କ୍ଷମାଶୀଳ । ୧୫୬. ଏବଂ ଆମ ବିଷୟରେ ଆଦେଶ ଦିଅ ଯେ ଇହଲୋକରେ ଆମମାନଙ୍କର ମଙ୍ଗଳ ହେଉ ଏବଂ ପରଲୋକରେ ମଧ ମଙ୍ଗଳ ହେଉ । ଆମେ ତୁମ ନିକଟକୁ ଫେରିଆସିଛୁ ।" ଅଲ୍ଲାହ୍ କହିଲେ, "ଶାସ୍ତି ତ ମୁଁ ଯାହାକୁ ଇଚ୍ଛା କରେ ତାକୁ ଦିଏ କିନ୍ତୁ ମୋ' କରୁଣାର ଛାୟା ସମସ୍ତଙ୍କ ଉପରେ ଅଛି । ମୁଁ ସେହିମାନଙ୍କ ଭାଗ୍ୟରେ ଏହାକୁ ଲେଖିଦେବି ଯେଉଁମାନେ କୁକର୍ମରୁ ବିରତ ରହିବେ, ଜକାତ୍ ଦେବେ ଏବଂ ମୋ' ବାଣୀକୁ ବିଶ୍ୱାସ କରିବେ ।"

୧୫୭. ଯେଉଁମାନେ ଏହି ବାର୍ତ୍ତାବହଙ୍କ କଥା ମାନି ଚଳିବେ ଯିଏ ଜଣେ ନିରକ୍ଷର ଈଶ୍ୱରଦୂତ ଯାହାଙ୍କ ବିଷୟରେ ସେମାନେ ସେମାନଙ୍କର ଗ୍ରନ୍ଥ ତୌରାତ୍ ଓ ଇଂଜିଲ୍‌ରେ ବର୍ଣ୍ଣନା ଥିବାର ଦେଖୁଛନ୍ତି, ଯିଏ ସେମାନଙ୍କୁ ଭଲ କର୍ମ କରିବାର ଉପଦେଶ ଦିଅନ୍ତି, କୁକର୍ମ କରିବାକୁ ବାରଣ କରନ୍ତି ଏବଂ ସେମାନଙ୍କ ପାଇଁ ଶୁଦ୍ଧ ବସ୍ତୁଗୁଡିକୁ ବୈଧ ଏବଂ ଅଶୁଦ୍ଧ ବସ୍ତୁଗୁଡିକୁ ଅବୈଧ କରନ୍ତି, ସେମାନଙ୍କ ଉପରେ ଥିବା ବୋଝ ଓହ୍ଲାଇ ଦିଅନ୍ତି ଏବଂ ସେମାନଙ୍କର ବନ୍ଧନ ଖୋଲିଦିଅନ୍ତି ଯେଉଁଥିରେ ସେମାନେ ବନ୍ଧା ହୋଇଥିଲେ; ଯେଉଁମାନେ ତାଙ୍କୁ ବିଶ୍ୱାସ କରିବେ, ତାଙ୍କର ସମ୍ମାନ କରିବେ, ତାଙ୍କୁ ସାହାଯ୍ୟ କରିବେ ଏବଂ ତାଙ୍କ ପାଖକୁ ପଠା ଯାଇଥିବା ଦିବ୍ୟାଲୋକର (ଅର୍ଥାତ୍ କୁରଆନର) ନିର୍ଦ୍ଦେଶ ମାନି ଚଳିବେ, ସେହିମାନେ ସଫଳ ହେବେ ।

୧୫୮. (ହେ ମୁହମ୍ମଦ!) କହିଦିଅ, "ହେ ମନୁଷ୍ୟଗଣ! ମୁଁ ତୁମ ସମସ୍ତଙ୍କ ପାଇଁ ପୃଥିବୀ ଓ ଆକାଶର ଅଧୀଶ୍ୱର ଅଲ୍ଲାହଙ୍କର ବାର୍ତ୍ତାବହ ରୂପେ

ଆସିଛି । ତାଙ୍କ ବ୍ୟତୀତ କେହି ଉପାସନାଯୋଗ୍ୟ ନୁହନ୍ତି । ସେ ହିଁ ଜୀବନ ଦିଅନ୍ତି ଏବଂ ସେ ହିଁ ମୃତ୍ୟୁ ଦିଅନ୍ତି । ତେଣୁ ତୁମେମାନେ ଅଲ୍ଲାହଙ୍କୁ ଏବଂ ତାଙ୍କର ସେହି ନିରକ୍ଷର ବାର୍ତ୍ତାବହଙ୍କୁ ମାନିନିଅ ଯିଏ ଅଲ୍ଲାହଙ୍କୁ ଓ ତାଙ୍କ ବାଣୀକୁ ବିଶ୍ୱାସ କରନ୍ତି । ତାଙ୍କ କଥା ମାନି ଚଳ, ତା'ହେଲେ ତୁମେମାନେ ସତପଥ ପାଇବ ।"

୧୫୯. ମୁ'ସାଙ୍କ ସଂପ୍ରଦାୟରେ କିଛି ଲୋକ ଅଛନ୍ତି ଯେଉଁମାନେ ସତ୍‌ମାର୍ଗ ଦେଖାଇ ଥାଆନ୍ତି ଏବଂ ଉଚିତ୍ ବିଚାର କରନ୍ତି । ୧୬୦. ଆମ୍ଭେ ସେମାନଙ୍କୁ ବାରଗୋଟି ଦଳରେ ବିଭକ୍ତ କରି ସେମାନଙ୍କର ଭିନ୍ନଭିନ୍ନ ଗୋଷ୍ଠୀ କରି ଦେଇଥିଲୁ । ଯେତେବେଳେ ମୁ'ସାଙ୍କ ସଂପ୍ରଦାୟର ଲୋକମାନେ ତାଙ୍କୁ ପାଣି ମାଗିଲେ, ଆମ୍ଭେ ତାଙ୍କୁ ଦୈବବାଣୀ କରି କହିଲୁ, "ନିଜ ବାଡ଼ି ଦ୍ୱାରା ଅମୁକ ଚଟାଣ ଉପରେ ଆଘାତ କର" । ପୁଣି ସେଥିରୁ ବାରଗୋଟି ଝର ବାହାରି ଆସିଲା । ପ୍ରତ୍ୟେକ ଗୋଷ୍ଠୀର ଲେକେ ନିଜନିଜର (ପାଣି ପିଇବାର) ଜାଗା ଜାଣିଗଲେ । ଆମ୍ଭେ ସେମାନଙ୍କୁ ବାଦଲ ଦ୍ୱାରା ଛାୟା ଦେଲୁ ଏବଂ ସେମାନଙ୍କ ପାଇଁ ମନ୍ନ ଓ ସଲ୍‌ୱା ପଠାଇ ଆଦେଶ ଦେଲୁ ଯେ ଯେଉଁ ଶୁଦ୍ଧ ଆହାର ତୁମମାନଙ୍କୁ ଦିଆଯାଇଛି, ସେଥିରୁ ଖାଅ । ସେମାନେ ଆମ୍ଭର କିଛି କ୍ଷତି କଲେ ନାହିଁ, ବରଂ ନିଜର ହିଁ ଅନିଷ୍ଟ କଲେ । ୧୬୧. (ମନେ ପକାଅ) ଯେତେବେଳେ ସେମାନଙ୍କୁ କୁହାଯାଇ ଥିଲା ଯେ ଏହି ସହରରେ ଯାଇ ରୁହ ଆଉ ଯେଉଁଠାରୁ ଇଚ୍ଛା ଖାଅ ଏବଂ ସହର ଦ୍ୱାରରେ ମୁଣ୍ଡ ନୁଆଁଇ କ୍ଷମା ପ୍ରାର୍ଥନା କରି ପ୍ରବେଶ କର, ତା'ହେଲେ ଆମ୍ଭେ ତୁମର ଦୋଷ କ୍ଷମା କରିଦେବୁ ଏବଂ ସଦାଚାରୀମାନଙ୍କୁ ଖୁବ୍ ଅଧିକ ଦେବୁ, ୧୬୨. ସେମାନଙ୍କ ମଧ୍ୟରେ ଥିବା ପାପୀମାନେ ଆମ୍ଭ କଥାକୁ ପରିବର୍ତ୍ତନ କରିଦେଲେ । ଆମ୍ଭେ ମଧ୍ୟ ସେମାନଙ୍କର କୁକର୍ମ ଯୋଗୁଁ ଆକାଶରୁ ବିପଦ ପଠାଇଦେଲୁ ।

୧୬୩. (ହେ ବାର୍ତ୍ତାବହ!) ସେମାନଙ୍କୁ ସମୁଦ୍ର କୂଳରେ ଥିବା ସେହି ଗ୍ରାମର ଲୋକମାନଙ୍କ ବିଷୟରେ ପଚାର, ଯେଉଁମାନେ ଶନିବାର ଦିନର ନିୟମ ଭାଙ୍ଗିଥିଲେ । ମାଛଗୁଡ଼ିକ ସେହି ଶନିବାର ଦିନ ସେମାନଙ୍କ ସାମନାକୁ ଆସୁଥିଲେ କିନ୍ତୁ ଶନିବାର ଦିନ ବ୍ୟତୀତ ଅନ୍ୟ ଦିନ ଆସୁ ନଥିଲେ । ସେମାନଙ୍କ କୁକର୍ମ ଯୋଗୁଁ ଆମ୍ଭେ ସେମାନଙ୍କୁ ଏହିପରି ପରୀକ୍ଷା କରୁଥିଲୁ । ୧୬୪. ଯେତେବେଳେ

ସେମାନଙ୍କ ମଧ୍ୟରୁ କିଛି ଲୋକ ଅନ୍ୟ କେତେକ ଲୋକଙ୍କୁ କହିଥିଲେ, "ତୁମେମାନେ ଏଭଳି ଲୋକମାନଙ୍କୁ କାହିଁକି ବୁଝାଉଛ ଯେଉଁମାନଙ୍କୁ ଅଲ୍ଲାହ୍ ବିନାଶ କରିବେ ଅଥବା କଠୋର ଦଣ୍ଡ ଦେବେ ?" ସେମାନେ ଉତ୍ତର ଦେଇଥିଲେ, "ଆମେମାନେ ଈଶ୍ୱରଙ୍କ ପାଖରେ ନିଜର ଦୋଷ ଛଡ଼ାଇବା ଲାଗି ଏହା କରୁଛୁ ଏବଂ ଏହା ମଧ୍ୟ ସମ୍ଭବ ଯେ ସେମାନେ କୁକର୍ମ ଛାଡ଼ି ଦେଇପାରନ୍ତି ।" ୧୬୫. ଯେତେବେଳେ ସେମାନଙ୍କୁ ଦିଆଯାଇଥିବା ଉପଦେଶଗୁଡ଼ିକୁ ସେମାନେ ଭୁଲିଗଲେ, ଆମ୍ଭେ କେବଳ ସେଇମାନଙ୍କୁ ରକ୍ଷା କଲୁ ଯେଉଁମାନେ କୁକର୍ମ କରିବାକୁ (ଲେକମାନଙ୍କୁ) ବାରଣ କରୁଥିଲେ । ଯେଉଁ ଦୁରାଚାରୀମାନେ ବାରମ୍ବାର ଆମ୍ଭର ଅବମାନନା କରୁଥିଲେ, ଆମ୍ଭେ ସେମାନଙ୍କୁ କଠୋର ଶାସ୍ତି ଦେଲୁ । ୧୬୬. ଯେତେବେଳେ ସେମାନେ ନିଷିଦ୍ଧ କର୍ମଗୁଡ଼ିକୁ କରି ସୀମା ଅତିକ୍ରମ କଲେ, ଆମ୍ଭେ କହିଲୁ ଯେ ଘୃଣ୍ୟ ବାନର ହୋଇଯାଅ ।

୧୬୭. (ମନେ ପକାଅ) ଯେତେବେଳେ ତୁମ ପ୍ରଭୁ ଘୋଷଣା କରିଥିଲେ ଯେ ସେ ପ୍ରଳୟ ପର୍ଯ୍ୟନ୍ତ ଇସ୍ରାଇଲଙ୍କ ବଂଶଧରମାନଙ୍କ ବିରୁଦ୍ଧରେ ଏଭଳି ଲୋକଙ୍କୁ ଛିଡ଼ା କରୁଥିବେ ଯେଉଁମାନେ ସେମାନଙ୍କୁ ବହୁତ କଷ୍ଟ ଦେବେ । ତୁମ ପ୍ରଭୁ ଶୀଘ୍ର ଶାସ୍ତି ଦିଅନ୍ତି ଏବଂ ସେ ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ ।

୧୬୮. ଆମ୍ଭେ ସେମାନଙ୍କୁ ଭାଗଭାଗ କରି ବିଭିନ୍ନ ସଂପ୍ରଦାୟ କରିଦେଲୁ । ସେମାନଙ୍କ ମଧ୍ୟରୁ କେତେକ ଧର୍ମପରାୟଣ ଅଛନ୍ତି ଏବଂ ଆଉ କେତେକ ଏହାର ବିପରୀତ । ଆମ୍ଭେ ଭଲ ଓ ମନ୍ଦ, ଉଭୟ ଅବସ୍ଥାରେ ରଖି ସେମାନଙ୍କୁ ପରୀକ୍ଷା କଲୁ ଯେ ହୁଏତ ସେମାନେ (ସତ୍‌ପଥକୁ) ଫେରି ଆସିବେ । ୧୬୯. ସେମାନଙ୍କ ପରେ ଏଭଳି ଅଯୋଗ୍ୟମାନେ ଆସିଲେ ଯେଉଁମାନେ ଦିବ୍ୟଗ୍ରନ୍ଥର ଉତ୍ତରାଧିକାରୀ ହୋଇ ସୁଦ୍ଧା ସଂସାରର ହୀନ ବସ୍ତୁ (ଅର୍ଥାତ୍ ଲାଂଚ) ଗ୍ରହଣ କରୁଥିଲେ ଏବଂ କହୁଥିଲେ ଯେ ଏଥିପାଇଁ ଆମକୁ କ୍ଷମା କରି ଦିଆଯିବ, ଅଥଚ ପୁଣିଥରେ ସେହିପରି ଧନ ମିଳିଲେ ସେମାନେ ସଂଗେସଂଗେ ନେବାକୁ ପ୍ରସ୍ତୁତ ହୋଇଯିବେ । କ'ଣ ଗ୍ରନ୍ଥ ବିଷୟରେ ସେମାନଙ୍କଠାରୁ ବଚନ ନିଆଯାଇ ନଥିଲା ଯେ ସେମାନେ ଅଲ୍ଲାହଙ୍କ ବିଷୟରେ ସତ୍ୟ ବ୍ୟତୀତ ଆଉ କିଛି

କହିବେନାହିଁ? ସେଥିରେ ଯାହା ଲେଖା ଅଛି, ସେମାନେ ପଢ଼ି ସାରିଛନ୍ତି। ସଦାଚାରୀମାନଙ୍କ ପାଇଁ ପରଲୋକର ଘରହିଁ ସବୁଠାରୁ ଭଲ। କ'ଣ ତୁମେମାନେ ଏହା ବୁଝିବନାହଁ? ୧୭୦. ଯେଉଁମାନେ କଡ଼ାକଡ଼ି ଭାବରେ ଗ୍ରନ୍ଥର ନୀତିନିୟମ ପାଳନ କରନ୍ତି ଏବଂ ନିୟମିତ ନମାଜ ସଂପାଦନ କରନ୍ତି, ଆମ୍ଭେ ଏଭଳି ସାଧୁମାନଙ୍କର ଶ୍ରମ ଆଦୌ ବ୍ୟର୍ଥ କରିବୁନାହିଁ। ୧୭୧. (ସ୍ମରଣ କର) ଯେତେବେଳେ ଆମ୍ଭେ ସେମାନଙ୍କ ଉପରେ ପାହାଡ଼କୁ ଛତା ପରି ଟେକି ଧରିଥିଲୁ ଏବଂ ସେମାନେ ଭାବି ନେଇଥିଲେ ଯେ ଏହା ସେମାନଙ୍କ ଉପରେ ପଡ଼ିଯିବ, ସେତେବେଳେ ଆମ୍ଭେ ସେମାନଙ୍କୁ କହିଥିଲୁ, "ଆମ୍ଭେ ଯେଉଁ ଗ୍ରନ୍ଥ ଦେଉଛୁ ତାହାକୁ ଦୃଢ଼ ଭାବରେ ଧରିଥାଅ ଏବଂ ସେଥିରେ ଯାହା ଲେଖାଯାଇଛି ତାହା ମନେରଖ ଯାହାଫଳରେ ତୁମେମାନେ ସଦାଚାରୀ ହେବ।"

୧୭୨. ଯେତେବେଳେ ତୁମ ଈଶ୍ୱର ଆଦମଙ୍କ ସନ୍ତାନମାନଙ୍କ ପୃଷ୍ଠରୁ ସେମାନଙ୍କର ସମୁଦାୟ ବଂଶକୁ ଉତ୍ପନ୍ନ କରିଥିଲେ ଏବଂ ସେମାନଙ୍କୁ ନିଜ ବିଷୟରେ ସାକ୍ଷୀ ରଖି ପଚାରିଥିଲେ, "କ'ଣ ମୁଁ ତୁମମାନଙ୍କର ଈଶ୍ୱର ନୁହେଁ?" ସେମାନେ ଉତ୍ତର ଦେଇଥିଲେ, "ନିଶ୍ଚୟ, ଆମେ ଏହାର ସାକ୍ଷୀ ରହିଲୁ।" (ଆମ୍ଭେ ଏହା ଏଇଥିପାଇଁ କଲୁ ଯେ) ହୁଏତ ବିଚାର ଦିନ ତୁମେମାନେ କହିବ ଯେ "ଆମେ ତ ଏବିଷୟରେ ଜାଣି ନଥିଲୁ।" ୧୭୩. ଅଥବା (ବାହାନା କରି) କହିବ, "ବହୁଈଶ୍ୱରବାଦର ଆରମ୍ଭ ତ ଆମ ପୂର୍ବରୁ ଆମ ପୂର୍ବପୁରୁଷମାନେ କରିଥିଲେ। ଆମେମାନେ ପରେ ସେମାନଙ୍କ ବଂଶରେ ଜନ୍ମ ହେଲୁ। କ'ଣ ତୁମେ ସେହି ମାର୍ଗଭ୍ରଷ୍ଟ ଲୋକମାନଙ୍କର ଅପରାଧ ପାଇଁ ଆମମାନଙ୍କର ବିନାଶ କରିଦେବ?" ୧୭୪. ଏହିପରି ଆମ୍ଭେ ନିଜର ବାଣୀଗୁଡ଼ିକୁ ପରିଷ୍କାର ଭାବରେ ବର୍ଣ୍ଣନା କରୁଛୁ ଯେ ହୁଏତ ସେମାନେ ବାଟକୁ ଫେରିଆସିବେ।

୧୭୫. ସେମାନଙ୍କୁ ସେହି ବ୍ୟକ୍ତିର କଥା ପଢ଼ି ଶୁଣାଅ ଯାହାକୁ ଆମ୍ଭେ ନିଜ ଗ୍ରନ୍ଥର ଜ୍ଞାନ ପ୍ରଦାନ କରିଥିଲୁ କିନ୍ତୁ ସେ ସେଥିରୁ ନିଜକୁ ଦୁରେଇ ନେଲା। ଏହାପରେ ଶଇତାନ ତା' ପଛରେ ଲାଗିଲା ଏବଂ ସେ ବ୍ୟକ୍ତି ପଥଭ୍ରଷ୍ଟ ହୋଇଗଲା। ୧୭୬. ଯଦି ଆମ୍ଭେ ଇଚ୍ଛା କରିଥାଆନ୍ତୁ, ତେବେ ସେହି ବାଣୀଗୁଡ଼ିକ ଦ୍ୱାରା ତାକୁ

ବହୁତ ଉପରକୁ ଉଠାଇ ଦିଅନ୍ତୁ ମାତ୍ର ସେ ସଂସାର ପ୍ରତି ଆକୃଷ୍ଟ ହେଲା ଏବଂ ନିଜର ବାସନା ପଛରେ ଧାଇଁଲା। ତା' ଅବସ୍ଥା କୁକୁର ପରି ହୋଇଗଲା, ଯାହାକୁ ତୁମେ ପିଟିଲେ ସେ ଧଇଁସଇଁ ହୁଏ ଏବଂ ନପିଟିଲେ ମଧ୍ୟ ଧଇଁସଇଁ ହୁଏ। ଏହା ସେହି ଲୋକମାନଙ୍କର ଦୃଷ୍ଟାନ୍ତ ଯେଉଁମାନେ ଆମ୍ଭର ବାଣୀକୁ ମାନନ୍ତିନାହିଁ। ତେଣୁ ତୁମେ ସେମାନଙ୍କୁ ଏହି ଘଟଣାଟି ଶୁଣାଇଦିଅ, ହୁଏତ ସେମାନେ ଏ ବିଷୟରେ ଚିନ୍ତା କରିବେ। ୧୭୭. ଆମ୍ଭର ବାଣୀକୁ ପ୍ରତ୍ୟାଖ୍ୟାନ କରିଥିବା ଲୋକମାନଙ୍କର କି କଦର୍ଯ୍ୟ ଦୃଷ୍ଟାନ୍ତ! ସେମାନେ ନିଜର ହିଁ ଅନିଷ୍ଟ କଲେ। ୧୭୮. ଅଲ୍ଲାହ୍ ଯାହାକୁ ବାଟ ଦେଖାଇ ଦିଅନ୍ତି, ସେ ହିଁ ବାଟ ପାଏ ଏବଂ ଯେଉଁମାନଙ୍କୁ ସେ ପଥଭ୍ରଷ୍ଟ କରନ୍ତି ସେମାନେ କ୍ଷତିଗ୍ରସ୍ତ ହୁଅନ୍ତି। ୧୭୯. ଆମ୍ଭେ ବହୁ ସଂଖ୍ୟକ ମାନବ ଓ ଜିନ୍‌ମାନଙ୍କୁ ନର୍କ ପାଇଁ ସୃଷ୍ଟି କରିଛୁ। ସେମାନଙ୍କର ହୃଦୟ ଅଛି କିନ୍ତୁ ସେମାନେ ବିଚାର କରନ୍ତିନାହିଁ, ସେମାନଙ୍କର ଆଖି ଅଛି କିନ୍ତୁ ଦେଖନ୍ତିନାହିଁ ଏବଂ କାନ ଥାଇ ସୁଦ୍ଧା ଶୁଣନ୍ତିନାହିଁ। ସେମାନେ ପଶୁମାନଙ୍କ ପରି, ବରଂ ସେମାନଙ୍କଠାରୁ ମଧ୍ୟ ଅଧିକ ହୀନ। ସେମାନେ ଆଦୌ ସଚେତନ ନୁହନ୍ତି।

୧୮୦. (ଗୁଣ ଓ ସ୍ୱଭାବ ଅନୁସାରେ) ଅଲ୍ଲାହଙ୍କର ଭଲଭଲ ନାମ ଅଛି। ତାଙ୍କୁ ସେହି ନାମରେ ଡାକ ଏବଂ ଯେଉଁମାନେ ତାଙ୍କର ନାମକୁ ବିକୃତ କରନ୍ତି, ସେମାନଙ୍କୁ ଛାଡିଦିଅ। ସେମାନେ ଯାହା କରୁଛନ୍ତି ତାହାର ଫଳ ସେମାନେ ଭୋଗିବେ। ୧୮୧. ଆମ୍ଭ ସୃଷ୍ଟିରେ ଏଭଳି ଲୋକ ମଧ୍ୟ ଅଛନ୍ତି ଯେଉଁମାନେ ଠିକ୍ ବାଟ ଦେଖାଇଥାଆନ୍ତି ଏବଂ ଉଚିତ୍ ନ୍ୟାୟ କରନ୍ତି। ୧୮୨. ଯେଉଁମାନେ ଆମ୍ଭର ବାଣୀକୁ ପ୍ରତ୍ୟାଖ୍ୟାନ କରିଛନ୍ତି, ଆମ୍ଭେ ସେମାନଙ୍କୁ ଧିରେଧିରେ ଏମିତି ବିପଦ ମଧ୍ୟକୁ ଟାଣିନେବୁ ଯେ ସେମାନେ ଜାଣି ପାରିବେନାହିଁ। ୧୮୩. ଏବେ ସେମାନଙ୍କୁ ମୁଁ ଢ଼ିଲା ଛାଡ଼ିଦେଇଛି। ମୁଁ ପକ୍କା ଯୋଜନା କରେ।

୧୮୪. କ'ଣ ଏମାନେ ଏହା ଚିନ୍ତା କରୁନାହାନ୍ତି ଯେ ଏମାନଙ୍କ ସାଥୀଙ୍କଠାରେ (ଅର୍ଥାତ୍ ମହାମାନ୍ୟ ମୁହମ୍ମଦଙ୍କଠାରେ) ପାଗଳାମିର କୌଣସି ଲକ୍ଷଣ ନାହିଁ? ସେ କେବଳ ପରିଷ୍କାର ଭାବରେ ସାବଧାନ କରନ୍ତି। ୧୮୫. କ'ଣ ସେମାନେ ପୃଥିବୀ ଓ ଆକାଶମଣ୍ଡଳର ବ୍ୟବସ୍ଥା ପ୍ରତି ଏବଂ ଅଲ୍ଲାହଙ୍କ ସୃଷ୍ଟି ପ୍ରତି

ଧ୍ୟାନ ଦେଉନାହାନ୍ତି ବା ଏହା ଚିନ୍ତା କରୁନାହାନ୍ତି ଯେ ହୁଏତ ସେମାନଙ୍କର ଶେଷ ସମୟ ପାଖେଇ ଆସିଲାଣି ? ଏହାପରେ ଆଉ କେଉଁ କଥାରେ ସେମାନେ ବିଶ୍ୱାସ କରିବେ ? ୧୮୬. ଅଲ୍ଲାହ୍ ଯାହାକୁ ପଥଭ୍ରଷ୍ଟ କରନ୍ତି, ତାକୁ କେହି ପଥ ଦେଖାଇ ପାରିବନାହିଁ । ଏଭଳି ଲୋକମାନଙ୍କୁ ସେ ସେମାନଙ୍କ ଅହମିକାରେ ଅନ୍ଧ ହୋଇ ବୁଲିବାକୁ ଛାଡ଼ିଦିଅନ୍ତି ।

୧୮୭. ସେମାନେ ତୁମକୁ ପ୍ରଳୟ ବିଷୟରେ ପ୍ରଶ୍ନ କରୁଛନ୍ତି ଯେ ଏହା କେବେ ଘଟିବ । ସେମାନଙ୍କୁ କହିଦିଅ, "କେବଳ ମୋ' ପ୍ରଭୁ ଏହା ଜାଣନ୍ତି । ସେ ଏହାକୁ ଠିକ୍ ସମୟରେ ପ୍ରକାଶ କରିବେ । ଧରିତ୍ରୀ ଓ ଆକାଶ ପାଇଁ ଏହା ଏକ କଠିନ ସମୟ ହେବ ଏବଂ ଏହା ତୁମମାନଙ୍କ ସାମନାରେ ହଠାତ୍ ଘଟିଯିବ ।" ସେମାନେ ତୁମକୁ ଏମିତି ପଚାରୁଛନ୍ତି ସତେଯେମିତି ତୁମେ ଭଲଭାବରେ ଏବିଷୟରେ ଜାଣିଛ । କହିଦିଅ, "କେବଳ ଅଲ୍ଲାହ୍ ଏବିଷୟରେ ଜାଣନ୍ତି ଏବଂ ଅଧିକାଂଶ ଲୋକ ଏହା ଜାଣନ୍ତିନାହିଁ ।" ୧୮୮. ତୁମେ କୁହ, "ମୋ ନିଜର ଭଲମନ୍ଦ ବିଷୟରେ ମଧ୍ୟ ମୋର କୌଣସି କର୍ତ୍ତୃତ୍ୱ ନାହିଁ । ଅଲ୍ଲାହ୍ ଯାହା ଇଚ୍ଛା କରନ୍ତି ତାହାହିଁ ହୁଏ । ଯଦି ମୁଁ ଅଦୃଷ୍ଟ ବିଷୟରେ ଜାଣି ଥାଆନ୍ତି ତେବେ ନିଜର ଅନେକ ଫାଇଦା କରିପାରନ୍ତି ଏବଂ ମୋ'ର କୌଣସି କ୍ଷତି ହୁଅନ୍ତାନାହିଁ । ଯେଉଁମାନେ (ମୋତେ) ବିଶ୍ୱାସ କରନ୍ତି, ମୁଁ ସେମାନଙ୍କୁ (ନର୍କ ବିଷୟରେ) ସାବଧାନ କରିବାକୁ ଏବଂ (ସ୍ୱର୍ଗ ବିଷୟରେ) ଶୁଭବାର୍ତ୍ତା ଦେବାକୁ ଆସିଛି ।

୧୮୯. ଅଲ୍ଲାହହିଁ ତୁମମାନଙ୍କୁ ଗୋଟିଏ ପ୍ରାଣରୁ ସୃଷ୍ଟି କରିଛନ୍ତି ଏବଂ ସେଥିରୁ ତୁମମାନଙ୍କର ଯୋଡ଼ା ସୃଷ୍ଟି କରିଛନ୍ତି ଯେପରିକି ତୁମେ ତା'ପାଖରେ ତୃପ୍ତି ପାଇବ । ଯେତେବେଳେ ପୁରୁଷ ନାରୀ ପାଖକୁ ଯାଏ, ତା'ର ହାଲୁକା ଗର୍ଭ ରହିଯାଏ ଯାହାକୁ ଧରି ସେ ଚଲାବୁଲା କରେ । ପୁଣି ଯେତେବେଳେ ତା' ଗର୍ଭ ଭାରି ହୋଇଯାଏ, ଉଭୟ (ପତି ଓ ପତ୍ନୀ) ଈଶ୍ୱରଙ୍କୁ ପ୍ରାର୍ଥନା କରନ୍ତି, "ହେ ପ୍ରଭୁ ! ଯଦି ତୁମେ ଆମକୁ ସୁସ୍ଥ ସନ୍ତାନଟିଏ ଦିଅ, ତେବେ ଆମେ ନିଶ୍ଚୟ ତୁମର କୃତଜ୍ଞ ହେବୁ ।" ୧୯୦. କିନ୍ତୁ ଯେତେବେଳେ ଅଲ୍ଲାହ୍ ସେମାନଙ୍କୁ ସୁସ୍ଥସବଳ ସନ୍ତାନଟିଏ ଦିଅନ୍ତି, ସେମାନେ ଅଲ୍ଲାହଙ୍କର ଏହି ଅନୁଗ୍ରହର ଶ୍ରେୟ ଅନ୍ୟମାନଙ୍କୁ ଦେଇଦିଅନ୍ତି ।

ସେମାନେ ଅଲ୍ଲାହଙ୍କ ଈଶ୍ୱରତ୍ୱରେ ଅନ୍ୟମାନଙ୍କୁ ଯେମିତି ଅଂଶୀଦାର କରୁଛନ୍ତି, ଅଲ୍ଲାହଙ୍କ ମହିମା ତାହାଠାରୁ ବହୁ ଊର୍ଦ୍ଧ୍ୱରେ ।

୧୯୧. ଏମାନେ କିପରି ସେମାନଙ୍କୁ ଅଲ୍ଲାହଙ୍କର ସମକକ୍ଷ କରୁଛନ୍ତି ଯେଉଁମାନେ କିଛି ସୃଷ୍ଟି କରନ୍ତିନାହିଁ ବରଂ ସେମାନେ ନିଜେ ସୃଷ୍ଟି ହୋଇଛନ୍ତି ? ୧୯୨. ଯେଉଁମାନେ ଏମାନଙ୍କୁ କୌଣସି ପ୍ରକାର ସାହାଯ୍ୟ କରି ପାରିବେନାହିଁ ବା ନିଜକୁ ମଧ୍ୟ ସାହାଯ୍ୟ କରିପାରିବେ ନାହିଁ । ୧୯୩. ଯଦି ତୁମେ ସେମାନଙ୍କୁ ଠିକ୍ ବାଟକୁ ଡାକିବ, ସେମାନେ ତୁମ କଥା ଶୁଣିବେନାହିଁ । ତୁମେ ସେମାନଙ୍କୁ ଡାକ ବା ନଡାକ, ସେମାନଙ୍କ ପାଇଁ ଏକା କଥା । ୧୯୪. ପ୍ରକୃତରେ ଅଲ୍ଲାହଙ୍କ ବ୍ୟତୀତ ଯେଉଁମାନଙ୍କୁ ତୁମେମାନେ ଡାକ, ସେମାନେ ତୁମମାନଙ୍କ ପରି (ଅଲ୍ଲାହଙ୍କର) ଦାସ । ସେମାନଙ୍କୁ ପ୍ରାର୍ଥନା କରି ଦେଖ, ଯଦି ତୁମେମାନେ ସତ କହୁଛ ତେବେ ସେମାନେ ତୁମ ପ୍ରାର୍ଥନା ସ୍ୱୀକାର କରନ୍ତୁ । ୧୯୫. କ'ଣ ସେମାନଙ୍କର ପାଦ ଅଛି ଯେଉଁଥିରେ ସେମାନେ ଚାଲନ୍ତି ? କିମ୍ବା କ'ଣ ସେମାନଙ୍କର ହାତ ଅଛି ଯାହାଦ୍ୱାରା ସେମାନେ ଧରନ୍ତି ବା ଆଖି ଅଛି ଯାହାଦ୍ୱାରା ସେମାନେ ଦେଖନ୍ତି ବା କାନ ଅଛି ଯାହାଦ୍ୱାରା ଶୁଣନ୍ତି ? କହିଦିଅ, "ତୁମେମାନେ ଯେଉଁମାନଙ୍କୁ ଅଲ୍ଲାହଙ୍କର ସମକକ୍ଷ କରିଛ, ସେମାନଙ୍କୁ ଡ଼ାକ ଏବଂ ସମସ୍ତେ ମିଶି ମୋ' ବିରୁଦ୍ଧରେ ଚକ୍ରାନ୍ତ କର ଏବଂ ମୋତେ ଫୁରୁସତ ଦିଅନାହିଁ । ୧୯୬. ଅଲ୍ଲାହ୍ ମୋ'ର ସାହାଯ୍ୟକାରୀ ଯିଏ ଏହି ଗ୍ରନ୍ଥ ପଠାଇଛନ୍ତି ଏବଂ ସେ ସଦାଚାରୀମାନଙ୍କୁ ସାହଯ୍ୟ କରନ୍ତି । ୧୯୭. ତୁମେମାନେ ତାଙ୍କୁ ଛାଡ଼ି ଯେଉଁମାନଙ୍କୁ ଡାକ, ସେମାନେ ତୁମକୁ ସାହାଯ୍ୟ କରିବାକୁ ସକ୍ଷମ ନୁହନ୍ତି କିମ୍ବା ସେମାନେ ନିଜକୁ ମଧ୍ୟ ସାହାଯ୍ୟ କରି ପାରିବେନାହିଁ । ୧୯୮. ଯଦି ତୁମେମାନେ ସେମାନଙ୍କୁ ସତ୍‌ପଥକୁ ଡାକିବ, ସେମାନେ ତୁମ କଥା ଶୁଣି ପାରିବେନାହିଁ । ସେମାନେ ତୁମମାନଙ୍କୁ ଦେଖୁଥିବା ପରି ଜଣାପଡ଼ନ୍ତି ଅଥଚ ପ୍ରକୃତରେ କିଛି ଦେଖନ୍ତିନାହିଁ ।"

୧୯୯. କ୍ଷମାର ନୀତି ଅବଲମ୍ବନ କର, ଭଲ କର୍ମ କରିବାର ଉପଦେଶ ଦେଉଥାଅ ଏବଂ ଅଜ୍ଞାନୀମାନଙ୍କଠାରୁ ଦୂରେଇ ରୁହ (ଅର୍ଥାତ୍ ଯୁକ୍ତିତର୍କ କରନାହିଁ) । ୨୦୦. ଯଦି ଶଇତାନ ତୁମ ମନରେ ଦୁର୍ଭାବନା ଉତ୍ପନ୍ନ କରେ, ତେବେ

ଅଲ୍ଲାହଙ୍କର ଆଶ୍ରୟ ନିଅ । ସେ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି । ୨୦୧. ଯେଉଁମାନେ ଧର୍ମପରାୟଣ, ସେମାନଙ୍କ ମନରେ ଯେତେବେଳେ ଶଇତାନ ଦୁର୍ଭାବନା ଉତ୍ପନ୍ନ କରେ, ସେମାନେ ଅଲ୍ଲାହଙ୍କୁ ସ୍ମରଣ କରନ୍ତି ଏବଂ ସଙ୍ଗେସଙ୍ଗେ ସେମାନଙ୍କର ଆଖି ଖୋଲିଯାଏ । ୨୦୨. ଶଇତାନମାନେ ସେମାନଙ୍କର ଭାଇବନ୍ଧୁମାନଙ୍କୁ ବିଭ୍ରାନ୍ତି ମଧ୍ୟକୁ ଟାଣିନିଅନ୍ତି ଏବଂ ସେଥିରେ ହେଳା କରନ୍ତିନାହିଁ ।

୨୦୩. ଯଦି ତୁମେ ସେମାନଙ୍କ ଇଚ୍ଛା ମୁତାବକ କୌଣସି ଚମତ୍କାର ନଦେଖାଇ ପାରୁଛ, ସେମାନେ କହୁଛନ୍ତି ଯେ ତୁମେ କାହିଁକି ଅଲୌକିକ ନିଦର୍ଶନ ଆଣୁନାହଁ । କହିଦିଅ, "ମୁଁ କେବଳ ସେହି ନିର୍ଦ୍ଦେଶ ପାଳନ କରେ ଯାହା ମୋତେ ପ୍ରଭୁଙ୍କ ଦ୍ୱାରା ଦୈବବାଣୀ କରାଯାଏ । ଏହି କୁରଆନ ତୁମମାନଙ୍କ ପ୍ରଭୁଙ୍କଠାରୁ ଆସିଥିବା ଜ୍ଞାନର ଏକ ଆଲୋକ ଯେଉଁଥିରେ ବିଶ୍ୱାସ କରୁଥିବା ଲୋକମାନଙ୍କ ନିମନ୍ତେ ମାର୍ଗଦର୍ଶନ ରହିଛି ଏବଂ ଏହା ତାଙ୍କର ଏକ କରୁଣା । ୨୦୪. ଯେତେବେଳେ କୁରଆନ୍ ପାଠ କରାଯାଏ ଏହାକୁ ଧ୍ୟାନ ଦେଇ ଶୁଣ ଏବଂ ନୀରବ ରୁହ, ହୁଏତ ତୁମ ପ୍ରତି (ଅଲ୍ଲାହଙ୍କର) କରୁଣା ହେବ ।

୨୦୫. ତୁମେମାନେ ନିଜ ପାଳନକର୍ତ୍ତାଙ୍କ ପ୍ରତି ଭୟ ରଖି ତାଙ୍କୁ ବିନୀତ ଭାବରେ ସକାଳେ ଓ ସଂଧ୍ୟାରେ ନିଜ ମନରେ ତଥା ଧୀର ସ୍ୱରରେ ସ୍ମରଣ କରୁଥାଅ । ଏବିଷୟରେ ଆଦୌ ଅବହେଳା କରନାହିଁ । ୨୦୬. ଯେଉଁମାନେ (ଅର୍ଥାତ୍ ଦେବଦୂତମାନେ) ତୁମ ଅଲ୍ଲାହଙ୍କ ନିକଟରେ ରହନ୍ତି, ସେମାନେ କେବେହେଲେ ଅହଙ୍କାର କରି ତାଙ୍କର ଉପାସନା କରିବାକୁ କୁଣ୍ଠାବୋଧ କରନ୍ତି ନାହିଁ, ବରଂ ସେମାନେ ତାଙ୍କର ମହିମାଗାନ କରନ୍ତି ଏବଂ ତାଙ୍କୁ ପ୍ରଣାମ କରୁଥାଆନ୍ତି । [ପ୍ରଣାମ]

## ଅଧ୍ୟାୟ ୮, ଅନ୍‌ଫାଲ

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. (ହେ ରସୁଲ୍!) ସେମାନେ ତୁମକୁ ବିଜୟଲବ୍ଧ ଧନ ବିଷୟରେ ପଚାରୁଛନ୍ତି । କୁହ, "ଯୁଦ୍ଧରେ ମିଳିଥିବା ଧନ ଅଲ୍ଲାହଙ୍କର ଏବଂ ତାଙ୍କ ରସୁଲଙ୍କର । ତେଣୁ, ତୁମେମାନେ ଅଲ୍ଲାହଙ୍କ ପ୍ରତି ଭୟ ରଖ ଏବଂ ପରସ୍ପର ମଧ୍ୟରେ ଥିବା ସଂପର୍କକୁ ସୁଧାରି ନିଅ । ଯଦି ତୁମେମାନେ ପ୍ରକୃତରେ ସଦ୍‌ବିଶ୍ୱାସୀ ତେବେ ଅଲ୍ଲାହ ଓ ତାଙ୍କ ରସୁଲଙ୍କର ଆଜ୍ଞା ପାଳନ କର ।" ୨. ପ୍ରକୃତ ସଦ୍‌ବିଶ୍ୱାସୀ ସେହିମାନେ, ଯେଉଁମାନଙ୍କର ହୃଦୟ ଅଲ୍ଲାହଙ୍କ କଥା ଶୁଣିଲେ ଥରିଉଠେ ଏବଂ ଯେତେବେଳେ ସେମାନଙ୍କ ପାଖରେ ତାଙ୍କର ବାଣୀ ପାଠ କରାଯାଏ, ସେମାନଙ୍କ ଆସ୍ଥା ଆହୁରି ଦୃଢ଼ ହୋଇଯାଏ ଏବଂ ସେମାନେ ନିଜ ପାଳନକର୍ତ୍ତାଙ୍କ ଉପରେ ଭରସା କରନ୍ତି । ୩. ସେମାନେ ନମାଜ ସଂପାଦନ କରନ୍ତି ଏବଂ ଯାହା ଧନ ଆମ୍ଭେ ସେମାନଙ୍କୁ ଦେଇଛୁ ସେଥିରୁ (ସତ୍‌କାର୍ଯ୍ୟରେ) ଖର୍ଚ୍ଚ କରନ୍ତି । ୪. ଏହିମାନେ ପ୍ରକୃତ ସଦ୍‌ବିଶ୍ୱାସୀ । ଏହିମାନଙ୍କୁ ଈଶ୍ୱରଙ୍କ ପାଖରେ ସମ୍ମାନଜନକ ସ୍ଥାନ ମିଳିବ, ତାଙ୍କର କ୍ଷମା ମିଳିବ ଏବଂ ଉନ୍ନତ ମାନର ସୁଖସମ୍ଭୋଗ ମଧ୍ୟ ।

୫. ଯେଉଳି ଭାବରେ ତୁମ ଈଶ୍ୱର ତୁମକୁ ତୁମ ଘରୁ ଏକ ସତ୍‌କର୍ମ ଉଦ୍ଦେଶ୍ୟରେ ବାହାର କରି ଆଣିଲେ, ମୁସଲମାନମାନଙ୍କ ମଧ୍ୟରୁ କେତେକ ଏହାକୁ ପସନ୍ଦ କରୁନଥିଲେ । ୬. ପ୍ରକୃତ କଥା ପରିଷ୍କାର ହୋଇଯିବା ପରେ ସେମାନେ ଏବିଷୟରେ ତୁମ ସହିତ ଏମିତି ଝଗଡ଼ା କରୁଥିଲେ ଯେମିତି ସେମାନଙ୍କୁ ସେମାନଙ୍କ ଆଖି ଆଗରେ ମରଣ ମୁହଁକୁ ଠେଲି ଦିଆଯାଉଛି । ୭. ମନେ ପକାଅ, ଯେତେବେଳେ (ଅବୁ ସୁଫିୟାନ୍ ଓ ଅବୁ ଜହଲ୍‌ର) ଦୁଇ ଦଳ ମଧ୍ୟରୁ ଗୋଟିଏ ଦଳ ତୁମମାନଙ୍କ ଅଧୀନକୁ ଆସିବ ବୋଲି ଅଲ୍ଲାହ୍ ପ୍ରତିଶ୍ରୁତି ଦେଇଥିଲେ ଅଥଚ ତୁମେମାନେ ନିରସ୍ତ୍ର ଥିବା ଦଳଟିକୁ ଆୟତ୍ତ କରିବାକୁ ଚାହୁଁଥିଲ କିନ୍ତୁ ଅଲ୍ଲାହ୍ ଚାହୁଁଥିଲେ ଯେ ସେ ନିଜ କଥାର ସତ୍ୟତା ପ୍ରମାଣିତ କରିବେ ଏବଂ ନାସ୍ତିକମାନଙ୍କର ମୂଳୋତ୍ପାଟନ କରିବେ, ୮. ଯେପରିକି ସେ ସତକୁ ସତ ଏବଂ ମିଛକୁ ମିଛ ବୋଲି ପ୍ରମାଣିତ କରିବେ ଯଦିଓ ଅପରାଧୀମାନଙ୍କୁ ଏହା ଅପ୍ରିୟ ଲାଗୁ ।

୯. (ସ୍ମରଣ କର) ଯେତେବେଳେ ତୁମେମାନେ ନିଜ ପ୍ରଭୁଙ୍କୁ ପ୍ରାର୍ଥନା କଲ ଏବଂ ସେ କହିଲେ ଯେ ମୁଁ ଅବଶ୍ୟ ତୁମମାନଙ୍କୁ ସାହଯ୍ୟ କରିବାପାଇଁ ପଛକୁ ପଛ ଏକ ହଜାର ଦେବସେନା ପଠାଇବି । ୧୦. ଅଲ୍ଲାହ୍ ଏହି କାରଣରୁ ଏପରି କଲେ ଯେ ଏହା ତୁମମାନଙ୍କ ପାଇଁ ଏକ ଖୁସିର ଖବର ହେଉ ଏବଂ ଏହାଦ୍ୱାରା ତୁମମାନଙ୍କ ମନ ଶାନ୍ତ ହୋଇଯାଉ, ଅନ୍ୟଥା ବିଜୟ ତ କେବଳ ଅଲ୍ଲାହ୍ ପ୍ରଦାନ କରିଥାଆନ୍ତି । ଅଲ୍ଲାହ୍ ପ୍ରଭୂତ୍ୱଶାଳୀ ଏବଂ ତତ୍ତ୍ୱଜ୍ଞାନୀ । ୧୧. ଯେତେବେଳେ ତୁମମାନଙ୍କ ମନକୁ ସ୍ଥିର କରିବା ପାଇଁ ସେ ତୁମମାନଙ୍କୁ ତନ୍ଦ୍ରାଛନ୍ନ କରିଥିଲେ ଏବଂ ତୁମମାନଙ୍କ ଉପରେ ଆକାଶରୁ ବର୍ଷା କରିଥିଲେ ଯାହାଦ୍ୱାରା ତୁମମାନଙ୍କୁ ଶୁଦ୍ଧ କରିବେ, ତୁମମାନଙ୍କୁ ଶଇତାନର ପ୍ରରୋଚନାରୁ ମୁକ୍ତ କରିବେ, ତୁମମାନଙ୍କର ମନୋବଳ ବୃଦ୍ଧି କରିବେ ଏବଂ ତୁମମାନଙ୍କର ପାଦ ମଜବୁତ କରିବେ । ୧୨. ଯେତେବେଳେ ତୁମ ଈଶ୍ୱର ଦେବଦୂତମାନଙ୍କୁ ନିର୍ଦ୍ଦେଶ ଦେଲେ, "ମୁଁ ତୁମମାନଙ୍କ ସହିତ ଅଛି । ତୁମେମାନେ ମୁସଲମାନମାନଙ୍କର ପାଦ ମଜବୁତ କର । ମୁଁ ନାସ୍ତିକମାନଙ୍କ ମନରେ ଭୟ ସଂଚାର କରିବି । ତୁମେମାନେ ଶତ୍ରୁମାନଙ୍କର ବେକ ଏବଂ ଗଣ୍ଠିଗଣ୍ଠି ଉପରେ ପ୍ରହାର କର । ୧୩. କାରଣ ସେମାନେ ଅଲ୍ଲାହ୍ ଓ ତାଙ୍କ ପ୍ରତିନିଧିଙ୍କର ବିରୋଧ କରିଛନ୍ତି ।" ଯିଏ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କର ବିରୋଧ କରେ, (ସେ ଜାଣିରଖୁ ଯେ) ଅଲ୍ଲାହ୍ କଠୋର ଶାସ୍ତି ଦିଅନ୍ତି । ୧୪. ଏଠାରେ ଏହି ମଜା ଚାଖ ଏବଂ (ଜାଣିରଖ ଯେ) ନାସ୍ତିକମାନେ ନର୍କଦଣ୍ଡ ଭୋଗିବେ ।

୧୫. ହେ ସଦ୍‌ବିଶ୍ୱାସୀଗଣ ! ଯେତେବେଳେ ତୁମେମାନେ (ରଣଭୂମୀରେ) ନାସ୍ତିକମାନଙ୍କର ସମ୍ମୁଖୀନ ହୁଅ, ସେତେବେଳେ ପଛଘୁଂଚା ଦିଅନାହିଁ । ୧୬. ଯଦି କେହି ଏକ ରଣକୌଶଳ ରୂପେ ଏହା କରୁଥାଏ ବା ନିଜ ସେନାର ଅନ୍ୟ କୌଣସି ଦଳରେ ମିଶିବା ପାଇଁ କରୁଥାଏ ତେବେ ଭିନ୍ନ କଥା, କିନ୍ତୁ ଯିଏ ଏହା ବ୍ୟତୀତ ଅନ୍ୟ କାରଣରୁ ପଛଘୁଂଚା ଦେବ, ସେ ଅଲ୍ଲାହଙ୍କ କ୍ରୋଧର ଶିକାର ହେବ ଏବଂ ନର୍କରେ ବାସ କରିବ ଯାହା ଅତି କଦର୍ଯ୍ୟ ସ୍ଥାନ ।

୧୭. (ହେ ମୁସଲମାନଗଣ !) ତୁମେମାନେ ସେମାନଙ୍କୁ ହତ୍ୟା କରି ନଥିଲ ବରଂ ଅଲ୍ଲାହ୍ ସେମାନଙ୍କୁ ହତ୍ୟା କରିଥିଲେ ଏବଂ (ହେ ରସୁଲ !)

ଯେତେବେଳେ ତୁମେ ସେମାନଙ୍କ ଉପରେ ବାଲିମୁଠା ଫୋପାଡ଼ିଥିଲ, ତାହାକୁ (ତୁମେ ନୁହେଁ, ବରଂ ତୁମ ଜରିଆରେ) ଅଲ୍ଲାହ୍ ଫୋପାଡ଼ି ଥିଲେ ଏହି ଉଦ୍ଦେଶ୍ୟରେ ଯେ ସଦ୍‌ବିଶ୍ୱାସୀମାନଙ୍କୁ ଭଲରୂପେ ପରୀକ୍ଷା କରିବେ । ଅଲ୍ଲାହ୍ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି । ୧୮. ଘଟଣାଟି ଏହିପରି ଥିଲା ଏବଂ ଅଲ୍ଲାହ୍ ନାସ୍ତିକମାନଙ୍କର ଚକ୍ରାନ୍ତଗୁଡ଼ିକୁ ଦୁର୍ବଳ କରିଦିଅନ୍ତି । ୧୯. (ହେ ନାସ୍ତିକମାନେ !) ଯଦି ତୁମେମାନେ (ସତ୍ ଓ ଅସତ୍ ମଧ୍ୟରେ) ନିଷ୍ପତ୍ତି ଚାହୁଁଥିଲ, ତେବେ ନିଷ୍ପତ୍ତି ତୁମମାନଙ୍କ ପାଖରେ ପହଁଚିସାରିଛି । ଯଦି ତୁମେମାନେ (ଶତ୍ରୁତା କରିବାରୁ) ନିବୃତ୍ତ ରୁହ ତେବେ ଏହା ତୁମମାନଙ୍କ ପକ୍ଷରେ ମଂଗଳକର କିନ୍ତୁ ଯଦି ପୁଣି ସେହିପରି କର, ତେବେ ଆମ୍ଭେ ମଧ୍ୟ ପୁଣି ସେହିପରି ଦଣ୍ଡ ଦେବୁ । ତୁମମାନଙ୍କର ସେନା ଯେତେ ବିଶାଳ ହେଲେ ସୁଦ୍ଧା ତୁମମାନଙ୍କର କୌଣସି କାମରେ ଆସିବନାହିଁ । ଅଲ୍ଲାହ୍ ସଦ୍‌ବିଶ୍ୱାସୀମାନଙ୍କ ସହିତ ଥାଆନ୍ତି ।

୨୦. ହେ ମୁସଲମାନମାନେ ! ଅଲ୍ଲାହଙ୍କର ଏବଂ ତାଙ୍କ ରସୁଲଙ୍କର କଥା ମାନ ଏବଂ ତାଙ୍କ ଆଜ୍ଞା ଶୁଣି ସାରିବା ପରେ ଅବଜ୍ଞା କରନାହିଁ । ୨୧. ଆଉ ସେହି ଲୋକମାନଙ୍କ ପରି ହୋଇଯାଅ ନାହିଁ, ଯେଉଁମାନେ କହନ୍ତି "ଆମେ ଶୁଣିଲୁ" କିନ୍ତୁ ପ୍ରକୃତରେ ସେମାନେ କିଛି ଶୁଣନ୍ତିନାହିଁ । ୨୨. ଅଲ୍ଲାହଙ୍କ ଦୃଷ୍ଟିରେ ପ୍ରାଣୀମାନଙ୍କ ମଧ୍ୟରେ ସବୁଠାରୁ ହୀନ ହେଉଛନ୍ତି ସେହି ମୂକ ଓ ବଧିର ଲୋକମାନେ, ଯେଉଁମାନେ ବୁଦ୍ଧି ବ୍ୟବହାର କରନ୍ତିନାହିଁ । ୨୩. ଯଦି ଅଲ୍ଲାହ୍ ସେମାନଙ୍କଠାରେ କିଛି ସଦ୍‌ଗୁଣ (ଅର୍ଥାତ୍ ସତ୍ୟ ପାଇଁ ଆଗ୍ରହ) ଦେଖନ୍ତେ, ତେବେ ସେମାନଙ୍କୁ କଥା ଶୁଣିବାର ସୌଭାଗ୍ୟ ପ୍ରଦାନ କରନ୍ତେ ମାତ୍ର ଯଦି ଏବେ ସେମାନଙ୍କୁ ଶୁଣାଇଦେବେ, ତେବେ ସେମାନେ ନିଶ୍ଚୟ ମୁହଁ ବୁଲାଇ ଚାଲିଯିବେ ।

୨୪. ହେ ମୁସଲମାନଗଣ ! ଅଲ୍ଲାହ ଓ ତାଙ୍କ ରସୁଲଙ୍କ କଥା ମାନିନିଅ, ଯେତେବେଳେକି ରସୁଲ ତୁମମାନଙ୍କୁ ଏଭଳି କଥା ପାଇଁ ଡାକନ୍ତି ଯାହା ତୁମମାନଙ୍କୁ ଜୀବନ୍ୟାସ ଦେବ । ଜାଣିରଖ ଯେ ଅଲ୍ଲାହ, ମନୁଷ୍ୟ ଓ ତା' ହୃଦୟ ମଝିରେ ଆସି ଛିଡ଼ା ହୋଇଯାଆନ୍ତି । ତୁମମାନଙ୍କୁ ଏକାଠି କରି (ଦିନେ) ତାଙ୍କରି ସାମନାରେ ହାଜର କରାଯିବ । ୨୫. ଏବଂ ସେହି ବିପଦକୁ ଭୟ କର ଯାହା ତୁମମାନଙ୍କ

ମଧ୍ୟରୁ ଯେ କେବଳ ସେହି ଲୋକମାନଙ୍କ ଉପରେ ପଡ଼ିବ, ଯେଉଁମାନେ କୁକର୍ମ କରିଛନ୍ତି ତାହା ନୁହେଁ (ବରଂ ଏହା ଭଲ ଓ ମନ୍ଦ ଉଭୟ ପ୍ରକାରର ଲୋକଙ୍କୁ ପ୍ରଭାବିତ କରିବ) । ଜାଣିରଖ ଯେ ଅଲ୍ଲାହ କଠୋର ଶାସ୍ତି ଦିଅନ୍ତି ।

୨୬. ଏବଂ (ସେହି ସମୟକୁ ମନେ ପକାଅ) ଯେତେବେଳେ ତୁମେମାନେ ସଂଖ୍ୟାରେ ଅଳ୍ପ ଥିଲ, ଦେଶରେ ଦୁର୍ବଳ ରୂପେ ଗଣାଯାଉଥିଲ ଏବଂ ଭୟ କରୁଥିଲ ଯେ କାଳେ ଲୋକେ ତୁମମାମାନଙ୍କୁ ଉଠାଇ ନେଇଯିବେ । ସେତେବେଳେ ଅଲ୍ଲାହ୍ ତୁମମାନଙ୍କୁ (ମଦିନାରେ) ଆଶ୍ରୟ ଦେଲେ, ତୁମମାନଙ୍କର ସହାୟତା କରି ତୁମମାନଙ୍କୁ ଶକ୍ତିଶାଳୀ କଲେ ଏବଂ ଭଲଭଲ ଆହାର ଦେଲେ ଯେପରିକି ତୁମେମାନେ କୃତଜ୍ଞ ହେବ । ୨୭. ହେ ମୁସଲମାନଗଣ ! ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ ସହିତ ବିଶ୍ୱାସଘାତକତା କରନାହିଁ ଏବଂ ପରସ୍ପରର ଅମାନତ (ଅର୍ଥାତ୍ ଭରସାରେ ରଖା ଯାଇଥିବା ଧନ ବା ବସ୍ତୁ) ଆତ୍ମସାତ୍ କରନାହିଁ ଅଥଚ (ଏହା ପାପ ବୋଲି) ତୁମେମାନେ ଜାଣ । ୨୮. ଜାଣିରଖ ଯେ ତୁମମାନଙ୍କର ଧନସଂପତ୍ତି ଓ ସନ୍ତାନସନ୍ତତି ଏକ ପରୀକ୍ଷା ଏବଂ ଅଲ୍ଲାହଙ୍କ ପାଖରେ ଅଜସ୍ର ପୁରସ୍କାର ଅଛି । ୨୯. ହେ ମୁସଲମାନଗଣ ! ଯଦି ତୁମେମାନେ ସଦାଚାରୀ ହୁଅ, ତେବେ ସେ ତୁମମାନଙ୍କୁ (ଠିକ୍ ଓ ଭୁଲ୍ ମଧ୍ୟରେ ପ୍ରଭେଦ କରିବାର) ଶକ୍ତି ଦେବେ ଏବଂ ତୁମମାନଙ୍କର ପାପ ଧୋଇଦେବେ ଏବଂ ତୁମମାନଙ୍କୁ କ୍ଷମା କରିଦେବେ । ଅଲ୍ଲାହ୍ ଅତ୍ୟନ୍ତ କରୁଣାଶୀଳ ।

୩୦. ଯେତେବେଳେ ନାସ୍ତିକମାନେ ଚକ୍ରାନ୍ତ କରିଥିଲେ ଯେ ସେମାନେ ତୁମକୁ ବନ୍ଦୀ କରିବେ ବା ହତ୍ୟା କରିବେ ଅଥବା ସହରରୁ ବିତାଡ଼ିତ କରିଦେବେ, ସେମାନେ ନିଜର ଯୋଜନା ତିଆରି କରୁଥିଲେ ଏବଂ ଅଲ୍ଲାହ୍ ମଧ୍ୟ ତାଙ୍କର ଯୋଜନା ପ୍ରସ୍ତୁତ କରୁଥିଲେ ଏବଂ ଅଲ୍ଲାହ୍ ସବୁଠାରୁ ଭଲ ଯୋଜନା କରନ୍ତି । ୩୧. ଯେତେବେଳେ ସେମାନଙ୍କ ପାଖରେ ଆମ୍ଭର ବାଣୀ ପାଠ କରାଯାଏ, ସେମାନେ କହନ୍ତି, "ଆମେ ଶୁଣିଲୁ । ଆମେ ମଧ୍ୟ ଚାହିଁଲେ ଏମିତି କଥା କହିପାରିବୁ । ଏଗୁଡ଼ିକ କେବଳ ପ୍ରାଚୀନ କାଳର ଲୋକମାନଙ୍କର କାହାଣୀ ।" ୩୨. ପୁଣି ଏହା ମଧ୍ୟ କହନ୍ତି, "ହେ ଅଲ୍ଲାହ୍! ଯଦି ଏହି କୁରଆନ ସତ୍ୟ ଏବଂ ଯଦି ଏହା ତୁମ ଦ୍ୱାରା

ପଠାଯାଇଛି, ତେବେ ଆମ ଉପରେ ଆକାଶରୁ ପଥର ବର୍ଷା କର ବା କୌଣସି ବଡ଼ ବିପଦ ପକାଇଦିଅ ।” ୩୩. (ହେ ରସୁଲ!) ଅଲ୍ଲାହ୍ ଏମିତି ନୁହନ୍ତି ଯେ ତୁମେ ସେମାନଙ୍କ ମଧ୍ୟରେ ଥିବା ଅବସ୍ଥାରେ ସେ ସେମାନଙ୍କୁ ଦଣ୍ଡ ଦେବେ କିମ୍ବା ସେମାନେ କ୍ଷମା ମାଗୁଥିବା ବେଳେ ସେ ସେମାନଙ୍କୁ ଦଣ୍ଡ ଦେବେ । ୩୪. ସେମାନଙ୍କଠାରେ କି ବୈଶିଷ୍ଟ୍ୟ ଅଛି ଯେ ଅଲ୍ଲାହ୍ ସେମାନଙ୍କୁ ଶାସ୍ତି ଦେବେନାହିଁ ବରଂ ସେମାନେ ତ ଲୋକମାନଙ୍କୁ ପବିତ୍ର ମସ୍‌ଜିଦକୁ ଯିବାରେ ବାଧା ଦେଉଛନ୍ତି ଯଦିଓ ସେମାନେ ଏହାର ତତ୍ତ୍ୱାବଧାରକ ମଧ୍ୟ ନୁହନ୍ତି । ଏହାର ତତ୍ତ୍ୱାବଧାରକ କେବଳ ଧର୍ମପରାୟଣ ବ୍ୟକ୍ତିମାନଙ୍କ ବ୍ୟତୀତ ଅନ୍ୟ କେହି ହୋଇ ନପାରନ୍ତି, ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଏହା ଜାଣନ୍ତି ନାହିଁ । ୩୫. କାବା ମସଜିଦ୍ ପାଖରେ ବସି କେବଳ ସିଟି ମାରିବା ଏବଂ ତାଳି ମାରିବା ହେଉଛି ସେମାନଙ୍କର ନମାଜ । ଏବେ (ସତ୍ୟକୁ) ଅସ୍ୱୀକାର କରିବାର ଫଳ ସ୍ୱରୂପ ଶାସ୍ତିର ମଜା ଚାଖ ।

୩୬. ଯେଉଁମାନେ ଅବିଶ୍ୱାସ କଲେ, ସେମାନେ ଅଲ୍ଲାହଙ୍କ ମାର୍ଗରୁ ଲୋକମାନଙ୍କୁ ରୋକିବା ଲାଗି ନିଜର ଧନ ଖର୍ଚ୍ଚ କରୁଛନ୍ତି ଏବଂ ଆଗକୁ ସେମାନେ ଆହୁରି ଖର୍ଚ୍ଚ କରିବେ । ଶେଷରେ ଏହା ସେମାନଙ୍କ ପରିତାପର କାରଣ ହେବ ଏବଂ ସେମାନେ ପରାଜିତ ହେବେ । ପୁଣି ନାସ୍ତିକମାନଙ୍କୁ ଏକାଠି ଘଉଡ଼ାଇ ନର୍କକୁ ନିଆଯିବ । ୩୭. ଯାହାଫଳରେ ଅଲ୍ଲାହ୍ ଦୁଷ୍ଟ ଲୋକମାନଙ୍କୁ ଭଲ ଲୋକମାନଙ୍କଠାରୁ ପୃଥକ କରିବେ । ପୁଣି ସେ ଦୁଷ୍ଟମାନଙ୍କୁ ଗୋଟିକ ଉପରେ ଗୋଟିଏ ଲଦି ସ୍ତୁପରେ ପରିଣତ କରିବେ ଏବଂ ସେମାନଙ୍କୁ ନର୍କରେ ଫିଙ୍ଗିଦେବେ । ଏହି ଲୋକମାନେ କ୍ଷତିଗ୍ରସ୍ତ ହେବେ ।

୩୮. ନାସ୍ତିକମାନଙ୍କୁ କହିଦିଅ ଯେ ଯଦି ସେମାନେ କ୍ଷାନ୍ତ ହୁଅନ୍ତି ତେବେ ଆଗରୁ ଯାହା ଦୋଷ କରିଛନ୍ତି ତାହା କ୍ଷମା କରିଦିଆଯିବ କିନ୍ତୁ ଯଦି ସେମାନେ ପୁନର୍ବାର ସେହିଭଳି କର୍ମ କରିବେ, ତେବେ ପୂର୍ବ ସମାଜଗୁଡ଼ିକ ସହିତ ଯାହା ଘଟିଥିଲା, ସେମାନଙ୍କ ସହିତ ମଧ୍ୟ ତାହାହିଁ ଘଟିବ । ୩୯. ଯେପର୍ଯ୍ୟନ୍ତ ଅଧର୍ମ ଓ ଉତ୍ପୀଡ଼ନର ଅନ୍ତ ନହୋଇଛି ଏବଂ (ଏଠାରେ) ଅଲ୍ଲାହଙ୍କ ଧର୍ମ ସଂପୂର୍ଣ୍ଣ ରୂପେ ସ୍ଥାପିତ ନହୋଇଛି ସେମାନଙ୍କ ସହିତ ଯୁଦ୍ଧ କର । ଯଦି ସେମାନେ ଏଥିରୁ କ୍ଷାନ୍ତ

ହୁଅନ୍ତି ତେବେ ସେମାନଙ୍କର କାର୍ଯ୍ୟକଳାପଗୁଡ଼ିକୁ ଅଲ୍ଲାହ୍ ଦେଖୁଛନ୍ତି । ୪୦. ଆଉ ଯଦି ସେମାନେ ନମାନନ୍ତି, ତେବେ ଜାଣିରଖ ଯେ ଅଲ୍ଲାହ୍ ତୁମମାନଙ୍କର ରକ୍ଷକ । ସେ ସର୍ବୋତ୍ତମ ରକ୍ଷକ ଏବଂ ସର୍ବୋତ୍ତମ ସାହାଯ୍ୟକାରୀ ।

୪୧. ଯାହା ବିଜୟଲବ୍ଧ ଧନ ତୁମମାନଙ୍କୁ ମିଳେ, ତାହାର ଏକ-ପଂଚମାଂଶ ହେଉଛି ଅଲ୍ଲାହଙ୍କର, ତାଙ୍କ ରସୁଲଙ୍କର, ତାଙ୍କ ଆତ୍ମୀୟମାନଙ୍କର ଏବଂ ଅନାଥ, ଦରିଦ୍ର ଓ ପଥିକମାନଙ୍କର ପ୍ରାପ୍ୟ । ଯଦି ତୁମେମାନେ ଅଲ୍ଲାହଙ୍କୁ ବିଶ୍ୱାସ କର ଏବଂ ସେଥିରେ ବିଶ୍ୱାସ କର ଯାହା ଆମ୍ଭେ ଆମ୍ଭ ଭକ୍ତଙ୍କ ପାଖକୁ ସତ୍ୟ ଓ ଅସତ୍ୟର ନିଷ୍ପତ୍ତି ହେବା ଦିନ (ଅର୍ଥାତ୍ ବଦର ଯୁଦ୍ଧ ଦିନ) ପଠାଇଥିଲୁ, ଯେଉଁଦିନ ଉଭୟ ସେନା ପରସ୍ପରର ସମ୍ମୁଖୀନ ହୋଇଥିଲେ (ତା'ହେଲେ ଏହି ପ୍ରାପ୍ୟ ଦେଇଦିଅ) । ଅଲ୍ଲାହ୍ ସବୁକିଛି କରିବାକୁ ସକ୍ଷମ ।

୪୨. (ସେଦିନ କଥା ମନେ ପକାଅ) ଯେତେବେଳେ ତୁମେମାନେ ଘାଟିର ଗୋଟିଏ ପାର୍ଶ୍ୱରେ ଥିଲ ଏବଂ ସେମାନେ ଅନ୍ୟ ପାର୍ଶ୍ୱରେ ତୁମମାନଙ୍କ ତଳକୁ (ଶିବିର ପକାଇ) ରହିଥିଲେ । ଯଦି ତୁମେମାନେ ପୂର୍ବରୁ ପରସ୍ପରର ସହମତି ନେଇ ଯୁଦ୍ଧର ସମୟ ସ୍ଥିର କରିଥାଆନ୍ତ ତେବେ ତୁମମାନଙ୍କ ମଧ୍ୟରେ ନିଶ୍ଚୟ ମତଭେଦ ହୋଇଥାଆନ୍ତା କିନ୍ତୁ ଏହା (ପୂର୍ବରୁ ସ୍ଥିର ନକରି) ଏହି କାରଣରୁ କରାଗଲା ଯେ ଅଲ୍ଲାହ୍ ଯାହା କରିବାର ନିଷ୍ପତ୍ତି କରି ସାରିଥିଲେ, ତାହା ସେ ନିଶ୍ଚୟ କରିବେ ଯହାଫଳରେ ଯାହାର ମରିବାର ଅଛି, ସେ ସ୍ପଷ୍ଟ ପ୍ରମାଣ ଦେଖି ମରୁ ଏବଂ ଯାହାର ଜୀବିତ ରହିବାର ଅଛି, ସେ ମଧ୍ୟ ସ୍ପଷ୍ଟ ପ୍ରମାଣ ଦେଖି ଜୀବିତ ରହୁ । ଅଲ୍ଲାହ୍ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି । ୪୩. (ହେ ବାର୍ତ୍ତାବହ!) ସେତେବେଳେ ଅଲ୍ଲାହ୍ ତୁମକୁ ତୁମ ସ୍ୱପ୍ନରେ ଶତ୍ରୁମାନଙ୍କର ସଂଖ୍ୟା ଅଳ୍ପ କରି ଦେଖାଇଥିଲେ । ଯଦି ସେ ଏହି ସଂଖ୍ୟା ଅଧିକ ଦେଖାଇ ଥାଆନ୍ତେ, ତେବେ ତୁମେମାନେ ନିଶ୍ଚୟ ସାହସ ହରାଇ ଥାଆନ୍ତ ଏବଂ ନିଜନିଜ ମଧ୍ୟରେ ଏ ବିଷୟରେ ବିବାଦ କରିଥାଆନ୍ତ କିନ୍ତୁ ଅଲ୍ଲାହ୍ ତୁମମାନଙ୍କୁ ଏଥିରୁ ରକ୍ଷା କଲେ । ସେ ତୁମମାନଙ୍କର ଅନ୍ତର କଥା ଭଲରୂପେ ଜାଣନ୍ତି । ୪୪. ଏବଂ ଯେତେବେଳେ ତୁମେମାନେ ପରସ୍ପର ସହିତ ଯୁଦ୍ଧରତ ହେଲ, ସେତେବେଳେ ସେ ତୁମମାନଙ୍କ ଆଖିରେ ଶତ୍ରୁମାନଙ୍କର ସଂଖ୍ୟା

ଅଳ୍ପ କରି ଦେଖାଉଥିଲେ ଏବଂ ସେମାନଙ୍କ ଆଖିରେ ତୁମମାନଙ୍କୁ ଅଳ୍ପ କରି ଦେଖାଉଥିଲେ ଯାହାଫଳରେ ଅଲ୍ଲାହ୍ ଯେଉଁ କାର୍ଯ୍ୟ କରିବାର ନିଷ୍ପତ୍ତି କରିଥିଲେ, ତାହା ସେ କରିବେ । ପ୍ରତ୍ୟେକ ଘଟଣା (ନିଷ୍ପତ୍ତି ପାଇଁ) ଅଲ୍ଲାହଙ୍କ ପାଖକୁ ଯାଇଥାଏ ।

୪୫. ହେ ମୁସଲମାନଗଣ! ଯଦି କୌଣସି ଶତ୍ରୁଗୋଷ୍ଠୀ ସହ ତୁମମାନଙ୍କର ସଂଘର୍ଷ ହୁଏ ତେବେ ଅଟଳ ରୁହ ଏବଂ ଅଲ୍ଲାହଙ୍କୁ ଅଧିକରୁ ଅଧିକ ସ୍ମରଣ କର ତା' ହେଲେ ତୁମେମାନେ ସଫଳ ହେବ । ୪୬. ଅଲ୍ଲାହଙ୍କର ଆଜ୍ଞା ମାନ ଏବଂ ରସୁଲଙ୍କର ଆଜ୍ଞା ମାନ ଏବଂ (ନିଜନିଜ ମଧ୍ୟରେ) ବିବାଦ କରନାହିଁ । ଏହା କଲେ ତୁମମାନଙ୍କର ମନୋବଳ ଭାଂଗିଯିବ ଆଉ ତୁମେମାନେ ଶକ୍ତିହୀନ ହୋଇ ପଡ଼ିବ । ଧୈର୍ଯ୍ୟ ରଖ । ଅଲ୍ଲାହ୍ ଧୈର୍ଯ୍ୟବାନ ଲୋକମାନଙ୍କ ସହିତ ଥାଆନ୍ତି । ୪୭. ସେହି ଲୋକମାନଙ୍କ ପରି ହୁଅନାହିଁ ଯେଉଁମାନେ ଭାରି ଆଡ଼ମ୍ବରରେ ଲୋକମାନଙ୍କୁ ଦେଖେଇ ହେବାପାଇଁ ଘରୁ ବାହାରିଥିଲେ । ସେମାନେ ଅଲ୍ଲାହଙ୍କ ମାର୍ଗରେ ଲୋକମାନଙ୍କୁ ବାଧା ଦିଅନ୍ତି । ସେମାନଙ୍କର ସବୁ କାର୍ଯ୍ୟକଳାପଗୁଡ଼ିକ ଅଲ୍ଲାହଙ୍କ ନିୟନ୍ତ୍ରଣରେ ରହିଛି ।

୪୮. ଯେତେବେଳେ ଶଇତାନ ସେମାନଙ୍କ ଦୃଷ୍ଟିରେ ସେମାନଙ୍କର କର୍ମଗୁଡ଼ିକୁ ସୁନ୍ଦର କରି ଦେଖାଇଥିଲା ଏବଂ ସେମାନଙ୍କୁ କହିଥିଲା, "ଆଜି ଲୋକମାନଙ୍କ ମଧ୍ୟରେ ଏମିତି କେହି ନାହିଁ, ଯିଏ ତୁମମାନଙ୍କୁ ଜିତି ପାରିବ, କାରଣ ମୁଁ ତୁମମାନଙ୍କ ପାଖରେ (ସାହାଯ୍ୟ କରିବାକୁ) ଅଛି ।" ମାତ୍ର ଯେତେବେଳେ ଉଭୟ ଗୋଷ୍ଠୀ ପରସ୍ପରର ସମ୍ମୁଖୀନ ହେଲେ, ସେ ପଛଘୁଂଚ ଦେଇ ପଳାୟନ କଲା ଏବଂ କହିଲା, "ତୁମମାନଙ୍କ ସହିତ ମୋର କୌଣସି ସଂପର୍କ ନାହିଁ । ମୁଁ ଯାହା ଦେଖୁଛି, ତୁମେ ତାହା ଦେଖି ପାରୁନାହଁ । ମୁଁ ଅଲ୍ଲାହଙ୍କୁ ଭୟ କରେ ଏବଂ ଅଲ୍ଲାହ୍ କଠୋର ଦଣ୍ଡ ଦିଅନ୍ତି ।" ୪୯. ସେତେବେଳେ କପଟୀ ତଥା ସେହି ଲୋକମାନେ ଯେଉଁମାନଙ୍କର ମନ ବ୍ୟାଧିଗ୍ରସ୍ତ, କହିଲେ, "ସେମାନଙ୍କର ଧର୍ମ ସେମାନଙ୍କୁ ବିଭ୍ରାନ୍ତ କରିଦେଇଛି" କିନ୍ତୁ ଯିଏ ଅଲ୍ଲାହଙ୍କ ଉପରେ ଭରସା ରଖେ, (ସେ ଜାଣିରଖୁ ଯେ) ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ ।

୫୦. ତୁମେ ଦେଖିପାରନ୍ତ କି ଯେତେବେଳେ ଦେବଦୂତମାନେ ଅସଦ୍‌ବିଶ୍ୱାସୀମାନଙ୍କ (ଶରୀରରୁ) ଆତ୍ମାକୁ ପୃଥକ କରୁଥିଲେ ଏବଂ ସେମାନଙ୍କ ମୁହଁ ଓ ପିଠିରେ ପ୍ରହାର କରି କହୁଥିଲେ, "ଏବେ ଜଳନ୍ତା ନିଆଁର ମଜା ଚାଖ । ୫୧. ଏହା ତୁମମାନେ ନିଜେ ଅର୍ଜନ କରିଥିବା କର୍ମର ଫଳ । ଅଲ୍ଲାହ୍ ନିଜର ଦାସମାନଙ୍କ ପ୍ରତି ଅନ୍ୟାୟ କରନ୍ତି ନାହିଁ ।" ୫୨. ଯେଉଁ ଅବସ୍ଥା ଫିରଔନୀମାନଙ୍କର ତଥା ସେମାନଙ୍କ ପୂର୍ବଜମାନଙ୍କର ହୋଇଥିଲା, ସେହି ଅବସ୍ଥା ଏମାନଙ୍କର ହେଲା । ସେମାନେ ଅଲ୍ଲାହଙ୍କ ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିଥିଲେ । ତେଣୁ ସେମାନଙ୍କ ପାପ ଯୋଗୁଁ ଅଲ୍ଲାହ୍ ସେମାନଙ୍କୁ ଶାସ୍ତି ଦେଲେ । ଅଲ୍ଲାହ୍ ମହାଶକ୍ତିମାନ ଏବଂ ସେ କଠୋର ଶାସ୍ତି ଦିଅନ୍ତି । ୫୩. ଏହା ଏହି କାରଣରୁ ହେଲା ଯେ ଯେପର୍ଯ୍ୟନ୍ତ କୌଣସି ସମାଜର ଲୋକେ ନିଜ ଭିତରେ ଯାହା (ଭଲ ଗୁଣ) ଅଛି, ତାହାକୁ ପରିବର୍ତ୍ତନ ନକରିଛନ୍ତି, ଅଲ୍ଲାହ୍ ସେପର୍ଯ୍ୟନ୍ତ ସେମାନଙ୍କ ପ୍ରତି କରିଥିବା ଅନୁଗ୍ରହରେ କୌଣସି ପରିବର୍ତ୍ତନ କରନ୍ତିନାହିଁ । ଅଲ୍ଲାହ୍ ସବୁ ଜାଣନ୍ତି ଏବଂ ସବୁ ଶୁଣନ୍ତି । ୫୪. (ଏମାନଙ୍କର ଅବସ୍ଥା ସେହିପରି ହେଲା) ଯାହା ଫିରଔନୀ ଓ ସେମାନଙ୍କ ପୂର୍ବଜମାନଙ୍କର ହୋଇଥିଲା । ସେମାନେ ଅଲ୍ଲାହଙ୍କ ନିଦର୍ଶନଗୁଡ଼ିକୁ ମିଥ୍ୟା ବୋଲି କହିଥିଲେ, ତେଣୁ ସେମାନଙ୍କର ପାପ ଯୋଗୁଁ ଆମ୍ଭେ ସେମାନଙ୍କର ବିନାଶ କରିଦେଲୁ ଏବଂ ଫିରଔନର ସମର୍ଥକମାନଙ୍କୁ ଜଳମଗ୍ନ କରିଦେଲୁ । ସେମାନେ ସମସ୍ତେ ଦୂରାଚାରୀ ଥିଲେ ।

୫୫. ଅଲ୍ଲାହଙ୍କ ଦୃଷ୍ଟିରେ ପ୍ରାଣୀମାନଙ୍କ ମଧ୍ୟରେ ସବୁଠାରୁ ହୀନ ସେହି ଲୋକମାନେ, ଯେଉଁମାନେ (ସତ୍ୟକୁ) ଅସ୍ୱୀକାର କରିଦିଅନ୍ତି ଏବଂ ଏହାକୁ ମାନନ୍ତିନାହିଁ । ୫୬. ସେମାନଙ୍କ ସହିତ ତୁମେ ଚୁକ୍ତିନାମା କରିଥିଲ କିନ୍ତୁ ସବୁଥର ସେମାନେ ଚୁକ୍ତି ଭାଙ୍ଗି ଦେଉଛନ୍ତି ଏବଂ ଅଲ୍ଲାହଙ୍କୁ ଆଦୌ ଭୟ କରୁନାହାନ୍ତି । ୫୭. ତେଣୁ, ଯଦି ସେମାନେ ଯୁଦ୍ଧଭୂମିରେ ତୁମ ଆୟତ୍ତକୁ ଆସନ୍ତି, ସେମାନଙ୍କୁ ଏମିତି ଶାସ୍ତି ଦିଅ ଯେମିତିକି ସେମାନଙ୍କ ପଛରେ ଥିବା ଲୋକମାନେ (ଛିନ୍ନଛତ୍ର ହୋଇ) ପଳାୟନ କରିବେ । ତା'ହେଲେ ସେମାନଙ୍କୁ ଶିକ୍ଷା ମିଳିବ । ୫୮. ଯଦି ତୁମକୁ କୌଣସି ଗୋଷ୍ଠୀ ତରଫରୁ ବିଶ୍ୱାସଘାତକତାର ଆଶଂକା ହୁଏ ତେବେ ସେମାନଙ୍କ ଚୁକ୍ତିନାମା ସେମାନଙ୍କ ଉପରେ ଫିଙ୍ଗିଦିଅ ଯାହାଫଳରେ ଉଭୟ ପକ୍ଷ

କଟକଣାମୁକ୍ତ ହୋଇଯିବ । ଅଲ୍ଲାହ୍ ବିଶ୍ୱାସଘାତକମାନଙ୍କୁ ପସନ୍ଦ କରନ୍ତିନାହିଁ । ୫୯. ନାସ୍ତିକମାନେ ଏହା ଭାବନ୍ତୁନାହିଁ ଯେ ସେମାନେ ଖସିଗଲେ । ସେମାନେ ଆମ୍ଭଙ୍କୁ ନିରୂପାୟ କରି ପାରିବେନାହିଁ ।

୬୦. (ହେ ମୁସଲମାନଗଣ !) ଶତ୍ରୁମାନଙ୍କର ସାମନା କରିବା ପାଇଁ ଯଥାସାଧ ସୈନ୍ୟବଳ ଓ ଅଶ୍ୱ ଆଦି ପ୍ରସ୍ତୁତ ରଖ ଯାହାଫଳରେ ଅଲ୍ଲାହଙ୍କର ଶତ୍ରୁ ଓ ତୁମମାନଙ୍କ ଶତ୍ରୁଙ୍କ ମନରେ ଭୟ ସଂଚ୍ଚର ହେବ ଏବଂ ସେମାନଙ୍କ ବ୍ୟତୀତ ଅନ୍ୟମାନଙ୍କ ମନରେ ମଧ୍, ଯେଉଁମାନଙ୍କୁ ତୁମେମାନେ ଜାଣନାହିଁ କିନ୍ତୁ ଅଲ୍ଲାହ୍ ସେମାନଙ୍କୁ ଜାଣନ୍ତି । ଯେଉଁ ଧନ ତୁମେମାନେ ଅଲ୍ଲାହଙ୍କ ମାର୍ଗରେ ଖର୍ଚ୍ଚ କରିବ ତାହାର ସଂପୂର୍ଣ୍ଣ ଫଳ ତୁମମାନଙ୍କୁ ମିଳିବ ଏବଂ ତୁମମାନଙ୍କ ପ୍ରତି ଅନ୍ୟାୟ ହେବନାହିଁ । ୬୧. ଯଦି ଶତ୍ରୁପକ୍ଷ ସନ୍ଧି କରିବାକୁ ଆଗ୍ରହ ପ୍ରକାଶ କରନ୍ତି, ତେବେ ତୁମେମାନେ ମଧ ସେଥିରେ ସମ୍ମତ ହୋଇଯାଅ ଏବଂ ଅଲ୍ଲାହଙ୍କ ଉପରେ ଭରସା ରଖ । ଅଲ୍ଲାହ୍ ଅବଶ୍ୟ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି । ୬୨. ଏବଂ ଯଦି ସେମାନେ ତୁମ ସହିତ ପ୍ରତାରଣା କରିବାକୁ ଚାହାନ୍ତି, ତେବେ ତୁମ ପାଇଁ ଅଲ୍ଲାହ୍ ଯଥେଷ୍ଟ । ଅଲ୍ଲାହ୍ ହିଁ ତୁମକୁ ସାହାଯ୍ୟ କଲେ ଏବଂ ମୁସଲମାନମାନଙ୍କ ଦ୍ୱାରା ତୁମର ହାତ ମଜବୁତ କଲେ । ୬୩. ଏବଂ ସେ ମୁସଲମାନମାନଙ୍କର ହୃଦୟକୁ ଯୋଡ଼ି ଦେଲେ । ଯଦି ତୁମେ ସଂସାର ଯାକର ଧନ ଖର୍ଚ୍ଚ କରିଦେଇ ଥାଆନ୍ତ ତଥାପି ସେମାନଙ୍କ ଅନ୍ତରକୁ ଯୋଡ଼ି ପାରି ନଥାଆନ୍ତ କିନ୍ତୁ ଅଲ୍ଲାହ୍ ସେମାନଙ୍କ ମନରେ ପରସ୍ପର ପ୍ରତି ପ୍ରେମ ଉତ୍ପନ୍ନ କରିଦେଲେ । ବାସ୍ତବରେ ସେ ଅତ୍ୟନ୍ତ ପ୍ରଭୂତ୍ୱଶାଳୀ ଏବଂ ତତ୍ତ୍ୱଜ୍ଞାନୀ । ୬୪. ହେ ବାର୍ତ୍ତାବହ ! ତୁମ ପାଇଁ ତଥା ତୁମର ଅନୁଗତ ମୁସଲମାନମାନଙ୍କ ପାଇଁ ଅଲ୍ଲାହ୍ ଯଥେଷ୍ଟ ।

୬୫. ହେ ବାର୍ତ୍ତାବହ ! ମୁସଲମାନମାନଙ୍କୁ ଯୁଦ୍ଧ କରିବା ପାଇଁ ଉତ୍ସାହିତ କର । ତୁମମାନଙ୍କ ମଧ୍ୟରୁ ଯଦି କୋଡ଼ିଏ ଜଣ (ନିଜ ଲକ୍ଷ୍ୟରେ) ଅଟଳ ରହନ୍ତି ତେବେ ସେମାନେ ଦୁଇଶହ ଶତ୍ରୁ ସୈନ୍ୟଙ୍କ ଉପରେ ବିଜୟ ହାସଲ କରିପାରିବେ ଏବଂ ତୁମମାନଙ୍କର ଏହିଭଳି ଶହେ ଜଣ ଲୋକ ଏକ ହଜାର ନାସ୍ତିକଙ୍କ ପାଇଁ ଯଥେଷ୍ଟ ହେବେ, କାରଣ ଏଭଳି ଲୋକମାନଙ୍କର ବୁଦ୍ଧି ନାହିଁ । ୬୬. ଏବେ ଅଲ୍ଲାହ୍

ତୁମମାନଙ୍କ ଉପରୁ ବୋଝ ହାଲୁକା କରିଦେଲେ ଏବଂ ସେ ଜାଣି ସାରିଛନ୍ତି ଯେ ତୁମମାନଙ୍କ ମଧ୍ୟରେ କିଛି ଦୁର୍ବଳତା ରହିଛି । ସୁତରାଂ, ତୁମମାନଙ୍କ ମଧ୍ୟରୁ ଶହେ ଜଣ ଦୃଢ଼ମନା ବ୍ୟକ୍ତି ଦୁଇଶହ ଶତ୍ରୁ ସୈନ୍ୟଙ୍କୁ ପରାସ୍ତ କରିପାରିବେ ଏବଂ ତୁମମାନଙ୍କର ଏହିଭଳି ଏକ ହଜାର ଲୋକ ଅଲ୍ଲାହଙ୍କ ଆଜ୍ଞାରୁ ଦୁଇ ହଜାର ଶତ୍ରୁଙ୍କ ପାଇଁ ଯଥେଷ୍ଟ ହେବେ । ଅଲ୍ଲାହ୍ ଧୈର୍ଯ୍ୟବାନ ଲୋକମାନଙ୍କ ସହିତ ଥାଆନ୍ତି ।

୬୭. ଜଣେ ଈଶ୍ୱରଦୂତଙ୍କ ପାଖରେ ସେପର୍ଯ୍ୟନ୍ତ ଯୁଦ୍ଧବନ୍ଦୀମାନେ ରହିବା ଉଚିତ ନୁହେଁ ଯେପର୍ଯ୍ୟନ୍ତ ସେ ଦେଶରେ (ଶତ୍ରୁର ପରାକ୍ରମ ଭାଙ୍ଗିବା ପାଇଁ) ଯଥେଷ୍ଟ ରକ୍ତପାତ ନକରିଛନ୍ତି । ତୁମେମାନେ ସଂସାରର ପାର୍ଥିବ ବସ୍ତୁ ଚାହଁ ଅଥଚ ଅଲ୍ଲାହ୍ (ତୁମମାନଙ୍କ ପାଇଁ) ପରଲୋକର ସୁଖ ଚାହାନ୍ତି ଏବଂ ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ । ୬୮. ଯଦି ଏବିଷୟରେ ଅଲ୍ଲାହଙ୍କ ଦ୍ୱାରା ପୂର୍ବରୁ ଏକ ନିଷ୍ପତ୍ତି ହୋଇସାରି ନଥାଆନ୍ତା ତେବେ (ବନ୍ଦୀମାନଙ୍କୁ ମୁକ୍ତ କରିବା ପାଇଁ) ତୁମେମାନେ ଯାହାକିଛି (ମୂଲ୍ୟ) ନେଲ ସେଥିପାଇଁ ତୁମମାନଙ୍କୁ କଠୋର ଶାସ୍ତି ମିଳି ଥାଆନ୍ତା । ୬୯. ତେଣୁ, ଯାହା ବିଜୟଲବ୍ଧ ଧନ ତୁମମାନଙ୍କୁ ମିଳିଛି ତାହାକୁ ବୈଧ ଓ ଶୁଦ୍ଧ ମନେକରି ଭୋଗ କର ଏବଂ ଅଲ୍ଲାହଙ୍କୁ ଭୟ କରୁଥାଅ । ସେ ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ ।

୭୦. ହେ ବାର୍ତ୍ତାବହ ! ତୁମ ଅଧୀନରେ ଯେଉଁ ଯୁଦ୍ଧବନ୍ଦୀମାନେ ଅଛନ୍ତି ସେମାନଙ୍କୁ କୁହ, "ଯଦି ଅଲ୍ଲାହ୍ ତୁମମାନଙ୍କ ଅନ୍ତର ମଧ୍ୟରେ କିଛି ଭଲକଥା ଦେଖିବେ, ତେବେ ତୁମମାନଙ୍କଠାରୁ ଯାହା ନିଆଯାଇଛି, ତାହାଠାରୁ ଢ଼େର ଭଲ ଦେବେ ଏବଂ ତୁମମାନଙ୍କର ଦୋଷ କ୍ଷମା କରିଦେବେ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ ।" ୭୧. ଆଉ ଯଦି ସେମାନେ ତୁମ ସହିତ ବିଶ୍ୱାସଘାତକତା କରିବାକୁ ଚାହାନ୍ତି ତେବେ ସେମାନେ ତ ପୂର୍ବରୁ ଅଲ୍ଲାହଙ୍କ ସହିତ ବିଶ୍ୱାସଘାତକତା କରି ସାରିଛନ୍ତି ଯେଉଁଥିପାଇଁ ଅଲ୍ଲାହ୍ ସେମାନଙ୍କୁ ତୁମର ଆୟତ୍ତାଧୀନ କରିଦେଲେ । ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ ।

୭୨. ଯେଉଁମାନେ (ଅଲ୍ଲାହ୍ ଓ ରସୁଲଙ୍କୁ) ବିଶ୍ୱାସ କଲେ, ଦେଶତ୍ୟାଗ କଲେ, ନିଜର ଧନଜୀବନ ଦେଇ ଅଲ୍ଲାହଙ୍କ ମାର୍ଗରେ ସଂଘର୍ଷ କଲେ ଏବଂ

ଯେଉଁମାନେ ଏମାନଙ୍କୁ ଆଶ୍ରୟ ଦେଲେ ଏବଂ ସାହାଯ୍ୟ କଲେ, ସେମାନେ ପରସ୍ପରର ବନ୍ଧୁ ଏବଂ ଯେଉଁମାନେ ବିଶ୍ୱାସ କଲେ ମାତ୍ର ଦେଶତ୍ୟାଗ କଲେନାହିଁ, ସେମାନେ ଦେଶତ୍ୟାଗ ନକରିବା ପର୍ଯ୍ୟନ୍ତ ତୁମମାନଙ୍କ ଉପରେ ସେମାନଙ୍କର ସୁରକ୍ଷାର ଦାୟିତ୍ୱ ନାହିଁ । ହଁ, ଯଦି ସେମାନେ ଧର୍ମ ବିଷୟରେ ତୁମର ସାହାଯ୍ୟ ମାଗନ୍ତି, ତେବେ ସେମାନଙ୍କୁ ସାହାଯ୍ୟ କରିବା ତୁମମାନଙ୍କର କର୍ତ୍ତବ୍ୟ କିନ୍ତୁ ଏହି ସର୍ତ୍ତରେ ଯେ ଏହି ସାହାଯ୍ୟ ଏପରି କୌଣସି ଗୋଷ୍ଠୀ ବିରୁଦ୍ଧରେ ନହେଉ ଯାହା ସହିତ ତୁମମାନଙ୍କର ସନ୍ଧି ହୋଇଛି । ତୁମେମାନେ ଯାହା କରୁଛ ଅଲ୍ଲାହ୍ ଅବଶ୍ୟ ଦେଖୁଛନ୍ତି । ୭୩. ଅସଦ୍‌ବିଶ୍ୱାସୀମାନେ ପରସ୍ପରର ବନ୍ଧୁ । ଯଦି ତୁମେମାନେ ଏପରି ନକର, ତେବେ ଧରାପୃଷ୍ଠରେ ଘୋର ଅଶାନ୍ତି ଓ ବିଶୃଂଖଳା ସୃଷ୍ଟି ହେବ ।

୭୪. ଯେଉଁମାନେ ବିଶ୍ୱାସ କଲେ, ଦେଶତ୍ୟାଗ କଲେ, ଅଲ୍ଲାହଙ୍କ ମାର୍ଗରେ ସଂଘର୍ଷ କଲେ ଏବଂ ଯେଉଁମାନେ ସେମାନଙ୍କୁ ଆଶ୍ରୟ ଦେଲେ ଏବଂ ସାହାଯ୍ୟ କଲେ ଏମାନେ ହେଉଛନ୍ତି ପ୍ରକୃତ ସଦ୍‌ବିଶ୍ୱାସୀ । ଏମାନେ (ପ୍ରଭୂଙ୍କର) କ୍ଷମା ଲାଭ କରିବେ ଏବଂ ସ୍ୱର୍ଗର ବିଭିନ୍ନ ସୁଖସମ୍ଭୋଗ ମଧ୍ୟ । ୭୫. ଏବଂ ଯେଉଁମାନେ ପରେ ବିଶ୍ୱାସ କଲେ, ଦେଶତ୍ୟାଗ କଲେ ଏବଂ ତୁମମାନଙ୍କ ସହିତ ମିଶି ସଂଘର୍ଷ କଲେ, ସେମାନେ ମଧ୍ୟ ତୁମରିମାନଙ୍କ ମଧ୍ୟରେ ପରିଗଣିତ ହେବେ ଏବଂ ଅଲ୍ଲାହଙ୍କ ବିଧାନରେ (ସଂପତ୍ତିର ଉତ୍ତରାଧିକାର କ୍ଷେତ୍ରରେ) ରକ୍ତସଂପର୍କୀୟମାନଙ୍କର ପରସ୍ପର ଉପରେ ଅଗ୍ରାଧିକାର ରହିଛି । ଅଲ୍ଲାହ୍ ଅବଶ୍ୟ ସବୁକଥା ଜାଣନ୍ତି ।

## ଅଧ୍ୟାୟ ୯, ଅତ୍ ତୌବା

୧. ଯେଉଁ ବହୁଈଶ୍ୱରବାଦୀମାନଙ୍କ ସହିତ ତୁମମାନଙ୍କର ଚୁକ୍ତି ହୋଇଥିଲା, ଅଲ୍ଲାହ୍ ଓ ତାଙ୍କ ରସୁଲ ସେମାନଙ୍କ ପ୍ରତି ନିଜ ଦାୟିତ୍ୱରୁ ମୁକ୍ତ ହେବାର ଘୋଷଣା କରୁଛନ୍ତି । ୨. ତେଣୁ, ତୁମେମାନେ ଆଉ ଚାରିମାସ ଦେଶରେ ବୁଲାବୁଲି କରିନିଅ ଏବଂ ଜାଣିରଖ ଯେ ତୁମେମାନେ ଅଲ୍ଲାହଙ୍କୁ ନିରୂପାୟ କରିପାରିବ ନାହିଁ । ଅଲ୍ଲାହ୍ ନାସ୍ତିକମାନଙ୍କୁ ନିଶ୍ଚୟ ଅପମାନିତ କରିବେ ।

୩. ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ ତରଫରୁ ବଡ଼ ହଜ୍ ଦିନରେ ଏହା ସାର୍ବଜନୀନ ରୂପେ ଘୋଷଣା କରାଯାଉଛି ଯେ, ଅଲ୍ଲାହ୍ ଏବେ ବହୁଈଶ୍ୱରବାଦୀମାନଙ୍କ ପ୍ରତି ତାଙ୍କ ଦାୟିତ୍ୱରୁ ମୁକ୍ତ ହେଲେ ଏବଂ ତାଙ୍କର ରସୁଲ୍ ମଧ୍ୟ। ଯଦି ତୁମେମାନେ (ନିଜର କୁକର୍ମ ପାଇଁ) ଅନୁତାପ କର, ତେବେ ତୁମମାନଙ୍କ ପକ୍ଷରେ ମଂଗଳ କିନ୍ତୁ ଯଦି ମୁହଁ ମୋଡ଼ିବ, ତେବେ ଜାଣିରଖ ଯେ ତୁମେମାନେ ଅଲ୍ଲାହଙ୍କୁ କଦାପି ନିରୂପାୟ କରି ପାରିବନାହିଁ। (ହେ ବାର୍ତ୍ତାବହ!) ନାସ୍ତିକମାନଙ୍କୁ ଜଣାଇଦିଅ ଯେ ସେମାନଙ୍କୁ କଠୋର ଶାସ୍ତି ମିଳିବ। ୪. ଅବଶ୍ୟ ଯେଉଁ ବହୁଈଶ୍ୱରବାଦୀମାନଙ୍କ ସହିତ ତୁମେମାନେ ଚୁକ୍ତିବଦ୍ଧ ଏବଂ ସେମାନେ ଚୁକ୍ତିଭଂଗ କରିନାହାନ୍ତି କିମ୍ୱା ତୁମମାନଙ୍କ ବିରୁଦ୍ଧରେ କାହାରିକୁ ସାହଯ୍ୟ କରିନାହାନ୍ତି, ତେବେ ତୁମେମାନେ ମଧ୍ୟ ନିର୍ଦ୍ଧାରିତ ସମୟ ପର୍ଯ୍ୟନ୍ତ ସେମାନଙ୍କୁ ଦେଇଥିବା ପ୍ରତିଶ୍ରୁତି ପାଳନ କର। ଅଲ୍ଲାହ୍ ସଦାଚାରୀମାନଙ୍କୁ ଅବଶ୍ୟ ଭଲ ପାଆନ୍ତି।

୫. ପୁଣି ନିଷିଦ୍ଧ ମାସଗୁଡ଼ିକ ବିତିଯିବା ପରେ (ତୁମ ସହିତ ଚୁକ୍ତିଭଙ୍ଗ କରିଥିବା) ସେହି ବହୁଈଶ୍ୱରବାଦୀମାନଙ୍କୁ ଯେଉଁଠି ପାଅ ହତ୍ୟା କର। ସେମାନଙ୍କୁ ଧର ଏବଂ ଘେରିନିଅ ଏବଂ ସେମାନଙ୍କୁ ଧରିବା ପାଇଁ ପ୍ରତ୍ୟେକ ଗୁପ୍ତ ଜାଗାରେ ଛକିରୁହ କିନ୍ତୁ ଯଦି ସେମାନେ ଅନୁତାପ କରନ୍ତି, ନମାଜ ସଂପାଦନ କରନ୍ତି ଏବଂ ଜକାତ୍ ଦିଅନ୍ତି, ତେବେ ସେମାନଙ୍କ ପିଛା ଛାଡ଼ିଦିଅ। ଅଲ୍ଲାହ୍ ଅବଶ୍ୟ କ୍ଷମାଶୀଳ ଓ ପରମ ଦୟାଳୁ। ୬. ଯଦି କେହି ବହୁଈଶ୍ୱରବାଦୀ ତୁମର ଶରଣ ନିଏ, ତେବେ ତାକୁ ଶରଣ ଦିଅ ଯେପରିକି ସେ ଅଲ୍ଲାହଙ୍କ ବାଣୀ ଶୁଣୁ। ଏହାପରେ ତାକୁ ତା' ନିରାପଦ ସ୍ଥାନରେ ପହଁଚାଇ ଦିଅ କାରଣ ଏଭଳି ଲୋକମାନଙ୍କର ଜ୍ଞାନ ନାହିଁ।

୭. ଏହି ବହୁଈଶ୍ୱରବାଦୀମାନଙ୍କ ସହିତ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ ଚୁକ୍ତି କିପରି ବା ତିଷ୍ଠି ରହିପାରିବେ? ହଁ, ଯେଉଁମାନଙ୍କ ସହିତ ତୁମେ ପବିତ୍ର ମସଜିଦ୍ ପାଖରେ ଚୁକ୍ତି କରିଥିଲ, ଯେପର୍ଯ୍ୟନ୍ତ ସେମାନେ ନିଜ ଚୁକ୍ତିରେ ଅଟଳ ରହିବେ, ତୁମେମାନେ ମଧ୍ୟ ଅଟଳ ରୁହ। ଅଲ୍ଲାହ୍ ସଦାଚାରୀମାନଙ୍କୁ ଅବଶ୍ୟ ଭଲ ପାଆନ୍ତି। ୮. (କିନ୍ତୁ ଅନ୍ୟମାନଙ୍କ ସହିତ) କୌଣସି ରାଜିନାମା କିପରି ହୋଇ ପାରିବ? ସେମାନେ ଏମିତି ଲୋକ ଯେ ଯଦି ତୁମମାନଙ୍କୁ ଆୟତ୍ତ କରିନେବେ, ସେତେବେଳେ ତୁମମାନଙ୍କ ସହିତ କୌଣସି ସମ୍ୱନ୍ଧ ବା ସନ୍ଧି ପ୍ରତି ଖାତିର କରିବେନାହିଁ। ସେମାନେ କେବଳ କଥା

କହି ତୁମମାନଙ୍କୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରୁଛନ୍ତି କିନ୍ତୁ ସେମାନଙ୍କ ମନ ମାନୁନାହିଁ। ସେମାନଙ୍କ ମଧ୍ୟରୁ ଅଧିକାଂଶ ଭ୍ରଷ୍ଟାଚାରୀ। ୯. ସେମାନେ ଅଲ୍ଲାହଙ୍କ ପବିତ୍ର ବାଣୀକୁ ତୁଚ୍ଛ ମୂଲ୍ୟରେ ବିକିଦେଲେ ଏବଂ ଅଲ୍ଲାହଙ୍କ ମାର୍ଗରୁ ଲୋକମାନଙ୍କୁ ରୋକିଲେ। ସେମାନେ ଅତି ହୀନ କର୍ମ କରୁଛନ୍ତି। ୧୦. ଜଣେ ମୁସଲମାନ ବିଷୟରେ ସେମାନେ କୌଣସି ସମ୍ପର୍କର ବା ଚୁକ୍ତିନାମାର ସମ୍ମାନ କରନ୍ତି ନାହିଁ। ସେମାନେ ସୀମା ଅତିକ୍ରମ କରି ଯାଇଛନ୍ତି। ୧୧. ଯଦି ସେମାନେ ଏବେ ମଧ୍ୟ ଅନୁତାପ କରନ୍ତି, ନମାଜ ସଂପାଦନ କରନ୍ତି ଏବଂ ଜକାତ୍ ଦିଅନ୍ତି, ତେବେ ସେମାନେ ଏମାନଙ୍କର ଧର୍ମଭାଇ ହୋଇଯିବେ। ଜ୍ଞାନୀ ଲୋକମାନଙ୍କ ପାଇଁ ଆମ୍ଭେ ନିଜର ବାଣୀଗୁଡ଼ିକୁ ପରିଷ୍କାର ଭାବରେ ବର୍ଣ୍ଣନା କରୁଛୁ।

୧୨. ଯଦି ସେମାନେ ବଚନ ଦେଲାପରେ ବଚନ ଭଂଗ କରନ୍ତି ଏବଂ ତୁମ ଧର୍ମକୁ ବିଦ୍ରୂପ କରନ୍ତି, ତେବେ ଏଭଳି ନାସ୍ତିକମାନଙ୍କ ସର୍ଦ୍ଦାରମାନଙ୍କ ସହିତ ଯୁଦ୍ଧ କର ଯେପରିକି ସେମାନେ ଏଥିରୁ ନିବୃତ୍ତ ରହିବେ କାରଣ ଏଭଳି ଲୋକମାନଙ୍କ ନିକଟରେ ପ୍ରତିଜ୍ଞାର କୌଣସି ମୂଲ୍ୟ ନାହିଁ। ୧୩. କ'ଣ ତୁମେମାନେ ସେହି ଲୋକମାନଙ୍କ ସହିତ ଯୁଦ୍ଧ କରିବ ନାହିଁ ଯେଉଁମାନେ ନିଜର ପ୍ରତିଜ୍ଞା ଭାଙ୍ଗିଦେଲେ, ରସୁଲଙ୍କୁ ନିର୍ବାସିତ କରିବାର ସଂକଳ୍ପ ନେଲେ ଏବଂ ପ୍ରଥମେ (ଅତ୍ୟାଚାର) ଆରମ୍ଭ କଲେ? କ'ଣ ଏଭଳି ଲୋକମାନଙ୍କୁ ତୁମେମାନେ ଭୟ କରୁଛ? ଯଦି ତୁମେମାନେ ପ୍ରକୃତରେ ସଦ୍‌ବିଶ୍ୱାସୀ, ତେବେ କେବଳ ଅଲ୍ଲାହଙ୍କୁ ଭୟ କରିବା ଉଚିତ। ୧୪. ସେମାନଙ୍କ ସହିତ ଯୁଦ୍ଧ କର। ଅଲ୍ଲାହ୍ ତୁମମାନଙ୍କ ହାତରେ ସେମାନଙ୍କୁ ଶାସ୍ତି ଦେବେ, ଲାଂଛିତ କରିବେ, ସେମାନଙ୍କ ବିରୁଦ୍ଧରେ ତୁମମାନଙ୍କୁ ସାହାଯ୍ୟ କରିବେ ଏବଂ ସଦ୍‌ବିଶ୍ୱାସୀମାନଙ୍କ ହୃଦୟକୁ ଶାନ୍ତି ପ୍ରଦାନ କରିବେ। ୧୫. ଏବଂ ସେ ସେମାନଙ୍କ ମନର କ୍ରୋଧ ଶାନ୍ତ କରିବେ ଏବଂ ଯାହାର ଚାହିଁବେ, ତା'ର ପଶ୍ଚାତାପ ଗ୍ରହଣ କରିବେ। ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ।

୧୬. (ହେ ମୁସଲମାନଗଣ!) କ'ଣ ତୁମେମାନେ ଭାବିଛ ଯେ ତୁମମାନଙ୍କୁ (ପରୀକ୍ଷା ନକରି) ଏମିତି ଛାଡ଼ି ଦିଆଯିବ ଅଥଚ ଅଲ୍ଲାହ୍ ଏପର୍ଯ୍ୟନ୍ତ ଏହା ଦେଖିନାହାନ୍ତି ଯେ ତୁମମାନଙ୍କ ମଧ୍ୟରୁ କେଉଁମାନେ ଜିହାଦ୍ କରିଛନ୍ତି ଏବଂ

ଅଲ୍ଲାହ୍, ତାଙ୍କ ରସୁଲ୍ ଓ ସଦ୍‌ବିଶ୍ୱାସୀଙ୍କ ବ୍ୟତୀତ ଅନ୍ୟମାନଙ୍କୁ ଅନ୍ତରଂଗ ବନ୍ଧୁ କରିନାହାନ୍ତି । ତୁମେମାନେ ଯାହା କରୁଛ ଅଲ୍ଲାହ୍ ଭଲରୂପେ ଜାଣନ୍ତି ।

୧୭. ବହୁଈଶ୍ୱରବାଦୀମାନେ ଏହାର ଯୋଗ୍ୟ ନୁହନ୍ତି ଯେ ଅଲ୍ଲାହଙ୍କ ମସଜିଦଗୁଡ଼ିକର ରକ୍ଷଣବେକ୍ଷଣ କରିବେ ଅଥଚ ସେମାନେ ନିଜ ଅଧର୍ମର ନିଜେ ସାକ୍ଷୀ ରହିଛନ୍ତି । ସେମାନଙ୍କର ସବୁ କର୍ମ ବୃଥା ହେଲା ଏବଂ ସେମାନେ ଚିରଦିନ ନର୍କରେ ରହିବେ । ୧୮. ବାସ୍ତବରେ ଅଲ୍ଲାହଙ୍କ ମସଜିଦଗୁଡ଼ିକର ରକ୍ଷଣବେକ୍ଷଣର ଦାୟିତ୍ୱ ସେହିମାନଙ୍କର ଯେଉଁମାନେ ଅଲ୍ଲାହଙ୍କୁ ଓ ପରଲୋକକୁ ବିଶ୍ୱାସ କରନ୍ତି, ନମାଜ ପ୍ରତିଷ୍ଠା କରନ୍ତି, ଜକାତ୍ ଦିଅନ୍ତି ଏବଂ ଅଲ୍ଲାହଙ୍କ ବ୍ୟତୀତ କାହାରିକୁ ଭୟ କରନ୍ତିନାହିଁ । ଏଭଳି ଲୋକମାନଙ୍କଠାରୁ ଆଶା କରାଯାଏ ଯେ ଏମାନେ ଠିକ୍ ବାଟରେ ରହିବେ । ୧୯. ହଜ୍ ଯାତ୍ରୀମାନଙ୍କୁ ପାଣି ପିଆଇବା ବା ପବିତ୍ର ମସଜିଦର ରକ୍ଷଣାବେକ୍ଷଣ କରିବା କାର୍ଯ୍ୟକୁ କ'ଣ ତୁମେମାନେ ଏଭଳି ବ୍ୟକ୍ତିର କାର୍ଯ୍ୟ ସହିତ ସମାନ କରୁଛ ଯିଏ ଅଲ୍ଲାହଙ୍କୁ ଓ ପରଲୋକକୁ ବିଶ୍ୱାସ କରେ ଏବଂ ଅଲ୍ଲାହଙ୍କ ମାର୍ଗରେ ସଂଘର୍ଷ କରେ ? ଅଲ୍ଲାହଙ୍କ ଦୃଷ୍ଟିରେ ଉଭୟ ବ୍ୟକ୍ତି ଆଦୌ ସମାନ ନୁହନ୍ତି । ଅଲ୍ଲାହ୍ ଦୁରାଚାରୀମାନଙ୍କର ପଥପ୍ରଦର୍ଶନ କରନ୍ତି ନାହିଁ । ୨୦. ଯେଉଁମାନେ (ଅଲ୍ଲାହ୍ ଓ ରସୁଲଙ୍କୁ) ବିଶ୍ୱାସ କଲେ, ନିଜର ଘରଦ୍ୱାର ଛାଡ଼ିଲେ ଏବଂ ଅଲ୍ଲାହଙ୍କ ମାର୍ଗରେ ନିଜର ଧନ ଓ ଜୀବନ ଉତ୍ସର୍ଗ କରି କଠିନ ସଂଘର୍ଷ କଲେ, ସେମାନଙ୍କ ପାଇଁ ଅଲ୍ଲାହଙ୍କ ପାଖରେ ସମ୍ମାନଜନକ ସ୍ଥାନ ଅଛି ଏବଂ ସେହିମାନେ ସଫଳ ହେବେ । ୨୧. ସେମାନଙ୍କ ପ୍ରଭୁ ସେମାନଙ୍କୁ ଶୁଭ ସମାଚାର ଦେଉଛନ୍ତି ଯେ ସେମାନେ ତାଙ୍କର କୃପା ଓ ପ୍ରସନ୍ନତା ଲାଭ କରିବେ ଏବଂ ବୈକୁଣ୍ଠର ଅସରନ୍ତି ସୁଖ ଭୋଗ କରିବେ । ୨୨. ସେମାନେ ସେଠାରେ ଚିରକାଳ ରହିବେ । ଅଲ୍ଲାହଙ୍କ ପାଖରେ (ସେମାନଙ୍କ ପାଇଁ) ଅଜସ୍ର ପୁରସ୍କାର ଅଛି ।

୨୩. ହେ ମୁସଲମାନଗଣ ! ଯଦି ତୁମମାନଙ୍କର ବାପା ବା ଭାଇମାନେ ଆସ୍ତିକତା ତୁଳନାରେ ନାସ୍ତିକତାକୁ ପସନ୍ଦ କରନ୍ତି ତେବେ ସେମାନଙ୍କ ସହିତ ଆନ୍ତରିକ ସଂପର୍କ ରଖନାହିଁ । ଯେଉଁମାନେ ସେମାନଙ୍କ ସହିତ ବନ୍ଧୁତ୍ୱର ସମ୍ପର୍କ ରଖିବେ, ସେମାନେ ଭ୍ରଷ୍ଟାଚାରୀ । ୨୪. (ହେ ରସୁଲ !) କହିଦିଅ, "ତୁମମାନଙ୍କ

ପିତା, ତୁମ ପୁତ୍ର, ତୁମ ଭାଇ, ତୁମ ପତ୍ନୀ, ତୁମ ଜ୍ଞାତି-କୁଟୁମ୍ବ ଏବଂ ତୁମମାନଙ୍କର ଅର୍ଜିତ ଧନ ଏବଂ ତୁମର ସେହି ବ୍ୟବସାୟ ଯାହା ମାନ୍ଦା ପଡ଼ିଯିବ ବୋଲି ତୁମେମାନେ ଆଶଂକା କର ବା ତୁମମାନଙ୍କର ପ୍ରିୟ ଘର, ଯଦି ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ ଅପେକ୍ଷା ଏବଂ ତାଙ୍କ ମାର୍ଗରେ ଜିହାଦ୍ କରିବା ଅପେକ୍ଷା ତୁମମାନଙ୍କୁ ଅଧିକ ପ୍ରିୟ, ତେବେ ଅଲ୍ଲାହଙ୍କ ନିଷ୍ପତ୍ତିର ପ୍ରତୀକ୍ଷା କର। ଅଲ୍ଲାହ୍ ଅବାଧ ଲୋକମାନଙ୍କର ମାର୍ଗଦର୍ଶନ କରନ୍ତିନାହିଁ।

୨୫. ଅଲ୍ଲାହ୍ ତୁମମାନଙ୍କୁ ଅବଶ୍ୟ ବହୁ କ୍ଷେତ୍ରରେ ସାହାଯ୍ୟ କରିଛନ୍ତି ଏବଂ ହୁନୈନ ଯୁଦ୍ଧ ଦିନ ମଧ୍ୟ, ଯେଉଁଦିନ ନିଜର ସଂଖ୍ୟାଗରିଷ୍ଠତା ଯୋଗୁଁ ତୁମେମାନେ ଖୁସିରେ ଫୁଲି ଯାଇଥିଲ କିନ୍ତୁ ତାହା ତୁମମାନଙ୍କର କିଛି କାମ ଦେଲାନାହିଁ ଏବଂ ଧରିତ୍ରୀ, ଏହାର ବିଶାଳତା ସତ୍ତ୍ୱେ ତୁମମାନଙ୍କ ପାଇଁ ସଂକୁଚିତ ହୋଇଗଲା ଏବଂ ତୁମେମାନେ ପୃଷ୍ଠଭଂଗ ଦେଇ ପଳାୟନ କଲ। ୨୬. ଏହାପରେ ଅଲ୍ଲାହ୍ ନିଜର ରସୁଲ୍ ଏବଂ ସଦ୍‌ବିଶ୍ୱାସୀମାନଙ୍କ ମନରେ ଶାନ୍ତି ଉତ୍ପନ୍ନ କରିଥିଲେ ଏବଂ ଏଭଳି ସେନା ପଠାଇଥିଲେ ଯେଉଁମାନଙ୍କୁ ତୁମେମାନେ ଦେଖିପାରୁ ନଥିଲ। ସେ ନାସ୍ତିକମାନଙ୍କୁ ଦଣ୍ଡ ଦେଇଥିଲେ। ଏହାହିଁ ନାସ୍ତିକମାନଙ୍କ କୃତକର୍ମର ଫଳ। ୨୭. ଏହାପରେ ମଧ୍ୟ ଅଲ୍ଲାହ୍ ଯାହାକୁ ଚାହିଁବେ ପଶ୍ଚାତାପ କରିବାର ସୌଭାଗ୍ୟ ପ୍ରଦାନ କରିବେ। ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ ପରମ ଦୟାଳୁ।

୨୮. ହେ ସଦ୍‌ବିଶ୍ୱାସୀଗଣ! ବହୁଈଶ୍ୱରବାଦୀମାନେ ଅପବିତ୍ର। ତେଣୁ, ଏହି ବର୍ଷ ପରେ ସେମାନେ ପବିତ୍ର (କାବା) ମସଜିଦ୍‌ର ପାଖକୁ ନଆସନ୍ତୁ। ଯଦି ତୁମମାନଙ୍କୁ ଦାରିଦ୍ର୍ୟର ଆଶଂକା ହେଉଛି, ତେବେ ଅଲ୍ଲାହ୍ ଚାହିଁଲେ ନିଜ କୃପାରୁ ତୁମମାନଙ୍କର ଅଭାବ ଦୂର କରିଦେବେ। ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ। ୨୯. ଗ୍ରନ୍ଥବିଶ୍ୱାସୀମାନଙ୍କ ମଧ୍ୟରେ ଥିବା ସେହି ଲୋକମାନଙ୍କ ସହିତ ଯୁଦ୍ଧ କର ଯେଉଁମାନେ ଅଲ୍ଲାହଙ୍କୁ ଏବଂ ପରଲୋକକୁ ବିଶ୍ୱାସ କରନ୍ତିନାହିଁ, ଅଲ୍ଲାହ୍ ଓ ତାଙ୍କ ରସୁଲ ନିଷିଦ୍ଧ କରିଥିବା ବସ୍ତୁକୁ ନିଷିଦ୍ଧ ମାନନ୍ତି ନାହିଁ କିମ୍ବା ସତ୍‌ଧର୍ମକୁ ନିଜର ଧର୍ମ ରୂପେ ଗ୍ରହଣ କରନ୍ତିନାହିଁ, ଯେପରିକି ସେମାନେ ତୁମମାନଙ୍କର ବଶତା ସ୍ୱୀକାର କରି ସ୍ୱେଚ୍ଛାରେ ଜିଜିଆ (ଅର୍ଥାତ୍ ସୁରକ୍ଷା କର) ଦିଅନ୍ତୁ।

୩୦. ୟହୁଦୀମାନେ କହନ୍ତି ଯେ ଉଜେର୍ ଅଲ୍ଲାହଙ୍କ ପୁତ୍ର ଏବଂ ଖ୍ରୀଷ୍ଟିୟାନମାନେ କହନ୍ତି ଯେ ଇସା ଅଲ୍ଲାହଙ୍କ ପୁତ୍ର । ଏଗୁଡ଼ିକ କେବଳ ସେମାନଙ୍କର ମନଗଢ଼ା କଥା । ସେମାନେ ପୂର୍ବ ନାସ୍ତିକମାନଙ୍କର କଥାକୁ (କେବଳ) ନକଲ କରୁଛନ୍ତି । ଅଲ୍ଲାହ୍ ସେମାନଙ୍କର ସର୍ବନାଶ କରନ୍ତୁ! ସେମାନେ କୁଆଡ଼େ ବାଟବଣା ହୋଇ ଚାଲି ଯାଉଛନ୍ତି ? ୩୧. ସେମାନେ ଅଲ୍ଲାହଙ୍କୁ ଛାଡ଼ି ସେମାନଙ୍କର ପଣ୍ଡିତ ଓ ସନ୍ଥମାନଙ୍କୁ ଈଶ୍ୱର ମାନି ନେଇଛନ୍ତି ଏବଂ ମରିୟମଙ୍କ ପୁତ୍ର ଇସାଙ୍କୁ (ଅର୍ଥାତ୍ ଯୀଶୁଙ୍କୁ) ମଧ୍ୟ, ଅଥଚ ସେମାନଙ୍କୁ କେବଳ ଜଣେ ଈଶ୍ୱରଙ୍କର ଉପାସନା କରିବାର ଆଦେଶ ଦିଆଯାଇଥିଲା । ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସନାଯୋଗ୍ୟ ନୁହନ୍ତି । ସେମାନଙ୍କ ବହୁଈଶ୍ୱରବାଦର ଆରୋପରୁ ସେ ପବିତ୍ର । ୩୨. ଏମାନେ ଚାହାନ୍ତି ଯେ ଅଲ୍ଲାହଙ୍କ ପ୍ରକାଶକୁ ମୁହଁରେ ଫୁଙ୍କିଦେଇ ଲିଭାଇ ଦେବେ କିନ୍ତୁ ଅଲ୍ଲାହ୍ ନିଜର ପ୍ରକାଶ ଦ୍ୱାରା (ଜଗତକୁ) ଆଲୋକିତ ନକରି ଛାଡ଼ିବେ ନାହିଁ ଯଦିଓ ନାସ୍ତିକମାନଙ୍କୁ ଏହା ଅପ୍ରିୟ ଲାଗୁ । ୩୩. ସେ ହିଁ ନିଜର ବାର୍ତ୍ତାବହଙ୍କୁ ସଦୁପଦେଶ ଓ ସତ୍ଧର୍ମ ଦେଇ ପଠାଇଛନ୍ତି ଯେପରିକି ଏହାକୁ ଅନ୍ୟ ସମସ୍ତ ଧର୍ମ ଉପରେ ପ୍ରଭାବୀ କରିବେ ଯଦିଓ ବହୁଈଶ୍ୱରବାଦୀମାନଙ୍କୁ ଏହା ଅପ୍ରିୟ ଲାଗୁ ।

୩୪. ହେ ମୁସଲମାନଗଣ ! ଅଧିକାଂଶ ପଣ୍ଡିତ ଓ ସନ୍ଥମାନେ ଲୋକଙ୍କର ଧନ ଅସଦୁପାୟରେ ଖାଆନ୍ତି ଏବଂ ସେମାନଙ୍କୁ ଅଲ୍ଲାହଙ୍କ ମାର୍ଗରୁ ରୋକନ୍ତି । ଯେଉଁମାନେ ସୁନାରୂପା ଗଚ୍ଛିତ କରି ରଖନ୍ତି ଏବଂ ତାହାକୁ ଅଲ୍ଲାହଙ୍କ ମାର୍ଗରେ ଖର୍ଚ୍ଚ କରନ୍ତିନାହିଁ, ସେମାନେ କଠୋର ଶାସ୍ତି ଭୋଗିବେ ବୋଲି ଜଣାଇ ଦିଅ । ୩୫. ସେଦିନ ସେହି ଧନକୁ ନର୍କର ନିଆଁରେ ଗରମ କରି ସେଥିରେ ସେମାନଙ୍କ ମୁହଁ, ଅଣ୍ଟା ଓ ପିଠିକୁ ଚେଙ୍କ ଦିଆଯିବ (ଏବଂ ସେମାନଙ୍କୁ କୁହାଯିବ) “ଏହା ସେହି ଧନ ଯାହାକୁ ତୁମେମାନେ ନିଜପାଇଁ ସାଇତି ରଖିଥିଲ । ଯେଉଁ ଧନକୁ ତୁମେମାନେ ସାଇତି ରଖୁଥିଲ ଏବେ ତା’ ମଜା ଚାଖ ।”

୩୬. ଅଲ୍ଲାହଙ୍କ ଲେଖାରେ ମାସର ସଂଖ୍ୟା ବାରମାସ ଯାହା ସେହିଦିନରୁ ରହିଛି ଯେଉଁଦିନ ସେ ଧରିତ୍ରୀ ଓ ଆକାଶକୁ ସୃଷ୍ଟି କଲେ । ଏଗୁଡ଼ିକ ମଧ୍ୟରେ ଚାରୋଟି ମାସ ପବିତ୍ର । ଏହାହିଁ ଚିରନ୍ତନ ଧର୍ମବିଧାନ । ତେଣୁ ଏହି ମାସଗୁଡ଼ିକରେ

(ଯୁଦ୍ଧ କରି) ନିଜ ପ୍ରତି ଅନ୍ୟାୟ କରନାହିଁ ଏବଂ ସମସ୍ତେ ମିଶି ବହୁଈଶ୍ୱରବାଦୀମାନଙ୍କ ସହିତ ସେହିପରି ଯୁଦ୍ଧ କର ଯେପରି ସେମାନେ ତୁମମାନଙ୍କ ସହିତ ମିଳିତ ଭାବରେ ଯୁଦ୍ଧ କରୁଛନ୍ତି ଏବଂ ଜାଣିରଖ ଯେ ଅଲ୍ଲାହ୍ ସଦାଚାରୀମାନଙ୍କ ସହିତ ଥାଆନ୍ତି । ୩୭. ମାସଗୁଡ଼ିକୁ ଆଗପଛ କରିବା ଅଧର୍ମ ଉପରେ ଆଉ ଏକ ଅଧର୍ମ କାର୍ଯ୍ୟ ଯାହାଦ୍ୱାରା ମିଥ୍ୟାବିଶ୍ୱାସୀମାନଙ୍କୁ ପଥଭ୍ରଷ୍ଟ କରାଯାଏ । ସେମାନେ ବର୍ଷକରେ ଗୋଟିଏ ମାସକୁ ବୈଧ ରୂପେ ଗ୍ରହଣ କରିନିଅନ୍ତି ଏବଂ ସେହି ମାସଟିକୁ ଆର ବର୍ଷ ଅବୈଧ କରିଦିଅନ୍ତି ଯେପରିକି ଅଲ୍ଲାହଙ୍କ ଦ୍ୱାରା ନିଷିଦ୍ଧ କରା ଯାଇଥିବା ମାସଗୁଡ଼ିକର ଗଣନା ସଂପୂର୍ଣ୍ଣ କରିବେ ଏବଂ ଏହା ସହିତ ଅଲ୍ଲାହଙ୍କ ଦ୍ୱାରା ନିଷିଦ୍ଧ କରାଯାଇଥିବା ମାସକୁ ମଧ୍ୟ ବୈଧ କରିଦେବେ । ସେମାନଙ୍କ ଆଖିରେ ସେମାନଙ୍କ କୁର୍ମଗୁଡ଼ିକୁ ଆକର୍ଷଣୀୟ କରି ଦିଆଯାଇଛି । ଅଲ୍ଲାହ୍ ସତ୍ୟକୁ ମାନୁ ନଥିବା ଲୋକମାନଙ୍କର ପଥପ୍ରଦର୍ଶନ କରନ୍ତିନାହିଁ ।

୩୮. ହେ ମୁସଲମାନଗଣ! ତୁମମାନଙ୍କର କ'ଣ ହୋଇଛି ଯେ ଯେତେବେଳେ ତୁମମାନଙ୍କୁ ଅଲ୍ଲାହଙ୍କ ମାର୍ଗରେ (ଜିହାଦରେ) ବାହାରିବା ପାଇଁ କୁହାଯାଉଛି ତୁମେମାନେ ମାଟି କାମୁଡ଼ି ଶୋଇ ପଡୁଛ । କ'ଣ ପରଲୋକକୁ ଛାଡ଼ି ତୁମେମାନେ ସଂସାରର ପାର୍ଥିବ ଜୀବନରେ ସନ୍ତୁଷ୍ଟ ହୋଇଯାଇଛ ? ଶୁଣ! ପରଲୋକର ସୁଖ ତୁଳନାରେ ପାର୍ଥିବ ଜୀବନର ସୁଖ ଅତି ନଗଣ୍ୟ । ୩୯. ଯଦି ତୁମେମାନେ (ଯୁଦ୍ଧ ପାଇଁ) ନବାହାରିବ, ତେବେ ଅଲ୍ଲାହ୍ ତୁମମାନଙ୍କୁ କଠୋର ଶାସ୍ତି ଦେବେ ଏବଂ ତୁମମାନଙ୍କ ସ୍ଥାନରେ ଅନ୍ୟ ଲୋକଙ୍କୁ ନେଇ ଆସିବେ ଏବଂ ତୁମେମାନେ ତାଙ୍କର କିଛି କ୍ଷତି କରିପାରିବ ନାହିଁ । ଅଲ୍ଲାହ୍ ସବୁକିଛି କରିବାକୁ ସକ୍ଷମ । ୪୦. ଯଦି ତୁମେମାନେ ରସୁଲଙ୍କୁ ସାହାଯ୍ୟ ନକର ତେବେ (ତାଙ୍କର କିଛି କ୍ଷତି ହେବନାହିଁ କାରଣ) ଅଲ୍ଲାହ୍ ତ ସେତେବେଳେ ମଧ୍ୟ ତାଙ୍କୁ ସାହାଯ୍ୟ କରିଥିଲେ ଯେତେବେଳେ ନାସ୍ତିକମାନେ ତାଙ୍କୁ (ମକ୍କାରୁ) ବାହାର କରି ଦେଇଥିଲେ । ସେତେବେଳେ ଦୁଇଜଣ ବ୍ୟକ୍ତିଙ୍କ ମଧ୍ୟରୁ ସେ ଜଣେ ଥିଲେ । ଯେଉଁ ସମୟରେ ସେ ଦୁହେଁ ଗୁମ୍ଫା ଭିତରେ ଥିଲେ, ସେ ନିଜ ସାଥିଙ୍କୁ କହୁଥିଲେ ଯେ ଦୁଃଖ କରନାହିଁ, ଅଲ୍ଲାହ୍ ଆମ ସହିତ ଅଛନ୍ତି । ସେତେବେଳେ ଅଲ୍ଲାହ୍ ତାଙ୍କ ମନରେ ଶାନ୍ତି ଉତ୍ପନ୍ନ କରିଥିଲେ ଏବଂ ଏଭଳି ସେନା ପଠାଇ ତାଙ୍କୁ ସାହାଯ୍ୟ

କରିଥିଲେ ଯେଉଁମାନେ ତୁମକୁ ଦେଖାଯାଉ ନଥିଲେ । ସେ ନାସ୍ତିକମାନଙ୍କର କଥାକୁ ବିଫଳ କରିଦେଲେ ଏବଂ ଅଲ୍ଲାହ୍‌ଙ୍କ କଥା ସବୁବେଳେ ଶୀର୍ଷରେ ଥାଏ । ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ । ୪୧. ପରିସ୍ଥିତି ଅନୁକୂଳ ହେଉ ବା ପ୍ରତିକୂଳ, ତୁମେମାନେ (ଯୁଦ୍ଧ ପାଇଁ) ବାହାରି ପଡ଼ ଏବଂ ନିଜର ଧନ ଓ ଜୀବନ ଦେଇ ଅଲ୍ଲାହ୍‌ଙ୍କ ମାର୍ଗରେ ସଂଘର୍ଷ କର । ଯଦି ତୁମମାନଙ୍କର ଜ୍ଞାନ ଥାଏ ତେବେ ଏହାହିଁ ତୁମମାନଙ୍କ ପାଇଁ ମଂଗଳକର ।

୪୨. ଯଦି ତୁରନ୍ତ ଫାଇଦା ମିଳିବାର ଥାଆନ୍ତା ଏବଂ ଯାତ୍ରା ମଧ୍ୟ ସହଜସାଧ୍ୟ ହୋଇଥାଆନ୍ତା ତେବେ ଏହି କପଟୀମାନେ ତୁମ ସହିତ ନିଶ୍ଚୟ ବାହାରି ପଡ଼ନ୍ତେ କିନ୍ତୁ ଏହି ଯାତ୍ରା ସେମାନଙ୍କୁ ଅତି ଦୀର୍ଘ ମନେ ହେଲା । ବର୍ତ୍ତମାନ ସେମାନେ ଅଲ୍ଲାହ୍‌ଙ୍କ ରାଣ ଖାଇ କହିବେ, "ଯଦି ଆମ ପକ୍ଷରେ ସଂଭବ ହୁଅନ୍ତା, ତେବେ ଆମେ ତୁମମାନଙ୍କ ସହିତ ନିଶ୍ଚୟ ଯାଇଥାଆନ୍ତୁ ।" ଏମାନେ ନିଜର ସର୍ବନାଶ କରୁଛନ୍ତି ଏବଂ ଅଲ୍ଲାହ୍ ଜାଣନ୍ତି ଯେ ଏମାନେ ସଂପୂର୍ଣ୍ଣ ମିଥ୍ୟାବାଦୀ । ୪୩. (ହେ ବର୍ତ୍ତାବହ !) ଅଲ୍ଲାହ୍ ତୁମକୁ କ୍ଷମା କଲେ । କେଉଁମାନେ ସତ୍ୟବାଦୀ ଏକଥା ତୁମ ପାଖରେ ପରିଷ୍କାର ନହେବା ପୂର୍ବରୁ ଏବଂ ମିଥ୍ୟାବାଦୀମାନଙ୍କୁ ନଜାଣିବା ପୂର୍ବରୁ ତୁମେ କାହିଁକି ଏମାନଙ୍କୁ ଅନୁମତି ଦେଇଦେଲ ? ୪୪. ଯେଉଁମାନେ ଅଲ୍ଲାହ୍‌ଙ୍କୁ ଏବଂ ପରଲୋକକୁ ବିଶ୍ୱାସ କରନ୍ତି ସେମାନେ ତୁମଠାରୁ କଦାପି ଏଥିପାଇଁ ଅନୁମତି ମାଗିବେନାହିଁ ଯେ ସେମାନଙ୍କୁ ଧନ-ଜୀବନ ଅର୍ପଣ କରି ଯୁଦ୍ଧ କରିବାରୁ ଅବ୍ୟାହତି ଦିଆଯାଉ । ଅଲ୍ଲାହ୍ ଧର୍ମପରାୟଣ ଲୋକମାନଙ୍କୁ ଭଲରୂପେ ଜାଣନ୍ତି । ୪୫. ତୁମଠାରୁ ଅନୁମତି କେବଳ ସେଇମାନେ ମାଗନ୍ତି ଯେଉଁମାନେ ଅଲ୍ଲାହ୍‌ଙ୍କୁ ଓ ପରଲୋକକୁ ବିଶ୍ୱାସ କରନ୍ତିନାହିଁ । ସେମାନଙ୍କ ମନରେ ସନ୍ଦେହ ଅଛି । ତେଣୁ ନିଜ ସନ୍ଦେହ ଯୋଗୁଁ ସେମାନେ ଆଗପଛ ହେଉଛନ୍ତି । ୪୬. ଯଦି ସେମାନଙ୍କର (ଯୁଦ୍ଧଯାତ୍ରାରେ) ବାହାରିବାର ଇଚ୍ଛା ଥାଆନ୍ତା, ତେବେ ସେଥିପାଇଁ ସେମାନେ କିଛି ପ୍ରସ୍ତୁତି କରି ଥାଆନ୍ତେ । ମାତ୍ର ଅଲ୍ଲାହ୍ ପସନ୍ଦ କଲେନାହିଁ ଯେ ସେମାନେ ଯାଆନ୍ତୁ । ତେଣୁ ସେ ସେମାନଙ୍କୁ ଯିବାକୁ ଦେଲେନାହିଁ ଏବଂ ସେମାନଙ୍କୁ କୁହାଗଲା ଯେ ଯେଉଁମାନେ (ଘରେ) ବସି ରହନ୍ତି, ତୁମେମାନେ ମଧ୍ୟ ସେଇମାନଙ୍କ ସହିତ ବସି ରୁହ ।

୪୭. ଯଦି ଏମାନେ ତୁମମାନଙ୍କ ସହିତ ଯାଇଥାଆନ୍ତେ, କେବଳ ତୁମର ଅନିଷ୍ଟ କରିବା ଛଡ଼ା କିଛି ଭଲ କରି ନଥାଆନ୍ତେ ବରଂ ତୁମମାନଙ୍କ ମଧ୍ୟରେ ବିଦ୍ରୋହ ସୃଷ୍ଟି କରିବାକୁ ଚେଷ୍ଟା କରନ୍ତେ । ତୁମମାନଙ୍କ ମଧ୍ୟରେ କେତେକ ଅଛନ୍ତି ଯେଉଁମାନେ କାନ ଡେ଼ରି ସେଇମାନଙ୍କ କଥା ଶୁଣନ୍ତି ଏବଂ ଅଲ୍ଲାହ୍ ସେହି ଦୁଷ୍ଟମାନଙ୍କୁ ଭଲରୂପେ ଜାଣନ୍ତି । ୪୮. ଏହା ପୂର୍ବରୁ ମଧ୍ୟ ସେମାନେ ଗଣ୍ଡଗୋଳ କରିବା ପାଇଁ ଚେଷ୍ଟା କରି ସାରିଛନ୍ତି ଏବଂ ତୁମର ଅନିଷ୍ଟ କରିବା ପାଇଁ ତୁମ କଥାକୁ ଏପଟସେପଟ କରିଛନ୍ତି । ଶେଷରେ ସତ୍ୟର ଜୟ ହେଲା ଏବଂ ଅଲ୍ଲାହଙ୍କ କଥାହିଁ ରହିଲା ଆଉ ସେମାନେ ଛାଟିପିଟି ହୋଇ ରହିଗଲେ ।

୪୯. ସେମାନଙ୍କ ମଧ୍ୟରୁ କେହି କହୁଛି ଯେ ମୋତେ (ଘରେ ରହିବାର) ଅନୁମତି ଦିଅନ୍ତୁ ଏବଂ ମୋ'ର ପରୀକ୍ଷା ନିଅନ୍ତୁନାହିଁ । ଶୁଣିନିଅ ! ଏମାନେ ପରୀକ୍ଷାର ସମ୍ମୁଖୀନ ହୋଇ ସାରିଛନ୍ତି ଏବଂ ନର୍କ ନାସ୍ତିକମାନଙ୍କୁ ଘେରି ସାରିଛି । ୫୦. (ହେ ବାର୍ତ୍ତାବହ !) ଯଦି ତୁମର କିଛି ଭଲ ହୁଏ ତେବେ ସେମାନଙ୍କୁ କଷ୍ଟ ହୁଏ ଏବଂ ଯଦି ତୁମ ଉପରେ କିଛି ବିପଦ ପଡ଼େ, ତେବେ ସେମାନେ କହନ୍ତି, "ଯାହାହେଉ, ଆମେ କିନ୍ତୁ ଆଗରୁ ସତର୍କ ହୋଇ ଯାଇଥିଲୁ ।" ପୁଣି ଖୁସି ମନରେ ଚାଲିଯାଆନ୍ତି । ୫୧. ତୁମେ (ସେମାନଙ୍କୁ) କୁହ, "ଅଲ୍ଲାହ୍ ଯାହା (ସୁଖଦୁଃଖ ଆମ ଭାଗ୍ୟରେ) ଲେଖି ଦେଇଛନ୍ତି ଆମେ କେବଳ ତାହାହିଁ ଭୋଗକରୁ । ସେ ହିଁ ଆମମାନଙ୍କର ତ୍ରାଣକର୍ତ୍ତା ଏବଂ ସଦ୍‌ବିଶ୍ୱାସୀମାନେ ସର୍ବଦା ଅଲ୍ଲାହଙ୍କ ଉପରେ ଭରସା କରିବା ଉଚିତ ।" ୫୨. କୁହ, "ଦୁଇଟି ଭଲ ପରିଣାମ (ଅର୍ଥାତ୍ ଶହୀଦ୍ ହେବା କିମ୍ବା ବିଜୟୀ ହେବା) ବ୍ୟତୀତ କ'ଣ ଅନ୍ୟ କିଛି ହେବ ବୋଲି ତୁମେମାନେ ଆଶା କରୁଛ ? ଆମେ ତୁମମାନଙ୍କ ପାଇଁ ଏହାରି ଅପେକ୍ଷାରେ ଅଛୁ ଯେ ତୁମମାନଙ୍କୁ ଅଲ୍ଲାହ୍ ସ୍ୱୟଂ ଦଣ୍ଡ ଦିଅନ୍ତୁ କିମ୍ବା ଆମମାନଙ୍କ ମାଧ୍ୟମରେ ଦଣ୍ଡିତ କରନ୍ତୁ । ତେଣୁ ତୁମେମାନେ ଅପେକ୍ଷା କର ଏବଂ ତୁମମାନଙ୍କ ସହିତ ଆମେ ମଧ୍ୟ ଅପେକ୍ଷାରେ ରହିଲୁ ।"

୫୩. ସେମାନଙ୍କୁ କୁହ, "ତୁମେମାନେ ସ୍ୱେଚ୍ଛାରେ ଧନ ଖର୍ଚ୍ଚ କର ବା ଅନିଚ୍ଛାରେ ତାହା ତୁମମାନଙ୍କଠାରୁ କଦାପି କରାଯିବ ନାହିଁ କାରଣ ତୁମେମାନେ ଅବଜ୍ଞାକାରୀ ।" ୫୪. ସେମାନଙ୍କ ଦାନ ସ୍ୱୀକାର ନହେବାର କେବଳ ଏହାହିଁ

କାରଣ ଯେ ସେମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ ବିଶ୍ୱାସ କରନ୍ତି ନାହିଁ, ଆଳସ୍ୟର ସହିତ ନମାଜପାଠ ପାଇଁ ଆସନ୍ତି ଏବଂ କୁଣ୍ଠିତ ମନରେ ଧନ ଖର୍ଚ୍ଚ କରନ୍ତି । ୫୫. ସେମାନଙ୍କର ଧନସଂପତ୍ତି ଏବଂ ସନ୍ତାନସନ୍ତତିର ପ୍ରାଚୁର୍ଯ୍ୟ ଦେଖି ତୁମେ ଆଶ୍ଚର୍ଯ୍ୟ ହୁଅନାହିଁ । ଅଲ୍ଲାହ୍ ସେମାନଙ୍କୁ ଏହାରି ଦ୍ୱାରା ସଂସାରରେ ଦଣ୍ଡ ଦେବାକୁ ଚାହାନ୍ତି ଏବଂ (ଚାହାନ୍ତି ଯେ) ନାସ୍ତିକ ଥିବା ଅବସ୍ଥାରେ ସେମାନଙ୍କର ପ୍ରାଣ ଚାଲିଯାଉ । ୫୬. ସେମାନେ ଅଲ୍ଲାହଙ୍କ ରାଣ ଖାଇ କହୁଛନ୍ତି ଯେ ସେମାନେ ତୁମରି ଲୋକ ମାତ୍ର ସେମାନେ ତୁମ ଲୋକ ନୁହନ୍ତି, ବରଂ ଏହି ଲୋକମାନେ ଭାରି ଭୟାଳୁ । ୫୭. ଯଦି ଏମାନଙ୍କୁ ଆଶ୍ରୟ ନେବାପାଇଁ କୌଣସି ସ୍ଥାନ ମିଳିଯାଆନ୍ତା କିମ୍ବା କୌଣସି ଗୁମ୍ଫା ବା ଲୁଚିବା ପାଇଁ ଜାଗା ମିଳିଯାଆନ୍ତା ତେବେ ଏମାନେ ସେଇଠାକୁ ଧାଇଁ ଯାଆନ୍ତେ ।

୫୮. ଏମାନଙ୍କ ମଧ୍ୟରେ ଆଉ କେତେକ ମଧ୍ୟ ଅଛନ୍ତି ଯେଉଁମାନେ ଦାନରାଶିର ବଣ୍ଟନକୁ ନେଇ ତୁମକୁ ଦୋଷ ଦିଅନ୍ତି କିନ୍ତୁ ଯଦି ସେମାନଙ୍କୁ (ସେମାନଙ୍କ ମନ ମୁତାବକ) ସେଥିରୁ କିଛି ମିଳିଯାଏ ତେବେ ଖୁସି ହୁଅନ୍ତି ଏବଂ ଯଦି ନମିଳେ, ସଙ୍ଗେସଙ୍ଗେ ରାଗିଯାଆନ୍ତି । ୫୯. ଭଲ ହୋଇଥାଆନ୍ତା ଯଦି ଅଲ୍ଲାହ୍ ଓ ତାଙ୍କ ରସୁଲ ସେମାନଙ୍କୁ ଯାହା ଦେଲେ ସେଥିରେ ସେମାନେ ସନ୍ତୁଷ୍ଟ ହୋଇ ଯାଇଥାଆନ୍ତେ ଏବଂ କହିଥାଆନ୍ତେ, "ଅଲ୍ଲାହ୍ ଆମ ପାଇଁ ଯଥେଷ୍ଟ । ସେ ଆମମାନଙ୍କୁ ନିଜ କୃପାରୁ ଆହୁରି ଦେବେ ଏବଂ ତାଙ୍କର ରସୁଲ ମଧ୍ୟ ଦେବେ । ଅମେମାନେ ତ ଅଲ୍ଲାହଙ୍କଠାରେ ହିଁ ଆଶା ରଖିଛୁ ।"

୬୦. ଦାନ (ଅର୍ଥାତ୍ ଜକାତ୍) କେବଳ ଗରିବ ଓ ଅଭାବୀ ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ ଏବଂ ସେମାନଙ୍କ ପାଇଁ ମଧ୍ୟ ଉଦ୍ଦିଷ୍ଟ ଯେଉଁମାନେ ଜକାତ୍ ସଂଗ୍ରହ ପାଇଁ ନିଯୁକ୍ତ ହୋଇଥାଆନ୍ତି ଏବଂ ଯେଉଁମାନଙ୍କର ମନ ଖୁସି କରିବାର ଅଭିପ୍ରାୟ ଥାଏ । ଏହା (ଲୋକମାନଙ୍କୁ) ଦାସତ୍ୱରୁ ମୁକ୍ତ କରିବା ପାଇଁ, ଋଣଗ୍ରସ୍ତ ଲୋକମାନଙ୍କୁ ସାହାଯ୍ୟ କରିବା ପାଇଁ, ଅଲ୍ଲାହ୍‌ଙ୍କ ମାର୍ଗରେ ଖର୍ଚ୍ଚ କରିବା ପାଇଁ ଏବଂ (ଅସହାୟ) ପଥଚାରୀମାନଙ୍କୁ ସାହାଯ୍ୟ କରିବା ପାଇଁ ଉଦ୍ଦିଷ୍ଟ । ଏହା ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ଏକ କର୍ତ୍ତବ୍ୟ । ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ ।

୬୧. ସେମାନଙ୍କ ମଧ୍ୟରେ କିଛି ଲୋକ ଅଛନ୍ତି ଯେଉଁମାନେ ରସୁଲଙ୍କୁ ଦୁଃଖ ଦିଅନ୍ତି ଏବଂ କହନ୍ତି ଯେ ଏହି ବ୍ୟକ୍ତି ଯାହା ଶୁଣନ୍ତି ସେଥିରେ ବିଶ୍ୱାସ କରିନିଅନ୍ତି । ସେମାନଙ୍କୁ କୁହ, "ସେ ତୁମମାନଙ୍କର ମଂଗଳ ପାଇଁ ଏହା କରନ୍ତି । ସେ ଅଲ୍ଲାହଙ୍କୁ ବିଶ୍ୱାସ କରନ୍ତି, ମୁସଲମାନମାନଙ୍କ କଥାରେ ବିଶ୍ୱାସ କରନ୍ତି ଏବଂ ତୁମମାନଙ୍କ ମଧ୍ୟରୁ ଯେଉଁମାନେ ଆସ୍ଥା ରଖିଛନ୍ତି ସେମାନଙ୍କ ପ୍ରତି ସେ ଭାରି ଦୟାଳୁ ।" ଯେଉଁମାନେ ଅଲ୍ଲାହଙ୍କ ରସୁଲଙ୍କୁ ଦୁଃଖ ଦିଅନ୍ତି ସେମାନେ ଯନ୍ତ୍ରଣାଦାୟକ ଶାସ୍ତି ଭୋଗିବେ । ୬୨. ସେମାନେ ତୁମମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ତୁମମାନଙ୍କ ପାଖରେ ଅଲ୍ଲାହଙ୍କର ରାଣ ଖାଆନ୍ତି ଅଥଚ ଯଦି ସେମାନେ ସଦ୍‌ବିଶ୍ୱାସୀ ହୋଇଥାଆନ୍ତେ, ତେବେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ ସନ୍ତୁଷ୍ଟ କରିବା ଅଧିକ ଉଚିତ ଥିଲା । ୬୩. କ'ଣ ସେମାନେ ଜାଣନ୍ତି ନାହିଁ ଯେ ଯେଉଁ ବ୍ୟକ୍ତି ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କର ବିରୋଧ କରେ ସେ ନର୍କର ନିଆଁରେ ଦଗ୍ଧ ହେବ ଏବଂ ସେଠାରେ ଚିରଦିନ ରହିବ? ଏହା ଘୋର ଅପମାନର ବିଷୟ । ୬୪. କପଟୀମାନେ ଭୟ କରୁଛନ୍ତି ଯେ କାଳେ ମୁସଲମାନମାନଙ୍କ ପ୍ରତି (କୁରଆନର) କୌଣସି ଅଧ୍ୟାୟ ପ୍ରକଟ ହୋଇଯିବ ଏବଂ ସେମାନଙ୍କ ଅନ୍ତରର କଥାକୁ ପ୍ରକାଶ କରିଦେବ । ସେମାନଙ୍କୁ କୁହ, "ଥଟ୍ଟା କରୁଥାଅ! ଯେଉଁ କଥାକୁ ତୁମେମାନେ ଡରୁଛ ଅଲ୍ଲାହ୍ ନିଶ୍ଚୟ ତାହା ପ୍ରକାଶ କରିଦେବେ ।" ୬୫. ଯଦି ତୁମେ ସେମାନଙ୍କୁ ଏବିଷୟରେ ପଚାରିବ, ସେମାନେ କହିବେ ଯେ ଆମେ ଟିକିଏ ହସଖୁସି ଆଉ ଥଟ୍ଟା-ପରିହାସ କରୁଥିଲୁ । ସେମାନଙ୍କୁ ପଚାର, "କ'ଣ ଅଲ୍ଲାହ୍ ଓ ତାଙ୍କ ବାଣୀ ସହିତ ଏବଂ ତାଙ୍କ ରସୁଲଙ୍କ ସହିତ ଥଟ୍ଟା କରୁଥିଲ?" ୬୬. ବାହାନା କରନାହିଁ । ତୁମେମାନେ ଆସ୍ଥା ରଖିବା ପରେ ପୁଣି ନାସ୍ତିକ ହୋଇଯାଇଛ । ଯଦିଓ ଆମ୍ଭେ ତୁମମାନଙ୍କ ମଧ୍ୟରୁ କେତେକଙ୍କୁ କ୍ଷମା କରିଦେଉ କିନ୍ତୁ ଅନ୍ୟ କେତେକଙ୍କୁ ନିଶ୍ଚୟ ଦଣ୍ଡ ଦେବୁ କାରଣ ସେମାନେ ଅପରାଧୀ ।

୬୭. କପଟୀ ପୁରୁଷ ଓ କପଟୀ ନାରୀ ସମସ୍ତେ ସମାନ । ସେମାନେ କୁକର୍ମ କରିବାର ଶିକ୍ଷା ଦିଅନ୍ତି ଏବଂ ଭଲ କର୍ମ କରିବାରେ ବାଧା ଦିଅନ୍ତି ଏବଂ (ପୁଣ୍ୟ କାର୍ଯ୍ୟରେ ଧନ ଖର୍ଚ୍ଚ ନକରି) ହାତମୁଠା ବନ୍ଦ ରଖନ୍ତି । ଏମାନେ ଯେତେବେଳେ ଅଲ୍ଲାହଙ୍କୁ ଭୁଲିଗଲେ, ଅଲ୍ଲାହ୍ ମଧ୍ୟ ସେମାନଙ୍କୁ ଭୁଲିଗଲେ । ଏହି

କପଟୀମାନେ ଭାରି ଅବାଧ। ୬୮. କପଟୀ ନରନାରୀ ଓ ନାସ୍ତିକମାନଙ୍କୁ ଅଲ୍ଲାହ୍ ନର୍କଦଣ୍ଡ ଦେବେ ବୋଲି ବଚନବଦ୍ଧ। ସେମାନେ ସେଠାରେ ଚିରକାଳ ରହିବେ। ଏହାହିଁ ସେମାନଙ୍କ ପାଇଁ ଉପଯୁକ୍ତ (ସ୍ଥାନ)। ସେମାନଙ୍କୁ ଅଲ୍ଲାହଙ୍କର ଧିକ୍କାର ଏବଂ ସେମାନେ ଅନନ୍ତକାଳ ଯନ୍ତ୍ରଣା ଭୋଗିବେ। ୬୯. ତୁମେମାନେ ମଧ୍ୟ ତୁମ ପୂର୍ବଜମାନଙ୍କ ପରି। ସେମାନେ ତୁମମାନଙ୍କଠାରୁ ଅଧିକ ଶକ୍ତଶାଳୀ ଥିଲେ ଏବଂ ସେମାଙ୍କର ଧନସମ୍ପତ୍ତି ଓ ସନ୍ତାନ-ସନ୍ତତି ତୁମଠାରୁ ଢ଼େର ଅଧିକ ଥିଲା। ସେମାନେ ନିଜ ଭାଗର ସଂସାର ଭୋଗି ସାରିଲେ ଏବଂ ତୁମେମାନେ ମଧ୍ୟ ତୁମ ପୂର୍ବଜମାନଙ୍କ ପରି ନିଜ ଭାଗର ସଂସାର ଭୋଗ କରୁଛ। ତୁମେମାନେ ମଧ୍ୟ ସେହିପରି ଅଯଥା କଥାରେ ଲିପ୍ତ ରହିଛ ଯେପରି ସେମାନେ ଲିପ୍ତ ରହିଥିଲେ। ଏହି ଲୋକମାନଙ୍କର ସବୁ କର୍ମ ଇହଲୋକ ଓ ପରଲୋକରେ ଅକାରଣ ହେଲା ଏବଂ ସେମାନେ କ୍ଷତିଗ୍ରସ୍ତ ହେଲେ। ୭୦. କ'ଣ ସେମାନେ ନିଜ ପୂର୍ବଜମାନଙ୍କର ଖବର ପାଇନାହାନ୍ତି ? ନୁହ୍, ଆଦ୍, ସମୁଦ ଏବଂ ଇବ୍ରାହିମଙ୍କ ସଂପ୍ରଦାୟର ଖବର ଏବଂ ମଦୟନବାସୀ ତଥା ସେହି ଧ୍ୱସ୍ତବିଧ୍ୱସ୍ତ ଗାଁଗୁଡ଼ିକର ଖବର ? ସେମାନଙ୍କ ପାଖକୁ ସେମାନଙ୍କ (ପାଇଁ ନିଯୁକ୍ତ ହୋଇଥିବା) ବାର୍ତ୍ତାବହମାନେ ସ୍ପଷ୍ଟ ପ୍ରମାଣ ନେଇ ଯାଇଥିଲେ। ଅଲ୍ଲାହ୍ ଏମିତି ନୁହନ୍ତି ଯେ ସେମାନଙ୍କ ପ୍ରତି ଅନ୍ୟାୟ କରିବେ ବରଂ ସେହିମାନେ ହିଁ ନିଜ ପ୍ରତି ଅନ୍ୟାୟ କରିଥିଲେ।

୭୧. ସଦ୍‌ବିଶ୍ୱାସୀ ପୁରୁଷ ଓ ସଦ୍‌ବିଶ୍ୱାସୀ ମହିଳାମାନେ ପରସ୍ପରର ବନ୍ଧୁ। ଏମାନେ ସତ୍‌କର୍ମ କରିବାର ଉପଦେଶ ଦିଅନ୍ତି ଏବଂ ଅସତ୍ କର୍ମ କରିବାକୁ ବାରଣ କରନ୍ତି, ନମାଜ ସଂପାଦନ କରନ୍ତି, ଜକାତ୍ ଦିଅନ୍ତି ଏବଂ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ ଆଜ୍ଞା ପାଳନ କରନ୍ତି। ଅଲ୍ଲାହ୍ ଏମାନଙ୍କ ପ୍ରତି ନିଶ୍ଚୟ କୃପା କରିବେ। ଅଲ୍ଲାହ୍ ପ୍ରଭୁତ୍ୱଶାଳୀ ଏବଂ ତତ୍ତ୍ୱଜ୍ଞ। ୭୨. ସଦ୍‌ବିଶ୍ୱାସୀ ପୁରୁଷ ଓ ନାରୀମାନଙ୍କୁ ଅଲ୍ଲାହ୍ ଏଭଳି ଉଦ୍ୟାନମାନଙ୍କରେ ରହିବାର ପ୍ରତିଶ୍ରୁତି ଦେଇଛନ୍ତି ଯାହା ତଳେ ଝରଣା ପ୍ରବାହିତ ହୁଏ, ଯେଉଁଠାରେ ସେମାନେ ସର୍ବଦା ରହିବେ। ସେହି ଉଦ୍ୟାନମାନଙ୍କରେ ସେମାନଙ୍କ ପାଇଁ ସୁନ୍ଦର ବିଶ୍ରାମକକ୍ଷ ରହିଛି। ବଡ଼କଥା ହେଲା ସେମାନେ ଅଲ୍ଲାହଙ୍କର ପ୍ରସନ୍ନତା ଲାଭ କରିବେ। ଏହାହିଁ ବଡ଼ ସଫଳତା।

୭୩. ହେ ରସୁଲ ! ଏହି ନାସ୍ତିକ ଓ କପଟୀମାନଙ୍କ ସହିତ କଠିନ ସଂଘର୍ଷ କର ଏବଂ ସେମାନଙ୍କ ପ୍ରତି କଠୋର ହୁଅ । ନର୍କ ସେମାନଙ୍କର ଘର ହେବ ଏବଂ ଏହା ଅତି କଦର୍ଯ୍ୟ ସ୍ଥାନ । ୭୪. ସେମାନେ ଅଲ୍ଲାହଙ୍କ ନାମରେ ନିୟମ କରି କହୁଛନ୍ତି ଯେ ସେମାନେ (ଅଧର୍ମ କଥା) କହି ନାହାନ୍ତି ମାତ୍ର ପ୍ରକୃତରେ ସେମାନେ ଅଧର୍ମ କଥା କହିଛନ୍ତି । ସେମାନେ ଇସଲାମ ଗ୍ରହଣ କରିସାରିବା ପରେ ପୁଣି ଅବିଶ୍ୱାସ କଲେ । ସେମାନେ ଯାହା କରିବାକୁ ଚକ୍ରାନ୍ତ କରିଥିଲେ ସେଥିରେ ସଫଳ ହେଲେନାହିଁ । ମୁସଲମାନମାନଙ୍କ ପ୍ରତି ସେମାନଙ୍କ ରାଗ କେବଳ ଏଇଥିପାଇଁ ଯେ ଅଲ୍ଲାହ୍ ଓ ତାଙ୍କ ରସୁଲ ଅନୁଗ୍ରହ କରି ଏମାନଙ୍କୁ ଧନବାନ କରିଦେଲେ । ତେଣୁ ଯଦି ସେମାନେ ଏବେ ମଧ୍ୟ ପଶ୍ଚାତାପ କରନ୍ତି, ତା'ହେଲେ ସେମାନଙ୍କ ପକ୍ଷରେ ମଂଗଳ ହେବ ଏବଂ ଯଦି ଅବାଧ ହେବେ, ତେବେ ଅଲ୍ଲାହ୍ ସେମାନଙ୍କୁ ଇହଲୋକ ଏବଂ ପରଲୋକରେ କଠୋର ଶାସ୍ତି ଦେବେ ଏବଂ ସେମାନଙ୍କୁ ଧରାପୃଷ୍ଠରେ କେହି ବନ୍ଧୁ ବା ସାହାଯ୍ୟକାରୀ ମିଳିବେ ନାହିଁ ।

୭୫. ସେମାନଙ୍କ ମଧ୍ୟରେ କିଛି ଲୋକ ଅଛନ୍ତି ଯେଉଁମାନେ ଅଲ୍ଲାହଙ୍କୁ କଥା ଦେଇଥିଲେ, "ଯଦି ସେ ଆମମାନଙ୍କୁ ନିଜ କୃପାରୁ କିଛି ଦେବେ ତେବେ ଆମେ ନିଶ୍ଚୟ ଦାନ କରିବୁ ଏବଂ ପୁଣ୍ୟବାନ ହେବୁ ।" ୭୬. ମାତ୍ର ଯେତେବେଳେ ଅଲ୍ଲାହ୍ ସେମାନଙ୍କୁ ଧନ ଦେଲେ, ସେମାନେ କୃପଣତା କଲେ ଏବଂ ନିଜ କଥାରୁ ଓହରି ଗଲେ । ସେମାନେ (ନିଜ କଥାରୁ) ଓହରିଯିବାରେ ଅଭ୍ୟସ୍ତ । ୭୭. ତେଣୁ ଅଲ୍ଲାହଙ୍କୁ ଦେଇଥିବା ବଚନ ଭଂଗ କରିବା ଏବଂ ମିଛ କହିବା ଯୋଗୁଁ ଅଲ୍ଲାହ୍ ସେମାନଙ୍କୁ ଏହି ଶାସ୍ତି ଦେଲେ ଯେ ତାଙ୍କ ସହିତ ସାକ୍ଷାତ କରିବା ପର୍ଯ୍ୟନ୍ତ ସେମାନଙ୍କ ମନ କପଟପୂର୍ଣ୍ଣ ରହିଥିବ । ୭୮. କ'ଣ ସେମାନଙ୍କୁ ଏହା ଜଣାନାହିଁ ଯେ ଅଲ୍ଲାହ୍ ସେମାନଙ୍କର ସବୁ ଗୁପ୍ତକଥା ଓ ଗୁପ୍ତ ମନ୍ତ୍ରଣା ଜାଣନ୍ତି ଏବଂ ସେ ଅଦୃଷ୍ଟର ଜ୍ଞାତା ? ୭୯. ଯେଉଁମାନେ ମୁକ୍ତ ହସ୍ତରେ ଦାନ କରୁଥିବା ମୁସଲମାନମାନଙ୍କୁ ବିଦ୍ରୂପ କରନ୍ତି ଏବଂ ଏଭଳି ଲୋକମାନଙ୍କୁ ଉପହାସ କରନ୍ତି ଯେଉଁମାନଙ୍କ ପାଖରେ କେବଳ ନିଜ ପରିଶ୍ରମଲବ୍ଧ ଉପାର୍ଜନ ବ୍ୟତୀତ ଆଉକିଛି ନଥାଏ, ଅଲ୍ଲାହ୍ ସେମାନଙ୍କୁ ଉପହାସ କରୁଛନ୍ତି ଏବଂ ସେମାନେ କଠୋର ଶାସ୍ତି ଭୋଗିବେ । ୮୦. (ହେ ରସୁଲ !) ତୁମେ ସେମାନଙ୍କ ପାଇଁ କ୍ଷମା ପ୍ରାର୍ଥନା କର

ବା ନକର (ଏକା କଥା) । ଯଦି ତୁମେ ସତୁରୀ ଥର ମଧ୍ୟ ସେମାନଙ୍କ ପାଇଁ କ୍ଷମା ପ୍ରାର୍ଥନା କରିବ ତଥାପି ଅଲ୍ଲାହ୍ କଦାପି ସେମାନଙ୍କୁ କ୍ଷମା କରିବେନାହିଁ । ଏହାର କାରଣ ସେମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ ପ୍ରତ୍ୟାଖ୍ୟାନ କରିଛନ୍ତି । ଅଲ୍ଲାହ୍ ପାପୀମାନଙ୍କର ମାର୍ଗଦର୍ଶନ କରନ୍ତି ନାହିଁ ।

୮୧. ଯେଉଁମାନେ (ଯୁଦ୍ଧଯାତ୍ରାରେ ନଯାଇ) ପଛରେ ରହିଲେ, ସେମାନେ ଅଲ୍ଲାହଙ୍କ ରସୁଲଙ୍କୁ ସହଯୋଗ ନକରି ଘରେ ବସି ରହିଥିବାରୁ ଖୁସି ହେଲେ । ଅଲ୍ଲାହଙ୍କ ମାର୍ଗରେ ଧନ-ଜୀବନ ଉସର୍ଗ କରି ସଂଘର୍ଷ କରିବାକୁ ସେମାନେ ପସନ୍ଦ କଲେନାହିଁ । ସେମାନେ କହିଲେ, "ଏଭଳି ପ୍ରବଳ ଗରମରେ (ଯୁଦ୍ଧ ପାଇଁ) ବାହାର ନାହିଁ ।" ସେମାନଙ୍କୁ କହିଦିଅ, "ନର୍କର ନିଆଁ ଏହାଠୁ ଅଧିକ ଗରମ ।" ଅନ୍ତତଃ ସେମାନେ ଏହା ବୁଝନ୍ତେ କି ? ୮୨. ବର୍ତ୍ତମାନ ଏମାନେ ଟିକିଏ ହସଖୁସି କରି ନିଅନ୍ତୁ । ପୁଣି ଯାହାସବୁ କରୁଛନ୍ତି, ତାହା ଯୋଗୁଁ ବହୁତ କାନ୍ଦିବେ । ୮୩. (ହେ ରସୁଲ !) ଯଦି ଅଲ୍ଲାହ୍ ତୁମକୁ ଏମାନଙ୍କ ମଧ୍ୟରୁ କୌଣସି ଦଳ ପାଖକୁ ଫେରାଇ ଆଣନ୍ତି ଏବଂ ଏମାନେ (କୌଣସି ଯୁଦ୍ଧରେ) ଯୋଗ ଦେବାପାଇଁ ତୁମଠାରୁ ଅନୁମତି ମାଗନ୍ତି, ତେବେ ସେମାନଙ୍କୁ କହିଦିଅ, "ତୁମେମାନେ ମୋ' ସହିତ କଦାପି ଯାଇପାରିବ ନାହିଁ କିମ୍ବା ମୋ' ସହିତ ମିଶି କୌଣସି ଶତ୍ରୁ ସହିତ ଲଢ଼ି ପାରିବନାହିଁ । ତୁମେମାନେ ପୂର୍ବରୁ ମଧ୍ୟ ବସି ରହିବାକୁ ପସନ୍ଦ କରିଥିଲ । ତେଣୁ, ଏବେ ମଧ୍ୟ (ଘରେ) ବସିଥିବା ଲୋକମାନଙ୍କ ସହିତ ବସିରୁହ ।"

୮୪. (ହେ ରସୁଲ !) ସେମାନଙ୍କ ମଧ୍ୟରୁ ଯଦି କାହାରି ମୃତ୍ୟୁ ହୁଏ ତେବେ ତୁମେ ତା' ପାଇଁ କଦାପି ଅନ୍ତ୍ୟେଷ୍ଟି ପ୍ରାର୍ଥନା କରନାହିଁ କିମ୍ବା (ପ୍ରାର୍ଥନା ପାଇଁ) ତା' ସମାଧି ପାଖରେ ଛିଡ଼ା ହୁଅନାହିଁ କାରଣ ସେମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ ପ୍ରତ୍ୟାଖ୍ୟାନ କରିଛନ୍ତି ଏବଂ ଅବାଧ୍ୟ ହୋଇ ମରିଛନ୍ତି । ୮୫. ସେମାନଙ୍କର ଧନସଂପତ୍ତି ଏବଂ ସନ୍ତାନସନ୍ତତିର ପ୍ରାଚୁର୍ଯ୍ୟ ଦେଖି ତୁମେ ଆଶ୍ଚର୍ଯ୍ୟ ହୁଅନାହିଁ । ଅଲ୍ଲାହ୍ ସେମାନଙ୍କୁ ଏହାରି ଦ୍ୱାରା ସଂସାରରେ ଦଣ୍ଡ ଦେବାକୁ ଚାହାନ୍ତି ଏବଂ (ଚାହାନ୍ତି ଯେ) ନାସ୍ତିକ ଥିବା ଅବସ୍ଥାରେ ସେମାନଙ୍କର ପ୍ରାଣ ବାହାରିଯାଉ ।

୮୬. ଯେତେବେଳେ ଏବିଷୟରେ (କୁରଆନର) କୌଣସି ଅଧ୍ୟାୟ ପ୍ରକଟ ହୁଏ ଯେ ଅଲ୍ଲାହଙ୍କୁ ବିଶ୍ୱାସ କର ଏବଂ ତାଙ୍କ ରସୁଲଙ୍କ ସହିତ ମିଶି ଜିହାଦ୍ କର, ସେତେବେଳେ ସେମାନଙ୍କ ମଧ୍ୟରେ ଥିବା ଧନୀ ବ୍ୟକ୍ତିମାନେ (ଯୁଦ୍ଧରେ ଯୋଗ ନଦେବା ଲାଗି) ତୁମଠାରୁ ଅନୁମତି ମାଗନ୍ତି ଆଉ କହନ୍ତି ଯେ ଆମକୁ ଘରେ ବସି ରହିଥିବା ଲୋକଙ୍କ ସହିତ ରହିବାକୁ ଅନୁମତି ଦିଅ। ୮୭. ସେମାନେ ଘର ଭିତରେ ବସିଥିବା ମହିଳାମାନଙ୍କ ସହିତ ବସି ରହିବା ପସନ୍ଦ କଲେ। ସେମାନଙ୍କ ହୃଦୟର ଦ୍ୱାର ବନ୍ଦ କରି ଦିଆଯାଇଛି। ତେଣୁ ସେମାନେ କିଛି ବୁଝି ପାରୁନାହାନ୍ତି। ୮୮. ମାତ୍ର ରସୁଲ ଏବଂ ତାଙ୍କ ସହିତ ସଦ୍‌ବିଶ୍ୱାସୀମାନେ ନିଜର ଧନ ଓ ଜୀବନ ଦେଇ ଲଢ଼ିଲେ। ଏହିମାନଙ୍କର ମଙ୍ଗଳ ହେବ ଏବଂ ଏହିମାନେ ସଫଳ ହେବେ। ୮୯. ଅଲ୍ଲାହ୍ ସେମାନଙ୍କ ପାଇଁ ଏଭଳି ଉଦ୍ୟାନମାନ ପ୍ରସ୍ତୁତ କରି ରଖିଛନ୍ତି ଯାହା ତଳେ ଝରଣା ପ୍ରବାହିତ ହୁଏ। ସେମାନେ ସେଠାରେ ସର୍ବଦା ରହିବେ। ଏହାହିଁ ବଡ଼ ସଫଳତା।

୯୦. ଗ୍ରାମାଂଚଳରୁ ମଧ୍ୟ କେତେକ ଲୋକ ଆସି ବାହାନା କଲେ ଯେ ସେମାନଙ୍କୁ ମଧ୍ୟ (ଯୁଦ୍ଧଯାତ୍ରାରୁ) ଅବ୍ୟାହତି ଦିଆଯାଉ ଏବଂ ଯେଉଁମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ ମିଥ୍ୟା କହିଥିଲେ ସେମାନେ ଘରେ ବସି ରହିଲେ। ଯେଉଁମାନେ ନାସ୍ତିକ ହୋଇଗଲେ ଏବେ ସେମାନଙ୍କୁ କଠୋର ଶାସ୍ତି ମିଳିବ। ୯୧. ଯେଉଁମାନେ ଦୁର୍ବଳ ବା ଅସୁସ୍ଥ କିମ୍ବା ଯେଉଁମାନଙ୍କ ପାଖରେ ଖର୍ଚ୍ଚ କରିବାକୁ କିଛି ନାହିଁ, ସେମାନେ ନଗଲେ କୌଣସି ଦୋଷ ହେବନାହିଁ ଯଦି ସେମାନେ ପ୍ରକୃତରେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ ପ୍ରତି ନିଷ୍ଠାବାନ ଥିବେ। ଏଭଳି ସଦାଚାରୀ ଲୋକମାନଙ୍କ ପ୍ରତି ଦୋଷାରୋପ କରିବାର କୌଣସି କାରଣ ନାହିଁ। ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ। ୯୨. ଏବଂ ସେମାନଙ୍କର ମଧ୍ୟ (ଦୋଷ ନାହିଁ) ଯେଉଁମାନେ ତୁମ ପାଖକୁ ଏଥିପାଇଁ ଆସିଥିଲେ ଯେ ତୁମେ ସେମାନଙ୍କ (ଯୁଦ୍ଧଯାତ୍ରା) ପାଇଁ ବାହନର ବ୍ୟବସ୍ଥା କରିଦେବ ମାତ୍ର ତୁମେ ସେମାନଙ୍କୁ ଉତ୍ତର ଦେଲ, "ତୁମମାନଙ୍କୁ ଦେବାପାଇଁ ମୋ' ପାଖରେ କୌଣସି ବାହନ ନାହିଁ।" ସେତେବେଳେ ସେମାନେ ଦୁଃଖରେ ଏଭଳି ମ୍ରିୟମାଣ ହୋଇ ଫେରିଗଲେ ଯେ ସେମାନଙ୍କ ଆଖିରୁ ଲୁହ ଝରୁଥିଲା କାରଣ ଅଲ୍ଲାହଙ୍କ ମାର୍ଗରେ ଖର୍ଚ୍ଚ କରିବା ପାଇଁ ସେମାନଙ୍କ ପାଖରେ କିଛି

ନଥିଲା । ୯୩. ଦୋଷ କେବଳ ସେହିମାନଙ୍କର ଯେଉଁମାନେ ଧନବାନ ହୋଇଥିବା ସତ୍ତ୍ୱେ ତୁମଠାରୁ ଅନୁମତି ମାଗନ୍ତି । ସେମାନେ ଏଥିରେ ଖୁସି ଯେ ଘରେ ରହୁଥିବା ମହିଳାମାନଙ୍କ ସହିତ ବସି ରହିଲେ । ଅଲ୍ଲାହ୍ ସେମାନଙ୍କ ହୃଦୟର ଦ୍ୱାର ବନ୍ଦ କରି ଦେଇଛନ୍ତି ଏବଂ ସେମାନେ କିଛି ଜାଣି ପାରୁନାହାନ୍ତି ।

୯୪. ଯେତେବେଳେ ତୁମେମାନେ ସେମାନଙ୍କ ପାଖକୁ ଫେରିବ, ସେମାନେ (ନାନା ପ୍ରକାରର) ବାହାନା କରିବେ । ସେମାନଙ୍କୁ କହିଦିଅ, “ବାହାନା କରନାହିଁ । ତୁମମାନଙ୍କ କୌଣସି କଥାରେ ଆମେ ବିଶ୍ୱାସ କରିବୁନାହିଁ । ତୁମମାନଙ୍କ ଅବସ୍ଥା ବିଷୟରେ ଅଲ୍ଲାହ୍ ଆମକୁ ଜଣାଇ ସାରିଛନ୍ତି ଏବଂ ଭବିଷ୍ୟତରେ ମଧ୍ୟ ଅଲ୍ଲାହ୍ ଓ ତାଙ୍କ ରସୁଲ୍ ତୁମମାନଙ୍କର କାର୍ଯ୍ୟକଳାପ ଉପରେ ନଜର ରଖିବେ । ଏହାପରେ (ଦିନେ) ତୁମମାନଙ୍କୁ ତାଙ୍କରି ନିକଟରେ ହାଜର କରାଯିବ ଯିଏ ଦୃଷ୍ଟ ଓ ଅଦୃଷ୍ଟର ଜ୍ଞାତା । ପୁଣି ତୁମେମାନେ ଯାହା କରୁଥିଲ ସେ ତୁମମାନଙ୍କୁ ଜଣାଇଦେବେ । ୯୫. ଯେତେବେଳେ ତୁମେ ସେମାନଙ୍କ ପାଖକୁ ଫେରିବ, ସେମାନେ ତୁମ ପାଖରେ ଅଲ୍ଲାହଙ୍କ ରାଣ ଖାଇବେ ଯେପରିକି ତୁମେ ସେମାନଙ୍କୁ ଛାଡ଼ିଦେବ । ତେଣୁ ସେମାନଙ୍କୁ ସେମାନଙ୍କ ଅବସ୍ଥାରେ ଛାଡ଼ିଦିଅ । ସେହି ଲୋକମାନେ ଅଶୁଦ୍ଧ ଏବଂ ଯେଉଁ କର୍ମ ସେମାନେ କରୁଛନ୍ତି ତାହାର ପରିଣାମ ସ୍ୱରୂପ ସେମାନଙ୍କର ନର୍କବାସ ହେବ । ୯୬. ସେମାନେ କେବଳ ଏଇଥିପାଇଁ ରାଣ ଖାଇବେ ଯେ (ଏହାଦ୍ୱାରା) ତୁମେ ସେମାନଙ୍କ ପ୍ରତି ସନ୍ତୁଷ୍ଟ ହେବ । ତୁମେ ସନ୍ତୁଷ୍ଟ ହୋଇଗଲେ ମଧ୍ୟ ଅଲ୍ଲାହ୍ ଏହି ଅପରାଧୀମାନଙ୍କ ପ୍ରତି ସନ୍ତୁଷ୍ଟ ନୁହନ୍ତି ।

୯୭. ଏହି ଗାଉଁଲି ଲୋକମାନେ ଅଧର୍ମ ଓ କପଟାଚାରରେ ଅତ୍ୟନ୍ତ ଉଗ୍ର । ସେମାନେ ଏହାରି ଯୋଗ୍ୟ ଯେ ଅଲ୍ଲାହ୍ ତାଙ୍କ ରସୁଲଙ୍କ ପାଖକୁ ପଠାଇଥିବା ଧର୍ମବିଧାନ ବିଷୟରେ କିଛି ନଜାଣନ୍ତୁ । ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ । ୯୮. ଗାଉଁଲି ଲୋକମାନଙ୍କ ମଧ୍ୟରେ କେତେକ ଅଛନ୍ତି ଯେଉଁମାନେ (ଅଲ୍ଲାହଙ୍କ ମାର୍ଗରେ) କରୁଥିବା ଖର୍ଚ୍ଚକୁ ଜୋରିମାନା ମନେ କରନ୍ତି ଏବଂ ତୁମମାନଙ୍କ ଦୁଃସମୟର ପ୍ରତୀକ୍ଷାରେ ଥାଆନ୍ତି । (ଜାଣିରଖ) ସେଇମାନଙ୍କ ଉପରେ ହିଁ ଦୁଃସମୟ ଆସିବ । ଅଲ୍ଲାହ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି । ୯୯. ଏହି ଗାଉଁଲିମାନଙ୍କ

ମଧ୍ୟରେ କେତେକ ଅଛନ୍ତି ଯେଉଁମାନେ ଅଲ୍ଲାହଙ୍କୁ ଓ ପରଲୋକକୁ ବିଶ୍ୱାସ କରନ୍ତି ଏବଂ ଯାହାକିଛି (ଅଲ୍ଲାହଙ୍କ ମାର୍ଗରେ) ଖର୍ଚ୍ଚ କରନ୍ତି ତାହାକୁ ଅଲ୍ଲାହଙ୍କ ସାନ୍ନିଧ ଏବଂ ରସୁଲଙ୍କ ଆଶିର୍ବାଦ ପ୍ରାପ୍ତିର ଏକ ମାଧ୍ୟମ ମନେକରନ୍ତି । ଅବଶ୍ୟ ଏହା ସେମାନଙ୍କ ପାଇଁ ସାନ୍ନିଧ ଲାଭ କରିବାର ମାଧ୍ୟମ । ଅଲ୍ଲାହ୍ ନିଶ୍ଚୟ ସେମାନଙ୍କୁ ନିଜ କୃପାର ଛାୟାରେ ରଖିବେ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ ।

୧୦୦. ଦେଶାନ୍ତର ହୋଇଥିବା ଏବଂ ସେମାନଙ୍କୁ ସାହାଯ୍ୟ କରିଥିବା ଲୋକମାନଙ୍କ ମଧ୍ୟରୁ ଯେଉଁମାନେ ପ୍ରଥମେ ପ୍ରଥମେ (ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ ଉପରେ) ଆସ୍ଥା ରଖିଲେ ଏବଂ ପରେ ଯେଉଁମାନେ ଭଲରୂପେ ଏମାନଙ୍କର ଅନୁସରଣ କଲେ, ସେମାନଙ୍କ ପ୍ରତି ଅଲ୍ଲାହ୍ ପ୍ରସନ୍ନ ହେଲେ ଏବଂ ସେମାନେ ମଧ୍ୟ ଅଲ୍ଲାହଙ୍କ ପ୍ରତି ପ୍ରସନ୍ନ ହେଲେ । ଅଲ୍ଲାହ୍ ସେମାନଙ୍କ ପାଇଁ ଏଭଳି ଉଦ୍ୟାନମାନ ପ୍ରସ୍ତୁତ କରି ରଖିଛନ୍ତି ଯାହା ତଳେ ଝରଣା ପ୍ରବାହିତ ହୁଏ । ସେମାନେ ସେଠାରେ ସର୍ବଦା ରହିବେ । ଏହାହିଁ ବଡ଼ ସଫଳତା ।

୧୦୧. ତୁମ ଆଖପାଖରେ ଯେଉଁ ଗାଉଁଲି ଲୋକମାନେ ବସବାସ କରନ୍ତି, ସେମାନଙ୍କ ମଧ୍ୟରେ ଅନେକ କପଟାଚାରୀ ଅଛନ୍ତି ଏବଂ ମଦିନାବାସୀଙ୍କ ମଧ୍ୟରେ ମଧ୍ୟ କେତେକ କପଟୀ ଅଛନ୍ତି ଯେଉଁମାନେ କପଟ କରିବାରେ ସିଦ୍ଧହସ୍ତ । ତୁମେ ସେମାନଙ୍କୁ ଜାଣନାହିଁ କିନ୍ତୁ ଆମ୍ଭେ ସେମାନଙ୍କୁ ଜାଣୁ । ଆମ୍ଭେ ସେମାନଙ୍କୁ ଦୁଇଥର ଶାସ୍ତି ଦେବୁ ଏବଂ ତା'ପରେ ସେମାନଙ୍କୁ ଭୟଙ୍କର ଶାସ୍ତି ଭୋଗିବା ପାଇଁ ପଠାଇ ଦିଆଯିବ ।

୧୦୨. ଆଉ କେତେକ ଅଛନ୍ତି ଯେଉଁମାନେ ନିଜର ଦୋଷ ମାନି ଯାଇଛନ୍ତି । ସେମାନେ ମିଶାମିଶି କର୍ମ କରିଛନ୍ତି – କିଛି ଭଲ କର୍ମ ଏବଂ କିଛି ମନ୍ଦ କର୍ମ । ସମ୍ଭବତଃ ଅଲ୍ଲାହ୍ ସେମାନଙ୍କର ପଶ୍ଚାତାପ ଗ୍ରହଣ କରିବେ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ । ୧୦୩. (ହେ ରସୁଲ !) ସେମାନଙ୍କ ଧନରୁ ଦାନରାଶି ଗ୍ରହଣ କରି ସେମାନଙ୍କୁ ଶୁଦ୍ଧ ଓ ପବିତ୍ର କର ଏବଂ ସେମାନଙ୍କ ପାଇଁ ପ୍ରାର୍ଥନା କର । ତୁମ ପ୍ରାର୍ଥନା ସେମାନଙ୍କ ମନକୁ ଶାନ୍ତି ଦେବ । ଅଲ୍ଲାହ୍ ସର୍ବଶ୍ରୋତା ଏବଂ ସର୍ବଜ୍ଞ । ୧୦୪. କ'ଣ ସେମାନଙ୍କୁ ଏହା ଜଣା ନାହିଁ ଯେ ଅଲ୍ଲାହ୍ ହିଁ ନିଜ ଭକ୍ତମାନଙ୍କର

ପଶ୍ଚାତାପ ଗ୍ରହଣ କରନ୍ତି ଏବଂ ଦାନ ମଧ୍ୟ ସ୍ୱୀକାର କରନ୍ତି ଏବଂ ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ ? ୧୦୫. ସେମାନଙ୍କୁ କୁହ, "ତୁମେମାନେ କର୍ମ କରି ଚାଲ । ଅଲ୍ଲାହ୍, ତାଙ୍କ ରସୁଲ ଏବଂ ସଦ୍‌ବିଶ୍ୱାସୀମାନେ ତୁମମାନଙ୍କର କାର୍ଯ୍ୟକଳାପ ଦେଖିବେ । ପୁଣି ଶୀଘ୍ର ତୁମମାନଙ୍କୁ ସେହି ପବିତ୍ର ସତ୍ତାଙ୍କ ସାମନାରେ ହାଜର କରାଯିବ ଯିଏ ଦୃଷ୍ଟ ଓ ଅଦୃଷ୍ଟର ଜ୍ଞାତା । ପୁଣି ତୁମେମାନେ ଯାହା କରୁଥିଲ, ସେ ତୁମମାନଙ୍କୁ ଜଣାଇଦେବେ ।" ୧୦୬. ଆଉ କେତେକ ଲୋକ ଅଛନ୍ତି ଯେଉଁମାନଙ୍କର ବିଚାର ଅଲ୍ଲାହଙ୍କଠାରୁ ଆଦେଶ ଆସିବା ପର୍ଯ୍ୟନ୍ତ ସ୍ଥଗିତ ରଖାଯାଇଛି । ଅଲ୍ଲାହ୍ ସେମାନଙ୍କୁ ଶାସ୍ତି ଦେଇପାରନ୍ତି କିମ୍ବା କ୍ଷମା କରିଦେଇ ପାରନ୍ତି । ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ ।

୧୦୭. ଆଉ କିଛି ଲୋକ ଏଇଥିପାଇଁ ଗୋଟିଏ ମସଜିଦ୍ ନିର୍ମାଣ କଲେ ଯେ ଏହାଦ୍ୱାରା (ମୁସଲମାନମାନଙ୍କର) କ୍ଷତି କରିବେ, ଅଧର୍ମର ପ୍ରଚାର କରିବେ, ମୁସଲମାନମାନଙ୍କ ମଧ୍ୟରେ ମତଭେଦ ସୃଷ୍ଟି କରିବେ ଏବଂ ସେହି ଲୋକମାନଙ୍କ ପାଇଁ ଏହାକୁ ଏକ ଆଡ୍ଡା କରିବେ ଯେଉଁମାନେ ପୁର୍ବରୁ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ ସହିତ ଲଢ଼ିଛନ୍ତି । ସେମାନେ ନିଶ୍ଚୟ ରାଣ ଖାଇ କହିବେ ଯେ ସେମାନଙ୍କର ଉଦ୍ଦେଶ୍ୟ ଭଲ ଥିଲା ମାତ୍ର ଅଲ୍ଲାହ୍ ଏହାର ସାକ୍ଷୀ ଅଛନ୍ତି ଯେ ସେମାନେ ପକ୍କା ମିଥ୍ୟାବାଦୀ । ୧୦୮. (ହେ ରସୁଲ !) ତୁମେ ସେଥିରେ (ନମାଜ ପାଇଁ) ଆଦୌ ଠିଆ ହୁଅନାହିଁ । ଅବଶ୍ୟ ଯେଉଁ ମସଜିଦର ଭିତ୍ତିଭୂମି ପ୍ରଥମ ଦିନରୁ ହିଁ ଧର୍ମନିଷ୍ଠତା ଉପରେ ରହିଛି, ତାହା ତୁମ (ନମାଜ) ପାଇଁ ସମ୍ପୂର୍ଣ୍ଣ ଉପଯୁକ୍ତ । ସେଥିରେ ଏଭଳି ଲୋକମାନେ ଅଛନ୍ତି ଯେଉଁମାନେ ଶୁଦ୍ଧ ଓ ପବିତ୍ର ରହିବାକୁ ପସନ୍ଦ କରନ୍ତି । ଅଲ୍ଲାହ୍ ଶୁଦ୍ଧ ଓ ପବିତ୍ର ରହୁଥିବା ଲୋକମାନଙ୍କୁ ଭଲ ପାଆନ୍ତି । ୧୦୯. ଯିଏ ନିଜ ଗୃହର ଭିତ୍ତିପ୍ରସ୍ତର ଧର୍ମପରାୟଣତା ଓ ଅଲ୍ଲାହଙ୍କ ପ୍ରସନ୍ନତା ଉପରେ ସ୍ଥାପନ କରିଛି, ସେ ଲୋକ ଭଲ ନା ସେହି ଲୋକ ଭଲ ଯିଏ ନିଜ ଗୃହର ଆଧାରଶିଳା ଏକ ଖସି ପଡ଼ିବାକୁ ଥିବା ଅତଡ଼ା ଉପରେ ରଖିଛି ଯାହା ତାକୁ ନେଇ ସିଧା ନର୍କରେ ଗଳିପଡ଼ିବ ? ଅଲ୍ଲାହ୍ ଏଭଳି ଦୁରାଚାରୀମାନଙ୍କର ପଥପ୍ରଦର୍ଶନ କରନ୍ତି ନାହିଁ । ୧୧୦. ଯେଉଁ ଘରଟିକୁ ସେମାନେ ନିର୍ମାଣ କରିଛନ୍ତି ତାହା ମୃତ୍ୟୁ ପର୍ଯ୍ୟନ୍ତ

ସେମାନଙ୍କ ମନରେ ସନ୍ଦେହର କାରଣ ହୋଇ (କଣ୍ଟା ପରି) ଫୋଡ଼ି ହେଉଥିବ । ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ ।

୧୧୧. ଅଲ୍ଲାହ୍ ସଦ୍‌ବିଶ୍ୱାସୀମାନଙ୍କଠାରୁ ସେମାନଙ୍କ ଧନ ଓ ଜୀବନକୁ ଏହି ପ୍ରତିଶ୍ରୁତି ଦେଇ କିଣି ନେଇଛନ୍ତି ଯେ ଏହା ବଦଳରେ ସେମାନଙ୍କୁ ବୈକୁଣ୍ଠ ପ୍ରଦାନ କରାଯିବ । ସେମାନେ ଅଲ୍ଲାହଙ୍କ ମାର୍ଗରେ ଯୁଦ୍ଧ କରନ୍ତି, ଶତ୍ରୁମାନଙ୍କୁ ହତ୍ୟା କରନ୍ତି ଏବଂ ନିଜେ ମଧ୍ୟ ନିହତ ହୁଅନ୍ତି । ଏହା ତୌରାତ, ଇଂଜିଲ ଓ କୁରଆନ ଗ୍ରନ୍ଥରେ ଦିଆଯାଇଥିବା ଏକ ଦୃଢ଼ ବଚନ ଯାହାକୁ ପୂରଣ କରିବା ତାଙ୍କର କର୍ତ୍ତବ୍ୟ । ବଚନ ରକ୍ଷା କରିବାରେ ଅଲ୍ଲାହଙ୍କଠାରୁ ଆଉ କିଏ ବଳି ଯାଇପାରେ ? ତେଣୁ ତୁମେମାନେ ଅଲ୍ଲାହଙ୍କ ସହିତ ଯାହା ଚୁକ୍ତି କରିଛ, ସେଥିପାଇଁ ଆନନ୍ଦ କର । ଏହାହିଁ ବଡ଼ ସଫଳତା । ୧୧୨. ଏମାନେ ଅନୁତାପ କରନ୍ତି, (ଅଲ୍ଲାହଙ୍କର) ଉପାସନା କରନ୍ତି, ତାଙ୍କର ସ୍ତୁତିଗାନ କରନ୍ତି, ଉପବାସ ପାଳନ କରନ୍ତି, ମସ୍ତକ ନୁଆନ୍ତି, ପ୍ରଣିପାତ କରନ୍ତି, ଭଲ କର୍ମ କରିବାକୁ କହନ୍ତି ଏବଂ ମନ୍ଦ କର୍ମ କରିବାକୁ ବାରଣ କରନ୍ତି ଏବଂ ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ସୀମାର ସମ୍ମାନ କରନ୍ତି । ଏଭଳି ସଦ୍‌ବିଶ୍ୱାସୀମାନଙ୍କୁ (ସ୍ୱର୍ଗର) ସୁସମାଚାର ଦେଇଦିଅ ।

୧୧୩. ବହୁଈଶ୍ୱରବାଦୀମାନେ ନର୍କବାସୀ ହେବେ ବୋଲି କଥା ପରିଷ୍କାର ହୋଇଯିବା ପରେ ସେମାନଙ୍କ ପାଇଁ କ୍ଷମାପ୍ରାର୍ଥନା କରିବା ଈଶ୍ୱରଦୂତ ଏବଂ (ଅନ୍ୟ) ମୁସଲମାନମାନଙ୍କ ପକ୍ଷରେ ଶୋଭା ଦିଏନାହିଁ ଯଦିଓ ସେମାନେ ଏମାନଙ୍କର ସଂପର୍କୀୟ । ୧୧୪. ଇବ୍ରାହିମ୍ ନିଜ ପିତାଙ୍କ ପାଇଁ କ୍ଷମାପ୍ରାର୍ଥନା କରିବାର କେବଳ ଏହି କାରଣ ଥିଲା ଯେ ସେ ତାଙ୍କୁ ଏହାର ବଚନ ଦେଇ ସାରିଥିଲେ । ପୁଣି ଯେତେବେଳେ ତାଙ୍କ ନିକଟରେ ଏକଥା ପରିଷ୍କାର ହୋଇଗଲା ଯେ ତାଙ୍କ ପିତା ଅଲ୍ଲାହଙ୍କର ଜଣେ ଶତ୍ରୁ, ସେ ତାଙ୍କ ସହ ସଂପର୍କ ତୁଟାଇ ଦେଲେ । ପ୍ରକୃତରେ ଇବ୍ରାହିମ୍ ଭାରି କୋମଳମନା ଏବଂ ସହିଷ୍ଣୁ ଥିଲେ ।

୧୧୫. ଅଲ୍ଲାହ୍ ଏପରି ନୁହନ୍ତି ଯେ ଗୋଟିଏ ସମାଜର ପଥପ୍ରଦର୍ଶନ କଲା ପରେ ପୁଣି ତାକୁ ପଥଭ୍ରଷ୍ଟ କରିଦେବେ, ଯେପର୍ଯ୍ୟନ୍ତ ସେମାନଙ୍କ ପାଖରେ ସେ ଏହା ପରିଷ୍କାର ଭାବରେ ବର୍ଣ୍ଣନା କରିନାହାନ୍ତି ଯେ କେଉଁ ଆଚରଣଗୁଡ଼ିକରୁ

ସେମାନେ ବିରତ ରହିବା ଉଚିତ । ଅଲ୍ଲାହ୍ ଅବଶ୍ୟ ସବୁକଥା ଜାଣନ୍ତି । ୧୧୬. ସମଗ୍ର ଧରିତ୍ରୀ ଓ ଆକାଶରେ ଅଲ୍ଲାହଙ୍କର ହିଁ ଆଧିପତ୍ୟ ରହିଛି । ସେ ହିଁ ଜୀବନ ଦିଅନ୍ତି ଏବଂ ସେ ହିଁ ମୃତ୍ୟୁ ଦିଅନ୍ତି ଏବଂ ଅଲ୍ଲାହଙ୍କ ବ୍ୟତୀତ ତୁମମାନଙ୍କର କେହି ଆଶ୍ରୟଦାତା ବା ସାହାଯ୍ୟକାରୀ ନାହାନ୍ତି ।

୧୧୭. ଅଲ୍ଲାହ୍ ତାଙ୍କ ରସୁଲଙ୍କ ପ୍ରତି କରୁଣା କଲେ ଏବଂ ଦେଶତ୍ୟାଗ କରିଥିବା ମୁସଲମାନମାନଙ୍କ ପ୍ରତି ଏବଂ ସେମାନଙ୍କୁ ସାହାଯ୍ୟ କରିଥିବା (ମଦିନାର) ମୁସଲମାନମାନଙ୍କ ପ୍ରତି ମଧ୍ୟ ଯେଉଁମାନେ ବିପଦ ସମୟରେ ତାଙ୍କ ରସୁଲଙ୍କୁ ସାହାଯ୍ୟ କଲେ, ଯଦିଓ ସେମାନଙ୍କ ମଧ୍ୟରୁ କେତେକଙ୍କର ହୃଦୟ ଟଳମଳ ହେବାକୁ ଆରମ୍ଭ କରିଥିଲା । ପୁଣି ସେ ସେମାନଙ୍କୁ ମଧ୍ୟ କ୍ଷମା କରିଦେଲେ । ସେ ସେମାନଙ୍କ ପ୍ରତି ଅତ୍ୟନ୍ତ ସ୍ନେହଶୀଳ ଏବଂ ଦୟାଳୁ ୧୧୮. (ତବୁକ୍ ଯାତ୍ରାରେ ଯାଇ ନଥିବା) ସେହି ତିନିଜଣ ବ୍ୟକ୍ତିଙ୍କ ପ୍ରତି ମଧ୍ୟ ସେ କରୁଣା କଲେ ଯେଉଁମାନଙ୍କର ବିଚାର ସ୍ଥଗିତ ରଖା ଯାଇଥିଲା । ଯେତେବେଳେ ଧରିତ୍ରୀ ଏହାର ବିଶାଳତା ସତ୍ତ୍ୱେ ସେମାନଙ୍କ ପାଇଁ ସଂକୁଚିତ ହୋଇଗଲା, ଜୀବନ ସେମାନଙ୍କ ପାଇଁ ଦୁର୍ବିସହ ହୋଇପଡ଼ିଲା ଏବଂ ସେମାନେ ବୁଝିଗଲେ ଯେ ଅଲ୍ଲାହଙ୍କ କ୍ରୋଧରୁ ରକ୍ଷା ପାଇବା ପାଇଁ ଯଦି କେଉଁଠି ଆଶ୍ରୟ ମିଳିବ ତେବେ (କେବଳ) ଅଲ୍ଲାହଙ୍କ ପାଖରେ ହିଁ ମିଳିବ, ସେତେବେଳେ ଅଲ୍ଲାହ୍ ସେମାନଙ୍କ ପ୍ରତି କୃପା କଲେ (ଅର୍ଥାତ୍ କ୍ଷମା କରିଦେଲେ) ଯେପରିକି ସେମାନେ ତାଙ୍କ ଆଡ଼କୁ ଫେରିବେ । ଅଲ୍ଲାହ୍ ଅବଶ୍ୟ କ୍ଷମାଶୀଳ ଓ କରୁଣାମୟ ।

୧୧୯. ହେ ସଦ୍‌ବିଶ୍ୱାସୀଗଣ ! ଅଲ୍ଲାହଙ୍କୁ ଭୟ କର ଏବଂ ସତ୍ୟନିଷ୍ଠ ଲୋକଙ୍କ ସଙ୍ଗରେ ରୁହ । ୧୨୦. ମଦିନାବାସୀ ଏବଂ ସେମାନଙ୍କ ଆଖପାଖରେ ଥିବା ଗ୍ରାମାଂଚଳର ଲୋକମାନଙ୍କ ପକ୍ଷରେ ଅଲ୍ଲାହଙ୍କ ରସୁଲଙ୍କୁ ଛାଡ଼ିଦେଇ ପଛରେ ରହିଯିବା ଉଚିତ ନଥିଲା କିମ୍ବା (ଏହା ମଧ୍ୟ ଉଚିତ ନଥିଲା ଯେ) ସେମାନେ ତାଙ୍କ ଜୀବନ ଅପେକ୍ଷା ନିଜ ଜୀବନକୁ ଅଧିକ ପ୍ରିୟ ମନେ କରନ୍ତୁ, କାରଣ ସେମାନଙ୍କୁ ଅଲ୍ଲାହଙ୍କ ମାର୍ଗରେ ଯାହା ଭୋକଶୋଷ ବା କ୍ଲାନ୍ତି ଅନୁଭୁତ ହୁଏ ବା ସେମାନେ ନାସ୍ତିକମାନଙ୍କୁ କଷ୍ଟ ଦେବାପାଇଁ ଯେଉଁ ପ୍ରୟାସ କରନ୍ତି ବା ଶତ୍ରୁମାନଙ୍କ ଉପରେ

ବିଜୟପ୍ରାପ୍ତ କରନ୍ତି, ଏଭଳି ପ୍ରତ୍ୟେକ କର୍ମ ପାଇଁ ସେମାନଙ୍କ କର୍ମପଂଜିକାରେ ପୁଣ୍ୟ ଲେଖାଯାଏ । ଅଲ୍ଲାହ୍ ପୁଣ୍ୟବାନ ଲୋକମାନଙ୍କର ପରିଶ୍ରମ ବୃଥା କରନ୍ତିନାହିଁ । ୧୨୧. ଏହିପରି, ଅଳ୍ପ ହେଉ ବା ବେଶୀ ସେମାନେ ଯାହାକିଛି ଖର୍ଚ୍ଚ କରନ୍ତି ବା (ଅଲ୍ଲାହଙ୍କ ମାର୍ଗରେ) ଯେକୌଣସି ଉପତ୍ୟକା ଅତିକ୍ରମ କରନ୍ତି, ସବୁଗୁଡ଼ିକ (ସେମାନଙ୍କ କର୍ମ ପଂଜିକାରେ) ଲେଖାଯାଏ ଯେପରିକି ଅଲ୍ଲାହ୍ ସେମାନଙ୍କୁ ସେମାନଙ୍କ କର୍ମର ଭଲ ପୁରସ୍କାର ଦେବେ ।

୧୨୨. ମୁସଲମାନମାନଙ୍କ ପକ୍ଷରେ ଏହା ଉଚିତ ନୁହେଁ ଯେ ସମସ୍ତେ ଏକା ସଙ୍ଗରେ (ଯୁଦ୍ଧ ପାଇଁ) ବାହାରି ପଡ଼ନ୍ତୁ । ତେଣୁ ଏମିତି ହେବା ଉଚିତ ଯେ ପ୍ରତ୍ୟେକ ଦଳରୁ କିଛି ଲୋକ ଯାଆନ୍ତୁ ଯେମିତିକି ଅବଶିଷ୍ଟ ଲୋକ ଧର୍ମଜ୍ଞାନ ଶିକ୍ଷା କରନ୍ତୁ ଏବଂ ସେମାନଙ୍କ ସଂପ୍ରଦାୟର ଲୋକମାନେ (ଯୁଦ୍ଧରୁ) ଫେରିବା ପରେ ଏମାନେ ସେମାନଙ୍କୁ ସଚେତନ କରନ୍ତୁ ଯାହାଫଳରେ ସେମାନେ କୁକର୍ମରୁ ବିରତ ରହିବେ ।

୧୨୩. ହେ ସଦ୍‌ବିଶ୍ୱାସୀଗଣ! (ତୁମ ସହିତ ଶତ୍ରୁତା କରୁଥିବା) ନାସ୍ତିକମାନଙ୍କ ସହିତ ଯୁଦ୍ଧ କର ଯେଉଁମାନେ ତୁମ ଆଖପାଖରେ ରହୁଛନ୍ତି ଯେପରିକି ସେମାନେ ତୁମମାନଙ୍କ ଭିତରେ କଠୋରତା ଅନୁଭବ କରନ୍ତୁ ଏବଂ ଜାଣିରଖ ଯେ ଅଲ୍ଲାହ୍ ସଦାଚାରୀ ଲୋକମାନଙ୍କ ସହିତ ଥାଆନ୍ତି । ୧୨୪. ଯେତେବେଳେ (କୁର୍‌ଆନର) କୌଣସି ଅଧ୍ୟାୟ ପ୍ରକଟ ହୁଏ, କେତେକ କପଟୀ (ତାଚ୍ଛଲ୍ୟ କରି) କହନ୍ତି, "ଏହା ତୁମମାନଙ୍କ ମଧ୍ୟରୁ କାହାର ଆସ୍ଥାକୁ ଦୃଢ଼ କରିଛି ?" ପ୍ରକୃତରେ ଯେଉଁମାନେ ଆସ୍ଥା ରଖିଛନ୍ତି ଏହା ସେମାନଙ୍କ ଆସ୍ଥାକୁ ଦୃଢ଼ କରିଛି ଏବଂ (ଏହା ଯୋଗୁଁ) ସେମାନେ ଖୁସି ଅଛନ୍ତି । ୧୨୫. ଏବଂ ଯେଉଁମାନଙ୍କ ମନ ବ୍ୟାଧିଗ୍ରସ୍ତ, ଏହା ସେମାନଙ୍କର ଅଶୁଦ୍ଧତା ବଢ଼ାଇଦିଏ ଯାହଫଳରେ ସେମାନେ ନାସ୍ତିକ ଥିବା ଅବସ୍ଥାରେ ମରିଥାଆନ୍ତି । ୧୨୬. କ'ଣ ସେମାନେ ଲକ୍ଷ୍ୟ କରୁନାହାନ୍ତି ଯେ ପ୍ରତିବର୍ଷ ସେମାନେ ଥରେ ବା ଦୁଇଥର କୌଣସି ନା କୌଣସି ବିପଦରେ ପଡ଼ନ୍ତି ? ତଥାପି ସେମାନେ (ନିଜର କୁକର୍ମ ପାଇଁ) ଅନୁତାପ କରୁନାହାନ୍ତି ବା ଉପଦେଶ ଗ୍ରହଣ କରୁନାହାନ୍ତି । ୧୨୭. ଯେତେବେଳେ

କୌଣସି ଅଧ୍ୟାୟ ପ୍ରକଟ କରାଯାଏ, ସେମାନେ ପରସ୍ପରକୁ ଇଙ୍ଗିତରେ ପଚାରନ୍ତି, "ତୁମକୁ କେହି ଦେଖିନାହିଁ ତ ?" ପୁଣି ସେଠାରୁ ଧୀରେଧୀରେ ଖସି ଯାଆନ୍ତି । ଅଲ୍ଲାହ୍ ସେମାନଙ୍କ ମନକୁ ପରିବର୍ତ୍ତନ କରି ଦେଇଛନ୍ତି କାରଣ ସେମାନେ ଏଭଳି ଲୋକ ଯେଉଁମାନେ କିଛି ବୁଝନ୍ତିନାହିଁ ।

୧୨୮. ତୁମମାନଙ୍କ ପାଖକୁ ତୁମରିମାନଙ୍କ ମଧ୍ୟରୁ ଜଣେ ରସୁଲ ଆସିଛନ୍ତି ଯାହାଙ୍କୁ ତୁମମାନଙ୍କର କଷ୍ଟ ଭୋଗ କରିବା ଅସହ୍ୟ ବୋଧ ହେଉଛି । ସେ ତୁମମାନଙ୍କର ମଙ୍ଗଳ ପାଇଁ ସର୍ବଦା ଆଗ୍ରହୀ ଥାଆନ୍ତି ଏବଂ ସଦ୍‌ବିଶ୍ୱାସୀମାନଙ୍କ ପାଇଁ ଭାରି ଦରଦୀ ଓ ଦୟାଳୁ । ୧୨୯. ଏହାପରେ ଯଦି ସେମାନେ ମୁହଁ ମୋଡ଼ନ୍ତି ତେବେ ସେମାନଙ୍କୁ କହିଦିଅ,"ଅଲ୍ଲାହ୍ ମୋ' ପାଇଁ ଯଥେଷ୍ଟ । ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସନାଯୋଗ୍ୟ ନୁହେଁ । ମୁଁ ତାଙ୍କରି ଉପରେ ଭରସା କରେ ଏବଂ ସେ ଗୌରବମୟ ଦିବ୍ୟସିଂହାସନର ଅଧିକାରୀ ।"

## ଅଧ୍ୟାୟ ୧୦, ୟୁନୁସ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲିଫ୍ – ଲାମ୍ – ରା । ଏଗୁଡ଼ିକ ଦିବ୍ୟଗ୍ରନ୍ଥର ବାଣୀ ଯାହା ତତ୍ତ୍ୱଜ୍ଞାନରେ ପରିପୂର୍ଣ୍ଣ । ୨. କ'ଣ ଲୋକମାନଙ୍କୁ ଆଶ୍ଚର୍ଯ୍ୟ ଲାଗୁଛି ଯେ ଆମ୍ଭେ ସେଇମାନଙ୍କ ଭିତରୁ ଜଣେ ବ୍ୟକ୍ତିଙ୍କୁ ଦୈବବାଣୀ କଲୁ ଯେ ସେ ଲୋକଙ୍କୁ (ନର୍କରୁ) ସାବଧାନ କରନ୍ତୁ ଏବଂ ବିଶ୍ୱାସ କରିଥିବା ଲୋକମାନଙ୍କୁ ସୁସମାଚାର ଦିଅନ୍ତୁ ଯେ ସେମାନଙ୍କ ପାଳନକର୍ତ୍ତାଙ୍କ ପାଖରେ ସେମାନଙ୍କ ପାଇଁ ସମ୍ମାନଜନକ ସ୍ଥାନ ଅଛି ? ନାସ୍ତିକମାନେ କହୁଛନ୍ତି ଯେ ଏହି ଲୋକ ଜଣକ ପକ୍କା ଯାଦୁକର ।

୩. ବାସ୍ତବରେ ଅଲ୍ଲାହ୍ ହିଁ ତୁମମାନଙ୍କ ଈଶ୍ୱର ଯିଏ ଛଅ ଦିନରେ ପୃଥିବୀ ଓ ଆକାଶମଣ୍ଡଳ ସୃଷ୍ଟି କଲେ । ପୁଣି ସେ ଦିବ୍ୟସିଂହାସନରେ ଅଧିଷ୍ଠିତ ହୋଇ (ବ୍ରହ୍ମାଣ୍ଡ) ବ୍ୟବସ୍ଥା ପରିଚାଳନା କରୁଛନ୍ତି । ତାଙ୍କ ଅନୁମିତି ବିନା କେହି (କାହାରି ପାଇଁ) ସୁପାରିଶ କରିପାରିବ ନାହିଁ । ସେହି ହେଉଛନ୍ତି ତୁମମାନଙ୍କର ପାଳନକର୍ତ୍ତା ଅଲ୍ଲାହ୍ । ତେଣୁ, ତୁମେମାନେ ତାଙ୍କରି ଉପାସନା କର । ତଥାପି କାହିଁକି

ତୁମେମାନେ ଧ୍ୟାନ ଦେଉନାହଁ? ୪. ତୁମେମାନେ ସମସ୍ତେ ତାଙ୍କରି ପାଖକୁ ଫେରିଯିବ। ଏହା ଅଲ୍ଲାହଙ୍କର ଦୃଢ଼ ବଚନ। ସେ ହିଁ ସୃଷ୍ଟିର ପ୍ରାରମ୍ଭ କରନ୍ତି ଏବଂ ଏହାର ପୁନରାବୃତ୍ତି ମଧ୍ୟ କରିବେ ଯାହାଦ୍ୱାରା ସେ ବିଶ୍ୱାସ କରୁଥିବା ଏବଂ ଭଲ କର୍ମ କରୁଥିବା ଲୋକମାନଙ୍କୁ ଉଚିତ ପୁରସ୍କାର ଦେବେ। ମିଥ୍ୟାବିଶ୍ୱାସୀମାନେ ଫୁଟୁଥିବା ପାଣି ପିଇବେ ଏବଂ ଯନ୍ତ୍ରଣାଦାୟକ ଶାସ୍ତି ଭୋଗିବେ କାରଣ ସେମାନେ ସତ୍ୟକୁ ପ୍ରତ୍ୟାଖ୍ୟାନ କଲେ।

୫. ସେ ହିଁ ସୂର୍ଯ୍ୟକୁ ପ୍ରକାଶମାନ କଲେ ଏବଂ ଚନ୍ଦ୍ରକୁ ଏକ ଆଲୋକ ରୂପେ ଗଢ଼ିଲେ ଏବଂ ଏହାର (ହ୍ରାସ-ବୃଦ୍ଧି ପାଇଁ) ବିଭିନ୍ନ ପର୍ଯ୍ୟାୟ ନିରୂପଣ କଲେ ଯାହାଫଳରେ ତୁମେମାନେ ବର୍ଷର ଗଣନା ଓ (ମାସର) ହିସାବ ଜାଣିପାରିବ। ଅଲ୍ଲାହ୍ ଏଗୁଡ଼ିକୁ ଉଚିତ ଲକ୍ଷ୍ୟ ବିନା ସୃଷ୍ଟି କରିନାହାନ୍ତି। ଜ୍ଞାନୀଲୋକଙ୍କ ପାଇଁ ସେ ନିଜର ସଙ୍କେତଗୁଡ଼ିକୁ ପରିଷ୍କାର ଭାବରେ ବର୍ଣ୍ଣନା କରୁଛନ୍ତି। ୬. ବାସ୍ତବରେ ରାତି ଓ ଦିନର ପରିବର୍ତ୍ତନରେ ଏବଂ ପୃଥିବୀ ଓ ଆକାଶରେ ଥିବା ଅଲ୍ଲାହଙ୍କ ସୃଷ୍ଟି ମଧ୍ୟରେ ସେମାନଙ୍କ ପାଇଁ ଅନେକ ସଙ୍କେତ ଅଛି ଯେଉଁମାନେ (ଈଶ୍ୱରଙ୍କୁ) ଭୟ କରନ୍ତି।

୭. ଯେଉଁମାନେ ଆମ୍ଭ ସହିତ ସାକ୍ଷାତ କରିବେ ବୋଲି ଆଶା କରୁନାହାନ୍ତି ଏବଂ ପାର୍ଥିବ ଜୀବନରେ ଖୁସି ତଥା ସନ୍ତୁଷ୍ଟ ଅଛନ୍ତି ଏବଂ ଯେଉଁମାନେ ଆମ୍ଭର ସଙ୍କେତଗୁଡ଼ିକୁ ଉପେକ୍ଷା କରୁଛନ୍ତି, ୮. ସେମାନେ କରିଥିବା କର୍ମ ଯୋଗୁଁ ନର୍କ ସେମାନଙ୍କର ନିବାସ ହେବ। ୯. ଯେଉଁମାନେ (ସତ୍ୟରେ) ବିଶ୍ୱାସ କଲେ ଏବଂ ସତକର୍ମ କଲେ, ସେମାନଙ୍କ ବିଶ୍ୱାସ ଯୋଗୁଁ ଈଶ୍ୱର ସେମାନଙ୍କର ମାର୍ଗଦର୍ଶନ କରିବେ। ସେମାନଙ୍କୁ ସ୍ୱର୍ଗର ବିଳାସପୂର୍ଣ୍ଣ ଉଦ୍ୟାନରେ ରଖିବେ ଯେଉଁଠି ସେମାନଙ୍କ ପାଦତଳେ ଝରଣା ବହି ଯାଉଥିବ। ୧୦. ସେଠାରେ ସେମାନେ କହିବେ, "ହେ ଅଲ୍ଲାହ୍! ତୁମେ ପରମ ପବିତ୍ର"। ସେମାନେ ପରସ୍ପରକୁ ସଲାମ୍ (ଅର୍ଥାତ୍ ତୁମର ମଂଗଳ ହେଉ) କହି ଅଭିବାଦନ କରିବେ ଏବଂ କଥା ଶେଷରେ କହିବେ, "ଅଲ୍ଲାହ୍ ହିଁ ସକଳ ପ୍ରଶଂସାର ଯୋଗ୍ୟ ଯିଏ ସାରା ଜଗତର ପାଳନକର୍ତ୍ତା।"

୧୧. ଲୋକମାନେ ନିଜର ମଙ୍ଗଳ ପାଇଁ ଯେଭଳି ଚଂଚଳ ହେଉଛନ୍ତି, ଯଦି ଅଲ୍ଲାହ୍ ସେମାନଙ୍କର ଅମଙ୍ଗଳ କରିବା ପାଇଁ ସେଇଭଳି ଚଂଚଳ ହୁଅନ୍ତେ,

ତେବେ ସେମାନଙ୍କର (ସଂସାରର) ଅବଧି ଶେଷ ହୋଇଯାଇ ଥାଆନ୍ତା । ମାତ୍ର ଯେଉଁମାନେ ଆମ୍ଭ ସହିତ ସାକ୍ଷାତ କରିବେ ବୋଲି ଆଶା କରୁନାହାନ୍ତି, ଆମ୍ଭେ ସେମାନଙ୍କୁ ସେମାନଙ୍କ ଅହମିକାରେ ଅନ୍ଧ ହୋଇ ବୁଲିବାକୁ ଛାଡ଼ିଦେଉ । ୧୨. ଯେତେବେଳେ ମନୁଷ୍ୟ ଉପରେ କୌଣସି ବିପଦ ପଡ଼େ, ସେ ଶୋଇବା, ବସିବା ଓ ଛିଡ଼ା ହୋଇଥିବା ଅବସ୍ଥାରେ ମଧ୍ୟ ଆମ୍ଭଙ୍କୁ ଡାକେ । ପୁଣି ଯେତେବେଳେ ଆମ୍ଭେ ତା' ଦୁଃଖ ଦୂର କରିଦେଉ, ସେ ଏପରି ହୋଇଯାଏ ସତେଯେପରି ତା' ବିପଦରେ ଆମ୍ଭଙ୍କୁ ଆଦୌ ଡାକି ନଥିଲା । ଯେଉଁମାନେ ସୀମା ଟପି ଯାଆନ୍ତି, ସେମାନଙ୍କ ଦୃଷ୍ଟିରେ ସେମାନଙ୍କ କାର୍ଯ୍ୟକଳାପଗୁଡ଼ିକୁ ଏହିପରି ସୁନ୍ଦର କରି ଦିଆଯାଏ ।

୧୩. ତୁମମାନଙ୍କ ପୂର୍ବରୁ ଆମ୍ଭେ ଅନେକ ବଂଶ ଧ୍ୱଂସ କରିଦେଲୁ ଯେଉଁମାନେ ଅତ୍ୟାଚାର କରିଥିଲେ, ଯଦିଓ ସେମାନଙ୍କ (ସମୟର) ବାର୍ତ୍ତାବହମାନେ ସେମାନଙ୍କ ପାଖକୁ ସ୍ପଷ୍ଟ ପ୍ରମାଣ ନେଇ ଆସିଥିଲେ ମାତ୍ର ସେମାନେ ମାନିବା ଲୋକ ନଥିଲେ । ଆମ୍ଭେ ପାପୀମାନଙ୍କୁ ଏହିପରି ଦଣ୍ଡ ଦେଇଥାଉ । ୧୪. ପୁଣି ସେମାନଙ୍କ ପରେ ଆମ୍ଭେ ତୁମମାନଙ୍କୁ ଦେଶର ଅଧିକାରୀ କଲୁ ଯେପରିକି ଆମ୍ଭେ ଦେଖିବୁ ଯେ ତୁମେମାନେ କିପରି କର୍ମ କରୁଛ ।

୧୫. ଯେଉଁମାନେ ଆମ୍ଭ ସହିତ ସାକ୍ଷାତ କରିବେ ବୋଲି ଆଶା କରୁନାହାନ୍ତି, ସେମାନଙ୍କ ପାଖରେ ଯେତେବେଳେ ଆମ୍ଭର ସ୍ପଷ୍ଟ ବାଣୀ ପାଠ କରାଯାଏ ସେମାନେ କହନ୍ତି, "ଏହା ବ୍ୟତୀତ ଅନ୍ୟ କୌଣସି କୁରଆନ୍ ଆଣ କିମ୍ବା ଏଥିରେ କିଛି ପରିବର୍ତ୍ତନ କରିଦିଅ ।" (ହେ ବାର୍ତ୍ତାବହ !) କହିଦିଅ, "ଏଥିରେ ନିଜ ଆଡୁ କିଛି ପରିବର୍ତ୍ତନ କରିବାର ଅଧିକାର ମୋ'ର ନାହିଁ । ମୁଁ କେବଳ ମୋ'ପ୍ରତି ହେଉଥିବା ଦୈବବାଣୀର ଅନୁପାଳନ କରେ । ମୋତେ ଭୟ ଲାଗୁଛି ଯେ ଯଦି ମୁଁ ମୋ' ପ୍ରଭୁଙ୍କର ଅବଜ୍ଞା କରେ ତେବେ ହୁଏତ ମୋତେ ଏକ ଭୟଙ୍କର ଦିନର ଶାସ୍ତି ଭୋଗିବାକୁ ପଡ଼ିବ । ୧୬. ସେମାନଙ୍କୁ କୁହ, "ଯଦି ଅଲ୍ଲାହଙ୍କ ଇଚ୍ଛା ନଥାଆନ୍ତା ତେବେ ମୁଁ ତୁମମାନଙ୍କୁ ଏହି କୁରଆନ୍ ପଢ଼ି ଶୁଣାଇ ନଥାଆନ୍ତି ବା ଅଲ୍ଲାହ୍ ତୁମମାନଙ୍କୁ ଏ ବିଷୟରେ ଜଣାଇ ନଥାଆନ୍ତେ । ମୁଁ ଏହା ପୂର୍ବରୁ ତୁମମାନଙ୍କ ସହିତ ଜୀବନର ଏକ ଦୀର୍ଘ ସମୟ ବିତାଇ ସାରିଛି । କ'ଣ ତୁମମାନଙ୍କର ବୁଦ୍ଧି ନାହିଁ ?"

୧୭. ତା'ଠାରୁ ବଳି ଦୁରାଚାରୀ ଆଉ କିଏ ହେବ ଯିଏ ଅଲ୍ଲାହଙ୍କ ପ୍ରତି ମିଥ୍ୟାରୋପ କରେ ବା ତାଙ୍କ ବାଣୀକୁ ମିଥ୍ୟା ବୋଲି କହେ? ପାପୀମାନେ ଆଦୌ ସଫଳ ହେବେନାହିଁ ।

୧୮. ଏମାନେ ଅଲ୍ଲାହଙ୍କ ପରିବର୍ତ୍ତେ ସେମାନଙ୍କର ପୂଜା କରନ୍ତି ଯେଉଁମାନେ ଏମାନଙ୍କର ନା କୌଣସି ଉପକାର କରିପାରିବେ ନା ଅନିଷ୍ଟ କରି ପାରିବେ ଏବଂ କହନ୍ତି ଯେ ସେମାନେ ଅଲ୍ଲାହଙ୍କ ପାଖରେ ଏମାନଙ୍କ ପାଇଁ ସୁପାରିଶ କରିବେ । କହିଦିଅ, "କ'ଣ ତୁମେମାନେ ଅଲ୍ଲାହଙ୍କୁ ପୃଥିବୀ ଓ ଆକାଶରେ ଥିବା ଏଭଳି କଥାର ସୂଚନା ଦେଉଛ ଯାହା ସେ ଜାଣନ୍ତିନାହିଁ? ସେ ପବିତ୍ର ଏବଂ ସେମାନଙ୍କ ବହୁଈଶ୍ୱରବାଦରୁ ବହୁ ଉର୍ଦ୍ଧ୍ୱରେ ।" ୧୯. (ଆରମ୍ଭରେ) ମାନବସମାଜ ଗୋଟିଏ ଧର୍ମ ସଂପ୍ରଦାୟ ଥିଲା ମାତ୍ର ପରେ ଲୋକମାନେ (ପରସ୍ପର ମଧ୍ୟରେ) ମତଭେଦ କରି ଭାଗଭାଗ ହୋଇଗଲେ । ଯଦି ତୁମ ପ୍ରଭୁଙ୍କ ଦ୍ୱାରା ଗୋଟିଏ କଥା ପୂର୍ବରୁ ସ୍ଥିର ହୋଇ ନଥାଆନ୍ତା, ତେବେ ଯେଉଁ ବିଷୟରେ ସେମାନେ ମତଭେଦ କରୁଛନ୍ତି ତାହାର ନିଷ୍ପତ୍ତି (ଏହି ସଂସାରରେ) କରି ଦିଆଯାଆନ୍ତା ।

୨୦. ଏମାନେ କହୁଛନ୍ତି, "(ଏହି ବାର୍ତ୍ତାବହଙ୍କୁ) କାହିଁକି ତାଙ୍କ ଈଶ୍ୱରଙ୍କ ଦ୍ୱାରା କୌଣସି ଅଲୌକିକ ନିଦର୍ଶନ ଦିଆ ଯାଇନାହିଁ?" ତୁମେ ଉତ୍ତର ଦିଅ, "ଅଦୃଷ୍ଟ କଥା କେବଳ ଅଲ୍ଲାହଙ୍କୁ ଜଣା । ତେଣୁ, ତୁମେମାନେ ଅପେକ୍ଷା କର ଏବଂ ମୁଁ ମଧ୍ୟ ଅପେକ୍ଷା କରୁଛି ।" ୨୧. ଲୋକମାନଙ୍କ ଉପରେ କୌଣସି ବିପଦ ପଡ଼ିବା ପରେ ଯଦି ଆମ୍ଭେ ସେମାନଙ୍କୁ ନିଜ କରୁଣାର ସ୍ୱାଦ ଚଖାଇଦେଉ, ତେବେ ସେମାନେ ଆମ୍ଭର ନିଦର୍ଶନ ବିଷୟରେ ଚାଲାକି କରିବା ଆରମ୍ଭ କରିଦିଅନ୍ତି । କହିଦିଅ, "ଯୋଜନା କରିବାରେ ଅଲ୍ଲାହ୍ ତୁମମାନଙ୍କଠାରୁ ଅଧିକ ଚଞ୍ଚଳ ।" ଆମ୍ଭ ଦେବଦୂତମାନେ ତୁମମାନଙ୍କର ସବୁ ଚକ୍ରାନ୍ତଗୁଡ଼ିକୁ ଲେଖି ରଖୁଛନ୍ତି ।"

୨୨. ସେ ହିଁ ତୁମମାନଙ୍କୁ ଜଳ ଓ ସ୍ଥଳରେ ଯାତ୍ରା କରିବାର ଶକ୍ତି ଦେଇଛନ୍ତି । ଯେତେବେଳେ ତୁମେମାନେ ନୌକା ଉପରେ ବସ ଏବଂ ଏହା ଅନୁକୂଳ ପବନରେ ଚାଲିବାକୁ ଲାଗେ ଏବଂ ଲୋକମାନେ ଖୁସି ହୁଅନ୍ତି, ସେତେବେଳେ ହଠାତ୍ ଭୀଷଣ ଭାବରେ ପ୍ରତିକୂଳ ପବନ ବହେ ଏବଂ ଚାରିଆଡୁ ଲହଡ଼ି ମାଡ଼ିଆସେ ଏବଂ ସେମାନେ ଭାବିନିଅନ୍ତି ଯେ ଏବେ ଫସିଗଲେ ।

ସେତେବେଳେ ସେମାନେ ଏକନିଷ୍ଠ ଭାବରେ କେବଳ ଅଲ୍ଲାହଙ୍କୁ ଡ଼ାକନ୍ତି, "ପ୍ରଭୁ! ଯଦି ତୁମେ ଆମକୁ ଏହି ବିପଦରୁ ଉଦ୍ଧାର କର ତେବେ ଆମେ ନିଶ୍ଚୟ ତୁମ ପ୍ରତି କୃତଜ୍ଞ ହେବୁ।" ୨୩. ପୁଣି ଯେତେବେଳେ ସେ ସେମାନଙ୍କୁ (ବିପଦରୁ) ଉଦ୍ଧାର କରନ୍ତି, ସେମାନେ ସଙ୍ଗେସଙ୍ଗେ ଦେଶରେ ଅନ୍ୟାୟ-ଅତ୍ୟାଚର ଆରମ୍ଭ କରିଦିଅନ୍ତି। ହେ ମନୁଷ୍ୟମାନେ! ତୁମମାନଙ୍କର ଅନ୍ୟାୟ-ଅତ୍ୟାଚର ତୁମମାନଙ୍କ ପାଇଁ ବିପଦକୁ ଡାକି ଆଣିବ। କିଛିଦିନ ଏହି ସଂସାର ଭୋଗ କରିନିଅ। ଏହାପରେ ତୁମମାନଙ୍କୁ ଆମ୍ଭରି ପାଖକୁ ଫେରିବାକୁ ହେବ। ସେତେବେଳେ ଆମ୍ଭେ ଜଣାଇଦେବୁ ଯେ ତୁମେମାନେ କ'ଣ କରୁଥିଲ।

୨୪. ପାର୍ଥିବ ଜୀବନର ଉଦାହରଣ ହେଉଛି, ଯେମିତି ଆମ୍ଭେ ଆକାଶରୁ ମେଘବର୍ଷା କଲେ ଜମିରେ ମଣିଷ ଓ ଜୀବଜନ୍ତୁଙ୍କ ଖାଇବା ପାଇଁ ଖୁବ୍ ଶସ୍ୟ ଫଳିଥାଏ ଏବଂ ଯେତେବେଳେ କ୍ଷେତ ପୂର୍ଣ୍ଣ ସବୁଜିମା ବିସ୍ତାର କରେ ଏବଂ ସୁନ୍ଦର ଦିଶେ ଏବଂ ଜମି ମାଲିକ ମନେ କରନ୍ତି ଯେ ଏହା ଏବେ ସମ୍ପୂର୍ଣ୍ଣ ରୂପେ ସେମାନଙ୍କ ଅଧୀନରେ ରହିଛି, ସେତେବେଳେ ଦିନ ବା ରାତି ସମୟରେ ଆମ୍ଭ ଆଜ୍ଞାରୁ ହଠାତ୍ ଫସଲ ଉପରେ କୌଣସି ବିପଦ ପଡ଼ିଯାଏ। ପୁଣି ଆମ୍ଭେ ତାହାକୁ ଫସଲ କଟା ସରିଥିବା କ୍ଷେତ ପରି ଏଭଳି ସଫା କରିଦେଉ ସତେଯେପରି ଦିନକ ପୂର୍ବରୁ ସେଠାରେ କିଛି ନଥିଲା। ଆମ୍ଭେ ଏହିପରି ନିଜର ସଙ୍କେତଗୁଡ଼ିକୁ ପରିଷ୍କାର ଭାବରେ ବର୍ଣ୍ଣନା କରୁଛମ ଯେପରିକି ଲୋକମାନେ ଏଥିପ୍ରତି ଧ୍ୟାନ ଦେବେ। ୨୫. ଅଲ୍ଲାହ୍ ଲୋକମାନଙ୍କୁ ଶାନ୍ତିର ଘରକୁ ଡାକନ୍ତି ଏବଂ ଯାହାକୁ ଚାହାନ୍ତି ତାକୁ ସଳଖ ବାଟରେ ନେଇ ଯାଆନ୍ତି। ୨୬. ଯେଉଁମାନେ ଭଲ କର୍ମ କରନ୍ତି, ସେମାନଙ୍କୁ ଭଲ ପୁରସ୍କାର ମିଳିବ ଏବଂ ଯଥେଷ୍ଟ ଅଧିକ ମଧ୍ୟ ମିଳିବ। ସେମାନଙ୍କ ମୁଖ କେବେ ମଳିନ ପଡ଼ିବନାହିଁ ବା ସେମାନେ ଅପମାନିତ ହେବେନାହିଁ। ସେମାନେ ସ୍ୱର୍ଗବାସୀ ହେବେ ଏବଂ ସେଇଠି ସର୍ବଦା ରହିବେ। ୨୭. ଯେଉଁମାନେ କୁକର୍ମ କଲେ, ସେମାନେ ସେହିପରି କୁକର୍ମର ଫଳ ପାଇବେ ଏବଂ ଲାଂଛନା ଭୋଗିବେ। ଅଲ୍ଲାହଙ୍କଠାରୁ ସେମାନଙ୍କୁ କେହି ରକ୍ଷା କରିବାକୁ ନଥିବ। ସେମାନଙ୍କ ମୁହଁ ଉପରେ ଏମିତି ଅନ୍ଧକାର ଘୋଟିଥିବ ଯେମିତି ଅନ୍ଧାର ରାତିର ପରଦା ପଡ଼ିଛି। ଏମାନେ ନର୍କବାସୀ ହେବେ ଏବଂ ସର୍ବଦା ସେଇଠି ରହିବେ।

୨୮. ଯେଉଁଦିନ ଆମ୍ଭେ ସମସ୍ତଙ୍କୁ (ନିଜ ଦରବାରରେ) ଏକାଠି କରିବୁ ଏବଂ ଯେଉଁମାନେ ଆମ୍ଭ ଈଶ୍ୱରତ୍ୱରେ ଅନ୍ୟମାନଙ୍କୁ ଅଂଶୀଦାର ମାନୁଥିଲେ ସେମାନଙ୍କୁ କହିବୁ, "ଯେଉଁମାନଙ୍କୁ ତୁମେମାନେ ଆମ୍ଭର ସମକକ୍ଷ କରିଥିଲ, ସେମାନଙ୍କ ସହିତ ତୁମେମାନେ ନିଜନିଜ ସ୍ଥାନରେ ରୁହ ।" ପୁଣି ଆମ୍ଭେ ସେମାନଙ୍କୁ ପରସ୍ପରଠାରୁ ପୃଥକ କରିଦେବୁ ଏବଂ ସେମାନଙ୍କର ତଥାକଥିତ ଈଶ୍ୱରମାନେ ସେମାନଙ୍କୁ କହିବେ, "ତୁମେମାନେ ତ ଆମର ପୂଜା କରୁ ନଥିଲ ? ୨୯. ଏବିଷୟରେ ଆମ ଓ ତୁମ ମଧ୍ୟରେ ଅଲ୍ଲାହ୍‌ଙ୍କର ସାକ୍ଷୀ ରହିବା ଯଥେଷ୍ଟ ଯେ ତୁମମାନଙ୍କର ପୂଜା ଅର୍ଚ୍ଚନା ବିଷୟରେ ଆମଙ୍କୁ ଆଦୌ ଜଣା ନଥିଲା ।" ୩୦. ସେତେବେଳେ ପ୍ରତ୍ୟେକ ବ୍ୟକ୍ତି ନିଜେ କରିଥିବା କର୍ମର ବାସ୍ତବତା ବୁଝିପାରିବ ଏବଂ ସେମାନଙ୍କୁ ସେମାନଙ୍କର ପ୍ରକୃତ ସ୍ୱାମୀ ଅଲ୍ଲାହ୍‌ଙ୍କ ପାଖକୁ ଅଣାଯିବ । ସେମାନେ ଯେଉଁ ମିଥ୍ୟା (ଈଶ୍ୱରମାନଙ୍କୁ) ଗଢ଼ିଥିଲେ, ସମସ୍ତେ ଅନ୍ତର୍ଦ୍ଧାନ ହୋଇଯିବେ ।

୩୧. ସେମାନଙ୍କୁ ପଚାର, "ତୁମମାନଙ୍କୁ ଧରିତ୍ରୀ ଓ ଆକାଶରୁ କିଏ ଆହାର ଯୋଗାଏ ଏବଂ ତୁମମାନଙ୍କ ଦେଖିବା-ଶୁଣିବା ଶକ୍ତି କାହା ଅଧୀନରେ ଅଛି ? କିଏ ସଜୀବକୁ ନିର୍ଜୀବ ମଧ୍ୟରୁ ଏବଂ ନିର୍ଜୀବକୁ ସଜୀବ ମଧ୍ୟରୁ ବାହାର କରେ ଏବଂ କିଏ (ବ୍ରହ୍ମାଣ୍ଡର) ପ୍ରତ୍ୟେକ ବ୍ୟବସ୍ଥା ପରିଚାଳନା କରେ ?" ସେମାନେ ନିଶ୍ଚୟ ଉତ୍ତର ଦେବେ ଯେ ଅଲ୍ଲାହ୍ । ସେମାନଙ୍କୁ କୁହ, "ପୁଣି କାହିଁକି ତୁମେମାନେ ତାଙ୍କୁ ଭୟ କରୁନାହଁ?" ୩୨. "ଏହି ହେଉଛନ୍ତି ତୁମମାନଙ୍କର ଅଲ୍ଲାହ୍ ଯିଏ ତୁମମାନଙ୍କର ପ୍ରକୃତ ଈଶ୍ୱର । ସତମାର୍ଗ ପରିଷ୍କାର ହୋଇଗଲା ପରେ ଏବେ କେବଳ ଅସତ୍‌ମାର୍ଗ ବ୍ୟତୀତ ଆଉ କ'ଣ ବାକି ରହିଲା ? ପୁଣି ତୁମେମାନେ କୁଆଡ଼େ ଓଲଟା ବାଟରେ ଚାଲିଯାଉଛ ?" ୩୩. ଏହିପରି, ଅବଜ୍ଞାକାରୀମାନଙ୍କ ବିଷୟରେ ତୁମ ପ୍ରଭୁଙ୍କ କଥା ସତ ସାବ୍ୟସ୍ତ ହୋଇ ସାରିଛି ଯେ ସେମାନେ ବିଶ୍ୱାସ କରିବେ ନାହିଁ ।

୩୪. ସେମାନଙ୍କୁ ପଚାର, "ଯେଉଁମାନଙ୍କୁ ତୁମେମାନେ ଅଲ୍ଲାହ୍‌ଙ୍କର ସମକକ୍ଷ କରିଛ, କ'ଣ ସେମାନଙ୍କ ମଧ୍ୟରେ କେହି ଅଛି ଯିଏ ସୃଷ୍ଟିର ଆରମ୍ଭ କରେ ଏବଂ ଏହାର ପୁନରାବୃତ୍ତି ମଧ୍ୟ କରିଥାଏ ?" କୁହ, "ଅଲ୍ଲାହ୍ ହିଁ ପ୍ରଥମେ ସୃଷ୍ଟି କରନ୍ତି, ପୁଣି ତାହାର ପୁନରାବୃତ୍ତି ମଧ୍ୟ କରନ୍ତି ।" ପୁଣି ତୁମେମାନେ କୁଆଡ଼େ

ବାଟବଣା ହୋଇ ଚାଲିଯାଉଛ ?” ୩୫. ସେମାନଙ୍କୁ ପଚାର,“ଯେଉଁମାନଙ୍କୁ ତୁମେମାନେ ଈଶ୍ୱରଙ୍କର ସମକକ୍ଷ କରିଛ, କ’ଣ ସେମାନଙ୍କ ମଧ୍ୟରେ ଏମିତି କେହି ଅଛି ଯିଏ ତୁମମାନଙ୍କୁ ଠିକ୍ ବାଟ ଦେଖାଇ ପାରିବ ?” କୁହ ଯେ କେବଳ ଅଲ୍ଲାହ୍ ହିଁ ଠିକ୍ ବାଟ ଦେଖାଇ ଥାଆନ୍ତି । ଯିଏ ଠିକ୍ ବାଟ ଦେଖାଏ, ସେ ଅନୁସରଣ କରିବା ଯୋଗ୍ୟ ବା ଯାହାକୁ କେହି ବାଟ ନଦେଖାଇଲେ ସେ ବାଟ ପାଏନାହିଁ, ସେ ଅନୁସରଣ କରିବା ଯୋଗ୍ୟ ? ତୁମମାନଙ୍କର କ’ଣ ହୋଇଛି ? କଭଳି ବିଚାର କରୁଛ ? ୩୬. ଏମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ କେବଳ ଅନୁମାନ ଆଧାରରେ କାର୍ଯ୍ୟ କରନ୍ତି । ପ୍ରକୃତରେ, ବାସ୍ତବତା ତୁଳନାରେ ଅନୁମାନର କୌଣସି ମୂଲ୍ୟ ନଥାଏ । ଏମାନେ ଯାହା କରୁଛନ୍ତି, ଅଲ୍ଲାହ୍ ସବୁ ଜାଣନ୍ତି ।

୩୭. ଏହି କୁରଆନ୍ ଏଭଳି ଗ୍ରନ୍ଥ ନୁହେଁ ଯେ ଏହାକୁ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ରଚନା କରିପାରିବ । ଏହା ପୂର୍ବ ଦିବ୍ୟଗ୍ରନ୍ଥଗୁଡ଼ିକର ସମର୍ଥନ କରେ ଏବଂ ଏଥିରେ ମୂଳଗ୍ରନ୍ଥରେ ଥିବା ଶିକ୍ଷାଗୁଡ଼ିକର ବିସ୍ତୃତ ବର୍ଣ୍ଣନା ରହିଛି । ଏଥିରେ ସନ୍ଦେହ ନାହିଁ ଯେ ଏହା ସର୍ବଲୋକେଶ୍ୱର ଅଲ୍ଲାହଙ୍କଠାରୁ ଆସିଛି । ୩୮. କ’ଣ ଏମାନେ କହୁଛନ୍ତି ଯେ ସେ (ଅର୍ଥାତ୍ ରସୁଲ) ନିଜେ ଏହାକୁ ରଚନା କରିଛନ୍ତି ? କହିଦିଅ, “ଯଦି ତୁମେମାନେ ସତ କହୁଛ, ତେବେ ଏହିଭଳି ଗୋଟିଏ ଅଧ୍ୟାୟ ରଚନା କରି ଆଣ ଏବଂ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ ଯାହାକୁ ଚାହଁ (ସହାୟତା ପାଇଁ) ଡାକିନିଅ ।” ୩୯. ପ୍ରକୃତ କଥା ହେଉଛି ଯେ ଯାହା ସେମାନଙ୍କ ଜ୍ଞାନର ପରିସର ମଧ୍ୟକୁ ଆସିପାରି ନଥିଲା ଏବଂ ଯାହାର ବାସ୍ତବତା ସେମାନଙ୍କ ପାଖରେ ସ୍ପଷ୍ଟ ହୋଇ ନଥିଲା ତାକୁ ମିଥ୍ୟା ବୋଲି କହିଦେଲେ । ଏହିପରି ସେମାନଙ୍କ ପୂର୍ବଜମାନେ ମଧ୍ୟ (ନିଜ ନିଜର ଈଶ୍ୱରଦୂତମାନଙ୍କୁ) ପ୍ରତ୍ୟାଖ୍ୟାନ କରିଥିଲେ । ଦେଖିନିଅ, ଦୁରାଚାରୀମାନଙ୍କର କିଭଳି ପରିଣାମ ହେଲା । ୪୦. ଏମାନଙ୍କ ମଧ୍ୟରୁ କେତେକ ଏହି କୁରଆନକୁ ବିଶ୍ୱାସ କରିବେ ଏବଂ ଅନ୍ୟ କେତେକ ବିଶ୍ୱାସ କରିବେ ନାହିଁ । ତୁମ ପ୍ରଭୁ ଦୁଷ୍ଟମାନଙ୍କୁ ଭଲ ଭାବରେ ଜାଣନ୍ତି । ୪୧. ଯଦି ସେମାନେ ତୁମକୁ ପ୍ରତ୍ୟାଖ୍ୟାନ କରୁଛନ୍ତି ତେବେ ସେମାନଙ୍କୁ କୁହ, “ମୋ’ କର୍ମ ମୋ’ ପାଇଁ ଏବଂ ତୁମମାନଙ୍କର କର୍ମ ତୁମମାନଙ୍କ ପାଇଁ । ମୁଁ ଯାହା କରୁଛି, ସେଥିପାଇଁ ତୁମେମାନେ

ଉତ୍ତରଦାୟୀ ନୁହଁ କିମ୍ବା ତୁମମାନେ ଯାହା କରୁଛ, ସେଥିପାଇଁ ମୁଁ ଉତ୍ତରଦାୟୀ ନୁହେଁ ।"

୪୨. ଏମାନଙ୍କ ମଧ୍ୟରେ କେତେକ ଅଛନ୍ତି ଯେଉଁମାନେ ତୁମ କଥା ଶୁଣୁଥିବା ପରି କାନ ଡେରି ଥାଆନ୍ତି । କ'ଣ ତୁମେ ବଧିରମାନଙ୍କୁ ଶୁଣାଇ ପାରିବ ଯେଉଁମାନେ କିଛି ବୁଝନ୍ତି ନାହିଁ ? ୪୩. ଏବଂ କେତେକ ଲୋକ ତୁମକୁ ଦେଖୁଥିବା ପରି ଜଣାପଡନ୍ତି । କ'ଣ ତୁମେ ଅନ୍ଧମାନଙ୍କୁ ବାଟ ଦେଖାଇ ପାରିବ, ଯେଉଁମାନେ ପ୍ରକୃତରେ କିଛି ଦେଖନ୍ତିନାହିଁ ? ୪୪. ପ୍ରକୃତରେ ଅଲ୍ଲାହ୍ ଲୋକମାନଙ୍କ ପ୍ରତି ଅନ୍ୟାୟ କରନ୍ତିନାହିଁ, ମାତ୍ର ଲୋକମାନେ ନିଜ ପ୍ରତି ଅନ୍ୟାୟ କରିଥାଆନ୍ତି ।

୪୫. ଯେଉଁଦିନ ସେ ସେମାନଙ୍କୁ (ପୁନର୍ଜୀବିତ କରି) ଏକାଠି କରିବେ, (ସେମାନଙ୍କୁ ଜଣାପଡ଼ିବ) ସତେଯେପରି ସେମାନେ ସଂସାରରେ ମାତ୍ର ଘଣ୍ଟାଟିଏ ପରସ୍ପର ମଧ୍ୟରେ ଚିହ୍ନାପରିଚୟ ହେବା ପାଇଁ ରହିଥିଲେ । ପ୍ରକୃତରେ ଯେଉଁମାନେ ଅଲ୍ଲାହଙ୍କ ସହିତ ସାକ୍ଷାତକୁ ମିଛ ମନେକଲେ, ସେମାନଙ୍କର ସର୍ବନାଶ ହେଲା ଏବଂ ସେମାନେ ସତମାର୍ଗ ପାଇ ପାରିଲେନାହିଁ । ୪୬. (ହେ ବାର୍ତ୍ତାବହ!) ଯେଉଁ (ଦୈବୀଦଣ୍ଡ) ବିଷୟରେ ଆମ୍ଭେ ସେମାନଙ୍କୁ ସାବଧାନ କରିଛୁ, ସେଥିରୁ କିଛି ଆମ୍ଭେ ତୁମକୁ ତୁମ ଜୀବନକାଳରେ ଦେଖାଇଦେଉ ବା ତା'ପୂର୍ବରୁ ତୁମକୁ ସଂସାରରୁ ନେଇଯାଉ, ଯାହାହେଲେ ମଧ୍ୟ ସେମାନଙ୍କୁ ଆମ୍ଭରି ପାଖକୁ ଫେରିବାକୁ ହେବ । ଯାହା ସେମାନେ କରୁଛନ୍ତି ଅଲ୍ଲାହ୍ ସ୍ୱୟଂ ତାହାର ସାକ୍ଷୀ ଅଛନ୍ତି । ୪୭. ପ୍ରତ୍ୟେକ ସମାଜ ପାଇଁ ଜଣେ ବାର୍ତ୍ତାବହଙ୍କୁ ପଠାଯାଇଛି । ସୁତରାଂ, ଯେତେବେଳେ (କୌଣସି ସମାଜରେ) ସେମାନଙ୍କର ବାର୍ତ୍ତାବହ ପହଁଚିଯାଆନ୍ତି, ସେମାନଙ୍କର ବିଚାର ସଂପୂର୍ଣ୍ଣ ନ୍ୟାୟର ସହିତ କରାଯାଏ ଏବଂ ସେମାନଙ୍କ ପ୍ରତି ଅନ୍ୟାୟ କରାଯାଏ ନାହିଁ ।

୪୮. ସେମାନେ କହୁଛନ୍ତି, "ଯଦି ତୁମେ ସତ୍ୟବାଦୀ, ତେବେ ଏହି (ଶାସ୍ତିର) ଧମକ କେବେ ସତ ହେବ ?" ୪୯. କହିଦିଅ, "ମୋ' ନିଜର ଭଲ ବା ମନ୍ଦ ମଧ୍ୟ ମୋ' ଆୟତ୍ତରେ ନାହିଁ ମାତ୍ର ଅଲ୍ଲାହ୍ ଯାହା ଇଚ୍ଛା କରନ୍ତି, (ତାହାହିଁ ହୁଏ) । ପ୍ରତ୍ୟେକ ସମାଜ ପାଇଁ ଏକ ନିଶ୍ଚିତ ସମୟ ଧାର୍ଯ୍ୟ କରାଯାଇଛି । ଯେତେବେଳେ ସେମାନଙ୍କର ସେହି ସମୟ ଆସି ପହଁଚିବ, ସେମାନେ ଗୋଟିଏ

ମୁହୂର୍ତ୍ତ ପଛକୁ ଫେରି ପାରିବେନାହିଁ ବା ଆଗକୁ ଯାଇ ପାରିବେନାହିଁ ।" ୫୦. ସେମାନଙ୍କୁ ପଚାର, "କହିଲ ଭଲା ! ଯଦି ଦିନ ବା ରାତି ସମୟରେ ହଠାତ୍ ତାଙ୍କ ପାଖରୁ କୌଣସି ବିପଦ ଆସିଯାଏ, (ତେବେ ତୁମେମାନେ କ'ଣ କରିପାରିବ) ?" ପୁଣି ଦୁରାଚାରୀମାନେ କାହିଁକି ଅଥୟ ହେଉଛନ୍ତି ? ୫୧. ତେବେ କ'ଣ ବିପଦ ଆସିଗଲା ପରେ ଯାଇ ତାକୁ ମାନିବ ? (ସେତେବେଳେ କୁହାଯିବ) ଏବେ ମାନିଲ ! ଅଥଚ ଏଇଥିପାଇଁ ତୁମେମାନେ ଭାରି ଅଥୟ ହେଉଥିଲ । ୫୨. ତା'ପରେ ଅତ୍ୟାଚାରୀମାନଙ୍କୁ କୁହାଯିବ, "ଏବେ ଚିରଦିନ ଶାସ୍ତିର ମଜା ଚାଖ । ତୁମମାନଙ୍କୁ କେବଳ ତୁମ କୃତକର୍ମର ଫଳ ମିଳିଛି ।" ୫୩. ସେମାନେ ତୁମକୁ ପଚାରୁଛନ୍ତି, "କ'ଣ ପ୍ରକୃତରେ ଏହା ସତ ?" କୁହ, "ମୋ' ଈଶ୍ୱରଙ୍କ ରାଣ ! ଏହା ଅଟଳ ସତ୍ୟ । ତୁମେମାନେ ଅଲ୍ଲାହଙ୍କୁ ନିରୂପାୟ କରି ପାରିବନାହିଁ ।"

୫୪. ଯଦି କୌଣସି ପାପୀ ପାଖରେ ପୃଥିବୀଯାକର ସଂପଦ ଥିବ, ସେ (ନିଜକୁ ରକ୍ଷା କରିବା ପାଇଁ) ସବୁକିଛି ଦେବାକୁ ପ୍ରସ୍ତୁତ ହୋଇଯିବ । ଯେତେବେଳେ ସେମାନେ ଶାସ୍ତି ଦେଖିବେ, ମନେମନେ ଅନୁତାପ କରିବେ । ସେମାନଙ୍କର ବିଚାର ନ୍ୟାୟସଂଗତ ଭାବରେ ହେବ ଏବଂ ସେମାନଙ୍କ ପ୍ରତି ଅନ୍ୟାୟ ହେବନାହିଁ । ୫୫. ମନେରଖ ଯେ ପୃଥିବୀ ଓ ଆକାଶମଣ୍ଡଳରେ ଯାହା ଅଛି ସବୁ ଅଲ୍ଲାହଙ୍କର । ମନେରଖ, ଅଲ୍ଲାହଙ୍କ କଥା ଅଟଳ ସତ୍ୟ ମାତ୍ର ଅଧିକାଂଶ ଲୋକ ଏହା ଜାଣନ୍ତିନାହିଁ । ୫୬. ସେ ହିଁ ଜୀବନ ଦିଅନ୍ତି ଏବଂ ସେ ହିଁ ମୃତ୍ୟୁ ଦିଅନ୍ତି ଏବଂ ତାଙ୍କରି ପାଖକୁ ତୁମମାନେ ଫେରିଯିବ ।

୫୭. ହେ ମନୁଷ୍ୟଗଣ ! ତୁମମାନଙ୍କ ପାଖକୁ ତୁମ ଈଶ୍ୱରଙ୍କଠାରୁ ହିତୋପଦେଶ ଆସିଯାଇଛି ଯାହା ହୃଦୟ ଭିତରେ ଥିବା ରୋଗଗୁଡ଼ିକର ଉପଚାର କରେ ଏବଂ ସଦବିଶ୍ୱାସୀମାନଙ୍କର ମାର୍ଗଦର୍ଶନ କରେ ଏବଂ ସେମାନଙ୍କ ପ୍ରତି ଏହା ତାଙ୍କର ଏକ କରୁଣା । ୫୮. କୁହ, "ଏହା ଅଲ୍ଲାହଙ୍କର କୃପା ଓ କରୁଣା ଯୋଗୁଁ ହେଲା । ତେଣୁ, ଲୋକମାନେ ଏଥିପାଇଁ ଖୁସି ହେବା ଉଚିତ । ଯାହା (ଧନସମ୍ପତ୍ତି) ସେମାନେ ସାଇତି ରଖୁଛନ୍ତି, ତାହାଠାରୁ ଏହା ଢ଼େର ଭଲ ।" ୫୯. ସେମାନଙ୍କୁ କୁହ, "ଦେଖ ! ଅଲ୍ଲାହ୍ ତୁମମାନଙ୍କ ଆହାର ପାଇଁ ଯାହା ଦେଇଛନ୍ତି, ତୁମେମାନେ

ସେଥିରୁ ନିଜେନିଜେ କିଛି ବୈଧ କରିଦେଲ ଏବଂ କିଛି ଅବୈଧ କରିଦେଲ ?” ସେମାନଙ୍କୁ ପଚାର, “ଅଲ୍ଲାହ୍ ତୁମମାନଙ୍କୁ ଏହାର ଅନୁମତି ଦେଇଥିଲେ ବା ତୁମେମାନେ ଅଲ୍ଲାହଙ୍କ ନାଁରେ ମିଛ କହୁଛ ?” ୬୦. ଯେଉଁମାନେ ଅଲ୍ଲାହଙ୍କ ନାଁରେ ମିଛ ଗଢୁଛନ୍ତି, ବିଚାର ଦିନ ବିଷୟରେ ସେମାନଙ୍କର ଧାରଣା କ'ଣ ? ଅଲ୍ଲାହ୍ ତ ଲୋକମାନଙ୍କ ପ୍ରତି କରୁଣା କରନ୍ତି ମାତ୍ର ଅଧିକାଂଶ ଲୋକ ଉପକାର ମାନନ୍ତି ନାହିଁ ।

୬୧. ତୁମେ ଯେଉଁ ଅବସ୍ଥାରେ ଥାଅ ବା କୁର୍‌ଆନ ପାଠ କରୁଥାଅ କିମ୍ବା ତୁମେମାନେ ଅନ୍ୟ କିଛି କାର୍ଯ୍ୟ କର, ଯେତେବେଳେ ସେଥିରେ ମଗ୍ନ ହୋଇଯାଅ, ଆମ୍ଭେ ତୁମମାନଙ୍କୁ ଦେଖୁଥାଉ । ପୃଥିବୀ ଓ ଅକାଶମଣ୍ଡଳରେ ଅଣୁ ପରିମାଣର ବସ୍ତୁଟିଏ ମଧ୍ୟ ଈଶ୍ୱରଙ୍କଠାରୁ ଲୁଚି ରହିନାହିଁ । ଛୋଟ ହେଉ ବା ବଡ଼, ସବୁକଥା ଏକ ସ୍ୱଷ୍ଟ ଭାବରେ ଲିଖିତ ଗ୍ରନ୍ଥରେ ଲେଖା ହୋଇ ରହିଛି । ୬୨. ମନେରଖ, ଅଲ୍ଲାହଙ୍କର ମିତ୍ରମାନଙ୍କର କୌଣସି ଭୟ ନାହିଁ କିମ୍ବା ସେମାନେ ଦୁଃଖ ଭୋଗିବେ ନାହିଁ । ୬୩. ଯେଉଁମାନେ (ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ) ବିଶ୍ୱାସ କଲେ ଏବଂ କୁକର୍ମରୁ ନିବୃତ୍ତ ରହିଲେ, ୬୪. ସେମାନଙ୍କ ପାଇଁ ଇହଲୋକ ଓ ପରଲୋକ ଜୀବନରେ ଭଲ ଖବର ରହିଛି । ଅଲ୍ଲାହଙ୍କ କଥା ବଦଳେ ନାହିଁ । ଏହାହିଁ ବଡ଼ ସଫଳତା । ୬୫. ସେମାନଙ୍କ କଥା ଶୁଣି ଦୁଃଖ କରନାହିଁ, କାରଣ ସବୁ ପ୍ରକାରର ମାନସମ୍ମାନ ଅଲ୍ଲାହଙ୍କ ହାତରେ ରହିଛି । ସେ ସର୍ବଶ୍ରୋତା ଏବଂ ସର୍ବଜ୍ଞ ।

୬୬. ମନେରଖ, ପୃଥିବୀ ଓ ଆକାଶରେ ଯେଉଁମାନେ ଅଛନ୍ତି ସମସ୍ତେ ଅଲ୍ଲାହଙ୍କର । ଯେଉଁମାନେ ଅଲ୍ଲାହଙ୍କୁ ଛାଡ଼ି ମନଗଢ଼ା ଉପାସ୍ୟମାନଙ୍କୁ ଡାକନ୍ତି, ସେମାନେ କେବଳ ଏକ ପ୍ରକାର ଅନୁମାନ ପଛରେ ଚାଲିଛନ୍ତି ଏବଂ ତୁଚ୍ଛା ଅଟକଳ କରୁଛନ୍ତି । ୬୭. ସେ ତୁମମାନଙ୍କ ବିଶ୍ରାମ ପାଇଁ ରାତି ସୃଷ୍ଟି କଲେ ଏବଂ ଦେଖିବା ପାଇଁ ଦିନକୁ ଆଲୋକିତ କଲେ । ଯେଉଁମାନେ (ଧ୍ୟାନ ଦେଇ) କଥା ଶୁଣନ୍ତି, ସେମାନଙ୍କ ପାଇଁ ଏଥିରେ ଅନେକ ସଂକେତ ଅଛି ।

୬୮. କିଛି ଲୋକ କହନ୍ତି ଯେ ଅଲ୍ଲାହଙ୍କର ପୁତ୍ର ସନ୍ତାନ ଅଛି, ମାତ୍ର ସେ ପରମ ପବିତ୍ର ଓ ଆବଶ୍ୟକତା ରହିତ । ପୃଥିବୀ ଓ ଆକାଶମଣ୍ଡଳରେ ଯାହା ଅଛି,

ସବୁ ତାଙ୍କରି । ତୁମ୍ଭମାନଙ୍କ ପାଖରେ ଏହି (ମିଥ୍ୟା) କଥାର କୌଣସି ପ୍ରମାଣ ନାହିଁ । କ'ଣ ତୁମେମାନେ ଅଲ୍ଲାହଙ୍କ ବିଷୟରେ ଏଭଳି କଥା କହୁଛ ଯାହା ବିଷୟରେ ତୁମେମାନେ କିଛି ଜାଣନାହିଁ ? ୬୯. କହିଦିଅ, "ଯେଉଁମାନେ ଅଲ୍ଲାହଙ୍କ ବିଷୟରେ ମିଛ କହନ୍ତି ସେମାନେ କେବେହେଲେ ସଫଳ ହେବେନାହିଁ ।" ୭୦. ସେମାନେ ସଂସାରରେ କିଛି ଦିନ ସୁଖ ଭୋଗ କରି ନିଅନ୍ତୁ । ଏହାପରେ ସେମାନଙ୍କୁ ଆମ୍ଭରି ପାଖକୁ ଫେରିବାକୁ ହେବ । ପୁଣି, ସତ୍ୟକୁ ପ୍ରତ୍ୟାଖ୍ୟାନ କରିଥିବାରୁ ଆମ୍ଭେ ସେମାନଙ୍କୁ କଠୋର ଦଣ୍ଡର ମଜା ଚଖାଇବୁ ।

୭୧. ସେମାନଙ୍କୁ ନୁହଙ୍କ କଥା ପଢ଼ି ଶୁଣାଅ । ଯେତେବେଳେ ସେ ତାଙ୍କ ସଂପ୍ରଦାୟର ଲୋକମାନଙ୍କୁ କହିଲେ, "ଭାଇମାନେ ! ଯଦି ମୋ'ର ତୁମ୍ଭମାନଙ୍କ ସହିତ ରହିବା ଏବଂ ଅଲ୍ଲାହଙ୍କ ବାଣୀ ଦ୍ୱାରା ଉପଦେଶ ଦେବା ତୁମ୍ଭମାନଙ୍କୁ ଅସହ୍ୟ ବୋଧ ହେଉଛି, ତା'ହେଲେ ମୋ'ର ଅଲ୍ଲାହଙ୍କ ଉପରେ ଭରସା ଅଛି । ତୁମେମାନେ ନିଜ ଦେବାଦେବୀମାନଙ୍କ ସହ ମିଶି ମୋ' ବିରୁଦ୍ଧରେ କୌଣସି ପକ୍କା ଯୋଜନା ପ୍ରସ୍ତୁତ କରିନିଅ ଯେପରିକି ସେବିଷୟରେ ତୁମ୍ଭମାନଙ୍କର କୌଣସି ସନ୍ଦେହ ନରହୁ । ତା'ପରେ ମୋ' ବିରୁଦ୍ଧରେ ତାହାକୁ କାର୍ଯ୍ୟକାରୀ କର ଏବଂ ମୋତେ (ଖସିବାର) ସୁଯୋଗ ଦିଅନାହିଁ । ୭୨. ଏହାପରେ ଯଦି ତୁମେମାନେ ମୁହଁ ମୋଡ଼ିବ, (ତେବେ ତୁମେମାନେ ଜାଣ ଯେ) ମୁଁ ଏଥିପାଇଁ ତୁମ୍ଭମାନଙ୍କଠାରୁ କୌଣସି ମୂଲ୍ୟ ମାଗିନାହିଁ । ମୋ' ପାରିଶ୍ରମିକ ତ ଅଲ୍ଲାହଙ୍କ ପାଖରେ ଅଛି ଏବଂ ମୋତେ ନିର୍ଦ୍ଦେଶ ଦିଆଯାଇଛି ଯେ (କେହି ମାନୁ ବା ନମାନୁ), ମୁଁ ତାଙ୍କର ଆଜ୍ଞାଧୀନ (ଅର୍ଥାତ୍ ମୁସଲିମ୍) ହୋଇ ରହିବି ।" ୭୩. ପୁଣି ସେମାନେ ତାଙ୍କୁ ପ୍ରତ୍ୟାଖ୍ୟାନ କଲେ । ତେଣୁ, ଆମ୍ଭେ ନୁହଙ୍କୁ ଏବଂ ତାଙ୍କ ସହିତ ନୌକାରେ ଥିବା ଲୋକମାନଙ୍କୁ ରକ୍ଷା କଲୁ ଏବଂ ସେମାନଙ୍କୁ ଏମାନଙ୍କର ଉତ୍ତରାଧିକାରୀ କଲୁ ଏବଂ ଯେଉଁମାନେ ଆମ୍ଭ ବାଣୀକୁ ପ୍ରତ୍ୟାଖ୍ୟାନ କରିଥିଲେ, ସେମାନଙ୍କୁ ଜଳମଗ୍ନ କରିଦେଲୁ । ଦେଖିନିଅ, ଯେଉଁମାନଙ୍କୁ ସତର୍କ କରାଯାଇଥିଲା ସେମାନଙ୍କର କିଭଳି ପରିଣାମ ହେଲା ।

୭୪. ପୁଣି ନୁହଙ୍କ ପରେ ଆମ୍ଭେ ଅନେକ ବାର୍ତ୍ତାବହଙ୍କୁ ସେମାନଙ୍କ ସମାଜ ପାଖକୁ ପଠାଇଲୁ, ଯେଉଁମାନେ ସ୍ପଷ୍ଟ ପ୍ରମାଣ ନେଇ ଯାଇଥିଲେ, ମାତ୍ର

ଯେଉଁ କଥାକୁ ସେମାନେ ଥରେ ମିଛ ବୋଲି କହି ସାରିଥିଲେ ତାକୁ ଆଉ ମାନିବାକୁ ପ୍ରସ୍ତୁତ ହେଲେନାହିଁ । ଯେଉଁମାନେ ସୀମା ଟପି ଯାଆନ୍ତି, ଆମ୍ଭେ ଏହିପରି ସେମାନଙ୍କ ହୃଦୟର ଦ୍ୱାର ବନ୍ଦ କରିଦେଉ (ଅର୍ଥାତ୍ ସେମାନଙ୍କର ବିଚାରଶକ୍ତି ଲୋପ କରିଦେଉ) ।

୭୫. ସେମାନଙ୍କ ପରେ ପୁଣି ଆମ୍ଭେ ମୁ'ସା ଓ ହାରୁନଙ୍କୁ ଆମ୍ଭର ନିଦର୍ଶନ ଦେଇ ଫିରଔନ ଓ ତା' ସାମନ୍ତମାନଙ୍କ ପାଖକୁ ପଠାଇଲୁ, ମାତ୍ର ସେମାନେ ଅହଂକାର କଲେ । ସେମାନେ ଅତ୍ୟନ୍ତ ପାପୀ ଥିଲେ । ୭୬. ତେଣୁ, ଯେତେବେଳେ ସେମାନେ ଆମ୍ଭ ଦ୍ୱାରା ପଠାଯାଇଥିବା ସତ୍ୟ (ଅର୍ଥାତ୍ ଅଲୌକିକ ନିଦର୍ଶନ) ଦେଖିଲେ, କହିଲେ ଯେ ଏଗୁଡ଼ିକ ପରିଷ୍କାର ଯାଦୁବିଦ୍ୟା । ୭୭. ମୁ'ସା କହିଲେ, "କ'ଣ ତୁମେମାନେ ସତ୍ୟର ପ୍ରମାଣ ପାଇସାରିବା ପରେ ତା' ବିଷୟରେ ଏଭଳି କଥା କହୁଛ ? କ'ଣ ଏହା ଯାଦୁବିଦ୍ୟା ହୋଇପାରେ ? ଯାଦୁକରମାନେ ଆଦୌ ସଫଳ ହୁଅନ୍ତି ନାହିଁ । ୭୮. ସେମାନେ କହିଲେ, "କ'ଣ ତୁମେମାନେ ଆମ ପାଖକୁ ଏଇଥିପାଇଁ ଆସିଛ ଯେ ଆମକୁ ଆମ ବାପାଅଜାଙ୍କ ପନ୍ଥାରୁ ଦୂରେଇ ଦେବ ଏବଂ ଦେଶରେ ତୁମେ ଦୁହେଁ ପ୍ରଭୁତ୍ୱ ବିସ୍ତାର କରିବ ? ଆମେ ତୁମ କଥା କଦାପି ମାନିବୁ ନାହିଁ ।" ୭୯. ଫିରଔନ ଆଦେଶ ଦେଲା, "ସବୁ କୁଶଳୀ ଯାଦୁକରମାନଙ୍କୁ ମୋ' ପାଖରେ ଆଣି ହାଜର କର ।" ୮୦. ପୁଣି ଯେତେବେଳେ ଯାଦୁକରମାନେ ପହଁଚିଗଲେ, ମୁ'ସା ସେମାନଙ୍କୁ କହିଲେ, "ଯାହା (କୌଶଳ) ତୁମମାନଙ୍କୁ ଦେଖାଇବାର ଅଛି ଦେଖାଅ ।" ୮୧. ପୁଣି ଯେତେବେଳେ ସେମାନେ (ନିଜର କୌଶଳ) ଦେଖାଇ ସାରିଲେ, ମୁ'ସା କହିଲେ, "ତୁମେମାନେ ଯାହା ଦେଖାଇଲ ତାହା ଯାଦୁଖେଳ । ଅଲ୍ଲାହ୍ ଏହାକୁ ପ୍ରଭାବହୀନ କରିଦେବେ । ଅଲ୍ଲାହ୍ ଦୁଷ୍ଟ ଲୋକମାନଙ୍କ କାର୍ଯ୍ୟକୁ ସଫଳ କରନ୍ତି ନାହିଁ । ୮୨. ଏବଂ ଅଲ୍ଲାହ୍ ନିଜ ଆଜ୍ଞାରୁ ସତକୁ ସତ ବୋଲି ପ୍ରମାଣିତ କରି ଦିଅନ୍ତି ଯଦିଓ ଦୁରାଚାରୀମାନଙ୍କୁ ଏହା ଅପ୍ରିୟ ଲାଗୁ ।"

୮୩. ମୁ'ସାଙ୍କ ସଂପ୍ରଦାୟର ମାତ୍ର କେତେଜଣ ନବଯୁବକ ତାଙ୍କ ପ୍ରତି ବିଶ୍ୱାସ କରିଥିଲେ, ତାହା ମଧ୍ୟ ଫିରଔନ ଓ ତା' ସାମନ୍ତମାନଙ୍କୁ ଡ଼ରିଡ଼ରି କରିଥିଲେ

ଯେ କାଳେ ସେମାନେ ଏମାନଙ୍କୁ ବିପଦରେ ପକାଇଦେବେ । ପ୍ରକୃତରେ ଫିରଔନ ଦେଶରେ ଅତ୍ୟନ୍ତ ଶକ୍ତିଶାଳୀ ଥିଲା ଏବଂ ସେ (ଅନ୍ୟାୟ-ଅତ୍ୟାଚାରର) ସୀମା ଟପି ଯାଇଥିଲା । ୮୪. ମୁ'ସା କହିଲେ, "ଭାଇମାନେ ! ଯଦି ତୁମେମାନେ ପ୍ରକୃତରେ ଅଲ୍ଲାହଙ୍କୁ ବିଶ୍ୱାସ କରୁଛ ଏବଂ ତାଙ୍କଠାରେ ସମର୍ପଣ କରିଛ, ତେବେ ତାଙ୍କ ଉପରେ ଭରସା ରଖ ।" ୮୫. ସେମାନେ କହିଲେ, "ଆମେମାନେ ଅଲ୍ଲାହଙ୍କ ଉପରେ ଭରସା ରଖୁଛୁ । ହେ ପ୍ରଭୁ ! ଦୁରାଚାରୀମାନଙ୍କ ଦ୍ୱାରା ଆମର ପରୀକ୍ଷା ନିଅନାହିଁ, ୮୬. ଏବଂ ନିଜ କୃପାରୁ ନାସ୍ତିକମାନଙ୍କ କବଳରୁ ଆମମାନଙ୍କୁ ମୁକ୍ତି ଦିଅ ।" ୮୭. ମୁ'ସା ଓ ତାଙ୍କ ଭାଇ ହାରୁନ୍‌ଙ୍କ ପ୍ରତି ଆମ୍ଭେ ଦୈବବାଣୀ କଲୁ, "ତୁମେମାନେ ନିଜ ଲୋକମାନଙ୍କ ପାଇଁ ମିଶରରେ କିଛି ବାସଗୃହର ବ୍ୟବସ୍ଥା କର ଏବଂ ନିଜ ଘରଗୁଡ଼ିକୁ ଉପାସନାପୀଠ କରି ସେଥିରେ ନମାଜ ପ୍ରତିଷ୍ଠା କର ଏବଂ ସଦ୍‌ବିଶ୍ୱାସୀମାନଙ୍କୁ (ସ୍ୱର୍ଗର) ସୁସମାଚାର ଦିଅ ।"

୮୮. ମୁ'ସା କହିଲେ, "ହେ ପ୍ରଭୁ ! ତୁମେ ଫିରଔନ ଓ ତା' ସାମନ୍ତମାନଙ୍କୁ ସାଂସାରିକ ଜୀବନରେ ପ୍ରଚୁର ଐଶ୍ୱର୍ଯ୍ୟ ଓ ଧନସଂପତ୍ତି ଦେଲ । ହେ ପ୍ରଭୁ ! ଏହି କାରଣରୁ ସେମାନେ ତୁମ ମାର୍ଗରୁ ଲୋକମାନଙ୍କୁ ବିଭ୍ରାନ୍ତ କରୁଛନ୍ତି । ହେ ପାଳନକର୍ତ୍ତା ! ସେମାନଙ୍କ ଧନସମ୍ପଦ ନଷ୍ଟ କରିଦିଅ ଏବଂ ସେମାନଙ୍କ ହୃଦୟକୁ କଠୋର କରିଦିଅ ଯେପରିକି ଦୈବୀଦଣ୍ଡ ନଦେଖିବା ପର୍ଯ୍ୟନ୍ତ ସେମନେ ବିଶ୍ୱାସ ନକରନ୍ତୁ ।" ୮୯. ଅଲ୍ଲାହ୍ କହିଲେ, "ତୁମ ପ୍ରାର୍ଥନା ସ୍ୱୀକାର କରାଗଲା । ଏବେ ତୁମେ ଦୁହେଁ ନିଜ ଲକ୍ଷ୍ୟରେ ଅଟଳ ରୁହ ଏବଂ ସେମାନଙ୍କର ପନ୍ଥା ଧରନାହିଁ, ଯେଉଁମାନଙ୍କର ଜ୍ଞାନ ନାହିଁ ।"

୯୦. ଆମ୍ଭେ ଇସ୍ରାଇଲଙ୍କ ବଂଶଧରମାନଙ୍କୁ ସମୁଦ୍ର ପାରି କରାଇଦେଲୁ । ଫିରଔନ ଓ ତା' ସେନା ମଧ୍ୟ ଅତ୍ୟାଚାର କରିବା ଉଦ୍ଦେଶ୍ୟରେ ସେମାନଙ୍କର ପିଛା କଲେ । ଯେତେବେଳେ ଫିରଔନ ବୁଡ଼ିବାକୁ ଲାଗିଲା, ସେତେବେଳେ କହିଲା, "ମୁଁ ଏହା ମାନୁଛି ଯେ ଇସ୍ରାଇଲଙ୍କ ବଂଶଧରମାନେ ଯେଉଁ ଈଶ୍ୱରଙ୍କୁ ମାନି ନେଇଛନ୍ତି, ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସନାଯୋଗ୍ୟ ନୁହନ୍ତି ଏବଂ ମୁଁ ତାଙ୍କ ନିକଟରେ ନିଜକୁ ସମର୍ପଣ କଲି ।" ୯୧. (ତାକୁ କୁହାଗଲା) "ଏବେ ମାନୁଛୁ ? ଅଥଚ ଏହା

ପୂର୍ବରୁ ଆମ୍ଭର ଅବମାନନା କରୁଥିଲୁ ଏବଂ ଅଶାନ୍ତି ସୃଷ୍ଟି କରୁଥିଲୁ । ୯୨. ଆଜି ତୋ' ମରଶରୀରକୁ ଆମ୍ଭେ ସୁରକ୍ଷିତ ରଖିବୁ ଯେପରିକି ତୁ ପରବର୍ତ୍ତୀ ଲୋକମାନଙ୍କ ପାଇଁ ଏକ ନିଦର୍ଶନ ହୋଇ ରହିବୁ । ବାସ୍ତବରେ ଅଧିକାଂଶ ମନୁଷ୍ୟ ଆମ୍ଭର ନିଦର୍ଶନ ପ୍ରତି ଧ୍ୟାନ ଦିଅନ୍ତିନାହିଁ ।

୯୩. ଆମ୍ଭେ ଇସ୍ରାଇଲଙ୍କ ବଂଶଧରମାନଙ୍କୁ ରହିବା ପାଇଁ ଭଲ ସ୍ଥାନ ଦେଲୁ ଏବଂ ଖାଇବା ପାଇଁ ଭଲ ଆହାର ଦେଲୁ । ସେମାନଙ୍କ ପାଖରେ ସଦ୍‌ଜ୍ଞାନ ପହଁଚି ସାରିବା ପରେ ସେମାନେ ପରସ୍ପର ମଧ୍ୟରେ ମତଭେଦ କରିଥିଲେ । ଯେଉଁ ବିଷୟରେ ସେମାନେ ମତଭେଦ କଲେ, ବିଚାର ଦିନ ସେମାନଙ୍କ ପ୍ରଭୁ ସେବିଷୟରେ ନିଷ୍ପତ୍ତି କରିଦେବେ ।

୯୪. (ହେ ବାର୍ତ୍ତାବହ!) ଆମ୍ଭେ ତୁମ ପାଖକୁ ଯେଉଁ ବାଣୀ ପଠାଇଛୁ, ଯଦି ତାହା ପ୍ରତି ତୁମର କୌଣସି ସନ୍ଦେହ ଥାଏ ତେବେ ସେମାନଙ୍କୁ ପଚାର ଯେଉଁମାନେ ତୁମ ପୂର୍ବରୁ ଦିବ୍ୟଗ୍ରନ୍ଥ ପାଠ କରୁଛନ୍ତି । ତୁମ ପ୍ରଭୁଙ୍କଠାରୁ ତୁମ ପାଖକୁ ଯାହା ପଠାଯାଇଛି ତାହା ସତ୍ୟ । ତେଣୁ ତୁମେ ଆଦୌ ସନ୍ଦେହ କରନାହିଁ । ୯୫. ଏବଂ ସେମାନଙ୍କ ପରି ହୁଅନାହିଁ ଯେଉଁମାନେ ଅଲ୍ଲାହଙ୍କ ବାଣୀକୁ ମିଥ୍ୟା ବୋଲି କହନ୍ତି । ଏହା କଲେ ତୁମେ କ୍ଷତିଗ୍ରସ୍ତ ହେବ ।

୯୬. ଯେଉଁମାନଙ୍କ ବିଷୟରେ ତୁମ ଇଶ୍ୱରଙ୍କ କଥା ସତ ପ୍ରମାଣିତ ହୋଇସାରିଛି, ସେମାନେ ବିଶ୍ୱାସ କରିବେନାହିଁ । ୯୭. ସବୁ ପ୍ରମାଣ ପାଇ ସାରିବା ସତ୍ତ୍ୱେ, ଯେପର୍ଯ୍ୟନ୍ତ ସେମାନେ ଭୟଙ୍କର ବିପଦ ନଦେଖିଛନ୍ତି (କଦାପି ବିଶ୍ୱାସ କରିବେ ନାହିଁ) । ୯୮. ସୁତରାଂ, କେବଳ ୟୁନୁସଙ୍କ ସଂପ୍ରଦାୟ ବ୍ୟତୀତ ଅନ୍ୟ କୌଣସି ସହରବାସୀ ବିଶ୍ୱାସ କଲେନାହିଁ, ଯାହାଫଳରେ ଆସ୍ଥା ରଖିବା ଦ୍ୱାରା ସେମାନଙ୍କର ଉପକାର ହୋଇଥାଆନ୍ତା । ଯେହେତୁ ଏମାନେ ବିଶ୍ୱାସ କଲେ, ଆମ୍ଭେ ଏମାନଙ୍କୁ ସାଂସାରିକ ଜୀବନର ଅପମାନଜନକ ଶାସ୍ତିରୁ ରକ୍ଷା କଲୁ ଏବଂ କିଛିକାଳ ସଂସାର ଭୋଗ କରିବାର ସୁଯୋଗ ଦେଲୁ ।

୯୯. ଯଦି ତୁମ ଇଶ୍ୱର ଇଚ୍ଛା କରିଥାଆନ୍ତେ ତେବେ ପୃଥିବୀର ସମସ୍ତେ ବିଶ୍ୱାସ କରି ନେଇଥାଆନ୍ତେ । ତେବେ କ'ଣ ତୁମେ ଲୋକମାନଙ୍କୁ ସଦ୍‌ବିଶ୍ୱାସୀ

ହେବାପାଇଁ ବାଧ୍ୟ କରିବ? ୧୦୦. ଅଥଚ ଅଲ୍ଲାହଙ୍କ ଅନୁମତି ବିନା କୌଣସି ମନୁଷ୍ୟ ପକ୍ଷରେ ଆସ୍ଥା ରଖିବା ସମ୍ଭବ ନୁହେଁ। ଯେଉଁମାନେ ବୁଦ୍ଧି ବ୍ୟବହାର କରନ୍ତି ନାହିଁ, ଅଲ୍ଲାହ୍ ସେମାନଙ୍କୁ (ନାସ୍ତିକତା ଓ ବହୁଈଶ୍ୱରବାଦର) ଅଶୁଦ୍ଧତା ମଧ୍ୟରେ ରହିବାକୁ ଛାଡ଼ିଦିଅନ୍ତି।

୧୦୧. ସେମାନଙ୍କୁ କୁହ, "ଧରିତ୍ରୀ ଓ ଆକାଶ ମଧ୍ୟରେ ଯାହାସବୁ ଅଛି ସେଗୁଡ଼ିକ ପ୍ରତି ଧ୍ୟାନ ଦିଅ।" ମାତ୍ର ଯେଉଁମାନେ ବିଶ୍ୱାସ କରୁନାହାନ୍ତି, ସେମାନଙ୍କୁ (ଈଶ୍ୱରଙ୍କର) ସଂକେତ କିମ୍ୱା (ଈଶ୍ୱରଦୂତମାନଙ୍କର) ଚେତାବନୀ କିଛି ଫାଇଦା ଦିଏନାହିଁ।" ୧୦୨. ତେବେ କ'ଣ ସେମାନେ ସେହି ଦୁର୍ଦ୍ଦିନ ଦେଖିବାକୁ ଅପେକ୍ଷା କରିଛନ୍ତି ଯାହା ସେମାନଙ୍କ ପୂର୍ବଜମାନେ ଦେଖିଥିଲେ? କୁହ, "ତେବେ ଅପେକ୍ଷା କର। ତୁମମାନଙ୍କ ସହିତ ମୁଁ ମଧ୍ୟ ଅପେକ୍ଷା କରୁଛି।" ୧୦୩. (ଯେତେବେଳେ ବିପଦ ଆସେ) ଆମେ ନିଜ ବାର୍ତ୍ତାବହମାନଙ୍କୁ ଏବଂ ସଦବିଶ୍ୱାସୀମାନଙ୍କୁ ରକ୍ଷା କରୁ। ଏହିପରି, ସଦ୍‌ବିଶ୍ୱାସକାରୀମାନଙ୍କୁ ରକ୍ଷା କରିବା ଆମ୍ଭର କର୍ତ୍ତବ୍ୟ।

୧୦୪. କହିଦିଅ, "ହେ ମନୁଷ୍ୟଗଣ! ଯଦି ତୁମମାନଙ୍କୁ ମୋ' ଧର୍ମ ବିଷୟରେ କିଛି ସନ୍ଦେହ ଥାଏ, ତେବେ (ଜାଣିନିଅ ଯେ) ଅଲ୍ଲାହଙ୍କ ବ୍ୟତୀତ ତୁମେମାନେ ଯେଉଁମାନଙ୍କର ଉପାସନା କରୁଛ, ମୁଁ ସେମାନଙ୍କର ଉପାସନା କରେନାହିଁ ବରଂ ମୁଁ ସେହି ଅଲ୍ଲାହଙ୍କର ଉପାସନା କରେ ଯିଏ ତୁମମାନଙ୍କୁ ମୃତ୍ୟୁ ଦିଅନ୍ତି ଏବଂ ମୋତେ ଜଣେ ସଦ୍‌ବିଶ୍ୱାସୀ ହୋଇ ରହିବାର ଆଜ୍ଞା ଦିଆଯାଇଛି। ୧୦୫. (ଏବଂ କୁହାଯାଇଛି ଯେ) ଏକାଗ୍ରତାର ସହିତ ଏହି ପ୍ରାକୃତିକ ଏକେଶ୍ୱରବାଦୀ ଧର୍ମ ପାଳନ କର ଏବଂ ବହୁଈଶ୍ୱରବାଦୀ ହୁଅନାହିଁ। ୧୦୬. "ଏବଂ ଅଲ୍ଲାହଙ୍କୁ ଛାଡ଼ି ଅନ୍ୟମାନଙ୍କୁ ଡ଼ାକନାହିଁ ଯେଉଁମାନେ ତୁମର କୌଣସି ଲାଭ ବା କ୍ଷତି କରି ପାରନ୍ତିନାହିଁ। ଯଦି ତୁମେ ଏହା କରିବ, ତେବେ ନିଶ୍ଚୟ ଦୁରାଚାରୀମାନଙ୍କ ମଧ୍ୟରେ ଗଣାଯିବ।" ୧୦୭. ଯଦି ଅଲ୍ଲାହ୍ ତୁମମାନଙ୍କୁ କୌଣସି ବିପଦରେ ପକାଇ ଦିଅନ୍ତି, ତେବେ ସ୍ୱୟଂ ତାଙ୍କ ବ୍ୟତୀତ ଆଉ କେହି ତାହା ଦୂର

କରିପାରିବ ନାହିଁ ଏବଂ ଯଦି ସେ ତୁମର କୌଣସି କଲ୍ୟାଣ କରିବାକୁ ଚାହାନ୍ତି, ତା'ହେଲେ କେହି ତାଙ୍କର ଅନୁଗ୍ରହକୁ ରୋକି ପାରିବନାହିଁ। ସେ ନିଜ ଭକ୍ତମାନଙ୍କ ମଧ୍ୟରୁ ଯାହା ପ୍ରତି ଚାହାନ୍ତି ତା'ପ୍ରତି ଅନୁଗ୍ରହ କରିଥାଆନ୍ତି। ସେ ଅତ୍ୟନ୍ତ କ୍ଷମାଶୀଳ ଏବଂ କରୁଣାମୟ।

୧୦୮. କୁହ, "ହେ ମନୁଷ୍ୟଗଣ! ତୁମ ପାଳନକର୍ତ୍ତାଙ୍କଠାରୁ ତୁମମାନଙ୍କ ପାଖକୁ ସତ୍ୟ ଆସିସାରିଛି। ତେଣୁ, ଯିଏ ସତମାର୍ଗରେ ଯିବ ସେ ନିଜର ମଙ୍ଗଳ କରିବ ଏବଂ ଯିଏ ଅସତ୍ ମାର୍ଗରେ ଯିବ, ସେ ନିଜର କ୍ଷତି କରିବ। ତୁମମାନଙ୍କୁ ଜଗିବା ମୋ'ର ଦାୟିତ୍ୱ ନୁହେଁ। ୧୦୯. (ହେ ବାର୍ତ୍ତାବହ!) ତୁମକୁ ଯାହା ଦୈବବାଣୀ କରାଯାଉଛି, ତାହାକୁ ମାନି ଚଳ ଏବଂ ଅଲ୍ଲାହଙ୍କର ନିଷ୍ପତ୍ତି ହେବା ପର୍ଯ୍ୟନ୍ତ ଧୈର୍ଯ୍ୟ ଧର। ସେ ସର୍ବୋତ୍ତମ ବିଚାରକ।

## ଅଧ୍ୟାୟ ୧୧, ହୁଦ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲିଫ୍ – ଲାମ୍ – ରା। ଏହା ଏଭଳି ଏକ ଗ୍ରନ୍ଥ ଯେଉଁଥିରେ ମୌଳିକ ସ୍ୱଭାବର ବାଣୀ ରହିଛି ଏବଂ ସେଗୁଡ଼ିକୁ ଜଣେ ତତ୍ତ୍ୱଜ୍ଞାନୀ ଏବଂ ସର୍ବଜ୍ଞ ସତ୍ତାଙ୍କ ଦ୍ୱାରା ବିଶଦ ଭାବରେ ବର୍ଣ୍ଣନା କରାଯାଇଛି। ୨. (ଏହା ଶିକ୍ଷା ଦିଏ) ଯେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ସେବା-ଉପାସନା କରନାହିଁ। (କୁହ) "ମୁଁ ତୁମମାନଙ୍କୁ (ନର୍କରୁ) ସାବଧାନ କରିବା ପାଇଁ ଏବଂ (ସ୍ୱର୍ଗର) ସୁସମାଚାର ଦେବା ପାଇଁ ତାଙ୍କ ଦ୍ୱାରା ନିଯୁକ୍ତ ହୋଇଛି। ୩. "ନିଜ ପାଳନକର୍ତ୍ତାଙ୍କ ନିକଟରେ କ୍ଷମାପ୍ରାର୍ଥନା କର ଏବଂ ପଶ୍ଚାତାପ କର। ତା'ହେଲେ ସେ ତୁମମାନଙ୍କୁ ନିର୍ଦ୍ଧାରିତ ସମୟ ପର୍ଯ୍ୟନ୍ତ ସଂସାର ଭୋଗ କରିବାର ଭଲ ସାଧନ ଦେବେ ଏବଂ ଯିଏ ଅଧିକ ପୁଣ୍ୟ କରିବ, ତାକୁ ଅଧିକ ପୁରସ୍କାର ଦେବେ। ଯଦି ତୁମେମାନେ ନମାନିବ, ମୋ'ର ଭୟ ହେଉଛି ଯେ ହୁଏତ ତୁମମାନେ ଏକ ଭୟଙ୍କର ବିପଦର ଦିନ ଦେଖିବ। ୪. ତୁମମାନଙ୍କୁ ଅଲ୍ଲାହଙ୍କ ପାଖକୁ ଫେରିବାକୁ ହେବ ଏବଂ ସେ ସବୁକିଛି କରିବାକୁ ସକ୍ଷମ।"

୫. ଦେଖ, ଏମାନେ ଅଲ୍ଲାହଙ୍କଠାରୁ ଲୁଚିବା ପାଇଁ କିପରି ନିଜକୁ ଘୋଡ଼ାଇ ଦେଉଛନ୍ତି। ମନେରଖ, ସେମାନେ ଚଦ୍ଦର ଦ୍ୱାରା ନିଜକୁ ଘୋଡ଼ାଇ ଦେଲେ ମଧ୍ୟ ସେମାନେ ଯାହା ଲୁଚାନ୍ତି ବା ଯାହା ପ୍ରକାଶ କରନ୍ତି, ଅଲ୍ଲାହଙ୍କୁ ସବୁ ଜଣା। ସେ ତ ମନରେ ଥିବା ଗୋପନ କଥା ଜାଣନ୍ତି।

୬. ଧରାପୃଷ୍ଠରେ ଚଳପ୍ରଚଳ କରୁଥିବା ଏଭଳି କୌଣସି ଜୀବ ନାହିଁ ଯାହାକୁ ଆହାର ଯୋଗାଇବାର ଦାୟିତ୍ୱ ଅଲ୍ଲାହ୍ ନେଇ ନାହାନ୍ତି ଏବଂ ସେ ସେମାନଙ୍କର ସ୍ଥାୟୀ ଓ ଅସ୍ଥାୟୀ ରହଣି ବିଷୟରେ ମଧ୍ୟ ଜାଣନ୍ତି। ସବୁକଥା ଏକ ସ୍ୱଷ୍ଟ ଭାବରେ ଲିଖିତ ହୋଇଥିବା ଗ୍ରନ୍ଥରେ ରହିଛି।

୭. ସେ ପୃଥିବୀ ଓ ଆକାଶମଣ୍ଡଳକୁ ଛଅ ଦିନରେ ସୃଷ୍ଟି କଲେ ଯେତେବେଳେ ତାଙ୍କର ସିଂହାସନ ଜଳ ଉପରେ ଥିଲା। ସେ ଏହି ଉଦ୍ଦେଶ୍ୟରେ ସୃଷ୍ଟି କଲେ ଯେ ତୁମମାନଙ୍କ ମଧ୍ୟରୁ କିଏ ଭଲ କର୍ମ କରୁଛି ଏହା ପରୀକ୍ଷା କରି ଦେଖିବେ। ଯଦି ତୁମେ ସେମାନଙ୍କୁ କହିବ ଯେ ମୃତ୍ୟୁ ପରେ ତୁମେମାନେ ନିଶ୍ଚୟ ଜୀବିତ ହୋଇ ଉଠିବ, ତେବେ ନାସ୍ତିକମାନେ କହିବେ ଯେ ଏହା ପରିଷ୍କାର ଯାଦୁବିଦ୍ୟା। ୮. ଯଦି କିଛି ସମୟ ପାଇଁ ଆମ୍ଭେ ସେମାନଙ୍କର ଦଣ୍ଡ ସ୍ଥଗିତ ରଖୁ, ସେମାନେ ନିଶ୍ଚୟ କହିବେ, "ଦଣ୍ଡ କ'ଣ ପାଇଁ ଅଟକିଲା?" ମନେରଖ, ଯେଉଁଦିନ ଏହାର ସମୟ ଆସିଯିବ, ସେମାନେ ଏହାକୁ ରୋକି ପାରିବେନାହିଁ ଏବଂ ଯାହାକୁ ଥଟ୍ଟା କରୁଛନ୍ତି, ତାହା ସେମାନଙ୍କୁ ଚାରିଆଡୁ ଘେରିନେବ।

୯. ଯଦି ଆମ୍ଭେ ମନୁଷ୍ୟକୁ ଆମ୍ଭ କୃପାର ସ୍ୱାଦ ଚଖାଇଦେଇ ପୁଣି ସେଥିରୁ ବଂଚିତ କରୁ, ସେ ନିରାଶ ହୋଇ କୃତଘ୍ନ ହୋଇଯାଏ। ୧୦. ଏବଂ ଯଦି ଦୁଃଖ ପରେ ଆମ୍ଭେ ତାକୁ ସୁଖର ମଜା ଚଖାଇଦେଉ, ସେ କହେ, "ମୋର ଦୁର୍ଦ୍ଦିନ ଦୂର ହେଲା।" ପୁଣି ସେ ଆନନ୍ଦରେ ଉତଫୁଲ୍ଲିତ ହୋଇ ଅହଂକାରୀ ପାଲଟିଯାଏ। ୧୧. ହଁ, ଯେଉଁମାନେ (ଉଭୟ ସୁଖ ଓ ଦୁଃଖରେ) ସଂଯମ ରକ୍ଷା କରନ୍ତି ଏବଂ ଭଲ କର୍ମ କରନ୍ତି, ସେମାନଙ୍କୁ (ଅଲ୍ଲାହଙ୍କର) କ୍ଷମା ମିଳିବ ଏବଂ ଭଲ ପୁରସ୍କାର ମଧ୍ୟ।

୧୨. (ହେ ରସୁଲ!) ଏପରି ନହେଉ ଯେ ତୁମପ୍ରତି ହେଉଥିବା ଦୈବବାଣୀରୁ ତୁମେ କିଛି ଛାଡ଼ିଦିଅ ବା ସେମାନଙ୍କର ଏହି କଥା ପାଇଁ ମନ କଷ୍ଟ

କର ଯେ ସେମାନେ କହୁଛନ୍ତି, "ଏହି ରସୁଲଙ୍କୁ କାହିଁକି ଧନର ଭଣ୍ଡାର ଦେଇ ପଠାଯାଇ ନାହିଁ କିମ୍ବା ତାଙ୍କ ସହିତ କାହିଁକି କୌଣସି ଦେବଦୂତ ଆସିନାହାନ୍ତି ?" କେବଳ ସାବଧାନ କରିଦେବା ତୁମର ଦାୟିତ୍ୱ ଏବଂ ଅବଶିଷ୍ଟ ଦାୟିତ୍ୱ ଅଲ୍ଲାହଙ୍କର । ୧୩. କିମ୍ବା କ'ଣ ଏମାନେ କହୁଛନ୍ତି ଯେ ବାର୍ତ୍ତାବହ ନିଜେ ଏହି ଗ୍ରନ୍ଥ ରଚନା କରିଛନ୍ତି ? ତୁମେ କୁହ, "ଯଦି ତୁମେମାନେ ସତ୍ୟବାଦୀ, ତେବେ ଏହାରି ଅଧ୍ୟାୟ ପରି ଦଶଟି ଅଧ୍ୟାୟ ରଚନା କରି ଆଣ ଏବଂ ଅଲ୍ଲାହଙ୍କ ବ୍ୟତୀତ ଯାହାକୁ ଚାହଁ (ସହାୟତା ପାଇଁ) ଡାକିନିଅ ।" ୧୪. ପୁଣି ଯଦି ସେମାନେ ତୁମକୁ ଏହାର ଉତ୍ତର ନଦିଅନ୍ତି, ତେବେ ଜାଣିରଖ ଯେ ଏହି କୁରଆନ୍ ଅଲ୍ଲାହଙ୍କ ଜ୍ଞାନରୁ ପ୍ରକଟ ହୋଇଛି ଏବଂ ଏହା (ମଧ୍ୟ ଜାଣିରଖ) ଯେ ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହାନ୍ତି । କ'ଣ ଏବେ ମଧ୍ୟ ତୁମେମାନେ ମୁସଲିମ୍ (ଅର୍ଥାତ୍ ଆଜ୍ଞାକାରୀ) ହେବନାହିଁ ?

୧୫. ଯେଉଁମାନେ ପାର୍ଥିବ ଜୀବନ ଓ ଏହାର ଚାକଚକ୍ୟ ଚାହାନ୍ତି, ଆମ୍ଭେ ସେମାନଙ୍କୁ ସେମାନଙ୍କ (ଭଲ) କର୍ମର ଫଳ ଏହି ସଂସାରରେ ଦେଇଦେବୁ ଏବଂ ସେମାନଙ୍କ ପ୍ରାପ୍ୟରୁ କିଛି କମ୍ କରାଯିବ ନାହିଁ । ୧୬. ଏହି ଲୋକମାନଙ୍କ ପାଇଁ ପରଲୋକରେ କେବଳ ନର୍କର ନିଆଁ ବ୍ୟତୀତ ଆଉ କିଛି ନାହିଁ । ସେମାନେ ଏଠାରେ ଯାହା କର୍ମ କଲେ, ସବୁ ନଷ୍ଟ ହୋଇଯିବ ଏବଂ ସେମାନଙ୍କର କର୍ମଗୁଡ଼ିକ ବୃଥା ହୋଇଯିବ ।

୧୭. କ'ଣ କେହି ଏଭଳି ଲୋକଙ୍କ ସହିତ ସମାନ ହୋଇପାରେ ଯେଉଁମାନେ ଈଶ୍ୱରଙ୍କ ପାଖରୁ ଆସିଥିବା ପ୍ରମାଣକୁ (ଅର୍ଥାତ୍ କୁରଆନକୁ) ଗ୍ରହଣ କରିଛନ୍ତି ଏବଂ ତାଙ୍କ ତରଫରୁ ଆସିଥିବା ଜଣେ ସାକ୍ଷୀ ମଧ୍ୟ ଏହାର ଶିକ୍ଷା ଦେଉଛନ୍ତି ? ଏହା ପୂର୍ବରୁ ମାର୍ଗଦର୍ଶନ ପାଇଁ ତାଙ୍କର କରୁଣା ସ୍ୱରୂପ ମୁ'ସାଙ୍କ ଗ୍ରନ୍ଥ ମଧ୍ୟ ଆସିଥିଲା । ଏହି ଲୋକମାନେ ଏଥିରେ ବିଶ୍ୱାସ କରନ୍ତି ମାତ୍ର ସେମାନଙ୍କ ମଧ୍ୟରୁ ଯେଉଁମାନେ ଏହାକୁ ନମାନିବେ, ନର୍କ ସେମାନଙ୍କର ଘର ହେବ । ତେଣୁ ତୁମେ ଏଥିରେ ସନ୍ଦେହ କରନାହିଁ । ଏହି ସତ୍ୟ ତୁମ ଈଶ୍ୱରଙ୍କଠାରୁ ଆସିଛି, ମାତ୍ର ଅଧିକାଂଶ ଲୋକ ଏହା ବିଶ୍ୱାସ କରନ୍ତିନାହିଁ ।

୧୮. ତା'ଠାରୁ ବଡ଼ ପାପୀ ଆଉ କିଏ ହେବ ଯିଏ ଅଲ୍ଲାହଙ୍କ ନାଁରେ ମିଥ୍ୟା ଗଢ଼େ ? ଏହି ଲୋକମାନଙ୍କୁ ଅଲ୍ଲାହଙ୍କ ସାମନାରେ ହାଜର କରାଯିବ ଏବଂ ସାକ୍ଷୀମାନେ କହିବେ ଯେ ଏମାନେ ଅଲ୍ଲାହଙ୍କ ନାଁରେ ମିଥ୍ୟା ଗଢ଼ିଥିଲେ । ଶୁଣିନିଅ, ଏଭଳି ପାପିଷ୍ଠମାନଙ୍କୁ ଅଲ୍ଲାହଙ୍କ ଧିକ୍କାର, ୧୯. ଯେଉଁମାନେ ଅଲ୍ଲାହଙ୍କ ମାର୍ଗରେ ବାଧା ଦିଅନ୍ତି, ସେଥିରେ ଦୋଷ ବାହାର କରନ୍ତି, ଏହିମାନେ ପରଲୋକକୁ ଅସ୍ୱୀକାର କରନ୍ତି । ୨୦. ସେମାନେ ପୃଥିବୀରେ ଅଲ୍ଲାହଙ୍କୁ ନିରୂପାୟ କରି ପାରିବେନାହିଁ କିମ୍ବା ଅଲ୍ଲାହଙ୍କ ବ୍ୟତୀତ ସେମାନଙ୍କର କେହି ଆଶ୍ରୟଦାତା ନାହାନ୍ତି । ସେମାନଙ୍କୁ ଦୁଇଗୁଣ ଦଣ୍ଡ ମିଳିବ । ସେମାନେ କିଛି ଶୁଣୁଥିଲେ ନା କିଛି ଦେଖୁଥିଲେ । ୨୧. ଏହି ଲୋକମାନେ ନିଜର ସର୍ବନାଶ କଲେ ଏବଂ ଯେଉଁ ମିଥ୍ୟା ଉପାସ୍ୟମାନଙ୍କୁ ଏମାନେ ଗଢ଼ିଥିଲେ, ସେମାନେ ଅନ୍ତର୍ଦ୍ଧାନ ହୋଇଯିବେ । ୨୨. ଏଥିରେ ସନ୍ଦେହ ନାହିଁ ଯେ ଏମାନେ ପରଲୋକରେ ସବୁଠାରୁ ବେଶୀ କ୍ଷତିଗ୍ରସ୍ତ ହେବେ । ୨୩. (ଅନ୍ୟ ପକ୍ଷରେ) ଯେଉଁମାନେ ବିଶ୍ୱାସ କଲେ, ସତ୍ ଆଚରଣ କଲେ ଏବଂ ନିଜ ଈଶ୍ୱରଙ୍କ ଆଗରେ ନଇଁଗଲେ, ସେମାନେ ସ୍ୱର୍ଗବାସୀ ହେବେ ଏବଂ ସେଠାରେ ସର୍ବଦା ରହିବେ । ୨୪. ଏହି ଦୁଇ ପ୍ରକାରର ଲୋକଙ୍କର ଉଦାହରଣ ହେଉଛି ଯେମିତି ଜଣେ ଲୋକ ଅନ୍ଧ ଓ ବଧିର ଏବଂ ଅନ୍ୟ ଜଣକ ଦେଖିବା ଓ ଶୁଣିବାକୁ ସମର୍ଥ । କ'ଣ ଉଭୟ ବ୍ୟକ୍ତି ସମାନ ହୋଇପାରନ୍ତି ? ତଥାପି କ'ଣ ତୁମେମାନେ ଧ୍ୟାନ ଦେବନାହିଁ ?

୨୫. ଆମ୍ଭେ ନୂହଙ୍କୁ (ବାର୍ତ୍ତାବହ କରି) ତାଙ୍କ ସଂପ୍ରଦାୟ ପାଖକୁ ପଠାଇଲୁ । ସେ କହିଲେ, "ମୁଁ ତୁମମାନଙ୍କୁ ପରିଷ୍କାର ଭାବରେ ସାବଧାନ କରିବାକୁ ଆସିଛି, ୨୬. ଯେ ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ ଆଉ କାହାରି ଉପାସନା କରନାହିଁ । ଅନ୍ୟଥା ମୋର ଭୟ ହେଉଛି ଯେ ହୁଏତ ଦିନେ ତୁମମାନଙ୍କ ଉପରେ ଭୟଙ୍କର ବିପଦ ପଡ଼ିବ ।" ୨୭. ତାଙ୍କ ସଂପ୍ରଦାୟର ଅଧର୍ମୀ ମୁଖିଆମାନେ କହିଲେ, "ଆମେ ଦେଖୁଛୁ ଯେ ତୁମେ ଆମମାନଙ୍କ ପରି ଜଣେ ମଣିଷ ଏବଂ ଏହା ମଧ୍ୟ ଦେଖୁଛୁ ଯେ ଆମ ମଧ୍ୟରେ ଥିବା ନୀଚ ଶ୍ରେଣୀର ଲୋକମାନେ କିଛି ନବୁଝି ତୁମ କଥା ମାନୁଛନ୍ତି । ତୁମେ କୌଣସି ଗୁଣରେ ଆମଠାରୁ ଶ୍ରେଷ୍ଠ ବୋଲି ଆମେ

ଦେଖୁନାହୁଁ ବରଂ ଆମର ମନେହୁଏ ଯେ ତୁମେ ଜଣେ ମିଥ୍ୟାବାଦୀ।” ୨୮. (ନୁହ୍) ଉତ୍ତର ଦେଲେ, “ଭାଇମାନେ! ଦେଖ, ମୋ’ ପାଖରେ ମୋ’ ଈଶ୍ୱରଙ୍କଠାରୁ ଆସିଥିବା ସ୍ୱଷ୍ଟ ପ୍ରମାଣ ଅଛି ଏବଂ ସେ ମୋ’ ପ୍ରତି ବିଶେଷ କୃପା କରିଛନ୍ତି। ଯଦି ତୁମମାନଙ୍କୁ ଏହା ଦେଖାଯାଉ ନାହିଁ ତେବେ କ’ଣ ମୁଁ ତୁମମାନଙ୍କୁ ତୁମମାନଙ୍କ ଇଚ୍ଛା ବିରୁଦ୍ଧରେ (ମାନିବା ପାଇଁ) ବାଧ୍ୟ କରି ପାରିବି? ୨୯. ଭାଇମାନେ! ମୁଁ ତୁମମାନଙ୍କଠାରୁ ଏଥିପାଇଁ କିଛି ଧନ ମାଗୁନାହିଁ। ଏହାର ଫଳ ମୋତେ କେବଳ ଅଲ୍ଲାହ୍ ଦେବେ। ଯେଉଁମାନେ (ମୋତେ) ବିଶ୍ୱାସ କରିଛନ୍ତି ମୁଁ ସେମାନଙ୍କୁ ମୋ’ଠାରୁ ଦୂରେଇ ଦେଇ ପାରିବିନାହିଁ। ସେମାନେ ନିଶ୍ଚୟ (ଦିନେ) ସେମାନଙ୍କ ଈଶ୍ୱରଙ୍କ ସହିତ ସାକ୍ଷାତ କରିବେ, ମାତ୍ର ମୁଁ ଦେଖୁଛି ଯେ ତୁମେମାନେ ମୂର୍ଖତାପୂର୍ଣ୍ଣ କାର୍ଯ୍ୟ କରୁଛ। ୩୦. ଭାଇମାନେ! ଯଦି ମୁଁ ସେମାନଙ୍କୁ ଦୂରେଇ ଦିଏ, ତେବେ ମୋତେ ଅଲ୍ଲାହଙ୍କଠାରୁ କିଏ ରକ୍ଷା କରି ପାରିବ? ତୁମେମାନେ କାହିଁକି ଏହା ବୁଝୁନାହଁ? ୩୧. ମୁଁ ତୁମମାନଙ୍କୁ ଏହା କହୁନାହିଁ ଯେ ମୋ’ ପାଖରେ ଅଲ୍ଲାହଙ୍କର ଭଣ୍ଡାର ଅଛି ବା ମୁଁ ଅଦୃଷ୍ଟ କଥା ଜାଣେ ବା କିମ୍ବା ଏହା କହୁନାହିଁ ଯେ ମୁଁ ଜଣେ ଦେବଦୂତ। ଯେଉଁମାନଙ୍କୁ ତୁମେମାନେ ହୀନ ଦୃଷ୍ଟିରେ ଦେଖୁଛ, ଅଲ୍ଲାହ୍ ଯେ ସେମାନଙ୍କର ମଙ୍ଗଳ କରିବେନାହିଁ ଏହା ମଧ୍ୟ ମୁଁ କହି ପାରିବିନାହିଁ। ସେମାନଙ୍କ ମନରେ ଯାହା ଅଛି ଅଲ୍ଲାହ୍ ଭଲରୂପେ ଜାଣନ୍ତି। ଯଦି ମୁଁ ଏପରି କହେ, ତେବେ ମୁଁ (ତାଙ୍କ ପାଖରେ) ଅନ୍ୟାୟୀ ରୂପେ ବିବେଚିତ ହେବି।”

୩୨. ସେମାନେ କହିଲେ, “ହେ ନୁହ! ତୁମେ ଆମମାନଙ୍କ ସହିତ ଯୁକ୍ତିତର୍କ କରିସାରିଛ ଏବଂ ଯଥେଷ୍ଟ କରିସାରିଛ। ଯଦି ତୁମେ ସତ୍ୟବାଦୀ, ତେବେ ଆମକୁ ଯେଉଁ ଦୈବୀଦଣ୍ଡର ଧମକ ଦେଉଛ ତାହା ନେଇଆସ।” ୩୩. (ନୁହ୍) ଉତ୍ତର ଦେଲେ, “ଅଲ୍ଲାହ୍ ଚାହିଁଲେ ତୁମମାନଙ୍କ ଉପରେ ବିପଦ ପଡ଼ିବ ଏବଂ ତୁମେମାନେ ତାହାକୁ ଅଟକାଇ ପାରିବନାହିଁ।” ୩୪. “ଯଦି ଅଲ୍ଲାହ୍ ତୁମମାନଙ୍କୁ ପଥଭ୍ରଷ୍ଟ କରିବାକୁ ସ୍ଥିର କରିଥିବେ, ମୁଁ ତୁମମାନଙ୍କର ମଙ୍ଗଳ ଚାହିଁଲେ ମଧ୍ୟ ତୁମମାନଙ୍କର କିଛି ଲାଭ ହେବନାହିଁ। ସେ ହିଁ ତୁମମାନଙ୍କର ପ୍ରଭୁ ଏବଂ ତୁମେମାନେ ତାଙ୍କରି ପାଖକୁ ଫେରିବ।”

୩୫. କ'ଣ ଏମାନେ କହୁଛନ୍ତି ଯେ ତୁମେ ନିଜେ ଏହି ଗ୍ରନ୍ଥ ରଚନା କରି ଦେଇଛ ? କହିଦିଅ, "ଯଦି ମୁଁ ଏହାକୁ ରଚନା କରିଥିବି, ତେବେ ମୋ' ପାପ ପାଇଁ ମୁଁ ଦାୟୀ ରହିବି ଏବଂ ଯେଉଁ ପାପ ତୁମେମାନେ କରୁଛ, ସେଥିପାଇଁ ମୁଁ ଦାୟୀ ହେବିନାହିଁ ।"

୩୬. ନୁହଙ୍କୁ ଦୈବବାଣୀ କରାଗଲା, "ଏବେ ତୁମ ସଂପ୍ରଦାୟର ଯେଉଁ ଲୋକମାନେ (ତୁମକୁ) ମାନି ନେଇଛନ୍ତି, ସେମାନଙ୍କ ବ୍ୟତୀତ ଆଉ କେହି ମାନିବେ ନାହିଁ । ତେଣୁ, ତୁମେ ସେମାନଙ୍କ ଆଚରଣ ଯୋଗୁଁ ଦୁଃଖ କରନାହିଁ । ୩୭. ଆମ୍ଭର ଦୈବବାଣୀ ଅନୁସାରେ ଆମ୍ଭ ସାମନାରେ ଗୋଟିଏ ନୌକା ତିଆରି କର ଏବଂ ପାପୀମାନଙ୍କର ପକ୍ଷ ନେଇ ମୋତେ କିଛି କୁହନା । ସେମାନେ ନିଶ୍ଚୟ ଜଳମଗ୍ନ ହେବେ ।" ୩୮. ତେଣୁ, ସେ ନୌକା ତିଆରି କରିବା ଆରମ୍ଭ କଲେ । ଯେତେବେଳେ ତାଙ୍କ ସଂପ୍ରଦାୟର ମୁଖିଆମାନେ ସେହି ବାଟ ଦେଇ ଯାଆନ୍ତି, ତାଙ୍କ ସହିତ ଥଟ୍ଟା କରନ୍ତି । ସେ ଉତ୍ତର ଦିଅନ୍ତି, "ଆଜି ଯେମିତି ତୁମେମାନେ ଆମ ସହିତ ଥଟ୍ଟା କରୁଛ, ଆମେ ମଧ୍ୟ (ଦିନେ) ତୁମମାନଙ୍କ ସହିତ ଥଟ୍ଟା କରିବୁ । ୩୯. ତୁମେମାନେ ଶୀଘ୍ର ଜାଣିଯିବ ଯେ କିଏ ଦଣ୍ଡିତ ଓ ଅପମାନିତ ହେବ ଏବଂ କିଏ ଅନନ୍ତକାଳ ପାଇଁ ଶାସ୍ତି ଭୋଗିବ ।"

୪୦. ପୁଣି ଯେତେବେଳେ ଆମ୍ଭେ ନିର୍ଦ୍ଦେଶ ଦେଲୁ ଏବଂ ଚୁଲି ମଧ୍ୟରୁ ଜଳ ଉଛୁଳିବାକୁ ଲାଗିଲା, ଆମ୍ଭେ କହିଲୁ, "ପ୍ରତ୍ୟେକ ପ୍ରକାରର ପ୍ରାଣୀ ମଧ୍ୟରୁ ଗୋଟିଏ ଯୋଡ଼ା (ଅଣ୍ଡିରା ଓ ମାଈ) ନେଇ ନୌକା ମଧ୍ୟରେ ରଖ ଏବଂ ନିଜ ପରିବାରର ଲୋକଙ୍କୁ ମଧ୍ୟ ନେଇଆସ ଏବଂ ସେମାନଙ୍କୁ ଛାଡ଼ିଦିଅ ଯେଉଁମାନଙ୍କ ବିଷୟରେ (ଆମ୍ଭର) ନିଷ୍ପତ୍ତି ହୋଇସାରିଛି (ଯେ ସେମାନେ ଜଳମଗ୍ନ ହେବେ) । ଯେଉଁମାନେ ତୁମକୁ ବିଶ୍ୱାସ କରିଛନ୍ତି, ସେମାନଙ୍କୁ ମଧ୍ୟ ସଙ୍ଗରେ ରଖ ।" ଖୁବ୍ ଅଳ୍ପ ଲୋକ ତାଙ୍କୁ ବିଶ୍ୱାସ କରିଥିଲେ । ୪୧. ନୁହ ସେମାନଙ୍କୁ କହିଲେ, "ଏଥିରେ ବସିଯାଅ । ଏହା ଅଲ୍ଲାହଙ୍କ ନାମରେ ଚାଲେ ଏବଂ ଅଲ୍ଲାହଙ୍କ ନାମରେ ଅଟକିଥାଏ । ମୋ' ପ୍ରଭୁ ଅବଶ୍ୟ କ୍ଷମାଶୀଳ ଓ କରୁଣାମୟ ।" ୪୨. ନୌକାଟି ସେମାନଙ୍କୁ ନେଇ ପାହାଡ଼ ପରି ଢେଉ ମଧ୍ୟ ଦେଇ ଚାଲିବାକୁ ଲାଗିଲା ଏବଂ ନୁହ୍ କିଛି ଦୂରରେ

ଥିବା ନିଜ ପୁଅକୁ ଡାକ ପକାଇ କହିଲେ, "ହେ ପୁତ୍ର! ଆମ ସହିତ ଚାଲିଆ ଏବଂ ଅଧର୍ମୀମାନଙ୍କ ସାଙ୍ଗରେ ରହନା।" ୪୩. ସେ ଉତ୍ତର ଦେଲା, "ମୁଁ କୌଣସି ଉଚ୍ଚ ପାହାଡ଼ରେ ଆଶ୍ରୟ ନେଇ ପାଣିରୁ ରକ୍ଷା ପାଇଯିବି।" ନୁହ କହିଲେ, "ଆଜି ଅଲ୍ଲାହଙ୍କ ନିଷ୍ପତ୍ତିରୁ କେହି ରକ୍ଷା କରି ପାରିବେନାହିଁ। ହଁ, ଯାହା ପ୍ରତି ତାଙ୍କର କୃପା ହେବ, ତା' କଥା ଭିନ୍ନ।" ଏହି ସମୟରେ ଉଭୟଙ୍କ ମଧ୍ୟରେ ଗୋଟିଏ ଢ଼େଉ ମାଡ଼ିଆସିଲ ଏବଂ ସେ ବୁଡ଼ିଗଲା। ୪୪. (ଏହାପରେ) ଆଜ୍ଞା ହେଲା, "ହେ ଧରିତ୍ରୀ! ତୁ ତୋ' ଜଳ ଫେରାଇ ନେ ଏବଂ ହେ ଆକାଶ! ତୁ ରହିଯା।" ସୁତରାଂ, ଜଳସ୍ତର ଖସି ଆସିଲା ଏବଂ କଥାର ନିଷ୍ପତ୍ତି କରି ଦିଆଗଲା। ନୌକାଟି "ଜୁଦୀ" ନାମକ ପାହାଡ଼ରେ ଯାଇ ଲାଗିଲା ଏବଂ କୁହାଗଲା, "ପାପିଷ୍ଠମାନଙ୍କର ସର୍ବନାଶ ହେଉ।"

୪୫. ନୁହ୍ ନିଜ ଈଶ୍ୱରଙ୍କୁ ପ୍ରାର୍ଥନା କରି କହିଲେ, "ହେ ପ୍ରଭୁ! ମୋ' ପୁଅ ମୋ' ପରିବାରର ଲୋକ ଏବଂ ତୁମର ବଚନ ଅବଶ୍ୟ ସତ୍ୟ। ତୁମେତ ସର୍ବଶ୍ରେଷ୍ଠ ବିଚାରକ।" ୪୬. ଈଶ୍ୱର ଉତ୍ତର ଦେଲେ, "ହେ ନୁହ୍! ସେ ଆଦୌ ତୁମ ପରିବାରର ଲୋକ ନୁହେଁ। ତା' ଆଚରଣ ଭଲ ନୁହେଁ। ତେଣୁ ମୋତେ ଏମିତି କିଛି ମାଗନାହିଁ ଯାହା ବିଷୟରେ ତୁମର ଜ୍ଞାନ ନାହିଁ। ମୁଁ ତୁମକୁ ଉପଦେଶ ଦେଉଛି ଯେ ତୁମେ ନିର୍ବୋଧମାନଙ୍କ ପରି ହୁଅନା।" ୪୭. ନୁହ୍ ମିନତି କଲେ, "ହେ ଈଶ୍ୱର! ମୁଁ ତୁମର ଆଶ୍ରୟ ଭିକ୍ଷା କରୁଛି ଏବଂ ତୁମକୁ ମୁଁ ଆଉ ଏଭଳି କିଛି ମାଗିବିନାହିଁ ଯାହା ବିଷୟରେ ମୋ'ର ଜ୍ଞାନ ନାହିଁ। ଯଦି ତୁମେ ମୋତେ କ୍ଷମା ନକର ଏବଂ ମୋ' ପ୍ରତି ଦୟା ନକର, ତେବେ ମୁଁ ସର୍ବସ୍ୱାନ୍ତ ହୋଇଯିବି।" ୪୮. ଆଜ୍ଞା ହେଲା, "ଓହ୍ଲାଇ ଯାଅ। ଆମ୍ଭର ସଦିଚ୍ଛା ଓ ଆଶିର୍ବାଦ (ସବୁବେଳେ) ତୁମ ପାଇଁ ଓ ତୁମ ସାଥିମାନଙ୍କ ବଂଶଧରଙ୍କ ପାଇଁ ରହିଛି, ମାତ୍ର (ସେମାନଙ୍କ ମଧ୍ୟରେ) ଏଭଳି ଲୋକ ମଧ୍ୟ ହେବେ ଯେଉଁମାନଙ୍କୁ ଆମ୍ଭେ ସଂସାର ଭୋଗ କରିବାର ସୁଯୋଗ ଦେବୁ କିନ୍ତୁ ତା'ପରେ ସେମାନଙ୍କୁ ଆମ୍ଭର ଭୟଙ୍କର ଶାସ୍ତି ଭୋଗିବାକୁ ପଡ଼ିବ।" ୪୯. (ହେ ବାର୍ତ୍ତାବହ!) ଏହା ଅଦୃଶ୍ୟ ଜଗତର ଖବର ଯାହା ଆମ୍ଭେ ତୁମକୁ ଦୈବବାଣୀ କରୁଛୁ। ଏହା ପୂର୍ବରୁ ତୁମେ ଏକଥା ଜାଣି ନଥିଲ କିମ୍ବା ତୁମ

ସମାଜ ମଧ୍ଧ ଜାଣି ନଥିଲା । ତେଣୁ, ଧୈର୍ଯ୍ୟ ରଖ । ଅନ୍ତିମ ପରିଣାମ ନିଶ୍ଚୟ ସଦାଚାରୀ ଲୋକମାନଙ୍କ ପକ୍ଷରେ ଯିବ ।"

୫୦. ଆମ୍ଭେ ଆଦ୍ ସଂପ୍ରଦାୟ ପାଖକୁ ସେମାନଙ୍କ ଭାଇ ହୁଦ୍‌ଙ୍କୁ (ଈଶ୍ୱରଦୂତ ରୂପେ) ପଠାଇଲୁ । ସେ (ସେମାନଙ୍କୁ) କହିଲେ, "ଭାଇମାନେ ! ଅଲ୍ଲାହଙ୍କର ଉପାସନା କର । ତାଙ୍କ ବ୍ୟତୀତ ତୁମମାନଙ୍କର କେହି ଈଶ୍ୱର ନାହାନ୍ତି । ଏହି ମିଥ୍ୟା (ଈଶ୍ୱରମାନଙ୍କୁ) ତୁମେମାନେ ନିଜେ ଗଢ଼ିଛ ।" ୫୧. "ଭାଇମାନେ ! ମୁଁ ତୁମମାନଙ୍କଠାରୁ (ଉପଦେଶ ବଦଳରେ) କୌଣସି ମୂଲ୍ୟ ମାଗୁନାହିଁ । ମୋ' ପରିଶ୍ରମର ଫଳ ତ ସିଏ ଦେବେ ଯିଏ ମୋତେ ସୃଷ୍ଟି କରିଛନ୍ତି । କ'ଣ ତୁମମାନେ ବୁଝି ପାରୁନାହିଁ ? ୫୨. "ହେ ଭାଇମାନେ ! ନିଜ ପ୍ରଭୁଙ୍କ ନିକଟରେ କ୍ଷମା ପ୍ରାର୍ଥନା କର ଏବଂ ଅନୁତାପ କର । ସେ ତୁମମାନଙ୍କ ପାଇଁ ଆକାଶରୁ ପ୍ରଚୁର ବର୍ଷା କରିବେ ଏବଂ ତୁମମାନଙ୍କୁ ଅଧିକ ଶକ୍ତିଶାଳୀ କରିବେ । ତୁମେମାନେ ଅପରାଧୀଙ୍କ ପରି ମୁହଁ ଫେରାଇ ନିଅନା ।"

୫୩. ସେମାନେ ଉତ୍ତର ଦେଲେ, "ହେ ହୁଦ୍ ! ତୁମେ ଆମକୁ କୌଣସି ସ୍ପଷ୍ଟ ପ୍ରମାଣ ଦେଇନାହଁ । କେବଳ ତୁମ କଥାରେ ପଡ଼ି ଆମେ ନିଜର ଦେବାଦେବୀଙ୍କୁ ଛାଡ଼ି ପାରିବୁନାହିଁ ବା ତୁମ କଥା ମାନି ପାରିବୁନାହିଁ । ୫୪. ଆମେତ କହୁଛୁ ଯେ ତୁମ ଉପରେ ଆମ ଦେବାଦେବୀଙ୍କ ମଧ୍ୟରୁ କାହାରି କୋପଦୃଷ୍ଟି ପଡ଼ିଯାଇଛି ।" ହୁଦ୍ କହିଲେ, "ମୁଁ ଅଲ୍ଲାହଙ୍କୁ ଏହାର ସାକ୍ଷୀ ରଖୁଛି ଏବଂ ତୁମେମାନେ ମଧ୍ୟ ସାକ୍ଷୀ ଥାଅ ଯେ ଯେଉଁମାନଙ୍କୁ ତୁମେମାନେ ତାଙ୍କ ଈଶ୍ୱରତ୍ୱରେ ଭାଗୀଦାର କରୁଛ, ମୋ'ର ସେମାନଙ୍କ ସହିତ କିଛି ସମ୍ପର୍କ ନାହିଁ, ୫୫. କେବଳ ଅଲ୍ଲାହଙ୍କ ବ୍ୟତୀତ । ଏବେ ତୁମେମାନେ ସମସ୍ତେ ମିଶି ମୋ' ବିରୁଦ୍ଧରେ କୌଣସି ଚକ୍ରାନ୍ତ କର ଆଉ ମୋତେ ଖସିବାର ସୁଯୋଗ ଦିଅନାହିଁ । ୫୬. ମୁଁ ଅଲ୍ଲାହଙ୍କ ଉପରେ ଭରସା ରଖିଛି ଯିଏ ମୋ'ର ଈଶ୍ୱର ଏବଂ ତୁମମାନଙ୍କର ମଧ୍ୟ ଈଶ୍ୱର । ଏଭଳି କୌଣସି ପ୍ରାଣୀ ନାହିଁ ଯାହାର ଚୁଟି ତାଙ୍କ ହାତରେ ନାହିଁ । ମୋ' ପ୍ରଭୁ ସର୍ବଦା ସତ୍‌ମାର୍ଗରେ ଥାଆନ୍ତି । ୫୭. ତଥାପି ଯଦି ତୁମେମାନେ ନମାନିବ, ତେବେ (ଜାଣିରଖ) ଯେଉଁ ବାର୍ତ୍ତା ଦେଇ ତୁମମାନଙ୍କ ପାଖକୁ ମୋତେ ପଠା ଯାଇଥିଲା ତାହା

ମୁଁ ତୁମମାନଙ୍କୁ ଦେଇସାରିଛି। ଈଶ୍ୱର (ତୁମମାନଙ୍କ ସ୍ଥାନରେ) ଅନ୍ୟ ଲୋକଙ୍କୁ ନେଇ ଆସିବେ ଏବଂ ତୁମେମାନେ ତାଙ୍କର କିଛି କ୍ଷତି କରିପାରିବ ନାହିଁ। ମୋ' ଈଶ୍ୱର ପ୍ରତ୍ୟେକ କଥା ପ୍ରତି ନଜର ରଖନ୍ତି।"

୫୮. ପୁଣି ଯେତେବେଳେ ଆମ୍ଭେ (ଦୈବୀବିପତ୍ତିର) ଆଦେଶ ଦେଲୁ, ସେତେବେଳେ ନିଜ କୃପାରୁ ହୁଦ୍ ଓ ତାଙ୍କ ସହିତ ଥିବା ସଦ୍‌ବିଶ୍ୱାସୀମାନଙ୍କୁ ଉଦ୍ଧାର କରିନେଲୁ ଏବଂ ସେମାନଙ୍କୁ ଏକ ଭୟଙ୍କର ବିପଦରୁ ରକ୍ଷା କଲୁ। ୫୯. ଏମାନେ ଥିଲେ ଆଦ୍ ସଂପ୍ରଦାୟର ଲୋକ, ଯେଉଁମାନେ ସେମାନଙ୍କ ପ୍ରଭୁଙ୍କର ନିଦର୍ଶନକୁ ଅସ୍ୱୀକାର କରିଥିଲେ, ତାଙ୍କ ବାର୍ତ୍ତାବହମାନଙ୍କୁ ଅବଜ୍ଞା କରିଥିଲେ ଏବଂ ପ୍ରତ୍ୟେକ ଅବାଧ ଈଶ୍ୱରଦ୍ରୋହୀର କଥା ମାନିଥିଲେ। ୬୦. ସେମାନଙ୍କୁ ସଂସାରରେ ଧିକ୍କାର କରାଗଲା ଏବଂ ବିଚାର ଦିନ ମଧ୍ୟ କରାଯିବ। ଶୁଣ, ଆଦ୍ ସଂପ୍ରଦାୟର ଲୋକମାନେ ସେମାନଙ୍କ ପାଳନକର୍ତ୍ତାଙ୍କୁ ଅସ୍ୱୀକାର କଲେ। ଶୁଣ, ହୁଦ୍‌ଙ୍କ ସଂପ୍ରଦାୟ ଆଦ୍‌ର ସର୍ବନାଶ ହେଲା।

୬୧. ସମୁଦ୍ ସଂପ୍ରଦାୟ ନିକଟକୁ ଆମ୍ଭେ ସେମାନଙ୍କ ଭାଇ ସ୍ୱାଲେହଙ୍କୁ (ଈଶ୍ୱରଦୂତ ରୂପେ) ପଠାଇଲୁ। ସେ (ସେମାନଙ୍କୁ) କହିଲେ, "ଭାଇମାନେ! ଅଲ୍ଲାହଙ୍କର ଉପାସନା କର। ତାଙ୍କ ବ୍ୟତୀତ ତୁମମାନଙ୍କର ଅନ୍ୟ କେହି ଈଶ୍ୱର ନାହାନ୍ତି। ସେ ହିଁ ତୁମମାନଙ୍କୁ ପୃଥିବୀରୁ ସୃଷ୍ଟି କରିଛନ୍ତି ଏବଂ ସେଥିରେ ତୁମମାନଙ୍କର ରହିବା ବ୍ୟବସ୍ଥା କରିଛନ୍ତି। ତେଣୁ ତାଙ୍କ ନିକଟରେ କ୍ଷମା ପ୍ରାର୍ଥନା କର ଏବଂ ପଶ୍ଚାତାପ କର। ଈଶ୍ୱର ଅବଶ୍ୟ ତୁମମାନଙ୍କର ଅତି ନିକଟରେ ଅଛନ୍ତି ଏବଂ ସେ (ଭକ୍ତମାନଙ୍କର) ପ୍ରାର୍ଥନା ଶୁଣନ୍ତି।" ୬୨. ସେମାନେ କହିଲେ, "ହେ ସ୍ୱାଲେହ୍! ଏହା ପୂର୍ବରୁ ତୁମେ ଆମମାନଙ୍କ ମଧ୍ୟରେ ଏଭଳି ଜଣେ ବ୍ୟକ୍ତି ଥିଲ ଯାହାଠାରୁ ଆମେ ବହୁତ କିଛି ଆଶା କରିଥିଲୁ। କ'ଣ ତୁମେ ଆମକୁ ସେମାନଙ୍କର ପୂଜା-ଅର୍ଚ୍ଚନାରୁ ରୋକିବାକୁ ଚାହୁଁଛ ଯେଉଁମାନଙ୍କର ପୂଜା ଆମ ବାପଅଜା କରି ଆସିଛନ୍ତି? ପ୍ରକୃତରେ ତୁମେ ଆମକୁ ଯେଉଁ ପନ୍ଥା ଧରିବାକୁ କହୁଛ ସେଥିପ୍ରତି ଆମର ଭାରି ସନ୍ଦେହ ଅଛି। ୬୩. ସ୍ୱାଲେହ କହିଲେ, "ଭାଇମାନେ! ଦେଖ, ମୋ' ପାଖରେ ମୋ' ପ୍ରଭୁଙ୍କଠାରୁ ଆସିଥିବା ଦୃଢ଼ ପ୍ରମାଣ ଅଛି ଏବଂ ଏଥିସହିତ

ସେ ମୋ’ ଉପରେ ବିଶେଷ କରୁଣା ମଧ୍ୟ କରିଛନ୍ତି । ଏହାସତ୍ତ୍ୱେ ଯଦି ମୁଁ ତାଙ୍କୁ ଅମାନ୍ୟ କରେ, ତେବେ କିଏ ମୋତେ ତାଙ୍କଠାରୁ ରକ୍ଷା କରିବ? ତେଣୁ, ତୁମେମାନେ (ମୋ’ କର୍ତ୍ତବ୍ୟରେ ବାଧା ଦେଇ) କେବଳ ମୋ’ର କ୍ଷତି ହିଁ କରିବ ।” ୬୪. “ଭାଇମାନେ! ଦେଖ, ଏହି ମାଈ ଓଟଟି ତୁମମାନଙ୍କ ପାଇଁ ଅଲ୍ଲାହଙ୍କର ଏକ ଅଲୌକିକ ନିଦର୍ଶନ । ଏହାକୁ ଅଲ୍ଲାହଙ୍କ ଜମିରେ ଅବାଧରେ ଚରିବା ପାଇଁ ଛାଡ଼ିଦିଅ । ତାକୁ କୌଣସି ମନ୍ଦ ଉଦ୍ଦେଶ୍ୟରେ ସ୍ପର୍ଶ କରନାହିଁ, ନହେଲେ ଖୁବ୍ ଶୀଘ୍ର ତୁମମାନଙ୍କ ଉପରେ ବିପଦ ପଡ଼ିବ ।”

୬୫. କିନ୍ତୁ ସେମାନେ ତାକୁ ହତ୍ୟା କରିଦେଲେ । ତେଣୁ ସ୍ୱାଲେହ ସେମାନଙ୍କୁ କହିଲେ, “ନିଜନିଜ ଘରେ ଆଉ ତିନିଦିନ ସୁଖଭୋଗ କରିନିଅ (ଏହାପରେ ତୁମମାନଙ୍କର ସର୍ବନାଶ ହେବ) । ଏହା ଏଭଳି ଏକ ବଚନ ଯାହା କଦାପି ଅସତ୍ୟ ହେବନାହିଁ ।” ୬୬. ପୁଣି ଯେତେବେଳେ ଆମ୍ଭର ଆଜ୍ଞା ହେଲା, ଆମ୍ଭେ ନିଜ କୃପାରୁ ସ୍ୱାଲେହ୍ ଏବଂ ତାଙ୍କ ସହିତ ତାଙ୍କୁ ବିଶ୍ୱାସ କରିଥିବା ଲୋକମାନଙ୍କୁ ରକ୍ଷା କଲୁ ଏବଂ ସେଦିନର ଲାଂଛନାରୁ ସେମାନଙ୍କୁ ମୁକ୍ତି ଦେଲୁ । ତୁମ ଈଶ୍ୱର ମହାଶକ୍ତିମାନ ଏବଂ ପ୍ରବଳ ପରାକ୍ରମୀ । ୬୭. ଯେଉଁମାନେ ପାପ କରିଥିଲେ, ସେମାନେ ଏକ ପ୍ରଚଣ୍ଡ ଶବ୍ଦର ଶିକାର ହେଲେ ଏବଂ ସକାଳେ ନିଜନିଜ ଘରେ ଏମିତି ମୁହଁମାଡ଼ି ପଡ଼ିଥିଲେ, ୬୮. ସତେ ଯେପରି ସେମାନେ ସେଠି କେବେ ବସବାସ କରୁ ନଥିଲେ । ଶୁଣ, ସମୁଦ୍ ସଂପ୍ରଦାୟ ନିଜ ପ୍ରଭୁଙ୍କୁ ଅସ୍ୱୀକାର କଲା । ଶୁଣ, ସମୁଦ୍ ସଂପ୍ରଦାୟର ସର୍ବନାଶ ହେଲା ।

୬୯. ଇବ୍ରାହିମଙ୍କ ପାଖକୁ ଆମ୍ଭର ଦେବଦୂତଗଣ (ପୁତ୍ର ସନ୍ତାନ ପ୍ରାପ୍ତିର) ଶୁଭବାର୍ତ୍ତା ନେଇ ଯାଇଥିଲେ । ସେମାନେ ତାଙ୍କୁ କହିଲେ, “ତୁମର ମଂଗଳ ହେଉ” । ଇବ୍ରାହିମ ମଧ୍ୟ ଉତ୍ତର ଦେଲେ, “ତୁମମାନଙ୍କର ମଧ୍ୟ ମଂଗଳ ହେଉ” । ପୁଣି କିଛି ସମୟ ମଧ୍ୟରେ ଇବ୍ରାହିମ (ଅତିଥିମାନଙ୍କ ପାଇଁ) ଗୋଟିଏ ବାଛୁରୀର ଭଜା ମାଂସ ନେଇ ଆସିଲେ । ୭୦. ମାତ୍ର ଯେତେବେଳେ ସେ ଦେଖିଲେ ଯେ ସେମାନେ ଖାଇବା ପାଇଁ ହାତ ବଢ଼ାଉ ନାହାନ୍ତି, ସେମାନଙ୍କ ପ୍ରତି ତାଙ୍କର ସନ୍ଦେହ ହେଲା ଏବଂ ସେ ମନେମନେ ଡ଼ରିଗଲେ । ସେମାନେ ତାଙ୍କୁ କହିଲେ, “ଭୟ

କରନାହିଁ । ଆମମାନଙ୍କୁ ଲୁତ୍‌ଙ୍କ ସଂପ୍ରଦାୟର ବିନାଶ ନିମନ୍ତେ ପଠାଯାଇଛି ।" ୭୧. ଇବ୍ରାହିମଙ୍କ ପତ୍ନୀ ପାଖରେ ଠିଆ ହୋଇଥିଲେ । ଯେତେବେଳେ ଆମ୍ଭେ ତାଙ୍କୁ ଇସ୍‌ହାକ୍ ଏବଂ ଇସ୍‌ହାକଙ୍କ ପରେ ୟାକୁବଙ୍କ ଜନ୍ମର ଶୁଭସୂଚନା ଦେଲୁ, ସେ ଏହା ଶୁଣି ହସିଦେଲେ । ୭୨. ସେ କହିଲେ, "ହାୟ ମୋ' ଦୁର୍ଭାଗ୍ୟ! କ'ଣ ଏବେ ମୁଁ ସନ୍ତାନ ପ୍ରସବ କରିବି? ଅଥଚ ମୁଁ ବୃଦ୍ଧା ହୋଇଯାଇଛି ଏବଂ ମୋ'ର ସ୍ୱାମୀ ମଧ୍ୟ ବୃଦ୍ଧ? ଏହାତ ବିଚିତ୍ର କଥା!" ୭୩. ଦେବଦୂତମାନେ କହିଲେ, "କ'ଣ ତୁମେ ଅଲ୍ଲାହଙ୍କ ଶକ୍ତି ବିଷୟରେ ଆଶ୍ଚର୍ଯ୍ୟ ହେଉଛ? ହେ (ଇବ୍ରାହିମଙ୍କ) ପରିବାରବର୍ଗ! ତୁମମାନଙ୍କ ଉପରେ ଅଲ୍ଲାହଙ୍କ କରୁଣା ଓ ଆଶିର୍ବାଦ ରହିଛି । ବାସ୍ତବରେ ସେ ପ୍ରଶଂସାଯୋଗ୍ୟ ଏବଂ ଅତ୍ୟନ୍ତ ଗୌରବଶାଳୀ ।

୭୪. ପୁଣି ଯେତେବେଳେ ଇବ୍ରାହିମଙ୍କ ଭୟ ଦୂର ହେଲା ଏବଂ ତାଙ୍କୁ (ସନ୍ତାନ ପ୍ରାପ୍ତିର) ଶୁଭ ଖବର ମିଳିଗଲା, ସେ ଲୁତ୍‌ଙ୍କ ସଂପ୍ରଦାୟର ପକ୍ଷ ନେଇ ଆମ୍ଭ ସହ ଯୁକ୍ତି କରିବାକୁ ଲାଗିଲେ । ୭୫. ବାସ୍ତବରେ ଇବ୍ରାହିମ ଭାରି ସହିଷ୍ଣୁ ଓ କୋମଳମନା ଥିଲେ ଏବଂ (ସବୁବେଳେ) ଆମ୍ଭଠାରେ ଲୟ ରଖୁଥିଲେ । ୭୬. (ଆମ୍ଭେ ତାଙ୍କୁ କହିଲୁ) "ହେ ଇବ୍ରାହିମ! ସେକଥା ଛାଡ଼ିଦିଅ । (ଏବିଷୟରେ) ତୁମ ପ୍ରଭୁ ଆଦେଶ ଦେଇ ସାରିଛନ୍ତି । ଏବେ ସେମାନଙ୍କ ଉପରେ ବିପଦ ନିଶ୍ଚୟ ଆସିବ ଯାହା ଆଦୌ ଟଳିବ ନାହିଁ ।"

୭୭. ତା'ପରେ ଯେତେବେଳେ ଆମ୍ଭର ଦେବଦୂତମାନେ ଲୁତ୍‌ଙ୍କ ପାଖରେ ପହଁଚିଲେ, ସେ ସେମାନଙ୍କୁ ଦେଖି ଭାରି ବିଚଳିତ ହେଲେ ଏବଂ ନିଜକୁ ଅସହାୟ ମନେ କଲେ ଏବଂ କହିଲେ, "ଆଜି ଦିନଟି ବଡ଼ ବିପଦର ଦିନ ।" ୭୮. ତାଙ୍କ ସଂପ୍ରଦାୟର ଲୋକମାନେ ତାଙ୍କ ପାଖକୁ ଦଉଡ଼ି ଆସିଲେ । ସେମାନେ ପୂର୍ବରୁ ଦୁଷ୍କର୍ମ କରିବାରେ ଅଭ୍ୟସ୍ତ ଥିଲେ । ଲୁତ୍ ସେମାନଙ୍କୁ କହିଲେ, "ଭାଇମାନେ! ମୋର ଝିଅମାନେ ତୁମମାନଙ୍କର (ବିବାହ) ପାଇଁ ଖୁବ୍ ପବିତ୍ର । ଅଲ୍ଲାହଙ୍କୁ ଭୟ କର ଏବଂ ମୋ' ଅତିଥିମାନଙ୍କ ଆଗରେ ମୋତେ ଲଜ୍ଜିତ କରନାହିଁ । କ'ଣ ତୁମମାନଙ୍କ ଭିତରେ କେହି ଜଣେ ଭଲ ମଣିଷ ନାହିଁ?" ୭୯. ସେମାନେ କହିଲେ, "ତୁମେ ଜାଣ ଯେ ତୁମ ଝିଅମାନଙ୍କ ପ୍ରତି ଆମର କୌଣସି ଆଗ୍ରହ ନାହିଁ ଏବଂ ତୁମେ ଏହା ଭଲ ଭାବରେ ଜାଣ ଯେ ଆମେ କ'ଣ ଚାହୁଁ ।"

୮୦. ଲୁତ୍ କହିଲେ, "ତୁମମାନଙ୍କୁ ଅଟକାଇବାର ଶକ୍ତି ମୋ'ର ଥାଆନ୍ତା କି ! କିମ୍ବା ମୋତେ (କାହାରି) କୌଣସି ଦୃଢ଼ ସାହାରା ହେଲେ ମିଳନ୍ତା ?" ୮୧. ଦେବଦୂତଗଣ କହିଲେ, "ହେ ଲୁତ୍! ଆମେମାନେ ତୁମ ପ୍ରଭୁଙ୍କ ଦ୍ୱାରା ପଠା ଯାଇଥିବା ଦେବଦୂତ । ଏମାନେ ତୁମ ପାଖରେ ଆଦୌ ପହଁଚି ପାରିବେନାହିଁ । ତେଣୁ, ନିଜ ପରିବାରକୁ ନେଇ ରାତି ଥାଉଥାଉ ଏଠାରୁ ବାହାରିଯାଅ । ତୁମମାନଙ୍କ ମଧ୍ୟରୁ କେହି ପଛକୁ ଫେରି ନଦେଖୁ । ତୁମ ପତ୍ନୀ ତୁମ ସହିତ ଯିବନାହିଁ । ତା' ଉପରେ ସେହି ବିପଦ ପଡ଼ିବ ଯାହା ସେମାନଙ୍କ ଉପରେ ପଡ଼ିବ । ସେମାନଙ୍କ ବିନାଶ ପାଇଁ ସକାଳର ସମୟ ସ୍ଥିର ହୋଇଛି । ସକାଳ ହେବାକୁ ଆଉ କେତେ ବା ଡ଼େରି ?" ୮୨. ଏହାପରେ ଯେତେବେଳେ ଆମ୍ଭ ନିଷ୍ପତ୍ତିର ସମୟ ଆସିଲା, ଆମ୍ଭେ ସେହି ବସ୍ତିକୁ ଓଲଟାଇ ଉପର-ତଳ କରିଦେଲୁ ଏବଂ ତାହା ଉପରେ ତୁହାକୁ ତୁହା ଗୋଡ଼ି-ପଥର ବୃଷ୍ଟି କଲୁ । ୮୩. ଯାହା (ଦୁଷ୍ଟମାନଙ୍କ ବିନାଶ ପାଇଁ) ତୁମ ପ୍ରଭୁଙ୍କ ଦ୍ୱାରା ଚିହ୍ନିତ କରା ଯାଇଥିଲା ଏବଂ ସେହି ସ୍ଥାନ (ମକ୍କାର) ଦୁରାଚାରୀ ଲୋକମାନଙ୍କଠାରୁ ବେଶୀ ଦୂର ନୁହେଁ ।

୮୪. ସେହିପରି ଆମ୍ଭେ ମଦୟନର ଲୋକମାନଙ୍କ ପାଖକୁ ସେମାନଙ୍କ ଭାଇ ଶୋଏବଙ୍କୁ ପଠାଇଲୁ । ସେ ସେମାନଙ୍କୁ କହିଲେ, "ଭାଇମାନେ ! ଅଲ୍ଲାହଙ୍କର ଉପାସନା କର । ତାଙ୍କ ବ୍ୟତୀତ ତୁମମାନଙ୍କର କେହି ଈଶ୍ୱର ନାହାନ୍ତି ଏବଂ ମାପ-ଓଜନରେ ଠକନାହିଁ । ମୁଁ ଦେଖୁଛି ଯେ ବର୍ତ୍ତମାନ ତୁମେମାନେ ସୁଖରେ ଅଛ, କିନ୍ତୁ ମୋତେ ଭୟ ଲାଗୁଛି ଯେ ହୁଏତ ଦିନେ ଏକ ଭୟଙ୍କର ବିପଦ ତୁମମାନଙ୍କୁ ଘେରିନେବ । ୮୫. ହେ ଭାଇମାନେ ! ମାପ ଓ ଓଜନ ଠିକ୍ ଭାବରେ କର ଏବଂ ଲୋକମାନଙ୍କୁ ସେମାନଙ୍କର ପ୍ରାପ୍ୟରୁ କମ୍ ଦିଅନାହିଁ ଏବଂ ଦୁର୍ନୀତି କରି ଦେଶରେ ଅଶାନ୍ତି ସୃଷ୍ଟି କରନାହିଁ । ୮୬. (ଅନ୍ୟର ପ୍ରାପ୍ୟ ଦେଲା ପରେ) ଅଲ୍ଲାହଙ୍କ କୃପାରୁ ଯାହା ବଳକା ରହେ, ତାହାହିଁ ତୁମମାନଙ୍କ ପାଇଁ ଭଲ, ଯଦି ତୁମେମାନେ ପ୍ରକୃତରେ ସଦ୍‌ବିଶ୍ୱାସୀ । ମୁଁ ତୁମମାନଙ୍କୁ ଜଗିବା ପାଇଁ ନିଯୁକ୍ତ ହୋଇନାହିଁ ।"

୮୭. ସେମାନେ କହିଲେ, "ହେ ଶୋଏବ ! କ'ଣ ତୁମର ନମାଜ ତୁମକୁ ଏହି ଶିକ୍ଷା ଦିଏ ଯେ ଆମ ବାପଅଜା ଯେଉଁମାନଙ୍କର ପୂଜା କରି ଆସିଛନ୍ତି, ସେମାନଙ୍କୁ ଆମେ ଛାଡ଼ିଦେବୁ ଏବଂ ନିଜ ଧନ ମଧ୍ୟ ଆମେ ନିଜ ଇଚ୍ଛାରେ ଭୋଗ

କରି ପାରିବୁନାହିଁ? ତୁମେ ହିଁ ଜଣେ ଉଦାରମନା ସାଧୁ ପୁରୁଷ!" ୮୮. ଶୋଏବ୍ କହିଲେ, "ଭାଇମାନେ! ଦେଖ, ମୋ' ପାଖରେ ମୋ' ପ୍ରଭୁଙ୍କ ଦ୍ୱାରା ପଠା ଯାଇଥିବା ଦୃଢ଼ ପ୍ରମାଣ ଅଛି ଏବଂ ସେ ମୋତେ ଭଲ ଆହାର ମଧ୍ୟ ଦେଉଛନ୍ତି (ତେବେ ମୁଁ କାହିଁକି ଅସତ୍ ପନ୍ଥା ଧରିବି?) ଯେଉଁ କର୍ମ କରିବାକୁ ମୁଁ ତୁମମାନଙ୍କୁ ବାରଣ କରୁଛି, ସେହି କର୍ମ ନିଜେ କରିବାକୁ ମୁଁ ଚାହେଁନା। ମୁଁ କେବଳ ସାଧ୍ୟମତେ ସଂସ୍କାର ଆଣିବାକୁ ଚାହୁଁଛି ଏବଂ ମୁଁ ଏହା କେବଳ ଅଲ୍ଲାହଙ୍କର ସହାୟତାରୁ କରିପାରିବି। ତାଙ୍କରି ଉପରେ ମୁଁ ଭରସା କରେ ଏବଂ ତାଙ୍କରି କଥା ମାନିଥାଏ। ୮୯. ହେ ଭାଇମାନେ! ମୋ' ସହିତ ଶତ୍ରୁତା କରିବା ଯୋଗୁଁ ତୁମମାନଙ୍କ ଉପରେ ମଧ୍ୟ ସେହିପରି ବିପଦ ନଆସୁ, ଯେପରି (ଈଶ୍ୱରଦୂତ) ନୁହ, ହୁଦ୍ ବା ସ୍ୱାଲେହଙ୍କ ସଂପ୍ରଦାୟ ଉପରେ ଆସିଥିଲା ଏବଂ ଲୁତ୍ ସଂପ୍ରଦାୟର ବସ୍ତି ତ ତୁମମାନଙ୍କଠାରୁ ବେଶୀ ଦୂର ନୁହେଁ। ୯୦. ନିଜ ପାଳନକର୍ତ୍ତାଙ୍କଠାରେ କ୍ଷମା ପ୍ରାର୍ଥନା କର ଏବଂ ତାଙ୍କ ପାଖରେ ପଶ୍ଚାତାପ କର। ଈଶ୍ୱର ଅତ୍ୟନ୍ତ କରୁଣାମୟ ଏବଂ ଭକ୍ତବତ୍ସଳ।"

୯୧. ସେମାନେ କହିଲେ, "ହେ ଶୋଏବ! ତୁମର ଅଧିକାଂଶ କଥା ଆମେ ବୁଝି ପାରୁନାହୁଁ ଆଉ ଆମେ ଦେଖୁଛୁ ଯେ ଆମମାନଙ୍କ ଭିତରେ ତୁମେ ଜଣେ ଦୁର୍ବଳ ଲୋକ। ଯଦି ତୁମର କୁଟୁମ୍ବ ନଥାଆନ୍ତେ, ତେବେ ଆମେ ପଥର ମାରି ତୁମର ପ୍ରାଣ ନେଇ ଯାଆନ୍ତୁ। ତୁମେ ଆମକୁ ବଳେଇ ଯାଆନ୍ତନାହିଁ।" ୯୨. ଶୋଏବ୍ କହିଲେ, "ଭାଇମାନେ! ତୁମମାନଙ୍କ ଦୃଷ୍ଟିରେ ମୋ' କୁଟୁମ୍ବର ମହତ୍ତ୍ୱ କ'ଣ ଅଲ୍ଲାହଙ୍କ ଅପେକ୍ଷା ଅଧିକ? ଏବଂ କ'ଣ ଏଇଥିପାଇଁ ତୁମେମାନେ ଅଲ୍ଲାହଙ୍କୁ ଉପେକ୍ଷା କଲ? ଜାଣିରଖ, ତୁମମାନଙ୍କର ସବୁ କାର୍ଯ୍ୟକଳାପଗୁଡ଼ିକ ମୋ' ପ୍ରଭୁଙ୍କ ନିୟନ୍ତ୍ରଣରେ ରହିଛି।" ୯୩. "ଭାଇମାନେ! ତୁମେମାନେ ନିଜ ବାଟରେ କର୍ମ କର ଏବଂ ମୁଁ ମୋ' ବାଟରେ କରୁଛି। ଖୁବଶୀଘ୍ର ତୁମେମାନେ ଜାଣିଯିବ ଯେ କିଏ ଅପମାନଜନକ ଶାସ୍ତି ଭୋଗିବ ଆଉ କିଏ ମିଥ୍ୟାବାଦୀ। ତୁମେମାନେ ଅପେକ୍ଷା କର ଏବଂ ତୁମମାନଙ୍କ ସହିତ ମୁଁ ମଧ୍ୟ ଅପେକ୍ଷା କରୁଛି।" ୯୪. ଯେତେବେଳେ ଆମ୍ଭର ଆଜ୍ଞା ହେଲା, ଆମ୍ଭେ ନିଜ କୃପାରୁ ଶୋଏବ ଓ ତାଙ୍କ ସହିତ ଥିବା ସଦ୍‌ବିଶ୍ୱାସୀମାନଙ୍କୁ ରକ୍ଷା କଲୁ। ପାପୀମାନେ ଏକ ପ୍ରଚଣ୍ଡ ଶବ୍ଦର ଶିକାର ହୋଇଗଲେ ଏବଂ ନିଜନିଜ ଘରେ ମୁହଁମାଡ଼ି ପଡ଼ି ରହିଲେ, ୯୫. ସତେଯେପରି

ସେମାନେ କେବେ ସେଠାରେ ବସବାସ କରୁ ନଥିଲେ । ମନେରଖ, ମଦୟନବାସୀଙ୍କର ସେମିତି ସର୍ବନାଶ ହେଲା ଯେମିତି ସମୁଦ ସଂପ୍ରଦାୟର ହୋଇଥିଲା ।

୯୬. ଆମ୍ଭେ ମୁ'ସାଙ୍କୁ ନିଜର ବାଣୀ ଓ ସ୍ପଷ୍ଟ ପ୍ରମାଣ ଦେଇ ପଠାଇଥିଲୁ, ୯୭. ଫିରଔନ ଏବଂ ତା' ସାମନ୍ତମାନଙ୍କ ନିକଟକୁ, କିନ୍ତୁ ସେମାନେ ଫିରଔନ କଥା ହିଁ ମାନିଲେ ଯଦିଓ ଫିରଔନର କୌଣସି କଥା ଠିକ୍ ନଥିଲା । ୯୮. ବିଚାର ଦିନ ସେ ନିଜ ଲୋକମାନଙ୍କ ଆଗରେ ରହିବ ଏବଂ ନିଜ ନେତୃତ୍ୱରେ ସେମାନଙ୍କୁ ନର୍କକୁ ନେଇଯିବ ଏବଂ ଯେଉଁଠାକୁ ସେମାନେ ଯିବେ, ତାହା ଭାରି କଦର୍ଯ୍ୟ ସ୍ଥାନ । ୯୯. ସଂସାରରେ ଲାଂଛନା ସେମାନଙ୍କର ପିଛା କଲା ଏବଂ ବିଚାର ଦିନ ମଧ୍ୟ ପିଛା କରିବ । ସେମାନଙ୍କୁ ଅତି କଦର୍ଯ୍ୟ ପୁରସ୍କାର ଦିଆଯିବ ।

୧୦୦. ଏହା ହେଉଛି ସେହି ଗାଁଗୁଡ଼ିକର ଇତିହାସ ଯାହା ଆମ୍ଭେ ତୁମକୁ ଶୁଣାଉଛୁ । ସେଗୁଡ଼ିକ ମଧ୍ୟରୁ କେତେକ (ଭଗ୍ନାବଶେଷ ରୂପେ) ଏବେ ମଧ୍ୟ ରହିଛି ଆଉ କେତେକ ସଂପୂର୍ଣ୍ଣ ନିଶ୍ଚିହ୍ନ ହୋଇଯାଇଛି । ୧୦୧. ଆମ୍ଭେ ସେମାନଙ୍କ ପ୍ରତି ଅନ୍ୟାୟ କରିନାହୁଁ ବରଂ ସେମାନେ ନିଜେ ନିଜ ପ୍ରତି ଅନ୍ୟାୟ କଲେ । ସେମାନେ ଅଲ୍ଲାହଙ୍କୁ ଛାଡ଼ି ଯେଉଁମାନଙ୍କୁ ଡାକୁଥିଲେ, ଅଲ୍ଲାହଙ୍କ ଆଜ୍ଞା ହେବା ବେଳେ ସେମାନେ ଏମାନଙ୍କୁ କିଛି ସାହାଯ୍ୟ କରି ପାରିଲେନାହିଁ ବରଂ ଏମାନଙ୍କର ବିପଦ ଆହୁରି ବଢ଼ାଇ ଦେଲେ ।

୧୦୨. ଯେତେବେଳେ କୌଣସି ଗାଁ ଦୁରାଚାରୀ ପାଲଟିଯାଏ, ତୁମ ଈଶ୍ୱର ସେମାନଙ୍କୁ ଏହିପରି ଦଣ୍ଡ ଦିଅନ୍ତି । ତାଙ୍କ ଦଣ୍ଡ ଭାରି ଭୟଙ୍କର ଏବଂ ଭାରି କଠୋର । ୧୦୩. ଏହି ଘଟଣାଗୁଡ଼ିକରେ ପରଲୋକର ନର୍କଦଣ୍ଡକୁ ଭୟ କରୁଥିବା ଲୋକମାନଙ୍କ ପାଇଁ ଶିକ୍ଷା ଅଛି । ତାହା ଏଭଳି ଦିନ, ଯେଉଁଦିନ ସମୁଦାୟ ମାନବଜାତିକୁ ଏକାଠି କରାଯିବ ଏବଂ ସେମାନଙ୍କୁ (ଅଲ୍ଲାହଙ୍କ ସମ୍ମୁଖରେ) ହାଜର କରାଯିବ । ୧୦୪. ଆମ୍ଭେ ଏକ ନିର୍ଦ୍ଧାରିତ ଅବଧି ପାଇଁ ଏଥିରେ ବିଳମ୍ବ କରୁଛୁ । ୧୦୫. ଯେଉଁଦିନ ଏହା ଘଟିବ, ସେଦିନ ତାଙ୍କ ବିନା ଅନୁମତିରେ କେହି ମୁହଁ ଖୋଲି ପାରିବେ ନାହିଁ । ପୁଣି (ଲୋକମାନଙ୍କ ମଧ୍ୟରୁ) କେତେକ ହତଭାଗା ହେବେ

ଏବଂ କେତେକ ଭାଗ୍ୟଶାଳୀ ହେବେ । ୧୦୬. ଯେଉଁମାନେ ହତଭାଗା, ସେମାନେ ନର୍କରେ ରହିବେ ଏବଂ ସେଠାରେ କନ୍ଦାକଟା ଓ ଚିତ୍କାର କରିବେ । ୧୦୭. ଯେପର୍ଯ୍ୟନ୍ତ ଧରିତ୍ରୀ ଓ ଆକାଶ ରହିଥିବ (ଅର୍ଥାତ୍ ଅନନ୍ତକାଳ ପର୍ଯ୍ୟନ୍ତ) ସେମାନେ ସେଠାରେ ରହିବେ । ହଁ, ଯଦି ତୁମ ପ୍ରଭୁ ଅନ୍ୟ କିଛି ଚାହାନ୍ତି, ତେବେ ଭିନ୍ନ କଥା । ତୁମ ଈଶ୍ୱର ଯାହା ଇଛା କରନ୍ତି ତାହା ଅବଶ୍ୟ କାର୍ଯ୍ୟକାରୀ କରନ୍ତି । ୧୦୮. ଏବଂ ଯେଉଁମାନେ ଭାଗ୍ୟଶାଳୀ, ସେମାନେ ସ୍ୱର୍ଗରେ ପ୍ରବେଶ କରିବେ ଏବଂ ଯେପର୍ଯ୍ୟନ୍ତ ଧରିତ୍ରୀ ଓ ଆକାଶ ରହିଥିବ, ସେମାନେ ସେଠାରେ ରହିବେ । ହଁ, ଯଦି ତୁମ ପ୍ରଭୁ ଅନ୍ୟ କିଛି ଚାହାନ୍ତି, ତେବେ ଭିନ୍ନ କଥା । ଏହା ଏଭଳି ପୁରସ୍କାର ଯାହାର ଅନ୍ତ ହେବନାହିଁ । ୧୦୯. ତେଣୁ, (ହେ ବାର୍ତ୍ତାବହ!) ଏମାନେ ଯେଉଁମାନଙ୍କର ଉପାସନା କରନ୍ତି, ସେମାନଙ୍କ ବିଷୟରେ ତୁମେ ସନ୍ଦେହରେ ରୁହନାହିଁ । ଏମାନେ ମଧ୍ୟ ସେମିତି ପୂଜା-ଅର୍ଚ୍ଚନା କରୁଛନ୍ତି ଯେମିତି ପୂର୍ବେ ଏମାନଙ୍କ ବାପଅଜା କରୁଥିଲେ । ଆମ୍ଭେ ସେମାନଙ୍କୁ ସେମାନଙ୍କର ସଂପୂର୍ଣ୍ଣ ଭାଗ ଦେବୁ ଏବଂ କିଛି ଊଣା କରିବୁ ନାହିଁ ।

୧୧୦. ଆମ୍ଭେ ମୁ'ସାଙ୍କୁ ମଧ୍ୟ ଗ୍ରନ୍ଥ ଦେଇଥିଲୁ ଏବଂ ସେଥିରେ ମଧ୍ୟ ମତଭେଦ ହୋଇଥିଲା । ଯଦି ତୁମ ଈଶ୍ୱରଙ୍କ ଦ୍ୱାରା ଗୋଟିଏ କଥା ପୂର୍ବରୁ ସ୍ଥିର ହୋଇ ନଥାଆନ୍ତା, ତେବେ ସେମାନଙ୍କର ନିଷ୍ପତ୍ତି ନିଶ୍ଚୟ କରି ଦିଆଯାଆନ୍ତା । ଏବିଷୟରେ ସେମାନେ ଘୋର ସନ୍ଦେହରେ ଅଛନ୍ତି । ୧୧୧. ତୁମ ପ୍ରଭୁ (ବିଚାର ଦିନ) ସମସ୍ତଙ୍କୁ ସଂପୂର୍ଣ୍ଣ କର୍ମଫଳ ଦେବେ । ସେମାନେ ଯାହା କରୁଛନ୍ତି ତାହା ସେ ଜାଣନ୍ତି । ୧୧୨. ତେଣୁ ତୁମକୁ ଯେଉଁ ଆଦେଶ ଦିଆଯାଇଛି, ସେଥିରେ ଅଟଳ ରୁହ ଏବଂ ତୁମ ସହିତ ତୁମର ସେହି ସାଥୀମାନେ ମଧ୍ୟ ଅଟଳ ରୁହନ୍ତୁ ଯେଉଁମାନେ ପଶ୍ଚାତାପ କରିଛନ୍ତି ଏବଂ ତୁମେମାନେ ସୀମା ଅତିକ୍ରମ କରନାହିଁ । ତୁମେମାନେ ଯାହା କରୁଛ, ସେ ଅବଶ୍ୟ ଦେଖୁଛନ୍ତି । ୧୧୩. ପାପୀମାନଙ୍କ ଆଗରେ ମୁଣ୍ଡ ନୁଆଁଅ ନାହିଁ, ଅନ୍ୟଥା ତୁମେମାନଙ୍କୁ (ନର୍କର) ନିଆଁ ଗ୍ରାସ କରିନେବ ଏବଂ ଅଲ୍ଲାହଙ୍କ ବ୍ୟତୀତ ତୁମମାନଙ୍କୁ କେହି ରକ୍ଷା କରି ପାରିବେନାହିଁ କିମ୍ବା ତୁମମାନଙ୍କୁ କୌଣସି ସାହାଯ୍ୟ ମିଳିବନାହିଁ ।

୧୧୪. ଦିନର ଉଭୟ ସୀମାରେ (ଅର୍ଥାତ ସକାଳେ ଓ ସନ୍ଧ୍ୟାରେ) ଏବଂ ରାତିର କିଛି ଭାଗରେ ନମାଜ ସଂପାଦନ କର। ପ୍ରକୃତରେ ଭଲ କର୍ମ, ମନ୍ଦ କର୍ମକୁ ନଷ୍ଟ କରିଦିଏ। ଏହା ସେମାନଙ୍କ ପାଇଁ ଏକ ଉପଦେଶ ଯେଉଁମାନେ ଉପଦେଶ ପ୍ରତି ଧ୍ୟାନ ଦିଅନ୍ତି। ୧୧୫. ଧୈର୍ଯ୍ୟ ଅବଲମ୍ବନ କର। ଅଲ୍ଲାହ୍ ପୁଣ୍ୟବାନ ଲୋକମାନଙ୍କର ଶ୍ରମ ବ୍ୟର୍ଥ କରିବେନାହିଁ।

୧୧୬. ତୁମ ପୂର୍ବ ସମାଜଗୁଡ଼ିକରେ ଏଭଳି ବିଚାରବନ୍ତ ଲୋକ କାହିଁକି ନରହିଲେ ଯେଉଁମାନେ ଦେଶରେ ଅଶାନ୍ତି ସୃଷ୍ଟି କରୁଥିବା ଲୋକଙ୍କୁ ସେଥିରୁ ନିବୃତ୍ତ ରଖନ୍ତେ? ଏଭଳି ଲୋକ ଖୁବ୍ ଅଳ୍ପ ଥିଲେ ଯେଉଁମାନଙ୍କୁ ଆମ୍ଭେ (ଦୈବୀବିପତ୍ତିରୁ) ରକ୍ଷା କରିଥିଲୁ। ପାପୀମାନେ ଭୋଗ ବିଳାସରେ ବୁଡ଼ିରହିଲେ ଯାହାର ପ୍ରଚୁର ସାଧନ ସେମାନଙ୍କୁ ଦିଆ ଯାଇଥିଲା। ସେମାନେ ଅପରାଧୀ ଥିଲେ। ୧୧୭. ତୁମ ପାଳନକର୍ତ୍ତା ଏମିତି ନୁହନ୍ତି ଯେ ସେହି ସହରଗୁଡ଼ିକୁ ଅନ୍ୟାୟରେ ଧ୍ୱଂସ କରିଦେବେ ଯାହାର ବାସିନ୍ଦାମାନେ ସଦାଚାରୀ।

୧୧୮. ଯଦି ତୁମ ଈଶ୍ୱର ଇଚ୍ଛା କରି ଥାଆନ୍ତେ, ସମୁଦାୟ ମାନବଜାତିକୁ ଗୋଟିଏ ଧର୍ମସଂପ୍ରଦାୟ କରି ଦେଇ ଥାଆନ୍ତେ, ମାତ୍ର (ଯେହେତୁ ସେ ସେମାନଙ୍କୁ ପରୀକ୍ଷା କରିବା ପାଇଁ ବିଚାରଗତ ସ୍ୱାଧିନତା ଦେଇଛନ୍ତି) ସେମାନେ ମତଭେଦ କରୁଥିବେ। ୧୧୯. କେବଳ ଯେଉଁମାନଙ୍କ ପ୍ରତି ତୁମ ପ୍ରଭୁ କୃପା କରିବେ ସେମାନଙ୍କ କଥା ଭିନ୍ନ। ଏଇଥିପାଇଁ ସେ ସେମାନଙ୍କୁ ସୃଷ୍ଟି କରିଛନ୍ତି। ତୁମ ଈଶ୍ୱର ଯାହା କହିଛନ୍ତି ଯେ "ମୁଁ ମାନବ ଓ ଜିନ୍, ଉଭୟଙ୍କ ଦ୍ୱାରା ନର୍କକୁ ପୂର୍ଣ୍ଣ କରିବି", ତାହା ଅବଶ୍ୟ ସତ ହେବ।

୧୨୦. ଆମ୍ଭେ ତୁମକୁ ପୂର୍ବ ବାର୍ତ୍ତାବହମାନଙ୍କର ଯେଉଁ ଘଟଣାଗୁଡ଼ିକୁ ଶୁଣାଉଛୁ ତାହା ତୁମର ମନୋବଳ ବୃଦ୍ଧି କରିବା ପାଇଁ ଶୁଣାଉଛୁ। ଏହି ଘଟଣାଗୁଡ଼ିକ ମାଧ୍ୟମରେ ତୁମ ନିକଟରେ ସତ୍ୟ ସ୍ପଷ୍ଟ ହୋଇଗଲା ଏବଂ ସଦ୍‌ବିଶ୍ୱାସୀମାନଙ୍କୁ ମଧ୍ୟ ଭଲ ଉପଦେଶ ଏବଂ ଭଲ ଶିକ୍ଷା ପ୍ରାପ୍ତ ହେଲା। ୧୨୧. ଯେଉଁମାନେ ବିଶ୍ୱାସ କରୁନାହାନ୍ତି ସେମାନଙ୍କୁ କୁହ, "ତୁମେମାନେ ତୁମ ବାଟରେ କର୍ମ କର ଏବଂ ଆମେ ଆମ ବାଟରେ କରୁଛୁ। ୧୨୨. ଏବଂ ତୁମେମାନେ ଅପେକ୍ଷା କର ଏବଂ ଆମେମାନେ ମଧ୍ୟ ଅପେକ୍ଷା କରୁଛୁ।"

୧୨୩. ପୃଥିବୀ ଓ ଆକାଶରେ ଥିବା ସବୁ ଗୁପ୍ତ ରହସ୍ୟ ଅଲ୍ଲାହ୍ ହିଁ ଜାଣନ୍ତି ଏବଂ ପ୍ରତ୍ୟେକ ବିଷୟ (ନିଷ୍ପତ୍ତି ପାଇଁ) ତାଙ୍କରି ପାଖକୁ ଯିବ । ତେଣୁ ତାଙ୍କରି ଉପାସନା କର ଏବଂ ତାଙ୍କରି ଉପରେ ଭରସା ରଖ । ତୁମେମାନେ ଯାହା କରୁଛ, ତୁମ ଈଶ୍ୱର ସେ ବିଷୟରେ ଅନଭିଜ୍ଞ ନୁହନ୍ତି ।

## ଅଧ୍ୟାୟ ୧୨, ୟୁସୁଫ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲିଫ୍ – ଲାମ – ରା । ଏଗୁଡ଼ିକ ପରିଷ୍କାର ଭାବରେ ବର୍ଣ୍ଣନା କରୁଥିବା ଗ୍ରନ୍ଥର ବାଣୀ । ୨. ଆମ୍ଭେ ଏହାକୁ ଆରବୀ ଭାଷାରେ ପଠାଇଛୁ ଯେପରିକି ତୁମେମାନେ ବୁଝିପାରିବ । ୩. (ହେ ବାର୍ତ୍ତାବହ !) ଆମ୍ଭେ ତୁମକୁ ଯେଉଁ କୁର୍‌ଆନ ଦୈବବାଣୀ କରୁଛୁ, ତାହା ମାଧ୍ୟମରେ ଆମ୍ଭେ ତୁମକୁ ଏକ ସୁନ୍ଦର ଘଟଣା ଶୁଣାଉଛୁ । ଏହା ପୂର୍ବରୁ ତୁମେ ଏବିଷୟରେ ଜାଣି ନଥିଲ ।

୪. (ଏହା ସେତେବେଳର ଘଟଣା) ଯେତେବେଳେ ୟୁସୁଫ (ଅର୍ଥାତ୍ ଯୋସେଫ୍) ତାଙ୍କ ପିତାଙ୍କୁ କହିଲେ, "ବାପା, ମୁଁ (ସ୍ୱପ୍ନରେ) ଏଗାରଟି ନକ୍ଷତ୍ର ଏବଂ ସୂର୍ଯ୍ୟ ଓ ଚନ୍ଦ୍ର ଦେଖିଲି ଏବଂ ଦେଖିଲି ଯେ ସେମାନେ ମୋତେ ପ୍ରଣାମ କରୁଛନ୍ତି ।" ୫. ତାଙ୍କ ପିତା କହିଲେ, "ପୁଅ ! ଏହି ସ୍ୱପ୍ନ କଥା ତୁମର (ସାବତ) ଭାଇମାନଙ୍କୁ କହିବନାହିଁ । ହୁଏତ ସେମାନେ ତୁମ ବିରୁଦ୍ଧରେ କୌଣସି ଚକ୍ରାନ୍ତ କରିପାରନ୍ତି । ଶଇତାନ ମଣିଷର ପରମ ଶତ୍ରୁ । ୬. ତୁମ ପାଳନକର୍ତ୍ତା ତୁମକୁ (ତାଙ୍କ କାର୍ଯ୍ୟ ପାଇଁ) ମନୋନିତ କରିବେ, କଥାର ରହସ୍ୟ ଭେଦ କରିବା (ଏବଂ ସ୍ୱପ୍ନର ଅର୍ଥ କରିବା) ଶିଖାଇବେ ଏବଂ ତୁମ ପ୍ରତି ଏବଂ ୟାକୁବଙ୍କ ବଂଶଧରମାନଙ୍କ ପ୍ରତି ତାଙ୍କର ଅନୁଗ୍ରହ ସମ୍ପୂର୍ଣ୍ଣ କରିବେ ଯେପରି ଏହାପୂର୍ବରୁ ସେ ତୁମ ପୂର୍ବଜ ଇବ୍ରାହିମ୍ ଓ ଇସ୍‌ହାକଙ୍କ ଉପରେ କରିଥିଲେ । ତୁମ ଈଶ୍ୱର ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ ।"

୭. ବାସ୍ତବରେ ୟୁସୁଫ ଓ ତାଙ୍କ ଭାଇମାନଙ୍କ ଘଟଣାରେ ଜିଜ୍ଞାସୁ ଲୋକମାନଙ୍କ ପାଇଁ ଅନେକ ନିଦର୍ଶନ ଅଛି । ୮. (ଏହା ସେତେବେଳର ଘଟଣା) ଯେତେବେଳେ ୟୁସୁଫଙ୍କ (ସାବତ) ଭାଇମାନେ (ପରସ୍ପର ମଧ୍ୟରେ) କଥାବାର୍ତ୍ତା

ହେଲେ, "ଆମେ ଏତେ ଜଣ ଥାଉଥାଉ ୟୁସୁଫ ଓ ତା' ଭାଇ ଆମ ବାପାଙ୍କର ଅଧିକ ପ୍ରିୟ। ବାପା ପ୍ରକୃତରେ ବଡ଼ ଭୁଲ କରୁଛନ୍ତି। ୯. ୟୁସୁଫଙ୍କୁ ମାରିଦିଅ ବା ଅନ୍ୟ କୌଣସି ଦେଶରେ ନେଇ ଛାଡ଼ିଦିଅ ଯାହାଫଳରେ ବାପାଙ୍କ ସମ୍ପୂର୍ଣ୍ଣ ଧ୍ୟାନ କେବଳ ତୁମମାନଙ୍କ ପ୍ରତି ରହିବ। ତା'ପରେ ପୁଣି ଭଲ ମଣିଷ ହୋଇଯାଅ।" ୧୦. ସେମାନଙ୍କ ମଧ୍ୟରୁ ଜଣେ କହିଲା, "ୟୁସୁଫଙ୍କୁ ହତ୍ୟା କରନାହିଁ, ବରଂ ଯଦି କିଛି କରିବାକୁ ଚାହଁ ତେବେ ଏମିତି କର ଯେ ତାକୁ କୌଣସି ଗଭୀର କୂଅରେ ଫୋପାଡ଼ି ଦିଅ। ହୁଏତ ଯାତ୍ରୀମାନଙ୍କ ମଧ୍ୟରୁ କେହି ତାକୁ ବାହାର କରି ନେଇଯିବ।" ୧୧. (ତେଣୁ ସେମାନେ ୟାକୁବ୍‌ଙ୍କୁ) କହିଲେ, "ବାପା! ଆପଣ ୟୁସୁଫ ବିଷୟରେ ଆମମାନଙ୍କ ଉପରେ କାହିଁକି ଭରସା କରୁନାହାନ୍ତି? ଆମେମାନେ ତ ତା'ର ହିତାକାଂକ୍ଷୀ। ୧୨. କାଲି ତାକୁ ଆମ ସହିତ ପଠାନ୍ତୁ। ସେ ଖିଆପିଆ କରୁ ଏବଂ ଟିକିଏ ଖେଳାଖେଳି କରୁ। ତା'ର ଯତ୍ନ ନେବା ପାଇଁ ଆମେ ଅଛୁ।" ୧୩. ୟାକୁବ୍ କହିଲେ, "ତୁମେମାନେ ତାକୁ ନେଇଗଲେ ମୋତେ କଷ୍ଟ ହେବ ଏବଂ ମୋତେ ଏହାର ଭୟ ମଧ୍ୟ ଅଛି ଯେ ତା' ପ୍ରତି ତୁମମାନଙ୍କର ଧ୍ୟାନ ନଥିବା ବେଳେ ତାକୁ ଗଧିଆ ଖାଇ ନଯାଉ।" ୧୪. ସେମାନେ କହିଲେ, "ଆମେ ଏତେ ଲୋକ ଥାଉଥାଉ ଯଦି ତାକୁ ଗଧିଆ ଖାଇଯାଏ ତେବେ ଆମେମାନେ ନିହାତି ଅଯୋଗ୍ୟ।"

୧୫. ପୁଣି ଯେତେବେଳେ ସେମାନେ ତାଙ୍କୁ ସାଙ୍ଗରେ ନେଇଗଲେ ଏବଂ ସ୍ଥିର କଲେ ଯେ ତାଙ୍କୁ ଗଭୀର କୂଅରେ ପକାଇ ଦେବେ, ଆମ୍ଭେ ୟୁସୁଫଙ୍କୁ ଦୈବବାଣୀ କଲୁ ଯେ (ସମୟ ଆସିବ) ଯେତେବେଳେ ତୁମେ ସେମାନଙ୍କୁ ସେମାନଙ୍କର ଏହି କୃତକର୍ମ ବିଷୟରେ ଚେତାଇବ ଏବଂ ସେମାନେ (ତୁମର ପରିଚୟ) ଜାଣି ପାରିବେନାହିଁ। ୧୬. ପୁଣି ରାତିରେ ସେମାନେ କାନ୍ଦିକାନ୍ଦି ନିଜ ପିତାଙ୍କ ପାଖରେ ପହଁଚିଲେ। ୧୭. କହିଲେ, "ବାପା! ଆମେ ପରସ୍ପର ମଧ୍ୟରେ ଦୌଡ଼ ପ୍ରତିଯୋଗିତାରେ ଲାଗିଥିଲୁ ଏବଂ ୟୁସୁଫଙ୍କୁ ଆମ ଜିନିଷପତ୍ର ପାଖରେ ବସାଇ ଦେଇଥିଲୁ। (ଏହା ମଧ୍ୟରେ) ତାକୁ ଗଧିଆ ଖାଇଗଲା। ଆମେ ଯେତେ ସତ କହିଲେ ମଧ୍ୟ ଆପଣ ଆମ କଥାରେ ବିଶ୍ୱାସ କରିବେନାହିଁ।" ୧୮. ସେମାନେ ତାଙ୍କ କୁର୍ତ୍ତାରେ କୃତ୍ରିମ ରକ୍ତ ଲଗାଇ ଆଣିଥିଲେ। (ଏହା ଦେଖି ସେମାନଙ୍କ ପିତା)

କହିଲେ, "ନା, ବରଂ ତୁମେମାନେ ନିଜ ମନରୁ ଗୋଟିଏ ଗପ ଗଢ଼ି ନେଇଛ । ଏବେ ମୋ' ପକ୍ଷରେ ଧୈର୍ଯ୍ୟ ଅବଲମ୍ବନ କରିବା ଉଚିତ । ତୁମେମାନେ ଯାହା କହୁଛ ସେବିଷୟରେ କେବଳ ଅଲ୍ଲାହଙ୍କ ସାହାଯ୍ୟ ଭିକ୍ଷା କରାଯାଇ ପାରେ ।"

୧୯. ଦଳେ ଯାତ୍ରୀ (ସେହି କୂଅ ପାଖକୁ) ଆସିଲେ ଏବଂ ସେମାନେ ଜଣେ ଲୋକକୁ ପାଣି ନେବା ପାଇଁ ପଠାଇଲେ । ସେ ଲୋକଟି କୂଅରେ ବାଲଟି ପକାଇଲା ଏବଂ (ୟୁସୁଫଙ୍କୁ ଦେଖି) ଚିତ୍କାର କଲା, "ବଢ଼ିଆ ଖବରଟିଏ ଶୁଣ ! ଏଠି ପୁଅ ପିଲାଟିଏ ଅଛି ।" ଯାତ୍ରୀଦଳ ତାଙ୍କୁ ଏକ ପଣ୍ୟଦ୍ରବ୍ୟ ରୂପେ ଲୁଚାଇ ରଖିଲେ, ମାତ୍ର ସେମାନେ ଯାହା କରୁଥିଲେ ଅଲ୍ଲାହ୍‌ଙ୍କୁ ଜଣା ଥିଲା । ୨୦. ସେମାନେ ୟୁସୁଫଙ୍କୁ ସାମାନ୍ୟ କେତୋଟି ମୁଦ୍ରା ବଦଳରେ ବିକିଦେଲେ । ତାଙ୍କ ପ୍ରତି ସେମାନଙ୍କର କୈଣସି ଆଗ୍ରହ ନଥିଲା ।

୨୧. ମିଶରର ଯେଉଁ ବ୍ୟକ୍ତି ତାଙ୍କୁ କିଣିଥିଲା, ସେ ତା' ପତ୍ନୀକୁ କହିଲା, "ତାକୁ ଭଲରେ ରଖ । ଖୁବ୍ ସମ୍ଭବ, ତା' ଦ୍ୱାରା ଆମର ଉପକାର ହେବ, ନହେଲେ ଆମେ ତାକୁ ପୋଷ୍ୟପୁତ୍ର କରିନେବା ।" ଏହିପରି ଭାବରେ ଆମ୍ଭେ ୟୁସଫଙ୍କୁ ମିଶର ଦେଶରେ ପ୍ରତିଷ୍ଠିତ କରିଥିଲୁ ଏବଂ ତାଙ୍କୁ ରହସ୍ୟ ଭେଦ କରିବାର ବିଦ୍ୟା ଶିଖାଇଥିଲୁ । ଅଲ୍ଲାହ୍ ସଂପୂର୍ଣ୍ଣ କ୍ଷମତାଶାଳୀ ଏବଂ ସେ ନିଜ ଇଚ୍ଛା ଅବଶ୍ୟ କାର୍ଯ୍ୟକାରୀ କରନ୍ତି ମାତ୍ର ଅଧିକାଂଶ ଲୋକ ଏହା ଜାଣନ୍ତି ନାହିଁ । ୨୨. ଯେତେବେଳେ ୟୁସୁଫ ପୂର୍ଣ୍ଣ ଯୌବନରେ ପାଦ ଦେଲେ, ଆମ୍ଭେ ତାଙ୍କୁ ବିଚାରଶକ୍ତି ଓ ତତ୍ତ୍ୱଜ୍ଞାନ ପ୍ରଦାନ କଲୁ । ପୁଣ୍ୟବାନ ଲୋକମାନଙ୍କୁ ଆମ୍ଭେ ଏହିପରି ପୁରସ୍କାର ଦେଇଥାଉ ।

୨୩. (ଜୁଲେଖା ନାମକ) ଯେଉଁ ମହିଳା ଘରେ ସେ ରହୁଥିଲେ, ସେ ତାଙ୍କୁ (ଦୁଷ୍କର୍ମ କରିବା ପାଇଁ) ପ୍ରଲୋଭିତ କଲା ଏବଂ (ଦିନେ) ଘରର ସବୁ କବାଟ ବନ୍ଦ କରିଦେଇ ତାଙ୍କୁ କହିଲା, "(ମୋ'ପାଖକୁ) ଆସ" । ୟୁସୁଫ୍ କହିଲେ, "ମୁଁ ଅଲ୍ଲାହଙ୍କଠାରୁ ଆଶ୍ରୟ ମାଗୁଛି । ସେ ମୋ' ମାଲିକ ଏବଂ ସେ ମୋତେ ଖୁବ ଭଲରେ ରଖିଛନ୍ତି । ଅନ୍ୟାୟ କରୁଥିବା ଲୋକମାନଙ୍କର ଆଦୌ ମଙ୍ଗଳ ହୁଏନାହିଁ ।" ୨୪. ସେ ମହିଳା ୟୁସୁଫଙ୍କୁ ପାଇବାର ସଂକଳ୍ପ କରି ସାରିଥିଲା ଏବଂ ଯଦି ୟୁସୁଫ ତାଙ୍କ ପାଳନକର୍ତ୍ତାଙ୍କର ନିଦର୍ଶନ ନଦେଖି ଥାଆନ୍ତେ, ସେ ମଧ୍ୟ ତା' ଆଡ଼କୁ ଢ଼ଳି

ପଡ଼ିଥାଆନ୍ତେ । ଏହା ଏଇଥିପାଇଁ ହେଲା ଯେ ଆମ୍ଭେ ଇଚ୍ଛା କଲୁ ଯେ ତାଙ୍କୁ ଅପକର୍ମ ଓ ଅଶ୍ଳୀଳତାରୁ ଦୂରେଇ ରଖିବୁ । ବାସ୍ତବରେ ସେ ଆମ୍ଭର ଜଣେ ନିଷ୍ଠାପର ଭକ୍ତ ଥିଲେ । ୨୫. (ତା'ପରେ) ଦୁହେଁ (ଆଗପଛ ହୋଇ) ଦୁଆର ଆଡ଼କୁ ଦଉଡ଼ିଲେ ଏବଂ ସେ ମହିଳା ପଛଆଡୁ ତାଙ୍କ କୁର୍ତ୍ତାକୁ ଓଟାରି ଚିରିଦେଲା । ସେତିକିବେଳେ ସେ ଦୁହେଁ ମହିଳାର ସ୍ୱାମୀକୁ ଦୁଆରମୁହଁରେ ଠିଆ ହୋଇଥିବାର ଦେଖିଲେ । ତାକୁ ଦେଖିବା ମାତ୍ରେ ସେ ମହିଳା (ତା'ସ୍ୱାମୀକୁ) କହିଲା, "ଯିଏ ତୁମ ପତ୍ନୀ ସହିତ ଦୁଷ୍କର୍ମ କରିବାକୁ ଚାହେଁ, ତା'ର ଉପଯୁକ୍ତ ଶାସ୍ତି ହେଉଛି ଯେ ତାକୁ ବନ୍ଦୀ କରାଯାଉ କିମ୍ବା କଠୋର ଦଣ୍ଡ ଦିଆଯାଉ ।" ୨୬. ୟୁସୁଫ୍ କହିଲେ, "ସେ ହିଁ ମୋତେ ପ୍ରଲୁବ୍ଧ କରିବାକୁ ଚେଷ୍ଟା କଲେ ।" । ମହିଳାର କୁଟୁମ୍ବ ଭିତରୁ ଜଣେ ସାକ୍ଷୀ କହିଲା, "ଯଦି ୟୁସୁଫଙ୍କ କୁର୍ତ୍ତା ଆଗପଟୁ ଚିରିଛି ତେବେ ମହିଳା ଜଣକ ସତ କହୁଛନ୍ତି ଏବଂ ସେ ମିଛ କହୁଛନ୍ତି । ୨୭. ଆଉ ଯଦି ତାଙ୍କ କୁର୍ତ୍ତା ପଛପଟୁ ଚିରିଛି, ତେବେ ମହିଳା ମିଛ କହୁଛନ୍ତି ଏବଂ ୟୁସୁଫ୍ ସତ କହୁଛନ୍ତି ।" ୨୮. ଯେତେବେଳେ ତା' ସ୍ୱାମୀ ୟୁସୁଫଙ୍କ କୁର୍ତ୍ତା ପଛପଟୁ ଚିରିଥିବାର ଦେଖିଲା, (ତା' ପତ୍ନୀକୁ) କହିଲା, "ଏଗୁଡ଼ାକ ତୁମମାନଙ୍କ ପରି ମହିଳାମାନଙ୍କର ଚତୁରୀ । ପ୍ରକୃତରେ ତୁମମାନଙ୍କର ଚତୁରୀ ଭାରି ମାରାତ୍ମକ ।" ୨୯. "ହେ ୟୁସୁଫ୍! ଯାହା ହେଲା ଛାଡ଼ ଏବଂ ତୁ (ଜୁଲେଖା) ନିଜ ପାପ ପାଇଁ କ୍ଷମାପ୍ରାର୍ଥନା କର । ପ୍ରକୃତରେ ତୁ ଦୋଷ କରିଛୁ ।"

୩୦. ସହରର କିଛି ମହିଳା (ପରସ୍ପର ମଧ୍ୟରେ) ଆଲୋଚନା କରିବାକୁ ଲାଗିଲେ ଯେ ହାକିମଙ୍କ (ଅର୍ଥାତ୍ ପ୍ରଶାସକଙ୍କ) ପତ୍ନୀ ତା' ଯୁବଭୃତ୍ୟକୁ ଫସାଇବାକୁ ଚାହୁଁଛି । ସେ ତା' ପ୍ରେମରେ ପୂରାପୂରି ପାଗଳୀ ହୋଇଯାଇଛି । ଆମେ ଦେଖୁଛୁ ଯେ ସେ ସମ୍ପୂର୍ଣ୍ଣ ଭୁଲ ବାଟରେ ଯାଉଛି । ୩୧. ଏହାପରେ ଯେତେବେଳେ ଜୁଲେଖା ସେହି ମହିଳାମାନଙ୍କର ଚାଲ୍ ବିଷୟରେ ଶୁଣିଲା, ସେ ସେମାନଙ୍କୁ ନିମନ୍ତ୍ରଣ କରି ଡାକିଲା ଏବଂ ସେମାନଙ୍କ ପାଇଁ ଏକ ଭୋଜିସଭାର ଆୟୋଜନ କଲା । ସେ ପ୍ରତ୍ୟେକ ମହିଳାକୁ (ଫଳ କାଟିବା ପାଇଁ) ଗୋଟିଏ ଲେଖାଏଁ ଛୁରୀ ଦେଲା । ପୁଣି (ଯେତେବେଳେ ସେମାନେ ଫଳ କାଟିବାକୁ ଆରମ୍ଭ କଲେ) ସେ ୟୁସୁଫଙ୍କୁ ସେମାନଙ୍କ ସାମନାକୁ ଆସିବାକୁ କହିଲା । ଯେତେବେଳେ ସେହି ମହିଳାମାନଙ୍କ ଦୃଷ୍ଟି ତାଙ୍କ ଉପରେ ପଡ଼ିଲା, ସେମାନେ (ତାଙ୍କ ରୂପକାନ୍ତି ଦେଖି) ଆଶ୍ଚର୍ଯ୍ୟ

ହୋଇଗଲେ ଏବଂ (ଅନ୍ୟମନସ୍କ ହୋଇ) ନିଜ ହାତ କାଟି ପକାଇଲେ । ସେମାନଙ୍କ ମୁହଁରୁ ବାହାରିଲା, "ଅଲ୍ଲାହ୍ ଆମକୁ ରକ୍ଷା କରନ୍ତୁ ! ଏହି ବ୍ୟକ୍ତି ଜଣକ ମଣିଷ ନୁହେଁ ବରଂ କୌଣସି ମହାନ ଦେବଦୂତ ।" ୩୨. ହାକିମଙ୍କ ପତ୍ନୀ ସେମାନଙ୍କୁ କହିଲା, "ଏହି ହେଉଛି ସେହି ବ୍ୟକ୍ତି ଯାହା ବିଷୟରେ ତୁମେମାନେ ମୋତେ ଦୋଷ ଦେଉଥିଲ । ଅବଶ୍ୟ ମୁଁ ତା'ଠାରୁ ନିଜର ଉଦ୍ଦେଶ୍ୟ ହାସଲ କରିବାକୁ ଚାହୁଁଥିଲି ମାତ୍ର ସେ ବର୍ତ୍ତିଗଲା ।  ମୁଁ ଯାହା କହୁଛି, ଯଦି ସେ ତାହା ନକରେ ତେବେ ନିଶ୍ଚୟ ବନ୍ଦୀ ହେବ ଏବଂ ଅପମାନିତ ହେବ ।"

୩୩. ୟୁସୁଫ୍ ପ୍ରାର୍ଥନା କଲେ, "ହେ ପ୍ରଭୁ ! ଏମାନେ ମୋତେ ଯାହା କହୁଛନ୍ତି ତାହା କରିବା ଅପେକ୍ଷା କାରାଗାରକୁ ଯିବା ମୁଁ ଅଧିକ ପସନ୍ଦ କରେ ।  ଯଦି ସେମାନଙ୍କ ଫାନ୍ଦରୁ ତୁମେ ମୋତେ ରକ୍ଷା ନକର, ତେବେ ହୁଏତ ମୁଁ ସେମାନଙ୍କ ଆଡ଼କୁ ଢ଼ଳିଯିବି ଏବଂ ମୂର୍ଖତାପୂର୍ଣ୍ଣ କାର୍ଯ୍ୟ କରିବସିବି ।" ୩୪. ସୁତରାଂ ଈଶ୍ୱର ୟୁସୁଫଙ୍କ ପ୍ରାର୍ଥନା ସ୍ୱୀକାର କଲେ ଏବଂ ତାଙ୍କୁ ସେମାନଙ୍କ ଚକ୍ରାନ୍ତରୁ ରକ୍ଷା କଲେ । ସେ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି ।

୩୫. ପୁଣି ସେମାନେ (ୟୁସୁଫଙ୍କ ନିର୍ଦ୍ଦୋଷତାର) ଅନେକ ପ୍ରମାଣ ପାଇବା ପରେ ମଧ୍ୟ ତାଙ୍କୁ କିଛି କାଳ କାରାଗାରରେ ରଖିବା ଉଚିତ ମନେକଲେ । ୩୬. ୟୁସୁଫଙ୍କ ସହିତ ଆଉ ଦୁଇଜଣ ଯୁବକ କାରାଗାରକୁ ଆସିଲେ । (ଦିନେ) ସେମାନଙ୍କ ମଧ୍ୟରୁ ଜଣେ ତାଙ୍କୁ କହିଲା, "ମୁଁ ସ୍ୱପ୍ନ ଦେଖିଲି ଯେ ମୁଁ ସୁରା ପ୍ରସ୍ତୁତ କରୁଛି" ଏବଂ ଅନ୍ୟ ଜଣକ କହିଲା, "ମୁଁ ଦେଖିଲି ଯେ ମୋ' ମୁଣ୍ଡରେ ରୁଟି ଥୁଆ ହୋଇଛି ଏବଂ ଚଢ଼େଇମାନେ ତାକୁ ଖାଉଛନ୍ତି । ଆପଣ ଆମକୁ ଜଣେ ଭଲ ଲୋକ ପରି ଜଣା ପଡୁଛନ୍ତି । ଆମମାନଙ୍କୁ ଏହାର ଅର୍ଥ କହିଦିଅନ୍ତୁ ।" ୩୭. ୟୁସୁଫ୍ କହିଲେ, "ତୁମମାନଙ୍କୁ ଏଠାରେ ଯାହା ଭୋଜନ ଦିଆଯାଏ, ତାହା ତୁମମାନଙ୍କ ପାଖରେ ପହଁଚିବା ପୂର୍ବରୁ ମୁଁ ଏହାର ଅର୍ଥ କରିଦେବି ।  ଯେଉଁ ଜ୍ଞାନ ମୋ' ଈଶ୍ୱର ମୋତେ ଦେଇଛନ୍ତି, ଏହା ମଧ୍ୟ ତାହାରି ମଧ୍ୟରୁ ଏକ ଜ୍ଞାନ । ଯେଉଁମାନେ ଅଲ୍ଲାହଙ୍କୁ ବିଶ୍ୱାସ କରନ୍ତିନାହିଁ ଏବଂ ପରଲୋକକୁ ମାନନ୍ତି ନାହିଁ, ମୁଁ ସେମାନଙ୍କର ଧର୍ମ ତ୍ୟାଗ କରିଦେଇଛି । ୩୮. ମୁଁ ମୋ' ପୂର୍ବଜ ଇବ୍ରାହିମ, ଇସହାକ୍ ଓ ୟାକୁବ୍‌ଙ୍କ ଧର୍ମ ପାଳନ କରୁଛି । ଆମେମାନେ ଅଲ୍ଲାହଙ୍କ ସହିତ କାହାରିକୁ ସମାନ କରିବା ଆଦୌ

ଉଚିତ ନୁହେଁ। ଏହା (ଅର୍ଥାତ୍ ଏକେଶ୍ୱରବାଦ୍‌ର ଶିକ୍ଷା) ଆମମାନଙ୍କ ପାଇଁ ଏବଂ ସମଗ୍ର ମାନବସମାଜ ପାଇଁ ଅଲ୍ଲାହଙ୍କର ଏକ କରୁଣା ମାତ୍ର ଅଧିକାଂଶ ଲୋକ କୃତଜ୍ଞ ହୁଅନ୍ତି ନାହିଁ। ୩୯. ହେ ବନ୍ଦୀଶାଳାର ବନ୍ଧୁଗଣ! (କହିଲ ଭଲା!) ଭିନ୍ନଭିନ୍ନ ଅନେକ ପ୍ରଭୁ ଭଲ ନା ଜଣେ ସର୍ବଶକ୍ତିମାନ ପ୍ରଭୁ ଅଲ୍ଲାହ୍ ଭଲ? ୪୦. ତାଙ୍କୁ ଛାଡ଼ି ତୁମେମାନେ ଯେଉଁମାନଙ୍କର ପୂଜାଅର୍ଚ୍ଚନା କରୁଛ, ସେଗୁଡ଼ିକ କେବଳ କେତୋଟି (କାଳ୍ପନିକ) ନାମ ଯାହା ତୁମେ ଓ ତୁମମାନଙ୍କ ପୂର୍ବପୁରୁଷମାନେ ରଖିଦେଇଛ। ଅଲ୍ଲାହ୍‌ଙ୍କ ତରଫରୁ ସେବିଷୟରେ କୌଣସି ପ୍ରମାଣ ପଠା ଯାଇନାହିଁ। ଆଜ୍ଞା ଦେବା କେବଳ ଅଲ୍ଲାହଙ୍କ ଅଧିକାର। ସେ ଆଜ୍ଞା ଦେଇଛନ୍ତି ଯେ ତାଙ୍କ ବ୍ୟତୀତ ଅନ୍ୟ କାହାରି ଉପାସନା କରନାହିଁ। ଏହାହିଁ ଚିରପ୍ରତିଷ୍ଠିତ ଧର୍ମମାର୍ଗ ମାତ୍ର ଅଧିକାଂଶ ଲୋକ ଏହା ଜାଣନ୍ତିନାହିଁ। ୪୧. ହେ ବନ୍ଦୀଶାଳାର ବନ୍ଧୁଗଣ! (ତୁମମାନଙ୍କର ସ୍ୱପ୍ନର ଅର୍ଥ ହେଉଛି ଯେ) ତୁମ ଦୁହିଁଙ୍କ ମଧ୍ୟରୁ ଜଣେ ତା' ମାଲିକକୁ ସୁରା ପରିବେଷଣ କରିବ ଏବଂ ଅନ୍ୟ ଜଣକୁ ଶୂଳି ଦିଆଯିବ ଏବଂ ପକ୍ଷୀମାନେ ତା' ମୁଣ୍ଡକୁ ଖୁମ୍ପି ଖାଇବେ। ତୁମେମାନେ ଯାହା ପଚାରି ଥିଲ, ସେବିଷୟରେ ଏହିପରି ନିଷ୍ପତ୍ତି ହୋଇସାରିଛି।" ୪୨. ଦୁହିଁଙ୍କ ମଧ୍ୟରୁ ଯାହାକୁ ମୁକ୍ତ କରି ଦିଆଯିବ ବୋଲି ୟୁସୁଫଙ୍କର ଧାରଣା ଥିଲା, ସେ ତାକୁ କହିଲେ, "ତୁମ ରାଜାଙ୍କୁ ମୋ' ବିଷୟରେ କହିବ", ମାତ୍ର ଶଇତାନ ତାକୁ ୟୁସୁଫଙ୍କ ବିଷୟରେ ରାଜାଙ୍କୁ କହିବା କଥା ଭୁଲାଇଦେଲା। ତେଣୁ ୟୁସୁଫ୍ ଅନେକ ବର୍ଷ କାରାଗାରରେ ବିତାଇଲେ।

୪୩. (କିଛି ବର୍ଷ ପରେ ମିଶରର) ରାଜା ନିଜ ପାରିଷଦବର୍ଗଙ୍କୁ କହିଲେ, "ମୁଁ ସ୍ୱପ୍ନରେ ଦେଖିଲି ଯେ ସାତୋଟି ହୃଷ୍ଟପୁଷ୍ଟ ଗାଈଙ୍କୁ ସାତୋଟି ଦୁର୍ବଳ ଗାଈ ଖାଉଛନ୍ତି ଏବଂ ସାତୋଟି ସତେଜ ଶସ୍ୟଗୁଚ୍ଛ ଦେଖିଲି ଏବଂ ଆଉ ସାତୋଟି ଶୁଖିଲା ଦେଖିଲି। ହେ ପାରିଷଦବର୍ଗ! ଯଦି ତୁମେମାନେ ସ୍ୱପ୍ନର ବ୍ୟାଖ୍ୟା କରିପାରୁଛ, ତେବେ ମୋ' ସ୍ୱପ୍ନର ଅର୍ଥ କୁହ।" ୪୪. ସେମାନେ ଉତ୍ତର ଦେଲେ, "ଏଗୁଡ଼ିକ କେବଳ ନିରର୍ଥକ ସ୍ୱପ୍ନ। ଆମେ ଏଭଳି ସ୍ୱପ୍ନର ବ୍ୟାଖ୍ୟା ଜାଣିନାହୁଁ।"

୪୫. ଦୁଇ ବନ୍ଦୀଙ୍କ ମଧ୍ୟରୁ ଯିଏ (କାରାଗାରରୁ) ମୁକ୍ତ ହୋଇ ଯାଇଥିଲା, ତାକୁ ବହୁଦିନ ପରେ (ୟୁସୁଫଙ୍କ) କଥା ମନେ ପଡ଼ିଗଲା। ସେ (ରାଜାଙ୍କୁ) କହିଲା, "ମୁଁ ଏହି ସ୍ୱପ୍ନର ଅର୍ଥ କହିଦେବି। ମୋତେ (ୟୁସୁଫଙ୍କ ପାଖକୁ) ଯିବାର ଅନୁମତି

ଦିଅନ୍ତୁ ।” ୪୬. (ପୁଣି ସେ କାରାଗାରକୁ ଯାଇ ୟୁସୁଫଙ୍କୁ କହିଲା) “ହେ ସାଧୁ ୟୁସୁଫ୍ ! ମୋତେ ଏହି ସ୍ୱପ୍ନଟିର ଅର୍ଥ କହିଦିଅ ଯେ ସାତୋଟି ଦୁର୍ବଳ ଗାଈ ସାତୋଟି ହୃଷ୍ଟପୃଷ୍ଟ ଗାଈଙ୍କୁ ଖାଉଛନ୍ତି ଏବଂ ସାତୋଟି ଶସ୍ୟଗୁଚ୍ଛ ସତେଜ ଅଛି ଏବଂ ଆଉ ସାତୋଟି ଶୁଖିଲା । ତା'ହେଲେ ମୁଁ ଯାଇ ଲୋକମାନଙ୍କୁ ଏ ବିଷୟରେ କହିବି ଯାହାଫଳରେ ସେମାନେ (ତୁମ ବିଷୟରେ) ଜାଣିପାରିବେ ।” ୪୭. ୟୁସୁଫ୍ ଉତ୍ତର ଦେଲେ, “ତୁମେମାନେ କ୍ରମାଗତ ଭାବରେ ସାତବର୍ଷ ଋଷବାସ କରିବ । ଏହି ସମୟରେ ଯାହା ଫସଲ ଉତ୍ପାଦନ କରିବ, ସେଥିରୁ କେବଳ ଖାଦ୍ୟ ପାଇଁ କିଛି କାଢ଼ି ନେଇ ଅବଶିଷ୍ଟ ଶସ୍ୟକୁ ଗୁଚ୍ଛ ସହିତ ସାଇତି ରଖ । ୪୮. ପରବର୍ତ୍ତୀ ସାତ ବର୍ଷ (ଦୁର୍ଭିକ୍ଷ ପଡ଼ିବା ଯୋଗୁଁ) ତୁମମାନଙ୍କ ପାଇଁ ଭାରି କଠିନ ସମୟ ହେବ ଏବଂ (ସେତେବେଳେ) ଏହି ଦିନ ପାଇଁ ତୁମେମାନେ ଯାହା ଶସ୍ୟ ସାଇତି ରଖିଥିବ ତାହା ସରିଯିବ । କେବଳ ଅଳ୍ପ ପରିମାଣରେ ଶସ୍ୟ ବଳକା ରହିବ ଯାହାକୁ ତୁମେମାନେ (ବିହନ ପାଇଁ) ସାଇତି ରଖିବ । ୪୯. ପୁଣି ଏହାପରେ ଗୋଟିଏ ବର୍ଷ ପ୍ରଚୁର ବର୍ଷା ହେବ ଏବଂ ଲୋକେ (ଅଂଗୁର) ରସ ପ୍ରସ୍ତୁତ କରିବେ ।”

୫୦. (ଏହା ଶୁଣିବା ପରେ) ରାଜା କହିଲେ, “ୟୁସୁଫଙ୍କୁ ମୋ' ପାଖକୁ ଆଣ ।” ତେଣୁ, ଯେତେବେଳେ ରାଜାଙ୍କ ଦୂତ ୟୁସୁଫଙ୍କ ପାଖରେ ପହଁଚିଲା, ସେ ତାକୁ କହିଲେ, “ନିଜ ରାଜାଙ୍କ ପାଖକୁ ଯାଅ ଏବଂ ତାଙ୍କୁ ପଚାର ଯେ ସେହି ମହିଳାମାନଙ୍କର ଘଟଣାଟି କ'ଣ, ଯେଉଁମାନେ ନିଜର ହାତ କାଟି ଦେଇଥିଲେ ? ମୋ' ପ୍ରଭୁ ସେମାନଙ୍କ ଋଲାଖି ବିଷୟରେ ଭଲରୂପେ ଜାଣନ୍ତି ।” ୫୧. ରାଜା (ସେହି ମହିଳାମାନଙ୍କୁ ଡାକି) ପଚାରିଲେ, “ସେତେବେଳର ପ୍ରକୃତ ଘଟଣା କ'ଣ ଯେତେବେଳେ ତୁମେମାନେ ୟୁସୁଫଙ୍କୁ ପ୍ରଲୁବ୍ଧ କରିବାକୁ ଚେଷ୍ଟା କରୁଥିଲ ?” ସେମାନେ ଉତ୍ତର ଦେଲେ, “ଅଲ୍ଲାହ୍ ଆମକୁ ରକ୍ଷା କରନ୍ତୁ ! ଆମେ ତାଙ୍କଠାରେ କୌଣସି ମନ୍ଦ ଗୁଣ ଦେଖିନାହୁଁ ।” ହାକିମଙ୍କ ପତ୍ନୀ କହିଲା, “ଏବେତ ସତ ସାମନାକୁ ଆସିଗଲାଣି । ମୁଁ ହିଁ ତାଙ୍କୁ ପ୍ରଲୁବ୍ଧ କରିବାକୁ ଚେଷ୍ଟା କରିଥିଲି । ପ୍ରକୃତରେ ସେ ଜଣେ ସାଧୁ ବ୍ୟକ୍ତି ।” ୫୨. (ୟୁସୁଫ ଏହା ଜାଣିବା ପରେ) କହିଲେ, “ମୁଁ ଏହା ଏଇଥିପାଇଁ କହିଥିଲି ଯେ ହାକିମ (ଅର୍ଥାତ୍ ପ୍ରଶାସକ) ଏହା ଜାଣନ୍ତୁ ଯେ ତାଙ୍କ

ଅନୁପସ୍ଥିତିରେ ମୁଁ ତାଙ୍କ ସହିତ ବିଶ୍ୱାସଘାତକତା କରିନାହିଁ। ଅଲ୍ଲାହ୍ ବିଶ୍ୱାସଘାତକମାନଙ୍କର ଯୋଜନାକୁ ସଫଳ ହେବାକୁ ଦିଅନ୍ତି ନାହିଁ।

୫୩. ମୁଁ ନିଜକୁ ଦୋଷମୁକ୍ତ କହୁନାହିଁ। ମଣିଷର ମନ ତ ସର୍ବଦା କୁକର୍ମ କରିବାକୁ ପ୍ରରୋଚିତ କରେ। ହଁ, ଯଦି ଈଶ୍ୱର କାହାରି ପ୍ରତି କୃପା କରନ୍ତି ତେବେ ତା' କଥା ଭିନ୍ନ। ବାସ୍ତବରେ ଈଶ୍ୱର ଅତ୍ୟନ୍ତ କ୍ଷମାଶୀଳ ଓ ପରମ ଦୟାଳୁ।" ୫୪. ରାଜା ଆଦେଶ ଦେଲେ, "ୟୁସୁଫଙ୍କୁ ମୋ' ପାଖକୁ ନେଇ ଆସ। ମୁଁ ତାଙ୍କୁ ମୋ' ବ୍ୟକ୍ତିଗତ କାର୍ଯ୍ୟରେ ନିଯୁକ୍ତ କରିବି।" ପୁଣି (ଯେତେବେଳେ ୟୁସୁଫ ରାଜାଙ୍କ ପାଖରେ ଉପସ୍ଥିତ ହେଲେ) ରାଜା ତାଙ୍କ ସହିତ କଥାବାର୍ତ୍ତା କଲେ ଏବଂ କହିଲେ, "ଆଜିଠାରୁ ତୁମେ ମୋ' ପାଖରେ ଏକ ସମ୍ମାନିତ ଓ ବିଶ୍ୱସନୀୟ ପଦବୀରେ ରହିବ।" ୫୫. ୟୁସୁଫ କହିଲେ, "ଆପଣ ମୋତେ ଦେଶର ରାଜକୋଷର ଦାୟିତ୍ୱ ଦିଅନ୍ତୁ। ମୁଁ ଏହାର ତତ୍ତ୍ୱାବଧାନ କରିବି। ଏବିଷୟରେ ମୋର ଭଲ ଜ୍ଞାନ ଅଛି।" ୫୬. ଏହିପରି ଆମ୍ଭେ ୟୁସୁଫଙ୍କୁ ଦେଶରେ କ୍ଷମତା ଦେଲୁ ଯେପରିକି ସେ ନିଜ ଇଚ୍ଛା ଅନୁସାରେ ଯେଉଁଠି ଯାହା ଚାହିଁବେ କରିପାରିବେ। ଆମ୍ଭେ ଯାହା ପ୍ରତି ଚାହୁଁ, କୃପା କରୁ ଏବଂ ଆମ୍ଭେ ପୁଣ୍ୟବାନ ଲୋକଙ୍କର ପୁଣ୍ୟଫଳ ବ୍ୟର୍ଥ କରିବୁ ନାହିଁ। ୫୭. ଯେଉଁମାନେ ବିଶ୍ୱାସ କଲେ ଏବଂ ସଦାଚାରୀ ହେଲେ, ସେମାନଙ୍କୁ ପରଲୋକରେ ଖୁବ୍ ଭଲ ପୁରସ୍କାର ମିଳିବ।

୫୮. (ଯେତେବେଳେ ଦୁର୍ଭିକ୍ଷ ପଡ଼ିଲା), ୟୁସୁଫଙ୍କ ଭାଇମାନେ ଆସି ତାଙ୍କ ପାଖରେ (ଖାଦ୍ୟଶସ୍ୟ କିଣିବା ପାଇଁ) ପହଁଚିଲେ। ୟୁସୁଫ ସେମାନଙ୍କୁ ଚିହ୍ନିନେଲେ କିନ୍ତୁ ସେମାନେ ତାଙ୍କୁ ଚିହ୍ନି ପାରିଲେ ନାହିଁ। ୫୯. ପୁଣି ୟୁସୁଫ୍ ସେମାନଙ୍କୁ ସେମାନଙ୍କର ଜିନିଷ ଦେଇସାରିବା ପରେ କହିଲେ "(ଆଉଥରେ) ମୋ'ପାଖକୁ ଆସିଲେ, ତୁମ ସାବତ ଭାଇକୁ ମଧ୍ୟ ସାଙ୍ଗରେ ନେଇ ଆସିବ। ତୁମେମାନେ ଦେଖୁନାହଁ, ମୁଁ କିପରି ପାତ୍ର ପୂର୍ଣ୍ଣ କରି (ଖାଦ୍ୟଶସ୍ୟ) ଦେଉଛି ଏବଂ ମୁଁ ଅତିଥିପରାୟଣ ମଧ୍ୟ। ୬୦. କିନ୍ତୁ ଯଦି ତାକୁ ସାଙ୍ଗରେ ନଆଣ ତେବେ ତୁମମାନଙ୍କୁ ମୋ'ଠାରୁ ଆଉ ଖାଦ୍ୟଶସ୍ୟ ମିଳିବ ନାହିଁ କି ତୁମେମାନେ ମୋ' ପାଖକୁ ଆସିବନାହିଁ।" ୬୧. ସେମାନେ କହିଲେ, "ଆମେମାନେ ତାକୁ ପଠାଇବା

ପାଇଁ ତା' ବାପାଙ୍କୁ ରାଜି କରିବାକୁ ଚେଷ୍ଟା କରିବୁ ଏବଂ ଏହା ଆମେ ନିଶ୍ଚୟ କରିବୁ ।" ୬୨. ୟୁସୁଫ ତାଙ୍କ କର୍ମଚାରୀମାନଙ୍କୁ ନିର୍ଦ୍ଦେଶ ଦେଲେ ଯେ (ଶସ୍ୟ ବିନିମୟରେ) ସେମାନେ ଯାହା ଧନ ଦେଇଥିଲେ ତାହା ସେମାନଙ୍କ ଜିନିଷ ଭିତରେ ରଖିଦିଅନ୍ତୁ ଯେପରିକି ସେମାନେ ନିଜ ଘରେ ପହଁଚିବା ପରେ ଏହା ଜାଣିବେ । ହୁଏତ (ଏହି ଉପକାର ଯୋଗୁଁ) ସେମାନେ ପୁଣି ଆସିପାରନ୍ତି ।

୬୩. ଯେତେବେଳେ ସେମାନେ ସେମାନଙ୍କ ପିତାଙ୍କ ପାଖରେ ପହଁଚିଲେ, ତାଙ୍କୁ କହିଲେ, "ବାପା ! (ବିନିୟାମିନକୁ ସାଙ୍ଗରେ ନନେଲେ) ଆମକୁ ଆଉ ଶସ୍ୟ ଦିଆଯିବ ନାହିଁ ବୋଲି ମନା କରି ଦିଆଯାଇଛି । ତେଣୁ, ଆପଣ ଆମ ଭାଇକୁ ଆମ ସହିତ ପଠାନ୍ତୁ । ତା'ହେଲେ ଆମେ ପୁଣି ଖାଦ୍ୟଶସ୍ୟ ଆଣି ପାରିବୁ ଏବଂ ନିଶ୍ଚିତ ରହନ୍ତୁ । ତା'ର ସୁରକ୍ଷା ଆମମାନଙ୍କର ଦାୟିତ୍ୱ ।" ୬୪. ସେମାନଙ୍କ ପିତା କହିଲେ, "କ'ଣ ତା' ବିଷୟରେ ମୁଁ ତୁମମାନଙ୍କ ଉପରେ ସେମିତି ଭରସା କରିବି ଯେମିତି ଥରେ ତା' ଭାଇ (ୟୁସୁଫ) ବିଷୟରେ ଭରସା କରିଥିଲି ? ଅଲ୍ଲାହ୍ ସର୍ବୋତ୍ତମ ରକ୍ଷକ ଏବଂ ସର୍ବଶ୍ରେଷ୍ଠ ଦୟାଳୁ ।" ୬୫. ଯେତେବେଳେ ସେମାନେ ନିଜର ଜିନିଷପତ୍ର ଖୋଲିଲେ, ଦେଖିଲେ ଯେ ସେମାନେ ଦେଇଥିବା ଧନରାଶି ମଧ୍ୟ ସେମାନଙ୍କୁ ଫେରାଇ ଦିଆଯାଇଛି । ସେମାନେ କହିଲେ, "ବାପା ! ଆମର ଆଉ କ'ଣ ଦରକାର ? (ଦେଖନ୍ତୁ) ଆମ ଧନରାଶି ମଧ୍ୟ ଆମକୁ ଫେରାଇ ଦିଆଯାଇଛି । ଏଥର ଆମେ ଆମ ପରିବାର ପାଇଁ ଅଧିକ ଖାଦ୍ୟଶସ୍ୟ ଆଣିବୁ, ନିଜ ଭାଇକୁ ମଧ୍ୟ ଜଗିବୁ ଏବଂ ଅଧିକ ଗୋଟିଏ ଓଟରେ (ଜିନିଷ) ବୋଝେଇ କରି ଆଣିବୁ । ଏବେ ଯାହା ଆଣିଛୁ ତାହା ତ ବହୁତ ଅଳ୍ପ ।" ୬୬. ସେମାନଙ୍କ ପିତା କହିଲେ, "ଯେପର୍ଯ୍ୟନ୍ତ ତୁମେମାନେ ଅଲ୍ଲାହଙ୍କ ନାମରେ ନିୟମ କରି ମୋତେ ଏହାର ବଚନ ନଦେବ ଯେ ତାକୁ ମୋ' ପାଖକୁ (ସକୁଶଳେ) ଫେରାଇ ଆଣିବ, ମୁଁ ତାକୁ ତୁମମାନଙ୍କ ସହିତ ଆଦୌ ପଠାଇବି ନାହିଁ । ହଁ, ଯଦି ତୁମେମାନେ କୌଣସି ବିପଦରେ ପଡ଼ିଯାଅ ତେବେ ଭିନ୍ନ କଥା । ତେଣୁ, ଯେତେବେଳେ ସେମାନେ ତାଙ୍କୁ ଏହାର ବଚନ ଦେଲେ, ସେ କହିଲେ, "ଅଲ୍ଲାହ୍ ଆମମାନଙ୍କ ମଧ୍ୟରେ ହୋଇଥିବା ଏହି କଥାବାର୍ତ୍ତାର ସାକ୍ଷୀ ରହିଲେ ।"

୬୭. ପୁଣି ସେ ସେମାନଙ୍କୁ ଉପଦେଶ ଦେଲେ, "ହେ ମୋ' ପିଲାମାନେ! ତୁମେମାନେ ସମସ୍ତେ ଗୋଟିଏ ପ୍ରବେଶଦ୍ୱାର ଦେଇ (ସହର ଭିତକୁ) ଯିବନାହିଁ, ବରଂ ଅଲଗା ଅଲଗା ଦ୍ୱାର ଦେଇ ଯିବ। ଅଲ୍ଲାହଙ୍କ ନିଷ୍ପତ୍ତି ବିରୁଦ୍ଧରେ ମୁଁ ତୁମମାନଙ୍କ ପାଇଁ କିଛି କରି ପାରିବିନାହିଁ। ଅଲ୍ଲାହଙ୍କ ଆଦେଶ ହିଁ ଚଳେ। ତାଙ୍କରି ଉପରେ ମୁଁ ଭରସା କରେ ଏବଂ ଯେଉଁମାନେ ଭରସା କରିବାକୁ ଚାହାଁନ୍ତି, ସେମାନେ ତାଙ୍କରି ଉପରେ ଭରସା କରନ୍ତୁ।" ୬୮. ସେମାନେ ପିତାଙ୍କ ଉପଦେଶ ଅନୁସାରେ (ମିଶରରେ) ପ୍ରବେଶ କଲେ  କିନ୍ତୁ ସେମାନଙ୍କର ଏହି ଉପାୟ ଅଲ୍ଲାହଙ୍କର ନିଷ୍ପତ୍ତିକୁ ରୋକି ପାରିଲା ନାହିଁ। ହଁ, ୟାକୁବ ନିଜ ମନରେ ଥିବା ଏକ ଇଚ୍ଛା ପୂରଣ କରିନେଲେ। ଆମ୍ଭେ ପ୍ରଦାନ କରିଥିବା ଶିକ୍ଷା ବଳରେ ସେ ଜ୍ଞାନବାନ ହୋଇଥିଲେ ମାତ୍ର ଅଧିକାଂଶ ଲୋକେ ଏହା ଜାଣନ୍ତି ନାହିଁ।

୬୯. ଯେତେବେଳେ ସେମାନେ ୟୁସୁଫଙ୍କ ପାଖରେ ପହଁଚିଲେ, ସେ ତାଙ୍କ ଭାଇକୁ ନିଜ ପାଖରେ ରଖିଲେ ଏବଂ ତାକୁ କହିଲେ, "ମୁଁ ତୁମର ଭାଇ (ୟୁସୁଫ୍)। ତେଣୁ, ଏମାନେ ଯାହା କରିଛନ୍ତି, ସେଥିପାଇଁ ଦୁଃଖ କରନା।"

୭୦. ପୁଣି ଯେତେବେଳେ ୟୁସୁଫ ସେମାନଙ୍କର ଜିନିଷ ପ୍ରସ୍ତୁତ କରି ସାରିଲେ, ତାଙ୍କ ଭାଇର ଜିନିଷପତ୍ର ଭିତରେ ଗୋଟିଏ ଜଳପାତ୍ର ଲୁଚାଇଦେଲେ। ଏହାପରେ (ଯେତେବେଳେ ସେମାନେ ସେଠାରୁ ବାହାରିଗଲେ) ଜଣେ ରାଜକର୍ମଚାରୀ ସେମାନଙ୍କୁ ଡ଼ାକ ପକାଇଲା,"ହେ ଯାତ୍ରୀମାନେ! ତୁମେମାନେ ପ୍ରକୃତରେ ଚୋର।" ୭୧. ସେମାନେ ବୁଲିପଡ଼ି ପଚାରିଲେ, "ଅପଣମାନଙ୍କର କ'ଣ ହଜିଛି?" ୭୨. (ରାଜକର୍ମଚାରୀ) ଉତ୍ତର ଦେଲେ, "ରାଜାଙ୍କର ଗୋଟିଏ ଜଳପାତ୍ର ମିଳୁନାହିଁ। ଯିଏ ଆଣିଦେବ ତାକୁ ଗୋଟିଏ ଓଟ ବୋଝେଇ ଶସ୍ୟ (ପୁରସ୍କାର) ଦିଆଯିବ। ଏହି ଦାୟିତ୍ୱ ମୋ'ର।" ୭୩. ସେମାନେ କହିଲେ, "ଅଲ୍ଲାହଙ୍କ ରାଣ! ତୁମେମାନେ ଭଲରୂପେ ଜାଣ ଯେ ଆମେ ଏହି ଦେଶରେ ବିଶୃଂଖଳା କରିବାକୁ ଆସିନାହୁଁ କିମ୍ବା ଆମେମାନେ ଚୋରି କରିବା ଲୋକ ନୁହଁ।" ୭୪. (ରାଜକର୍ମଚାରୀମାନେ) ପଚାରିଲେ, "ଯଦି ତୁମମାନେ ମିଛ କହୁଥାଅ ତେବେ ସେଥିପାଇଁ କି ଦଣ୍ଡ ଦିଆଯିବ?" ୭୫. ସେମାନେ ଉତ୍ତର

ଦେଲେ,"ସେଥିପାଇଁ ଦଣ୍ଡ ହେଉଛି ଯେ ଯାହାର ଜିନିଷ ଭିତରୁ ଏହା ମିଳିବ, ତାକୁ ଅପରାଧ ବଦଳରେ ଅଟକ ରଖାଯିବ । ଆମେ (ଆମ ଦେଶରେ) ଅପରାଧୀମାନଙ୍କୁ ଏହିପରି ଦଣ୍ଡ ଦେଉ ।"

୭୬. ତା'ପରେ ୟୁସୁଫ ତାଙ୍କ ଭାଇର ଜିନିଷପତ୍ରର ତଲାସି ନେବା ପୂର୍ବରୁ ଅନ୍ୟ (ସାବତ) ଭାଇମାନଙ୍କ ଜିନିଷପତ୍ରର ତଲାସି ନେବା ଆରମ୍ଭ କଲେ ଏବଂ ନିଜ ଭାଇର ଜିନିଷ ଭିତରୁ ଜଳପାତ୍ରଟି ବାହାର କଲେ । ୟୁସୁଫଙ୍କ ପାଇଁ ଆମ୍ଭେ ଏହିପରି ଏକ ଉପାୟ କଲୁ । ଅଲ୍ଲାହ୍ ଇଚ୍ଛା ନକରିଥିଲେ, ସେ (ମିଶରର) ରାଜାଙ୍କ ଆଇନ ଅନୁସାରେ ତାଙ୍କ ଭାଇକୁ ଅଟକାଇ ପାରି ନଥାଆନ୍ତେ । ଆମ୍ଭେ ଯାହାର ଚାହୁଁ, ତା'ର ସମ୍ମାନ ବୃଦ୍ଧି କରୁ । ସବୁ ଜ୍ଞାନୀମାନଙ୍କ ଉପରେ ଜଣେ ମହାଜ୍ଞାନୀ ଅଛନ୍ତି । ୭୭. ସେମାନେ କହିଲେ, "ଯଦି ସେ ଚୋରି କରିଥାଏ ତେବେ (ଆଶ୍ଚର୍ଯ୍ୟ ହେବାର କିଛି ନାହିଁ କାରଣ) ତା'ର ଜଣେ ଭାଇ (ୟୁସୁଫ) ମଧ୍ୟ ପୂର୍ବେ ଚୋରି କରିଥିଲା । ୟୁସୁଫ (ଏହା ଶୁଣି) ପ୍ରକୃତ ଘଟଣା ସେମାନଙ୍କ ନିକଟରେ ପ୍ରକାଶ ନକରି ନିଜ ମନ ଭିତରେ ରଖିଲେ ଏବଂ ମନେମନେ କହିଲେ, "ତୁମେମାନେ ଅତି ଦୁଷ୍ଟ ଲୋକ । ତୁମେମାନେ ଯାହା କହୁଛ, ଅଲ୍ଲାହ୍ (ଏହାର ବାସ୍ତବିକତା) ଭଲରୂପେ ଜାଣନ୍ତି ।" ୭୮. ସେମାନେ କହିଲେ, "ମହାଭାଗ ! ତା' ବାପା ଅତିଶୟ ବୃଦ୍ଧ । ତେଣୁ, ତା' ବଦଳରେ ଆମମାନଙ୍କ ମଧ୍ୟରୁ କାହାରିକୁ ରଖିନିଅନ୍ତୁ । ଆମେ ଦେଖୁଛୁ ଯେ ଆପଣ ଜଣେ ଭଦ୍ରଲୋକ । ୭୯. ୟୁସୁଫ୍ କହିଲେ, "(ଏପରି ଅନ୍ୟାୟରୁ) ଅଲ୍ଲାହ୍ ରକ୍ଷା କରନ୍ତୁ ! ଯାହା ପାଖରେ ଆମର ଜିନିଷ ମିଳିଲା, ତାକୁ ଛାଡ଼ି ଆମେ ଅନ୍ୟ କାହାରିକୁ ବନ୍ଦୀ କରି ନପାରୁ । ଏଭଳି କଲେ ଆମେ ନିଶ୍ଚୟ ଅନ୍ୟାୟ କରିବୁ ।"

୮୦. ଯେତେବେଳେ ସେମାନେ ୟୁସୁଫଙ୍କଠାରୁ ନିରାଶ ହୋଇଗଲେ, ଏକାନ୍ତରେ ଯାଇ ବିଚାର-ବିମର୍ଶ କରିବାକୁ ଲାଗିଲେ । ସେମାନଙ୍କର ବଡ଼ଭାଇ କହିଲା,"କ'ଣ ତୁମମାନଙ୍କୁ ଜଣାନାହିଁ ଯେ ବାପା ତୁମମାନଙ୍କଠାରୁ ଅଲ୍ଲାହଙ୍କ ନାଁରେ ଦୃଢ଼ ବଚନ ନେଇଛନ୍ତି ? ଏହାପୂର୍ବରୁ ମଧ୍ୟ ତୁମେମାନେ ୟୁସୁଫଙ୍କ ବିଷୟରେ ଭୁଲ୍ କରିସାରିଛ । ତେଣୁ, ଯେପର୍ଯ୍ୟନ୍ତ ବାପା ମୋତେ ଅନୁମତି ନଦେବେ ବା ଅଲ୍ଲାହ୍

ମୋ'ର କୌଣସି ବିଚାର ନକରିବେ, ମୁଁ ଏହି ଦେଶ ଛାଡ଼ି ଆଦୌ ଯିବିନାହିଁ। ସେ ହିଁ ସର୍ବୋତ୍ତମ ବିଚାରକ।" ୮୧. ତୁମେମାନେ ବାପାଙ୍କ ପାଖକୁ ଫେରିଯାଅ ଏବଂ ତାଙ୍କୁ କୁହ ଯେ ବାପା! ତୁମ ପୁଅ (ସେଠାରେ) ଚୋରି କଲା। ଆମେ ଯାହା ଜାଣିଲୁ, ତାହାହିଁ କହିଲୁ ଏବଂ ଅଦୃଷ୍ଟ କଥା ତ ଆମେ ଜାଣି ନଥିଲୁ।" ୮୨. "ଯେଉଁ ସହରରେ ଆମେମାନେ ଥିଲୁ, ସେଠାର ଲୋକମାନଙ୍କୁ ପଚାରନ୍ତୁ କିମ୍ବା ଯେଉଁ ଯାତ୍ରୀମାନଙ୍କ ସହିତ ଆମେ ଆସିଲୁ, ସେମାନଙ୍କୁ ପଚାରି ବୁଝି ନିଅନ୍ତୁ। ଆମେମାନେ ପ୍ରକୃତରେ ସତ କହୁଛୁ।"

୮୩. (ସୁତରାଂ ସେମାନେ ୟାକୁବଙ୍କୁ ଯାଇ ସେଇକଥା କହିଲେ) ୟାକୁବ୍ ଏହା ଶୁଣି କହିଲେ, "ନା ନା। ତୁମେମାନେ ନିଜ ମନରୁ ଗୋଟିଏ କାହାଣୀ ଗଢ଼ି ନେଇଛ। ତେଣୁ, ଧୈର୍ଯ୍ୟ ଅବଲମ୍ବନ କରିବା ଭଲ। ଅଲ୍ଲାହ୍ (ଦିନେ) ସମସ୍ତଙ୍କୁ ଆଣି ମୋ'ପାଖରେ ପହଁଚାଇ ଦେବା ଅସମ୍ଭବ ନୁହେଁ। ସେ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ" ୮୪. ସେ ପୁଅମାନଙ୍କଠାରୁ ମୁହଁ ଫେରାଇନେଲେ ଏବଂ "ହାୟ ୟୁସୁଫ୍" କହି ବିଳାପ କରିବାକୁ ଲାଗିଲେ। ଦୁଃଖରେ (କାନ୍ଦି କାନ୍ଦି) ତାଙ୍କ ଆଖି ଶ୍ୱେତା ପଡ଼ିଗଲା ଏବଂ ସେ ମନେମନେ ଶୋକରେ ଘାରି ହେବାକୁ ଲାଗିଲେ। ୮୫. ତାଙ୍କ ପୁଅମାନେ ତାଙ୍କୁ କହିଲେ, "ଅଲ୍ଲାହଙ୍କ ରାଣ! (ଯାହା ଜଣା ପଡୁଛି) ଆପଣ ଏମିତି ୟୁସୁଫଙ୍କୁ ଝୁରିଝୁରି ରୋଗିଣା ହୋଇଯିବେ ନହେଲେ ଜୀବନ ହାରିଦେବେ।" ୮୬. ସେ ଉତ୍ତର ଦେଲେ, "ମୁଁ ଅଲ୍ଲାହଙ୍କ ପାଖରେ ମୋ' ଦୁଃଖଦୁର୍ଦ୍ଦଶାର ଗୁହାରୀ କରୁଛି ଏବଂ ଅଲ୍ଲାହଙ୍କ କୃପାରୁ ମୁଁ ଯାହା ଜାଣେ, ତୁମେମାନେ ଜାଣ ନାହିଁ।" ୮୭. "ହେ ମୋ' ପିଲାମାନେ! ତୁମେମାନେ ଯାଇ ୟୁସୁଫ ଓ ତା' ଭାଇକୁ ଖୋଜାଖୋଜି କର ଏବଂ ଅଲ୍ଲାହଙ୍କ କରୁଣାରୁ ନିରାଶ ହୁଅନାହିଁ। ଅଲ୍ଲାହଙ୍କ କରୁଣାରୁ ସେହିମାନେ ନିରାଶ ହୁଅନ୍ତି, ଯେଉଁମାନେ ନାସ୍ତିକ।"

୮୮. ପୁଣି ଯେତେବେଳେ ସେମାନେ ୟୁସୁଫଙ୍କ ପାଖରେ ଯାଇ ପହଁଚିଲେ, ତାଙ୍କୁ କହିଲେ, "ମହାଭାଗ! ଆମ ଉପରେ ଏବଂ ଆମ ପରିବାର ଉପରେ ବଡ଼ ବିପଦ ପଡ଼ିଛି ଏବଂ ଆମେ ଅଳ୍ପକିଛି ଧନ ଆଣିଛୁ। ଆପଣ ଆମମାନଙ୍କୁ ପୂରା ମାତ୍ରାରେ ଖାଦ୍ୟଶସ୍ୟ ଦିଅନ୍ତୁ ବା ଦାନ କରିଦିଅନ୍ତୁ। ଅଲ୍ଲାହ୍ ଦାନୀ ଲୋକଙ୍କୁ ଭଲ ପୁରସ୍କାର ଦିଅନ୍ତି।" ୮୯. ୟୁସୁଫ୍ କହିଲେ, "କ'ଣ ତୁମେମାନେ

ଜାଣ ଯେ ନିଜର ନିର୍ବୋଧତା ଯୋଗୁଁ ତୁମେମାନେ ୟୁସୁଫ୍ ଓ ତାଙ୍କ ଭାଇଙ୍କ ସହିତ କ'ଣ କରିଛ ?" ୯୦. ସେମାନେ (ଏହା ଶୁଣି ଆଶ୍ଚର୍ଯ୍ୟ ହୋଇ) କହିଉଠିଲେ, "କ'ଣ ସତରେ ତୁମେ ୟୁସୁଫ୍ ?" ସେ ଉତ୍ତର ଦେଲେ, "ହଁ, ମୁଁ ୟୁସୁଫ୍ ଏବଂ ଇଏ ହେଉଛି ମୋ' ଭାଇ । ଅଲ୍ଲାହ୍ ଆମ ପ୍ରତି କୃପା କଲେ । ଯେଉଁମାନେ ତାଙ୍କୁ ଭୟ କରନ୍ତି ଏବଂ ଧୈର୍ଯ୍ୟ ଅବଲମ୍ବନ କରନ୍ତି, ଅଲ୍ଲାହ୍ ଏଭଳି ପୁଣ୍ୟବାନ ଲୋକଙ୍କର ପୁଣ୍ୟ ବ୍ୟର୍ଥ କରନ୍ତିନାହିଁ ।" ୯୧. ସେମାନେ କହିଲେ, "ଅଲ୍ଲାହ୍‌ଙ୍କ ରାଣ ! ବାସ୍ତବରେ ଅଲ୍ଲାହ୍ ଆମମାନଙ୍କ ଅପେକ୍ଷା ତୁମକୁ ଅଧିକ ପସନ୍ଦ କଲେ । ଆମେମାନେ ପ୍ରକୃତରେ ଅପରାଧ କରିଥିଲୁ ।" ୯୨. ୟୁସୁଫ୍ କହିଲେ, "ଆଜି ତୁମମାନଙ୍କର କୌଣସି ଦୋଷ ଧରାଯିବ ନାହିଁ । ଅଲ୍ଲାହ୍ ତୁମମାନଙ୍କୁ କ୍ଷମା କରନ୍ତୁ । ସେ ଦୟାଳୁମାନଙ୍କ ମଧ୍ୟରେ ଶ୍ରେଷ୍ଠ ଦୟାଳୁ । ୯୩. ତୁମେମାନେ ମୋ'ର ଏହି କୁର୍ତ୍ତା ନେଇଯାଅ । ଏହାକୁ ମୋ' ବାପାଙ୍କ ମୁହଁରେ ପକାଇଦେଲେ ସେ ପୁଣି ଦେଖିପାରିବେ ଏବଂ ତୁମେମାନେ ନିଜ ପରିବାରର ସମସ୍ତଙ୍କୁ ସାଙ୍ଗରେ ଧରି ମୋ'ପାଖକୁ ଚାଲିଆସ ।"

୯୪. ଯେତେବେଳେ ଏହି ଯାତ୍ରୀଦଳ (ମିଶରରୁ) ବାହାରିଲା, ସେମାନଙ୍କ ପିତା (ପାଖରେ ଥିବା ଲୋକମାନଙ୍କୁ) କହିଲେ, "ଯଦି ତୁମେମାନେ ମୋ'ର ବୁଦ୍ଧିଭ୍ରଷ୍ଟ ହୋଇଯାଇଛି ବୋଲି ନକୁହ ତେବେ ଶୁଣ, ମୁଁ ୟୁସୁଫର ସୁଗନ୍ଧ ଅନୁଭବ କରୁଛି ।" ୯୫. ସେମାନେ କହିଲେ, "ଅଲ୍ଲାହ୍‌ଙ୍କ ରାଣ ! ଆପଣ ଏବେ ମଧ୍ୟ ସେହି ପୁରୁଣା ଭ୍ରମରେ ରହିଛନ୍ତି ।" ୯୬. ପୁଣି ଯେତେବେଳେ (ୟୁସୁଫଙ୍କ) କୁଶଳ ବାର୍ତ୍ତା ନେଇ ଯାଇଥିବା ଲୋକଟି ସେଠାରେ ପହଁଚିଲା ଏବଂ (ୟୁସୁଫଙ୍କ) କୁର୍ତ୍ତାଟି ତାଙ୍କ ମୁହଁରେ ପକାଇଦେଲା, ସଙ୍ଗେସଙ୍ଗେ ୟାକୁବଙ୍କର ଦୃଷ୍ଟିଶକ୍ତି ଫେରିଆସିଲା । ସେ କହିଲେ, "କ'ଣ ମୁଁ ତୁମମାନଙ୍କୁ ଏହା କହି ନଥିଲି ଯେ ଅଲ୍ଲାହଙ୍କ କୃପାରୁ ମୁଁ ଯାହା ଜାଣେ, ତୁମେମାନେ ତାହା ଜାଣନାହିଁ ?" ୯୭. ସେମାନେ କହିଲେ, "ବାପା ! ଆମ ପାପ ପାଇଁ କ୍ଷମା ପ୍ରାର୍ଥନା କରନ୍ତୁ । ଆମେମାନେ ଅବଶ୍ୟ ଦୋଷ କରିଛୁ ।" ୯୮. ୟାକୁବ୍ କହିଲେ, "ମୁଁ ନିଶ୍ଚୟ ଈଶ୍ୱରଙ୍କ ନିକଟରେ ତୁମମାନଙ୍କ ପାଇଁ କ୍ଷମାପ୍ରାର୍ଥନା କରିବି । ସେ ଅତ୍ୟନ୍ତ କ୍ଷମାଶୀଳ ଏବଂ ପରମ ଦୟାଳୁ ।"

୯୯. ଏହାପରେ ଯେତେବେଳେ ଏମାନେ ସମସ୍ତେ ୟୁସୁଫଙ୍କ ପାଖରେ ପହଁଚିଲେ, ସେ ନିଜ ପିତାମାତାଙ୍କୁ ପାଖରେ ବସାଇଲେ ଏବଂ କହିଲେ, "ଆପଣମାନେ ମିଶରରେ ରହନ୍ତୁ । ଅଲ୍ଲାହ୍ ଚାହିଁଲେ ଏଠାରେ ଶାନ୍ତିରେ ରହିବେ ।" ୧୦୦. ୟୁସୁଫ୍ ନିଜ ପିତାମାତାଙ୍କୁ (ସମ୍ମାନର ସହିତ) ଆସନରେ ବସାଇଲେ ଏବଂ ସମସ୍ତେ ତାଙ୍କ ସମ୍ମୁଖରେ ପ୍ରଣାମ କଲେ । ୟୁସୁଫ କହିଲେ, "ବାପା ! ଏହାହିଁ ମୋ' ପୂର୍ବ ସ୍ୱପ୍ନର ଅର୍ଥ, ଯାହାକୁ ମୋ' ଈଶ୍ୱର ସତ୍ୟ ପ୍ରମାଣିତ କଲେ ଏବଂ ସେ ମୋ'ର ବହୁତ ଉପକାର କରିଛନ୍ତି । ସେ ମୋତେ କାରାଗାରରୁ ମୁକ୍ତି ଦେଲେ ଏବଂ ଆପଣମାନଙ୍କୁ ଏକ ମରୁ ଅଂଚଳରୁ ଏଠାକୁ ନେଇ ଆସିଲେ, ଅଥଚ ଶଇତାନ ଆମ ଭାଇମାନଙ୍କ ମଧ୍ୟରେ ବିଦ୍ୱେଷ ସୃଷ୍ଟି କରି ଦେଇଥିଲା । ମୋ' ପାଳନକର୍ତ୍ତା ଯାହା କରିବାକୁ ଚାହାନ୍ତି, ତା'ପାଇଁ ଅତି ସୁକ୍ଷ୍ମ ଉପାୟ କରନ୍ତି । ବାସ୍ତବରେ ସେ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ ।" ୧୦୧. "ହେ ପାଳନକର୍ତ୍ତା ! ତୁମେ ମୋତେ ଦେଶରେ କ୍ଷମତା ଦେଲ ଏବଂ ସ୍ୱପ୍ନର ଅର୍ଥ କରିବା ଶିଖାଇଲ । ହେ ଧରିତ୍ରୀ ଓ ଆକାଶର ସ୍ରଷ୍ଟା ! ଇହଲୋକ ଓ ପରଲୋକରେ ତୁମେହିଁ ମୋ'ର ଆଶ୍ରୟଦାତା । ମୋତେ ମୁସଲିମ୍ (ଅର୍ଥାତ୍ ତୁମର ଆଜ୍ଞାଧୀନ) ଥିବା ଅବସ୍ଥାରେ ମୃତ୍ୟୁ ଦିଅ ଏବଂ ମୋତେ ପୁଣ୍ୟବାନ ଲୋକମାନଙ୍କ ସହିତ ରଖ ।"

୧୦୨. (ହେ ବାର୍ତ୍ତାବହ !) ଏଗୁଡ଼ିକ ସବୁ ଅଦୃଷ୍ଟର ଖବର ଯାହାକୁ ଆମ୍ଭେ ଦୈବବାଣୀ ଦ୍ୱାରା ତୁମକୁ ଜଣାଉଛୁ । ତୁମେ ସେତେବେଳେ ସେମାନଙ୍କ ପାଖରେ ନଥିଲ ଯେତେବେଳେ ସେମାନେ ସମସ୍ତେ ମିଶି (ୟୁସୁଫଙ୍କ ବିରୁଦ୍ଧରେ) ଚକ୍ରାନ୍ତ କରୁଥିଲେ । ୧୦୩. ତୁମର ଯେତେ ଆଗ୍ରହ ଥିଲେ ସୁଦ୍ଧା ଅଧିକାଂଶ ଲୋକ (ସତ୍ୟରେ) ବିଶ୍ୱାସ କରିବେନାହିଁ । ୧୦୪. ଅଥଚ ତୁମେ ସେମାନଙ୍କଠାରୁ ଏଥିପାଇଁ କୌଣସି ମୂଲ୍ୟ ମାଗୁନାହଁ । ଏହା ବିଶ୍ୱବାସୀଙ୍କ ପାଇଁ ଏକ ହିତୋପଦେଶ ।

୧୦୫. ପୃଥିବୀ ଓ ଆକାଶରେ (ଅଲ୍ଲାହଙ୍କର) ଅନେକ ନିଦର୍ଶନ ଅଛି ଯାହା ସେମାନେ (ପ୍ରତିଦିନ) ଦେଖନ୍ତି ମାତ୍ର ସେଥିପ୍ରତି ଧ୍ୟାନ ଦିଅନ୍ତି ନାହିଁ । ୧୦୬. ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଅଲ୍ଲାହଙ୍କୁ ବିଶ୍ୱାସ କରୁଥିବା ସତ୍ତ୍ୱେ ବହୁଈଶ୍ୱରବାଦୀ ଅଟନ୍ତି । ୧୦୭. କ'ଣ ସେମାନଙ୍କୁ ଏହାର ଟିକିଏ ହେଲେ ଭୟ

ନାହିଁ ଯେ ହୁଏତ ସେମାନଙ୍କ ଉପରେ ଅଲ୍ଲାହଙ୍କର କୌଣସି ବିପଦ ପଡ଼ିଯିବ ବା ସେମାନଙ୍କ ଅଜାଣତରେ ହଠାତ୍ ପ୍ରଳୟ ଆସିଯିବ? ୧୦୮. (ହେ ବାର୍ତ୍ତାବହ!) କହିଦିଅ, "ଏହାହିଁ ମୋ'ର ମାର୍ଗ । ମୁଁ ଭଲରୂପେ ବୁଝିସୁଝି ଲୋକମାନଙ୍କୁ ଅଲ୍ଲାହଙ୍କ ମାର୍ଗ ଅନୁସରଣ କରିବା ଲାଗି ଡାକୁଛି ଏବଂ ମୋ' ଅନୁଗାମୀମାନେ ମଧ୍ୟ (ତାହାହିଁ କରୁଛନ୍ତି) । ଅଲ୍ଲାହ୍ ପରମ ପବିତ୍ର ଏବଂ ମୁଁ ବହୁଈଶ୍ୱରବାଦୀ ନୁହେଁ ।"

୧୦୯. ତୁମ ପୂର୍ବରୁ ଆମ୍ଭେ ଯେଉଁମାନଙ୍କୁ (ବାର୍ତ୍ତାବହ ରୂପେ) ପଠାଇଥିଲୁ, ସେମାନେ ସମସ୍ତେ ପୁରୁଷ ଥିଲେ ଏବଂ ବିଭିନ୍ନ ଜନବସତିରେ ବସବାସ କରୁଥିଲେ । ଆମ୍ଭେ ସେମାନଙ୍କୁ ଦୈବବାଣୀ କରୁଥିଲୁ । କ'ଣ ଏମାନେ ଦେଶରେ ବୁଲାବୁଲି କରି ଦେଖୁନାହାନ୍ତି ଯେ ଏମାନଙ୍କ ପୂର୍ବ ସମାଜଗୁଡ଼ିକର କିଭଳି ପରିଣାମ ହେଲା? ସଦାଚାରୀମାନଙ୍କ ପାଇଁ ପରଲୋକର ଘର ସବୁଠାରୁ ଭଲ । କ'ଣ ତଥାପି ତୁମେମାନେ ବୁଝିବନାହିଁ? ୧୧୦. ଯେତେବେଳେ (ପୂର୍ବ) ବାର୍ତ୍ତାବହମାନେ ନିରାଶ ହୋଇ ଯାଉଥିଲେ ଏବଂ ଲୋକମାନେ ଭାବୁଥିଲେ ଯେ ସେମାନଙ୍କୁ ମିଥ୍ୟା ଧମକ ଦିଆ ଯାଇଛି, ସେତେବେଳେ ସେମାନଙ୍କ ପାଖରେ ଆମ୍ଭର ସାହାଯ୍ୟ ପହଁଚୁଥିଲା । ପୁଣି ଆମ୍ଭେ ଯାହାକୁ ଇଚ୍ଛା କରୁଥିଲୁ ତାକୁ ରକ୍ଷା କରୁଥିଲୁ । ପାପୀମାନଙ୍କଠାରୁ ଆମ୍ଭର ଶାସ୍ତି ଟଳେ ନାହିଁ ।

୧୧୧. ଏହି ଘଟଣାଗୁଡ଼ିକରେ ବୁଦ୍ଧିମାନ ଲୋକମାନଙ୍କ ପାଇଁ ସୁନ୍ଦର ଶିକ୍ଷା ଅଛି । କୁରଆନ୍ କୌଣସି କଳ୍ପିତ କାହାଣୀ ନୁହେଁ, ବରଂ ଏହା ପୂର୍ବରୁ ଆସିଥିବା ଦିବ୍ୟଗ୍ରନ୍ଥଗୁଡ଼ିକର ସମର୍ଥନ କରେ ଏବଂ ପ୍ରତ୍ୟେକ ବିଷୟକୁ ବିସ୍ତୃତ ଭାବରେ ବର୍ଣ୍ଣନା କରେ । ବିଶ୍ୱାସ କରୁଥିବା ଲୋକମାନଙ୍କ ପାଇଁ ଏହା ଏକ ମାର୍ଗଦର୍ଶନକାରୀ ଗ୍ରନ୍ଥ ଏବଂ (ଅଲ୍ଲାହଙ୍କର) ଏକ କରୁଣା ।

## ଅଧ୍ୟାୟ ୧୩, ଅର୍ ରାଦ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲିଫ - ଲାମ୍ – ରା । ଏଗୁଡ଼ିକ (ଅଲ୍ଲାହଙ୍କ) ଗ୍ରନ୍ଥର ବାଣୀ । ତୁମ ଈଶ୍ୱରଙ୍କ ଦ୍ୱାରା ତୁମ ପାଖକୁ ଯାହା ପଠାଯାଇଛି ତାହା ସତ୍ୟ ମାତ୍ର ଅଧିକାଂଶ ଲୋକ ବିଶ୍ୱାସ କରନ୍ତିନାହିଁ ।

୨. ସେ ହିଁ ଅଲ୍ଲାହ୍, ଯିଏ ବିନା ସ୍ତମ୍ଭରେ ଉଚ୍ଚ ଆକାଶ ରଚନା କଲେ ଯେମିତି ତୁମେମାନେ ଦେଖୁଛ । ପୁଣି ସେ ଦିବ୍ୟସିଂହାସନରେ ଅଧିଷ୍ଠିତ ହେଲେ ଏବଂ ସୂର୍ଯ୍ୟ ଓ ଚନ୍ଦ୍ରକୁ ଗୋଟିଏ ଶୃଂଖଳାରେ ବାନ୍ଧିଦେଲେ । ପ୍ରତ୍ୟେକ (ଗ୍ରହ ନକ୍ଷତ୍ର) ଏକ ନିର୍ଦ୍ଧାରିତ ସମୟ ପାଇଁ (ନିଜନିଜର କକ୍ଷପଥରେ) ପ୍ରଦକ୍ଷିଣ କରୁଛନ୍ତି । ସେ ସକଳ କାର୍ଯ୍ୟ ପରିଚାଳନା କରନ୍ତି । ନିଜର ନିଦର୍ଶନଗୁଡ଼ିକୁ ସେ ପରିଷ୍କାର ଭାବରେ ବର୍ଣ୍ଣନା କରୁଛନ୍ତି ଯେପରିକି ତୁମମାନଙ୍କୁ ବିଶ୍ୱାସ ହୋଇଯାଉ ଯେ ତୁମେମାନେ (ଦିନେ) ତୁମ ପାଳନକର୍ତ୍ତାଙ୍କ ସହିତ ସାକ୍ଷାତ କରିବ । ୩. ସେ ହିଁ ଧରିତ୍ରୀର ବିସ୍ତାର କଲେ ଏବଂ ସେଥିରେ ପାହାଡ଼-ପର୍ବତ ଓ ନଦନଦୀ ସୃଷ୍ଟି କଲେ ଏବଂ ଯୋଡ଼ାଯୋଡ଼ା କରି ପ୍ରତ୍ୟେକ ପ୍ରକାରର ଫଳମୂଳ ସୃଷ୍ଟି କଲେ । ସେ ରାତି ଦ୍ୱାରା ଦିନକୁ ଘୋଡ଼ାଇ ଦିଅନ୍ତି । ଯେଉଁମାନେ ଧ୍ୟାନ ଦିଅନ୍ତି, ସେମାନଙ୍କ ପାଇଁ ଏଥିରେ (ତାଙ୍କ ମହିମାର) ଅନେକ ସଂକେତ ଅଛି ।

୪. ଭୂପୃଷ୍ଠରେ ବିଭିନ୍ନ ପ୍ରକାରର ଜମି ପରସ୍ପରକୁ ଲାଗି ରହିଛି । (ସେଥିରେ) ଅଂଗୁର ବଗିଚା, ଶସ୍ୟକ୍ଷେତ୍ର ଓ ଖଜୁରୀ ଗଛ ମଧ୍ୟ ଅଛି ଯାହା ମଧ୍ୟରୁ କେତେକ ଶାଖା-ବିଶିଷ୍ଟ ଓ କେତେକ ଶାଖା-ବିହୀନ । ସମସ୍ତେ ଏକା ଜଳ ପାଆନ୍ତି ମାତ୍ର ଆମ୍ଭେ ଗୋଟିଏ ଫଳକୁ ଅନ୍ୟ ଫଳ ତୁଳନାରେ ଅଧିକ ସ୍ୱାଦିଷ୍ଟ କରିଦେଉ । ଯେଉଁମାନେ ବୁଦ୍ଧି ବ୍ୟବହାର କରନ୍ତି, ସେମାନଙ୍କ ପାଇଁ ଏଥିରେ (ତାଙ୍କ ମହିମାର) ଅନେକ ସଂକେତ ଅଛି ।

୫. ଯଦି ତୁମେ ଆଶ୍ଚର୍ଯ୍ୟ ହେଉଛ, ତେବେ ସେମାନଙ୍କର ଏହି କଥା ପ୍ରକୃତରେ ଆଶ୍ଚର୍ଯ୍ୟଜନକ ଯେ ଯେତେବେଳେ ଆମେ (ମରି ସାରି) ମାଟି ହୋଇଯିବୁ, କ'ଣ ସତରେ ପୁଣି ନୂଆ ଜନ୍ମ ପାଇବୁ? ଏମାନେ ସେହି ଲୋକ

ଯେଉଁମାନେ ନିଜ ପାଳନକର୍ତ୍ତାଙ୍କୁ ଅସ୍ୱୀକାର କଲେ। ଏମାନଙ୍କ ବେକରେ ଯୁଆଳି ପଡ଼ିବ। ଏମାନେ ନର୍କବାସୀ ହେବେ ଏବଂ ସେଠାରେ ସର୍ବଦା ରହିବେ। ୬. ସେମାନେ ନିଜର ମଙ୍ଗଳ ପରିବର୍ତ୍ତେ ଅମଙ୍ଗଳ ପାଇଁ ଅଥୟ ହେଉଛନ୍ତି। ଅଥଚ ଏମାନଙ୍କ ପୂର୍ବରୁ (ଏଭଳି ଲୋକମାନଙ୍କ ପ୍ରତି ହୋଇଥିବା ଶାସ୍ତିର) ବହୁ ଉଦାହରଣ ରହିଛି। ବାସ୍ତବରେ ମନୁଷ୍ୟମାନଙ୍କର ଅନ୍ୟାୟ ଓ ଅପକର୍ମ ସତ୍ତ୍ୱେ ଈଶ୍ୱର ସେମାନଙ୍କୁ କ୍ଷମା କରି ଦିଅନ୍ତି ଏବଂ ଏହା ମଧ୍ୟ ସତ୍ୟ ଯେ ତୁମ ଈଶ୍ୱର କଠୋର ଶାସ୍ତି ଦିଅନ୍ତି।

୭. ଅସଦ୍‌ବିଶ୍ୱାସୀମାନେ କହୁଛନ୍ତି ଯେ ଏହି ବ୍ୟକ୍ତିଙ୍କୁ (ଅର୍ଥାତ୍ ମାହାମାନ୍ୟ ମୁହମ୍ମଦଙ୍କୁ) ତାଙ୍କ ଈଶ୍ୱର କୌଣସି ଅଲୌକିକ ନିଦର୍ଶନ କାହିଁକି ଦେଇନାହାନ୍ତି ? (ହେ ବାର୍ତ୍ତାବହ !) କେବଳ (ଲୋକଙ୍କୁ) ସାବଧାନ କରିଦେବା ତୁମର କାମ ଏବଂ ପ୍ରତ୍ୟେକ ସମାଜ ପାଇଁ ମାର୍ଗଦର୍ଶକ ଆସିଛନ୍ତି।

୮. ପ୍ରତ୍ୟେକ ଗର୍ଭବତୀ ନାରୀ ଗର୍ଭରେ ଯାହା ଧାରଣ କରେ, ଅଲ୍ଲାହ୍ ତାହା ଜାଣନ୍ତି ଏବଂ ଗର୍ଭର ହ୍ରାସ ଓ ବୃଦ୍ଧି ବିଷୟରେ ମଧ୍ୟ ଜାଣନ୍ତି। ତାଙ୍କ ପାଖରେ ପ୍ରତ୍ୟେକ ବିଷୟ ପାଇଁ ଏକ ବିଧିବଦ୍ଧ ଯୋଜନା ରହିଛି। ୯. ସେ ଦୃଷ୍ଟ ଓ ଅଦୃଷ୍ଟର ଜ୍ଞାତା। ସମସ୍ତଙ୍କଠାରୁ ଶ୍ରେଷ୍ଠ ଏବଂ ସମସ୍ତଙ୍କଠାରୁ ମହାନ। ୧୦. ତୁମମାନଙ୍କ ମଧ୍ୟରୁ କେହି ଧୀର ସ୍ୱରରେ କଥା କହୁ ବା ଉଚ୍ଚ ସ୍ୱରରେ କହୁ, କେହି ରାତିରେ ଲୁଚିଥାଉ ବା ଦିନରେ ଚାଲବୁଲ କରୁଥାଉ, ତାଙ୍କ ପାଇଁ ସବୁ ସମାନ। ୧୧. ପ୍ରତ୍ୟେକ ବ୍ୟକ୍ତିର ଆଗରେ ଓ ପଛରେ ଦେବଦୂତ ନିଯୁକ୍ତ ହୋଇଛନ୍ତି ଯେଉଁମାନେ (ଦିନରାତି) ଅଲ୍ଲାହଙ୍କ ଆଦେଶ ଅନୁଯାୟୀ ତାକୁ ଜଗିଥାଆନ୍ତି। ଅଲ୍ଲାହ କୌଣସି ସମାଜର (ଭଲ) ଅବସ୍ଥାକୁ ସେପର୍ଯ୍ୟନ୍ତ ପରିବର୍ତ୍ତନ କରନ୍ତିନାହିଁ ଯେପର୍ଯ୍ୟନ୍ତ ସେମାନେ ନିଜ ଭିତରେ ଯାହା (ଭଲ ଗୁଣ) ଅଛି, ତାହାକୁ ପରିବର୍ତ୍ତନ କରିନାହାନ୍ତି। ଯଦି ଅଲ୍ଲାହ୍ କୌଣସି ସମାଜକୁ ବିପଦରେ ପକାଇବାକୁ ସ୍ଥିର କରନ୍ତି ତେବେ ସେଥିରେ ଆଦୌ ପରିବର୍ତ୍ତନ ହୁଏନାହିଁ। ତାଙ୍କ ବ୍ୟତୀତ କେହି ସେମାନଙ୍କର କାର୍ଯ୍ୟସିଦ୍ଧି କରି ପାରିବେନାହିଁ।

୧୨. ସେ ହିଁ ତୁମମାନଙ୍କୁ ବିଜୁଳିର ଚମକ ଦେଖାଇ ଥାଆନ୍ତି, ଯାହାଫଳରେ ତୁମମାନଙ୍କ ମନରେ ଭୟ ଜାତ ହୁଏ ଏବଂ (ବର୍ଷା ହେବ ବୋଲି)

ଆଶାର ସଂଚାର ମଧ୍ୟ ହୁଏ । ସେ ହିଁ ଘନ ବାଦଲଗୁଡ଼ିକୁ ଧାରଣ କରନ୍ତି । ୧୩. ଗରଜୁ ଥିବା ମେଘ ତାଙ୍କର ସ୍ତୁତି ଓ ଗୁଣଗାନ କରେ ଏବଂ ଦେବଦୂତମାନେ ମଧ୍ୟ ତାଙ୍କ ଭୟରେ (ସ୍ତୁତିଗାନ) କରୁଥାଆନ୍ତି । ସେ ହିଁ ବଜ୍ରପାତ କରନ୍ତି ଏବଂ ଯାହାକୁ ଚାହାନ୍ତି ବଜ୍ରାଘାତ କରନ୍ତି । ସେମାନେ (କିନ୍ତୁ) ଅଲ୍ଲାଙ୍କ ବିଷୟରେ ଯୁକ୍ତିତର୍କ କରୁଛନ୍ତି । ସେ ମହାଶକ୍ତିଶାଳୀ ।

୧୪. କେବଳ ତାଙ୍କୁ ହିଁ ଡାକିବା ଠିକ୍ । ତାଙ୍କୁ ଛାଡ଼ି ଯେଉଁମାନଙ୍କୁ (କାର୍ଯ୍ୟସିଦ୍ଧି ବା ବିଘ୍ନନାଶନ ପାଇଁ) ଏମାନେ ଡାକୁଛନ୍ତି, ସେମାନେ ଏମାନଙ୍କ ପ୍ରାର୍ଥନାର ଉତ୍ତର ଦେଇ ପାରିବେନାହିଁ ବରଂ ସେମାନଙ୍କୁ ଡାକିବା ଏମିତି, ଯେମିତି କେହି ପାଣି ଆଡ଼କୁ ହାତ ବଢ଼ାଇ କାମନା କରେ ଯେ ଏହା ତା' ମୁହଁକୁ ଆସିଯାଉ, ଅଥଚ ପାଣି ତା' ମୁହଁକୁ ଆଦୌ ଆସିବନାହିଁ । (ଏହିପରି) ଅଧର୍ମୀମାନଙ୍କର ପ୍ରାର୍ଥନା ବୃଥା ହୋଇଥାଏ । ୧୫. ପୃଥିବୀ ଓ ଆକାଶରେ ଥିବା ପ୍ରତ୍ୟେକ ସୃଷ୍ଟି ନିଜ ଇଚ୍ଛାରେ ହେଉ ବା ଅନିଚ୍ଛାରେ ହେଉ, ଅଲ୍ଲାହଙ୍କୁ ପ୍ରଣାମ କରନ୍ତି ଏବଂ ସେମାନଙ୍କର ଛାୟାଗୁଡ଼ିକ ମଧ୍ୟ ସକାଳେ ଓ ସନ୍ଧ୍ୟାରେ ତାଙ୍କୁ ପ୍ରଣାମ କରନ୍ତି । [ପ୍ରଣାମ]

୧୬. ସେମାନଙ୍କୁ ପଚାର ଯେ ଧରିତ୍ରୀ ଓ ଆକାଶର ମାଲିକ କିଏ ? ତୁମେ ହିଁ କହିଦିଅ, "ଅଲ୍ଲାହ୍" । ପୁଣି ପଚାର, "ତଥାପି ତୁମେମାନେ ତାଙ୍କୁ ଛାଡ଼ି ସେମାନଙ୍କୁ ଆଶ୍ରୟଦାତା ମାନିନେଇଛ ଯେଉଁମାନଙ୍କର ନିଜର ଭଲ ବା ମନ୍ଦ କରିବାର କ୍ଷମତା ମଧ୍ୟ ନାହିଁ ? ସେମାନଙ୍କୁ ପଚାର, "କ'ଣ ଆଖି ନଥିବା ଏବଂ ଆଖି ଥିବା ବ୍ୟକ୍ତି ପରସ୍ପର ସମାନ ହୋଇପାରନ୍ତି ? କ'ଣ ଅନ୍ଧକାର ଏବଂ ଆଲୋକ ସମାନ ହୋଇପାରେ ?" ଏମାନେ ଯେଉଁମାନଙ୍କୁ ଅଲ୍ଲାହଙ୍କର ସମକକ୍ଷ କରିଛନ୍ତି, କ'ଣ ସେମାନେ ମଧ୍ୟ ଏମିତି କିଛି ସୃଷ୍ଟି କରିଛନ୍ତି ଯେମିତି ଅଲ୍ଲାହ୍ ସୃଷ୍ଟି କରନ୍ତି ଯାହାଫଳରେ (ଉଭୟ) ସୃଷ୍ଟି ସେମାନଙ୍କୁ ଏକାପରି ଲାଗୁଛି ? ସେମାନଙ୍କୁ କୁହ, "ଅଲ୍ଲାହ୍ ହିଁ ସକଳ ଜୀବଜଡ଼ର ସ୍ରଷ୍ଟା । ସେ ଅଦ୍ୱିତୀୟ ଏବଂ ଅପ୍ରତିରୋଧ ।

୧୭. ସେ ଆକାଶରୁ ଜଳବର୍ଷା କରନ୍ତି ଏବଂ ନଦନଦୀଗୁଡ଼ିକ ନିଜନିଜ କ୍ଷମତା ଅନୁଯାୟୀ ଏହାକୁ ନେଇ ପ୍ରବାହିତ ହୁଅନ୍ତି । ପୁଣି ଯେତେବେଳେ ବନ୍ୟା ଆସେ, ଜଳର ଉପରି ଭାଗରେ ଫେଣ ଉଠିଥାଏ ଏବଂ ଏହିପରି ଫେଣ ସେହି ଧାତୁଗୁଡ଼ିକରୁ

ମଧ୍ୟ ବାହାରେ ଯାହାକୁ ଲୋକେ ଅଳଙ୍କାର ଓ ଗୃହ ଉପକରଣ ଗଢ଼ିବା ପାଇଁ ତରଳାଇ ଥାଆନ୍ତି । ଅଲ୍ଲାହ୍ ଏହିପରି ସତ୍ୟ ଓ ଅସତ୍ୟର ଉଦାହରଣ ଦେଇଥାଆନ୍ତି । ଫେଣ ତ ଉଡ଼ିଯାଏ ମାତ୍ର ଲୋକମାନଙ୍କ ପାଇଁ ଯାହା ଉପକାରୀ ତାହା ଭୂମି ଉପରେ ରହିଯାଏ । ଅଲ୍ଲାହ୍ ଏହିପରି (ସତ୍ୟ ଓ ଅସତ୍ୟର) ଉଦାହରଣ ଦେଇଥାଆନ୍ତି ।

୧୮. ଯେଉଁମାନେ ସେମାନଙ୍କ ପାଳନକର୍ତ୍ତାଙ୍କ କଥା ମାନିନେଲେ ସେମାନଙ୍କର ନିଶ୍ଚୟ ମଂଗଳ ହେବ । ଯେଉଁମାନେ ତାଙ୍କୁ ଅମାନ୍ୟ କଲେ, ଯଦି ସେମାନେ ପୃଥିବୀର ସମସ୍ତ ସଂପଦର ଅଧିକାରୀ ହୋଇଯାଆନ୍ତି ଏବଂ ସେମାନଙ୍କୁ ଆହୁରି ସେତିକି (ଧନ) ମିଳିଯାଏ, (ବିଚାର ଦିନ) ସେମାନେ ନିଜ ମୁକ୍ତି ବଦଳରେ ସବୁତକ ଦେବାକୁ ପ୍ରସ୍ତୁତ ହୋଇଯିବେ । ଏମାନଙ୍କଠାରୁ କଡ଼ାକଡ଼ି ହିସାବ ନିଆଯିବ । ନର୍କ ଏମାନଙ୍କର ଘର ହେବ ଏବଂ ଏହା ଏକ କଦର୍ଯ୍ୟ ସ୍ଥାନ ।

୧୯. ଯିଏ ଏହା ଜାଣେ ଯେ ଈଶ୍ୱର ତୁମ ପାଖକୁ ଯାହା (ଦୈବବାଣୀ) ପଠାଇଛନ୍ତି ତାହା ସତ୍ୟ, କ'ଣ ସେ ଜଣେ ଅନ୍ଧ ସହିତ ସମାନ ହୋଇପାରେ ? କେବଳ ବୁଦ୍ଧିମାନ ଲୋକମାନେ ହିଁ ଉପଦେଶ ଗ୍ରହଣ କରନ୍ତି । ୨୦. ଯେଉଁମାନେ ଅଲ୍ଲାହଙ୍କୁ ଦେଇଥିବା ବଚନ ରକ୍ଷା କରନ୍ତି ଏବଂ ବଚନ ଭଂଗ କରନ୍ତିନାହିଁ, ୨୧. ଅଲ୍ଲାହ୍ (ଆତ୍ମୀୟସ୍ୱଜନଙ୍କର) ଯେଉଁ ସମ୍ପର୍କକୁ ଯୋଡ଼ି ରଖିବାର ଆଦେଶ ଦେଇଛନ୍ତି ତାହାକୁ ଯୋଡ଼ି ରଖନ୍ତି, ଈଶ୍ୱରଙ୍କୁ ଭୟ କରନ୍ତି ଏବଂ (ନିଜ କର୍ମର) ମନ୍ଦ ପରିଣତି ବିଷୟରେ ଶଙ୍କିତ ଥାଆନ୍ତି, ୨୨. ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ପ୍ରସନ୍ନତା ପାଇଁ (ଦୁଃଖ ବିପଦରେ) ଧୈର୍ଯ୍ୟ ଅବଲମ୍ବନ କରନ୍ତି, ନମାଜ ସଂପାଦନ କରନ୍ତି, ଆମ୍ଭେ ଦେଇଥିବା ଧନରୁ ଗୁପ୍ତରେ ଓ ପ୍ରକାଶ୍ୟରେ (ପୁଣ୍ୟ କାର୍ଯ୍ୟରେ) ଖର୍ଚ୍ଚ କରନ୍ତି ଏବଂ ଦୁର୍ବ୍ୟବହାରର ଉତ୍ତର ଭଲ ବ୍ୟବହାର ଦ୍ୱାରା ଦିଅନ୍ତି । ପରଲୋକର ଘର ଏଇମାନଙ୍କ ପାଇଁ ଉଦ୍ଦିଷ୍ଟ । ୨୩. ଏହା ନିତ୍ୟ ବୈକୁଣ୍ଠର ଉଦ୍ୟାନ ଯେଉଁଠାରେ ସେମାନେ ନିଜେ ରହିବେ ଏବଂ ସେମାନଙ୍କର ପିତୃପୁରୁଷ, ପତ୍ନୀ ଓ ସନ୍ତାନମାନଙ୍କ ମଧ୍ୟରୁ ଯେଉଁମାନେ ସଦାଚାରୀ ହୋଇଥିବେ, ସେମାନେ ମଧ୍ୟ ରହିବେ । (ସେମାନଙ୍କର ଅଭ୍ୟର୍ଥନା) ପାଇଁ ଦେବଦୂତଗଣ ସ୍ୱର୍ଗର ପ୍ରତ୍ୟେକ ଦ୍ୱାର ଦେଇ ଆସିବେ ୨୪. ଏବଂ ସେମାନଙ୍କୁ କହିବେ, "ତୁମେମାନେ (ସଂସାରରେ) ସଂଯମ ଆଚରଣ କରିଥିବା ଯୋଗୁଁ ତୁମାନଙ୍କର ମଂଗଳ ହେବ । ପରଲୋକର ଘର କେତେ

ସୁନ୍ଦର !" ୨୫. ଯେଉଁମାନେ ଅଲ୍ଲାହଙ୍କୁ ବଚନ ଦେଲାପରେ ଦୃଢ଼ ସଂକଳ୍ପ କରି ଭାଂଗିଦିଅନ୍ତି, (ଆତ୍ମୀୟସ୍ୱଜନଙ୍କ ସହିତ) ଯେଉଁ ସମ୍ପର୍କକୁ ଅଲ୍ଲାହ୍ ଯୋଡ଼ି ରଖିବାର ଆଜ୍ଞା ଦେଇଛନ୍ତି, ତାହାକୁ ଛିନ୍ନ କରି ଦିଅନ୍ତି ଏବଂ ଭୂପୃଷ୍ଠରେ ଅଶାନ୍ତି ସୃଷ୍ଟି କରନ୍ତି, ସେମାନଙ୍କୁ ଧିକ୍କାର । ସେମାନେ ପରଲୋକରେ ମନ୍ଦ ପରିଣାମ ଭୋଗିବେ ।

୨୬. ଅଲ୍ଲାହ୍ ଯାହାକୁ ଚାହାନ୍ତି ତାକୁ ଅମାପ ସାଂସାରିକ ସାଧନ ଦିଅନ୍ତି ଏବଂ ଯାହାକୁ ଚାହାନ୍ତି ମାପିଚୁପି ଦିଅନ୍ତି । ଏମାନେ ସଂସାରରେ ମଗ୍ନ ହୋଇ ଯାଇଛନ୍ତି କିନ୍ତୁ ପରଲୋକ ତୁଳନାରେ ସାଂସାରିକ ଜୀବନର ସୁଖ ଅତି ନଗଣ୍ୟ ।

୨୭. (ହେ ବାର୍ତ୍ତାବହ !) ଅସଦ୍‌ବିଶ୍ୱାସୀମାନେ କହୁଛନ୍ତି ଯେ ତାଙ୍କୁ ତାଙ୍କ ଈଶ୍ୱରଙ୍କ ଦ୍ୱାରା କାହିଁକି କୌଣସି ଅଲୌକିକ ନିଦର୍ଶନ ଦିଆ ଯାଇନାହିଁ ? ସେମାନଙ୍କୁ କହିଦିଅ, "ଅଲ୍ଲାହ୍ ଯାହାକୁ ଚାହାନ୍ତି ତାକୁ ପଥଭ୍ରଷ୍ଟ କରନ୍ତି ଏବଂ ସେ ତାକୁ ହିଁ ନିଜ ବାଟକୁ ଆଣନ୍ତି ଯିଏ (ଅନୁତପ୍ତ ହୋଇ) ତାଙ୍କ ପାଖକୁ ଫେରିଆସେ ।" ୨୮. ଏହି ଲୋକମାନେ (ସତ୍ୟରେ) ବିଶ୍ୱାସ କଲେ ଏବଂ ଅଲ୍ଲାହଙ୍କୁ ସ୍ମରଣ କରିବା ଦ୍ୱାରା ସେମାନଙ୍କ ମନକୁ ଶାନ୍ତି ମିଳେ । ମନେରଖ, ଅଲ୍ଲାହଙ୍କୁ ସ୍ମରଣ କଲେ ମନକୁ ଶାନ୍ତି ମିଳିଥାଏ । ୨୯. ଯେଉଁମାନେ ବିଶ୍ୱାସ କଲେ ଏବଂ ଭଲ କର୍ମ କଲେ, ସେମାନଙ୍କୁ ପରମ ସୁଖ ମିଳିବ ଏବଂ ସେମାନଙ୍କ ପରିଣାମ ଖୁବ୍ ଭଲ ହେବ ।

୩୦. (ଯେପରି ଆମ୍ଭେ ଅନ୍ୟ ବାର୍ତ୍ତାବହମାନଙ୍କୁ ପଠାଇଥିଲୁ) ସେହିପରି ଆମ୍ଭେ ତୁମକୁ ଏଭଳି ଏକ ସମାଜ ପାଖକୁ ପଠାଇଛୁ ଯାହା ପୂର୍ବରୁ ଅନେକ ସମାଜର ଅନ୍ତ ହୋଇସାରିଛି ଯେପରିକି ତୁମେ ସେମାନଙ୍କୁ ସେହି ଗ୍ରନ୍ଥ ପଢ଼ି ଶୁଣାଇବ ଯାହା ଆମ୍ଭେ ତୁମକୁ ଦୈବବାଣୀ କରିଛୁ । ସେମାନେ କରୁଣାମୟଙ୍କୁ ମାନୁନାହାନ୍ତି । ସେମାନଙ୍କୁ କୁହ, "ସେ ହିଁ ମୋ'ର ପାଳନକର୍ତ୍ତା । ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସନାଯୋଗ୍ୟ ନୁହେଁ । ତାଙ୍କରି ଉପରେ ମୁଁ ଭରସା କରିଛି ଏବଂ ତାଙ୍କରି ପାଖକୁ ମୁଁ ଫେରିଯିବି ।"

୩୧. ଯଦି ଏଭଳି ଏକ କୁରଆନ୍ ଆସିଥାଆନ୍ତା ଯାହା ବଳରେ ପାହାଡ଼ଗୁଡ଼ିକ ଚାଲି ପାରନ୍ତେ ବା ଧରିତ୍ରୀ ଫାଟି ଯାଆନ୍ତା କିମ୍ବା ମୃତ ଲୋକମାନେ କଥାବାର୍ତ୍ତା କରିପାରନ୍ତେ (ତଥାପି ଏମାନେ ବିଶ୍ୱାସ କରନ୍ତେନାହିଁ) । ପ୍ରକୃତରେ ସବୁ କ୍ଷମତା ଅଲ୍ଲାହଙ୍କ ହାତରେ ରହିଛି । ତଥାପି କ'ଣ ସଦ୍‌ବିଶ୍ୱାସୀମାନେ ଏବିଷୟରେ

ନିଶ୍ଚିନ୍ତ ନୁହନ୍ତି ଯେ ଯଦି ଅଲ୍ଲାହ୍ ଇଚ୍ଛା କରିଥାଆନ୍ତେ ତେବେ ସମୁଦାୟ ମାନବଜାତିକୁ (ବାଧ୍ୟ କରି) ସତମାର୍ଗକୁ ଆଣି ପାରିଥାଆନ୍ତେ ? ଯେଉଁମାନେ ପ୍ରତ୍ୟାଖ୍ୟାନ କରିଛନ୍ତି, (ପ୍ରଳୟ ବିଷୟରେ) ଅଲ୍ଲାହଙ୍କ କଥା କାର୍ଯ୍ୟକାରୀ ହେବା ପର୍ଯ୍ୟନ୍ତ ସେମାନଙ୍କର କୁକର୍ମ ଯୋଗୁଁ ସେମାନଙ୍କ ଉପରେ କିମ୍ବା ସେମାନଙ୍କ ଘର ଆଖପାଖରେ ନିୟମିତ ଭାବରେ କିଛିନା କିଛି ବିପଦ ଆସୁଥିବ । ଅଲ୍ଲାହ୍ କଦାପି ବଚନ ଭଙ୍ଗ କରନ୍ତିନାହିଁ । ୩୨. ତୁମ ପୂର୍ବ ବାର୍ତ୍ତାବହମାନଙ୍କ ପ୍ରତି ମଧ୍ୟ ବିଦ୍ରୂପ କରାଯାଇଛି ଏବଂ ମୁଁ ମଧ୍ୟ ନାସ୍ତିକମାନଙ୍କୁ କିଛି ସମୟ ଢ଼ିଲା ଛାଡ଼ିଦେଲି । ପରିଶେଷରେ ସେମାନଙ୍କୁ ଶାସ୍ତି ଦେଲି । କି ଭୟଙ୍କର ଥିଲା ମୋ' ଶାସ୍ତି ?

୩୩. କ'ଣ ସେମାନେ ତାଙ୍କ ସହିତ ଅନ୍ୟମାନଙ୍କୁ ସମାନ କରିଦେଲେ ଯିଏ ପ୍ରତ୍ୟେକ ଜୀବର ପ୍ରତିଟି କର୍ମର ତତ୍ତ୍ୱାବଧାନ କରନ୍ତି ? ସେମାନଙ୍କୁ ପଚାର, "ଟିକିଏ ସେମାନଙ୍କର ନାଁ କୁହ ! କ'ଣ ତୁମେମାନେ ଅଲ୍ଲାହଙ୍କୁ ଏଭଳି କଥା ଜଣାଇବ ଯାହାର ଅସ୍ତିତ୍ୱ ପୃଥିବୀରେ ଅଛି ଅଥଚ ସେ ଜାଣିନାହାନ୍ତି ବା ମନଇଚ୍ଛା କଥାଗୁଡ଼ିଏ କହିଦେଉଛ ?" ବାସ୍ତବରେ ନାସ୍ତିକମାନଙ୍କୁ ସେମାନଙ୍କ ଚଲାକିଗୁଡ଼ିକ ଭାରି ସୁନ୍ଦର ଲାଗୁଛି ଏବଂ ସେମାନଙ୍କୁ ସତ୍‌ପଥରୁ ରୋକି ଦିଆଯାଇଛି । ଅଲ୍ଲାହ୍ ଯାହାକୁ ପଥଭ୍ରଷ୍ଟ କରନ୍ତି ତାକୁ କେହି ବାଟ ଦେଖାଇ ପାରିବେନାହିଁ । ୩୪. ସେମାନେ ସଂସାରରେ ମଧ୍ୟ ଶାସ୍ତି ଭୋଗିବେ ଏବଂ ପରଲୋକର ଶାସ୍ତି ତ ଆହୁରି ଭୟଙ୍କର । ଅଲ୍ଲାହଙ୍କ ପ୍ରକୋପରୁ ସେମାନଙ୍କୁ କେହି ରକ୍ଷା କରିପାରିବେ ନାହିଁ । ୩୫. ସଦାଚରୀ ଲୋକମାନଙ୍କୁ ଏପରି ସ୍ୱର୍ଗ ଉଦ୍ୟାନର ପ୍ରତିଶ୍ରୁତି ଦିଆଯାଇଛି ଯାହା ତଳେ ଝରଣା ପ୍ରବାହିତ ହୁଏ ଏବଂ ଏହାର ଫଳମୂଳ ଓ ଛାୟା ଚିରଦିନ ରହିବ । ସଦାଚରୀମାନଙ୍କର ଏହିପରି ପରିଣାମ ହେବ ଏବଂ ଅଧର୍ମୀମାନଙ୍କର ପରିଣାମ ନର୍କ ହେବ ।

୩୬. ଯେଉଁମାନଙ୍କୁ (ଏହା ପୂର୍ବରୁ) ଆମ୍ଭେ ଗ୍ରନ୍ଥ ଦେଇଥିଲୁ, ସେମାନେ ତୁମ ପାଖକୁ ପଠାଯାଇଥିବା ଏହି ଗ୍ରନ୍ଥ ଯୋଗୁଁ ଖୁସି ଅଛନ୍ତି ଏବଂ ଆଉ କେତେକ ଗୋଷ୍ଠୀ ଏହାର କେତେକ କଥାକୁ ମାନୁନାହାନ୍ତି । (ସେମାନଙ୍କୁ ସ୍ପଷ୍ଟ) କହିଦିଅ, "ମୋତେ କେବଳ ଅଲ୍ଲାହଙ୍କର ଉପାସନା କରିବାର ଆଦେଶ ଦିଆଯାଇଛି ଏବଂ ତାଙ୍କ ଈଶ୍ୱରତ୍ୱରେ ଅନ୍ୟ କାହାରିକୁ ଅଂଶୀଦାର କରିବାକୁ ମନା କରାଯାଇଛି । ମୁଁ

(ତୁମମାନଙ୍କୁ) ତାଙ୍କରି ବାଟକୁ ଡାକୁଛି ଏବଂ ତାଙ୍କରି ପାଖକୁ ମୋତେ ଫେରିବାକୁ ହେବ ।” ୩୭. ତେଣୁ ଏହି କୁରଆନକୁ ଆମ୍ଭେ ତୁମ ପାଖକୁ ଏକ ନିର୍ଦ୍ଦେଶନାମା ରୂପେ ଆରବୀ ଭାଷାରେ ପଠାଇଛୁ । (ହେ ବାର୍ତ୍ତାବହ!) ଯଦି ତୁମକୁ ସଦ୍‌ଜ୍ଞାନ ମିଳିବା ସତ୍ତ୍ୱେ ତୁମେ ସେମାନଙ୍କ ଇଚ୍ଛା ଅନୁସାରେ ଚାଲିବ ତେବେ ଅଲ୍ଲାହଙ୍କଠାରୁ ରକ୍ଷା କରିବା ପାଇଁ ତୁମକୁ କେହି ଆଶ୍ରୟଦାତା ବା ରକ୍ଷକ ମିଳିବେନାହିଁ ।

୩୮. ତୁମ ପୂର୍ବରୁ ମଧ୍ୟ ଆମ୍ଭେ ଅନେକ ବାର୍ତ୍ତାବହଙ୍କୁ ପଠାଇ ସାରିଛୁ ଏବଂ ସେମାନଙ୍କୁ ଆମ୍ଭେ ପତ୍ନୀ ଓ ସନ୍ତାନ ମଧ୍ୟ ଦେଇଥିଲୁ । କୌଣସି ବାର୍ତ୍ତାବହଙ୍କର କ୍ଷମତା ନାହିଁ ଯେ ସେ ଅଲ୍ଲାହଙ୍କ ଆଜ୍ଞା ବିନା କୌଣସି ଅଲୌକିକ କାର୍ଯ୍ୟ କରି ଦେଖାଇ ପାରିବେ । ପ୍ରତ୍ୟେକ ଯୁଗ ପାଇଁ ଗ୍ରନ୍ଥ ଦିଆଯାଇଛି । ୩୯. ଅଲ୍ଲାହ୍ ଯେଉଁ ଆଦେଶକୁ ଚାହାନ୍ତି ରଦ୍ଦ କରି ଦିଅନ୍ତି ଏବଂ ଯାହାକୁ ଚାହାନ୍ତି ବାକି ରଖନ୍ତି । ମୂଳଗ୍ରନ୍ଥ ତାଙ୍କରି ପାଖରେ ଅଛି ।

୪୦. ଆମ୍ଭେ ସେମାନଙ୍କୁ କୁପରିଣାମର ଯେଉଁ ଚେତାବନୀ ଦେଇଛୁ, ଯଦି ଆମ୍ଭେ ଚାହୁଁ ସେଥିରୁ କିଛି ତୁମକୁ (ତୁମ ଜୀବନକାଳ ମଧ୍ୟରେ) ଦେଖାଇ ଦେଇପାରୁ କିମ୍ବା (ଏହା ପୂର୍ବରୁ) ତୁମର ଜୀବନକାଳ ସମାପ୍ତ କରି ଦେଇପାରୁ । ତେଣୁ କେବଳ ଆମ୍ଭର ବାର୍ତ୍ତା ଦେଇଦେବା ତୁମର ଦାୟିତ୍ୱ ଏବଂ ହିସାବ ନେବା ଆମ୍ଭର ଦାୟିତ୍ୱ । ୪୧. କ'ଣ ସେମାନେ ଦେଖୁନାହାନ୍ତି ଯେ ଆମ୍ଭେ କିପରି ସେମାନଙ୍କ (ନିୟନ୍ତ୍ରଣରେ ଥିବା) ଅଂଚଳକୁ ଚାରିଆଡୁ ହ୍ରାସ କରି ଚାଲିଛୁ? ଅଲ୍ଲାହ୍ ହିଁ ଆଜ୍ଞା ଦିଅନ୍ତି ଏବଂ ତାଙ୍କ ନିଷ୍ପତ୍ତିକୁ କେହି ରୋକି ପାରିବେନାହିଁ । ସେ ଶୀଘ୍ର ହିସାବ ନେବେ । ୪୨. ଏମାନଙ୍କ ପୂର୍ବରୁ ଯେଉଁମାନେ ଥିଲେ, ସେମାନେ ମଧ୍ୟ ବଡ଼ବଡ଼ ଚକ୍ରାନ୍ତ କରିଥିଲେ କିନ୍ତୁ ପ୍ରତ୍ୟେକ ଯୋଜନାର ସଫଳତା ଅଲ୍ଲାହଙ୍କ ହାତରେ ରହିଛି । ପ୍ରତ୍ୟେକ ଜୀବ ଯାହା କର୍ମ କରେ ସେ ଜାଣନ୍ତି । ନାସ୍ତିକମାନେ ଶୀଘ୍ର ଜାଣିଯିବେ ଯେ ପରଲୋକର ଘର କାହା ପାଇଁ ଉଦ୍ଦିଷ୍ଟ ।

୪୩. ନାସ୍ତିକମାନେ କହୁଛନ୍ତି ଯେ ତୁମେ ଈଶ୍ୱରଦୂତ ନୁହଁ । ସେମାନଙ୍କୁ କହିଦିଅ, “ମୋ'ର ଏବଂ ତୁମର ସାକ୍ଷୀ ରୂପେ ସ୍ୱୟଂ ଅଲ୍ଲାହ୍ ଏବଂ ସେହି ବ୍ୟକ୍ତି ଯଥେଷ୍ଟ ଯାହାର ଗ୍ରନ୍ଥଜ୍ଞାନ ଅଛି ।”

## ଅଧ୍ୟାୟ ୧୪, ଇବ୍ରାହିମ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍ଙ୍କ ନାମରେ

୧. ଅଲିଫ୍–ଲାମ୍–ରା । ଆମ୍ଭେ ତୁମ ପାଖକୁ ଏହି ଗ୍ରନ୍ଥଟି ପଠାଇଛୁ ଯେପରିକି ତୁମେ ଲୋକମାନଙ୍କୁ ସେମାନଙ୍କ ପ୍ରଭୁଙ୍କ ଆଜ୍ଞା ଅନୁଯାୟୀ ଅନ୍ଧକାର ମଧ୍ୟରୁ ବାହାର କରି ଆଲୋକକୁ ଆଣିବ – ତାଙ୍କରି ମାର୍ଗକୁ, ଯିଏ ମହାଶକ୍ତିଶାଳୀ ଓ ପ୍ରଶଂସାଯୋଗ୍ୟ । ୨. ସେ ହିଁ ଅଲ୍ଲାହ୍ ଯିଏ ପୃଥିବୀ ଓ ଆକାଶମଣ୍ଡଳରେ ଥିବା ସକଳ ସୃଷ୍ଟିର ମାଲିକ । ଯେଉଁମାନେ ସତ୍ୟକୁ ଅସ୍ୱୀକାର କରୁଛନ୍ତି ସେମାନଙ୍କର ସର୍ବନାଶ ହେବ ଏବଂ ସେମାନେ କଠୋର ଶାସ୍ତି ଭୋଗିବେ । ୩. ଯେଉଁମାନେ ପରଲୋକ ତୁଳନାରେ ପାର୍ଥିବ ଜୀବନକୁ ଅଧିକ ପସନ୍ଦ କରନ୍ତି, ଅଲ୍ଲାହଙ୍କ ମାର୍ଗରେ ବାଧା ସୃଷ୍ଟି କରନ୍ତି ଏବଂ ସେଥିରେ ଦୋଷ ବାହାର କରନ୍ତି, ସେମାନେ ପଥଭ୍ରଷ୍ଟ ହୋଇ ବହୁଦୂରକୁ ଚାଲିଗଲେ ।

୪. ଆମ୍ଭେ ଯେତେବେଳେ ଯେଉଁ ବାର୍ତ୍ତାବହ ପଠାଇଛୁ, ସେ ତାଙ୍କରି ସମାଜର ଭାଷାରେ (ଆମ୍ଭର) ବାର୍ତ୍ତା ଦେଇଛନ୍ତି ଯେପରିକି ସେ ସେମାନଙ୍କୁ ପରିଷ୍କାର ଭାବରେ ବୁଝାଇ ପାରିବେ । ଏହାପରେ ଅଲ୍ଲାହ୍ ଯାହାକୁ ଚାହାନ୍ତି ପଥଭ୍ରଷ୍ଟ କରନ୍ତି ଏବଂ ଯାହାକୁ ଚାହାନ୍ତି ପଥ ଦେଖାଇ ଦିଅନ୍ତି । ସେ ମହାଶକ୍ତିମାନ ଏବଂ ତତ୍ତ୍ୱଜ୍ଞ ।

୫. (ଏହା ପୂର୍ବରୁ) ଆମ୍ଭେ ମୁ'ସାଙ୍କୁ ଆମ୍ଭର କେତେକ ନିଦର୍ଶନ ଦେଇ ପଠାଇଥିଲୁ (ଏବଂ ନିର୍ଦ୍ଦେଶ ଦେଇଥିଲୁ) ଯେ ନିଜ ସମାଜକୁ ଅନ୍ଧକାର ମଧ୍ୟରୁ ବାହାରି କରି ଆଲୋକକୁ ଆଣ ଏବଂ ସେମାନଙ୍କୁ ଅଲ୍ଲାହଙ୍କର (ବିଶେଷ) ଦିନଗୁଡ଼ିକୁ ସ୍ମରଣ କରାଅ । ଏଥିରେ ପ୍ରତ୍ୟେକ ଧୈର୍ଯ୍ୟବାନ ଓ କୃତଜ୍ଞ ବ୍ୟକ୍ତି ପାଇଁ ଅନେକ ନିଦର୍ଶନ ଅଛି ।

୬. (ସ୍ମରଣ କର) ଯେତେବେଳେ ମୁ'ସା ତାଙ୍କ ସମାଜକୁ କହିଥିଲେ, "ଅଲ୍ଲାହ୍ ତୁମମାନଙ୍କ ପ୍ରତି କରିଥିବା ସେହି ଉପକାରଗୁଡ଼ିକୁ ମନେପକାଅ ଯେତେବେଳେ ସେ ତୁମମାନଙ୍କୁ ଫିରଔନର ଅନୁଗତମାନଙ୍କଠାରୁ ମୁକ୍ତି ଦେଇଥିଲେ ଯେଉଁମାନେ ତୁମମାନଙ୍କୁ ଭୀଷଣ ନିର୍ଯ୍ୟାତନା ଦେଉଥିଲେ । ସେମାନେ ତୁମ ପୁତ୍ରମାନଙ୍କୁ ମାରି ଦେଉଥିଲେ ଏବଂ କନ୍ୟାମାନଙ୍କୁ ଜୀବିତ ଛାଡ଼ି ଦେଉଥିଲେ ।

ଏଥିରେ ତୁମମାନଙ୍କ ପାଳନକର୍ତ୍ତାଙ୍କ ତରଫରୁ ତୁମମାନଙ୍କ ପାଇଁ ଏକ ବଡ଼ ପରୀକ୍ଷା ଥିଲା ।" ୭. "ଏବଂ (ଏହା ମଧ୍ଯ ମନେପକାଅ) ଯେତେବେଳେ ତୁମ ପାଳନକର୍ତ୍ତା ତୁମମାନଙ୍କୁ ସାବଧାନ କରିଥିଲେ,"ଯଦି ତୁମେମାନେ କୃତଜ୍ଞ ହେବ, ତେବେ ମୁଁ ତୁମମାନଙ୍କୁ ଯଥେଷ୍ଟ ଦେବି ଆଉ ଯଦି କୃତଘ୍ନ ହୁଅ, ତେବେ (ଜାଣିରଖ ଯେ) ମୋ' ଶାସ୍ତି ଭାରି କଠୋର ।" ୮. ମୁ'ସା କହିଲେ. "ଯଦି ତୁମମାନଙ୍କ ସହିତ ସମୁଦାୟ ବିଶ୍ୱବାସୀ ମଧ୍ଯ କୃତଘ୍ନ ହୋଇ ଯାଆନ୍ତି, (ଅଲ୍ଲାହଙ୍କର କିଛି କ୍ଷତି ହେବନାହିଁ କାରଣ) ଅଲ୍ଲାହ୍ ଆବଶ୍ୟକତାରହିତ ଓ ପ୍ରଶଂସାଯୋଗ୍ୟ ।

୯. କ'ଣ ତୁମମାନଙ୍କୁ ସେହି ସମାଜଗୁଡ଼ିକ ବିଷୟରେ ଖବର ମିଳିନାହିଁ ଯେଉଁମାନେ ତୁମମାନଙ୍କ ପୂର୍ବରୁ ଥିଲେ ? ନୂହଙ୍କ ସମାଜ, ଆଦ୍, ସମୁଦ୍ ଓ ସେମାନଙ୍କ ପରବର୍ତ୍ତୀ (ଅନେକ) ସମାଜ ଯେଉଁମାନଙ୍କୁ କେବଳ ଅଲ୍ଲାହଙ୍କ ବ୍ୟତୀତ କେହି ଜାଣନ୍ତିନାହିଁ । (ଅଲ୍ଲାହଙ୍କ) ବାର୍ତ୍ତାବହମାନେ ସ୍ୱଷ୍ଟ ପ୍ରମାଣ ନେଇ ସେମାନଙ୍କ ପାଖକୁ ଯାଇଥିଲେ କିନ୍ତୁ ସେମାନେ ତାଙ୍କୁ ଚୁପ୍ କରି ଦେଲେ ଏବଂ କହିଲେ, "ତୁମମାନଙ୍କୁ ଯେଉଁ ବାର୍ତ୍ତା ଦେଇ ପଠାଯାଇଛି ଆମେ ତାହାକୁ ମାନୁନାହୁଁ ଏବଂ ତୁମେମାନେ ଆମକୁ ଯେଉଁ ବାଟକୁ ଡାକୁଛ ତା' ବିଷୟରେ ଆମର ସନ୍ଦେହ ଅଛି ।" ୧୦. ସେମାନଙ୍କ ପାଖକୁ ପଠାଯାଇଥିବା ବାର୍ତ୍ତବହମାନେ ସେମାନଙ୍କୁ ପଚାରୁଥିଲେ, "କ'ଣ ତୁମମାନଙ୍କର ଅଲ୍ଲାହଙ୍କ ବିଷୟରେ ସନ୍ଦେହ ଅଛି ଯିଏ ଧରିତ୍ରୀ ଓ ଆକାଶର ସ୍ରଷ୍ଟା ? ସେ ତୁମମାନଙ୍କୁ (ସତ୍‌ମାର୍ଗକୁ) ଏଇଥିପାଇଁ ଡାକୁଛନ୍ତି ଯେ ତୁମମାନଙ୍କ ପାପ କ୍ଷମା କରିବେ ଏବଂ ଏକ ନିଶ୍ଚିତ ସମୟ ପର୍ଯ୍ୟନ୍ତ ତୁମମାନଙ୍କୁ (ସଂସାର ଭୋଗ କରିବାର) ସୁଯୋଗ ଦେବେ ।" ସେମାନେ କହୁଥିଲେ, "ତୁମେମାନେ ଆମମାନଙ୍କ ପରି ମଣିଷ ଏବଂ ଆମ ବାପଅଜା ଯେଉଁମାନଙ୍କର ପୂଜାଅର୍ଚ୍ଚନା କରି ଆସିଛନ୍ତି, ତୁମେମାନେ ସେମାନଙ୍କ ଉପାସନାରୁ ଆମକୁ ରୋକିବାକୁ ଚାହୁଁଛ । ତେବେ ଆମମାନଙ୍କୁ କୌଣସି ସ୍ୱଷ୍ଟ (ଅଲୌକିକ) ପ୍ରମାଣ ଦିଅ ?" ୧୧. ବାର୍ତ୍ତାବହମାନେ ଉତ୍ତର ଦେଉଥିଲେ, "ପ୍ରକୃତରେ ଆମେ ତୁମମାନଙ୍କ ପରି ମନୁଷ୍ୟ ମାତ୍ର ଅଲ୍ଲାହ୍ ନିଜ ଭକ୍ତମାନଙ୍କ ମଧ୍ଯରୁ ଯାହାକୁ ଚାହାନ୍ତି ତାକୁ ନିଜ କୃପାର ପାତ୍ର କରିନିଅନ୍ତି । ଅଲ୍ଲାହଙ୍କ ବିନା ଆଜ୍ଞାରେ ତୁମମାନଙ୍କୁ କୌଣସି ଅଲୌକିକ କାର୍ଯ୍ୟ କରି ଦେଖାଇବାର କ୍ଷମତା ଆମର ନାହିଁ । ସଦ୍‌ବିଶ୍ୱାସୀମାନେ ଅଲ୍ଲାହଙ୍କ ଉପରେ ଭରସା

କରିବା ଉଚିତ । ୧୨. ଆମେମାନେ କାହିଁକିବା ଅଲ୍ଲାହଙ୍କ ଉପରେ ଭରସା ନକରିବୁ ଯିଏ ଆମମାନଙ୍କୁ ଆମ ବାଟ ଦେଖାଇଛନ୍ତି ? ତୁମେମାନେ ଆମକୁ ଯାହା କଷ୍ଟ ଦେଉଛ ଆମେ ଧୈର୍ଯ୍ୟ ଧରି ତାହା ସହିବୁ । ଭରସା କରୁଥିବା ଲୋକମାନେ ଅଲ୍ଲାହଙ୍କ ଉପରେ ଭରସା କରିବା ଉଚିତ ।"

୧୩. ନାସ୍ତିକମାନେ ବାର୍ତ୍ତାବହମାନଙ୍କୁ କହିଲେ, "ଆମ ଧର୍ମକୁ ଫେରିଆସ ନହେଲେ ଆମେ ତୁମମାନଙ୍କୁ ଦେଶରୁ ତଡ଼ିଦେବୁ ।" ତେଣୁ ଈଶ୍ୱର ସେମାନଙ୍କୁ ଦୈବବାଣୀ କଲେ, "ଆମ୍ଭେ ସେହି ପାପୀମାନଙ୍କର ବିନାଶ କରିବୁ ୧୪. ଏବଂ ସେମାନଙ୍କ ପରେ ତୁମମାନଙ୍କୁ ଏହି ଦେଶରେ ଅବସ୍ଥାପିତ କରିବୁ । ଏହା ଏଭଳି ବ୍ୟକ୍ତିର ପୁରସ୍କାର ଯିଏ (ବିଚାର ଦିନ) ମୋ' ସମ୍ମୁଖରେ ଆସି ଠିଆ ହେବ ବୋଲି ଭୟ କରୁଥାଏ ଏବଂ ମୋ' ଚେତାବନୀକୁ ଡରୁଥାଏ ।" ୧୫. ସେମାନେ (ଅଲ୍ଲାହଙ୍କଠାରୁ) ନିଷ୍ପତ୍ତି ଭିକ୍ଷା କଲେ ଏବଂ ପ୍ରତ୍ୟେକ ଅହଙ୍କାରୀ ଏବଂ ଏକଜିଦିଆ ବ୍ୟକ୍ତିର ସର୍ବନାଶ ହେଲା । ୧୬. ତା' ଆଗରେ ରହିଛି ନର୍କ, ଯେଉଁଠି ତାକୁ ପୂଯପାଣି ପିଇବାକୁ ଦିଆଯିବ, ୧୭. ଯାହାକୁ ସେ ଅଳ୍ପଅଳ୍ପ କରି ପିଇବାକୁ ଚେଷ୍ଟା କରିବ କିନ୍ତୁ ସହଜରେ ଢ଼ୋକି ପାରିବନାହିଁ । ମୃତ୍ୟୁ ତାକୁ ଚାରିଆଡୁ ଘେରି ନେଉଥିବ କିନ୍ତୁ ସେ ମରୁ ନଥିବ । ତା'ପରେ ମଧ୍ୟ ତା'ପାଇଁ ଆହୁରି ଭୟଙ୍କର ଶାସ୍ତି ଭୋଗିବାକୁ ଥିବ ।

୧୮. ଯେଉଁମାନେ ନିଜ ପାଳନକର୍ତ୍ତାଙ୍କୁ ମାନନ୍ତିନାହିଁ ସେମାନଙ୍କର କର୍ମଗୁଡ଼ିକ ପାଉଁଶ ସଦୃଶ ଯାହାକୁ ଝଡ଼ବତାସ ବେଳେ ପବନ ଉଡ଼ାଇନିଏ । ସେମାନେ ଯାହାକିଛି (ଭଲ) କର୍ମ କରିଥିବେ ତାହାର କଛି ଫଳ ସେମାନଙ୍କୁ ମିଳିବନାହିଁ । ଏହାହିଁ ଚରମ ବିଭ୍ରାନ୍ତି । ୧୯. କ'ଣ ତୁମେମାନେ ଏହା ଲକ୍ଷ୍ୟ କରୁନାହଁ ଯେ ଅଲ୍ଲାହ୍ ଧରିତ୍ରୀ ଓ ଆକାଶକୁ ଏକ ଯଥାର୍ଥ ଉଦ୍ଦେଶ୍ୟରେ ସୃଷ୍ଟି କରିଛନ୍ତି ? ଯଦି ସେ ଇଚ୍ଛା କରିବେ ତୁମମାନଙ୍କୁ ବିନାଶ କରି ତୁମମାନଙ୍କ ସ୍ଥାନରେ ଏକ ନୂଆ ସମାଜ ସୃଷ୍ଟି କରିଦେବେ । ୨୦. ଅଲ୍ଲାହଙ୍କ ପାଇଁ ଏହା କିଛି ବଡ଼ କଥା ନୁହେଁ ।

୨୧. (ବିଚାର ଦିନ) ସମସ୍ତେ ଅଲ୍ଲାହଙ୍କ ସମ୍ମୁଖରେ ଉପସ୍ଥିତ ହେବେ । ଯେଉଁମାନେ ଦୁର୍ବଳ ଥିଲେ, ସେମାନେ ବଡ଼ ବୋଲାଉଥିବା ଲୋକମାନଙ୍କୁ କହିବେ,

"ଆମେତ ତୁମମାନଙ୍କର ଅନୁଗତ ଥିଲୁ । କ'ଣ ତୁମେମାନେ ଆମମାନଙ୍କୁ ଅଲ୍ଲାହଙ୍କ ଶାସ୍ତିରୁ ରକ୍ଷା କରିପାରିବ ?" ସେମାନେ ଉତ୍ତର ଦେବେ, "ଯଦି ଅଲ୍ଲାହ୍ ଆମମାନଙ୍କର ମାର୍ଗଦର୍ଶନ କରିଥାଆନ୍ତେ ତା'ହେଲେ ଆମେମାନେ ନିଶ୍ଚୟ ତୁମମାନଙ୍କର ମାର୍ଗଦର୍ଶନ କରିଥାଆନ୍ତୁ । ଏବେ ଧୈର୍ଯ୍ୟ ଧରିବା ବା ଅଧୈର୍ଯ୍ୟ ହେବା, ଉଭୟ କଥା ଆମ ପାଇଁ ସମାନ । ଆମର ରକ୍ଷା ପାଇବାର ଆଉ କିଛି ବାଟ ନାହିଁ ।" ୨୨. ଯେତେବେଳେ ବିଚାର ଶେଷ ହେବ, ଶଇତାନ (ତା' ଅନୁଗତମାନଙ୍କୁ) କହିବ, "ଅଲ୍ଲାହ୍ ତୁମମାନଙ୍କୁ ଯେଉଁ ବଚନ ଦେଇଥିଲେ ତାହା ସତ୍ୟ କିନ୍ତୁ ମୁଁ ଯାହା ପ୍ରତିଶ୍ରୁତି ଦେଇଥିଲି ତାହା ପୂରଣ କଲିନାହିଁ । ତୁମମାନଙ୍କ ଉପରେ ମୋ'ର କିଛି ବଳ ନଥିଲା । ମୁଁ ତୁମମାନଙ୍କୁ କେବଳ ପ୍ରରୋଚିତ କରୁଥିଲି ଏବଂ ତୁମେମାନେ ମୋ' କଥା ମାନିନେଲ । ତେଣୁ, ଏବେ ମୋତେ ଦୋଷ ଦିଅନାହିଁ ବରଂ ନିଜକୁ ଦୋଷ ଦିଅ । ମୁଁ ତୁମମାନଙ୍କୁ ସାହାଯ୍ୟ କରି ପାରିବି ନାହିଁ କିମ୍ବା ତୁମେମାନେ ମୋତେ ସାହାଯ୍ୟ କରି ପାରିବନାହିଁ । ତୁମେମାନେ ଅଲ୍ଲାହଙ୍କର ଈଶ୍ୱରତ୍ୱରେ ମୋତେ ଭାଗୀଦାର କରିଥିଲ ବୋଲି ମୁଁ ମାନେନାହିଁ । ଯେଉଁମାନେ ଦୁରାଚାରୀ, ସେମାନଙ୍କୁ କଠୋର ଶାସ୍ତି ଭୋଗିବାକୁ ହେବ ।"

୨୩. ଯେଉଁମାନେ ବିଶ୍ୱାସ କଲେ ଏବଂ ଭଲ କର୍ମ କଲେ, ସେମାନଙ୍କୁ ଏଭଳି ଉଦ୍ୟାନରେ ରଖାଯିବ ଯାହା ତଳେ ଝରଣା ପ୍ରବାହିତ ହୁଏ । ସେମାନେ ଈଶ୍ୱରଙ୍କ ଆଜ୍ଞାରୁ ସେଠାରେ ଚିରଦିନ ରହିବେ । ସେଠାରେ ସେମାନଙ୍କୁ ସଲାମ୍ (ଅର୍ଥାତ୍ ତୁମର ମଙ୍ଗଳ ହେଉ) କହି ଅଭିବାଦନ କରାଯିବ ।

୨୪. କ'ଣ ତୁମେମାନେ ଦେଖୁନାହଁ ଯେ ଅଲ୍ଲାହ୍ କିପରି ଉଦାହରଣ ଦେଉଛନ୍ତି ? (ଏକେଶ୍ୱରବାଦର) ପବିତ୍ର ମନ୍ତ୍ର ଏକ ଭଲ ବୃକ୍ଷ ପରି ଯାହାର ଚେର ଭାରି ଦୃଢ଼ ଏବଂ ଏହାର ଶାଖାଗୁଡ଼ିକ ଆକାଶକୁ ଲମ୍ବିଥାଏ । ୨୫. ଏହା ତା'ପ୍ରଭୁଙ୍କ ଆଜ୍ଞାରୁ ସର୍ବଦା ଫଳ ଦେଇଥାଏ । ଅଲ୍ଲାହ୍ ଲୋକମାନଙ୍କ ବୁଝିବା ପାଇଁ ଏହିଭଳି ଉଦାହରଣ ଦିଅନ୍ତି ଯେପରିକି ସେମାନେ ଶିକ୍ଷା ଲାଭ କରିବେ । ୨୬. ଅନ୍ୟ ପକ୍ଷରେ (ବହୁଈଶ୍ୱରବାଦର) ଅପବିତ୍ର ମନ୍ତ୍ରର ଦୃଷ୍ଟାନ୍ତ ଏକ ଅଦରକାରୀ (ଦୁର୍ବଳ) ଗଛ ପରି ଯାହାକୁ ଭୁଇଁ ଉପରୁ ସହଜରେ ଓପାଡ଼ି ଦିଆଯାଏ । ସେଥିରେ ଆଦୌ

ଦୃଢ଼ତା ନଥାଏ । ୨୭. ଯେଉଁମାନେ (ଅଲ୍ଲାହଙ୍କୁ) ବିଶ୍ୱାସ କରନ୍ତି, ଅଲ୍ଲାହ୍ ସେମାନଙ୍କୁ ଦୃଢ଼ ମନ୍ତ୍ର ଦ୍ୱାରା ଇହଲୋକ ଓ ପରଲୋକରେ ଶକ୍ତିଶାଳୀ କରନ୍ତି ଏବଂ ଅନ୍ୟାୟୀମାନଙ୍କୁ ଅଲ୍ଲାହ୍ ପଥଭ୍ରଷ୍ଟ ହେବାପାଇଁ ଛାଡ଼ିଦିଅନ୍ତି । ସେ ଯାହା ଇଚ୍ଛା କରନ୍ତି ତାହା କରନ୍ତି ।

୨୮. କ'ଣ ତୁମେ ସେହି ଲୋକମାନଙ୍କୁ ଦେଖିନାହଁ ଯେଉଁମାନେ ଅଲ୍ଲାହଙ୍କ ଉପକାର ବଦଳରେ କୃତଘ୍ନତା କଲେ ଏବଂ ନିଜ ସମାଜକୁ ବିନାଶ ମୁହଁକୁ ଠେଲିଦେଲେ ? ୨୯. ଅର୍ଥାତ୍ ନରକର ନିଆଁ ମଧ୍ୟକୁ, ଯେଉଁଥିରେ ସେମାନଙ୍କୁ ଦଗ୍ଧ କରାଯିବ । ଏହା ଅତି କଦର୍ଯ୍ୟ ସ୍ଥାନ । ୩୦. ସେମାନେ ଅଲ୍ଲାହଙ୍କ ମାର୍ଗରୁ ଲୋକମାନଙ୍କୁ ପଥଭ୍ରଷ୍ଟ କରିବା ପାଇଁ ଅଲ୍ଲାହଙ୍କର ପ୍ରତିଦ୍ୱନ୍ଦୀ ଗଢ଼ିଛନ୍ତି । ସେମାନଙ୍କୁ କହିଦିଅ, "କିଛିଦିନ ମଜା କରିନିଅ, ଶେଷରେ ତୁମମାନେ ନର୍କକୁ ଯିବ ।"

୩୧. ମୋ'ର ଯେଉଁ ଭକ୍ତମାନେ (ମୋ' ଉପରେ) ଆସ୍ଥା ରଖିଛନ୍ତି, ସେମାନଙ୍କୁ କହିଦିଅ ଯେ ସେମାନେ ନମାଜ ସଂପାଦନ କରନ୍ତୁ ଏବଂ ଯାହାକିଛି ଆମ୍ଭେ ସେମାନଙ୍କୁ ଦେଇଛୁ ସେଥିରୁ ଗୋପନରେ ଓ ପ୍ରକାଶ୍ୟରେ (ପୁଣ୍ୟ କାର୍ଯ୍ୟରେ) ଖର୍ଚ୍ଚ କରନ୍ତୁ ଏବଂ ଏହା ସେହିଦିନ ପୂର୍ବରୁ କରନ୍ତୁ ଯେଉଁଦିନ (କର୍ମ ବିଷୟରେ) କୌଣସି ସଉଦା ହେବନାହିଁ ବା କାହାରି ବନ୍ଧୁତା କାମ ଦେବନାହିଁ ।

୩୨. ଅଲ୍ଲାହ୍ ସେହି, ଯିଏ ପୃଥିବୀ ଓ ଆକାଶମଣ୍ଡଳ ସୃଷ୍ଟି କରିଛନ୍ତି ଏବଂ ଆକାଶରୁ ଜଳ ବର୍ଷା କରି ଏହାଦ୍ୱାରା ତୁମମାନଙ୍କ ଆହାର ପାଇଁ (ବିଭିନ୍ନ ପ୍ରକାରର) ଫଳମୂଳ ଉତ୍ପନ୍ନ କରିଛନ୍ତି । ସେ ଜାହାଜଗୁଡ଼ିକୁ ତୁମମାନଙ୍କ ଅଧୀନସ୍ଥ କରି ଦେଇଛନ୍ତି ଯେପରିକି ସେଗୁଡ଼ିକ ତାଙ୍କ ଆଜ୍ଞାରୁ ସମୁଦ୍ରରେ ଚଳାଚଳ କରିବ ଏବଂ ନଦନଦୀଗୁଡ଼ିକୁ ମଧ୍ୟ ସେ ତୁମମାନଙ୍କ ସେବାରେ ଲଗାଇ ଦେଇଛନ୍ତି । ୩୩. ସେ ସୂର୍ଯ୍ୟ ଓ ଚନ୍ଦ୍ରକୁ ତୁମମାନଙ୍କ ସେବାରେ ଏଭଳି ନିୟୋଜିତ କରିଛନ୍ତି ଯେ ସେମାନେ ନିରନ୍ତର ନିଜନିଜ ବାଟରେ ଚାଲିଛନ୍ତି ଏବଂ ସେ ଦିନ ଓ ରାତିକୁ ମଧ୍ୟ ତୁମ ସେବାରେ ଲଗାଇ ଦେଇଛନ୍ତି । ୩୪. ତୁମେମାନେ ତାଙ୍କୁ ଯାହା ମାଗିଛ, ସେ ତୁମମାନଙ୍କୁ ଦେଇଛନ୍ତି । ତୁମେମାନେ ଅଲ୍ଲାହଙ୍କ ଉପକାରଗୁଡ଼ିକୁ ଗଣିବାକୁ ଚାହିଁଲେ ମଧ୍ୟ ଗଣି ପାରିବନାହିଁ । ବାସ୍ତବରେ ମନୁଷ୍ୟ ଭାରୀ ଅନ୍ୟାୟୀ ଓ ଅକୃତଜ୍ଞ ।

୩୫. (ସ୍ମରଣ କର) ଯେତେବେଳେ ଇବ୍ରାହିମ୍ (ଅର୍ଥାତ୍ ଆବ୍ରାହମ୍) ପ୍ରାର୍ଥନା କରିଥିଲେ, "ହେ ଈଶ୍ୱର! ଏହି (ମକ୍କା) ସହରକୁ ଶାନ୍ତିର ନଗରୀ କର ଏବଂ ମୋତେ ଓ ମୋ' ସନ୍ତାନମାନଙ୍କୁ ମୂର୍ତ୍ତିପୂଜାରୁ ରକ୍ଷା କର। ୩୬. ହେ ପ୍ରଭୁ! ଏହି ପ୍ରତିମାଗୁଡ଼ିକ ବହୁସଂଖ୍ୟକ ଲୋକଙ୍କୁ ପଥଭ୍ରଷ୍ଟ କରିଛନ୍ତି। ତେଣୁ ଯିଏ ମୋ' ବାଟରେ ଯିବ, ସେ ମୋ'ର ଏବଂ ଯିଏ ମୋ'କଥା ନମାନିବ, ତେବେ ତୁମେ ଅବଶ୍ୟ କ୍ଷମାଶୀଳ ଓ ପରମ ଦୟାଳୁ। ୩୭. ହେ ପାଳନକର୍ତ୍ତା! ମୁଁ ମୋ'ର କେତେକ ସନ୍ତାନଙ୍କୁ ତୁମର ପବିତ୍ର ଗୃହ (କାବା) ନିକଟରେ ଆଣି ରଖିଛି ଯେଉଁଠି ଋଷବାସ ହୁଏନାହିଁ। ହେ ପ୍ରଭୁ! ମୁଁ ଏହା ଏହି ଉଦ୍ଦେଶ୍ୟରେ କରିଛି ଯେ ସେମାନେ ନମାଜ ପ୍ରତିଷ୍ଠା କରିବେ। ତେଣୁ ସେମାନଙ୍କ ପାଇଁ ଲୋକମାନଙ୍କ ମନରେ ଅନୁରାଗ ସୃଷ୍ଟି କରିଦିଅ ଏବଂ ସେମାନଙ୍କୁ ବିଭିନ୍ନ ଫଳର ଆହାର ଦିଅ ଯେପରିକି ସେମାନେ କୃତଜ୍ଞ ହେବେ। ୩୮. ହେ ପ୍ରଭୁ! ଯାହା ଆମେ ଗୋପନରେ କରୁ ତାହା ତୁମେ ଜାଣ ଏବଂ ଯାହା ପ୍ରକାଶ୍ୟରେ କରୁ, ତାହା ମଧ୍ୟ ଜାଣ। ଅଲ୍ଲାହଙ୍କଠାରୁ ପୃଥିବୀ ବା ଆକାଶର କୌଣସି କଥା ଲୁଚି ରହେନାହିଁ। ୩୯. ଅଲ୍ଲାହଙ୍କୁ ଅଶେଷ ଧନ୍ୟବାଦ ଯିଏ ମୋତେ ବୃଦ୍ଧାବସ୍ଥାରେ ମଧ୍ୟ ଇସମାଇଲ୍ ଓ ଇସହାକ୍ (ପରି ପୁଅ) ଦେଲେ। ମୋ' ପାଳନକର୍ତ୍ତା ଅବଶ୍ୟ ପ୍ରାର୍ଥନା ଶୁଣନ୍ତି। ୪୦. ହେ ପାଳନକର୍ତ୍ତା! ମୋତେ ଓ ମୋ' ସନ୍ତାନମାନଙ୍କୁ ନିୟମିତ ନମାଜ ସମ୍ପାଦନ କରିବାର ସୌଭାଗ୍ୟ ପ୍ରଦାନ କର ଏବଂ ହେ ପ୍ରଭୁ! ମୋ' ପ୍ରାର୍ଥନା ସ୍ୱୀକାର କର। ୪୧. ହେ ଈଶ୍ୱର! ଯେଉଁଦିନ (ଲୋକମାନଙ୍କ କର୍ମର) ହିସାବ ହେବ ସେଦିନ ମୋତେ, ମୋ' ପିତାମାତାଙ୍କୁ ଏବଂ ସଦ୍‌ବିଶ୍ୱାସୀମାନଙ୍କୁ କ୍ଷମା କରିଦିଅ।"

୪୨. ତୁମେମାନେ ଏହା ମନେ କରନାହିଁ ଯେ ଦୁରାଚାରୀମାନେ ଯାହା କରୁଛନ୍ତି ଅଲ୍ଲାହଙ୍କୁ ସେ ବିଷୟରେ ଜଣାନାହିଁ ବରଂ ସେ ସେମାନଙ୍କୁ ସେହିଦିନ ପର୍ଯ୍ୟନ୍ତ ସମୟ ଦେଉଛନ୍ତି ଯେଉଁଦିନ (ଭୟରେ) ସେମାନଙ୍କର ଆଖି ଖୋସି ହୋଇଯିବ। ୪୩. (ସେଦିନ) ସେମାନେ ଉପରମୁହାଁ ହୋଇ ଦଉଡ଼ିବେ। ନିଜ ପ୍ରତି ସେମାନଙ୍କର ଆଦୌ ଦୃଷ୍ଟି ନଥିବ ଏବଂ ସେମାନେ ଅତ୍ୟନ୍ତ ଭୟଭୀତ ହୋଇ ପଡ଼ିଥିବେ। ୪୪. (ହେ ବାର୍ତ୍ତାବହ!) ସେହି ଦିନ ବିଷୟରେ ଲୋକମାନଙ୍କୁ ସାବଧାନ କରିଦିଅ ଯେଉଁଦିନ ସେମାନଙ୍କ ଉପରେ ବିପତ୍ତି ପଡ଼ିବ। ସେତେବେଳେ

ଦୁରାଚାରୀମାନେ କହିବେ, "ପ୍ରଭୁ! ଆମକୁ ଆଉ କିଛି ସମୟ ଦିଅ, ଯାହାଫଳରେ ଆମେ ତୁମର ଉପଦେଶ ମାନିବୁ ଏବଂ (ତୁମ) ବାର୍ତ୍ତାବହମାନଙ୍କ କଥା ମାନି ଚଳିବୁ। (ସେମାନଙ୍କୁ କୁହାଯିବ) "କ'ଣ ତୁମେମାନେ ନିୟମ କରି ଏହା କହୁ ନଥିଲ ଯେ ତୁମମାନଙ୍କର ଆଦୌ ପତନ ହେବନାହିଁ? ୪୫. ତୁମେମାନେ ସେମାନଙ୍କ ବସ୍ତିରେ ରହୁଥିଲ ଯେଉଁମାନେ ନିଜ ପ୍ରତି ଅନ୍ୟାୟ କରିଥିଲେ। ଆମ୍ଭେ ସେମାନଙ୍କ ସହିତ ଯେଉଁଳି ବ୍ୟବହାର କରିଥିଲୁ ତାହା ମଧ୍ୟ ତୁମମାନଙ୍କ ନିକଟରେ ସ୍ପଷ୍ଟ ହୋଇ ସାରିଥିଲା ଏବଂ (ତୁମମାନଙ୍କୁ ବୁଝାଇବା ପାଇଁ) ଆମ୍ଭେ ଅନେକ ଦୃଷ୍ଟାନ୍ତ ମଧ୍ୟ ଦେଇଥିଲୁ।" ୪୬. ସେମାନେ ଭୀଷଣ ଚକ୍ରାନ୍ତ କରିଥିଲେ ଏବଂ ଅଲ୍ଲାହଙ୍କୁ ସେମାନଙ୍କର ସବୁ ଚକ୍ରାନ୍ତ ବିଷୟରେ ଜଣା, ଯଦିଓ ସେମାନଙ୍କ ଚକ୍ରାନ୍ତଗୁଡ଼ିକ ଏତେ ମାରାତ୍ମକ ଥିଲା ଯେ ପର୍ବତ ଦୋହଲିଯିବ।

୪୭. ତେଣୁ (ହେ ବାର୍ତ୍ତାବହ!) ତୁମେ ଏହା ମନେ କରନା ଯେ ଅଲ୍ଲାହ୍ ନିଜ ବାର୍ତ୍ତାବହମାନଙ୍କୁ ଦେଇଥିବା ପ୍ରତିଶ୍ରୁତିର ବିରୁଦ୍ଧାଚରଣ କରିବେ। ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ସେ (ଶତ୍ରୁମାନଙ୍କଠାରୁ) ପ୍ରତିଶୋଧ ନେବାକୁ ସଂପୂର୍ଣ୍ଣ ସକ୍ଷମ। ୪୮. ଯେଉଁଦିନ ଏହି ଧରିତ୍ରୀକୁ ଅନ୍ୟ ଏକ ଧରିତ୍ରୀ ଦ୍ୱାରା ବଦଳି ଦିଆଯିବ ଏବଂ ଆକାଶକୁ ମଧ୍ୟ, ସେଦିନ ସମସ୍ତେ ସେହି ଅଦ୍ୱିତୀୟ ଓ ଅପ୍ରତିରୋଧ ଅଲ୍ଲାହଙ୍କ ସାମନାରେ ଉପସ୍ଥିତ ହେବେ। ୪୯. ସେଦିନ ତୁମେ ଦେଖିବ ଯେ ଅପରାଧୀମାନେ ଜଂଜିରରେ ବନ୍ଧା ହୋଇଥିବେ। ୫୦. ସେମାନେ ପିଚୁର ପୋଷାକ ପିନ୍ଧିଥିବେ ଏବଂ ସେମାନଙ୍କ ମୁହଁ ନିଆଁରେ ଢ଼ଙ୍କା ହୋଇଥିବ। ୫୧. ଯେପରିକି ଅଲ୍ଲାହ୍ ପ୍ରତ୍ୟେକ ବ୍ୟକ୍ତିକୁ ତା' ଅର୍ଜିତ କର୍ମର ଫଳ ଦେବେ। ଅଲ୍ଲାହ ହିସାବ-ନିକାଶ କରିବାରେ ବିଳମ୍ବ କରନ୍ତି ନାହିଁ।

୫୨. ଏହି କୁରଆନ୍ ମାନବସମାଜ ପାଇଁ ଏକ ସନ୍ଦେଶ ଏବଂ ଏହାର ଉଦ୍ଦେଶ୍ୟ ହେଉଛି ଯେ ଲୋକମାନଙ୍କୁ ସାବଧାନ କରି ଦିଆଯାଉ ଏବଂ ସେମାନେ ଜାଣି ନିଅନ୍ତୁ ଯେ ପ୍ରକୃତ ଉପାସ୍ୟ କେବଳ ଜଣେ ଏବଂ ବୁଦ୍ଧିମାନ ଲୋକମାନେ ସଚେତନ ହୋଇଯାଆନ୍ତୁ।

## ଅଧ୍ୟାୟ ୧୫, ଅଲ ହିଜ୍ର୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲିଫ-ଲାମ-ରା। ଏହା ପରିଷ୍କାର ଭାବରେ ବର୍ଣ୍ଣନା କରୁଥିବା କୁରଆନ୍ ଗ୍ରନ୍ଥର ବାଣୀ।

୨. ସମୟ ଆସିବ ଯେତେବେଳେ ସତ୍ୟକୁ ଅସ୍ୱୀକାର କରୁଥିବା ଲୋକମାନେ କାମନା କରିବେ ଯେ ସେମାନେ ମୁସଲିମ୍ ହୋଇଥିଲେ କେତେ ଭଲ ହୋଇଥାଆନ୍ତା! ୩. ଛାଡ଼ିଦିଅ ସେମାନଙ୍କୁ। ସେମାନେ ଖାଆନ୍ତୁ, ପିଅନ୍ତୁ,ମଉଜ କରନ୍ତୁ ଏବଂ (ମିଥ୍ୟା) ଆଶା-ଆକାଂକ୍ଷାର ଭ୍ରାନ୍ତିରେ ପଡ଼ି ରହିଥାଆନ୍ତୁ। ଶୀଘ୍ର ସେମାନେ (ବାସ୍ତବତା) ଜାଣିଯିବେ। ୪. ଯେଉଁ ଜନବସତିଗୁଡ଼ିକୁ ଆମ୍ଭେ ଧ୍ୱଂସ କରିଛୁ ସେଗୁଡ଼ିକର ବିଲୋପ ପାଇଁ ସମୟ ନିର୍ଦ୍ଧାରିତ ହୋଇ ସାରିଥିଲା। ୫. କୌଣସି ସଭ୍ୟତାର ଅନ୍ତ ଏହାର ନିର୍ଦ୍ଧାରିତ ସମୟ ଆସିବା ପୂର୍ବରୁ ବା ପରେ ହୁଏନାହିଁ।

୬. ଏମାନେ କହୁଛନ୍ତି, "ହେ କୁରଆନର ବାର୍ତ୍ତା ନେଇ ଆସିଥିବା ବ୍ୟକ୍ତି! ତୁମେ ପ୍ରକୃତରେ ଜଣେ ପାଗଳ। ୭. ଯଦି ତୁମେ ସତ କହୁଛ ତେବେ ଦେବଦୂତମାନଙ୍କୁ କାହିଁକି ଆମ ପାଖକୁ ଆଣୁନାହଁ?" ୮. ଆମ୍ଭେ ଦେବଦୂତମାନଙ୍କୁ କେବଳ ଯଥାର୍ଥ ଉଦ୍ଦେଶ୍ୟରେ ପଠାଉ ଏବଂ ସେମାନେ ଅବତରଣ କରିସାରିଲେ ଏମାନଙ୍କୁ ଆଉ ସମୟ ମିଳନ୍ତା ନାହିଁ।

୯. ଆମ୍ଭେ ଏହି କୁରଆନ ପଠାଇଛୁ ଏବଂ ସ୍ୱୟଂ ଆମ୍ଭେ ଏହାର ସଂରକ୍ଷକ। ୧୦. ତୁମ ପୂର୍ବରୁ ମଧ୍ୟ ଆମ୍ଭେ ବିଭିନ୍ନ ସମାଜକୁ ବାର୍ତ୍ତାବହ ପଠାଇଥିଲୁ। ୧୧. (ସେମାନଙ୍କ ପାଖକୁ) ଯେଉଁ ବାର୍ତ୍ତାବହ ଆସନ୍ତି, ସେମାନେ ତାଙ୍କୁ ବିଦ୍ରୂପ କରନ୍ତି। ୧୨. ଆମ୍ଭେ ପାପୀମାନଙ୍କ ମନରେ ଏହିପରି ମନୋବୃତ୍ତି ଉତ୍ପନ୍ନ କରିଦେଉ। ୧୩. (ତେଣୁ) ସେମାନେ ଏହାକୁ ମାନିବେନାହିଁ। ଏହାହିଁ ପୂର୍ବ ଲୋକମାନଙ୍କର ପନ୍ଥା ରହିଆସିଛି। ୧୪. ଯଦି ସେମାନଙ୍କ ପାଇଁ ଆମ୍ଭେ ଆକାଶର କୌଣସି ବାଟ ଖୋଲିଦିଅନ୍ତୁ ଏବଂ ସେମାନେ ସେଥିରେ ଚଢ଼ିଯାଆନ୍ତେ,

୧୫. ତଥାପି କୁହନ୍ତେ ଯେ ଆମମାନଙ୍କର ଚକ୍ଷୁବନ୍ଧନ କରି ଦିଆଯାଇଛି କିମ୍ବା ଆମମାନଙ୍କୁ ଗୁଣି କରି ଦିଆଯାଇଛି।

୧୬. ଆମ୍ଭେ ଆକାଶରେ ତାରକାପୁଞ୍ଜ ସୃଷ୍ଟି କଲୁ ଏବଂ ଏହାକୁ ଦେଖଣାହାରୀଙ୍କ ପାଇଁ ସୁନ୍ଦର କଲୁ, ୧୭. ଏବଂ ଏହାକୁ ପ୍ରତ୍ୟେକ ତିରସ୍କୃତ ଶଇତାନଠାରୁ ସୁରକ୍ଷିତ ରଖିଲୁ । ୧୮. ଯଦି କେହି ଲୁଚିଛପି କିଛି ଶୁଣିବାକୁ ଚେଷ୍ଟା କରେ ତେବେ ଏକ ଜ୍ୱଳନ୍ତ ଅଗ୍ନିପିଣ୍ଡ ତା'ପିଛା କରିଥାଏ ।

୧୯. ଆମ୍ଭେ ଧରିତ୍ରୀକୁ ବିଛାଇ ଦେଲୁ ଏବଂ (ତାହାକୁ ସ୍ଥିର ରଖିବା ପାଇଁ) ତା' ଉପରେ ପାହାଡ଼ ସୃଷ୍ଟି କଲୁ ଏବଂ ସେଥିରେ ଉଚିତ୍ ଅନୁପାତରେ ପ୍ରତ୍ୟେକ ପ୍ରକାରର ବୃକ୍ଷଲତା ଉତ୍ପନ୍ନ କଲୁ । ୨୦. ଆମ୍ଭେ ସେଥିରେ ତୁମମାନଙ୍କ ପାଇଁ ଜୀବନ ନିର୍ବାହର ସାଧନ ଖଂଜିଦେଲୁ ଏବଂ (ଅନ୍ୟ ପ୍ରାଣୀମାନଙ୍କ ପାଇଁ ମଧ୍ୟ) ଯେଉଁମାନଙ୍କୁ ତୁମେମାନେ ଆହାର ଦିଅନାହିଁ । ୨୧. ଏଭଳି କୌଣସି ବସ୍ତୁ ନାହିଁ ଯାହାର ଭଣ୍ଡାର ଆମ୍ଭ ପାଖରେ ନାହିଁ ମାତ୍ର ଅମ୍ଭେ ତାକୁ ଉଚିତ ମାତ୍ରାରେ ପଠାଇଥାଉ । ୨୨. ଆମ୍ଭେ ହିଁ ମେଘବାହୀ ବାୟୁ ପ୍ରବାହିତ କରୁ ଏବଂ ଆକାଶରୁ ଜଳ ବର୍ଷା କରି ତୁମମାନଙ୍କୁ ପିଇବାକୁ ଦେଉ । ତୁମେମାନେ ଏହି ଭଣ୍ଡାରର ମାଲିକ ନୁହଁ । ୨୩. ଆମ୍ଭେ ଜୀବନ ଦେଉ, ଆମ୍ଭେ ମରଣ ଦେଉ ଏବଂ ଆମ୍ଭେ ହିଁ ସମସ୍ତଙ୍କର ପ୍ରକୃତ ମାଲିକ । ୨୪. ଯେଉଁମାନେ ତୁମମାନଙ୍କ ପୂର୍ବରୁ (ସଂସାରରୁ) ଯାଇ ସାରିଛନ୍ତି, ଆମ୍ଭେ ସେମାନଙ୍କୁ ଜାଣୁ ଏବଂ ଯେଉଁମାନେ ତୁମମାନଙ୍କ ପଛରେ ଯିବାକୁ ଅଛନ୍ତି ସେମାନଙ୍କୁ ମଧ୍ୟ ଜାଣୁ । ୨୫. ତୁମ ଈଶ୍ୱର (ବିଚାର ଦିନ) ସମସ୍ତଙ୍କୁ ନିଶ୍ଚୟ ଏକାଠି କରିବେ । ସେ ମହାଜ୍ଞାନୀ ଏବଂ ତତ୍ତ୍ୱଜ୍ଞ ।

୨୬. ଆମ୍ଭେ ମାନବକୁ ଶୁଷ୍କ ଚିକିଟା ମାଟିରୁ ସୃଷ୍ଟି କରିଛୁ । ୨୭. ଏହା ପୂର୍ବରୁ ଆମ୍ଭେ ଜିନ୍‌ମାନଙ୍କୁ ଅଗ୍ନିଶିଖାରୁ ସୃଷ୍ଟି କରିଥିଲୁ । ୨୮. ଯେତେବେଳେ ତୁମ ଈଶ୍ୱର ଦେବଦୂତଗଣଙ୍କୁ କହିଥିଲେ, "ମୁଁ ଶୁଷ୍କ ଚିକିଟା ମାଟିରୁ ଏକ ମାନବ ସୃଷ୍ଟି କରିବି । ୨୯. ଯେତେବେଳେ ମୁଁ ଏହାକୁ ସଂପୂର୍ଣ୍ଣ ଗଢ଼ିସାରିବି ଏବଂ ନିଜ ଆଜ୍ଞା ବଳରେ ସେଥିରେ ପ୍ରାଣ ସଂଚାର କରିଦେବି, ତୁମେ ସମସ୍ତେ ତାକୁ ପ୍ରଣାମ କରିବ । ୩୦. ସୁତରାଂ ସବୁ ଦେବଦୂତମାନେ ପ୍ରଣାମ କଲେ, ୩୧. ମାତ୍ର ଇବଲିସ୍ (ଅର୍ଥାତ୍ ଶଇତାନ) ସେମାନଙ୍କ ସହିତ ମିଶି ପ୍ରଣାମ କରିବାକୁ ମନା କଲା । ୩୨. (ଅଲ୍ଲାହ୍) ପ୍ରଶ୍ନ କଲେ, "ହେ ଇବଲିସ୍! ତୁ କାହିଁକି ସେମାନଙ୍କ ସହିତ ପ୍ରଣାମ

କଲୁନାହିଁ?" ୩୩. ସେ ଉତ୍ତର ଦେଲା, "ମୁଁ ଜଣେ ମଣିଷକୁ ପ୍ରଣାମ କରି ନପାରେ ଯାହାକୁ ତୁମେ ଶୁଷ୍କ ଚିକିଟା ମାଟିରୁ ସୃଷ୍ଟି କରିଛ।" ୩୪. ଅଲ୍ଲାହ୍ କହିଲେ, "ତେବେ ବାହାରି ଯା'। ତୋତେ ବହିଷ୍କୃତ କରାଗଲା। ୩୫. ବିଚାର ଦିନ ପର୍ଯ୍ୟନ୍ତ ତୋତେ ଧିକ୍କାର କରାଯିବ।" ୩୬. ସେ କହିଲା, "ପ୍ରଭୁ! ତେବେ ଲୋକମାନେ ପୁନର୍ଜୀବନ ପାଇ ଉଠିବା ଦିନ ପର୍ଯ୍ୟନ୍ତ ମୋତେ ସମୟ ଦିଅ।" ୩୭. ଈଶ୍ୱର କହିଲେ, "ତୋତେ ସମୟ ଦିଆଗଲା – ୩୮. ସେହି ନିର୍ଦ୍ଧାରିତ ଦିନ ପର୍ଯ୍ୟନ୍ତ।" ୩୯. ସେ କହିଲା, "ହେ ପ୍ରଭୁ!, ଯେମିତି ତୁମେ ମୋତେ ବିଭ୍ରାନ୍ତ କରିଛ ମୁଁ ମଧ୍ୟ ଲୋକମାନଙ୍କ ମନରେ ସଂସାର ପ୍ରତି ଆକର୍ଷଣ ସୃଷ୍ଟି କରି ସେମାନଙ୍କୁ ପଥଭ୍ରଷ୍ଟ କରିବି, ୪୦. ମାତ୍ର ସେମାନଙ୍କୁ ନୁହେଁ ଯେଉଁମାନେ ତୁମର ନିଷ୍ଠାପର ଭକ୍ତ।" ୪୧. ଅଲ୍ଲାହ୍ କହିଲେ, "ଏହି (ନିଷ୍ଠାପର ଭକ୍ତମାନଙ୍କର) ବାଟ ହେଉଛି ମୋତେ ପାଇବାର ଠିକ୍ ବାଟ। ୪୨. ଯେଉଁମାନେ ମୋର ପ୍ରକୃତ ଭକ୍ତ ସେମାନଙ୍କ ଉପରେ ତୋ'ର କିଛି କର୍ତ୍ତୃତ୍ୱ ନାହିଁ। ହଁ, ସେହି ଭ୍ରଷ୍ଟ ଲୋକମାନଙ୍କ ଉପରେ ତୋ'ର କର୍ତ୍ତୃତ୍ୱ ରହିବ ଯେଉଁମାନେ ତୋ' କଥା ମାନିବେ। ୪୩. ଏବଂ ଏଭଳି ଲୋକମାନେ ନର୍କଭୋଗ କରିବା ନିଶ୍ଚିତ।

୪୪. ଏହାର ସାତଗୋଟି ଦ୍ୱାର ଅଛି ଏବଂ ପ୍ରତ୍ୟେକ ଦ୍ୱାର ଏକ ନିର୍ଦ୍ଦିଷ୍ଟ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ। ୪୫. ସଦାଚାରୀମାନେ ଉଦ୍ୟାନ ଓ ଝରଣା ମଧ୍ୟରେ ବାସ କରିବେ। ୪୬. (ସେମାନଙ୍କୁ କୁହାଯିବ) ନିର୍ଭୟ ହୋଇ ନିରାପଦରେ ସ୍ୱର୍ଗରେ ପ୍ରବେଶ କର। ୪୭. ସେମାନଙ୍କ ମଧ୍ୟରେ ଯାହାକିଛି ମନୋମାଳିନ୍ୟ ଥିବ, ଆମ୍ଭେ ତାହା ଦୂର କରିଦେବୁ। ସେମାନେ ପରସ୍ପର ଭାଇଭାଇ ପରି ସାମନା-ସାମନି ହୋଇ ଆସନରେ ବସିବେ। ୪୮. ସେମାନଙ୍କୁ ସେଠାରେ କୌଣସି ଦୁଃଖକଷ୍ଟ ହେବନାହିଁ ବା ସେମାନଙ୍କୁ ସେଠାରୁ ବାହାର କରାଯିବ ନାହିଁ।"

୪୯. ହେ ବାର୍ତ୍ତାବହ! ମୋ' ଭକ୍ତମାନଙ୍କୁ ଜଣାଇଦିଅ ଯେ ମୁଁ ଅତ୍ୟନ୍ତ କ୍ଷମାଶୀଳ ଓ ପରମ ଦୟାଳୁ, ୫୦. ଏବଂ ଏହା ମଧ୍ୟ ଜଣାଇଦିଅ ଯେ ମୋ' ଶାସ୍ତି ଅତ୍ୟନ୍ତ କଠୋର।

୫୧. ସେମାନଙ୍କୁ ଇବ୍ରାହିମଙ୍କ ଅତିଥିମାନଙ୍କ କଥା ଶୁଣାଅ। ୫୨. ଯେତେବେଳେ ସେମାନେ ତାଙ୍କ ପାଖରେ ପହଁଚି "(ଆପଣଙ୍କର) ମଂଗଳ ହେଉ" କହି ଅଭିବାଦନ କଲେ, ସେ କହିଲେ, "ତୁମମାନଙ୍କୁ ଦେଖି ଆମକୁ ଭୟ ଲାଗୁଛି।" ୫୩. ସେମାନେ (ଅର୍ଥାତ୍ ଦେବଦୂତମାନେ) କହିଲେ, "ଭୟ କରନାହିଁ। ଆମେ ତୁମକୁ ଶୁଭ ସମାଚାର ଦେଉଛୁ ଯେ ତୁମେ ଏକ ପୁତ୍ର ଲାଭ କରିବ ଯିଏ ମହାଜ୍ଞାନୀ ହେବ।" ୫୪. ଇବ୍ରାହିମ ପ୍ରଶ୍ନ କଲେ, "କ'ଣ ମୋ'ର ଏହି ବୃଦ୍ଧାବସ୍ଥାରେ ତୁମେମାନେ ମୋତେ (ପୁତ୍ରଲାଭ କରିବାର) ସମାଚାର ଦେଉଛ ? ଏହା କିଭଳି ସୁସମାଚାର ?" ୫୫. ସେମାନେ ଉତ୍ତର ଦେଲେ, "ଆମେ ତୁମକୁ ସଠିକ୍ ଖବର ଦେଉଛୁ। ତେଣୁ ତୁମେ ନିରାଶ ହୁଅନାହିଁ। ୫୬. ଇବ୍ରାହିମ କହିଲେ, "ଈଶ୍ୱରଙ୍କ କରୁଣାରୁ କେବଳ ପଥଭ୍ରଷ୍ଟ ଲୋକମାନେ ନିରାଶ ହୁଅନ୍ତି।" ୫୭. (ପୁଣି) ସେ ପଚାରିଲେ, "ହେ ଦେବଦୂତଗଣ! ତୁମେମାନେ କେଉଁ ଉଦ୍ଦେଶ୍ୟରେ ଆସିଛ ?" ୫୮. ସେମାନେ ଉତ୍ତର ଦେଲେ, "ଆମମାନଙ୍କୁ ଏକ ପାପୀ ସମାଜର ବିନାଶ ପାଇଁ ପଠାଯାଇଛି। ୫୯. ଆମେ ଲୁତ୍ଙ୍କର ପରିବାରର ସମସ୍ତଙ୍କୁ ରକ୍ଷା କରିବୁ, ୬୦. କେବଳ ତାଙ୍କ ପତ୍ନୀଙ୍କୁ ଛାଡ଼ିଦେବୁ।" ଆମ୍ଭେ ସ୍ଥିର କରିଛୁ ଯେ ସେ (ଅପରାଧୀମାନଙ୍କର ସହିତ) ରହିବ।"

୬୧. ସୁତରାଂ ଯେତେବେଳେ ଦେବଦୂତଗଣ ଲୁତଙ୍କ ଘରେ ପହଁଚିଲେ, ୬୨. (ଲୁତ୍ ସେମାନଙ୍କୁ ଦେଖି) କହିଲେ, "ତୁମେମାନେ ଅପରିଚିତ ଲୋକ ପରି ଜଣାପଡୁଛ।" ୬୩. ସେମାନେ କହିଲେ, "ନା, ଆମେମାନେ ତୁମ ପାଖକୁ ଦୈବୀଦଣ୍ଡ ନେଇ ଆସିଛୁ ଯାହା ବିଷୟରେ ଏମାନେ ସଂଦେହ କରୁଥିଲେ। ୬୪. ଆମେ ତୁମ ପାଖକୁ ସତ୍ୟର ଆବାହକ ରୂପେ ଆସିଛୁ ଏବଂ ଆମେ ସତ କହୁଛୁ। ୬୫. ତେଣୁ ରାତି ଥାଉଥାଉ ନିଜ ପରିବାରକୁ ନେଇ ବାହାରିପଡ଼ ଏବଂ ତୁମେ ନିଜେ ସେମାନଙ୍କ ପଛରେ ରୁହ। ତୁମମାନଙ୍କ ମଧ୍ୟରୁ କେହି ପଛକୁ ଫେରି ନଚାହୁଁ ଏବଂ ଯେଉଁଠାକୁ ଯିବା ପାଇଁ କୁହାଯାଇଛି, ସେଇଠାକୁ ଚାଲିଯାଅ।" ୬୬. ଆମ୍ଭେ ଲୁତ୍ଙ୍କୁ ନିଜର ନିଷ୍ପତ୍ତି ପହଁଚାଇ ଦେଲୁ ଯେ ସକାଳ ସୁଦ୍ଧା ସେମାନଙ୍କର ମୂଳୋତ୍ପାଟନ କରି ଦିଆଯିବ। ୬୭. (ତେଣେ) ସହରବାସୀ ଭାରି ଖୁସି ମନରେ (ଲୁତଙ୍କ ପାଖରେ) ପହଁଚିଗଲେ। ୬୮. ଲୁତ୍ ସେମାନଙ୍କୁ କହିଲେ, "ଏମାନେ

ମୋ' ଅତିଥି । ତେଣୁ ତୁମେମାନେ (ଏମାନଙ୍କ ସହିତ ଦୁର୍ବ୍ୟବହାର କରି) ମୋତେ ଲଜ୍ଜିତ କରନାହିଁ । ୬୯. ଅଲ୍ଲାହଙ୍କୁ ଭୟ କର ଏବଂ ମୋତେ ଅପମାନିତ କରନାହିଁ ।" ୭୦. ସେମାନେ କହିଲେ, "କ'ଣ ଆମେ ତୁମକୁ ଦୁନିଆଯାକର ଲୋକଙ୍କ (ଦାୟିତ୍ୱ ନେବା) ପାଇଁ ମନାକରି ନଥିଲୁ ?" ୭୧. ଲୁତ୍ (ଅସହାୟ ହୋଇ) କହିଲେ, "ଯଦି ତୁମେମାନେ ଚାହଁ, ତେବେ (ତୁମମାନଙ୍କ ବିବାହ ପାଇଁ) ମୋ' ଝିଅମାନେ ଅଛନ୍ତି ।

୭୨. (ହେ ବାର୍ତ୍ତାବହ !) ତୁମ ପ୍ରାଣର ରାଣ ! ସେତେବେଳେ ସେମାନେ (କାମ) ଉନ୍ମାଦନାରେ ଅନ୍ଧ ହୋଇ ଯାଇଥିଲେ । ୭୩. ସୁତରାଂ, ସୂର୍ଯ୍ୟୋଦୟ ହେଲା ମାତ୍ରେ ସେମାନେ ଏକ ପ୍ରଚଣ୍ଡ ଶବ୍ଦର ଶିକାର ହୋଇଗଲେ, ୭୪. ଆମ୍ଭେ ସେହି ସହରକୁ ଓଲଟାଇ ତଳ-ଉପର କରିଦେଲୁ ଏବଂ ସେମାନଙ୍କ ଉପରେ ଗୋଡ଼ିପଥର ବୃଷ୍ଟି କଲୁ ।

୭୫. ଏହି ଘଟଣାରେ ବିଚାରବନ୍ତ ଲୋକମାନଙ୍କ ପାଇଁ ଅନେକ ସଂକେତ ଅଛି । ୭୬. ଏହି (ବିଧ୍ୱସ୍ତ) ସହରଟି ଏକ ରାଜମାର୍ଗ ଉପରେ ଅବସ୍ଥିତ । ୭୭. ଏଥିରେ ସଦ୍‌ବିଶ୍ୱାସୀ ଲୋକମାନଙ୍କ ପାଇଁ  ଶିକ୍ଷା ଅଛି ।

୭୮. ଐକାବାସୀ ମଧ୍ୟ ଭାରି ଦୂରାଚାରୀ ଥିଲେ । ୭୯. ତେଣୁ ଆମ୍ଭେ ସେମାନଙ୍କଠାରୁ ମଧ୍ୟ (ଏହିପରି) ପ୍ରତିଶୋଧ ନେଲୁ ଏବଂ ଏହି ଦୁଇଟିଯାକ (ବିଧ୍ୱସ୍ତ) ସହର ରାଜମାର୍ଗ ଉପରେ ହିଁ ରହିଛି ।

୮୦. ହିଜ୍ର ନିବାସୀ ମଧ୍ୟ ବାର୍ତ୍ତାବହମାନଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ । ୮୧. ଆମ୍ଭେ ସେମାନଙ୍କ ପାଖକୁ କେତେକ (ଅଲୌକିକ) ପ୍ରମାଣ ପଠାଇଥିଲୁ ମାତ୍ର ସେମାନେ ସେଗୁଡ଼ିକୁ ଉପେକ୍ଷା କଲେ । ୮୨. ସେମାନେ ନିରାପଦରେ ରହିବା ପାଇଁ ପାହାଡ଼କୁ କାଟି ଘର ତିଆରି କରୁଥିଲେ । ୮୩. (ଦିନେ) ସକାଳୁସକାଳୁ ସେମାନେ ଏକ ପ୍ରଚଣ୍ଡ ଶବ୍ଦର ଶିକାର ହୋଇଗଲେ । ୮୪. ସେମାନଙ୍କର ଅର୍ଜିତ କର୍ମ ସେମାନଙ୍କର କିଛି କାମରେ ଆସିଲାନାହିଁ ।

୮୫. ପୃଥିବୀ ଓ ଆକାଶ ଏବଂ ସେଗୁଡ଼ିକ ମଧ୍ୟରେ ଯାହାକିଛି ଅଛି ସେଗୁଡ଼ିକୁ ଆମ୍ଭେ ଯଥାର୍ଥ ଉଦ୍ଦେଶ୍ୟରେ ସୃଷ୍ଟି କରିଛୁ ।  ବିଚାରର ସମୟ ପାଖେଇ

ଆସୁଛି, ତେଣୁ ତୁମେ ସେମାନଙ୍କୁ ଉଦାରତାର ସହିତ କ୍ଷମା କରିଦିଅ । ୮୬. ବାସ୍ତବରେ ତୁମ ଈଶ୍ୱର ସମସ୍ତଙ୍କର ସ୍ରଷ୍ଟା ଏବଂ ସେ ସବୁ ଜାଣନ୍ତି । ୮୭. ଆମ୍ଭେ ତୁମକୁ (ନମାଜରେ) ବାରମ୍ୱାର ପଢ଼ା ଯାଉଥିବା ସାତଗୋଟି ବାଣୀ ଦେଇଛୁ ଏବଂ ଏକ ମହାନ କୁରଆନ୍ ଗ୍ରନ୍ଥ ମଧ୍ୟ ଦେଇଛୁ । ୮୮. ତୁମେ ସଂସାରର ସେହି ପାର୍ଥିବ ବସ୍ତୁଗୁଡ଼ିକ ପ୍ରତି ଆଦୌ ଦୃଷ୍ଟି ଦିଅନାହିଁ ଯାହାକୁ ଆମ୍ଭେ କେତେକ (ଅଧର୍ମୀ) ଲୋକଙ୍କୁ (ଭୋଗ କରିବାକୁ) ଦେଇଛୁ କିମ୍ୱା ସେମାନଙ୍କ (ଅବସ୍ଥା) ପାଇଁ ଦୁଃଖ ମଧ୍ୟ କରନାହିଁ । ଯେଉଁମାନେ ବିଶ୍ୱାସ ରଖିଛନ୍ତି ସେମାନଙ୍କ ପ୍ରତି ସର୍ବଦା ସଦୟ ରହିଥାଅ ୮୯. କହିଦିଅ, "ମୁଁ (ତୁମମାନଙ୍କୁ) ପରିଷ୍କାର ଭାବରେ ସାବଧାନ କରିବାକୁ ଆସିଛି ।" ୯୦. ଏହିପରି ଆମ୍ଭେ ସେହି ଲୋକମାନଙ୍କୁ ଗ୍ରନ୍ଥ ଦେଇଥିଲୁ ଯେଉଁମାନେ (ସେମାନଙ୍କ ଗ୍ରନ୍ଥରେ) ବିଭାଜନ କଲେ । ୯୧. ସେମାନେ ନିଜ କୁରଆନକୁ (ଅର୍ଥାତ୍ ଈଶ୍ୱରୀୟ ଗ୍ରନ୍ଥକୁ) ଭାଗଭାଗ କରିଦେଲେ । ୯୨. ତୁମ ଈଶ୍ୱରଙ୍କ ରାଣ ! ଆମ୍ଭେ ସେମାନଙ୍କୁ ଅବଶ୍ୟ ପ୍ରଶ୍ନ କରିବୁ, ୯୩. ସେମାନଙ୍କ କୃତକର୍ମ ବିଷୟରେ ।

୯୪. ତୁମକୁ ଯାହା ଆଦେଶ ଦିଆଯାଉଛି ତାହାକୁ ପରିଷ୍କାର ଭାବରେ ଶୁଣାଇଦିଅ ଏବଂ ବହୁଈଶ୍ୱରବାଦୀମାନଙ୍କ ପ୍ରତି ଧ୍ୟାନ ଦିଅନାହିଁ । ୯୫. ଯେଉଁମାନେ ତୁମକୁ ବିଦ୍ରୂପ କରୁଛନ୍ତି ସେମାନଙ୍କ ପାଇଁ ତୁମ ପକ୍ଷରୁ ସ୍ୱୟଂ ଆମ୍ଭେ ଯଥେଷ୍ଟ । ୯୬. ଯେଉଁମାନେ ଅଲ୍ଲାହଙ୍କ ସହିତ ଅନ୍ୟକୁ ମଧ୍ୟ ଉପାସ୍ୟ କରିଛନ୍ତି ସେମାନେ ଶୀଘ୍ର (ଏହାର ପରିଣାମ) ଜାଣିଯିବେ ।

୯୭. ଆମ୍ଭେ ଏହା ଜାଣୁ ଯେ ସେମାନଙ୍କ କଥା ଦ୍ୱାରା ତୁମର ମନକଷ୍ଟ ହେଉଛି । ୯୮. ତେଣୁ ତୁମେ ନିଜ ଈଶ୍ୱରଙ୍କର ସ୍ତୁତି ସହିତ ଗୁଣଗାନ କରୁଥାଅ ଏବଂ ତାଙ୍କୁ ପ୍ରଣିପାତ କରୁଥାଅ । ୯୯. ଏବଂ ଅନ୍ତିମ ସମୟ ଆସିବା ପର୍ଯ୍ୟନ୍ତ ନିଜ ପାଳନକର୍ତ୍ତାଙ୍କର ଉପାସନା କରୁଥାଅ ।

## ଅଧ୍ୟାୟ ୧୬, ଅନ୍ ନହ୍ଲ୍

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲ୍ଲାହଙ୍କ ନିଷ୍ପତ୍ତିର ବେଳ ଆସିଗଲା । ତେଣୁ ଏଥିପାଇଁ ଅଧୀର ହୁଅନାହିଁ । ସେ ପରମ ପବିତ୍ର ଓ ଅତି ମହାନ ଏବଂ ସେମାନଙ୍କର ବହୁଇଶ୍ୱରବାଦରୁ ବହୁ ଉର୍ଦ୍ଧ୍ୱରେ । ୨. ସେ ତାଙ୍କ ଆଜ୍ଞା ବଳରେ ନିଜର ଭକ୍ତମାନଙ୍କ ମଧ୍ୟରୁ ଯାହା ପାଖକୁ ଚାହାନ୍ତି, ତା' ପାଖକୁ (ଏହି) ଆଦିଷ୍ଟବାଣୀ ସହିତ ଦେବଦୂତମାନଙ୍କୁ ପଠାଇଥାଆନ୍ତି ଯେ ଲୋକମାନଙ୍କୁ (ଏବିଷୟରେ) ସାବଧାନ କରିଦିଅ ଯେ ମୋ' ବ୍ୟତୀତ ଆଉ କେହି ଉପାସ୍ୟ ନାହାନ୍ତି । ତେଣୁ କେବଳ ମୋତେ ଭୟ କର । ୩. ସେ ପୃଥିବୀ ଓ ଆକାଶକୁ ଯଥାର୍ଥରେ ସୃଷ୍ଟି କରିଛନ୍ତି । ସେ ସେମାନଙ୍କର ବହୁଇଶ୍ୱରବାଦରୁ ବହୁ ଉର୍ଦ୍ଧ୍ୱରେ ।

୪. ସେ ମାନବକୁ ଟୋପାଏ ଶୁକ୍ରରୁ ସୃଷ୍ଟି କଲେ ମାତ୍ର ସେ ତାଙ୍କର ପକ୍କା ବିରୋଧୀ ପାଲଟି ଗଲା । ୫. ସେ ହିଁ (ତୁମମାନଙ୍କ ପାଇଁ) ଗୃହପାଳିତ ପଶୁ ସୃଷ୍ଟି କରିଛନ୍ତି । ସେମାନଙ୍କଠାରୁ ତୁମେମାନଙ୍କୁ ଉଷ୍ମ ବସ୍ତ୍ର ତଥା ଅନ୍ୟାନ୍ୟ ଉପକାର ମିଳେ ଏବଂ କେତେକଙ୍କୁ ମଧ୍ୟ ତୁମେ ଖାଦ୍ୟ ରୂପେ ବ୍ୟବହାର କର । ୬. ସେମାନଙ୍କୁ ସକାଳେ ଚରାଇବାକୁ ନେବା ଏବଂ ସନ୍ଧ୍ୟାରେ ଫେରାଇ ଆଣିବା ତୁମମାନଙ୍କ ପାଇଁ ଏକ ପ୍ରକାରର ଶୋଭା । ୭. ସେମାନେ ତୁମମାନଙ୍କର ବୋଝ ବୋହି ଏଭଳି ଜାଗାକୁ ନେଇଯାଆନ୍ତି ଯେଉଁଠାକୁ ଯିବା ତୁମମାନଙ୍କ ପକ୍ଷରେ କଷ୍ଟସାଧ୍ୟ ହୁଅନ୍ତା । ବାସ୍ତବରେ ତୁମମାନଙ୍କ ପାଳନକର୍ତ୍ତା ଅତ୍ୟନ୍ତ କରୁଣାଶୀଳ ଓ ପରମ ଦୟାଳୁ । ୮. ସେ ତୁମମାନଙ୍କର ବାହନ ରୂପେ ଘୋଡ଼ା, ଖଚର ଓ ଗଧ (ଆଦି ପ୍ରାଣୀ) ସୃଷ୍ଟି କରିଛନ୍ତି ଏବଂ ସେମାନେ ମଧ୍ୟ ତୁମମାନଙ୍କ ପାଇଁ (ଏକ ପ୍ରକାର) ଶୋଭା । ସେ ଏହିପରି (ଅନେକ ଜୀବଜନ୍ତୁ) ସୃଷ୍ଟି କରନ୍ତି ଯାହା ବିଷୟରେ ତୁମମାନଙ୍କୁ ଜଣାନାହିଁ । ୯. ଠିକ୍ ବାଟ ଦେଖାଇଦେବା ଅଲ୍ଲାହଙ୍କର ଦାୟିତ୍ୱ କାରଣ ଅନେକ ଭୁଲ ବାଟ ମଧ୍ୟ ଅଛି । ସେ ଇଚ୍ଛା କରିଥିଲେ (ବାଧ୍ୟ କରି) ସମସ୍ତଙ୍କୁ ସତମାର୍ଗକୁ ଆଣି ପାରିଥାଆନ୍ତେ ।

୧୦. ସେ ଆକାଶରୁ ଜଳ ବର୍ଷା କରନ୍ତି ଯାହାଦ୍ୱାରା ତୁମମାନଙ୍କୁ ପିଇବା ପାଇଁ ପାଣି ମିଳେ ଏବଂ ତୁମ ପଶୁମାନଙ୍କ ଚରିବା ପାଇଁ ଚରା ଉତ୍ପନ୍ନ ହୁଏ । ୧୧.

ସେହି ଜଳ ଦ୍ୱାରା ସେ ଶସ୍ୟ ଉତ୍ପନ୍ନ କରନ୍ତି ତଥା ଜଳପାଇ, ଖଜୁରୀ ଓ ଅଂଗୁର ଆଦି (ବିଭିନ୍ନ ପ୍ରକାରର ଫଳ) ଉତ୍ପନ୍ନ କରିଥାଆନ୍ତି । ଯେଉଁମାନେ ଧ୍ୟାନ ଦିଅନ୍ତି, ସେମାନଙ୍କ ପାଇଁ ଏଥିରେ ଅବଶ୍ୟ (ଅଲ୍ଲାହଙ୍କ ମହିମାର) ସ୍ପଷ୍ଟ ସଂକେତ ଅଛି ।

୧୨. ସେ ଦିନ ଓ ରାତି ତଥା ସୂର୍ଯ୍ୟ ଓ ଚନ୍ଦ୍ରକୁ ତୁମମାନଙ୍କ ସେବାରେ ନିୟୋଜିତ କରିଛନ୍ତି ଏବଂ ତାଙ୍କରି ଆଜ୍ଞାରୁ (ଅନ୍ୟ) ଗ୍ରହନକ୍ଷତ୍ର ଗୁଡ଼ିକ ମଧ୍ୟ କାର୍ଯ୍ୟରତ ଅଛନ୍ତି । ବାସ୍ତବରେ ଯେଉଁମାନେ ବୁଦ୍ଧି ବ୍ୟବହାର କରନ୍ତି, ସେମାନଙ୍କ ପାଇଁ ଏଥିରେ ଅନେକ ସଂକେତ ଅଛି । ୧୩. ଏହିପରି ସେ ତୁମମାନଙ୍କ ପାଇଁ ପୃଥିବୀରେ ରଙ୍ଗବେରଙ୍ଗର ବିଭିନ୍ନ ବସ୍ତୁ ସୃଷ୍ଟି କରିଛନ୍ତି । ଯେଉଁମାନେ ଶିକ୍ଷା ଗ୍ରହଣ କରନ୍ତି ସେମାନଙ୍କ ପାଇଁ ଏଥିରେ ସଂକେତ ଅଛି । ୧୪. ସେ ସମୁଦ୍ରଗୁଡିକୁ ମଧ୍ୟ ତୁମମାନଙ୍କ ସେବାରେ ନିୟୋଜିତ କରିଛନ୍ତି ଯାହାଫଳରେ ତୁମେମାନେ ସେଥିରୁ ତଟକା ମାଂସ ଖାଅ ଏବଂ ଅଳଙ୍କାର ସଂଗ୍ରହ କରି ପିନ୍ଧ । ତୁମେ ଦେଖୁଥିବ ଯେ ନୌକାଗୁଡ଼ିକ ସମୁଦ୍ର ବକ୍ଷକୁ ବିଦୀର୍ଣ୍ଣ କରି ଚାଲିଥାଆନ୍ତି ଯାହାଫଳରେ ତୁମେମାନେ (ଦେଶବିଦେଶରେ ବାଣିଜ୍ୟ କରି) ଅଲ୍ଲାହଙ୍କ ଅନୁଗ୍ରହ (ଅର୍ଥାତ୍ ଜିବୀକା) ସନ୍ଧାନ କରିବ ଏବଂ ତାଙ୍କ ପ୍ରତି କୃତଜ୍ଞ ହେବ ।

୧୫. ସେ ଭୂପୃଷ୍ଠରେ ପାହାଡ଼ଗୁଡ଼ିକୁ ଦୃଢ଼ ଭାବରେ ପୋତି ଦେଇଛନ୍ତି ଯେପରିକି ଧରିତ୍ରୀ ତୁମମାନଙ୍କୁ ଧରି ଦୋହଲି ନଯାଉ । ସେ ନଦନଦୀ ଓ ରାସ୍ତା ସୃଷ୍ଟି କରିଛନ୍ତି ଯାହାଫଳରେ ତୁମେମାନେ ଗନ୍ତବ୍ୟ ସ୍ଥାନକୁ ଯାଇପାରିବ । ୧୬. ଏବଂ (ବାଟ ଜାଣିବା ପାଇଁ) ଅନେକ ଚିହ୍ନ ମଧ୍ୟ ସୃଷ୍ଟି କରିଛନ୍ତି । ନକ୍ଷତ୍ର ଦ୍ୱାରା ମଧ୍ୟ ଲୋକମାନେ (ଦିଗନିର୍ଣ୍ଣୟ କରି) ବାଟ ଜାଣନ୍ତି ।

୧୭. ଯିଏ ଏଭଳି ସୃଷ୍ଟି କରେ, କ'ଣ ସେ ତା' ସହିତ ସମାନ ହୋଇପାରେ ଯିଏ କିଛି ସୃଷ୍ଟି କରି ପାରେନାହିଁ ? କ'ଣ ତୁମେମାନେ (ଏବେ ମଧ୍ୟ) ସଚେତନ ହେବନାହିଁ ? ୧୮. ଯଦି ତୁମେମାନେ ଅଲ୍ଲାହଙ୍କ ଉପକାରଗୁଡ଼ିକୁ ଗଣିବାକୁ ଚାହିଁବ, କଦାପି ଗଣି ପାରିବନାହିଁ । ପ୍ରକୃତରେ ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ । ୧୯. ତୁମେମାନେ ଯାହା ଗୋପନ ରଖ ଏବଂ ଯାହା ପ୍ରକାଶ କର ଅଲ୍ଲାହ୍ ସବୁ ଜାଣନ୍ତି ।

୨୦. ଅଲ୍ଲାହଙ୍କ ବ୍ୟତୀତ ଏମାନେ ଯେଉଁମାନଙ୍କୁ (କାର୍ଯ୍ୟସିଦ୍ଧି ପାଇଁ) ଡାକନ୍ତି, ସେମାନେ କିଛି ସୃଷ୍ଟି କରନ୍ତିନାହିଁ ବରଂ ସେମାନେ ନିଜେ (ଅଲ୍ଲାହଙ୍କ ଦ୍ୱାରା) ସୃଷ୍ଟି ହୋଇଛନ୍ତି । ୨୧. ସେମାନେ ମୃତ; ଜୀବିତ ନୁହନ୍ତି ଏବଂ ସେମାନଙ୍କୁ ଏହା ମଧ୍ୟ ଜଣାନାହିଁ ଯେ କେବେ (ପୁନର୍ଜୀବନ ପାଇ) ଉଠିବେ ।

୨୨. ତୁମମାନଙ୍କର ଈଶ୍ୱର ଜଣେ ଈଶ୍ୱର । ଯେଉଁମାନେ ପରଲୋକରେ ବିଶ୍ୱାସ କରନ୍ତିନାହିଁ, ସେମାନଙ୍କର ମନ ଏଥିରେ ମାନେନାହିଁ ଏବଂ ସେମାନେ ଭାରି ଅହଙ୍କାରୀ । ୨୩. ସେମାନେ ଯାହା ଗୋପନ ରଖନ୍ତି ଏବଂ ଯାହା ପ୍ରକାଶ କରନ୍ତି, ଅଲ୍ଲାହ୍ ଜାଣନ୍ତି । ଅଲ୍ଲାହ୍ ଅହଂକାରୀମାନଙ୍କୁ ଆଦୌ ପସନ୍ଦ କରନ୍ତି ନାହିଁ ।

୨୪. ଯେତେବେଳେ ସେମାନଙ୍କୁ ପଚରାଯାଏ, "ତୁମ ପ୍ରଭୁ କ'ଣ ପଠାଇଛନ୍ତି, ସେମାନେ ଉତ୍ତର ଦିଅନ୍ତି, "ସେଗୁଡ଼ିକ ପ୍ରାଚୀନ କାଳର ଲୋକଙ୍କ କାହାଣୀ ।" ୨୫. ବିଚାର ଦିନ ସେମାନେ ନିଜ ପାପର ସଂପୂର୍ଣ୍ଣ ବୋଝ ମୁଣ୍ଡାଇବେ ଏବଂ ସେମାନଙ୍କ ବୋଝରୁ ମଧ୍ୟ ଭାଗ ନେବେ ଯେଉଁମାନଙ୍କୁ ନିଜ ଅଜ୍ଞାନତା ଯୋଗୁଁ ପଥଭ୍ରଷ୍ଟ କରିଛନ୍ତି । ଦେଖ! କେତେ ବଡ଼ ବୋଝ ସେମାନେ ନିଜ ଉପରକୁ ନେଇଛନ୍ତି । ୨୬. ସେମାନଙ୍କ ପୂର୍ବଜମାନେ ମଧ୍ୟ କୁଚକ୍ରାନ୍ତ କରିଥିଲେ । ଯେଉଁ (ଚକ୍ରାନ୍ତର) ମହଲ ସେମାନେ ଗଢ଼ିଥିଲେ ଅଲ୍ଲାହ୍ ତାକୁ ସମୂଳେ ଧ୍ୱଂସ କରିଦେଲେ ଏବଂ ତା'ର ଛାତ ସେହିମାନଙ୍କ ଉପରେ ପଡ଼ିଥିଲା । ସେମାନଙ୍କ ଉପରେ ଏହି ବିପର୍ଯ୍ୟୟ ଏମିତି ଜାଗାରୁ ଆସିଲା ଯାହା ବିଷୟରେ ସେମାନେ ଚିନ୍ତା କରି ନଥିଲେ । ୨୭. ପୁଣି ବିଚାର ଦିନ ଅଲ୍ଲାହ୍ ସେମାନଙ୍କୁ ଭତ୍ସନା କରିବେ ଏବଂ ପ୍ରଶ୍ନ କରିବେ, "ମୋର ସେହି ଅଂଶୀଦାରମାନେ କାହାନ୍ତି ଯେଉଁମାନଙ୍କ ପାଇଁ ତୁମେମାନେ (ସଦ୍‌ବିଶ୍ୱାସୀମାନଙ୍କ ସହିତ) ଝଗଡ଼ା କରୁଥିଲ ?" ଯେଉଁମାନଙ୍କୁ ଜ୍ଞାନ ଦିଆ ଯାଇଥିଲା ସେମାନେ କହିବେ, "ମିଥ୍ୟାବିଶ୍ୱାସୀମାନେ ଆଜି ନିଶ୍ଚୟ ଅପମାନିତ ହେବେ ଏବଂ ଦୁର୍ଦ୍ଦଶା ଭୋଗିବେ ।"

୨୮. ଯେଉଁମାନେ ନିଜ ପ୍ରତି ଅନ୍ୟାୟ କରୁଛନ୍ତି, ଦେବଦୂତମାନେ ସେମାନଙ୍କ ଆତ୍ମାକୁ ହରଣ କରିବା ସମୟରେ ସେମାନେ ନିଜର ଆଜ୍ଞାନୁବର୍ତ୍ତିତା ପ୍ରଦର୍ଶନ କରି କହିବେ "ଆମେ ତ କୌଣସି କୁକର୍ମ କରୁ ନଥିଲୁ ?" (ସେମାନଙ୍କୁ

କୁହାଯିବ) "କେମିତି କରୁ ନଥିଲ ? ତୁମେମାନେ ଯାହା କରୁଥିଲ ଅଲ୍ଲାହ୍ ଜାଣନ୍ତି । ୨୯. ଏବେ ନର୍କର ଦ୍ୱାରରେ ପ୍ରବେଶ କର ଏବଂ ଚିରଦିନ ସେଇଠାରେ ରୁହ । ଅହଂକାରୀମାନେ ଅତି କଦର୍ଯ୍ୟ ସ୍ଥାନରେ ରହିବେ ।"

୩୦. (ଅନ୍ୟ ପକ୍ଷରେ) ଯେତେବେଳେ ସଦାଚାରୀମାନଙ୍କୁ ପଚରାଯାଏ, "ତୁମମାନଙ୍କ ପ୍ରଭୁ କ'ଣ ପଠାଇଛନ୍ତି ?" ସେମାନେ କହନ୍ତି, "ମହତବାଣୀ" । ଯେଉଁମାନେ ଭଲ କର୍ମ କରନ୍ତି, ସଂସାରରେ ମଧ୍ୟ ସେମାନଙ୍କର ମଙ୍ଗଳ ହେବ ଏବଂ ପରଲୋକର ଘର ତ ଆହୁରି ଭଲ । ସଦାଚାରୀମାନଙ୍କର ଘର କି ସୁନ୍ଦର ! ୩୧. ସେମାନେ ଶାଶ୍ୱତ ଉଦ୍ୟାନରେ ପ୍ରବେଶ କରିବେ, ଯାହା ତଳେ ଝରଣା ବହୁଥିବ ଏବଂ ସେମାନେ ସେଠାରେ ଯାହା ଚାହିଁବେ ତାହା ପାଇବେ । ଅଲ୍ଲାହ୍ ସଦାଚାରୀ ଲୋକମାନଙ୍କୁ ଏହିଭଳି ପୁରସ୍କାର ଦିଅନ୍ତି । ୩୨. ଦେବଦୂତମାନେ ସେମାନଙ୍କର ଆତ୍ମାକୁ ଶୁଦ୍ଧ ଥିବା ଅବସ୍ଥାରେ ହରଣ କରନ୍ତି ଏବଂ ସେମାନଙ୍କୁ କହନ୍ତି, "ତୁମର ମଂଗଳ ହେଉ । ତୁମେମାନେ (ସଂସାରରେ) ଯେଉଁ କର୍ମ କରୁଥିଲ ସେଥିପାଇଁ ଏବେ ବୈକୁଣ୍ଠକୁ ଚାଲ ।"

୩୩. କ'ଣ ଏହି ମିଥ୍ୟାବିଶ୍ୱାସୀମାନେ ଏଇଥିପାଇଁ ଅପେକ୍ଷା କରିଛନ୍ତି ଯେ ଦେବଦୂତମାନେ ସେମାନଙ୍କ ପାଖକୁ ଆସନ୍ତୁ କିମ୍ବା (ସେମାନଙ୍କ ବିଷୟରେ) ତୁମ ଈଶ୍ୱରଙ୍କର ନିଷ୍ପତ୍ତି ହୋଇଯାଉ ? ସେମାନଙ୍କ ପୂର୍ବପୁରୁଷମାନେ ମଧ୍ୟ ଏହିପରି କରିଥିଲେ । ଅଲ୍ଲାହ୍ ସେମାନଙ୍କ ପ୍ରତି କୌଣସି ଅନ୍ୟାୟ କରି ନଥିଲେ ବରଂ ସେଇମାନେ ନିଜ ପ୍ରତି ଅନ୍ୟାୟ କରିଥିଲେ । ୩୪. ଶେଷରେ ସେମାନେ ନିଜ କୁକର୍ମର ପରିଣାମ ଭୋଗିଲେ ଏବଂ ଯେଉଁ ବିପର୍ଯ୍ୟୟ ପ୍ରତି ବିଦ୍ରୂପ କରୁଥିଲେ ତାହା ସେମାନଙ୍କୁ ଚାରିଆଡୁ ଘେରି ନେଇଥିଲା ।

୩୫. ବହୁଈଶ୍ୱରବାଦୀମାନେ କହନ୍ତି, "ଯଦି ଅଲ୍ଲାହ୍ ଇଚ୍ଛା କରିଥାଆନ୍ତେ ତେବେ ଆମେ ତାଙ୍କ ବ୍ୟତୀତ ଅନ୍ୟ କାହାରି ପୂଜା କରି ନଥାଆନ୍ତୁ କିମ୍ବା ଆମ ପୂର୍ବପୁରୁଷ ମଧ୍ୟ କରି ନଥାଆନ୍ତେ ଏବଂ ତାଙ୍କ ଆଦେଶ ବିନା ଆମେ କୌଣସି ବସ୍ତୁକୁ ଅବୈଧ କରି ନଥାଆନ୍ତୁ ।" ଏହିପରି (ବାହାନା) ସେମାନଙ୍କ ପୂର୍ବପୁରୁଷମାନେ ମଧ୍ୟ କରିଥିଲେ । କେବଳ ପରିଷ୍କାର ଭାବରେ ବାର୍ତ୍ତା ଦେଇଦେବା

ଆମ୍ଭର ବାର୍ତ୍ତାବହମାନଙ୍କର ଦାୟିତ୍ୱ । ୩୬. (ଏହି ବାର୍ତ୍ତା ଦେଇ) ଆମ୍ଭେ ପ୍ରତ୍ୟେକ ସମାଜକୁ ବାର୍ତ୍ତାବହ ପଠାଇଛୁ ଯେ କେବଳ ଅଲ୍ଲାହଙ୍କର ସେବା-ଉପାସନା କର ଏବଂ ମିଥ୍ୟା ଉପାସ୍ୟମାନଙ୍କଠାରୁ ଦୂରେଇ ରୁହ । ପୁଣି ସେମାନଙ୍କ ମଧ୍ୟରୁ କେତେକଙ୍କୁ ଅଲ୍ଲାହ୍ ସତପଥରେ ପରିଚାଳିତ କଲେ ଏବଂ ଅନ୍ୟ କେତେକଙ୍କ ପାଇଁ ପଥଭ୍ରଷ୍ଟ ହେବାର ଯଥାର୍ଥତା ସିଦ୍ଧ ହେଲା । ତେଣୁ ଟିକିଏ ଧରାପୃଷ୍ଠରେ ବୁଲାବୁଲି କରି ଦେଖ ଯେ (ଈଶ୍ୱରଦୂତମାନଙ୍କୁ) ନମାନିବାର କି ପରିଣାମ ହେଲା । ୩୭. (ହେ ବାର୍ତ୍ତାବହ !) ଯଦିଓ ତୁମେ ଏଥିପାଇଁ ଆଗ୍ରହୀ ଯେ ସେମାନେ ଠିକ୍ ବାଟକୁ ଆସନ୍ତୁ, କିନ୍ତୁ ଅଲ୍ଲାହ୍ ଯେଉଁମାନଙ୍କୁ ପଥଭ୍ରଷ୍ଟ କରନ୍ତି ସେମାନଙ୍କୁ ଆଉ ବାଟକୁ ଆଣନ୍ତିନାହିଁ ଏବଂ ଏଭଳି ଲୋକମାନଙ୍କୁ ସାହାଯ୍ୟ କରିବାକୁ ମଧ୍ୟ କେହି ନଥାଆନ୍ତି ।

୩୮. ସେମାନେ (ଭାରି ଦମ୍ଭର ସହିତ) ଅଲ୍ଲାହଙ୍କ ନାଁରେ ଦୃଢ଼ ନିୟମ କରି କହୁଛନ୍ତି, “ଅଲ୍ଲାହ୍ ମୃତମାନଙ୍କୁ ଜୀବିତ କରିବେ ନାହିଁ ।” କାହିଁକିବା ନକରିବେ ? ଏହା ତାଙ୍କର ବଚନ ଏବଂ ଏହି ବଚନ ରକ୍ଷା କରିବା ତାଙ୍କର କର୍ତ୍ତବ୍ୟ ମାତ୍ର ଅଧିକାଂଶ ଲୋକ ଏହା ଜାଣନ୍ତିନାହିଁ । ୩୯. ଏହା ଏଥିପାଇଁ (ମଧ୍ୟ) ହେବ ଯେ ଯେଉଁ ବିଷୟରେ ସେମାନେ ମତଭେଦ କରୁଥିଲେ, ସେମାନଙ୍କ ପାଖରେ ସେ ଏହାର ବାସ୍ତବିକତା ସ୍ପଷ୍ଟ କରିବେ ଏବଂ ମିଥ୍ୟାବିଶ୍ୱାସୀମାନେ ଜାଣିନେବେ ଯେ ସେମାନେ ମିଥ୍ୟାବାଦୀ ଥିଲେ । ୪୦. ଆମ୍ଭେ ଯଦି କିଛି କରିବାକୁ ଇଚ୍ଛା କରୁ ତା' ବିଷୟରେ କେବଳ ଏତିକି ଆଜ୍ଞା ଦେଉ, “ହୋଇ ଯା” ଏବଂ ତାହା ହୋଇଯାଏ ।

୪୧. ଯେଉଁମାନେ ନିର୍ଯ୍ୟାତନା ସହିବା ପରେ ଅଲ୍ଲାହଙ୍କ ପାଇଁ ଦେଶତ୍ୟାଗ କଲେ ଆମ୍ଭେ ସେମାନଙ୍କୁ ସଂସାରରେ ନିଶ୍ଚୟ ଭଲ ରୂପେ ପ୍ରତିଷ୍ଠିତ କରିବୁ ଏବଂ ପରଲୋକର ପୁରସ୍କାର ତ ଏହାଠାରୁ ଢ଼େର ଭଲ । ସେମାନେ ଏହା ଜାଣନ୍ତେ କି ! ୪୨. ଏମାନେ ଧୈର୍ଯ୍ୟ ଅବଲମ୍ବନ କରନ୍ତି ଏବଂ ନିଜ ପାଳନକର୍ତ୍ତାଙ୍କ ଉପରେ ଭରସା ରଖନ୍ତି ।

୪୩. ତୁମ ପୂର୍ବରୁ ମଧ୍ୟ ଆମ୍ଭେ ପୁରୁଷମାନଙ୍କୁ ହିଁ ବାର୍ତ୍ତାବହ ରୂପେ ପଠାଇଥିଲୁ ଯେଉଁମାନଙ୍କ ପ୍ରତି ଆମ୍ଭେ ଦୈବବାଣୀ କରୁଥିଲୁ । (ସେମାନଙ୍କୁ କୁହ) “ଯଦି ତୁମମାନଙ୍କର ଏ ବିଷୟରେ ଜ୍ଞାନ ନାହିଁ, ତେବେ ଯେଉଁମାନଙ୍କର ଜ୍ଞାନ ଅଛି

ସେମାନଙ୍କୁ ପଚ଼ରିନିଅ ।” ୪୪. (ଆମ୍ଭେ ସେମାନଙ୍କୁ) ସ୍ପଷ୍ଟ ପ୍ରମାଣ ସହିତ ଦିବ୍ୟଗ୍ରନ୍ଥ ଦେଇ ପଠାଇଥିଲୁ । ତୁମ ପାଖକୁ ମଧ୍ୟ ଆମ୍ଭେ ଏହି ଉଦ୍ଦେଶ୍ୟରେ କୁରଆନ୍ ପଠାଇଛୁ ଯେ ଲୋକମାନଙ୍କ ପାଇଁ ଯାହା ପଠାଯାଇଛି ତାହା ସେମାନଙ୍କ ପାଖରେ ଖୁବ୍ ପରିଷ୍କାର ଭାବରେ ବର୍ଣ୍ଣନା କରିଦିଅ ଯେପରିକି ସେମାନେ (ଏବିଷୟରେ) ଚିନ୍ତା କରିବେ ।

୪୫. କ’ଣ କୁଚକ୍ରାନ୍ତକାରୀମାନଙ୍କୁ ଭୟ ଲାଗୁନାହିଁ ଯେ ହୁଏତ ଅଲ୍ଲାହ୍ ସେମାନଙ୍କୁ ମାଟିରେ ଧସାଇଦେବେ କିମ୍ବା ସେମାନଙ୍କ ଉପରେ ଏମିତି ଜାଗାରୁ ବିପଦ ମାଡ଼ିଆସିବ ଯାହା ବିଷୟରେ ସେମାନେ ଚିନ୍ତା କରି ନଥିବେ ? ୪୬. କିମ୍ବା ଦୈନନ୍ଦିନର କାର୍ଯ୍ୟ କରୁଥିବା ବେଳେ ସେ ସେମାନଙ୍କୁ ଦଣ୍ଡ ଦେବେ । ସେମାନେ ତାଙ୍କୁ ରୋକିପାରିବେ ପାରିବେ ନାହିଁ । ୪୭. କିମ୍ବା ସେ ଏମିତି ଦଣ୍ଡ ଦେବେ ଯେ ସେମାନେ ସର୍ବଦା (ଆସନ୍ନ ବିପଦ) ଭୟରେ ରହିଥିବେ । ପ୍ରକୃତରେ ତୁମ ଈଶ୍ୱର ଅତ୍ୟନ୍ତ କରୁଣାଶୀଳ ଏବଂ ପରମ ଦୟାଳୁ ।

୪୮. କ’ଣ ସେମାନେ ଅଲ୍ଲାହଙ୍କର କୌଣସି ସୃଷ୍ଟି ପ୍ରତି ଲକ୍ଷ୍ୟ କରିନାହାନ୍ତି ଯେ କିପରି ଏହାର ଛାୟା ବିନୀତ ଭାବରେ କେତେବେଳେ ବାମ ପଟକୁ ତ କେତେବେଳେ ଡ଼ାହାଣ ପଟକୁ ନଇଁ ପଡ଼ି ଅଲ୍ଲାହ୍‌ଙ୍କୁ ପ୍ରଣାମ କରିଥାଏ ? ୪୯. ଏବଂ ପୃଥିବୀ ଓ ଆକାଶରେ ଥିବା ସବୁ ପ୍ରାଣୀ ଓ ସବୁ ଦେବଦୂତମାନେ ଅଲ୍ଲାହଙ୍କୁ ପ୍ରଣାମ କରନ୍ତି ଏବଂ ସେମାନେ ଆଦୌ ଅହଂକାର କରନ୍ତିନାହିଁ । ୫୦. ସେମାନେ ସେମାନଙ୍କ ପାଳନକର୍ତ୍ତାଙ୍କୁ ଭୟ କରନ୍ତି ଯିଏ ସେମାନଙ୍କ ଉପରେ ଅଛନ୍ତି ଏବଂ ସେମାନଙ୍କୁ ଯାହା ଆଦେଶ ଦିଆଯାଏ ତାହା ପାଳନ କରନ୍ତି ।[ପ୍ରଣାମ]

୫୧. ଅଲ୍ଲାହ୍ ଆଦେଶ ଦେଇଛନ୍ତି, “ତୁମେମାନେ ଦୁଇଜଣଙ୍କୁ ଈଶ୍ୱର ମାନି ନିଅନାହିଁ । ଈଶ୍ୱର କେବଳ ଜଣେ । ତେଣୁ କେବଳ ମୋ’ ପ୍ରତି ଭୟ ରଖ ।” ୫୨. ପୃଥିବୀ ଓ ଆକାଶରେ ଯାହାକିଛି ଅଛି ସବୁ ତାଙ୍କରି ଏବଂ ସର୍ବଦା ତାଙ୍କରି ଆଜ୍ଞା ପାଳନ କରିବା ବେଧେୟ । ତେବେ କ’ଣ ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାକୁ ଭୟ କରୁଛ ?

୫୩. ତୁମମାନେ ଯାହା ସୁଖ ଭୋଗ କର, ସେଗୁଡ଼ିକ ଅଲ୍ଲାହ୍ ହିଁ ଦିଅନ୍ତି । ପୁଣି ଯେତେବେଳେ ତୁମମାନଙ୍କ ଉପରେ କୌଣସି ବିପଦ ପଡ଼େ ତୁମେମାନେ ତାଙ୍କରି ପାଖରେ ଗୁହାରି ମଧ୍ୟ କରିଥାଅ । ୫୪. ପୁଣି ଯେତେବେଳେ ସେ ତୁମମାନଙ୍କର ବିପଦ ଦୂର କରିଦିଅନ୍ତି, ତୁମମାନଙ୍କ ମଧ୍ୟରୁ କିଛିଲୋକ ଅନ୍ୟମାନଙ୍କୁ ନିଜ ପାଳନକର୍ତ୍ତାଙ୍କର ସମକକ୍ଷ କରିଦିଅନ୍ତି, ୫୫. ଯାହାଫଳରେ ଆମ୍ଭର ଉପକାର ବଦଳରେ କୃତଘ୍ନତା ପ୍ରଦର୍ଶନ କରନ୍ତି । ଠିକ୍ ଅଛି, କିଛିଦିନ ମଜା କରିନିଅ । ଖୁବ୍ ଶୀଘ୍ର ତୁମମାନେ (ଏହାର ପରିଣାମ) ଜାଣିଯିବ ।

୫୬. ଆମ୍ଭେ ଦେଇଥିବା ଆହାରରୁ ଏମାନେ ସେମାନଙ୍କୁ ଭାଗ ଅର୍ପଣ କରନ୍ତି ଯେଉଁମାନଙ୍କ ବିଷୟରେ ଏମାନେ କିଛି ଜାଣିନାହାନ୍ତି । ଅଲ୍ଲାହଙ୍କ ରାଣ ! ତୁମେମାନେ ଯେଉଁ କୁସଂସ୍କାର ସବୁ ଗଢୁଛ ସେବିଷୟରେ ତୁମମାନଙ୍କୁ ନିଶ୍ଚୟ ପ୍ରଶ୍ନ କରାଯିବ । ୫୭. ଅଲ୍ଲାହ୍ ପବିତ୍ର ଥିବା ସତ୍ତ୍ୱେ ସେମାନେ ଅଲ୍ଲାହଙ୍କର କନ୍ୟା ଥିବାର ଆରୋପ କରୁଛନ୍ତି ଅଥଚ ନିଜ ପାଇଁ ତାହା ପସନ୍ଦ କରନ୍ତି ଯାହା ସେମାନଙ୍କ ମନ ଚାହେଁ । ୫୮. ଯେତେବେଳେ ସେମାନଙ୍କ ମଧ୍ୟରୁ କାହାକୁ ଝିଅ ଜନ୍ମ ହୋଇଥିବାର ଖବର ଦିଆଯାଏ, ତା' ମୁହଁ କଳା ପଡ଼ିଯାଏ ଏବଂ ସେ ମନେମନେ ଦୁଃଖରେ ଘାରି ହୁଏ । ୫୯. ଅଶୁଭ ଖବର ମିଳିଥିବା ଯୋଗୁଁ ସେ ଲୋକଙ୍କଠାରୁ ମୁହଁ ଲୁଚାଇ ବୁଲେ ଏବଂ ଭାବୁଥାଏ ଯେ ଏହି ଅପମାନ ସହି ତାକୁ ରଖିବ ନା ମାଟିରେ (ଜିଅନ୍ତା) ପୋତିଦେବ । ଦେଖତ ! ସେମାନଙ୍କର କି କୁତ୍ସିତ ଚିନ୍ତାଧାରା ! ୬୦. ହୀନ ସ୍ୱଭାବ ସେହି ଲୋକମାନଙ୍କର ଯେଉଁମାନେ ପରଲୋକକୁ ବିଶ୍ୱାସ କରନ୍ତିନାହିଁ କିନ୍ତୁ ଅଲ୍ଲାହ୍ ସର୍ବୋତ୍ତମ ସ୍ୱଭାବର ଅଧିକାରୀ । ସେ ପ୍ରବଳ ପରାକ୍ରମୀ ଓ ମହାଜ୍ଞାନୀ ।

୬୧. ଯଦି ଅଲ୍ଲାହ୍ ଲୋକମାନଙ୍କୁ ସେମାନଙ୍କ କୁକର୍ମ ପାଇଁ (ତୁରନ୍ତ) ଦଣ୍ଡ ଦିଅନ୍ତେ ତେବେ ଧରାପୃଷ୍ଠରେ ଗୋଟିଏ ହେଲେ ପ୍ରାଣୀକୁ ଜୀବିତ ଛାଡ଼ନ୍ତେନାହିଁ କିନ୍ତୁ ସେ ସେମାନଙ୍କୁ ଏକ ନିଶ୍ଚିତ ସମୟ ପର୍ଯ୍ୟନ୍ତ ସୁଯୋଗ ଦିଅନ୍ତି । ଯେତେବେଳେ ସେମାନଙ୍କର ସେହି ସମୟ ଆସିଯିବ, ସେମାନେ ଗୋଟିଏ ମୁହୂର୍ତ୍ତ ମଧ୍ୟ ଆଗପଛ ହୋଇ ପାରିବେନାହିଁ । ୬୨. ସେମାନେ ଯାହାକୁ (ଅର୍ଥାତ୍ କନ୍ୟା ସନ୍ତାନକୁ) ନିଜ ପାଇଁ ଘୃଣା କରନ୍ତି, ତାକୁ ଅଲ୍ଲାହଙ୍କ ପାଇଁ ପ୍ରମାଣିତ କରନ୍ତି ଏବଂ

ନିଜ ତୁଣ୍ଡରେ କେବଳ ମିଛ କହନ୍ତି ଯେ ସେମାନଙ୍କର ସବୁ ଭଲ ହେବ। ନିଃସନ୍ଦେହରେ ସେମାନଙ୍କ ପାଇଁ ନର୍କର ନିଆଁ ପ୍ରସ୍ତୁତ ହୋଇ ରହିଛି ଯେଉଁଥିରେ ସେମାନଙ୍କୁ ନେଇ ଛାଡ଼ି ଦିଆଯିବ।

୬୩. ଅଲ୍ଲାହଙ୍କ ରାଣ! ଆମ୍ଭେ ତୁମ ପୂର୍ବରୁ ମଧ୍ୟ ବିଭିନ୍ନ ସମାଜକୁ ବାର୍ତ୍ତାବହ ପଠାଇଥିଲୁ ମାତ୍ର ଶଇତାନ ସେମାନଙ୍କ କୁକର୍ମଗୁଡ଼ିକୁ ସେମାନଙ୍କ ଦୃଷ୍ଟିରେ ସୁନ୍ଦର କରି ଦେଖାଇ ଥିଲା। ସେହି (ଶଇତାନ) ଆଜି ମଧ୍ୟ ଏମାନଙ୍କର ବନ୍ଧୁ ସାଜିଛି। ତେଣୁ ଏମାନଙ୍କ ପାଇଁ କଠୋର ଶାସ୍ତି ପ୍ରସ୍ତୁତ ହୋଇ ରହିଛି। ୬୪. ଆମ୍ଭେ ଏଇଥିପାଇଁ ତୁମ ପାଖକୁ ଏହି ଗ୍ରନ୍ଥ ପଠାଇଛୁ ଯେ ଯେଉଁ କଥାଗୁଡ଼ିକରେ ସେମାନେ ମତଭେଦ କରୁଛନ୍ତି ସେବିଷୟରେ ସେମାନଙ୍କୁ ପରିଷ୍କାର ଭାବରେ ବୁଝାଇଦିଅ। ଯେଉଁମାନେ ବିଶ୍ୱାସ କରନ୍ତି, ସେମାନଙ୍କ ପାଇଁ ଏହା ଏକ ଦିଗ୍‌ଦର୍ଶନ ଏବଂ (ତାଙ୍କର) କରୁଣା ଲାଭ କରିବାର ଏକ ମାଧ୍ୟମ।

୬୫. ଅଲ୍ଲାହ୍ ଆକାଶରୁ ଜଳବର୍ଷା କରନ୍ତି ଏବଂ ଏହାଦ୍ୱାରା ନିର୍ଜୀବ ଭୂମିରେ ପ୍ରାଣ ସଂଚାର କରିଦିଅନ୍ତି। ଯେଉଁମାନେ କଥା ଶୁଣନ୍ତି, ସେମାନଙ୍କ ପାଇଁ ଏଥିରେ (ତାଙ୍କ ଶକ୍ତିର) ସ୍ପଷ୍ଟ ସଂକେତ ରହିଛି ।

୬୬. ଗୃହପାଳିତ ପଶୁମାନଙ୍କ (ଅସ୍ତିତ୍ୱ) ଭିତରେ ମଧ୍ୟ ତୁମମାନଙ୍କ ଲାଗି ଶିକ୍ଷା ଅଛି। ସେମାନଙ୍କ ପେଟରେ ଥିବା ରକ୍ତ ଓ ମଳ ମଧ୍ୟ ଦେଇ ଆମ୍ଭେ ତୁମମାନଙ୍କ ପିଇବା ପାଇଁ ଶୁଦ୍ଧ କ୍ଷୀର ବାହାର କରୁ, ଯାହା ଭାରି ତୃପ୍ତିକର ହୋଇଥାଏ। ୬୭. ଖଜୁରୀ ଓ ଅଂଗୁର ଆଦି ଫଳରୁ ମଧ୍ୟ ତୁମେମାନେ ମଦ ପ୍ରସ୍ତୁତ କରିଥାଅ ଏବଂ ଭଲଭଲ ଖାଦ୍ୟ ମଧ୍ୟ। ବୁଦ୍ଧିମାନ ଲୋକଙ୍କ ପାଇଁ ଏଥିରେ ସ୍ପଷ୍ଟ ସଂକେତ ରହିଛି।

୬୮. ତୁମ ଈଶ୍ୱର ମହୁମାଛିକୁ ପ୍ରେରଣା ଦେଲେ, "ତୁ ପାହାଡ଼ ଓ ଗଛ ଉପରେ ଏବଂ ଲୋକଙ୍କ ଘର ଛାତରେ ନିଜର ବସା ତିଆରି କର, ୬୯. ବିଭିନ୍ନ ପ୍ରକାରର ଫଳରୁ ନିଜର ଖାଦ୍ୟ ସଂଗ୍ରହ କରୁଥା ଏବଂ ସେହି ବାଟ ଅନୁସରଣ କର ଯାହାକୁ ତୋ' ପାଳନକର୍ତ୍ତା ତୋ'ପାଇଁ ସହଜ କରି ଦେଇଛନ୍ତି।" ଏମାନଙ୍କ ପେଟରୁ ବିଭିନ୍ନ ରଂଗର ଏକ ପାନୀୟ (ଅର୍ଥାତ୍ ମହୁ) ବାହାରେ ଯେଉଁଥିରେ

ଲୋକଙ୍କ ପାଇଁ ଔଷଧି ଥାଏ । ଯେଉଁମାନେ ଧ୍ୟାନ ଦିଅନ୍ତି ସେମାନଙ୍କ ପାଇଁ ଏଥିରେ (ଅଲ୍ଲାହଙ୍କ ମହିମାର) ଏକ ସଂକେତ ଅଛି ।

୭୦. ଅଲ୍ଲାହ୍ ତୁମମାନଙ୍କୁ ସୃଷ୍ଟି କରିଛନ୍ତି ଏବଂ ସେ ହିଁ ତୁମମାନଙ୍କୁ ମୃତ୍ୟୁ ଦିଅନ୍ତି ଏବଂ ତୁମମାନଙ୍କ ମଧ୍ୟରୁ କେତେକଙ୍କୁ ଅତି ବାର୍ଦ୍ଧକ୍ୟ ଅବସ୍ଥାରେ ପହଁଚାଇ ଦିଆଯାଏ ଯାହାଫଳରେ ସେମାନେ ବହୁତ କିଛି ଜାଣିଥିଲେ ମଧ୍ୟ (ସଂପୂର୍ଣ୍ଣ) ଅଜ୍ଞ ହୋଇଯାଆନ୍ତି । ଅଲ୍ଲାହ୍ ମହାଜ୍ଞାନୀ ଓ ସର୍ବଶକ୍ତିମାନ ।

୭୧. ଅଲ୍ଲାହ୍ ତୁମମାନଙ୍କ ମଧ୍ୟରୁ କେତେକଙ୍କୁ କେତେକଙ୍କ ଅପେକ୍ଷା ଅଧିକ ଧନସଂପଦ ଦେଇଛନ୍ତି । ଯେଉଁମାନଙ୍କୁ ଅଧିକ ଦିଆଯାଇଛି, ସେମାନେ ସେମାନଙ୍କର ଧନସଂପତ୍ତି ନିଜ ଭୃତ୍ୟମାନଙ୍କୁ ଦେଇ ସେମାନଙ୍କୁ ସମାନ ଭାବରେ ନିଜର ଅଂଶୀଦାର କରିଦିଅନ୍ତି ନାହିଁ । କ'ଣ ସେମାନେ ଅଲ୍ଲାହଙ୍କ ଉପକାରଗୁଡ଼ିକୁ ଅସ୍ୱୀକାର କରୁଛନ୍ତି ?

୭୨. ଅଲ୍ଲାହହିଁ ତୁମ ସ୍ୱଜାତିରୁ ତୁମମାନଙ୍କ ପାଇଁ ପତ୍ନୀ ସୃଷ୍ଟି କଲେ ଏବଂ ତୁମ ପତ୍ନୀମାନଙ୍କଠାରୁ ତୁମମାନଙ୍କ ପାଇଁ ପୁତ୍ର ଓ ପୌତ୍ର ସୃଷ୍ଟି କଲେ ଏବଂ ସେ ତୁମମାନଙ୍କୁ ଭଲ ଆହାର ଦେଲେ । ତଥାପି କ'ଣ ଏମାନେ ମିଥ୍ୟାକୁ ମାନିବେ ଏବଂ ଅଲ୍ଲାହଙ୍କ ଉପକାରଗୁଡ଼ିକୁ ଅସ୍ୱୀକାର କରିଦେବେ ? ୭୩. ଏମାନେ ଅଲ୍ଲାହଙ୍କୁ ଛାଡ଼ି ସେମାନଙ୍କୁ ପୂଜା କରୁଛନ୍ତି ଯେଉଁମାନେ ପୃଥିବୀ ବା ଆକାଶରୁ ସେମାନଙ୍କୁ ଆହାର ଯୋଗାଇବାକୁ ସମର୍ଥ ନୁହନ୍ତି କିମ୍ବା ସେମାନଙ୍କର ଏହି କ୍ଷମତା ନାହିଁ । ୭୪. ତେଣୁ (ହେ ମନୁଷ୍ୟମାନେ !) ଅଲ୍ଲାହଙ୍କ ପାଇଁ ଉପମା ଗଢ଼ନାହିଁ । ଅଲ୍ଲାହ୍ (ବାସ୍ତବିକତା) ଜାଣନ୍ତି ମାତ୍ର ତୁମେମାନେ ଜାଣନାହିଁ ।

୭୫. ଅଲ୍ଲାହ୍ ଗୋଟିଏ ଭୃତ୍ୟର ଉଦାହରଣ ଦେଉଛନ୍ତି ଯିଏ ପର ଅଧୀନରେ ରହିଛି ଏବଂ ତା'ର କୌଣସି କ୍ଷମତା ନାହିଁ କିନ୍ତୁ ଆଉ ଜଣେ ବ୍ୟକ୍ତିକୁ ଆମ୍ଭେ ଯଥେଷ୍ଟ ଦେଇଛୁ ଏବଂ ସେ ସେଥିରୁ ଗୋପନରେ ତଥା ଖୋଲାଖୋଲି ଭାବରେ (ପୁଣ୍ୟ କାର୍ଯ୍ୟରେ) ଖର୍ଚ୍ଚ କରିଥାଏ । କ'ଣ ଏ ଦୁଇଜଣ ବ୍ୟକ୍ତି ପରସ୍ପର ସହିତ ସମାନ ହୋଇ ପାରନ୍ତି ? ଅଲ୍ଲାହ୍ ହିଁ ସକଳ ପ୍ରଶଂସାର ଅଧିକାରୀ ମାତ୍ର ଅଧିକାଂଶ ଲୋକ ଏହା ଜାଣନ୍ତି ନାହିଁ ।

୭୬. ଅଲ୍ଲାହ୍ ଆଉ ଗୋଟିଏ ଉଦାହରଣ ଦେଉଛନ୍ତି ଯେ ଦୁଇଜଣ ବ୍ୟକ୍ତି ଅଛନ୍ତି । ସେମାନଙ୍କ ମଧ୍ୟରୁ ଜଣେ ବ୍ୟକ୍ତି ମୁକ ଯିଏ କୌଣସି କାମ କରିବାକୁ ସକ୍ଷମ ନୁହେଁ ଏବଂ ସେ ତା' ମାଲିକ ଉପରେ ଏକ ବୋଝ ହୋଇ ରହିଛି । ତା' ମାଲିକ ତାକୁ ଯେଉଁ କାମ ଦେଲେ ମଧ୍ୟ ସେ ଠିକ୍ ଭାବରେ କରି ପାରେନାହିଁ । ଅନ୍ୟ ବ୍ୟକ୍ତି ଜଣକ ଲୋକଙ୍କୁ ନ୍ୟାୟ ବିଚାର କରିବାର ଉପଦେଶ ଦିଏ ଏବଂ ନିଜେ ମଧ୍ୟ ଠିକ୍ ବାଟରେ ଥାଏ । କ'ଣ ଏହି ଦୁଇଜଣ ପରସ୍ପର ସହିତ ସମାନ ହୋଇ ପାରନ୍ତି ?

୭୭. ଧରିତ୍ରୀ ଓ ଆକାଶର ସବୁ ରହସ୍ୟ କେବଳ ଅଲ୍ଲାହ୍ ଜାଣନ୍ତି । ସୃଷ୍ଟିର ପ୍ରଳୟ ଆଖିର ପଲକ ପଡ଼ିବା ପରି ଶୀଘ୍ର ହେବ ବରଂ ତା'ଠାରୁ ଆହୁରି ଶୀଘ୍ର । ଅଲ୍ଲାହ୍ ସବୁକିଛି କରିବାକୁ ସକ୍ଷମ । ୭୮. ଅଲ୍ଲାହ୍ ତୁମମାନଙ୍କୁ ମାତୃଗର୍ଭରୁ ଏମିତି ଅବସ୍ଥାରେ ବାହାର କଲେ ଯେ ତୁମେମାନେ କିଛି ଜାଣି ନଥିଲ । ସେ ତୁମମାନଙ୍କୁ ଆଖି ଦେଲେ, କାନ ଦେଲେ ଏବଂ ହୃଦୟ ଦେଲେ ଯେପରିକି ତୁମେମାନେ ତାଙ୍କର ଉପକାର ମାନିବ ।

୭୯. କ'ଣ ସେମାନେ ପକ୍ଷୀମାନଙ୍କୁ ଲକ୍ଷ୍ୟ କରୁନାହାନ୍ତି ଯେ ସେମାନେ କିପରି ଖୋଲା ଆକାଶରେ (ଅଲ୍ଲାହ୍‌ଙ୍କ) ନିୟମାଧୀନ ହୋଇ ରହନ୍ତି ? ଅଲ୍ଲାହ୍‌ଙ୍କ ବ୍ୟତୀତ ସେମାନଙ୍କୁ ଅନ୍ୟ କେହି ଧରି ରଖେନାହିଁ । ଯେଉଁମାନେ ବିଶ୍ୱାସ କରନ୍ତି, ସେମାନଙ୍କ ପାଇଁ ଏଥିରେ (ତାଙ୍କ ମହିମାର) ଅନେକ ସଂକେତ ଅଛି ।

୮୦. ଅଲ୍ଲାହ୍ ତୁମମାନଙ୍କ ପାଇଁ ତୁମ ଗୃହକୁ ବିଶ୍ରାମସ୍ଥଳ କଲେ । ସେ ତୁମମାନଙ୍କ ପାଇଁ ପଶୁ ଛାଲରୁ ଏଭଳି ତମ୍ବୁଘର ସୃଷ୍ଟିକଲେ ଯାହାଫଳରେ ଯାତ୍ରା କରିବା ସମୟରେ ଏବଂ (ବାଟରେ) ବିଶ୍ରାମ ନେବା ବେଳେ ତୁମମାନଙ୍କୁ ସୁବିଧା ହୁଏ । ପୁଣି ସେ ସେମାନଙ୍କ ପଶମ, ଲୋମ ତଥା କେଶରୁ ବିଭିନ୍ନ ସାମଗ୍ରୀ ତଥା ଉପଯୋଗୀ ବସ୍ତୁ ସୃଷ୍ଟି କଲେ ଯାହା ତୁମମାନଙ୍କ ବ୍ୟବହାରରେ ଆସେ । ୮୧. ଅଲ୍ଲାହ୍ ତୁମମାନଙ୍କ ପାଇଁ ନିଜର ବିଭିନ୍ନ ସୃଷ୍ଟିର ଛାୟା ଉତ୍ପନ୍ନ କଲେ, ପାହାଡ଼ପର୍ବତ ମଧ୍ୟରେ (ଆଶ୍ରୟ ନେବା ପାଇଁ) ଗୁମ୍ଫା ସୃଷ୍ଟି କଲେ ତଥା ଏଭଳି ପୋଷାକ ସୃଷ୍ଟି କଲେ ଯାହା ତୁମମାନଙ୍କୁ ଖରାରୁ ରକ୍ଷା କରେ ଏବଂ ଏଭଳି ପୋଷାକ ମଧ୍ୟ ସୃଷ୍ଟି କଲେ ଯାହା ଯୁଦ୍ଧ ବେଳେ ତୁମମାନଙ୍କୁ ସୁରକ୍ଷା ଦେଇଥାଏ । ଏହିପରି ସେ

ତୁମମାନଙ୍କ ପ୍ରତି ତାଙ୍କର ଅନୁଗ୍ରହ ସଂପୂର୍ଣ୍ଣ କରୁଛନ୍ତି ଯେପରିକି ତୁମେମାନେ (ତାଙ୍କର) ଆଜ୍ଞାକାରୀ ହେବ । ୮୨. ତଥାପି ଯଦି ସେମାନେ ନମାନନ୍ତି, ତେବେ କେବଳ ପରିଷ୍କାର ଭାବରେ (ଆମ୍ଭର) ବାର୍ତ୍ତା ଦେଇଦେବା ତୁମ୍ଭର ଦାୟିତ୍ୱ । ୮୩. ଏମାନେ ଅଲ୍ଲାହଙ୍କର ଉପକାରଗୁଡ଼ିକ ବିଷୟରେ ଜାଣନ୍ତି କିନ୍ତୁ ସ୍ୱୀକାର କରୁନାହାନ୍ତି । ଏମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଅକୃତଜ୍ଞ ।

୮୪. ଯେଉଁଦିନ ଆମ୍ଭେ ପ୍ରତ୍ୟେକ ସଂପ୍ରଦାୟ ମଧ୍ୟରୁ ଜଣେ ଲେଖାଏଁ ସାକ୍ଷୀକୁ (ଅର୍ଥାତ୍ ସେମାନଙ୍କ ସମୟର ଈଶ୍ୱରଦୂତଙ୍କୁ) ଠିଆ କରିବୁ, ସେଦିନ ଅଧର୍ମୀମାନଙ୍କୁ (କାରଣ ଦର୍ଶାଇବାର) ଅନୁମତି ମିଳିବନାହିଁ କିମ୍ବା ସେମାନଙ୍କୁ ଅନୁତାପ କରିବାକୁ କୁହାଯିବ ନାହିଁ । ୮୫. ପାପୀମାନେ ନର୍କଦଣ୍ଡ ଦେଖିଲା ପରେ ଆଉ ସେମାନଙ୍କ ଦଣ୍ଡ କୋହଳ କରାଯିବ ନାହିଁ କିମ୍ବା ସେମାନଙ୍କୁ ବିରାମ ଦିଆଯିବ ନାହିଁ । ୮୬. ଯେତେବେଳେ ବହୁଈଶ୍ୱରବାଦୀମାନେ ସେମାନଙ୍କୁ ଦେଖିବେ ଯେଉଁମାନଙ୍କୁ ସେମାନେ ଈଶ୍ୱରଙ୍କର ସମକକ୍ଷ କରିଥିଲେ, କହିବେ ଯେ ପ୍ରଭୁ! ଆମେ ତୁମକୁ ଛାଡ଼ି ଏଇମାନଙ୍କୁ ଡାକୁଥିଲୁ । ଏହା ଶୁଣି ସେମାନେ (ଅର୍ଥାତ୍ ସେହି ମିଥ୍ୟା ଉପାସ୍ୟମାନେ) ପାଲଟା ଜବାବ ଦେବେ ଯେ ତୁମେମାନେ ମିଛ କହୁଛ । ୮୭. ସେତେବେଳେ ଏମାନେ ନିଜକୁ ଅଲ୍ଲାହଙ୍କଠାରେ ସମର୍ପିତ କରିଦେବେ ଏବଂ ଯେଉଁ ମିଛଗୁଡ଼ିକ ଗଢ଼ିଥିଲେ, ସେଗୁଡ଼ିକର ଚିହ୍ନବର୍ଣ୍ଣ ରହିବନାହିଁ । ୮୮. ଯେଉଁମାନେ ସତ୍ୟକୁ ଅସ୍ୱୀକାର କଲେ ଏବଂ ଲୋକମାନଙ୍କୁ ଅଲ୍ଲାହଙ୍କ ମାର୍ଗରେ ବାଧା ଦେଲେ, ଆମ୍ଭେ ସେମାନଙ୍କୁ ଶାସ୍ତି ଉପରେ ଶାସ୍ତି ଦେବୁ କାରଣ ସେମାନେ ଅଶାନ୍ତି ସୃଷ୍ଟି କରୁଥିଲେ ।

୮୯. ସେଦିନ ଆମ୍ଭେ ସେମାନଙ୍କ ବିରୁଦ୍ଧରେ ପ୍ରତ୍ୟେକ ସଂପ୍ରଦାୟ ମଧ୍ୟରୁ ଜଣେ ଲେଖାଏଁ ସାକ୍ଷୀ ପ୍ରସ୍ତୁତ କରିବୁ ଏବଂ (ହେ ବାର୍ତ୍ତାବହ!) ତୁମକୁ ଆମ୍ଭେ ସେମାନଙ୍କର ସାକ୍ଷୀ ରୂପେ ଠିଆ କରିବୁ । ଆମ୍ଭେ ତୁମ ପାଖକୁ ଏହି ଗ୍ରନ୍ଥ ପଠାଇଛୁ ଯାହା ପ୍ରତ୍ୟେକ କଥାକୁ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରେ । ଏହା ଆଜ୍ଞାକାରୀ ଭକ୍ତମାନଙ୍କ ପାଇଁ ଆମ୍ଭର ଏକ କରୁଣା ଯାହା ସେମାନଙ୍କର ମାର୍ଗଦର୍ଶନ କରେ ଏବଂ ସେମାନଙ୍କୁ (ସ୍ୱର୍ଗର) ସୁସମାଚାର ଦିଏ ।

୯୦. ଅଲ୍ଲାହ୍ ତୁମମାନଙ୍କୁ ନ୍ୟାୟ ବିଚାର କରିବା, ପରୋପକାର କରିବା ଏବଂ ନିକଟ ସଂପର୍କୀୟମାନଙ୍କୁ (ସେମାନଙ୍କର ପ୍ରାପ୍ୟ) ଦେବାର ଆଦେଶ ଦେଉଛନ୍ତି ଏବଂ ଅଶ୍ଳୀଳତା, ଅପକର୍ମ ତଥା ଅନ୍ୟାୟ-ଅତ୍ୟାଚାର କରିବାକୁ ମନା କରୁଛନ୍ତି । ସେ ତୁମମାନଙ୍କୁ ଏହି ଉପଦେଶ ଦେଉଛନ୍ତି ଯେପରିକି ତୁମେମାନେ ମନେରଖିବ ।

୯୧. ଯଦି ତୁମେମାନେ କୌଣସି ଚୁକ୍ତି କର, ତେବେ ଅଲ୍ଲାହଙ୍କୁ ଦେଇଥିବା ବଚନ ରକ୍ଷା କର । ଅଲ୍ଲାହଙ୍କୁ ସାକ୍ଷୀ ରଖି ଦୃଢ଼ ବଚନ ଦେଲାପରେ ତାକୁ ଭାଙ୍ଗି ଦିଅନାହିଁ । ତୁମେମାନେ ଯାହା କରୁଛ ଅଲ୍ଲାହ୍ ଜାଣନ୍ତି । ୯୨. ସେହି ମହିଳା ପରି ହୁଅନାହିଁ ଯିଏ ପରିଶ୍ରମ କରି ସୂତା କାଟି ସାରିବା ପରେ ତାକୁ ଛିଣ୍ଡାଇ ଖଣ୍ଡଖଣ୍ଡ କରିଦେଲା । (ସେହିପରି) ତୁମେମାନେ ନିଜର ରାଣ-ନିୟମକୁ ପରସ୍ପରକୁ ଠକିବାର ବାହାନା କରନାହିଁ, କେବଳ ଏଇଥିପାଇଁ ଯେ ଗୋଟିଏ ଗୋଷ୍ଠୀ ଅନ୍ୟ ଗୋଷ୍ଠୀ ଅପେକ୍ଷା ଅଧିକ ଲାଭବାନ ହୋଇଯାଉ । ପ୍ରକୃତ କଥା ହେଉଛି, ଅଲ୍ଲାହ୍ (ରାଣ-ନିୟମ ଦ୍ୱାରା) ତୁମମାନଙ୍କର ପରୀକ୍ଷା ନିଅନ୍ତି । ଯେଉଁ ବିଷୟରେ ତୁମେମାନେ ମତଭେଦ କରୁଛ, ବିଚାର ଦିନ ସେ ତୁମମାନଙ୍କ ପାଖରେ ଏହାର ବାସ୍ତବିକତା ସ୍ପଷ୍ଟ କରିଦେବେ । ୯୩. ଯଦି ଅଲ୍ଲାହ୍ ଇଚ୍ଛା କରି ଥାଆନ୍ତେ, ତେବେ ତୁମ ସମସ୍ତଙ୍କୁ ଗୋଟିଏ ଧର୍ମ-ସଂପ୍ରଦାୟ କରି ଦେଇଥାଆନ୍ତେ, ମାତ୍ର ସେ ଯାହାକୁ ଚାହାନ୍ତି ପଥଭ୍ରଷ୍ଟ କରନ୍ତି ଏବଂ ଯାହାକୁ ଚାହାନ୍ତି ସତପଥରେ ପରିଚାଳିତ କରନ୍ତି । ତୁମେମାନେ ଯେଉଁ କର୍ମ କରୁଛ, ସେବିଷୟରେ ତୁମମାନଙ୍କୁ ନିଶ୍ଚୟ ପ୍ରଶ୍ନ କରାଯିବ ।

୯୪. ତୁମେମାନେ ନିଜର ରାଣ-ନିୟମକୁ ପରସ୍ପରକୁ ଠକିବା ପାଇଁ ବ୍ୟବାହର କରନାହିଁ, ହୁଏତ ଏହାଦ୍ୱାରା କୌଣସି ବ୍ୟକ୍ତିର ଆସ୍ଥା ଦୃଢ଼ ହେଲାପରେ ପୁଣି ତା'ର ପାଦ ଖସିଯିବ ଏବଂ ତାକୁ ଅଲ୍ଲାହଙ୍କ ମାର୍ଗରୁ ରୋକିଥିବା ଯୋଗୁଁ ତୁମମାନଙ୍କୁ ଏହାର କୁପରିଣାମ ଭୋଗିବାକୁ ପଡ଼ିବ ଏବଂ ତୁମମାନଙ୍କୁ କଠୋର ଶାସ୍ତି ମିଳିବ । ୯୫. ଅଲ୍ଲାହଙ୍କୁ ଦେଇଥିବା ବଚନ ବିନିମୟରେ ତୁଚ୍ଛ ମୂଲ୍ୟ ଗ୍ରହଣ କରନାହିଁ । ଯଦି ତୁମମାନଙ୍କର ଜ୍ଞାନ ଥାଏ ତେବେ (ମନେରଖ ଯେ) ଅଲ୍ଲାହଙ୍କ

ପାଖରେ ଯାହା ଅଛି ତାହା ତୁମମାନଙ୍କ ପାଇଁ ଢ଼େର ଭଲ । ୯୬. ତୁମମାନଙ୍କ ପାଖରେ ଯାହା ଅଛି ତାହା ଦିନେ ଶେଷ ହୋଇଯିବ ଏବଂ ଅଲ୍ଲାହଙ୍କ ପାଖରେ ଯାହା ଅଛି ତାହା ଚିରକାଳ ରହିବ । ଯେଉଁମାନେ ସଂଯମ ଅବଲମ୍ବନ କରିବେ ଆମ୍ଭେ ସେମାନଙ୍କୁ ସେମାନଙ୍କ ଭଲ କର୍ମର ପୁରସ୍କାର ନିଶ୍ଚୟ ଦେବୁ ।

୯୭. ପୁରୁଷ ହେଉ ବା ନାରୀ, ଯିଏ ସତ୍‌କର୍ମ କରେ ଏବଂ ସଦ୍‌ବିଶ୍ୱାସୀ ହୋଇଥାଏ, ଆମ୍ଭେ ତା' ପାର୍ଥିବ ଜୀବନକୁ ପବିତ୍ର (ଓ ଆନନ୍ଦମୟ) କରିବୁ ଏବଂ ଏଭଳି ଲୋକମାନଙ୍କୁ (ପରଲୋକରେ ମଧ୍ୟ) ସେମାନଙ୍କ କର୍ମର ଖୁବ୍ ଭଲ ପୁରସ୍କାର ଦେବୁ ।

୯୮. ଯେତେବେଳେ ତୁମେମାନେ କୁର୍‌ଆନପାଠ ଆରମ୍ଭ କର, ତିରସ୍କୃତ ହୋଇଥିବା ଶଇତାନଠାରୁ (ରକ୍ଷା ପାଇବା ପାଇଁ) ଅଲ୍ଲାହଙ୍କର ଆଶ୍ରୟ ମାଗ । ୯୯. ଯେଉଁମାନେ ଆସ୍ଥା ରଖନ୍ତି ଏବଂ ସେମାନଙ୍କ ପାଳନକର୍ତ୍ତାଙ୍କ ଉପରେ ଭରସା ରଖନ୍ତି, ସେମାନଙ୍କ ଉପରେ ତା'ର କିଛି ବଳ ନଥାଏ । ୧୦୦. ତା'ର ବଳ କେବଳ ସେହିମାନଙ୍କ ଉପରେ ଥାଏ ଯେଉଁମାନେ ତାକୁ ବନ୍ଧୁ କରନ୍ତି ଏବଂ ଅଲ୍ଲାହଙ୍କ ଈଶ୍ୱରତ୍ୱରେ ଅନ୍ୟମାନଙ୍କୁ ଅଂଶୀଦାର କରନ୍ତି ।

୧୦୧. ଅଲ୍ଲାହ୍ ଯାହା ନିର୍ଦ୍ଦେଶ ଦିଅନ୍ତି ତାହା ସେ ଭଲ ଭାବରେ ଜାଣନ୍ତି । ଯେତେବେଳେ ଆମ୍ଭେ (କୁରଆନର) କୌଣସି ବାଣୀକୁ ପରିବର୍ତ୍ତନ କରି (ଏହା ସ୍ଥାନରେ) ଅନ୍ୟ ବାଣୀ ପଠାଉ, ସେତେବେଳେ ଏମାନେ ତୁମକୁ କହନ୍ତି ଯେ ତୁମେ ନିଜେ ଏହା ଗଢ଼ି ଦେଇଛ । ପ୍ରକୃତରେ ଏମାନଙ୍କ ମଧ୍ୟରୁ ଅଧିକାଂଶ ଲୋକଙ୍କର ଜ୍ଞାନ ନାହିଁ । ୧୦୨. ସେମାନଙ୍କୁ କୁହ ଯେ ପବିତ୍ର ଆତ୍ମା ଜିବ୍ରାଇଲ ଏହାକୁ ତୁମ ଈଶ୍ୱରଙ୍କ ପାଖରୁ ଏକ ଉଚିତ ଲକ୍ଷ୍ୟରେ ନେଇ ଆସିଛନ୍ତି ଯେପରିକି ଏହା ସଦବିଶ୍ୱାସୀମାନଙ୍କ ବିଶ୍ୱାସକୁ ଦୃଢ଼ କରିବ, ଆଜ୍ଞାକାରୀମାନଙ୍କୁ ଠିକ୍ ବାଟ ଦେଖାଇବ ଏବଂ ସେମାନଙ୍କୁ (ସ୍ୱର୍ଗର) ଶୁଭବାର୍ତ୍ତା ଦେବ ।

୧୦୩. ଆମ୍ଭେ ଜାଣୁ ସେମାନେ କହୁଛନ୍ତି ଯେ ତୁମକୁ ଜଣେ ବ୍ୟକ୍ତି ଶିଖାଇ ଦେଉଛି, ଅଥଚ ଯେଉଁ ବ୍ୟକ୍ତି ବିଷୟରେ ସେମାନେ ଏହା କହୁଛନ୍ତି ତା'ର ଭାଷା ଅଣ-

ଆରବୀ ଏବଂ କୁରଆନର ଭାଷା ପରିଷ୍କାର ଆରବୀ । ୧୦୪. ଯେଉଁମାନେ ଅଲ୍ଲାହ୍‌ଙ୍କ ବାଣୀକୁ ମାନନ୍ତି ନାହିଁ, ଅଲ୍ଲାହ୍ ମଧ୍ୟ ସେମାନଙ୍କୁ ଆଦୌ ଠିକ୍ ବାଟକୁ ଆଣନ୍ତିନାହିଁ ଏବଂ ସେମାନେ କଠୋର ଶାସ୍ତି ଭୋଗିବେ । ୧୦୫. (ଈଶ୍ୱରଦୂତ ମିଥ୍ୟା ଗଢ଼ି ନାହାନ୍ତି, ବରଂ) ମିଥ୍ୟା ସେଇମାନେ ଗଢୁଛନ୍ତି, ଯେଉଁମାନେ ଅଲ୍ଲାହ୍‌ଙ୍କ ବାଣୀକୁ ବିଶ୍ୱାସ କରୁନାହାନ୍ତି । ସେହି ଲୋକମାନେ ମିଥ୍ୟାବାଦୀ ।

୧୦୬. ଯିଏ ଅଲ୍ଲାହ୍‌ଙ୍କଠାରେ ଆସ୍ଥା ରଖିବା ପରେ ପୁଣି ନାସ୍ତିକ ହୋଇଯାଏ ଏବଂ ନିଜ ଇଚ୍ଛାରେ ଅଧର୍ମକୁ ଗ୍ରହଣ କରିନିଏ, ସେ ଅଲ୍ଲାହ୍‌ଙ୍କ କୋପର ଶିକାର ହେବ ଏବଂ ଏଭଳି ଲୋକମାନଙ୍କୁ ଭୟଙ୍କର ଶାସ୍ତି ମିଳିବ ମାତ୍ର ଯଦି ଏଥିପାଇଁ କାହାରିକୁ ବାଧ୍ୟ କରା ଯାଇଥାଏ କିନ୍ତୁ ତା' ମନ ନିଜ ଆସ୍ଥାରେ ସନ୍ତୁଷ୍ଟ ଥାଏ ତେବେ ତା' କଥା ଭିନ୍ନ । ୧୦୭. କାରଣ ସେମାନେ ପାର୍ଥିବ ଜୀବନକୁ ପରଲୋକ ତୁଳନାରେ ଅଧିକ ପସନ୍ଦ କଲେ । ଯେଉଁମାନେ ସତ୍ୟକୁ ମାନନ୍ତିନାହିଁ, ଅଲ୍ଲାହ୍ ସେମାନଙ୍କର ମାର୍ଗଦର୍ଶନ କରନ୍ତିନାହିଁ । ୧୦୮. ଅଲ୍ଲାହ୍ ସେମାନଙ୍କର ଦେଖିବା, ଶୁଣିବା ଏବଂ ବୁଝିବା ଶକ୍ତି ଛିନ୍ନ କରି ନେଇଛନ୍ତି । ତେଣୁ ଏହି ଲୋକମାନେ ଗୁରୁତ୍ୱ ଦେଉନାହାନ୍ତି । ୧୦୯. ଏଥିରେ କୌଣସି ସନ୍ଦେହ ନାହିଁ ଯେ ସେମାନେ ପରଲୋକରେ କ୍ଷତିଗ୍ରସ୍ତ ହେବେ । ୧୧୦. କିନ୍ତୁ ଯେଉଁମାନେ ଉତ୍ପୀଡ଼ନର ଶିକାର ହେଲେ, ନିଜର ଘରଦ୍ୱାର ଛାଡ଼ିଲେ, (ଅଲ୍ଲାହ୍‌ଙ୍କ ମାର୍ଗରେ) ସଂଘର୍ଷ କଲେ ଏବଂ ଧୈର୍ଯ୍ୟ ଧରି ରହିଲେ, (ସେମାନେ ଜାଣି ରଖନ୍ତୁ ଯେ) ତୁମ ଈଶ୍ୱର ଅତ୍ୟନ୍ତ କ୍ଷମାଶୀଳ ଏବଂ କରୁଣାମୟ । ୧୧୧. ସେଦିନ ପ୍ରତ୍ୟେକ ବ୍ୟକ୍ତି ନିଜ ସପକ୍ଷରେ ଯୁକ୍ତି ବାଢ଼ିବ ଏବଂ ପ୍ରତ୍ୟେକ ବ୍ୟକ୍ତିକୁ ତା' କର୍ମର ସଂପୂର୍ଣ୍ଣ ଫଳ ଦିଆଯିବ ଏବଂ କାହାରି ପ୍ରତି ଅନ୍ୟାୟ ହେବନାହିଁ ।

୧୧୨. ଅଲ୍ଲାହ୍ ଗୋଟିଏ ଗାଁର ଉଦାହରଣ ଦେଉଛନ୍ତି ଯାହାର ବାସିନ୍ଦାମାନେ ସୁଖଶାନ୍ତିରେ ରହୁଥିଲେ । ସେମାନଙ୍କୁ ଚାରିଆଡୁ ପ୍ରଚୁର ଆହାର ମିଳୁଥିଲା କିନ୍ତୁ ସେମାନେ ଅଲ୍ଲାହ୍‌ଙ୍କ ଉପକାର ମାନିଲେନାହିଁ । ତେଣୁ ସେମାନଙ୍କ କର୍ମ ଯୋଗୁଁ ଅଲ୍ଲାହ୍ (ଦୁର୍ଭିକ୍ଷ ଦ୍ୱାରା) ସେମାନଙ୍କୁ କ୍ଷୁଧା ଓ ଭୟର ମଜା ଚଖାଇଥିଲେ । ୧୧୩. ସେମାନଙ୍କ ପାଖକୁ ସେହିମାନଙ୍କ (ସଂପ୍ରଦାୟ)

ମଧ୍ୟରୁ ଜଣେ ବାର୍ତ୍ତାବହ ଯାଇଥିଲେ କିନ୍ତୁ ସେମାନେ ତାଙ୍କୁ ମିଥ୍ୟାବାଦୀ ବୋଲି କହି ଅସ୍ୱୀକାର କରିଦେଲେ । ତେଣୁ ସେହି ପାପିଷ୍ଠମାନେ ଦୈବୀବିପତ୍ତିର ଶିକାର ହେଲେ ।

୧୧୪. ଅଲ୍ଲାହ୍ ତୁମମାନଙ୍କୁ ଯାହା ଉତ୍ତମ ଏବଂ ବୈଧ ଆହାର ଦେଇଛନ୍ତି, ତାହା ଖାଅ ଏବଂ ଅଲ୍ଲାହଙ୍କ ଉପକାର ପାଇଁ ତାଙ୍କ ପ୍ରତି କୃତଜ୍ଞ ହୁଅ ଯଦି ପ୍ରକୃତରେ ତୁମେମାନେ ତାଙ୍କରି ଉପାସକ । ୧୧୫. ସେ ତୁମମାନଙ୍କ ପାଇଁ ମୃତ ପ୍ରାଣୀର ମାଂସ, ରକ୍ତ ଓ ଘୁସୁରୀ ମାଂସ ଖାଦ୍ୟ ନିଷିଦ୍ଧ କରିଛନ୍ତି ଏବଂ ତାହା ମଧ୍ୟ (ନିଷିଦ୍ଧ କରିଛନ୍ତି) ଯାହାକୁ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ପାଇଁ ଉତ୍ସର୍ଗ କରା ଯାଇଥାଏ । ଯଦି କେହି ନିଜର ଅନିଚ୍ଛା ସତ୍ତ୍ୱେ ନିରୁପାୟ ହୋଇ (ଏପରି ଖାଦ୍ୟ) ଖାଇବାକୁ ବାଧ୍ୟ ହୁଏ ଏବଂ (ନିଜ ଆବଶ୍ୟକତାର) ସୀମା ଲଂଘନ ନକରେ, ତେବେ ଅଲ୍ଲାହ୍ ଅବଶ୍ୟ କ୍ଷମାଶୀଳ ଓ କରୁଣାମୟ । ୧୧୬. ତୁମେମାନେ (କୌଣସି ବିଷୟରେ) ଯାହା ମୁହଁକୁ ଆସିଲା ସତମିଛ କରି କହିଦିଅନା ଯେ ଏହା ବୈଧ ଏବଂ ତାହା ଅବୈଧ କାରଣ ଏହାଦ୍ୱାରା ତୁମେମାନେ ଅଲ୍ଲାହଙ୍କ ପ୍ରତି ମିଥ୍ୟା ଆରୋପ କରିବ । ଅଲ୍ଲାହଙ୍କ ନାମରେ ମିଥ୍ୟା ଗଢୁଥିବା ଲୋକମାନଙ୍କର କଦାପି ମଙ୍ଗଳ ହେବନାହିଁ । ୧୧୭. (ଏହି ମିଥ୍ୟା ଦ୍ୱାରା) ସାମାନ୍ୟ ଫାଇଦା ହୁଏ କିନ୍ତୁ ଏଥିପାଇଁ ସେମାନଙ୍କୁ କଠୋର ଶାସ୍ତି ଭୋଗିବାକୁ ହେବ ।

୧୧୮. ଆମ୍ଭେ ଇହୁଦୀମାନଙ୍କ ପାଇଁ ଯାହାସବୁ ନିଷିଦ୍ଧ କରିଥିଲୁ ତାହା ତୁମକୁ ପୂର୍ବରୁ ଶୁଣାଇ ସାରିଛୁ । ଆମ୍ଭେ ସେମାନଙ୍କ ପ୍ରତି କୌଣସି ଅନ୍ୟାୟ କରିନାହୁଁ ବରଂ ସେମାନେ ନିଜ ପ୍ରତି ଅନ୍ୟାୟ କରିଥିଲେ । ୧୧୯. ଯେଉଁମାନେ ଅଜ୍ଞାନତାବଶତଃ କୌଣସି କୁକର୍ମ କରି ବସନ୍ତି ଏବଂ ତା'ପରେ ଅନୁତାପ କରି ନିଜକୁ ସୁଧାରି ନିଅନ୍ତି, ତେବେ (ସେମାନେ ଜାଣିରଖନ୍ତୁ ଯେ) ଈଶ୍ୱର ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ । ୧୨୦. ବାସ୍ତବରେ ଇବ୍ରାହିମ ଅଲ୍ଲାହଙ୍କର ଜଣେ ଆଜ୍ଞାଧୀନ ଏବଂ ଏକେଶ୍ୱରବାଦୀ ଭକ୍ତ ଥିଲେ ଏବଂ ଜଣେ ଆଦର୍ଶ ଜନନାୟକ ଥିଲେ । ସେ ବହୁଈଶ୍ୱରବାଦୀ ନଥିଲେ । ୧୨୧. ସେ ଅଲ୍ଲାହଙ୍କ ଅନୁଗ୍ରହ ଯୋଗୁଁ ତାଙ୍କ ପ୍ରତି କୃତଜ୍ଞ ଥିଲେ । ଅଲ୍ଲାହ୍ ତାଙ୍କୁ ମନୋନିତ କରିଥିଲେ ଏବଂ ସତମାର୍ଗରେ

ପରିଚାଳିତ କରିଥିଲେ । ୧୨୨. ଆମ୍ଭେ ଇହଲୋକରେ ତାଙ୍କର ମଂଗଳ କରିଥିଲୁ ଏବଂ ପରଲୋକରେ ମଧ୍ୟ ସେ ପୁଣ୍ୟବାନ ଲୋକମାନଙ୍କ ସହିତ ରହିବେ । ୧୨୩. ପୁଣି ତୁମକୁ ମଧ୍ୟ ଆମ୍ଭେ ଦୈବବାଣୀ କଲୁ ଯେ ଇବ୍ରାହିମଙ୍କ ପନ୍ଥା ଅବଲମ୍ବନ କର ଯିଏ (ସ୍ୱଭାବ ଅନୁଯାୟୀ) ଜଣେ ବିଶୁଦ୍ଧ ଏକେଶ୍ୱରବାଦୀ ଥିଲେ ମାତ୍ର ବହୁଇଶ୍ୱରବାଦୀ ନଥିଲେ । ୧୨୪. ଶନିବାର ଦିନ ସଂପର୍କୀୟ ଆଦେଶ କେବଳ ସେହିମାନଙ୍କୁ ଦିଆ ଯାଇଥିଲା ଯେଉଁମାନେ ସେଥିରେ ମତଭେଦ କରିଥିଲେ । ଯେଉଁ ବିଷୟରେ ସେମାନେ ମତଭେଦ କରୁଥିଲେ, ବିଚାର ଦିନ ତୁମ ପ୍ରଭୁ ଅବଶ୍ୟ ତାହାର ନିଷ୍ପତ୍ତି କରିଦେବେ ।

୧୨୫. ଭଲ ଉପଦେଶ ଦେଇ (ଲୋକମାନଙ୍କୁ) ବିଜ୍ଞତାର ସହିତ ଈଶ୍ୱରଙ୍କ ମାର୍ଗକୁ ଡାକ ଏବଂ ସେମାନଙ୍କ ସହିତ ଭଲ ଭାବରେ ଆଲୋଚନା କର । ତୁମ ଈଶ୍ୱର ଜାଣନ୍ତି ଯେ କିଏ ତାଙ୍କ ବାଟରୁ ଦୂରେଇ ଯାଇଛି ଏବଂ କିଏ ତାଙ୍କ ବାଟରେ ରହିଛି ।

୧୨୬. ଯଦି ତୁମେମାନେ (ଅତ୍ୟାଚାରର ପ୍ରତିବଦଳ ସ୍ୱରୂପ) କାହାରିକୁ ଶାସ୍ତି ଦେବାକୁ ଚାହଁ ତେବେ ସେତିକି ମାତ୍ରାରେ ଦିଅ ଯେତିକି ମାତ୍ରାରେ ଅତ୍ୟାଚାର ତୁମ ଉପରେ କରାଯାଇଛି । କିନ୍ତୁ ଯଦି ତୁମେମାନେ ସହିଯାଅ, ତେବେ ସହନଶୀଳ ଲୋକମାନଙ୍କ ପକ୍ଷରେ (ଏହାର ପରିଣାମ) ଖୁବ ଭଲ ହେବ । ୧୨୭. (ହେ ବାର୍ତ୍ତାବହ !) ସହନଶୀଳ ହୁଅ କିନ୍ତୁ ଅଲ୍ଲାହଙ୍କ ସହାୟତା ବିନା ତୁମେ ସହନଶୀଳ ହୋଇ ପାରିବନାହିଁ । ସେମାନଙ୍କ ପାଇଁ ଦୁଃଖ କରନାହିଁ କିମ୍ବା ସେମାନଙ୍କ ଚକ୍ରାନ୍ତ ଯୋଗୁଁ ମନ କଷ୍ଟ କରନାହିଁ । ୧୨୮. (ଜାଣିରଖ) ଅଲ୍ଲାହ୍ ସେହିମାନଙ୍କ ସହିତ ଥାଆନ୍ତି ଯେଉଁମାନେ ସଦାଚାରୀ ଏବଂ ପରୋପକାରୀ ।

## ଅଧ୍ୟାୟ ୧୭, ବନି ଇସ୍ରାଇଲ୍
## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ପରମ ପବିତ୍ର ସେହି ସତ୍ତା ଯିଏ ତାଙ୍କ ଭକ୍ତଙ୍କୁ ନିଜର କିଛି ନିଦର୍ଶନ ଦେଖାଇବା ପାଇଁ ରାତାରାତି ପବିତ୍ର (କାବା) ମସଜିଦରୁ ସୁଦୂର (ଜେରୁଜେଲମର) ଅକ୍‌ସା ମସଜିଦ ପର୍ଯ୍ୟନ୍ତ ନେଇଗଲେ, ଯାହାର ଆଖପାଖ ଅଂଚଳ ପ୍ରତି ଆମ୍ଭର ଶୁଭାଶିଷ ରହିଛି । ସେ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି ।

୨. ଆମ୍ଭେ ମୁ'ସାଙ୍କୁ ଦିବ୍ୟଗ୍ରନ୍ଥ ଦେଇଥିଲୁ ଯାହା ଇସରାଇଲଙ୍କ ବଂଶଧରମାନଙ୍କର ମାର୍ଗଦର୍ଶନ ପାଇଁ ଉଦ୍ଦିଷ୍ଟ ଥିଲା (ଏବଂ ଆଜ୍ଞା ଦେଇଥିଲୁ) ଯେ ଆମ୍ଭ ବ୍ୟତୀତ ଅନ୍ୟ କାହାରିକୁ ଆଶ୍ରୟଦାତା ରୂପେ ଗ୍ରହଣ କରିବନାହିଁ । ୩. ତୁମେମାନେ ସେମାନଙ୍କର ବଂଶଧର ଯେଉଁମାନଙ୍କୁ ଆମ୍ଭେ ନୁହଙ୍କ ସହିତ (ନୌକାରେ) ବସାଇଥିଲୁ । ସେ ଆମ୍ଭର ଜଣେ କୃତଜ୍ଞ ସେବକ ଥିଲେ । ୪. ଇସ୍ରାଇଲଙ୍କ ବଂଶଜମାନଙ୍କୁ ଆମ୍ଭେ ଗ୍ରନ୍ଥ ମାଧ୍ୟମରେ ସାବଧାନ କରି କହିଥିଲୁ, "ତୁମେମାନେ ଭୂପୃଷ୍ଠରେ ଦୁଇଥର ଘୋର ବିଶୃଂଖଳା କରିବ ଏବଂ ଭୀଷଣ ଉପଦ୍ରବ କରିବ । ୫. ତେଣୁ ଯେତେବେଳେ ପ୍ରଥମ ଘଟଣାଟିର ସମୟ ଆସିଲା, ଆମ୍ଭେ ତୁମମାନଙ୍କ ବିରୁଦ୍ଧରେ ଆମ୍ଭର ଏଭଳି ଦାସମାନଙ୍କୁ ପଠାଇଥିଲୁ ଯେଉଁମାନେ ବୀର ଯୋଦ୍ଧା ଥିଲେ । ସେମାନେ ତୁମ ସହର ଭିତରକୁ ମାଡ଼ିଗଲେ ଏବଂ ଆମ୍ଭର ବଚନ ସତ ପ୍ରମାଣିତ ହେଲା । ୬. ଏହାପରେ ପୁଣି ଆମ୍ଭେ ତୁମମାନଙ୍କୁ ସେମାନଙ୍କ ଉପରେ ବିଜୟୀ ହେବାର ସୁଯୋଗ ଦେଲୁ, ଧନସମ୍ପତ୍ତି ଓ ସନ୍ତାନସନ୍ତତି ଦେଇ ତୁମମାନଙ୍କର ସହାୟତା କଲୁ ଏବଂ ତୁମମାନଙ୍କର ଲୋକବଳ ବୃଦ୍ଧି କଲୁ । ୭. (ଆମ୍ଭେ କହିଥିଲୁ) "ଯଦି ତୁମେମାନେ ଭଲ କର୍ମ କରିବ ତେବେ ନିଜର ମଂଗଳ ପାଇଁ କରିବ ଏବଂ ଯଦି ମନ୍ଦ କର୍ମ କରିବ, ତାହା ମଧ୍ୟ ନିଜ ପାଇଁ କରିବ ।" ପୁଣି ଯେତେବେଳେ ଦ୍ୱିତୀୟ ଘଟଣାର ସମୟ ଆସିଲା, ଆମ୍ଭେ ତୁମମାନଙ୍କ ବିରୁଦ୍ଧରେ (ତୁମର ଅନ୍ୟ ଶତ୍ରୁମାନଙ୍କୁ ଠିଆ କଲୁ) ଯେପରିକି ସେମାନେ (ମାଡ଼ ମାରି) ତୁମମାନଙ୍କ ମୁହଁକୁ ବିକୃତ କରନ୍ତୁ ଏବଂ ପୂର୍ବ ଥର ପରି ପୁଣି (ଜେରୁଜେଲମର) ମସଜିଦ ଭିତରେ ପଶି ଯାହକିଛି ସେମାନଙ୍କ ହାବୁଡ଼ରେ ପଡ଼ିବ ତାକୁ ଧ୍ୱସ୍ତ-ବିଧ୍ୱସ୍ତ

କରିଦିଅନ୍ତୁ । ୮. (ପୁଣି ଆମ୍ଭେ କହିଲୁ) ହୁଏତ ତୁମ ପାଳନକର୍ତ୍ତା ତୁମମାନଙ୍କ ପ୍ରତି ଦୟା କରିପାରନ୍ତି କିନ୍ତୁ ଯଦି ତୁମେମାନେ ପୁନରାୟ ସେମିତି କରିବ, ତେବେ ଆମ୍ଭେ ମଧ୍ୟ ପୁଣି ସେହି ନୀତି ଧରିବୁ ଏବଂ ଆମ୍ଭେ ଅଧର୍ମୀମାନଙ୍କ ପାଇଁ ନର୍କର କାରାଗାର (ମଧ୍ୟ) ପ୍ରସ୍ତୁତ କରି ରଖିଛୁ ।

୯. ବାସ୍ତବରେ ଏହି କୁରଆନ ଏଭଳି ବାଟ ଦେଖାଏ ଯାହା ସଂପୂର୍ଣ୍ଣ ସଳଖ ଏବଂ ଯେଉଁମାନେ ଏହାକୁ ବିଶ୍ୱାସ କରନ୍ତି ଏବଂ ଭଲ କର୍ମ କରନ୍ତି, ସେମାନଙ୍କୁ ଶୁଭଖବର ଦିଏ ଯେ ସେମାନଙ୍କ ପାଇଁ (ପରଲୋକରେ) ଖୁବ୍ ଭଲ ପୁରସ୍କାର ରହିଛି । ୧୦. ଏବଂ ଏହା ମଧ୍ୟ (ଜଣାଇଦିଏ) ଯେ ଯେଉଁମାନେ ପରଲୋକରେ ବିଶ୍ୱାସ କରନ୍ତିନାହିଁ, ସେମାନଙ୍କ ପାଇଁ ଆମ୍ଭେ ଭୟଙ୍କର ଶାସ୍ତି ପ୍ରସ୍ତୁତ କରି ରଖିଛୁ ।

୧୧. ମଣିଷ ନିଜର ଅମଙ୍ଗଳ ପାଇଁ ସେହିପରି ପ୍ରାର୍ଥନା କରେ ଯେପରି ମଙ୍ଗଳ ପାଇଁ ପ୍ରାର୍ଥନା କରିବା ଉଚିତ । ମଣିଷ ଭାରି ଚଂଚଳମନା ।

୧୨. ଆମ୍ଭେ ରାତି ଓ ଦିନକୁ ଦୁଇଟି ନିଦର୍ଶନ ରୂପେ ସୃଷ୍ଟି କରିଛୁ । ରାତିକୁ ଆମ୍ଭେ ଅନ୍ଧାର କଲୁ ଏବଂ ଦିନକୁ ଆଲୋକିତ କଲୁ, ଯେପରିକି ତୁମେମାନେ ତୁମ ପାଳନକର୍ତ୍ତାଙ୍କ କୃପାର (ଅର୍ଥାତ୍ ଜୀବିକାର) ସନ୍ଧାନ କରିପାରିବ ଏବଂ ବର୍ଷର (ଓ ମାସର) ଗଣନା କରିପାରିବ । ଆମ୍ଭେ ପ୍ରତ୍ୟେକ କଥାକୁ ବିଶଦ ଭାବରେ ବର୍ଣ୍ଣନା କରିଛୁ ।

୧୩. ଆମ୍ଭେ ପ୍ରତ୍ୟେକ ବ୍ୟକ୍ତିର କର୍ମପଞ୍ଜିକାକୁ ତା’ ବେକରେ ବାନ୍ଧିଦେଇଛୁ ଏବଂ ବିଚାର ଦିନ ସେହି କର୍ମପଞ୍ଜିକା ବହାର କରି ତା’ ସାମନାରେ ଖୋଲିଦେବୁ ଯାହାକୁ ସେ ପରିଷ୍କାର ଭାବରେ ଦେଖିପାରିବ । ୧୪. (ତାକୁ କୁହାଯିବ) “ନିଜର କର୍ମପଞ୍ଜିକା ତୁ ନିଜେ ପଢ଼ । ଆଜି ତୁ ନିଜେ ନିଜର ହିସାବ କରିବା ପାଇଁ ଯଥେଷ୍ଟ ।”

୧୫. ଯିଏ ସତପଥରେ ଯାଏ, ସେ ତା’ ନିଜର ମଂଗଳ କରେ ଏବଂ ଯିଏ ଅସତ୍ ପଥରେ ଯାଏ, ତା’ ପରିଣାମ ମଧ୍ୟ ସେ ହିଁ ଭୋଗିବ । କେହି କାହାରି

ବୋଝ ମୁଣ୍ଡାଇବେ ନାହିଁ । ଆମ୍ଭେ ଯେପର୍ଯ୍ୟନ୍ତ (ସାବଧାନ କରିବାକୁ) କୌଣସି ବାର୍ତ୍ତାବହଙ୍କୁ ନପଠାଇଛୁ ସେପର୍ଯ୍ୟନ୍ତ କାହାରିକୁ ଶାସ୍ତି ଦେଉନା ।

୧୬. ଯେତେବେଳେ ଆମ୍ଭେ କୌଣସି ଜନବସତିକୁ ଧ୍ୱଂସ କରିବାକୁ ସ୍ଥିର କରୁ, ସେଠାରେ ସୁଖରେ ରହୁଥିବା ବାସିନ୍ଦାମାନଙ୍କୁ (ବାର୍ତ୍ତାବହଙ୍କ ମାଧ୍ୟମରେ) ନିଜର ଆଦେଶ ଦେଇଥାଉ । ଏହାପରେ ସେମାନେ ଏହାର ଅବମାନନା କରନ୍ତି ଯାହାଫଳରେ ସେମାନଙ୍କ ପ୍ରତି ଶାସ୍ତିର ଯଥାର୍ଥତା ପ୍ରମାଣିତ ହୋଇଯାଏ । ପୁଣି ଆମ୍ଭେ ସେହି ଜନବସତିକୁ ଧ୍ୱଂସ କରିଦେଉ । ୧୭. ନୁହଙ୍କ ପରେ ଆମ୍ଭେ ଅନେକ ବଂଶ ଧ୍ୱଂସ କରିଦେଇଛୁ । ତୁମ ପ୍ରଭୁ ନିଜ ଦାସମାନଙ୍କର ପାପ ବିଷୟରେ ଭଲରୂପେ ଜାଣନ୍ତି ଏବଂ ସେ ସବୁ ଦେଖୁଛନ୍ତି ।

୧୮. ଯଦି କେହି (ସଂସାରର) କ୍ଷଣସ୍ଥାୟୀ ସୁଖ ଚାହେଁ, ଆମ୍ଭେ ତାକୁ ଯେତିକି ଚାହୁଁ ଅବିଳମ୍ବେ ଦେଇଦେଉ କିନ୍ତୁ ତା'ପାଇଁ ଆମ୍ଭେ ନର୍କ ପ୍ରସ୍ତୁତ କରି ରଖିଛୁ ଯାହା ମଧ୍ୟରେ ସେ ଲାଂଛିତ ଓ ତିରସ୍କୃତ ହୋଇ ପ୍ରବେଶ କରିବ । ୧୯. ଏବଂ ଯିଏ ପରଲୋକର ସୁଖ ଚାହେଁ ଏବଂ ସେଥିପାଇଁ ଯଥାସାଧ୍ୟ ପ୍ରୟାସ ମଧ୍ୟ କରୁଥାଏ ଏବଂ ଆସ୍ଥା ରଖିଥାଏ, ଏଭଳି ଲୋକମାନଙ୍କର ପ୍ରୟାସ ଅବଶ୍ୟ ପ୍ରସଂଶନୀୟ । ୨୦. ସାଂସାରର ଭୋଗ୍ୟବସ୍ତୁ ତ ଆମ୍ଭେ ସେମାନଙ୍କୁ ମଧ୍ୟ ଦେଉ ଏବଂ ଏମାନଙ୍କୁ ମଧ୍ୟ ଦେଉ । ତୁମ ପାଳନକର୍ତ୍ତାଙ୍କ କୃପାରୁ କେହି ବଂଚିତ ନୁହନ୍ତି । ୨୧. ଦେଖ, ଆମ୍ଭେ (ସଂସାରରେ ମଧ୍ୟ) କିପରି ଜଣକଠାରୁ ଆଉ ଜଣକୁ ଆଗରେ ରଖିଛୁ । ପରଲୋକ (ସଂସାର ତୁଳନାରେ) ମର୍ଯ୍ୟାଦା ଦୃଷ୍ଟିରୁ ଢ଼େର ଭଲ ଏବଂ ମହତ୍ୱ ଦୃଷ୍ଟିରୁ ମଧ୍ୟ ଢ଼େର ଭଲ ।

୨୨. ଅଲ୍ଲାହଙ୍କ ସହିତ ଅନ୍ୟ କାହାରିକୁ ଉପାସ୍ୟ କରନାହିଁ ଅନ୍ୟଥା ତୁମେ ଅପମାନିତ ହେବ ଏବଂ ଅସହାୟ ହୋଇ ପଡ଼ି ରହିଥିବ ।

୨୩. ତୁମ ଈଶ୍ୱର ଆଦେଶ ଦେଇଛନ୍ତି ଯେ ତାଙ୍କ ବ୍ୟତୀତ ଅନ୍ୟ କାହାରି ଉପାସନା କରନାହିଁ ଏବଂ ପିତାମାତାଙ୍କର ଭଲରୂପେ ସେବା କର । ଯଦି ତୁମ ଜୀବନକାଳରେ ସେମାନଙ୍କ ମଧ୍ୟରୁ କେହି ଜଣେ ବା ଉଭୟ ବୃଦ୍ଧାବସ୍ଥାରେ ପହଁଚି ଯାଆନ୍ତି, ତେବେ ସେମାନଙ୍କୁ (ବିରକ୍ତି ପ୍ରକାଶ କରି) "ଓଃ" ସୁଦ୍ଧା କୁହନାହିଁ କିମ୍ବା

ସେମାନଙ୍କୁ କୌଣସି ପ୍ରକାରର ଦୁର୍ବ୍ୟବହାର କରନାହିଁ । ସେମାନଙ୍କ ସହିତ ଆଦରପୂର୍ବକ କଥାବାର୍ତ୍ତା କର । ୨୪. ଦୟା ଓ ବିନୟ ପୂର୍ବକ ସେମାନଙ୍କ ଆଗରେ ନଇଁ ରୁହ ଏବଂ ସେମାନଙ୍କ ପାଇଁ ପ୍ରାର୍ଥନା କରୁଥାଅ ଯେ ପ୍ରଭୁ ! ଯେମିତି ସେମାନେ ପିଲାବେଳେ (ସ୍ନେହ ମମତା ଦେଇ) ମୋର ଲାଳନପାଳନ କରିଛନ୍ତି, ତୁମେ ମଧ୍ୟ ସେମିତି ସେମାନଙ୍କ ପ୍ରତି ଦୟା କର ।" ୨୫. ତୁମମାନଙ୍କ ମନରେ ଯାହା ଥାଏ ତୁମ ଈଶ୍ୱର ଜାଣନ୍ତି । ଯଦି ତୁମେମାନେ ସଦାଚାରୀ ହୁଅ, ତେବେ (ଜାଣିରଖ ଯେ) ସେ ପଶ୍ଚାତାପ କରୁଥିବା ଲୋକମାନଙ୍କର ଦୋଷ କ୍ଷମା କରିଦିଅନ୍ତି ।

୨୬. ଆତ୍ମୀୟସ୍ୱଜନମାନଙ୍କୁ ସେମାନଙ୍କର ପ୍ରାପ୍ୟ ଦେଉଥାଅ ଏବଂ ଗରିବ ଓ (ଅସହାୟ) ପଥିକମାନଙ୍କୁ ମଧ୍ୟ ସେମାନଙ୍କର ପ୍ରାପ୍ୟ ଦିଅ ଏବଂ ଅପବ୍ୟୟ କରନାହିଁ । ୨୭. ପ୍ରକୃତରେ ଅପବ୍ୟୟ କରୁଥିବା ଲୋକମାନେ ଶଇତାନର ଭାଇ ଏବଂ ଶଇତାନ ନିଜ ପ୍ରଭୁଙ୍କ ପ୍ରତି ଭାରି କୃତଘ୍ନ । ୨୮. ଯଦି ତୁମମାନଙ୍କ ପକ୍ଷରେ ସେମାନଙ୍କୁ କିଛି ଦେବା ସମ୍ଭବ ନହୁଏ ଏବଂ ଅଲ୍ଲାହଙ୍କ କୃପାର ଅପେକ୍ଷାରେ ଥିବା ଯୋଗୁଁ ସେମାନଙ୍କୁ ମନା କରିବାକୁ ପଡ଼େ, ତେବେ (ଦି'ପଦ) କୋମଳ କଥା କହି ସେମାନଙ୍କୁ ବୁଝାଇଦିଅ ।

୨୯. (କୃପଣ ପରି) ହାତ ବାନ୍ଧି ବସିଯାଅ ନାହିଁ କିମ୍ବା ପୂରାପୁରି ହାତ ଖୋଲିଦିଅ ନାହିଁ, ଅନ୍ୟଥା ତୁମେ (କୃପଣତା ଯୋଗୁଁ) ନିନ୍ଦା-ଭର୍ତ୍ସନା ଶୁଣିବ କିମ୍ବା (ସବୁକିଛି ହରାଇ) ଅନୁଶୋଚନା କରିବ । ୩୦. ତୁମ ପାଳନକର୍ତ୍ତା ଯାହାକୁ ଚାହାନ୍ତି ପ୍ରଚୁର ସାଂସାରିକ ସାଧନ ଦିଅନ୍ତି ଏବଂ ଯାହାକୁ ଚାହାନ୍ତି, ମାପିଚୁପି ଦିଅନ୍ତି । ସେ ନିଜ ଦାସମାନଙ୍କର ଅବସ୍ଥା ଜାଣନ୍ତି ଏବଂ ସେମାନଙ୍କ ଉପରେ ନଜର ରଖିଥାଆନ୍ତି । ୩୧. ଗରିବ ହୋଇଯିବା ଭୟରେ ନିଜର ସନ୍ତାନମାନଙ୍କୁ ହତ୍ୟା କରିଦିଅ ନାହିଁ । ଆମ୍ଭେ ସେମାନଙ୍କୁ ଆହାର ଦେଉ ଏବଂ ତୁମମାନଙ୍କୁ ମଧ୍ୟ ଦେଉ । ସେମାନଙ୍କୁ ହତ୍ୟା କରିବା ଅବଶ୍ୟ ମହାପାପ । ୩୨. ବ୍ୟଭିଚାରର ପାଖ ମାଡ଼ନାହିଁ । ଏହା ଏକ ଚରମ ନିର୍ଲଜତା ଏବଂ ଅତି ହୀନ ପନ୍ଥା । ୩୩. ଅଲ୍ଲାହ୍ ଯାହାର ହତ୍ୟା ନିଷିଦ୍ଧ କରିଛନ୍ତି ତାକୁ ଅନ୍ୟାୟରେ ହତ୍ୟା କରନାହିଁ । ଯେଉଁ ବ୍ୟକ୍ତିକୁ ଅନ୍ୟାୟରେ ହତ୍ୟା କରାଯାଏ, ଆମ୍ଭେ ତା' ଉତ୍ତରାଧିକାରୀକୁ (ପ୍ରତିଶୋଧ ନେବାର ବା କ୍ଷମା

କରିଦେବାର) ଅଧିକାର ଦେଇଛୁ କିନ୍ତୁ ସେ (ଅପରାଧୀର) ପ୍ରାଣ ନେବାରେ ସୀମା ଲଂଘନ ନକରୁ । (ଆଇନ୍ ଦ୍ୱାରା) ତାକୁ ସାହାଯ୍ୟ କରାଯିବ ।

୩୪. ଅନାଥ ପିଲାମାନେ ପ୍ରାପ୍ତବୟସ୍କ ନହେବା ପର୍ଯ୍ୟନ୍ତ ଯଥାର୍ଥ କାରଣ ବିନା ସେମାନଙ୍କ ଧନସଂପତ୍ତିରେ ହାତ ଦିଅନାହିଁ ଏବଂ ନିଜର ପ୍ରତିଶ୍ରୁତି ପାଳନ କର । ତୁମମାନଙ୍କୁ ପ୍ରତିଶ୍ରୁତି ବିଷୟରେ ନିଶ୍ଚୟ ପ୍ରଶ୍ନ କରାଯିବ । ୩୫. ଯଦି ମାପ ଅନୁସାରେ କାହାରିକୁ କିଛି ଦିଅ, ତେବେ ଭଲରୂପେ ମାପ କରି ଦିଅ ଏବଂ (ଯଦି ଓଜନରେ ଦିଅ, ତେବେ) ଠିକ୍ ନିକିତିରେ ଓଜନ କର । ଏହା ଭଲ ପନ୍ଥା ଏବଂ ଏହାର ପରିଣାମ ମଧ୍ୟ ଖୁବ ଭଲ ।

୩୬. ଯେଉଁ ବିଷୟରେ ତୁମର ସଠିକ୍ ଜ୍ଞାନ ନାହିଁ, (କେବଳ ଅନୁମାନ କରି) ସେ ବିଷୟରେ କିଛି କରନାହିଁ, କାରଣ ଆଖି, କାନ ଓ ମନର କାର୍ଯ୍ୟକଳାପ ବିଷୟରେ ପ୍ରତ୍ୟେକ ବ୍ୟକ୍ତିକୁ ପ୍ରଶ୍ନ କରାଯିବ । ୩୭. ଧରିତ୍ରୀ ବକ୍ଷରେ ଦାମ୍ଭିକତାର ସହିତ ଚାଲନାହିଁ । ତୁମେ ଧରିତ୍ରୀକୁ ଫଟାଇ ପାରିବନାହିଁ ବା ପାହାଡ଼ର ଉଚ୍ଚତାକୁ ଛୁଇଁ ପାରିବନାହିଁ । ୩୮. ଏହି କୁକର୍ମଗୁଡ଼ିକ ତୁମ ଈଶ୍ୱରଙ୍କୁ ଆଦୌ ପସନ୍ଦ ନୁହେଁ । ୩୯. (ହେ ବାର୍ତ୍ତାବହ!) ଏହା ସେହି ତତ୍ତ୍ୱଜ୍ଞାନ ଯାହାକୁ ତୁମ ଈଶ୍ୱର ତୁମ ପ୍ରତି ଦୈବବାଣୀ କରିଛନ୍ତି । (ମନେରଖ!) ଅଲ୍ଲାହଙ୍କ ସହିତ ଅନ୍ୟ କାହାରିକୁ ଉପାସ୍ୟ ରୂପେ ଗ୍ରହଣ କରନାହିଁ, ଅନ୍ୟଥା ତୁମକୁ ଅପମାନ ଦେଇ ଏବଂ ତିରସ୍କୃତ କରି ନର୍କରେ ଫିଙ୍ଗି ଦିଆଯିବ ।

୪୦. କ'ଣ ଈଶ୍ୱର ବାଛିବାଛି ତୁମମାନଙ୍କୁ ପୁତ୍ର ସନ୍ତାନ ଦେଇଦେଲେ ଏବଂ ନିଜେ ଦେବଦୂତମାନଙ୍କୁ କନ୍ୟା ରୂପେ ଗ୍ରହଣ କରିନେଲେ ? ପ୍ରକୃତରେ ତୁମେମାନେ ଭାରି ଗୁରୁତର କଥା କହୁଛ । ୪୧. ଆମ୍ଭେ ଏହି କୁରଆନରେ ବିଭିନ୍ନ ଶୈଳୀରେ ବୁଝାଇଛୁ ଯେପରିକି ଲୋକମାନେ ବୁଝନ୍ତୁ ମାତ୍ର ସେମାନେ ଆହୁରି ଦୂରେଇ ଯାଉଛନ୍ତି । ୪୨. କହିଦିଅ, "ଏମାନଙ୍କ କହିବା ଅନୁସାରେ ଯଦି ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ ଈଶ୍ୱରଗଣ ମଧ୍ୟ ଥାଆନ୍ତେ, ତେବେ ସେମାନେ ଦିବ୍ୟସିଂହାସନର ଅଧିକାରୀଙ୍କ ନିକଟରେ ପହଁଚିବାର କୌଣସି ବାଟ ଖୋଜନ୍ତେ ।" ୪୩. ସେ ପରମ ପବିତ୍ର ଏବଂ ଅତି ମହାନ ଏବଂ (ତାଙ୍କ ମହିମା) ସେମାନଙ୍କ ମନଗଢ଼ା କଥାଠାରୁ

ବହୁ ଉର୍ଦ୍ଧ୍ୱରେ । ୪୪. ଧରିତ୍ରୀ ଓ ସପ୍ତାକାଶ ଏବଂ ସେଗୁଡ଼ିକରେ ଥିବା ସକଳ ସୃଷ୍ଟି ତାଙ୍କର ଗୁଣଗାନ କରନ୍ତି ଏବଂ (ବ୍ରହ୍ମାଣ୍ଡରେ) ଏଭଳି କେହି ନାହିଁ ଯିଏ ତାଙ୍କର ସ୍ତୁତି ଓ ଗୁଣଗାନ ନକରେ ମାତ୍ର ତୁମେମାନେ ସେମାନଙ୍କର ଗୁଣଗାନ ବୁଝିପାର ନାହିଁ । ସେ ଅତ୍ୟନ୍ତ ଉଦାର ଏବଂ କ୍ଷମାଶୀଳ ।

୪୫. ଯେତେବେଳେ ତୁମେ କୁରଆନ ପାଠ କର, ଆମ୍ଭେ ତୁମର ଓ ସେହି ଲୋକମାନଙ୍କର ମଝିରେ ଏକ ଅଦୃଶ୍ୟ ପରଦା ପକାଇ ଦେଉ ଯେଉଁମାନେ ପରଲୋକକୁ ବିଶ୍ୱାସ କରନ୍ତିନାହିଁ, ୪୬. ଏବଂ ସେମାନଙ୍କ ହୃଦୟକୁ ଢ଼ାଙ୍କିଦେଉ ଯାହାଫଳରେ ସେମାନେ ତାହାକୁ ବୁଝି ପାରନ୍ତିନାହିଁ ଏବଂ ଆମ୍ଭେ ସେମାନଙ୍କର କାନକୁ ମଧ୍ୟ ବଧିର କରିଦେଉ । ଯେତେବେଳେ ତୁମେ କୁରଆନରେ ଈଶ୍ୱରଙ୍କ ଏକତ୍ୱ ବିଷୟରେ ପାଠ କର, ସେମାନେ ଘୃଣାରେ ମୁହଁ ବୁଲାଇ ଚାଲିଯାଆନ୍ତି । ୪୭. ସେମାନେ ଯେଉଁ ଉଦ୍ଦେଶ୍ୟରେ ତୁମ କଥା କାନ ଡ଼େରି ଶୁଣନ୍ତି ଏବଂ ପରସ୍ପର ମଧ୍ୟରେ ଯାହା ଗୁପ୍ତ ମନ୍ତ୍ରଣା କରନ୍ତି, ଆମ୍ଭେ ଭଲରୂପେ ଜାଣୁ । ଏହି ଦୁରାଚାରୀମାନେ କହନ୍ତି, "ତୁମେମାନେ ଏଭଳି ଜଣେ ଲୋକର କଥା ମାନୁଛ ଯାହାକୁ ଗୁଣି କରି ଦିଆଯାଇଛି ।" ୪୮. ଦେଖ, ସେମାନେ ତୁମ ପାଇଁ କିଭଳି ଉଦାହରଣ ପ୍ରସ୍ତୁତ କରୁଛନ୍ତି । ସେମାନେ ପଥଭ୍ରଷ୍ଟ ହୋଇ ଯାଇଛନ୍ତି ଏବଂ କଦାପି ପଥ ପାଇବେନାହିଁ ।

୪୯. ସେମାନେ କହୁଛନ୍ତି, "କ'ଣ ଆମେ (ମରି ସାରି) ହାଡ଼ ଓ ମାଟି ହୋଇଗଲା ପରେ ମଧ୍ୟ ପୁଣି ନୂଆ ଜୀବନ ପାଇ ଉଠିବୁ ?" ୫୦. ସେମାନଙ୍କୁ କହିଦିଅ, "ତୁମେମାନେ ପଥର ହୋଇଯାଅ ବା ଲୁହା, ୫୧. ବା ଏଭଳି କୌଣସି ବସ୍ତୁ ଯାହା ଏହାଠାରୁ ମଧ୍ୟ ଅଧିକ ଶକ୍ତ ବୋଲି ତୁମେମାନେ ମନେକର, (ତଥାପି ପୁନର୍ଜୀବିତ ହେବ) । ସେମାନେ ପଚାରିବେ, "କିଏ ଆମକୁ ପୁନର୍ଜୀବିତ କରିବ ?" କହିଦିଅ, "ସେଇ କରିବେ ଯିଏ ତୁମମାନଙ୍କୁ ପ୍ରଥମ ଥର ସୃଷ୍ଟି କରିଥିଲେ ।" ଏହା ଶୁଣି ସେମାନେ ତୁମ ଆଗରେ ମୁଣ୍ଡ ଟୁଙ୍ଗାରି ପଚାରିବେ, "ତେବେ ଏହା କେବେ ହେବ ?" ଉତ୍ତର ଦିଅ, "ଖୁବ୍ ସମ୍ଭବ ଏହାର ସମୟ ପାଖେଇ ଆସିଲାଣି । ୫୨. ଯେଉଁଦିନ ସେ ଡାକିବେ, ତୁମେମାନେ ତାଙ୍କର

ସ୍ତୁତିଗାନ କରି ତୁରନ୍ତ ତାଙ୍କ ଆଜ୍ଞା ପାଳନ କରିବ ଏବଂ ତୁମମାନଙ୍କର ମନେ ହେବ ଯେ ତୁମେମାନେ ଖୁବ ଅଳ୍ପ ସମୟ (ସଂସାରରେ) ରହିଥିଲ ।"

୫୩. (ହେ ବାର୍ତ୍ତାବହ!) ମୋ ଭକ୍ତମାନଙ୍କୁ କହିଦିଅ ଯେ ସେମାନେ (ଲୋକମାନଙ୍କ ସହିତ) ଖୁବ୍ ଭଦ୍ର ଭାବରେ କଥାବାର୍ତ୍ତା କରନ୍ତୁ । ପ୍ରକୃତରେ ଶଇତାନ ଲୋକଙ୍କ ମଧ୍ୟରେ ଝଗଡ଼ା ସୃଷ୍ଟି କରିଦିଏ । ଶଇତାନ ତ ମଣିଷର ପରମ ଶତ୍ରୁ । ୫୪. ତୁମ ପାଳନକର୍ତ୍ତା ତୁମମାନଙ୍କୁ ଖୁବ୍ ଭଲ ଭାବରେ ଜାଣନ୍ତି । ଯଦି ସେ ଚାହିଁବେ ତୁମମାନଙ୍କ ପ୍ରତି ଦୟା କରିବେ କିମ୍ବା ଯଦି ଚାହିଁବେ ଦଣ୍ଡ ଦେବେ । ଆମ୍ଭେ ତୁମକୁ ସେମାନଙ୍କୁ ଜଗିବାର ଦାୟିତ୍ୱ ଦେଇ ପଠାଇନାହୁଁ ।

୫୫. ଯେଉଁମାନେ ପୃଥିବୀ ଓ ଆକାଶରେ ଅଛନ୍ତି, ତୁମ ପାଳନକର୍ତ୍ତା ସେମାନଙ୍କୁ ଭଲରୂପେ ଜାଣନ୍ତି । ବାର୍ତ୍ତାବହମାନଙ୍କ ମଧ୍ୟରୁ ଆମ୍ଭେ କେତେଜଣଙ୍କୁ (କେତେକ କ୍ଷେତ୍ରରେ) ଅନ୍ୟମାନଙ୍କ ଅପେକ୍ଷା ଶ୍ରେଷ୍ଠ କରିଛୁ ଏବଂ ଆମ୍ଭେ ଦାଉଦ୍‌ଙ୍କୁ ଜବୁର୍ ଗ୍ରନ୍ଥ ଦେଇଥିଲୁ ।

୫୬. ସେମାନଙ୍କୁ କୁହ, "ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ ଯେଉଁମାନଙ୍କୁ ଈଶ୍ୱର ବୋଲି ମନେକର, ସେମାନଙ୍କୁ ଡ଼ାକି ଦେଖ । ତୁମମାନଙ୍କର ଦୁଃଖ ଦୂର କରିବାର କିମ୍ବା ଲାଘବ କରିବାର କ୍ଷମତା ସେମାନଙ୍କର ଆଦୌ ନାହିଁ ।" ୫୭. ଏମାନେ ଯେଉଁମାନଙ୍କୁ ଡ଼ାକନ୍ତି, ସେମାନେ ନିଜେ ପ୍ରଭୁଙ୍କର ସାନ୍ନିଧ୍ୟ ଲାଭ କରିବାର ଉପାୟ ଖୋଜୁଛନ୍ତି ଯେ ସେମାନଙ୍କ ମଧ୍ୟରୁ କିଏ ପ୍ରଭୁଙ୍କର ଅଧିକ ନିକଟତର ହେବ ଏବଂ ସେମାନେ ତାଙ୍କ କୃପା ଲାଭ କରିବାର ଆଶା ରଖିଛନ୍ତି ଏବଂ ତାଙ୍କ ଶାସ୍ତିକୁ ଭୟ କରନ୍ତି । ଈଶ୍ୱରଙ୍କର ଶାସ୍ତିକୁ ଅବଶ୍ୟ ଭୟ କରିବା ଉଚିତ ।

୫୮. ବିଚାରର ଦିନ ପୂର୍ବରୁ ଆମ୍ଭେ ପ୍ରତ୍ୟେକ ଜନବସତିକୁ ଧ୍ୱଂସ କରିଦେବୁ କିମ୍ବା ସେମାନଙ୍କୁ କଠୋର ଦଣ୍ଡ ଦେବୁ । ଏହା ଭାଗ୍ୟଲିପିରେ ଲେଖା ହୋଇସାରିଛି ।

୫୯. ଅଲୌକିକ ନିଦର୍ଶନ ପଠାଇବା ଆମ୍ଭେ ଏହି କାରଣରୁ ବନ୍ଦ କଲୁ ଯେ ପୂର୍ବବର୍ତ୍ତୀ ଲୋକମାନେ ସେଗୁଡ଼ିକୁ ମିଥ୍ୟା ବୋଲି କହିଥିଲେ । ଆମ୍ଭେ ସମୁଦ୍ ସଂପ୍ରଦାୟ ପାଖକୁ ଏକ ମାଈ ଓଟ ପଠାଇଥିଲୁ ଯାହା ସେମାନଙ୍କ ଆଖି ଖୋଲି

ଦେବାପାଇଁ ଯଥେଷ୍ଟ ଥିଲା, ମାତ୍ର ସେମାନେ ତା'ପ୍ରତି ଅତ୍ୟାଚାର କଲେ । ଆମ୍ଭେ ଲୋକମାନଙ୍କୁ ଡରାଇବା ଉଦ୍ଦେଶ୍ୟରେ ନିଦର୍ଶନ ପଠାଇଥାଉ । ୬୦. (ହେ ବାର୍ତ୍ତାବହ ! ସ୍ମରଣ କର) ଯେତେବେଳେ ଆମ୍ଭେ ତୁମକୁ କହିଥିଲୁ ଯେ ତୁମ ପାଳନକର୍ତ୍ତା ଲୋକମାନଙ୍କୁ ନିଜ ଆୟତ୍ତରେ ରଖିଛନ୍ତି ଏବଂ ଯେଉଁ ଦୃଶ୍ୟ ଆମ୍ଭେ ତୁମକୁ ଦେଖାଇଲୁ ତାହା ସେମାନଙ୍କ ଆସ୍ଥାର ଏକ ପରୀକ୍ଷା ଥିଲା ଏବଂ କୁରଆନରେ ବର୍ଣ୍ଣନା କରା ଯାଇଥିବା ସେହି ଅଭିଶପ୍ତ ବୃକ୍ଷ ମଧ୍ୟ । ଆମ୍ଭେ ତ ସେମାନଙ୍କୁ ସାବଧାନ କରୁଛୁ କିନ୍ତୁ ସେମାନଙ୍କର ଔଦ୍ଧତ୍ୟ ବଢ଼ିବାରେ ଲାଗିଛି ।

୬୧. (ସ୍ମରଣ କର) ଯେତେବେଳେ ଆମ୍ଭେ ଦେବଦୂତମାନଙ୍କୁ ଆଦେଶ ଦେଇଥିଲୁ ଯେ ଆଦମଙ୍କୁ ପ୍ରଣାମ କର, ସେତେବେଳେ ସମସ୍ତେ ତାଙ୍କୁ ପ୍ରଣାମ କଲେ ମାତ୍ର ଇବ୍‌ଲିସ ପ୍ରଣାମ କଲାନାହିଁ । ସେ କହିଲା, "କ'ଣ ମୁଁ ତାକୁ ପ୍ରଣାମ କରିବି ଯାହାକୁ ତୁମେ ମାଟିରୁ ସୃଷ୍ଟି କରିଛ ?" ୬୨. କହିଲା, "ଦେଖ ! ତାକୁ ତୁମେ ମୋ' ଠାରୁ ଅଧିକ ସମ୍ମାନ ଦେଇଛ କିନ୍ତୁ ଯଦି ତୁମେ ମୋତେ ପ୍ରଳୟ ପର୍ଯ୍ୟନ୍ତ ସମୟ ଦିଅ, ତେବେ ଅଳ୍ପ କିଛି ଲୋକଙ୍କ ବ୍ୟତୀତ ମୁଁ ତା'ର ସମୁଦାୟ ବଂଶକୁ ନିଜ ଆୟତ୍ତକୁ ନେଇ ଆସିବି ।" ୬୩. ଅଲ୍ଲାହ୍ କହିଲେ, "ଏଠାରୁ ବାହାରିଯା, ସେମାନଙ୍କ ମଧ୍ୟରୁ ଯିଏ ତୋ' କଥା ମାନିବ, ତା' ସହିତ ତୁମ ସମସ୍ତଙ୍କୁ ନର୍କଦଣ୍ଡ ଦିଆଯିବ । ଏହାହିଁ ତୁମମାନଙ୍କ କର୍ମର ଉପଯୁକ୍ତ ଫଳ । ୬୪. ସେମାନଙ୍କ ମଧ୍ୟରୁ ଯାହା ଉପରେ ତୋ'ର ବଳ ପାଉଛି ତାକୁ ପ୍ରଲୋଭିତ କରି ବିଭ୍ରାନ୍ତ କର, ସେମାନଙ୍କ ଉପରେ ନିଜର ଦଳବଳ ଧରି ଚଢ଼ଉ କର, ସେମାନଙ୍କ ଧନ ଓ ସନ୍ତାନସନ୍ତତିରେ ଭାଗୀଦାର ହୋଇଯା ଏବଂ ସେମାନଙ୍କୁ (ମିଛ) ପ୍ରତିଶ୍ରୁତି ଦେଉଥା ।" ଶଇତାନ ଯାହା ପ୍ରତିଶ୍ରୁତି ଦିଏ ତାହା କେବଳ ଏକ ମାୟା । ୬୫. "ଅବଶ୍ୟ ଯେଉଁମାନେ ମୋର ପ୍ରକୃତ ଭକ୍ତ, ସେମାନଙ୍କ ଉପରେ ତୋ'ର କିଛି ବଳ ନାହିଁ ଏବଂ ସେମାନଙ୍କର କାର୍ଯ୍ୟସିଦ୍ଧି ପାଇଁ ତୋ' ଈଶ୍ୱର ଯଥେଷ୍ଟ ।"

୬୬. (ହେ ମନୁଷ୍ୟଗଣ !) ତୁମମାନଙ୍କର ଈଶ୍ୱର ସିଏ, ଯିଏ ତୁମମାନଙ୍କ ପାଇଁ ସମୁଦ୍ରରେ ଜାହାଜଗୁଡ଼ିକର ଚଳନା କରନ୍ତି ଯେପରିକି ତୁମେମାନେ ତାଙ୍କର କୃପା (ଅର୍ଥାତ୍ ଜୀବିକା) ଅନ୍ୱେଷଣ କରିବ । ବାସ୍ତବରେ ସେ ତୁମମାନଙ୍କ ପ୍ରତି ଭାରି ଦୟାଳୁ । ୬୭. ଯେତେବେଳେ ସମୁଦ୍ରରେ ତୁମମାନଙ୍କ ଉପରେ ବିପଦ

ଆସେ, ସେତେବେଳେ ଅଲ୍ଲାହଙ୍କ ବ୍ୟତୀତ ତୁମେମାନେ ଯେଉଁମାନଙ୍କୁ ଡାକ, ସେମାନେ ସମସ୍ତେ ଅନ୍ତର୍ଦ୍ଧାନ ହୋଇଯାଆନ୍ତି । ପୁଣି ଯେତେବେଳେ ସେ ତୁମମାନଙ୍କୁ ଉଦ୍ଧାର କରି କୂଳକୁ ନେଇଆସନ୍ତି, ତୁମେମାନେ ତାଙ୍କଠାରୁ ମୁହଁ ଫେରାଇ ନିଅ (ଅର୍ଥାତ୍ ତାଙ୍କୁ ଭୁଲିଯାଅ) । ମନୁଷ୍ୟ ଭାରି କୃତଘ୍ନ । ୬୮. କ'ଣ ତୁମମାନଙ୍କୁ ଏହାର ଭୟ ନାହିଁ ଯେ ହୁଏତ ସେ ତୁମମାନଙ୍କୁ ସ୍ଥଳଭାଗକୁ ନେଇ (ଭୂମିକମ୍ପ ଦ୍ୱାରା) ମାଟି ତଳେ ପୋତି ଦେବେ କିମ୍ବା (ତୁମମାନଙ୍କର ବିନାଶ ପାଇଁ) ବାଲିଝଡ଼ ପଠାଇଦେବେ ? ସେତେବେଳେ ତୁମମାନଙ୍କୁ ରକ୍ଷା କରିବାକୁ କେହି ମିଳିବେନାହିଁ । ୬୯. କ'ଣ ତୁମମାନଙ୍କୁ ଏହାର ମଧ୍ୟ ଭୟ ନାହିଁ ଯେ ହୁଏତ ସେ ତୁମମାନଙ୍କର କୃତଘ୍ନତା ଯୋଗୁଁ ତୁମମାନଙ୍କୁ ପୁଣି ସେହି ସମୁଦ୍ର ଭିତରକୁ ନେଇଯିବେ ଏବଂ ଘୂର୍ଣ୍ଣିବାତ୍ୟା ସୃଷ୍ଟି କରି ଜଳମଗ୍ନ କରିଦେବେ ? ସେତେବେଳେ ତୁମେ ଆମ୍ଭ ବିରୁଦ୍ଧରେ କାହାରିକୁ ଠିଆ କରି ପାରିବନାହିଁ । ୭୦. ବାସ୍ତବରେ ଆମ୍ଭେ ଆଦମଙ୍କ ସନ୍ତାନମାନଙ୍କୁ ସମ୍ମାନ ଦେଇଛୁ, ସେମାନଙ୍କ ପାଇଁ ଜଳ ଓ ସ୍ଥଳରେ ବିଭିନ୍ନ ପରିବହନ ବ୍ୟବସ୍ଥା କରିଛୁ, ସେମାନଙ୍କୁ ଭଲଭଲ ଆହାର ଦେଇଛୁ ଏବଂ ସେମାନଙ୍କୁ ଆମ୍ଭ ସୃଷ୍ଟିର ଅସଂଖ୍ୟ ପ୍ରାଣୀଙ୍କ ମଧ୍ୟରେ ଶ୍ରେଷ୍ଠ କରିଛୁ । ୭୧. ଦିନେ ଆମ୍ଭେ ସମୁଦାୟ ମାନବସମାଜକୁ ସେମାନଙ୍କ କର୍ମପଂଜିକା ସହ ହାଜର କରିବୁ । ଯେଉଁମାନଙ୍କୁ ଡାହାଣ ହାତରେ ସେମାନଙ୍କର କର୍ମପଂଜିକା ଦିଆଯିବ, ସେମାନେ ତାହାକୁ (ଆନନ୍ଦରେ) ପଢ଼ିବେ । ସେମାନଙ୍କ ପ୍ରତି ତିଳେହେଲେ ଅନ୍ୟାୟ ହେବନାହିଁ । ୭୨. ଯିଏ ଇହଲୋକରେ (ଆଖି ଥାଉଥାଉ) ଅନ୍ଧ ଥିବ, ସେ ପରଲୋକରେ ମଧ୍ୟ ଅନ୍ଧ ହୋଇ ରହିବ – (ମୁକ୍ତିର) ମାର୍ଗଠାରୁ ବହୁ ଦୂରରେ ।

୭୩. (ହେ ବାର୍ତ୍ତାବହ!) ସେମାନେ ତୁମକୁ ଏଥିପାଇଁ ପ୍ରଲୋଭିତ କରିବାକୁ ଚାହୁଁଥିଲେ ଯେ ତୁମେ ଆମ୍ଭର ଆଦିଷ୍ଟବାଣୀ ସ୍ଥାନରେ ଆମ୍ଭ ନାଁରେ ଆଉ କିଛି ଗଢ଼ିଦିଅ । ତା'ହେଲେ ସେମାନେ ତୁମକୁ ବନ୍ଧୁ କରିନେଇ ଥାଆନ୍ତେ । ୭୪. ଯଦି ଆମ୍ଭେ ତୁମକୁ ଶକ୍ତି ନଦେଇ ଥାଆନ୍ତୁ, ତା'ହେଲେ ତୁମେ ତ ସେମାନଙ୍କ ଆଡ଼କୁ କିଛି ପରିମାଣରେ ଢ଼ଳିବାକୁ ଲାଗିଥିଲ । ୭୫. ଏପରି ହୋଇଥିଲେ ଆମ୍ଭେ ତୁମକୁ ତୁମ ଜୀବନକାଳରେ ଦ୍ୱିଗୁଣ ଶାସ୍ତି ଦେଇଥାଆନ୍ତୁ ଏବଂ ମୃତ୍ୟୁ ପରେ ମଧ୍ୟ । ପୁଣି ତୁମକୁ ଆମ୍ଭ ବିରୁଦ୍ଧରେ କେହି ସାହାଯ୍ୟକାରୀ ମିଳନ୍ତେ ନାହିଁ ।

୭୬. ସେମାନେ ଏହି ଚେଷ୍ଟାରେ ଅଛନ୍ତି ଯେ କିପରି ତୁମକୁ ଭୟଭୀତ କରି ଏହି ଦେଶରୁ ତଡ଼ିଦେବେ କିନ୍ତୁ ଯଦି ଏହା ହୁଏ, ତେବେ ସେମାନେ ନିଜେ ମଧ୍ୟ ସେଠାରେ ବେଶୀ ଦିନ ରହି ପାରିବେ ନାହିଁ । ୭୭. ଆମ୍ଭେ ତୁମ ପୂର୍ବରୁ ଯେଉଁ ବାର୍ତ୍ତାବହମାନଙ୍କୁ ପଠାଇଥିଲୁ, ସମସ୍ତଙ୍କ ପାଇଁ ଆମ୍ଭର ଏହି ନୀତି ରହି ଆସିଛି । ଆମ୍ଭ ନୀତିରେ ତୁମେ କୌଣସି ପରିବର୍ତ୍ତନ ଦେଖିବାକୁ ପାଇବନାହିଁ ।

୭୮. (ମଧ୍ୟାହ୍ନର) ସୂର୍ଯ୍ୟ ଢ଼ଳିବା ପରଠାରୁ ରାତିର ଅନ୍ଧକାର ହେବା ପର୍ଯ୍ୟନ୍ତ (ଅର୍ଥାତ୍ ଏହି ସମୟ ମଧ୍ୟରରେ) ନମାଜ ପ୍ରତିଷ୍ଠା କର ଏବଂ ପ୍ରତ୍ୟୁଷରେ ମଧ୍ୟ (ନମାଜରେ) କୁରଆନ ପାଠ କର । ପ୍ରତ୍ୟୁଷରେ କୁରଆନ ପାଠର ସମୟ (ଦେବଦୂତମାନଙ୍କର) ଉପସ୍ଥିତ ହେବାର ସମୟ । ୭୯. ଏବଂ ରାତିର କିଛି ଭାଗରେ ମଧ୍ୟ (ନିଦ୍ରା ତ୍ୟାଗକରି) ନମାଜ ପାଠ କର ଯାହା ତୁମପାଇଁ ଏକ ଅତିରିକ୍ତ ଉପାସନା । ଖୁବ୍ ନିକଟରେ ତୁମ ଈଶ୍ୱର ତୁମକୁ ଗୌରବମୟ ସ୍ଥାନ ଦେବେ । ୮୦. ଏବଂ ପ୍ରାର୍ଥନା କର, "ପ୍ରଭୁ! ମୋତେ ଯେଉଁଠାକୁ ନିଅ ସକୁଶଳେ ନେଇଯାଅ ଏବଂ ଯେଉଁଠାରୁ ନିଅ, ସକୁଶଳେ ନେଇଯାଅ ଏବଂ ନିଜ ସହାୟତା ବଳରେ ମୋତେ କ୍ଷମତାଶାଳୀ କର ।" ୮୧. କୁହ, "ସତ୍ୟର ଜୟ ହେଲା ଏବଂ ଅସତ୍ୟର ପରାଜୟ ହେଲା । ଅସତ୍ୟର ପରାଜୟ ସୁନିଶ୍ଚିତ ।"

୮୨. ଆମ୍ଭେ ଯେଉଁ କୁରଆନ ପଠାଉଛୁ, ସେଥିରେ ସଦବିଶ୍ୱାସୀମାନଙ୍କର (ଅସତ୍ ଧାରଣାଗୁଡ଼ିକର) ଉପଚାର ଅଛି ଏବଂ ଆମ୍ଭର କରୁଣା ମଧ୍ୟ କିନ୍ତୁ ଏହା ଭ୍ରଷ୍ଟାଚାରୀମାନଙ୍କର କ୍ଷତି କରିବା ଛଡ଼ା ଆଉ କିଛି କରେନାହିଁ । ୮୩. ଯେତେବେଳେ ଆମ୍ଭେ (ନାସ୍ତିକ) ମଣିଷକୁ ସୁଖ ପ୍ରଦାନ କରୁ, ସେ କୃତଜ୍ଞ ହେବା ପରିବର୍ତ୍ତେ ଆମ୍ଭଠାରୁ ଦୂରେଇ ଯାଏ ଏବଂ ଯେତେବେଳେ କୌଣସି ବିପଦ ପଡ଼େ, ସେ ହତାଶ ହୋଇଯାଏ । ୮୪. କହିଦିଅ, "ପ୍ରତ୍ୟେକ ବ୍ୟକ୍ତି ନିଜ ବାଟରେ କର୍ମ କରିଥାଏ ଏବଂ ତୁମ ପ୍ରଭୁହିଁ ଜାଣନ୍ତି ଯେ କିଏ ଠିକ୍ ବାଟରେ ଅଛି ।"

୮୫. ସେମାନେ ତୁମକୁ ଆତ୍ମା ବିଷୟରେ ପ୍ରଶ୍ନ କରୁଛନ୍ତି । ସେମାନଙ୍କୁ କହିଦିଅ, "ଆତ୍ମା ମୋ' ଈଶ୍ୱରଙ୍କର ଏକ ଆଜ୍ଞା ଏବଂ ତୁମମାନଙ୍କୁ ଏବିଷୟରେ ଅଳ୍ପ ଜ୍ଞାନ ଦିଆଯାଇଛି ।" ୮୬. ଯଦି ଆମ୍ଭେ ଚାହୁଁ, ତୁମକୁ ଯାହା ଦୈବବାଣୀ କରିଛୁ ସବୁତକ ଫେରାଇ ନେବୁ । ପୁଣି ଆମ୍ଭ ବିରୁଦ୍ଧରେ ସାହାଯ୍ୟ କାରିବାକୁ ତୁମକୁ

କେହି ମିଳିବେନାହିଁ, ୮୭. କିନ୍ତୁ ଏହା ତୁମ ପ୍ରଭୁଙ୍କର ବିଶେଷ କରୁଣା । ତୁମ ପ୍ରତି ଅବଶ୍ୟ ତାଙ୍କର ଅସୀମ କୃପା ରହିଛି ।

୮୮. ସେମାନଙ୍କୁ କହିଦିଅ, "ଯଦି ସମସ୍ତ ମାନବ ଓ ଜିନ୍ ସମୁଦାୟ ମିଶି ଏହି କୁରଆନ ପରି ଏକ ଗ୍ରନ୍ଥ ରଚନା କରିବାକୁ ଚେଷ୍ଟା କରନ୍ତି ଏବଂ ପରସ୍ପରକୁ ଏଥିରେ ସାହାଯ୍ୟ ମଧ୍ୟ କରନ୍ତି, ତଥାପି ସେମାନେ ଏହିପରି ଗ୍ରନ୍ଥଟିଏ ରଚନା କରି ପାରିବେନାହିଁ ।" ୮୯. ଏହି କୁରଆନରେ ଆମ୍ଭେ ବିଭିନ୍ନ କଥାକୁ ବିଭିନ୍ନ ଶୈଳୀରେ ବୁଝାଇଛୁ ମାତ୍ର ଅଧିକାଂଶ ଲୋକ ମାନନ୍ତି ନାହିଁ ବରଂ ଏହାକୁ ପ୍ରତ୍ୟାଖ୍ୟାନ କରିଦିଅନ୍ତି ।

୯୦. ସେମାନେ କହୁଛନ୍ତି, "ଆମେ ତୁମ କଥା ସେପର୍ଯ୍ୟନ୍ତ ମାନିବୁନାହିଁ ଯେପର୍ଯ୍ୟନ୍ତ ତୁମେ ମାଟିକୁ ଫଟାଇ ଆମ ପାଇଁ ଝରଣାଟିଏ ସୃଷ୍ଟି ନକରିଛ, ୯୧. କିମ୍ବା ନିଜ ପାଇଁ ଖଜୁରୀ ଓ ଅଂଗୁରର ବଗିଚାଟିଏ ସୃଷ୍ଟି କରି ତାହା ମଝିରେ ନଈଟିଏ ପ୍ରବାହିତ ନକରିଛ । ୯୨. ତାହା ନହେଲେ ତୁମ କହିବା ଅନୁସାରେ ତୁମେ ଆମ ଉପରେ ଆକାଶକୁ ଖଣ୍ଡଖଣ୍ଡ କରି ପକାଇଦିଅ କିମ୍ବା ଅଲ୍ଲାହଙ୍କୁ ଏବଂ ଦେବଦୂତମାନଙ୍କୁ ଆମ ସାମନାକୁ ନେଇଆସ । ୯୩. କିମ୍ବା ତୁମର ସୁନାର ମହଲଟିଏ ହୋଇଯାଉ ବା ତୁମେ ଆକାଶରେ ଚଢ଼ିଯାଅ । ତୁମେ (ଆକାଶରେ) ଚଢ଼ିଛ ବୋଲି ମଧ୍ୟ ଆମେ ବିଶ୍ୱାସ କରିବୁନାହିଁ ଯଦି ତୁମେ (ସେଠାରୁ) ଆମପାଇଁ ଏମିତି ଏକ ଗ୍ରନ୍ଥ ନଆଣିଛ ଯାହାକୁ ଆମେ ପଢ଼ିପାରିବୁ ।" ସେମାନଙ୍କୁ କହିଦିଅ, "ମୋ' ଈଶ୍ୱର ପରମ ପବିତ୍ର । ମୁଁ କେବଳ ଜଣେ ମନୁଷ୍ୟ ଯାହାକୁ ବାର୍ତ୍ତାବହ ରୂପେ ପଠାଯାଇଛି ।"

୯୪. ଯେତେବେଳେ ଲୋକମାନଙ୍କର ମାର୍ଗଦର୍ଶନ କରାଯାଏ, ସେମାନଙ୍କ ବିଶ୍ୱାସ ପଥରେ ଏହି କଥା ବାଧା ସୃଷ୍ଟି କରେ ଯେ କ'ଣ ଅଲ୍ଲାହ୍ ଜଣେ ମଣିଷକୁ ବାର୍ତ୍ତାବହ କରି ପଠାଇଲେ ? ୯୫. ସେମାନଙ୍କୁ କୁହ, "ଯଦି ଦେବଦୂତମାନେ (ମଣିଷଙ୍କ ପରି) ଭୂପୃଷ୍ଠରେ ନିର୍ବିଘ୍ନରେ ବସବାସ କରି ପାରନ୍ତେ ତେବେ ଆମ୍ଭେ ନିଶ୍ଚୟ ସ୍ୱର୍ଗରୁ କୌଣସି ଦେବଦୂତଙ୍କୁ ବାର୍ତ୍ତାବହ ରୂପେ ପଠାଇ ଦିଅନ୍ତୁ ।" ୯୬. କହିଦିଅ, "ତୁମ ଓ ଆମ୍ଭ ମଧ୍ୟରେ ସାକ୍ଷୀ ରୂପେ ଅଲ୍ଲାହ୍ ହିଁ ଯଥେଷ୍ଟ । ସେ ନିଜ ଭକ୍ତମାନଙ୍କର ସବୁ ଖବର ରଖନ୍ତି ଏବଂ ସବୁକିଛି ଦେଖନ୍ତି ।"

୯୭. ଅଲ୍ଲାହ୍ ଯାହାକୁ ବାଟକୁ ଆଣନ୍ତି, ସେ ହିଁ ବାଟ ପାଏ ଏବଂ ଯାହାକୁ ସେ ପଥଭ୍ରଷ୍ଟ ହେବାକୁ ଛାଡ଼ିଦିଅନ୍ତି, ତାକୁ ସାହାଯ୍ୟ କରିବାକୁ କେବଳ ତାଙ୍କରି ବ୍ୟତୀତ ତୁମକୁ ଆଉ କେହି ମିଳିବେନାହିଁ। ବିଚାର ଦିନ ଆମ୍ଭେ ସେମାନଙ୍କୁ ଅନ୍ଧ, ମୂକ ଓ ବଧିର କରି ପୁନର୍ଜୀବିତ କରିବୁ ଏବଂ ସେମାନେ ମୁହଁ ମାଡ଼ି ପଡ଼ିଥିବେ। ନର୍କ ସେମାନଙ୍କର ଘର ହେବ ଏବଂ ଯେତେବେଳେ ଏହାର ନିଆଁ ଧିମେଇ ଯିବ, ଆମ୍ଭେ ତାହାକୁ ସେମାନଙ୍କ ପାଇଁ ପୁଣି ତେଜିଦେବୁ। ୯୮. ଏହା ସେମାନଙ୍କର ଶାସ୍ତି କାରଣ ସେମାନେ ଆମ୍ଭ ବାଣୀକୁ ବିଶ୍ୱାସ କରୁ ନଥିଲେ ଆଉ କହୁଥିଲେ, "କ'ଣ ଆମେ ହାଡ଼ ଓ ମାଟି ହୋଇ ସାରିଲା ପରେ ମଧ୍ୟ ପୁଣିଥରେ ନୂଆ ଜୀବନ ପାଇ ଉଠିବୁ?" ୯୯. କ'ଣ ସେମାନେ ଏବିଷୟରେ ଚିନ୍ତା କରୁନାହାନ୍ତି ଯେ ଯେଉଁ ଅଲ୍ଲାହ୍ ପୃଥିବୀ ଓ ଆକାଶମଣ୍ଡଳ ସୃଷ୍ଟି କରିଛନ୍ତି, ସେ ସେମାନଙ୍କ ପରି (ସାମାନ୍ୟ) ମଣିଷମାନଙ୍କୁ ପୁଣି ଥରେ ସୃଷ୍ଟି କରିବାକୁ ମଧ୍ୟ ସମର୍ଥ? ସେମାନଙ୍କ ପାଇଁ ସେ ଏକ ନିର୍ଦ୍ଦିଷ୍ଟ ସମୟ ସ୍ଥିର କରିଛନ୍ତି ଯେଉଁଥିରେ ଆଦୌ ସନ୍ଦେହ ନାହିଁ ମାତ୍ର ଦୁରାଚାରୀମାନେ ନମାନିବାର ଜିଦ୍ ଧରିଛନ୍ତି।

୧୦୦. ସେମାନଙ୍କୁ କୁହ, "ଯଦି ମୋ ପାଳନକର୍ତ୍ତାଙ୍କର କୃପାର ଭଣ୍ଡାର ତୁମମାନଙ୍କ ଅଧୀନରେ ଥାଆନ୍ତା, ତେବେ ସରିଯିବା ଭୟରେ ତୁମେମାନେ ସେଥିରୁ କିଛି ଖର୍ଚ୍ଚ କରନ୍ତନାହିଁ। ବାସ୍ତବରେ ମଣିଷ ଭାରି କୃପଣ।"

୧୦୧. ଆମ୍ଭେ ମୁ'ସାଙ୍କୁ ନଅଟି ସ୍ପଷ୍ଟ ଅଲୌକିକ ନିଦର୍ଶନ ଦେଇଥିଲୁ। ତୁମେ ଇସ୍ରାଇଲଙ୍କ ବଂଶଜମାନଙ୍କୁ ଏବିଷୟରେ ପଚାରି ବୁଝିନିଅ। ଯେତେବେଳେ ସେ ସେମାନଙ୍କ ପାଖକୁ ଗଲେ, ଫିରଔନ୍ ମୁ'ସାଙ୍କୁ କହିଲା,"ହେ ମୁ'ସା! ମୋ'ର ମନେହୁଏ ତୁମକୁ ଗୁଣି କରାଯାଇଛି।" ୧୦୨. ମୁ'ସା ଉତ୍ତର ଦେଲେ, "ତୁମକୁ ଏହା ବେଶ୍ ଜଣା ଯେ ପୃଥିବୀ ଓ ଆକାଶର ସ୍ୱାମୀ ଏହି ଅଲୌକିକ ନିଦର୍ଶନଗୁଡ଼ିକୁ ତୁମମାନଙ୍କର ଆଖି ଖୋଲିବା ପାଇଁ ପଠାଇଛନ୍ତି। ହେ ଫିରଔନ! ମୋ'ର କିନ୍ତୁ ମନେ ହେଉଛି ଯେ ତୁମର ସର୍ବନାଶର ବେଳ ଆସିଗଲାଣି।" ୧୦୩. ପୁଣି ଫିରଔନ ସେମାନଙ୍କୁ (ଅର୍ଥାତ୍ ମୁ'ସା ଓ ତାଙ୍କ ଅନୁଗାମୀମାନଙ୍କୁ) ଦେଶରୁ ବାହାର କରିଦେବାକୁ ସ୍ଥିର କଲା। ତେଣୁ ଆମ୍ଭେ ତାକୁ ଓ ତା'ର ସବୁ ସହଯୋଗୀମାନଙ୍କୁ

ଜଳମଗ୍ନ କରିଦେଲୁ । ୧୦୪. ତା'ପରେ ଆମ୍ଭେ ଇସ୍ରାଇଲଙ୍କ ବଂଶଜମାନଙ୍କୁ କହିଲୁ, "ଏବେ ତୁମେମାନେ ଏହି ଦେଶରେ ରୁହ । ପୁଣି ଯେତେବେଳେ ସେହି ପ୍ରଳୟର ଦିନ ଆସିବ ଯାହାର ଆମ୍ଭେ ବଚନ ଦେଇଛୁ, ଆମ୍ଭେ ତୁମ ସମସ୍ତଙ୍କୁ ଏକାଠି କରି ହାଜର କରିବୁ ।"

୧୦୫. ଆମ୍ଭେ ଏହି କୁରଆନକୁ ଏକ ଉଚିତ ଲକ୍ଷ୍ୟରେ ପଠାଇଛୁ ଏବଂ ଏହା ସତ୍‌ବାର୍ତ୍ତା ନେଇ ଅବତରଣ କରିଛି । (ହେ ବାର୍ତ୍ତାବହ !) ଆମ୍ଭେ ତୁମକୁ ଏହି ଉଦ୍ଦେଶ୍ୟରେ ପଠାଇଛୁ ଯେ (ଯିଏ ମାନିନିଏ, ତାକୁ) ଶୁଭସମ୍ବାଦ ଦିଅ ଏବଂ (ଯିଏ ନମାନେ, ତାକୁ) ସାବଧାନ କରିଦିଅ । ୧୦୬. ଆମ୍ଭେ କୁରଆନକୁ ଭାଗଭାଗ କରି ପଠାଇଛୁ ଯେପରିକି ତୁମେ ଲୋକମାନଙ୍କୁ ଧୀରେଧୀରେ (ଅଳ୍ପଅଳ୍ପ କରି) ପଢ଼ି ଶୁଣାଇବ ଏବଂ ଆମ୍ଭେ ମଧ୍ୟ ଏହାକୁ ଅଳ୍ପଅଳ୍ପ କରି (ତୁମ ପାଖକୁ) ପଠାଇଛୁ । ୧୦୭. ସେମାନଙ୍କୁ କୁହ, "ତୁମେମାନେ ଏହାକୁ ବିଶ୍ୱାସ କର ବା ନକର, ମାତ୍ର ଯେଉଁମାନଙ୍କୁ ପୂର୍ବରୁ ଗ୍ରନ୍ଥଜ୍ଞାନ ଦିଆଯାଇଛି, ସେମାନଙ୍କ ପାଖରେ ଯେତେବେଳେ କୁରଆନ ପାଠ କରାଯାଏ, ସେମାନେ ମୁଣ୍ଡ ନୁଆଇଁ ଭୂମିଷ୍ଠ ପ୍ରଣାମ କରନ୍ତି, ୧୦୮. ଏବଂ କହନ୍ତି "ଆମ ଈଶ୍ୱର ପରମ ପବିତ୍ର । ଆମ ପ୍ରଭୁଙ୍କ କଥା ସର୍ବଦା ସତ ହୋଇଥାଏ ।" ୧୦୯. ସେମାନେ ଲୁହଭରା ଆଖିରେ (ଅଲ୍ଲାହଙ୍କୁ) ପ୍ରଣିପାତ କରନ୍ତି । କୁର୍‌ଆନ ସେମାନଙ୍କୁ ଆହୁରି ବିନୟୀ କରିଦିଏ । [ପ୍ରଣାମ]

୧୧୦. ସେମାନଙ୍କୁ କୁହ, "ତାଙ୍କୁ ଅଲ୍ଲାହ୍ ନାମରେ ଡାକ ବା ଦୟାମୟ ନାମରେ ଡାକ । ଯେଉଁ ନାମରେ ଡାକ, ତାଙ୍କର ଭଲଭଲ ନାମ ଅଛି । ଅତି ଉଚ୍ଚ ସ୍ୱରରେ ନମାଜ ପାଠ କରନାହିଁ କିମ୍ବା ଅତି ଧୀର ସ୍ୱରରେ ମଧ୍ୟ କରନାହିଁ ବରଂ ମଧ୍ୟମ ମାର୍ଗ ଅବଲମ୍ବନ କର ।" ୧୧୧. କୁହ, "ଅଲ୍ଲାହ୍ ହିଁ ସକଳ ପ୍ରଶଂସାର ଯୋଗ୍ୟ ଯିଏ କାହାରିକୁ ନିଜର ପୁତ୍ର କରି ନାହାନ୍ତି କିମ୍ବା ତାଙ୍କ ଆଧିପତ୍ୟରେ କାହାରି ଭାଗ ନାହିଁ ଅଥବା ସେ ଦୁର୍ବଳ ନୁହନ୍ତି ଯେ ତାଙ୍କୁ କାହାରି ସାହାଯ୍ୟର ଆବଶ୍ୟକତା ପଡ଼ିବ । ତୁମେମାନେ ନିରନ୍ତର ତାଙ୍କର ମହିମାଗାନ କରୁଥାଅ ।"

## ଅଧ୍ୟାୟ ୧୮, ଅଲ୍ କହଫ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲ୍ଲାହ୍ ହିଁ ସକଳ ପ୍ରଶଂସାର ଯୋଗ୍ୟ ଯିଏ ନିଜ ଭକ୍ତଙ୍କ ପାଖକୁ ଏହି ଗ୍ରନ୍ଥ ପଠାଇଛନ୍ତି ଏବଂ ଏଥିରେ କୌଣସି ପ୍ରକାରର ଦୋଷତ୍ରୁଟି ରଖିନାହାନ୍ତି । ୨. ଏହା ସଂପୂର୍ଣ୍ଣ ସଳଖ ବାଟ ଦେଖାଏ ଯେପରିକି ଲୋକମାନଙ୍କୁ ତାଙ୍କର କଠୋର ଶାସ୍ତି ବିଷୟରେ ସାବଧାନ କରିବ ଏବଂ ଯେଉଁମାନେ (ଏହାକୁ) ବିଶ୍ୱାସ କରି ସତକର୍ମ କରନ୍ତି, ସେମାନଙ୍କୁ ସୁସମାଚାର ଦେବ ଯେ ସେମାନଙ୍କୁ ଖୁବ୍ ଭଲ ପୁରସ୍କାର ମିଳିବ, ୩. ଯେଉଁଠି ସେମାନେ ଚିରଦିନ ରହିବେ । ୪. ଏବଂ ସେମାନଙ୍କୁ ମଧ୍ୟ ସାବଧାନ କରିବ ଯେଉଁମାନେ କହନ୍ତି ଯେ ଅଲ୍ଲାହଙ୍କର ପୁଅଟିଏ ଅଛି । ୫. ଏବିଷୟରେ ସେମାନଙ୍କର କୌଣସି ଜ୍ଞାନ ନାହିଁ କିମ୍ବା ସେମାନଙ୍କ ପୂର୍ବପୁରୁଷମାନଙ୍କର ମଧ୍ୟ ନଥିଲା । ଏହା ଏକ ଗୁରୁତର କଥା ଯାହା ସେମାନଙ୍କ ମୁହଁରୁ ବାହାରୁଛି । ସେମାନେ ତୁଚ୍ଛା ମିଛ କହୁଛନ୍ତି ।

୬. (ହେ ବାର୍ତ୍ତାବହ!) ଯଦି ସେମାନେ ଏଥିରେ ବିଶ୍ୱାସ ନକରିବେ, ତେବେ ବୋଧହୁଏ ତୁମେ ଏହି ଚିନ୍ତାରେ ଅବଶୋଷ କରି ନିଜର ଜୀବନ ହାରିଦେବ । ୭. ଧରାପୃଷ୍ଠରେ ଯାହାସବୁ ଅଛି, ଆମ୍ଭେ ସେଗୁଡ଼ିକୁ ଧରିତ୍ରୀର ଶୋଭା ପାଇଁ ସୃଷ୍ଟି କରିଛୁ ଯାହାଫଳରେ ଆମ୍ଭେ ଲୋକମାନଙ୍କୁ ପରୀକ୍ଷା କରିବୁ ଯେ ସେମାନଙ୍କ ମଧ୍ୟରୁ କିଏ ଭଲ କର୍ମ କରୁଛି । ୮. ଭୂପୃଷ୍ଠରେ ଯାହା ଅଛି ଆମ୍ଭେ ସେଗୁଡ଼ିକୁ (ନଷ୍ଟ କରି) ଏକ ସମତଳ ପଡ଼ିଆ କରିଦେବୁ ।

୯. କ'ଣ ତୁମେ ଗୁମ୍ଫାରେ ରହୁଥିବା ତଥା ଲୌହଫଳକରେ ନାମିତ ହୋଇଥିବା ଲୋକମାନଙ୍କୁ ଆମ୍ଭର ଏକ ଅଦ୍ଭୁତ ନିଦର୍ଶନ ବୋଲି ଭାବୁଛ? ୧୦. ଯେତେବେଳେ କେତେଜଣ ଯୁବକ ଗୁମ୍ଫାରେ ଯାଇ ଆଶ୍ରୟ ନେଇଥିଲେ, ସେମାନେ ପ୍ରାର୍ଥନା କରିଥିଲେ, "ହେ ପାଳନକର୍ତ୍ତା! ଆମ ପ୍ରତି କରୁଣା କର ଏବଂ ଏହି ସମସ୍ୟାରେ ଆମର ସଠିକ୍ ମାର୍ଗଦର୍ଶନ କର ।" ୧୧. ତେଣୁ ଆମ୍ଭେ ସେମାନଙ୍କୁ କିଛି ବର୍ଷ ପାଇଁ ସେହି ଗୁମ୍ଫାରେ ଗଭୀର ନିଦ୍ରାରେ ଶୁଆଇଦେଲୁ । ୧୨. ତା'ପରେ ଆମ୍ଭେ ଏହା ଦେଖିବାପାଇଁ ସେମାନଙ୍କୁ ଜାଗ୍ରତ

କଲୁ ଯେ ସେମାନଙ୍କର ଦୁଇଟି ଦଳ ମଧ୍ୟରୁ କେଉଁ ଦଳଟି ସେଠାରେ ରହିବାର ଅବଧି ବିଷୟରେ ସଠିକ୍ ଭାବରେ ଜାଣିପାରୁଛି ।

୧୩. ଆମ୍ଭେ ତୁମ ପାଖରେ ସେମାନଙ୍କ ଘଟଣା ସଠିକ୍ ଭାବରେ ବର୍ଣ୍ଣନା କରୁଛୁ । ସେମାନେ କେତେଜଣ ନବଯୁବକ ଥିଲେ ଯେଉଁମାନେ ସେମାନଙ୍କ ପାଳନକର୍ତ୍ତାଙ୍କ ଉପରେ ବିଶ୍ୱାସ ରଖିଥିଲେ ଏବଂ ଆମ୍ଭେ ସେମାନଙ୍କର ବିଶେଷ ଭାବରେ ମାର୍ଗଦର୍ଶନ କରିଥିଲୁ । ୧୪. ଆମ୍ଭେ ସେମାନଙ୍କ ମନୋବଳ ମଧ୍ୟ ବୃଦ୍ଧି କରିଥିଲୁ । ସେମାନେ (ନିଦରୁ) ଉଠିବା ପରେ କହିଲେ, "ଯିଏ ପୃଥିବୀ ଓ ଆକାଶର ମାଲିକ, ସେଇ ହିଁ ଆମମାନଙ୍କର ମାଲିକ ଏବଂ ଆମେମାନେ ତାଙ୍କ ବ୍ୟତୀତ ଅନ୍ୟ କାହାରିକୁ ଈଶ୍ୱର ମାନି କଦାପି ଡାକିବୁନାହିଁ । ଏହା କଲେ ଆମେ ଏକ ଘୋର ଅନୁଚିତ କାର୍ଯ୍ୟ କରିବୁ । ୧୫. ଆମ ସଂପ୍ରଦାୟର ଲୋକମାନେ ତାଙ୍କୁ ଛାଡ଼ି ଅନ୍ୟମାନଙ୍କୁ ଉପାସ୍ୟ ମାନି ନେଇଛନ୍ତି । ସେମାନେ ନିଜ ଉପାସ୍ୟମାନଙ୍କ ସପକ୍ଷରେ କାହିଁକି ସ୍ପଷ୍ଟ ପ୍ରମାଣ ଦେଉନାହାନ୍ତି ? ଯିଏ ଅଲ୍ଲାହଙ୍କ ନାଁରେ ମିଥ୍ୟା ଗଢ଼େ, ତା'ଠାରୁ ବଡ଼ ପାପୀ ଆଉ କିଏ ହୋଇପାରେ ? ୧୬. ଯଦି ତୁମେମାନେ ସେମାନଙ୍କୁ ଏବଂ ସେମାନଙ୍କର ଅନ୍ୟ ଆରାଧ୍ୟମାନଙ୍କୁ ଛାଡ଼ିସାରିଛ ଯେଉଁମାନଙ୍କୁ ସେମାନେ ଅଲ୍ଲାହଙ୍କ ବ୍ୟତୀତ ପୂଜା କରନ୍ତି, ତେବେ କୌଣସି ପାହାଡ଼ ଗୁମ୍ଫାରେ ଯାଇ ଆଶ୍ରୟ ନିଅ । ତୁମ ପାଳନକର୍ତ୍ତା ନିଶ୍ଚୟ ତୁମମାନଙ୍କ ଉପରେ ତାଙ୍କର କରୁଣା ବର୍ଷା କରିବେ ଏବଂ ତୁମମାନଙ୍କର କାର୍ଯ୍ୟ ସହଜ କରିଦେବେ ।"

୧୭. ତୁମେ (ସେଠାରେ ଥିଲେ) ଦେଖନ୍ତ ଯେ କିପରି ସୂର୍ଯ୍ୟ ଉଦୟ ହେଲାବେଳେ ଏହାର କିରଣ ସେମାନଙ୍କ ଗୁମ୍ଫାର ଡାହାଣ ପଟକୁ ଛୁଇଁ ଚାଲି ଯାଉଥିଲା ଏବଂ ଅସ୍ତ ହେଲା ବେଳେ ବାମପଟ ଦେଇ ଚାଲି ଯାଉଥିଲା । ସେମାନେ ଗୁମ୍ଫାରେ ଏକ ଖୋଲା ଜାଗାରେ ଶୋଇ ରହିଥିଲେ । ଏହା ଅଲ୍ଲାହଙ୍କର ଏକ (ଅଲୌକିକ) ନିଦର୍ଶନ ଥିଲା । ଅଲ୍ଲାହ୍ ଯାହାକୁ ବାଟକୁ ଆଣନ୍ତି, ସେ ହିଁ ବାଟ ପାଏ ଏବଂ ସେ ଯାହାକୁ ପଥଭ୍ରଷ୍ଟ କରନ୍ତି, ତା' ପାଇଁ ତୁମକୁ କେହି ମାର୍ଗଦର୍ଶକ ବନ୍ଧୁ ମିଳିବେ ନାହିଁ । ୧୮. ତୁମେ ସେମାନଙ୍କୁ ଦେଖିଲେ ଜାଗ୍ରତ ଥିବାପରି ମନେ କରନ୍ତ ମାତ୍ର ପ୍ରକୃତରେ ସେମାନେ (ଗଭୀର ନିଦ୍ରାରେ) ଶୋଇଥିଲେ । ଆମ୍ଭେ ସ୍ୱୟଂ

ଡାହାଣ ଓ ବାମ ପଟକୁ ସେମାନଙ୍କର କଡ଼ ଲେଉଟାଇ ଦେଉଥିଲୁ ଏବଂ ଗୁମ୍ଫା ଦ୍ୱାରରେ ସେମାନଙ୍କ କୁକୁର ଗୋଡ଼ ମେଲାଇ ବସି ରହିଥିଲା । ଯଦି ତୁମେ ସେମାନଙ୍କୁ ଦେଖନ୍ତ ତେବେ ଭୟଭୀତ ହୋଇ ସେଠାରୁ ପଳାଇଯାଆନ୍ତ ।

୧୯. ଏହି ଅବସ୍ଥାରେ ଆମ୍ଭେ ସେମାନଙ୍କୁ (ନିଦରୁ) ଉଠାଇଲୁ ଯେପରିକି ସେମାନେ ପରସ୍ପର ମଧ୍ୟରେ ପଚରାପଚରି ହୁଅନ୍ତୁ । ସେମାନଙ୍କ ମଧ୍ୟରୁ ଜଣେ କହିଲା, "ତୁମେ କେତେ ସମୟ ଶୋଇ ରହିଲ ?" କେତେକ କହିଲେ, "ଗୋଟିଏ ଦିନ ବା ତା'ଠାରୁ କମ ସମୟ ।" ଅନ୍ୟମାନେ କହିଲେ, "କେବଳ ତୁମ ଈଶ୍ୱରଙ୍କୁ ଜଣା ଯେ ତୁମେମାନେ କେତେ ସମୟ ଶୋଇ ରହିଲ । ଆଚ୍ଛା, ଆମ ମଧ୍ୟରୁ ଜଣକୁ ଏହି ରୌପ୍ୟ ମୁଦ୍ରା ଦେଇ ସହରକୁ ପଠାଅ । ସେ ଯାଇ ଦେଖୁ ଯେ କେଉଁଠି ଭଲ ଖାଦ୍ୟ ସାମଗ୍ରୀ ମିଳୁଛି ଏବଂ ସେ ତୁମମାନଙ୍କ ଖାଇବା ପାଇଁ କିଛି ନେଇଆସୁ ଏବଂ ସତର୍କ ରହୁ ଯେପରିକି ତୁମମାନଙ୍କ ବିଷୟରେ କେହି କିଛି ନଜାଣନ୍ତୁ । ୨୦. ଯଦି ସେମାନେ ତୁମମାନଙ୍କ ବିଷୟରେ ଜାଣିଯିବେ, ତେବେ ଟେକାପଥର ମାରି ତୁମମାନଙ୍କୁ ମାରିଦେବେ କିମ୍ୱା (ବଳପୂର୍ବକ) ସେମାନଙ୍କ ଧର୍ମକୁ ଫେରାଇ ନେବେ । ଏହା ହେଲେ ତୁମେମାନେ କଦାପି କୃତକାର୍ଯ୍ୟ ହେବନାହିଁ ।"

୨୧. ଏହିପରି ଆମ୍ଭେ ସେମାନଙ୍କ ବିଷୟରେ (ସହରର) ଲୋକଙ୍କୁ ସୂଚନା ଦେଇଦେଲୁ ଯେପରିକି ସେମାନେ ଜାଣନ୍ତୁ ଯେ ଅଲ୍ଲାହଙ୍କ ବଚନ ସତ୍ୟ ଏବଂ ପ୍ରଳୟ ଘଟିବା ବିଷୟରେ କୌଣସି ସନ୍ଦେହ ନାହିଁ । (ପୁଣି ସେହି ସମୟ ମଧ୍ୟ ଆସିଲା) ଯେତେବେଳେ ଲୋକମାନେ ଏମାନଙ୍କ ବିଷୟରେ ପରସ୍ପର ମଧ୍ୟରେ ବାଦବିବାଦ କରିବାକୁ ଲାଗିଲେ । କେତେକ କହିଲେ ଯେ ସେମାନଙ୍କ ସମାଧି ଉପରେ ଗୋଟିଏ ସୌଧ ନିର୍ମାଣ କରିଦିଅ । ଈଶ୍ୱର ହିଁ ସେମାନଙ୍କ (ଅବସ୍ଥା) ସଂପର୍କରେ ଭଲରୂପେ ଜାଣନ୍ତି । (ଶେଷରେ) ଯେଉଁମାନଙ୍କର ଅଧିକ ପ୍ରଭାବ ଥିଲା, ସେମାନେ କହିଲେ, "ଆମେ ଏମାନଙ୍କ ସମାଧି ଉପରେ ଏକ ଉପାସନା ପୀଠ (ମସଜିଦ) ନିର୍ମାଣ କରିବୁ ।"

୨୨. (ଏବେ) କିଛିଲୋକ କହିବେ ଯେ ସେମାନେ ତିନିଜଣ ଥିଲେ ଏବଂ ଚତୁର୍ଥ ଜଣକ ଥିଲା ସେମାନଙ୍କର କୁକୁର । ଅନ୍ୟ କେତେକ କହିବେ ଯେ

ସେମାନେ ପାଂଚ ଜଣ ଥିଲେ ଆଉ ଷଷ୍ଠ ପ୍ରାଣୀଟି ଥିଲା ସେମାନଙ୍କର କୁକୁର । ଏମାନେ ଅନ୍ଧାରରେ ବାଡ଼ି ବୁଲାଇବେ । କିଛି ଲୋକ ଏହା ମଧ୍ୟ କହିବେ ଯେ ସେମାନେ ସାତଜଣ ଥିଲେ ଏବଂ ଅଷ୍ଟମ ଜଣକ ସେମାନଙ୍କ କୁକୁର ଥିଲା । (ହେ ବାର୍ତ୍ତାବହ !) ସେମାନଙ୍କୁ କହିଦିଅ, "ଅଲ୍ଲାହ୍ ସେମାନଙ୍କର ସଠିକ୍ ସଂଖ୍ୟା ବିଷୟରେ ଭଲରୂପେ ଜାଣନ୍ତି । ଖୁବ୍ ଅଳ୍ପ ଲୋକଙ୍କୁ ସେମାନଙ୍କର ସଠିକ୍ ସଂଖ୍ୟା ବିଷୟରେ ଜଣା ।" ତେଣୁ ତୁମେ ଏମାନଙ୍କୁ ମୋଟାମୋଟି ଭାବରେ କହିଦିଅ । ସେମାନଙ୍କ ବିଷୟରେ କୌଣସି ବିବାଦ ମଧ୍ୟକୁ ଯାଅନାହିଁ କିମ୍ବା ଏମାନଙ୍କ ମଧ୍ୟରୁ କାହାରିକୁ ଏ ବିଷୟରେ କିଛି ପଚାର ନାହିଁ ।

୨୩. କୌଣସି କାର୍ଯ୍ୟ ବିଷୟରେ କଦାପି ଏହା କୁହନା ଯେ ମୁଁ କାଲି ଏହା କରିଦେବି, ୨୪. ବରଂ ଏହା କୁହ ଯେ ଯଦି ଅଲ୍ଲାହ୍ ଚାହିଁବେ (ତେବେ କାଲି କରିଦେବି) । ଯଦି ତୁମେ ଏହା କହିବାକୁ ଭୁଲିଯାଅ, ତେବେ ନିଜ ପ୍ରଭୁଙ୍କୁ ସ୍ମରଣ କର ଏବଂ କୁହ, "ମୁଁ ଆଶା କରୁଛି ଯେ ମୋ' ପ୍ରଭୁ ମୋତେ ପୁଣ୍ୟ ଲାଭ କରିବାର ଆହୁରି ଭଲ ବାଟ ଦେଖାଇବେ ।"

୨୫. (କେତେକ କହନ୍ତି) ସେମାନେ ନିଜ ଗୁମ୍ଫାରେ ତିନିଶହ ବର୍ଷ (ଶୋଇ) ରହିଲେ ଏବଂ (ଆଉ କେତେକ କହନ୍ତି) ଅଧିକ ନଅବର୍ଷ ରହିଲେ । ୨୬. କହିଦିଅ, "ସେମାନେ କେତେ ସମୟ ରହିଥିଲେ ତାହା ଅଲ୍ଲାହ୍ ଜାଣନ୍ତି ।" ପୃଥିବୀ ଓ ଆକାଶର ସବୁ ଗୋପନ କଥା କେବଳ ତାଙ୍କୁ ହିଁ ଜଣା । ସେ ଅପୂର୍ବ ଦ୍ରଷ୍ଟା ଏବଂ ଅପୂର୍ବ ଶ୍ରୋତା । ତାଙ୍କ ବ୍ୟତୀତ କେହି ସେମାନଙ୍କର ଆଶ୍ରୟଦାତା ନାହାନ୍ତି ଏବଂ ସେ ତାଙ୍କ ଆଧିପତ୍ୟରେ କାହାରିକୁ ଭାଗୀଦାର କରନ୍ତିନାହିଁ ।

୨୭. (ହେ ବାର୍ତ୍ତାବହ !) ତୁମ ପ୍ରଭୁଙ୍କର ଯେଉଁ ଗ୍ରନ୍ଥଟି ତୁମକୁ ଦୈବବାଣୀ କରାଯାଇଛି ତାହାକୁ ପଢ଼ି ଶୁଣାଇଦିଅ । ତାଙ୍କ ବାଣୀକୁ କେହି ପରିବର୍ତ୍ତନ କରି ପାରିବେନାହିଁ ଏବଂ ତାଙ୍କ ଛଡ଼ା ତୁମେ ଆଉ କେଉଁଠି ଆଶ୍ରୟ ପାଇବ ନାହିଁ । ୨୮. ସେହି ଲୋକମାନଙ୍କ ସଙ୍ଗରେ ରୁହ ଯେଉଁମାନେ ନିଜ ପ୍ରଭୁଙ୍କ ପ୍ରସନ୍ନତା ଲାଭ କରିବା ପାଇଁ ସଂଜ-ସକାଳେ ତାଙ୍କୁ ଡାକନ୍ତି । ସାଂସାରିକ ଚାକଚକ୍ୟର ମୋହରେ ପଡ଼ି ସେମାନଙ୍କୁ ଉପେକ୍ଷା କରନାହିଁ ଏବଂ ଏଭଳି ବ୍ୟକ୍ତିର କଥା ଶୁଣନାହିଁ ଯାହାର ହୃଦୟକୁ ଆମ୍ଭେ ନିଜ ସ୍ମରଣ-ଚିନ୍ତନରୁ ବଂଚିତ କରିଛୁ, ଯିଏ ନିଜର କାମନା ପଛରେ ଧାଇଁଛି

ଏବଂ ଯାହାର କାର୍ଯ୍ୟକଳାପ ସୀମା ଅତିକ୍ରମ କରିସାରିଛି । ୨୯. (ପରିଷ୍କାର) କହିଦିଅ, "ଏହି ସତ୍ୟ ତୁମ ପାଳନକର୍ତ୍ତାଙ୍କଠାରୁ ଆସିଛି । ଏହାପରେ ଯାହାର ଇଚ୍ଛା ସେ ଏହାକୁ ଗ୍ରହଣ କରୁ ଏବଂ ଯାହାର ଇଚ୍ଛା ସେ ପ୍ରତ୍ୟାଖ୍ୟାନ କରିଦେଉ ।" ଆମ୍ଭେ ଦୁରାଚରୀମାନଙ୍କ ପାଇଁ (ଏଭଳି) ନିଆଁ ପ୍ରସ୍ତୁତ କରି ରଖିଛୁ ଯାହାର ଶିଖା ସେମାନଙ୍କୁ ଚରିଆଡୁ ଘେରିନେବ । ଯଦି ସେମାନେ ପାଣି ମାଗନ୍ତି, ସେମାନଙ୍କୁ ଫୁଟୁଥିବା ତେଲ ଦିଆଯିବ ଯାହା ସେମାନଙ୍କ ମୁହଁକୁ ପୋଡ଼ିଦବ । ଅତି କଦର୍ଯ୍ୟ ସେ ପାଣି ଏବଂ ଅତି କଦର୍ଯ୍ୟ ସେ ବିଶ୍ରାମାଗାର ! ୩୦. ଯେଉଁମାନେ (ଈଶ୍ୱର ଓ ଈଶ୍ୱରଦୂତଙ୍କୁ) ବିଶ୍ୱାସ କରନ୍ତି ଏବଂ ଭଲ କର୍ମ କରନ୍ତି, ଆମ୍ଭେ ଏଭଳି ପୁଣ୍ୟବାନ ଲୋକମାନଙ୍କର ପୁଣ୍ୟ ଆଦୌ ବ୍ୟର୍ଥ କରିବୁ ନାହିଁ । ୩୧. ଏମାନଙ୍କ ପାଇଁ ଅଛି ନିତ୍ୟ ବୈକୁଣ୍ଠର ଉଦ୍ୟାନ ଯାହା ତଳେ ଝରଣା ପ୍ରବାହିତ ହୁଏ । ସେଠାରେ ସେମାନଙ୍କୁ ସ୍ୱର୍ଣ୍ଣ କଙ୍କଣ ଦ୍ୱାରା ବିଭୂଷିତ କରାଯିବ ଏବଂ ସେମାନେ ସୂକ୍ଷ୍ମ ଓ ସବୁଜ ରେଶମ ବସ୍ତ୍ର ପିନ୍ଧିବେ ଯାହା ବୁଟିଦାର ହୋଇଥିବ ଏବଂ ଉଚ୍ଚଉଚ୍ଚ ଆସନରେ ତକିଆ ଦେଇ ବସିବେ । କି ସୁନ୍ଦର ପୁରସ୍କାର ଏବଂ କି ସୁନ୍ଦର ବିଶ୍ରାମାଗାର !

୩୨. ସେମାନଙ୍କୁ ସେହି ଦୁଇଜଣ ଲୋକଙ୍କର ଉଦାହରଣ ଦିଅ ଯେଉଁମାନଙ୍କ ମଧ୍ୟରୁ ଜଣକୁ ଆମ୍ଭେ ଦୁଇଟି ଅଂଗୁର ବଗିଚା ଦେଇଥିଲୁ ଏବଂ ତା' ଚାରିପଟେ ଖଜୁରୀ ଗଛର ବାଡ଼ କରିଥିଲୁ ଏବଂ (ଦୁଇ ବଗିଚା) ମଝିରେ ଶସ୍ୟକ୍ଷେତ ସୃଷ୍ଟି କରିଥିଲୁ । ୩୩. ଦୁଇଟିଯାକ ବଗିଚାରୁ ପ୍ରଚୁର ଆମଦାନୀ ହେଉଥିଲା ଏବଂ ଉତ୍ପାଦନ କିଛି କମ୍ ହେଉ ନଥିଲା । ଉଭୟ ବଗିଚା ମଝିରେ ଆମ୍ଭେ ଝରଣାଟିଏ ମଧ୍ୟ ପ୍ରବାହିତ କରି ଦେଇଥିଲୁ । ୩୪. ସେହି ବ୍ୟକ୍ତିର ଭଲ ଲାଭ ହେଉଥିଲା । ପୁଣି ଦିନେ ସେ (ଭାରି ଦମ୍ଭରେ) ତା' ସାଙ୍ଗକୁ କଥା ପ୍ରସଂଗରେ କହିଲା, "ମୁଁ ତୋ'ଠାରୁ ଅଧିକ ଧନୀ ଏବଂ ମୋ'ର ଲୋକବଳ ମଧ୍ୟ ତୋ'ଠାରୁ ବେଶୀ ।" ୩୫. ସେ ନିଜ ପ୍ରତି ଅନ୍ୟାୟ କରି (ଅର୍ଥାତ୍ ନାସ୍ତିକତା ପ୍ରଦର୍ଶନ କରି) ନିଜ ବଗିଚା ଭିତରେ ପ୍ରବେଶ କରି କହିଲା, "ମୋ'ର ମନେ ହୁଏନା ଯେ ଏହା ନଷ୍ଟ ହୋଇଯିବ । ୩୬. ମୋତେ ଲାଗୁନାହିଁ ଯେ ସୃଷ୍ଟିର ପ୍ରଳୟ ହେବ ଏବଂ ଯଦି ପ୍ରକୃତରେ ମୋତେ ଈଶ୍ୱରଙ୍କ ପାଖକୁ ଫେରିବାକୁ ପଡ଼େ, ତେବେ ମୋତେ ସେଠାରେ ମଧ୍ୟ ଏହାଠାରୁ ଭଲ ସ୍ଥାନ ମିଳିବ ।"

୩୭. ତା' ସାଙ୍ଗ ଜଣକ କଥାବାର୍ତ୍ତା ବେଳେ ତାକୁ କହିଲା, "କ'ଣ ତୁ ତାଙ୍କୁ ମାନୁନାହୁଁ ଯିଏ ତୋତେ ମାଟିରୁ ସୃଷ୍ଟି କଲେ, ପୁଣି ଏକ (ତୁଚ୍ଛ) ଶୁକ୍ରବିନ୍ଦୁରୁ ତୋତେ ଏକ ସଂପୂର୍ଣ୍ଣ ମାନବରେ ପରିଣତ କରିଦେଲେ? ୩୮. ମାତ୍ର ମୁଁ ଏହା ବିଶ୍ୱାସ କରେ ଯେ ଅଲ୍ଲାହ୍ ହିଁ ମୋ' ପାଳନକର୍ତ୍ତା ଏବଂ ମୁଁ ତାଙ୍କ ଈଶ୍ୱରତ୍ୱରେ କାହାରିକୁ ଭାଗୀଦାର ମାନେନାହିଁ। ୩୯. ତୁମେ ତୁମ ବଗିଚାକୁ ଗଲାବେଳେ ଏହା କାହିଁକି ନକହିଲ ଯେ ଯାହା ହୁଏ, ଅଲ୍ଲାହଙ୍କ ଇଚ୍ଛାରେ ହୁଏ ଏବଂ ଅଲ୍ଲାହଙ୍କ (ସହାୟତା) ବିନା କାହାରି (କିଛି କରିବାର) ଶକ୍ତି ନାହିଁ? ଯଦି ଧନଜନ ଦୃଷ୍ଟିରୁ ତୁମେ ମୋତେ ନିଜଠାରୁ ନିକୃଷ୍ଟ ମନେ କରୁଛ, ୪୦. ତେବେ ଏହା ଅସମ୍ଭବ ନୁହେଁ ଯେ ମୋ' ପାଳନକର୍ତ୍ତା ମୋତେ ତୁମ ବଗିଚା ଅପେକ୍ଷା ଆଉ କିଛି ଭଲ ଜିନିଷ ଦେଇଦେବେ କିମ୍ୱା ତୁମ ବଗିଚା ଉପରେ ଶୂନ୍ୟରୁ କୌଣସି ବିପଦ ପଠାଇ ଦେବେ ଯାହାଦ୍ୱାରା ଏହା ଏକ ପରିଷ୍କାର ମଇଦାନ ହୋଇଯିବ, ୪୧. କିମ୍ୱା ଏହାର ଜଳସ୍ତର ତଳକୁ ଖସିଯିବ ଏବଂ ଏହାକୁ (ଉପରକୁ) ଆଣିବା ତୁମ ପକ୍ଷରେ ସମ୍ଭବ ହେବନାହିଁ।" ୪୨. ପୁଣି (ଦିନେ ଦୈବୀବିପର୍ଯ୍ୟୟ ଯୋଗୁଁ) ତା' ବଗିଚାର ଫଳ ସବୁ ନଷ୍ଟ ହୋଇଗଲା। ନିଜ ବଗିଚାକୁ ଭାଡ଼ି ଉପରେ (ଧ୍ୱସ୍ତବିଧ୍ୱସ୍ତ ହୋଇ) ଓଲଟି ପଡ଼ିଥିବାର ଦେଖି ନିଜର ପୁଞ୍ଜି ବୁଡ଼ି ଯାଇଥିବା ଯୋଗୁଁ ସେ ଅବଶୋଷ କରିବାକୁ ଲାଗିଲା ଏବଂ କହିଲା, "ଆହା! ମୁଁ ଅନ୍ୟକୁ ମୋ' ପାଳନକର୍ତ୍ତାଙ୍କର ସମକକ୍ଷ ନକରି ଥାଆନ୍ତି କି!" ୪୩. ତା'ର ଦଳବଳ ତାକୁ ଅଲ୍ଲାହଙ୍କଠାରୁ ରକ୍ଷା କରିପାରିଲେ ନାହିଁ କିମ୍ୱା ସେ ନିଜେ ନିଜକୁ ରକ୍ଷା କରିପାରିଲା ନାହିଁ। ୪୪. ଏଭଳି ସମୟରେ (ମଣିଷର ହୃଦବୋଧ ହୁଏ ଯେ) ସବୁ କ୍ଷମତା କେବଳ ଅଲ୍ଲାହଙ୍କ ହାତରେ ଅଛି ଯିଏ ସତ୍ୟ। ସେ ହିଁ ଭଲ ପୁରସ୍କାର ଦିଅନ୍ତି ଏବଂ ସେ ହିଁ ପରିଣାମ ଭଲ କରନ୍ତି।

୪୫. ସେମାନଙ୍କୁ ପାର୍ଥିବ ଜୀବନର ଉଦାହରଣ ଦିଅ ଯେ ଏହା ସେହିପରି, ଯେପରି ଆମ୍ଭେ ଆକାଶରୁ ମେଘ ବର୍ଷା କଲେ ଧରିତ୍ରୀର ଉଦ୍ଭିଦଜଗତରେ ସବୁଜିମା ଆସେ କିନ୍ତୁ ପୁଣି ଦିନେ ଏହା ନଷ୍ଟ ହୋଇଯାଏ ଏବଂ ତାକୁ ପବନ ଉଡ଼ାଇ ନିଏ। ଅଲ୍ଲାହ୍ ସବୁକିଛି କରିବାକୁ ସକ୍ଷମ। ୪୬. ଧନସଂପତ୍ତି ଓ ସନ୍ତାନସନ୍ତତି କେବଳ ପାର୍ଥିବ ଜୀବନର ଏକ ଶୋଭା। ବାସ୍ତବରେ ମଣିଷର

ପୁଣ୍ୟ ହିଁ ଚିରସ୍ଥାୟୀ ଏବଂ ଏହା ଈଶ୍ୱରଙ୍କ ନିକଟରେ (ମଣିଷର) ଆଶା ଓ ପରିଣାମ ଦୃଷ୍ଟିରୁ ମଧ୍ୟ ଭଲ ।

୪୭. (ସେହି ଦିନକୁ ମନେ ରଖିବା ଉଚିତ) ଯେଉଁଦିନ ଆମ୍ଭେ ପାହାଡ଼ ପର୍ବତଗୁଡ଼ିକୁ ଧରାପୃଷ୍ଠରୁ ଅପସାରିତ କରିଦେବୁ ଏବଂ ତୁମେ ଧରିତ୍ରୀକୁ ଏକ ସମତଳ ପଡ଼ିଆ ହୋଇଯାଇ ଥିବାର ଦେଖିବ । ସେଦିନ ଆମ୍ଭେ ସମସ୍ତଙ୍କୁ (ପୁନର୍ଜୀବିତ କରି) ଏକାଠି କରିବୁ ଏବଂ କାହାରିକୁ ଛାଡ଼ିବୁନାହିଁ । ୪୮. ସମସ୍ତଙ୍କୁ ଧାଡ଼ିଧାଡ଼ି କରି ତୁମ ଈଶ୍ୱରଙ୍କ ସାମନାରେ ହାଜର କରାଯିବ ଏବଂ ସେ ସେମାନଙ୍କୁ କହିବେ "ଏବେ ତୁମେମାନେ ଆମ୍ଭ ପାଖକୁ ଠିକ୍ ସେମିତି ଆସିଗଲ ଯେମିତି ଆମ୍ଭେ ତୁମମାନଙ୍କୁ ପ୍ରଥମ ଥର ସୃଷ୍ଟି କରିଥିଲୁ କିନ୍ତୁ ତୁମର ଧାରଣା ଥିଲା ଯେ ଆମ୍ଭେ ତୁମମାନଙ୍କ ପାଇଁ (ସାକ୍ଷାତର) କୌଣସି ସମୟ ଧାର୍ଯ୍ୟ କରିନାହୁଁ ।" ୪୯. ସେମାନଙ୍କର କର୍ମପଞ୍ଜିକା ଉପସ୍ଥାପନ କରାଯିବ ଏବଂ ତୁମେ ଅପରାଧୀମାନଙ୍କୁ ଏଥିରେ ଥିବା ଲେଖା ଯୋଗୁଁ ଭୟଭୀତ ହୋଇଯିବାର ଦେଖିବ । ସେମାନେ କହିବେ, "ହାୟ ଆମର ଦୁର୍ଭାଗ୍ୟ ! ଏହା କି ପ୍ରକାରର ପଞ୍ଜିକା ! ଏହା ଛୋଟ ବା ବଡ଼, କୌଣସି କର୍ମ ନଲେଖି ଛାଡ଼ିନାହିଁ । ସବୁତକ ସାଉଁଟି ନେଇଛି । ସେମାନେ ଯାହା କର୍ମ କରିଥିବେ, ନିଜ ସାମନାରେ ଦେଖିନେବେ । ତୁମ ପ୍ରଭୁ କାହାରି ପ୍ରତି ଅନ୍ୟାୟ କରନ୍ତିନାହିଁ ।

୫୦. ଯେତେବେଳେ ଆମ୍ଭେ ଆଦମଙ୍କୁ ପ୍ରଣାମ କରିବା ଲାଗି ଦେବଦୂତମାନଙ୍କୁ ଆଦେଶ ଦେଇଥିଲୁ, ସେତେବେଳେ ସମସ୍ତେ ତାଙ୍କୁ ପ୍ରଣାମ କରିଥିଲେ କିନ୍ତୁ ଇବଲିସ୍ ପ୍ରଣାମ କରି ନଥିଲା । ସେ ଜଣେ ଜିନ୍ ଥିଲା । ସେ ନିଜ ଈଶ୍ୱରଙ୍କୁ ଅବଜ୍ଞା କରିଥିଲା । କ'ଣ ତଥାପି ତୁମେମାନେ ମୋତେ ଛାଡ଼ି ତାକୁ ଓ ତା' ବଂଶଧରମାନଙ୍କୁ ତ୍ରାଣକର୍ତ୍ତା ମାନିବ ଯଦିଓ ସେମାନେ ସମସ୍ତେ ତୁମମାନଙ୍କର ଶତ୍ରୁ ? ଦୁରାଚାରୀମାନେ କି କଦର୍ଯ୍ୟ ବିକଳ୍ପ ବାଛିଲେ ? ୫୧. ମୁଁ ସେମାନଙ୍କୁ ପୃଥିବୀ ଓ ଆକାଶକୁ ସୃଷ୍ଟି କଲାବେଳେ ଡାକି ନଥିଲି କିମ୍ବା ସେମାନଙ୍କୁ ସୃଷ୍ଟି କଲାବେଳେ ମଧ୍ୟ ଡାକି ନଥିଲି । ମୁଁ ଏମିତି ନୁହେଁ ଯେ ପଥଭ୍ରଷ୍ଟକାରୀମାନଙ୍କୁ ନିଜର ସହଯୋଗୀ କରିବି ।

୫୨. ଯେଉଁଦିନ ଅଲ୍ଲାହ୍ ବହୁଇଶ୍ୱରବାଦୀମାନଙ୍କୁ କହିବେ ଯେ ଏବେ ସେମାନଙ୍କୁ ଡାକ ଯେଉଁମାନଙ୍କୁ ତୁମେ ମୋ'ର ସମକକ୍ଷ କରୁଥିଲ, ଏମାନେ ସେମାନଙ୍କୁ ଡାକିବେ ମାତ୍ର ସେମାନେ କୌଣସି ଉତ୍ତର ଦେବେନାହିଁ। ଉଭୟଙ୍କ ମଧ୍ୟରେ ଆମ୍ଭେ ଏକ ବିନାଶକାରୀ ପାଚେରୀ ସୃଷ୍ଟି କରିଦେବୁ। ୫୩. ଅପରାଧୀମାନେ ନର୍କ ଦେଖିବା ପରେ ବୁଝିଯିବେ ଯେ ସେମାନଙ୍କୁ ସେଥିରେ ପ୍ରବେଶ କରିବାକୁ ପଡ଼ିବ କିନ୍ତୁ ସେମାନେ ସେଥିରୁ ରକ୍ଷା ପାଇବାର କୌଣସି ବାଟ ପାଇବେନାହିଁ।

୫୪. ଆମ୍ଭେ ଏହି କୁରଆନ୍‌ରେ ଲୋକମାନଙ୍କ ବୁଝିବା ପାଇଁ ପ୍ରତ୍ୟେକ ବିଷୟକୁ ବିଭିନ୍ନ ଶୈଳୀରେ ବୁଝାଇଛୁ, ମାତ୍ର ମଣିଷ ଯୁକ୍ତି କରିବାରେ ଭାରି ଧୁରନ୍ଧର। ୫୫. ଯେତେବେଳେ ଲୋକମାନଙ୍କ ପାଖରେ ମାର୍ଗଦର୍ଶକ ଗ୍ରନ୍ଥ ପହଁଚିଲା, ଏହାକୁ ମାନି ନେବାରେ ଏବଂ ଈଶ୍ୱରଙ୍କ ନିକଟରେ କ୍ଷମା ପ୍ରାର୍ଥନା କରିବାରେ ସେମାନଙ୍କ ପାଇଁ କ'ଣ ବା ପ୍ରତିବନ୍ଧକ ଥିଲା ? କିନ୍ତୁ ସେମାନେ କେବଳ ଏହାରି ଅପେକ୍ଷାରେ ଅଛନ୍ତି ଯେ ସେମାନଙ୍କ ପୂର୍ବପୁରୁଷମାନଙ୍କ ସହିତ ଯାହା ଘଟିଥିଲା, ସେମାନଙ୍କ ସହିତ ମଧ୍ୟ ସେହିପରି ଘଟୁ କିମ୍ବା ସେମାନଙ୍କ ସାମନାରେ ଦୈବୀବିପତ୍ତି ଆସି ଉପସ୍ଥିତ ହେଉ।

୫୬. ଆମ୍ଭେ ବାର୍ତ୍ତାବହମାନଙ୍କୁ କେବଳ (ସଦାଚାରୀମାନଙ୍କୁ) ସୁସମାଚାର ଦେବା ପାଇଁ ଏବଂ (ଦୁରାଚାରୀମାନଙ୍କୁ) ସାବଧାନ କରିବା ପାଇଁ ପଠାଇଥାଉ। ମିଥ୍ୟାବିଶ୍ୱାସୀମାନେ ସତ୍ୟକୁ ଖଣ୍ଡନ କରିବା ପାଇଁ ମିଥ୍ୟା ଆଧାରରେ ବିବାଦ କରୁଛନ୍ତି। ସେମାନେ ମୋ'ବାଣୀ ଓ ମୋ' ଚେତାବନୀକୁ ଥଟ୍ଟା ମନେ କରିଛନ୍ତି। ୫୭. ସେହି ବ୍ୟକ୍ତିଠାରୁ ବଡ଼ ପାପୀ ଆଉ କିଏ ହୋଇପାରେ ଯାହାକୁ ତା' ଈଶ୍ୱରଙ୍କ ବାଣୀ ଦ୍ୱାରା ଉପଦେଶ ଦେଲେ ସେ ମୁହଁ ବୁଲାଇ ନିଏ ଏବଂ ନିଜେ କରିଥିବା କର୍ମଗୁଡ଼ିକୁ ଭୁଲିଯାଏ ? ଆମ୍ଭେ ଏଭଳି ଲୋକମାନଙ୍କର ହୃଦୟକୁ ଏକ ପରଦାରେ ଢ଼ାଙ୍କି ଦେଇଛୁ ଯାହାଫଳରେ ସେମାନେ ଏହାକୁ ବୁଝି ପାରିବେନାହିଁ ଏବଂ ଆମ୍ଭେ ସେମାନଙ୍କ କାନକୁ ମଧ୍ୟ ବଧିର କରିଦେଇଛୁ। ତୁମେ ସେମାନଙ୍କୁ ଠିକ୍ ବାଟକୁ ଯେତେ ଡାକିଲେ ସୁଦ୍ଧା ସେମାନେ ଆଦୌ ବାଟକୁ ଆସିବେ ନାହିଁ।

୫୮. ତୁମ ଈଶ୍ୱର ଅତ୍ୟନ୍ତ କ୍ଷମାଶୀଳ ଏବଂ ପରମ ଦୟାଳୁ । ଯଦି ସେ ସେମାନଙ୍କ କୃତକର୍ମ ପାଇଁ କାର୍ଯ୍ୟାନୁଷ୍ଠାନ କରନ୍ତେ, ତେବେ ସେମାନଙ୍କୁ ତୁରନ୍ତ ଦଣ୍ଡ ଦିଅନ୍ତେ । ମାତ୍ର ସେମାନଙ୍କ (ହିସାବ-ନିକାଶ) ପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ସ୍ଥିର କରାଯାଇଛି । ତା'ପରେ ସେମାନଙ୍କର ଆଉ ନିସ୍ତାର ନାହିଁ ।

୫୯. ଏହି (ଧ୍ୱସ୍ତବିଧ୍ୱସ୍ତ) ଜନବସତିଗୁଡ଼ିକୁ ଆମ୍ଭେ ସେମାନଙ୍କ ଅନ୍ୟାୟ-ଅତ୍ୟାଚାର ଯୋଗୁଁ ଧ୍ୱଂସ କରିଦେଇଥିଲୁ କିନ୍ତୁ ସେଗୁଡ଼ିକର ବିନାଶ ପାଇଁ ମଧ୍ୟ ଆମ୍ଭେ ଏକ ସମୟ ନିଶ୍ଚିତ କରିଥିଲୁ ।

୬୦. (ସ୍ମରଣ କର) ଯେତେବେଳେ ମୁ'ସା ତାଙ୍କ ସେବକକୁ କହିଥିଲେ, "ମୁଁ ଦୁଇଟି ସାଗରର ସଂଗମ ସ୍ଥଳରେ ନପହଁଚିବା ପର୍ଯ୍ୟନ୍ତ ମୋ' ଯାତ୍ରା ବନ୍ଦ କରିବିନାହିଁ ବରଂ ଏମିତି ବର୍ଷବର୍ଷ ଧରି ଚାଲିଥିବି ।" ୬୧. ପୁଣି ଯେତେବେଳେ ସେମାନେ ଦୁଇ ସମୁଦ୍ରର ସଂଗମ ସ୍ଥଳରେ ପହଁଚିଲେ, ସେମାନେ ସାଂଗରେ ଆଣିଥିବା ମାଛ ଭୁଲିଗଲେ ଏବଂ ସେହି ମାଛଟି ସମୁଦ୍ର ଭିତରକୁ ଖସି ଚାଲିଗଲା । ୬୨. ସେମାନେ କିଛି ବାଟ ଆଗକୁ ଯିବା ପରେ ମୁ'ସା ତାଙ୍କ ସେବକକୁ କହିଲେ, "ମୋ' ଜଳଖିଆ ଆଣ । ଆଜିର ଏହି ଯାତ୍ରା ଯୋଗୁଁ ମୁଁ ଭାରି କ୍ଲାନ୍ତ ହୋଇ ପଡ଼ିଛି ।" ୬୩. ସେବକ ଜଣକ ଉତ୍ତର ଦେଲେ, "ଭଲା ଦେଖନ୍ତୁ ତ ! ଯେତେବେଳେ ଆମେ ସେହି ପଥର ଚଟାଣ ପାଖରେ ବିଶ୍ରାମ କରୁଥିଲୁ, ମୁଁ ମାଛ କଥା ଭୁଲିଗଲି । ମୁଁ ଏବିଷୟରେ ଆପଣଙ୍କୁ କହିଥାଆନ୍ତି କିନ୍ତୁ ଶଇତାନ ମୋତେ ଭୁଲାଇଦେଲା । ସେହି ମାଛଟି ଅଦ୍ଭୁତ ଭାବରେ ସମୁଦ୍ର ଭିତରକୁ ଚାଲି ଯାଇଥିଲା ।" ୬୪. ମୁ'ସା କହିଲେ, "ସେହି ଜାଗାଟିକୁ ତ ଆମେ ଖୋଜୁଥିଲୁ ।" ପୁଣି ଦୁହେଁ ସେମାନଙ୍କର ପଦଚିହ୍ନକୁ ଅନୁସରଣ କରି ପଛକୁ ଫେରିଲେ । ୬୫. ତା'ପରେ ସେଠାରେ ସେମାନେ ଆମ୍ଭର ଜଣେ ଭକ୍ତଙ୍କୁ ଭେଟିଲେ ଯାହାଙ୍କ ଉପରେ ଆମ୍ଭେ ବିଶେଷ କୃପା କରିଥିଲୁ ଏବଂ ନିଜ ତରଫରୁ ଏକ ବିଶେଷ ଜ୍ଞାନ ପ୍ରଦାନ କରିଥିଲୁ ।

୬୬. ମୁ'ସା ତାଙ୍କୁ ପଚାରିଲେ, "କ'ଣ ମୁଁ ଆପଣଙ୍କ ସେବାରେ ରହିପାରିବି ଯେପରିକି ଆପଣ ମୋତେ ସେହି ସଦ୍‌ଜ୍ଞାନରୁ କିଛି ଶିକ୍ଷା ଦେବେ ଯାହାର ଶିକ୍ଷା ଆପଣଙ୍କୁ ଦିଆଯାଇଛି ?" ୬୭. ସେ ଉତ୍ତର ଦେଲେ, "ଆପଣ

ମୋ' ସହିତ ଧୈର୍ଯ୍ୟ ଧରି ରହି ପାରିବେନାହିଁ । ୬୮. (ପ୍ରକୃତରେ) ଯେଉଁ ବିଷୟରେ ଆପଣଙ୍କର (ସଂପୂର୍ଣ୍ଣ) ଜ୍ଞାନ ନାହିଁ, ସେ ବିଷୟରେ ଆପଣଙ୍କ ପକ୍ଷରେ ଧୈର୍ଯ୍ୟ ଅବଲମ୍ବନ କରିବା କିପରି ବା ସମ୍ଭବ ?" ୬୯. ମୁ'ସା କହିଲେ, "ଅଲ୍ଲାହ୍ ଚାହିଁଲେ ଆପଣ ମୋତେ ଜଣେ ଧୈର୍ଯ୍ୟବାନ ବ୍ୟକ୍ତି ରୂପେ ଦେଖିବେ ଏବଂ ମୁଁ କୌଣସି କଥାରେ ଆପଣଙ୍କର ଅବଜ୍ଞା କରିବିନାହିଁ ।" ୭୦. ସେ କହିଲେ, "ଆଚ୍ଛା, ଯଦି ଆପଣ ମୋ' ସହିତ ଯିବାକୁ ଚାହାନ୍ତି, ତେବେ (ମନେ ରଖିବେ ଯେ) ଯେପର୍ଯ୍ୟନ୍ତ ମୁଁ ନିଜେ କୌଣସି ବିଷୟରେ ଆଲୋଚନା ନକରିଛି, ମୋତେ ସେବିଷୟରେ ପ୍ରଶ୍ନ କରିବେ ନାହିଁ ।"

୭୧. ତା'ପରେ ଉଭୟେ ସେଠାରୁ ବାହାରିଲେ । ଯେତେବେଳେ ସେମାନେ ଏକ ଡଙ୍ଗାରେ ବସିଲେ, ସେହି ଭକ୍ତ ଜଣକ ସେଥିରେ ଗୋଟିଏ ଫାଟ ସୃଷ୍ଟି କରିଦେଲେ । ତେଣୁ ମୁ'ସା ତାଙ୍କୁ କହିଲେ, "କ'ଣ ଆପଣ ଯାତ୍ରୀମାନଙ୍କୁ ବୁଡ଼ାଇ ଦେବାଲାଗି ନୌକାରେ ଫାଟ ସୃଷ୍ଟି କଲେ ? ଆପଣ ଏକ ବିପଜ୍ଜନକ କାର୍ଯ୍ୟ କଲେ ।" ୭୨. ସେ ଉତ୍ତର ଦେଲେ, "କ'ଣ ଆପଣଙ୍କୁ ମୁଁ ଏହା କହି ନଥିଲି ଯେ ଆପଣ ମୋ' ସହିତ ଧୈର୍ଯ୍ୟ ଧରି ରହି ପାରିବେନାହିଁ ?" ୭୩. ମୁ'ସା କହିଲେ, "(ଦୟା କରି) ମୋ' ଦୋଷ ଧରନ୍ତୁ ନାହିଁ ଏବଂ ମୋତେ ଅସୁବିଧାରେ ପକାନ୍ତୁ ନାହିଁ ।"

୭୪. ତା'ପରେ ସେ ଦୁହେଁ ଆଗକୁ ଚାଲିଲେ । (ବାଟରେ) ସେମାନେ ଜଣେ ବାଳକକୁ ଭେଟିଲେ ଏବଂ ସେ ଭକ୍ତ ଜଣକ ସେହି ବାଳକଟିକୁ ହତ୍ୟା କରିଦେଲେ । ତେଣୁ ମୁ'ସା କହିଉଠିଲେ, "ଆପଣ ଜଣେ ନିର୍ଦ୍ଦୋଷ ବାଳକର ହତ୍ୟା କରିଦେଲେ ଯଦିଓ ସେ କାହାରି ପ୍ରାଣ ନେଇନାହିଁ ? ଆପଣ ଅବଶ୍ୟ ଏକ ଅନୁଚିତ କାର୍ଯ୍ୟ କଲେ ।"

୭୫. ସେ ଉତ୍ତର ଦେଲେ, "କ'ଣ ଆପଣଙ୍କୁ ମୁଁ ଏହା କହି ନଥିଲି ଯେ ଆପଣ ମୋ' ସହିତ ଧୈର୍ଯ୍ୟ ଧରି ରହି ପାରିବେନାହିଁ ?" ୭୬. ତେଣୁ ମୁ'ସା କହିଲେ, "ଯଦି ଏହା ପରେ ମୁଁ ଆପଣଙ୍କୁ କିଛି ପ୍ରଶ୍ନ କରେ, ତେବେ ଆପଣ ମୋତେ ଆଉ ସାଙ୍ଗରେ ରଖିବେ ନାହିଁ । ଆପଣଙ୍କୁ ମୋତେ ନରଖିବାର ଯଥେଷ୍ଟ କାରଣ ମିଳିସାରିଛି ।

୭୭. ସୁତରାଂ ଦୁହେଁ ପୁଣି ଚାଲିବାକୁ ଲାଗିଲେ । ଯେତେବେଳେ ସେମାନେ ଏକ ଗାଁରେ ପହଁଚିଲେ, ସେହି ଗ୍ରାମବାସୀମାନଙ୍କୁ କିଛି ଖାଦ୍ୟ ମାଗିଲେ କିନ୍ତୁ ସେମାନେ ଏମାନଙ୍କୁ ଆତିଥ୍ୟ ଦେବା ପାଇଁ ମନା କରିଦେଲେ । ପୁଣି ସେମାନେ ସେଠାରେ ଗୋଟିଏ କାନ୍ଥ ଦେଖିଲେ ଯାହା ପଡ଼ିଯିବା ଅବସ୍ଥାରେ ଥିଲା ଏବଂ ସେ ଭକ୍ତ ଜଣକ ତାକୁ (ମରାମତି କରି) ସଳଖ କରିଦେଲେ । ତେଣୁ ମୁ'ସା ତାଙ୍କୁ କହିଲେ, "ଆପଣ ଚାହିଁଲେ ଏହି କାର୍ଯ୍ୟ ପାଇଁ ସେମାନଙ୍କଠାରୁ ପାରିଶ୍ରମିକ ନେଇ ପାରନ୍ତେ ।" ୭୮. ସେ କହିଲେ, "ଏବେ ଆପଣଙ୍କର ଓ ମୋ'ର ବିଚ୍ଛେଦର ସମୟ ଆସିଗଲା । ଯେଉଁ ଘଟଣାଗୁଡ଼ିକ ଯୋଗୁଁ ଆପଣ ଅଧୈର୍ଯ୍ୟ ହୋଇ ପଡ଼ିଥିଲେ, ଏବେ ମୁଁ ସେଗୁଡ଼ିକର ବାସ୍ତବିକତା ଆପଣଙ୍କୁ ଜଣାଇ ଦେଉଛି । ୭୯. ସେହି ଡଙ୍ଗାଟି କେତେକ ଗରିବ ଲୋକଙ୍କର ଯେଉଁମାନେ ପେଟ ପୋଷିବା ପାଇଁ ସମୁଦ୍ର ଉପରେ ନିର୍ଭର କରନ୍ତି ଏବଂ କିଛି ଦୂରରେ ଜଣେ ଅତ୍ୟାଚାରୀ ରାଜା ରହେ ଯିଏ ଭଲ ଡଙ୍ଗାଗୁଡ଼ିକୁ ବଳପୂର୍ବକ ଛଡ଼ାଇ ନିଏ । ତେଣୁ, ମୁଁ ସେହି ଡଙ୍ଗାଟିର କିଛି ଅଂଶ ଭାଙ୍ଗି ଦେବାକୁ ସ୍ଥିର କଲି । ୮୦. ଏବଂ ସେହି ଯେଉଁ ବାଳକଟି ଥିଲା, ତା' ବାପାମାଆ ଈଶ୍ୱରବିଶ୍ୱାସୀ । ମୋ'ର ଆଶଙ୍କା ହେଲା ଯେ ସେ ବାଳକଟି (ଭବିଷ୍ୟତରେ) ନିଜର ଅହଙ୍କାର ଓ ଅବାଧ୍ୟତା ଯୋଗୁଁ ସେମାନଙ୍କୁ ପୀଡ଼ା ଦେବ । ୮୧. ତେଣୁ ମୁଁ ଚାହିଁଲି ଯେ ଈଶ୍ୱର ସେମାନଙ୍କୁ ତା' ବଦଳରେ ଏପରି ସନ୍ତାନଟିଏ ଦିଅନ୍ତୁ ଯିଏ ତା'ଠାରୁ ଅଧିକ ଶୁଦ୍ଧାଚାରୀ ହୋଇଥିବ ଏବଂ ସ୍ନେହପୂର୍ଣ୍ଣ ବ୍ୟବହାର କରୁଥିବ । ୮୨. ଏବଂ ସେହି କାନ୍ଥଟି ସେହି ସହରର ଦୁଇଟି ଅନାଥ ପିଲାଙ୍କର ଯାହା ତଳେ ସେମାନଙ୍କର ଧନ ପୋତା ହୋଇଛି । ସେମାନଙ୍କ ପିତା ଜଣେ ଧର୍ମପରାୟଣ ବ୍ୟକ୍ତି ଥିଲେ । ତେଣୁ ଆପଣଙ୍କର ଈଶ୍ୱର ଚାହିଁଲେ ଯେ ସେ ଦୁହେଁ ପ୍ରାପ୍ତବୟସ୍କ ହେଲା ପରେହିଁ ନିଜର ଧନ ବାହାର କରନ୍ତୁ । ଏହା ଆପଣଙ୍କ ଈଶ୍ୱରଙ୍କ କରୁଣାରୁ ହେଲା । ମୁଁ ନିଜ ଇଚ୍ଛାରେ କିଛି କରିନାହିଁ । ଏହାହିଁ ସେହି ଘଟଣାଗୁଡ଼ିକର ରହସ୍ୟ ଯାହା ସକାଶେ ଆପଣ ଅଧୈର୍ଯ୍ୟ ହୋଇ ପଡ଼ିଥିଲେ ।"

୮୩. (ହେ ବାର୍ତ୍ତାବହ!) ଲୋକମାନେ ତୁମକୁ ଜୁଲ୍‌କର୍‌ନୈନ୍‌ଙ୍କ ବିଷୟରେ ପଚାରୁଛନ୍ତି । ସେମାନଙ୍କୁ କୁହ, "ମୁଁ ତାଙ୍କ ବିଷୟରେ ତୁମମାନଙ୍କୁ କିଛି ପଢ଼ି ଶୁଣାଉଛି ।" ୮୪. ଆମ୍ଭେ ତାଙ୍କୁ ଦେଶରେ କ୍ଷମତା ଦେଇଥିଲୁ ଏବଂ ସବୁ

ପ୍ରକାରର ସାଧନ ଦେଇଥିଲୁ । ୮୫. ସୁତରାଂ, ସେ ଏକ ଅଭିଯାନରେ ବାହାରିଲେ । ୮୬. ଯେତେବେଳେ ସେ ଏଭଳି ଏକ ସ୍ଥାନରେ ପହଁଚିଲେ ଯେଉଁଠାରେ ସୂର୍ଯ୍ୟ ଅସ୍ତ ହେଉଥିଲା, ସେଠାରେ ତାଙ୍କୁ ଜଣାପଡ଼ିଲା ଯେମିତି ସୂର୍ଯ୍ୟ ଏକ କୃଷ୍ଣବର୍ଣ୍ଣର (ନଦୀ) ଜଳରେ ବୁଡ଼ିଯାଉଛି । ତାହାରି ନିକଟରେ ସେ ଗୋଟିଏ ସଂପ୍ରଦାୟର ଲୋକଙ୍କୁ ଦେଖିଲେ । ଆମ୍ଭେ ତାଙ୍କୁ କହିଲୁ, "ହେ ଜୁଲ୍‌କରନୈନ୍! ତୁମେ ସେମାନଙ୍କୁ ଦଣ୍ଡ ଦେଇପାର କିମ୍ବା ସେମାନଙ୍କ ସହିତ ଭଲ ବ୍ୟବହାର କରିପାର ।" ୮୭. ସେ କହିଲେ, "ସେମାନଙ୍କ ମଧ୍ୟରୁ ଯିଏ ଅନ୍ୟାୟ ଅତ୍ୟାଚାରର ବାଟ ଧରିବ, ଆମ୍ଭେ ତାକୁ ଦଣ୍ଡ ଦେବୁ । ତା'ପରେ ସେ ତା' ପ୍ରଭୁଙ୍କ ପାଖକୁ ଫେରିବ ଏବଂ ସେ ତାକୁ କଠୋର ଶାସ୍ତି ଦେବେ ।" ୮୮. (ଅନ୍ୟ ପକ୍ଷରେ) ଯିଏ (ଅଲ୍ଲାହଙ୍କୁ) ବିଶ୍ୱାସ କରିବ ଏବଂ ଭଲ କର୍ମ କରିବ ତାକୁ ଭଲ ପୁରସ୍କାର ମିଳିବ ଏବଂ ଆମ୍ଭେ ତାକୁ ସହଜ (କାର୍ଯ୍ୟର) ଆଦେଶ ଦେବୁ ।"

୮୯. ତା'ପରେ ସେ ଆଉ ଏକ ଅଭିଯାନରେ ବାହାରିଲେ । ୯୦. ସେ ଏଭଳି ଏକ ସ୍ଥାନରେ ପହଁଚିଲେ, ଯେଉଁଠି ସୂର୍ଯ୍ୟ ଉଦୟ ହେଉଥିଲା ଏବଂ ସେଠାରେ ଏଭଳି ସଂପ୍ରଦାୟର ଲୋକ ବସବାସ କରୁଥିଲେ, ଯେଉଁମାନଙ୍କ ପାଇଁ ଆମ୍ଭେ ଖରାରୁ ରକ୍ଷା ପାଇବାର କୌଣସି ବ୍ୟବସ୍ଥା କରି ନଥିଲୁ । ୯୧. ଘଟଣାଟି ଏହିପରି ଥିଲା । ଜୁଲକର୍‌ନୈନଙ୍କ ପାଖରେ ଯାହାକିଛି ଥିଲା ତାହା ଆମ୍ଭେ ଜାଣିଥିଲୁ ।

୯୨. ଏହାପରେ ସେ ପୁଣି (ଅନ୍ୟ ପଥରେ) ଅଗ୍ରସର ହେଲେ । ୯୩. ଯେତେବେଳେ ସେ ଦୁଇ ପାହାଡ଼ ମଝିରେ ପହଁଚିଲେ, ସେଠାରେ ସେ ଏଭଳି ଏକ ସଂପ୍ରଦାୟକୁ ଭେଟିଲେ ଯେଉଁମାନେ ତାଙ୍କ ଭାଷା ବୁଝି ପାରୁ ନଥିଲେ । ୯୪. ସେମାନେ ତାଙ୍କୁ କହିଲେ, "ହେ ଜୁଲକରନୈନ୍! ୟାଜୁଜ୍ ଓ ମାଜୁଜ୍ (ନାମକ ଦୁଇଟି) ସଂପ୍ରଦାୟ ଆମ ଅଂଚଳକୁ ଆସି ଭାରି ଉପଦ୍ରବ କରୁଛନ୍ତି । ଆମେମାନେ ଆପଣଙ୍କୁ (ଖର୍ଚ୍ଚ ବାବଦରେ) କିଛି ଧନ ଦେଉଛୁ, ଆପଣ ସେମାନଙ୍କ (ଅଂଚଳ) ଓ ଆମ (ଅଂଚଳ) ମଝିରେ ଗୋଟିଏ ପ୍ରାଚୀର ନିର୍ମାଣ କରିଦେବେ କି?" ୯୫. ସେ ଉତ୍ତର ଦେଲେ, "ଏ ଦୃଷ୍ଟିରୁ ମୋ' ଈଶ୍ୱର ମୋତେ ଯାହା ଦେଇଛନ୍ତି ତାହା ଯଥେଷ୍ଟ । ତୁମେମାନେ ଶ୍ରମଦାନ କରି ମୋତେ ସାହାଯ୍ୟ କର । ମୁଁ ତୁମ ଦୁଇ

ସଂପ୍ରଦାୟ ମଝିରେ ପ୍ରାଚୀରଟିଏ ନିର୍ମାଣ କରିଦେବି । ୯୬. ତୁମେମାନେ ମୋତେ ଲୁହା ଚଦର ଆଣିଦିଅ ।” ତା’ପରେ ଯେତେବେଳେ ସେ ଉଭୟ ପାହାଡ଼ ମଝିରେ ଥିବା ଖାଲି ସ୍ଥାନକୁ (ଲୁହା ଚାଦର ଦ୍ୱାରା) ବନ୍ଦ କରିଦେଲେ, ସେମାନଙ୍କୁ ଆଦେଶ ଦେଲେ, “ଏବେ ନିଆଁ ଜାଳ” । ଯେତେବେଳେ ଏହା ଉତପ୍ତ ହୋଇ ଲାଲ୍ ହୋଇଗଲା, ସେ କହିଲେ, “ଏବେ ତରଳ ତମ୍ବା ଆଣ ଯାହାକୁ ମୁଁ ତା’ଉପରେ ଢାଳିବି ।” ୯୭. ସୁତରାଂ, (ପ୍ରାଚୀରଟି ଏଭଳି ଶକ୍ତ ହୋଇଗଲା ଯେ) ୟାଜୂଜ୍ ଓ ମାଜୂଜ୍ (ସଂପ୍ରଦାୟ) ତାହା ଉପରେ ଚଢ଼ିବା କିମ୍ବା ସେଥିରେ ସୁଡ଼ଂଗ କରିବାକୁ ସମର୍ଥ ନଥିଲେ । ୯୮. ଜୁଲକରନୈନ୍ କହିଲେ, “ଏହା କେବଳ ମୋ’ ପ୍ରଭୁଙ୍କ କୃପା ଯୋଗୁଁ ହେଲା । ପୁଣି ଯେତେବେଳେ ତାଙ୍କ ଦ୍ୱାରା ସ୍ଥିର କରା ଯାଇଥିବା ସମୟ ଆସିବ, ସେ ଏହି ପ୍ରଚୀରକୁ ଭାଙ୍ଗି ଦେଇ ମାଟିରେ ମିଶାଇ ଦେବେ । ମୋ’ ଈଶ୍ୱରଙ୍କ ବଚନ ଅଟଳ ସତ୍ୟ ।”

୯୯. ସେଦିନ ଆମ୍ଭେ ସେମାନଙ୍କୁ ପରସ୍ପର ସହ ସଂଘର୍ଷ କରିବା ପାଇଁ ଛାଡ଼ିଦେବୁ । ତୂରୀନାଦ ହେବ ଏବଂ ଆମ୍ଭେ ସମସ୍ତଙ୍କୁ ଜମା କରି ଏକତ୍ରିତ କରିବୁ । ୧୦୦. ସେଦିନ ଆମ୍ଭେ ନର୍କକୁ ସେହି ଅଧର୍ମୀମାନଙ୍କ ସମ୍ମୁଖକୁ ନେଇଆସିବୁ, ୧୦୧. ଯେଉଁମାନେ (ସଂସାରରେ) ମୋ’ ଉପଦେଶ ପ୍ରତି ଆଖି ବୁଜି ଦେଇଥିଲେ ଏବଂ କିଛି ଶୁଣି ପାରୁ ନଥିଲେ ।

୧୦୨. କ’ଣ ନାସ୍ତିକମାନେ ଭାବୁଛନ୍ତି ଯେ ମୋତେ ଛାଡ଼ି ମୋ’ ଭକ୍ତମାନଙ୍କୁ ଆଶ୍ରୟଦାତା ରୂପେ ଗ୍ରହଣ କରିବେ? (ଜାଣିରଖ) ଏଭଳି ନାସ୍ତିକମାନଙ୍କ ପାଇଁ ଆମ୍ଭେ ନର୍କରେ ଆତିଥ୍ୟ ବ୍ୟବସ୍ଥା କରିଛୁ । ୧୦୩. ସେମାନଙ୍କୁ କୁହ, “କ’ଣ ମୁଁ ତୁମମାନଙ୍କୁ ସେମାନଙ୍କ ବିଷୟରେ କହିବି ଯେଉଁମାନେ ସେମାନଙ୍କ କର୍ମ ଯୋଗୁଁ କ୍ଷତିଗ୍ରସ୍ତ ହେବେ?” ୧୦୪. (ଏମାନେ ସେହି ଲୋକ) ଯେଉଁମାନଙ୍କର ସଂସାରରେ କରିଥିବା ସବୁ ପରିଶ୍ରମ ବୃଥା ହେଲା କିନ୍ତୁ ସେମାନେ ଭାବୁଛନ୍ତି ଯେ ସେମାନେ ଭଲ କର୍ମ କରୁଛନ୍ତି । ୧୦୫. ଏମାନେ ସେହି ଲୋକ ଯେଉଁମାନେ ସେମାନଙ୍କ ଈଶ୍ୱରଙ୍କର ବାଣୀକୁ ଏବଂ ତାଙ୍କ ସମ୍ମୁଖରେ ଉପସ୍ଥିତ ହେବାକୁ ଅସ୍ୱୀକାର କଲେ । ତେଣୁ, ସେମାନଙ୍କ ସବୁ କର୍ମ ବୃଥା ହୋଇଗଲା । ବିଚାର ଦିନ ଆମ୍ଭେ ସେମାନଙ୍କ ପ୍ରତି କୌଣସି ଗୁରୁତ୍ୱ ଦେବୁନାହିଁ ।

୧୦୬. ସେମାନଙ୍କର ଶାସ୍ତି ହେଉଛି ନର୍କ କାରଣ ସେମାନେ ସତ୍ୟକୁ ପ୍ରତ୍ୟାଖ୍ୟାନ କଲେ । ସେମାନେ ମୋ’ ବାଣୀ ସହିତ ଏବଂ ମୋ’ ବାର୍ତ୍ତାବହମାନଙ୍କ ସହିତ ଥଟ୍ଟା କଲେ । ୧୦୭. ଯେଉଁମାନେ (ମୋ’ ବାଣୀକୁ ଏବଂ ମୋ’ ବାର୍ତ୍ତାବହମାନଙ୍କୁ) ବିଶ୍ୱାସ କଲେ ଏବଂ ଭଲ କର୍ମ କଲେ, ସେମାନଙ୍କୁ ସ୍ୱର୍ଗର ଫିର୍‌ଦୌସ୍ (ନାମକ) ଉଦ୍ୟାନରେ ଆତିଥ୍ୟ ପ୍ରଦାନ କରାଯିବ । ୧୦୮. ସେମାନେ ସେଠାରେ ଅନନ୍ତ କାଳ ପାଇଁ ରହିବେ ଏବଂ ସେଠାରୁ ବାହାରିବାକୁ ଆଦୌ ଇଚ୍ଛା କରିବେନାହିଁ ।

୧୦୯. ସେମାନଙ୍କୁ କୁହ, “ଯଦି ମୋ’ ପାଳନକର୍ତ୍ତାଙ୍କ (ମହିମାର) କଥା ଲେଖିବା ପାଇଁ ଗୋଟିଏ ସମୁଦ୍ରର ଜଳ ମଧ୍ୟ କାଳିରେ ପରିଣତ ହୋଇଯାଏ ଏବଂ ଆମେ ସେହିପରି ଆଉ ଗୋଟିଏ ସମୁଦ୍ର ଆଣି ତା’ସହିତ ମିଶାଇ ଦେଉ, ତଥାପି ମୋ’ ଈଶ୍ୱରଙ୍କ କଥା ସରିବା ପୂର୍ବରୁ ତାହା ସରିଯିବ ।

୧୧୦. କହିଦିଅ, “ମୁଁ ତୁମମାନଙ୍କ ପରି ଜଣେ ମନୁଷ୍ୟ । ଅବଶ୍ୟ ମୋତେ ଦୈବବାଣୀ ହୁଏ ଯେ ତୁମମାନଙ୍କର ଈଶ୍ୱର ଜଣେ ଈଶ୍ୱର । ତେଣୁ ଯିଏ ନିଜ ପାଳନକର୍ତ୍ତାଙ୍କ ସହ ସାକ୍ଷାତ କରିବାର ଆଶା ରଖିଛି, ସେ ଭଲ କର୍ମ କରୁଥାଉ ଏବଂ ନିଜ ଈଶ୍ୱରଙ୍କ ସେବା-ଉପାସନାରେ ଅନ୍ୟ କାହାରିକୁ ଅଂଶୀଦାର ନକରୁ ।”

## ଅଧ୍ୟାୟ ୧୯, ମର୍‌ୟମ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. କାଫ୍-ହା-ୟା-ଐନ୍-ସ୍ୱାଦ୍ । ୨. ଏହା ତୁମ ପାଳନକର୍ତ୍ତାଙ୍କ କୃପାର ବର୍ଣ୍ଣନା ଯାହା ସେ ନିଜ ଭକ୍ତ ଜକରିୟାଙ୍କ ପ୍ରତି କରିଥିଲେ । ୩. ଯେତେବେଳେ ସେ ନିଜ ପାଳନକର୍ତ୍ତାଙ୍କୁ ଧୀର ସ୍ୱରରେ ଡାକିଥିଲେ, ୪. “ହେ ପ୍ରଭୁ! ବାର୍ଦ୍ଧକ୍ୟ ଯୋଗୁଁ ମୋ’ ହାଡ଼ ଦୁର୍ବଳ ହୋଇଯାଇଛି ଏବଂ ମୋ’ମୁଣ୍ଡର କେଶ ମଧ୍ୟ ଧଳା ହୋଇସାରିଛି ଏବଂ ପ୍ରଭୁ! ମୁଁ ତୁମକୁ ପ୍ରାର୍ଥନା କରି କେବେହେଲେ ନିରାଶ ହୋଇନାହିଁ । ୫. ମୋ’ ଅନ୍ତେ ମୋ’ ଆତ୍ମୀୟମାନଙ୍କ (ଅନୁଚିତ କାର୍ଯ୍ୟକଳାପ) ବିଷୟରେ ମୋତେ ଆଶଙ୍କା ହେଉଛି । ମୋ’ ପତ୍ନୀ ମଧ୍ୟ ବନ୍ଧ୍ୟା । ତେଣୁ ତୁମେ ନିଜ କୃପାରୁ ମୋତେ ଜଣେ ଉତ୍ତରାଧିକାରୀ ଦିଅ, ୬. ଯିଏ ମୋ’ର ଏବଂ ୟାକୁବଙ୍କ ବଂଶର ପ୍ରତିନିଧିତ୍ୱ କରିବ ଏବଂ ହେ ପ୍ରଭୁ! ତୁମେ ତାକୁ ନିଜର ପ୍ରିୟପାତ୍ର କର ।”

୭. ଅଲ୍ଲାହ୍ କହିଲେ, "ହେ ଜକରିୟା ! ଆମ୍ଭେ ତୁମକୁ ଏକ ପୁତ୍ର ସନ୍ତାନ ପ୍ରାପ୍ତିର ସୁସମାଚାର ଦେଉଛୁ ଯାହାର ନାମ ୟହ୍ୟା ହେବ । ଏହା ପୂର୍ବରୁ ଆମ୍ଭେ କାହାରିକୁ ଏହି ନାମରେ ନାମିତ କରିନାହୁଁ ।" ୮. ସେ କହିଲେ, "ହେ ପାଳନକର୍ତ୍ତା ! ମୋ ପତ୍ନୀ ବନ୍ଧ୍ୟା ଏବଂ ମୁଁ ମଧ୍ୟ ଅତିଶୟ ବୃଦ୍ଧ ହୋଇଯାଇଛି । ତେଣୁ ମୋର ପୁତ୍ର ହେବା କିପରି ସମ୍ଭବ ?" ୯. ଉତ୍ତର ମିଳିଲା "ଏହାହିଁ ହେବ । ତୁମ ପାଳନକର୍ତ୍ତା କହୁଛନ୍ତି, "ଏହା ମୋ'ପାଇଁ ଏକ ସାମାନ୍ୟ କାର୍ଯ୍ୟ ଏବଂ ଏହା ପୂର୍ବରୁ ମଧ୍ୟ ମୁଁ ତୁମକୁ ସୃଷ୍ଟି କରି ସାରିଛି, ଯେତେବେଳେ ତୁମର କୌଣସି ଅସ୍ତିତ୍ୱ ନଥିଲା ।" ୧୦. ଜକରିୟା ଅନୁରୋଧ କଲେ, "ହେ ପ୍ରଭୁ ! ମୋ' ପାଇଁ ଏହାର କୌଣସି ସଂକେତ ସ୍ଥିର କରିଦିଅ" । ଉତ୍ତର ମିଳିଲା, "ତୁମପାଇଁ ଏହାର ସଂକେତ ହେଉଛି ଯେ ତୁମେ ସୁସ୍ଥ ଥାଇ ମଧ୍ୟ ଲୋକମାନଙ୍କ ସହିତ ତିନି ରାତି ପର୍ଯ୍ୟନ୍ତ କଥାବାର୍ତ୍ତା କରି ପାରିବନାହିଁ ।" ୧୧. ସୁତରାଂ, ସେ ଉପାସନା କକ୍ଷରୁ ବାହାରି ନିଜ ସଂପ୍ରଦାୟର ଲୋକଙ୍କ ପାଖକୁ ଆସିଲେ ଏବଂ ଇଙ୍ଗିତରେ ସେମାନଙ୍କୁ କହିଲେ, "ସକାଳେ ଓ ସନ୍ଧ୍ୟାରେ ଅଲ୍ଲାହଙ୍କର ଗୁଣଗାନ କର ।"

୧୨. (ଆମ୍ଭେ ତାଙ୍କ ପୁତ୍ର ୟହ୍ୟାଙ୍କୁ କହିଥିଲୁ) "ହେ ୟହ୍ୟା ! ଆମ୍ଭ ଗ୍ରନ୍ଥକୁ ଦୃଢ଼ ଭାବରେ ଧରିଥାଅ ।" ଆମ୍ଭେ ତାଙ୍କୁ ପିଲାଦିନରୁ ବୁଦ୍ଧିମତା ପ୍ରଦାନ କରିଥିଲୁ । ୧୩. ଏବଂ ନିଜ କୃପାରୁ ତାଙ୍କୁ ବିନୟୀ ଓ ଶୁଦ୍ଧାଚାରୀ କରିଥିଲୁ । ସେ ଜଣେ ଧର୍ମପ୍ରାଣ ବ୍ୟକ୍ତି ଥିଲେ । ୧୪. ସେ ପିତାମାତାଙ୍କର ସେବା କରୁଥିଲେ ଏବଂ ଅହଙ୍କାରୀ ବା ଅବାଧ୍ୟ ନଥିଲେ । ୧୫. ତାଙ୍କର ମଂଗଳ ହେଲା, ଯେଉଁ ଦିନ ସେ ଜନ୍ମ ହେଲେ ଏବଂ ଯେଉଁଦିନ ସେ ମୃତ୍ୟୁଲାଭ କଲେ ଏବଂ (ସେଦିନ ମଧ୍ୟ ତାଙ୍କର ମଙ୍ଗଳ ହେବ) ଯେଉଁଦିନ ସେ ପୁନର୍ଜୀବନ ପାଇ ଉଠିବେ ।

୧୬. ଏହି ଗ୍ରନ୍ଥରେ ମରୟମଙ୍କ (ଅର୍ଥାତ୍ ମେରୀଙ୍କ) ବିଷୟରେ ଚର୍ଚ୍ଚା କର, ଯେତେବେଳେ ସେ ନିଜ ପରିଜନମାନଙ୍କୁ ଛାଡ଼ି ପୂର୍ବ ପଟେ ଥିବା ଏକ ଜାଗାକୁ ଚାଲି ଯାଇଥିଲେ, ୧୭. ଏବଂ ସେମାନଙ୍କୁ ଆଡ଼ କରିବା ପାଇଁ ଗୋଟିଏ ପରଦା ପକାଇ ଦେଇଥିଲେ । ତା'ପରେ ଆମ୍ଭେ ତାଙ୍କ ପାଖକୁ ଆମ୍ଭର ଦେବଦୂତଙ୍କୁ ପଠାଇଲୁ ଯିଏ ତାଙ୍କ ଆଗରେ ଏକ ପୂର୍ଣ୍ଣ ମାନବ ରୂପେ ଉଭା ହେଲେ । ୧୮.

ମରୟମ (ବିଚଳିତ ହୋଇ) କହିଲେ, "ଯଦି ତୁମକୁ ଈଶ୍ୱରଙ୍କର ଭୟ ଥାଏ (ତେବେ, ମୋ'ପାଖକୁ ଆସନା), ମୁଁ ତୁମଠାରୁ (ସୁରକ୍ଷିତ ରହିବାପାଇଁ) ଦୟାମୟଙ୍କର ଆଶ୍ରୟ ମାଗୁଛି ।" ୧୯. ଦେବଦୂତ କହିଲେ, "ମୁଁ ତୁମ ଈଶ୍ୱରଙ୍କ ଦ୍ୱାରା ପଠାଯାଇ ଥିବା ଜଣେ ଦେବଦୂତ ଏବଂ ମୁଁ ତୁମକୁ ଏକ ପବିତ୍ର ପୁତ୍ର ସନ୍ତାନ ଦେବାପାଇଁ ଆସିଛି ।" ୨୦. ମରୟମ୍ କହିଲେ, "ମୋ'ର ପୁତ୍ର ହେବା କିପରି ସମ୍ଭବ ? ମୋତେ ତ କୌଣସି ପୁରୁଷ ସ୍ପର୍ଶ କରିନାହିଁ (ଅର୍ଥାତ୍ ମୁଁ ବିବାହିତା ନୁହେଁ) କିମ୍ବା ମୁଁ ବ୍ୟଭିଚାରିଣୀ ମଧ୍ୟ ନୁହେଁ ? ୨୧. ସେ କହିଲେ, "ଏହାହିଁ ହେବ । ତୁମ ପାଳନକର୍ତ୍ତା କହୁଛନ୍ତି, "ଏହା ମୋ' ପାଇଁ ଏକ ସାମାନ୍ୟ କାର୍ଯ୍ୟ । ଏହାଦ୍ୱାରା ଆମ୍ଭେ ତାକୁ ମାନବଜାତି ପାଇଁ ଏକ ନିଦର୍ଶନ କରିବୁ ଯାହା (ସେମାନଙ୍କ ପାଇଁ) ଆମ୍ଭର ଏକ ବିଶେଷ କରୁଣା ହେବ । ଏହା ସ୍ଥିର ହୋଇ ସାରିଛି ।"

୨୨. ଏହାପରେ ତାଙ୍କର ଗର୍ଭ ରହିଗଲା ଏବଂ ସେ ସେହି ଅବସ୍ଥାରେ ଏକ ଦୂର ଜାଗାକୁ ଚାଲିଗଲେ । ୨୩. ପୁଣି ପ୍ରସବପୀଡ଼ା ଯୋଗୁଁ ସେ ଗୋଟିଏ ଖଜୁରୀ ଗଛର ଆଶ୍ରୟ ନେଲେ ଏବଂ (ଲୋକଲଜ୍ଜ୍ୟା ଭୟରେ) କହିବାକୁ ଲାଗିଲେ, "ହାୟ, କି ଭଲ ହୋଇଥାଆନ୍ତା ଯଦି ମୁଁ ଏହା ପୂର୍ବରୁ ମରି ଯାଇଥାଆନ୍ତି ବା ନିଶ୍ଚିହ୍ନ ହୋଇ ଯାଇଥାଆନ୍ତି !" ୨୪. ଏହି ସମୟରେ ସେହି ସ୍ଥାନର ତଳଭାଗରୁ ତାଙ୍କୁ ଶୂନ୍ୟବାଣୀ ହେଲା, "ଦୁଃଖ କରନାହିଁ । ତୁମ ପାଳନକର୍ତ୍ତା ତୁମ ନିକଟରେ ଏକ ଝର ସୃଷ୍ଟି କରି ଦେଇଛନ୍ତି । ୨୫. ଖଜୁରୀ ଗଛର ଗଣ୍ଡିକୁ ଧରି ହଲାଅ । ତୁମ ପାଇଁ ସେଥିରୁ ସଜ ଓ ପାଚିଲା ଖଜୁରୀ ଝଡ଼ିବ । ୨୬. ଏବେ ଖିଆପିଆ କର ଏବଂ (ପୁଅକୁ ଦେଖି) ଆଖି ଶୀତଳ କର । ଯଦି କୌଣସି ଲୋକକୁ ଦେଖ, ତାକୁ ଇଂଗିତରେ କହିଦିଅ ଯେ ମୁଁ ଦୟାମୟଙ୍କ ପାଇଁ ବ୍ରତ ମାନିଛି । ତେଣୁ ଆଜି ମୁଁ କୌଣସି ଲୋକ ସହିତ କଥାବାର୍ତ୍ତା କରିବିନାହିଁ ।"

୨୭. ପୁଣି ସେହି ଶିଶୁଟିକୁ (କୋଳରେ) ଧରି ନିଜ ସମାଜକୁ ଫେରିଲେ । ଲୋକମାନେ ତାଙ୍କୁ କହିଲେ, "ହେ ମରୟମ ! ତୁ ଭାରି ସାଂଘାତିକ କାର୍ଯ୍ୟ କଲୁ । ୨୮. ହେ ହାରୁନଙ୍କ ଭଉଣୀ ! ତୋ' ବାପା ଖରାପ ଲୋକ ନଥିଲେ କିମ୍ବା ତୋ' ମାଆ ମଧ୍ୟ ବ୍ୟଭିଚାରିଣୀ ନଥିଲେ ।" ୨୯. (ଏହା ଶୁଣି) ମରୟମ

ନିଜ ଶିଶୁ ଆଡ଼କୁ ଇଂଗିତ କଲେ । ସେମାନେ କହିଲେ, "ଆମେ କୋଳରେ ଥିବା ଶିଶୁଟି ସହିତ କିପରି କଥା ହେବୁ?" ୩୦. (ସେତିକିବେଳେ ହଠାତ୍ ଶିଶୁଟି କହିଉଠିଲା) "ମୁଁ ଅଲ୍ଲାହଙ୍କର ଜଣେ ସେବକ । ସେ ମୋତେ ଗ୍ରନ୍ଥ ଦେଇଛନ୍ତି ଏବଂ (ତାଙ୍କର) ବାର୍ତ୍ତାବହ ରୂପେ ନିଯୁକ୍ତ କରିଛନ୍ତି । ୩୧. ମୁଁ ଯେଉଁଠି ରହିଲେ ମଧ୍ୟ ମୋ' ପ୍ରତି ତାଙ୍କର ଆଶୀର୍ବାଦ ରହିଥିବ ଏବଂ ସେ ମୋତେ ବଂଚିଥିବା ପର୍ଯ୍ୟନ୍ତ ନମାଜ ସଂପାଦନ କରିବାର ଏବଂ ଜକାତ୍ ଦେବାର ଆଜ୍ଞା ଦେଇଛନ୍ତି । ୩୨. ସେ ମୋତେ ମୋ' ମାଆଙ୍କର ସେବାକାରୀ କରିଛନ୍ତି ଏବଂ ମୋତେ ନିଷ୍ଠୁର ବା ଅଧମ କରିନାହାନ୍ତି । ୩୩. ଯେଉଁଦିନ ମୁଁ ଜନ୍ମ ହେଲି, ମୋ'ର ମଙ୍ଗଳ ହେଲା ଏବଂ ଯେଉଁଦିନ ମୃତ୍ୟୁଲାଭ କରିବି ଏବଂ ଯେଉଁଦିନ ପୁନର୍ଜୀବିତ ହୋଇ ଉଠିବି, ସେଦିନ ମଧ୍ୟ ମୋ'ର ମଙ୍ଗଳ ହେବ ।"

୩୪. ଏହି ହେଉଛନ୍ତି ମରୟମ-ନନ୍ଦନ ଇସା (ଅର୍ଥାତ୍ ଯୀଶୁ) । ଏହାହିଁ ସେହି ସତ୍ୟ ଯାହା ବିଷୟରେ ଲୋକମାନେ ସନ୍ଦେହରେ ପଡ଼ିଛନ୍ତି । ୩୫. ପୁତ୍ରବାନ ହେବା ଅଲ୍ଲାହଙ୍କୁ ଶୋଭା ଦିଏନାହିଁ । ସେ ସଂପୂର୍ଣ୍ଣ ଦୋଷରହିତ । ଯେତେବେଳେ ସେ କୌଣସି କାର୍ଯ୍ୟର ନିଷ୍ପତ୍ତି ନିଅନ୍ତି, ତା' ପାଇଁ କେବଳ ଏତିକି କହନ୍ତି, "ହୋଇଯା" ଏବଂ ତାହା ହୋଇଯାଏ ।

୩୬. (ଯୀଶୁ କହିଥିଲେ) "ବାସ୍ତବରେ ଅଲ୍ଲାହହିଁ ମୋ'ର ଈଶ୍ୱର ଏବଂ ତୁମମାନଙ୍କର ମଧ୍ୟ ଈଶ୍ୱର । ତେଣୁ, ତୁମେମାନେ ତାଙ୍କରି ସେବା-ଉପାସନା କର । ଏହାହିଁ ଠିକ୍ ବାଟ ।" ୩୭. ଏହାସତ୍ତ୍ୱେ ସେମାନଙ୍କର ବିଭିନ୍ନ ଗୋଷ୍ଠୀ ପରସ୍ପର ମଧ୍ୟରେ ମତଭେଦ କଲେ । ତେଣୁ ଯେଉଁମାନେ ସତ୍ୟକୁ ଅସ୍ୱୀକାର କଲେ, ବିଚାର ଦିନ ସେମାନେ ଘୋର ଦୁର୍ଦ୍ଦଶା ଭୋଗିବେ । ୩୮. ଯେଉଁଦିନ ସେମାନେ ଆମ ସମ୍ମୁଖରେ ହାଜର ହେବେ, ସେଦିନ ସେମାନେ କି ସୁନ୍ଦର ଭାବରେ ଦେଖୁଥିବେ ଆଉ ଶୁଣୁଥିବେ ମାତ୍ର ଆଜି ଏହି ଦୁରାଚାରୀମାନେ ସଂପୂର୍ଣ ପଥଭ୍ରଷ୍ଟ ହୋଇ ଯାଇଛନ୍ତି । ୩୯. (ହେ ବାର୍ତ୍ତାବହ!) ସେମାନଙ୍କୁ ସେହି ଦିନ ବିଷୟରେ ସାବଧାନ କର, ଯେଉଁଦିନ ସେମାନେ ଅବଶୋଷ କରିବେ ଏବଂ ଘଟଣାର ନିଷ୍ପତ୍ତି କରିଦିଆଯିବ, ମାତ୍ର (ଆଜି) ସେମାନେ ଏହାକୁ ଉପେକ୍ଷା କରୁଛନ୍ତି ଏବଂ ସତ୍ୟକୁ

ମାନୁନାହାନ୍ତି । ୪୦. ଶେଷରେ ଆମ୍ଭେ ହିଁ ପୃଥିବୀ ଏବଂ ପୃଥିବୀବାସୀଙ୍କର ଅଧିକାରୀ ହୋଇ ରହିବୁ ଏବଂ ଆମ୍ଭରି ପାଖକୁ ସମସ୍ତଙ୍କୁ ଫେରିବାକୁ ହେବ ।

୪୧. ଏହି ଗ୍ରନ୍ଥରେ ଥିବା ଇବ୍ରାହିମଙ୍କ (ଅର୍ଥାତ୍ ଆବ୍ରାହମଙ୍କ) ବିଷୟ ବର୍ଣ୍ଣନା କର । ସେ ଅବଶ୍ୟ ଜଣେ ସତ୍ୟନିଷ୍ଠ ବ୍ୟକ୍ତି ଥିଲେ ଏବଂ ଜଣେ ବାର୍ତ୍ତାବହ ମଧ୍ୟ ଥିଲେ । ୪୨. ଯେତେବେଳେ ସେ ତାଙ୍କ ପିତାଙ୍କୁ କହିଥିଲେ, "ବାପା ! ତୁମେ କାହିଁକି ଏଭଳି ବସ୍ତୁଗୁଡ଼ିକର ପୂଜା-ଅର୍ଚ୍ଚନା କରୁଛ ଯେଉଁମାନେ କିଛି ଶୁଣନ୍ତିନାହିଁ କି ଦେଖନ୍ତିନାହିଁ କିମ୍ବା ତୁମର କୌଣସି ଉପକାର କରିପାରନ୍ତି ନାହିଁ ? ୪୩. ବାପା ! ମୋତେ ଏଭଳି ଜ୍ଞାନ ଦିଆଯାଇଛି ଯାହା ତୁମକୁ ଦିଆ ଯାଇନାହିଁ । ତେଣୁ ମୋ' କଥା ମାନ, ମୁଁ ତୁମକୁ ଠିକ୍ ବାଟ ଦେଖାଇ ଦେବି । ୪୪. ହେ ବାପା ! ଶଇତାନର ପୂଜା କରନାହିଁ । ଶଇତାନ ଦୟାମୟଙ୍କର ଅତି ଅବାଧ । ୪୫. ହେ ବାପା ! ମୋତେ ଭୟ ଲାଗୁଛି ଯେ ହୁଏତ ତୁମେ ଦୟାମୟଙ୍କ ଦ୍ୱାରା ଦଣ୍ଡିତ ହେବ ଏବଂ ଶଇତାନର ସହଚର ହୋଇଯିବ ।" ୪୬. (ତାଙ୍କ ପିତା) କହିଲେ "ହେ ଇବ୍ରାହିମ ! କ'ଣ ତୁ ମୋ' ଆରାଧ୍ୟମାନଙ୍କର ବିରୋଧ କରୁଛୁ ? ଯଦି ତୁ ଏଥିରୁ କ୍ଷାନ୍ତ ନହେଉ ମୁଁ ନିଶ୍ଚୟ ପଥର ମାରି ତୋ'ପ୍ରାଣ ନେଇଯିବି । ତୁ ସବୁଦିନ ପାଇଁ ମୋ' ପାଖରୁ ଦୂର ହୋଇଯା' ।" ୪୭. (ଏହା ଶୁଣି) ଇବ୍ରାହିମ କହିଲେ, "ତୁମର ମଂଗଳ ହେଉ । ମୁଁ ଈଶ୍ୱରଙ୍କ ନିକଟରେ ତୁମ ପାଇଁ କ୍ଷମା ପ୍ରାର୍ଥନା କରିବି । ସେ ମୋ'ପ୍ରତି ଭାରି ଦୟାଳୁ ।" ୪୮. (ପୁନଶ୍ଚ କହିଲେ) "ମୁଁ ତୁମମାନଙ୍କୁ ଛାଡ଼ି ଯାଉଛି ଏବଂ ସେମାନଙ୍କୁ ମଧ୍ୟ, ଯେଉଁମାନଙ୍କୁ ତୁମେ ଅଲ୍ଲାହ୍‌ଙ୍କ ପରିବର୍ତ୍ତେ ଡାକ । ମୁଁ କେବଳ ମୋ' ପାଳନକର୍ତ୍ତାଙ୍କୁ ଡାକିବି ଏବଂ ଆଶା କରୁଛି ଯେ ମୋ' ପ୍ରଭୁଙ୍କୁ ପ୍ରାର୍ଥନା କରି ମୁଁ କଦାପି ନିରାଶ ହେବିନାହିଁ ।" ୪୯. ଯେତେବେଳେ ଇବ୍ରାହିମ ସେମାନଙ୍କଠାରୁ ଏବଂ ସେହି ଆରାଧ୍ୟମାନଙ୍କଠାରୁ ଅଲଗା ହୋଇଗଲେ ଯେଉଁମାନଙ୍କୁ ସେମାନେ ଅଲ୍ଲାହ୍‌ଙ୍କ ପରିବର୍ତ୍ତେ ପୂଜା କରୁଥିଲେ, ସେତେବେଳେ ଆମ୍ଭେ ତାଙ୍କୁ ଇସହାକ୍ ଓ ୟାକୁବ୍ (ନାମକ ସନ୍ତାନ) ପ୍ରଦାନ କଲୁ ଏବଂ ଉଭୟଙ୍କୁ ବାର୍ତ୍ତାବହ ନିଯୁକ୍ତ କଲୁ । ୫୦. ଆମ୍ଭେ ସେମାନଙ୍କ ପ୍ରତି ଅନେକ ଅନୁଗ୍ରହ କଲୁ ଏବଂ ସେମାନଙ୍କର ସୁନାମ ବୃଦ୍ଧି କଲୁ ।

୫୧. ଏହି ଗ୍ରନ୍ଥରେ ମୁ'ସାଙ୍କ ବିଷୟ ମଧ୍ୟ ଆଲୋଚନା କର । ସେ ଅବଶ୍ୟ ଆମ୍ଭର ଜଣେ ମନୋନୀତ ରସୁଲ ତଥା ଜଣେ ବାର୍ତ୍ତାବହ ଥିଲେ । ୫୨. ଆମ୍ଭେ ତାଙ୍କୁ (ସିନାଇ) ପାହାଡ଼ର ଦକ୍ଷିଣ ପାର୍ଶ୍ୱରୁ ଡାକିଥିଲୁ ଏବଂ ତାଙ୍କ ସହିତ ବାର୍ତ୍ତାଳାପ କରି ତାଙ୍କୁ ଆମ୍ଭର ସାନ୍ନିଧ୍ୟ ପ୍ରଦାନ କରିଥିଲୁ, ୫୩. ଏବଂ ନିଜ କୃପାରୁ ତାଙ୍କ ପାଇଁ ତାଙ୍କ ଭାଇ ହାରୁନଙ୍କୁ ଜଣେ ବାର୍ତ୍ତାବହ ରୂପେ ନିଯୁକ୍ତ କରିଥିଲୁ ।

୫୪. ଏହି ଗ୍ରନ୍ଥରେ ଥିବା ଇସ୍‌ମାଇଲଙ୍କ ବିଷୟରେ ମଧ୍ୟ ଚର୍ଚ୍ଚା କର । ସେ ସର୍ବଦା ନିଜର ପ୍ରତିଶ୍ରୁତି ପାଳନ କରୁଥିଲେ । ସେ ଜଣେ ରସୁଲ ତଥା ଜଣେ ବାର୍ତ୍ତାବହ ମଧ୍ୟ ଥିଲେ । ୫୫. ସେ ନିଜ ପରିବାରକୁ (ନିୟମିତ) ନମାଜ ସଂପାଦନ କରିବାର ଏବଂ ଜକାତ୍ ଦେବାର ଉପଦେଶ ଦେଉଥିଲେ ଏବଂ ସେ ନିଜ ଈଶ୍ୱରଙ୍କ ଅତି ପ୍ରିୟ ଥିଲେ । ୫୬. ଏହି ଗ୍ରନ୍ଥରେ ଥିବା ଇଦ୍‌ରୀସ୍‌ଙ୍କ ବିଷୟ ମଧ୍ୟ ବର୍ଣ୍ଣନା କର । ସେ ଜଣେ ସତ୍ୟନିଷ୍ଠ ବ୍ୟକ୍ତି ଥିଲେ ଏବଂ ଜଣେ ବାର୍ତ୍ତାବହ ମଧ୍ୟ ଥିଲେ । ୫୭. ଆମ୍ଭେ ତାଙ୍କର ଗୌରବ ବୃଦ୍ଧି କରିଥିଲୁ ।

୫୮. ଆଦମଙ୍କ ସନ୍ତାନମାନଙ୍କ ମଧ୍ୟରୁ ଏମାନେ ସେହି ବାର୍ତ୍ତାବହ ଯେଉଁମାନଙ୍କୁ ଅଲ୍ଲାହ୍ ପୁରସ୍କୃତ କଲେ ଏବଂ ଏମାନେ ସେମାନଙ୍କର ସନ୍ତାନ, ଯେଉଁମାନଙ୍କୁ ଆମ୍ଭେ ନୁହଙ୍କ ସହିତ ନୌକାରେ ବସାଇଥିଲୁ ଏବଂ ଏମାନେ ଇବ୍ରାହିମ ଓ ଇସ୍ରାଇଲଙ୍କର ମଧ୍ୟ ବଂଶଧର । ଆମ୍ଭେ ଏମାନଙ୍କର ମାର୍ଗଦର୍ଶନ କରିଥିଲୁ ଏବଂ (ନିଜ କାର୍ଯ୍ୟ ପାଇଁ) ଏମାନଙ୍କୁ ମନୋନୀତ କରିଥିଲୁ । ଯେତେବେଳେ ସେମାନଙ୍କ ପାଖରେ ଦୟାମୟଙ୍କ ବାଣୀ ପାଠ କରା ଯାଉଥିଲା, ସେମାନେ କାନ୍ଦିକାନ୍ଦି (ଅଲ୍ଲାହଙ୍କୁ) ପ୍ରଣାମ କରୁଥିଲେ । [ପ୍ରଣାମ]

୫୯. ପୁଣି ସେମାନଙ୍କ ପରେ ଏଭଳି (ଅଯୋଗ୍ୟ) ଲୋକମାନେ ଆସିଲେ ଯେଉଁମାନେ ନମାଜ ଛାଡ଼ିଦେଲେ ଏବଂ ଇନ୍ଦ୍ରିୟ ବଶବର୍ତ୍ତୀ ହୋଇଗଲେ । ସେମାନେ ଶୀଘ୍ର ନିଜର ସର୍ବନାଶ ଦେଖିବେ । ୬୦. ମାତ୍ର ଯେଉଁମାନେ ପଶ୍ଚାତାପ କଲେ, ବିଶ୍ୱାସ ରଖିଲେ ଏବଂ ଭଲ କର୍ମ କଲେ, ଏଭଳି ଲୋକମାନେ ବୈକୁଣ୍ଠକୁ ଯିବେ ଏବଂ ସେମାନଙ୍କ ପ୍ରତି ତିଳେହେଲେ ଅନ୍ୟାୟ ହେବନାହିଁ । ୬୧. ସେମାନେ ନିତ୍ୟ ବୈକୁଣ୍ଠର ଉଦ୍ୟାନରେ ପ୍ରବେଶ କରିବେ ଯାହାକୁ ସେମାନେ ଦେଖିନାହାନ୍ତି ।

ଏହି ପ୍ରତିଶ୍ରୁତି ଦୟାମୟ ନିଜର ଭକ୍ତମାନଙ୍କୁ ଦେଇଛନ୍ତି । ତାଙ୍କର ପ୍ରତିଶ୍ରୁତି ନିଶ୍ଚୟ ପୂରଣ ହେବ । ୬୨. ସେମାନେ ସେଠାରେ କେବଳ ଭଲ କଥା ଶୁଣିବେ କିନ୍ତୁ କୌଣସି ମନ୍ଦ କଥା ଶୁଣିବେନାହିଁ ଏବଂ ସେମାନଙ୍କୁ ସଂଜ-ସକାଳେ ଆହାର ମିଳିବ । ୬୩. ଏହା ସେହି ସ୍ୱର୍ଗ ଯାହାର ଅଧିକାରୀ ଆମ୍ଭେ ଆମ୍ଭର ସେହି ଭକ୍ତମାନଙ୍କୁ କରିବୁ ଯେଉଁମାନେ କୁକର୍ମରୁ ବିରତ ରହୁଥିବେ ।

୬୪. (ଦେବଦୂତ କହିଲେ) "ଆମେମାନେ ତୁମ ପାଳନକର୍ତ୍ତାଙ୍କ ଅନୁମତି ବିନା (ଭୂପୃଷ୍ଠରେ) ଅବତରଣ କରୁନା । ଆମ ଆଗରେ, ପଛରେ ଏବଂ ମଝିରେ ଯାହାକିଛି ଅଛି, ସେସବୁ ତାଙ୍କରି । ତୁମ ପ୍ରଭୁ କିଛି ଭୁଲନ୍ତି ନାହିଁ । ୬୫. ପୃଥିବୀ ଓ ଆକାଶ ଏବଂ ତାହା ମଧ୍ୟରେ ଯାହାକିଛି ଅଛି, ସେଗୁଡ଼ିକର ସେ ହିଁ ମାଲିକ । ତେଣୁ, ତୁମେ ତାଙ୍କରି ଉପାସନା କର ଏବଂ ତାଙ୍କ ସେବାରେ ଲାଗିଥାଅ । କ'ଣ ତାଙ୍କ ପରି କେହି ଥିବାର ତୁମେ ଜାଣିଛ ?"

୬୬. ମନୁଷ୍ୟ କହେ, "ଯଦି ମୁଁ ମରିଯାଏ, ସତରେ କ'ଣ ପୁଣି ପୁନର୍ଜୀବିତ ହୋଇ ଉଠିବି ?" ୬୭. କ'ଣ ମନୁଷ୍ୟର ଏହା ମନେନାହିଁ ଯେ ଆମ୍ଭେ ଏହା ପୂର୍ବରୁ ମଧ୍ୟ ତାକୁ ସୃଷ୍ଟି କରିସାରିଛୁ ଯେତେବେଳେ ତା'ର କୌଣସି ଅସ୍ତିତ୍ୱ ନଥିଲା ? ୬୮. ତୁମ ପ୍ରଭୁଙ୍କ ରାଣ ! ଆମ୍ଭେ ସେମାନଙ୍କୁ ଏବଂ (ସେମାନଙ୍କ) ଶଇତାନମାନଙ୍କୁ (ପୁନର୍ଜୀବିତ କରି) ଏକାଠି କରିବୁ ଏବଂ ସମସ୍ତଙ୍କୁ ଆଣ୍ଠେଇ ଥିବା ଅବସ୍ଥାରେ ନର୍କର ଚାରିପାଖରେ ଆଣି ପକାଇଦେବୁ । ୬୯. ପୁଣି ପ୍ରତ୍ୟେକ ସମାଜରୁ ସେହି ଲୋକମାନଙ୍କୁ ବାଛିବାଛି ଅଲଗା କରିବୁ ଯେଉଁମାନେ ଦୟାମୟଙ୍କ ପାଖରେ ଅହଙ୍କାର କରୁଥିଲେ । ୭୦. ଆମ୍ଭକୁ ଏହା ଭଲ ରୂପେ ଜଣା ଯେ ସେମାନଙ୍କ ମଧ୍ୟରୁ କେଉଁମାନେ ନର୍କ ପାଇଁ ଅଧିକ ଉପଯୁକ୍ତ । ୭୧. ତୁମମାନଙ୍କ ମଧ୍ୟରୁ ପ୍ରତ୍ୟେକ ବ୍ୟକ୍ତିକୁ ନର୍କ ପାରି ହେବାକୁ ପଡ଼ିବ । ଏହା ତୁମ ପ୍ରଭୁଙ୍କର ଏକ ଅଟଳ ନିଷ୍ପତ୍ତି ଯାହା ନିଶ୍ଚୟ କାର୍ଯ୍ୟକାରୀ ହେବ । ୭୨. ପୁଣି ଆମ୍ଭେ ସଦାଚାରୀ ଲୋକମାନଙ୍କୁ ରକ୍ଷା କରିବୁ ଏବଂ ଦୁରାଚାରୀମାନଙ୍କୁ ସେଥିରେ ଆଣ୍ଠେଇ ପଡ଼ିଥିବା ଅବସ୍ଥାରେ ଛାଡ଼ିଦେବୁ ।

୭୩. ଯେତେବେଳେ ସେମାନଙ୍କ ପାଖରେ ଆମ୍ଭର ବାଣୀ ପାଠ କରାଯାଏ, ନାସ୍ତିକମାନେ ସଦ୍‌ବିଶ୍ୱାସୀମାନଙ୍କୁ (ବିଦ୍ରୂପ କରି) କହନ୍ତି, "କହିଲ,

ଆମ ଦୁଇ ପକ୍ଷ ମଧ୍ୟରୁ କାହାର ସାମାଜିକ ପ୍ରତିଷ୍ଠା ଭଲ ଏବଂ କାହାର ବୈଠକ ଭଲ ଜମିଥାଏ ?" ୭୪. ଏମାନଙ୍କ ପୂର୍ବରୁ ଅନେକ ସମାଜ ଆମ୍ଭେ ଧ୍ୱଂସ କରିଦେଇଛୁ ଯେଉଁମାନଙ୍କର ଧନସମ୍ପତ୍ତି ଓ ଆଟବାଟ ଏମାନଙ୍କଠାରୁ ଯଥେଷ୍ଟ ବେଶୀ ଥିଲା। ୭୫. କହିଦିଅ, "ଯିଏ ପଥଭ୍ରଷ୍ଟ ହୋଇଯାଏ, ଦୟାମୟ ଅଲ୍ଲାହ୍ ତାକୁ ଦୀର୍ଘ ସମୟ ପର୍ଯ୍ୟନ୍ତ ସୁଯୋଗ ଦିଅନ୍ତି। ଯେତେବେଳେ ସେମାନେ ଦୈବୀବିପର୍ଯ୍ୟୟ ବା ପ୍ରଳୟ ଦେଖିବେ ଯାହା ବିଷୟରେ ସେମାନଙ୍କୁ ପୂର୍ବରୁ ସତର୍କ କରାଯାଇ ଥିଲା, ସେତେବେଳେ ଭଲରୂପେ ଜାଣିଯିବେ ଯେ କିଏ ମର୍ଯ୍ୟାଦାହୀନ ଏବଂ କାହାର ଦଳ ଦୁର୍ବଳ।" ୭୬. ଯେଉଁମାନେ ସତପଥରେ ଥାଆନ୍ତି, ଅଲ୍ଲାହ୍ ସେମାନଙ୍କୁ ଅଧିକ ସଦ୍‌ବୁଦ୍ଧି ଦିଅନ୍ତି ଏବଂ ପୁଣ୍ୟ, ଯାହା ଚିରସ୍ଥାୟୀ, ତାହା ଈଶ୍ୱରଙ୍କ ନିକଟରେ ପୁରସ୍କାର ଓ ପରିଣାମ ଦୃଷ୍ଟିରୁ ଯଥେଷ୍ଟ ଭଲ।

୭୭. କ'ଣ ତୁମେ ସେହି ଲୋକକୁ ଦେଖିଲ ଯିଏ ଆମ୍ଭର ବାଣୀକୁ ଅସ୍ୱୀକାର କଲା ଏବଂ କହିଲା, "(ଯଦି ମୁଁ ପୁନର୍ଜୀବନ ପାଏ, ତେବେ) ସେଠାରେ ମଧ୍ୟ ମୋତେ ଧନ ଓ ସନ୍ତାନ ଲାଭ ହେବ।" ୭୮. କ'ଣ ସେ ଅଦୃଶ୍ୟ ଜଗତ ବିଷୟରେ ଜାଣିନେଇଛି ବା ଦୟାମୟଙ୍କଠାରୁ କୌଣସି ପ୍ରତିଶ୍ରୁତି ପାଇଛି ? ୭୯. କଦାପି ନୁହେଁ। ତା' କଥାକୁ ଆମ୍ଭେ ଲେଖି ରଖିବୁ ଏବଂ ତା' ଶାସ୍ତି ବୃଦ୍ଧି କରି ଚାଲିଥିବୁ। ୮୦. ଯେଉଁ ବିଷୟରେ ସେ ଏହା କହୁଛି, ସେଗୁଡ଼ିକ ସବୁ ଆମରି ପାଖରେ ରହିଯିବ ଏବଂ ସେ ଆମ୍ଭ ପାଖକୁ ଏକୁଟିଆ ଆସିବ।

୮୧. ସେମାନେ ଅଲ୍ଲାହଙ୍କୁ ଛାଡ଼ି ଅନ୍ୟମାନଙ୍କୁ ଏଇଥିପାଇଁ ଉପାସ୍ୟ ରୂପେ ଗ୍ରହଣ କରିନେଇଛନ୍ତି ଯେ ସେମାନଙ୍କ ଦ୍ୱାରା ଏମାନଙ୍କୁ ମାନସମ୍ମାନ ମିଳିବ। ୮୨. କଦାପି ନୁହେଁ। ସେମାନେ ଏମାନଙ୍କ ପୂଜା-ଅର୍ଚ୍ଚନାକୁ ଅସ୍ୱୀକାର କରିଦେବେ ଏବଂ ଓଲଟା ଏମାନଙ୍କର ବିରୋଧୀ ହୋଇଯିବେ।

୮୩. କ'ଣ ତୁମେ ଦେଖୁନାହଁ ଯେ ଆମ୍ଭେ କିପରି ଅଧର୍ମୀମାନଙ୍କ ପଛରେ ଶଇତାନମାନଙ୍କୁ ଲଗାଇ ଦେଇଛୁ ଯେଉଁମାନେ ସେମାନଙ୍କୁ (କୁକର୍ମ କରିବାକୁ) ପ୍ରରୋଚିତ କରୁଥାଆନ୍ତି ? ୮୪. ତେଣୁ, ତୁମେ ସେମାନଙ୍କ ବିଷୟରେ ଅଧୈର୍ଯ୍ୟ ହୁଅନାହିଁ। ଆମ୍ଭେ ତ ସେମାନଙ୍କ (ଶାସ୍ତି ବିଧାନ) ପାଇଁ ଦିନ ଗଣୁଛୁ।

୮୫. ସେଦିନ ଆମ୍ଭେ ସଦାଚାରୀମାନଙ୍କୁ ସମ୍ମାନିତ ଅତିଥି ରୂପେ ଦୟାମୟଙ୍କ ସମ୍ମୁଖରେ ଏକତ୍ରିତ କରିବୁ, ୮୬. ଏବଂ ପାପୀମାନଙ୍କୁ ତୃଷାର୍ତ୍ତ ଅବସ୍ଥାରେ ନର୍କ ଆଡ଼କୁ ଘଉଡ଼ାଇ ନେବୁ। ୮୭. (ସେଦିନ) ସୁପାରିଶ କରିବାର ଅଧିକାର କାହାରି ନଥିବ, ମାତ୍ର ସେହି କେବଳ (ସୁପାରିଶ) କରିପାରିବ ଯିଏ ଦୟାମୟଙ୍କଠାରୁ ଅନୁମତି ନେଇଥିବ।

୮୮. ସେମାନେ କହୁଛନ୍ତି ଯେ ଦୟାମୟଙ୍କର ପୁତ୍ରଟିଏ ଅଛି। ୮୯. ବାସ୍ତବରେ ତୁମେମାନେ ବଡ଼ ସାଂଘତିକ କଥା କହିଲ। ୯୦. ହୁଏତ ଏଥିଯୋଗୁଁ ଆକାଶ ଭାଙ୍ଗିପଡ଼ିବ ବା ଧରିତ୍ରୀ ଫାଟିଯିବ କିମ୍ବା ପାହାଡ଼ପର୍ବତ ଖଣ୍ଡଖଣ୍ଡ ହୋଇଯିବ। ୯୧. କାରଣ ସେମାନେ ଦୟାମୟଙ୍କ ପ୍ରତି ଆରୋପ କରୁଛନ୍ତି ଯେ ତାଙ୍କର ପୁତ୍ରଟିଏ ଅଛି, ୯୨. କିନ୍ତୁ ପୁତ୍ରବାନ ହେବା ଦୟାମୟଙ୍କ ମର୍ଯ୍ୟାଦାର ପରିପନ୍ଥୀ। ୯୩. ପୃଥିବୀ ଓ ଆକାଶରେ ଯେଉଁମାନେ ଅଛନ୍ତି, ସମସ୍ତେ ଦୟାମୟଙ୍କ ସମ୍ମୁଖରେ ତାଙ୍କ ଦାସ ରୂପେ ଉପସ୍ଥିତ ହେବେ। ୯୪. ତାଙ୍କୁ ସେମାନଙ୍କର ସଂଖ୍ୟା ଜଣା ଅଛି ଏବଂ ସେ ସେମାନଙ୍କୁ (ଗୋଟିଗୋଟି କରି) ଗଣି ରଖିଛନ୍ତି। ୯୫. ସେମାନେ ସମସ୍ତେ ବିଚାର ଦିନ ତାଙ୍କ ସମ୍ମୁଖରେ ଜଣଜଣ ହୋଇ ଉପସ୍ଥିତ ହେବେ।

୯୬. ଯେଉଁମାନେ (ଅଲ୍ଲାହଙ୍କୁ) ବିଶ୍ୱାସ କରନ୍ତି ଏବଂ ଭଲ କର୍ମ କରନ୍ତି, ଦୟାମୟ ସେମାନଙ୍କ ପାଇଁ (ଲୋକମାନଙ୍କ ମନରେ) ପ୍ରେମ ଜାତ କରିଦେବେ। ୯୭. (ହେ ବାର୍ତ୍ତାବହ!) ଆମ୍ଭେ ଏହି କୁରଆନକୁ ତୁମରି ଭାଷାରେ ସରଳ କରିଦେଇଛୁ ଯାହାଫଳରେ ଏହାଦ୍ୱାରା ତୁମେ ସଦାଚାରୀ ଲୋକମାନଙ୍କୁ (ସ୍ୱର୍ଗର) ସୁସମାଚାର ଦେବ ଏବଂ କଳହପ୍ରିୟ ଲୋକମାନଙ୍କୁ ସାବଧାନ କରିବ। ୯୮. ଏମାନଙ୍କ ପୂର୍ବରୁ ଆମ୍ଭେ ଅନେକ ସମାଜ ଧ୍ୱଂସ କରିଦେଇଛୁ। କ'ଣ ସେମାନଙ୍କ ମଧ୍ୟରୁ ତୁମକୁ କାହାରି ଚିହ୍ନବର୍ଣ୍ଣ ମିଳୁଛି ବା କାହାରି ସ୍ୱରଶବ୍ଦ ଶୁଭୁଛି ?

## ଅଧ୍ୟାୟ ୨୦, ତା'ହା

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ତା-ହା। ୨. ଆମ୍ଭେ ତୁମ ପାଖକୁ ଏଥିପାଇଁ କୁରଆନ ପଠାଇନାହୁଁ ଯେ ତୁମକୁ କଷ୍ଟ ହେଉ, ୩. ବରଂ ସେହି ବ୍ୟକ୍ତିକୁ ଉପଦେଶ ଦେବା ଉଦ୍ଦେଶ୍ୟରେ ପଠାଇଛୁ ଯିଏ (ଅଲ୍ଲାହଙ୍କୁ) ଭୟ କରେ। ୪. ଏହା ତାଙ୍କରି ଦ୍ୱାରା ଅବତୀର୍ଣ୍ଣ ହୋଇଛି ଯିଏ (ବିଶାଳ) ପୃଥିବୀ ଓ ସୁଉଚ୍ଚ ଆକାଶ ସୃଷ୍ଟି କରିଛନ୍ତି। ୫. ସେ ଅତ୍ୟନ୍ତ କୃପାଶୀଳ ଯିଏ ଦିବ୍ୟସିଂହାସନରେ ଅଧିଷ୍ଠିତ। ୬. ଯାହା ପୃଥିବୀ ଓ ଆକାଶରେ ଅଛି ଏବଂ ଯାହା ସେଗୁଡ଼ିକ ମଝିରେ ଅଛି ଏବଂ ଯାହା ଭୂଗର୍ଭରେ ରହିଛି, ସବୁ ତାଙ୍କରି। ୭. ତୁମେ ବଡ଼ ପାଟିରେ କଥା କୁହ (ବା ଧୀରେ କୁହ), ସେ ପ୍ରତ୍ୟେକ ଗୋପନ କଥା ଏବଂ ଅତି ଗୋପନ କଥା ମଧ୍ୟ ଜାଣନ୍ତି। ୮. ସେ ଅଲ୍ଲାହ୍, ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହାନ୍ତି। ତାଙ୍କର ଭଲଭଲ ନାଁ ଅଛି।

୯. (ହେ ବାର୍ତ୍ତାବହ!) କ'ଣ ତୁମକୁ ମୁ'ସାଙ୍କ ଘଟଣା ବିଷୟରେ ଖବର ମିଳିଛି? ୧୦. ଯେତେବେଳେ (ମିଶରକୁ ଫେରିବା ବାଟରେ) ସେ ନିଆଁ ଦେଖିଲେ ଏବଂ ନିଜ ପରିଜନଙ୍କୁ କହିଲେ, "ତୁମେ ଏଇଠି ରୁହ, ମୁଁ ନିଆଁ ଦେଖିଲି। (ମୁଁ ଯାଉଛି) ହୁଏତ ତୁମପାଇଁ କିଛି ଅଙ୍ଗାର ନେଇଆସିବି କିମ୍ବା ନିଆଁ ଜଳୁଥିବା ଜାଗାରେ ମୋତେ ରାସ୍ତାର କିଛି ସନ୍ଧାନ ମିଳିପାରେ।

୧୧. ଯେତେବେଳେ ସେ ସେହି ଜାଗାରେ ପହଁଚିଲେ, ଶୂନ୍ୟବାଣୀ ହେଲା, "ହେ ମୁ'ସା!" ୧୨. "ମୁଁ ତୁମର ଈଶ୍ୱର। ନିଜର ଜୋତା କାଢ଼ିଦିଅ। ତୁମେ ଏବେ ପବିତ୍ର ତୁୱା ଉପତ୍ୟକାରେ ଅଛ। ୧୩. ମୁଁ ତୁମକୁ (ନିଜର ପ୍ରତିନିଧିତ୍ୱ ପାଇଁ) ମନୋନୀତ କରିଛି। ତେଣୁ ତୁମକୁ ଯାହା ଦୈବବାଣୀ କରାଯାଉଛି, ତାକୁ (ଧ୍ୟାନ ଦେଇ) ଶୁଣ। ୧୪. ବାସ୍ତବରେ ମୁଁ ହିଁ ଅଲ୍ଲାହ୍। ମୋ' ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହାନ୍ତି। ତେଣୁ, ମୋ'ରି ଉପାସନା କର ଏବଂ ମୋତେ ମନେ ରଖିବା ପାଇଁ ନମାଜ ପ୍ରତିଷ୍ଠା କର। ୧୫. ପ୍ରଳୟ ଅବଶ୍ୟ ପାଖେଇ ଆସୁଛି। ସେହି ସମୟକୁ ମୁଁ ଗୁପ୍ତ ରଖିବାକୁ ଚାହେଁ ଯେପରିକି ପ୍ରତ୍ୟେକ ବ୍ୟକ୍ତିକୁ ତା' ପ୍ରୟାସ ଅନୁସାରେ ଫଳ ମିଳୁ। ୧୬. ତେଣୁ ଯିଏ ଏଥିରେ ବିଶ୍ୱାସ

ନକରେ ଏବଂ ଇନ୍ଦ୍ରିୟର ବଶବର୍ତ୍ତୀ ହୋଇଯାଏ, ଏଭଳି ବ୍ୟକ୍ତି ତୁମ ବିଶ୍ୱାସରେ ବାଧା ନଦେଉ ଅନ୍ୟଥା ତୁମେ ସର୍ବସ୍ୱାନ୍ତ ହୋଇଯିବ ।

୧୭. ହେ ମୁ'ସା! ତୁମ ଡାହାଣ ହାତରେ କ'ଣ ଅଛି ?" ୧୮. ସେ ଉତ୍ତର ଦେଲେ, "ଏହା ମୋ' ବାଡ଼ି । ମୁଁ ଏଥିରେ ଭରା ଦିଏ, ମୋ' ଛେଳିଙ୍କ ପାଇଁ ପତ୍ର ଝଡ଼ାଏ ଏବଂ ଆହୁରି ଅନେକ କାର୍ଯ୍ୟ ମଧ୍ୟ କରିଥାଏ ।" ୧୯. ଅଲ୍ଲାହ୍ କହିଲେ, "ମୁ'ସା! ତାକୁ ତଳେ ପକାଇ ଦିଅ ।" ୨୦. ତେଣୁ ସେ ତାକୁ ତଳେ ପକାଇ ଦେଲେ । ଚାହୁଁଚାହୁଁ ତାହା ଏକ ସାପରେ ପରିଣତ ହୋଇ ଚଳିବାକୁ ଲାଗିଲା । ୨୧. (ଈଶ୍ୱର) କହିଲେ, "ଭୟ କରନା । ତାକୁ ଧରିପକାଅ । ଏବେ ଆମ୍ଭେ ତାକୁ ତା' ପୂର୍ବ ଅବସ୍ଥାକୁ ଫେରାଇ ଆଣିବୁ । ୨୨. ଏବେ ନିଜ ହାତକୁ କାଖ ତଳେ ରଖ । ହାତଟି ରୋଗାକ୍ରାନ୍ତ (ଅର୍ଥାତ୍ ଧଳା ଛଉ ଆଦି) ନଥିବା ସତ୍ତ୍ୱେ ଶୁଭ୍ର ହୋଇ ବାହାରିବ । ଏହା ଅନ୍ୟ ଏକ ଚମତ୍କାର । ୨୩. (ଏହା ଏଇଥିପାଇଁ କଲୁ) ଯେ ଆମ୍ଭେ ତୁମକୁ ଆମ୍ଭର (ଆହୁରି) ଅନେକ ବଡ଼ବଡ଼ ନିଦର୍ଶନ ଦେଖାଇବୁ । ୨୪. ତୁମେ ଫିରଔନ୍ (ଅର୍ଥାତ୍ ଫ୍ୟାରୋ) ପାଖକୁ ଯାଅ । ସେ ଭାରି ଉଦ୍ଧତ ହୋଇଯାଇଛି ।" ୨୫. ମୁ'ସା ପ୍ରାର୍ଥନା କଲେ, "ପ୍ରଭୁ! ମୋ' ହୃଦୟକୁ ପ୍ରସାରିତ କର, ୨୬. ମୋ' କାମକୁ ମୋ' ପାଇଁ ସହଜ କରିଦିଅ, ୨୭. ଏବଂ ମୋ' କଣ୍ଠର ବନ୍ଧନ ଖୋଲିଦିଅ, ୨୮. ଯେପରିକି ଲୋକମାନେ ମୋ' କଥା ବୁଝିପାରିବେ, ୨୯. ଏବଂ ମୋ' ପରିବାର ମଧ୍ୟରୁ ଜଣକୁ ମୋ'ର ସହାୟକ ରୂପେ ନିଯୁକ୍ତ କର, ୩୦. ମୋ' ଭାଇ ହାରୁନଙ୍କୁ । ୩୧. ଏବଂ ତାଙ୍କ ଦ୍ୱାରା ମୋ'ର ଶକ୍ତି ବୃଦ୍ଧି କର, ୩୨. ଏବଂ ମୋ' କାର୍ଯ୍ୟରେ ତାଙ୍କୁ ମୋ'ର ସହଯୋଗୀ କରିଦିଅ, ୩୩. ଯାହାଫଳରେ ଆମେ ଦୁହେଁ ତୁମର ନିରନ୍ତର ଗୁଣଗାନ କରିବୁ ୩୪. ଏବଂ ତୁମକୁ ନିରନ୍ତର ସ୍ମରଣ କରିବୁ । ୩୫. ତୁମେ ଅବଶ୍ୟ ଆମମାନଙ୍କୁ ଦେଖୁଅଛ ।"

୩୬. ଈଶ୍ୱର କହିଲେ, "ମୁ'ସା! ତୁମର ପ୍ରାର୍ଥନା ସ୍ୱୀକାର କରାଗଲା । ୩୭. ଆମ୍ଭେ ଆଉଥରେ ମଧ୍ୟ ତୁମର ଉପକାର କରିଥିଲୁ । ୩୮. ସେତେବେଳେ ଆମ୍ଭେ ତୁମ ମାଆଙ୍କ ଅନ୍ତରରେ ଯାହା ପ୍ରକଟ କରିଥିଲୁ ତାହା ଏବେ ତୁମକୁ ଦୈବବାଣୀ କରାଯାଉଛି ।" ୩୯. "(ଆମ୍ଭେ କହିଥିଲୁ ଯେ) ଏହାକୁ (ଅର୍ଥାତ୍ ଶିଶୁ

ମୁ'ସାଙ୍କୁ) ଗୋଟିଏ ବାକ୍ସ ମଧ୍ୟରେ ପୁରାଇ ତାହାକୁ ନଈରେ ଭସାଇ ଦିଅ । ନଈ ତାହାକୁ ନେଇ କୂଳରେ ଛାଡ଼ିଦେବ ଏବଂ ତାକୁ ଏଭଳି ଜଣେ ବ୍ୟକ୍ତି ପାଇବ ଯିଏ ମୋ'ର ଏବଂ ତାଙ୍କର, ଉଭୟଙ୍କର ଶତ୍ରୁ ।" ମୁଁ ନିଜ କୃପାରୁ ତୁମ ମଧ୍ୟରେ ମମତାର ଏକ ବିଶେଷ ଆକର୍ଷଣ ରଖି ଦେଇଥିଲି, ଯେପରିକି ତୁମର ଲାଳନପାଳନ ମୋ' ତତ୍ତ୍ୱାବଧାନରେ ହେଉ ।

୪୦. ଯେତେବେଳେ ତୁମ ଭଉଣୀ ଯାଇ (ଫିରଔନ ଘରେ) କହିଲା, "ମୁଁ ତୁମମାନଙ୍କୁ ଏଭଳି ଜଣେ ମହିଳାର ଠିକଣା କହିବି କି, ଯିଏ ଏହି ପିଲାଟିର ଭଲ ସେବାଯତ୍ନ କରିପାରିବ ?" ଏହି ଉପାୟ ଦ୍ୱାରା ଆମ୍ଭେ ପୁଣି ତୁମକୁ ତୁମ ମାଆଙ୍କୁ ଫେରାଇ ଦେଇଥିଲୁ ଯେପରିକି ତାଙ୍କ ଆଖି ତୃପ୍ତ ହେବ ଏବଂ ସେ ଦୁଃଖ କରିବେନାହିଁ । ଥରେ ତୁମେ ଜଣେ ବ୍ୟକ୍ତିକୁ ହତ୍ୟା କରି ଦେଇଥିଲ ଏବଂ ଆମ୍ଭେ ତୁମର ସେହି ଦୁଃଖ ଦୂର କରିଥିଲୁ ଏବଂ ଆମ୍ଭେ ତୁମକୁ ବିଭିନ୍ନ ଉପାୟରେ ପରୀକ୍ଷା କରିଥିଲୁ । ହେ ମୁ'ସା! ପୁଣି ମଦୟନରେ ଅନେକ ବର୍ଷ ରହିବା ପରେ ତୁମେ ଏମିତି ସମୟରେ ଏଠାକୁ ଆସିଗଲ, ଯାହା ପୂର୍ବରୁ ଭାଗ୍ୟନିର୍ଦ୍ଧାରିତ ଥିଲା । ୪୧. ମୁଁ ତୁମକୁ ବିଶେଷ ଭାବରେ ନିଜ (ସେବା) ପାଇଁ ପ୍ରସ୍ତୁତ କରିଛି । ୪୨. ଏବେ ତୁମେ ଓ ତୁମ ଭାଇ, ଉଭୟେ ମୋ' ନିଦର୍ଶନ ଧରି ଯାଅ, (ଆଉ ଦେଖ) ମୋତେ ସ୍ମରଣ କରିବାରେ ଆଦୌ ହେଳା କରିବନାହିଁ । ୪୩. ଦୁହେଁ ଫିରଔନ୍ ପାଖକୁ ଯାଅ । ସେ ଭାରି ଉଦ୍ଧତ ହୋଇଯାଇଛି । ୪୪. ତା' ସହିତ ନମ୍ର ଭାବରେ କଥାବାର୍ତ୍ତା କର । ହୁଏତ ସେ ବୁଝିଯିବ ବା (ଈଶ୍ୱରଙ୍କୁ) ଭୟ କରିବ ।"

୪୫. ସେମାନେ କହିଲେ, "ହେ ପ୍ରଭୁ! ଆମର ଭୟ ହେଉଛି ଯେ ହୁଏତ ସେ ଆମ ପ୍ରତି ଅତ୍ୟାଚାର କରିବ ବା ଔଦ୍ଧତ୍ୟ ପ୍ରଦର୍ଶନ କରିବ ।" ୪୬. ଆମ୍ଭେ କହିଲୁ, "ଭୟ କରନାହିଁ । ମୁଁ ତୁମମାନଙ୍କ ସହିତ ଅଛି । ମୁଁ ସବୁ ଶୁଣୁଛି ଏବଂ ସବୁ ଦେଖୁଛି । ୪୭. ଏବେ ତା'ପାଖକୁ ଯାଇ କୁହ, "ଆମେ ଦୁହେଁ ତୁମ ଈଶ୍ୱରଙ୍କର ବାର୍ତ୍ତାବହ । ତୁମେ ଇସ୍ରାଇଲ୍‌ଙ୍କ ବଂଶଧରମାନଙ୍କୁ ଆମ ସହିତ ଛାଡ଼ିଦିଅ ଏବଂ ସେମାନଙ୍କୁ ନିର୍ଯ୍ୟାତନା ଦିଅନା । ଆମେ ତୁମ ପ୍ରଭୁଙ୍କର ନିଦର୍ଶନ ନେଇ ତୁମ ପାଖକୁ ଆସିଛୁ । ଯିଏ ସତପଥରେ ଚାଲିବ, ତା'ର ମଂଗଳ ହେବ । ୪୮. ଆମକୁ

ଦୈବବାଣୀ କରାଯାଇଛି ଯେ ଯିଏ (ଏହି ସତ୍ୟକୁ) ମିଥ୍ୟା କହି ଅସ୍ୱୀକାର କରିବ, ସେ କଠୋର ଶାସ୍ତି ଭୋଗିବ ।"

୪୯. (ଏହା ଶୁଣି) ଫିରଔନ ପଚାରିଲା, "ଆଚ୍ଛା, ମୁ'ସା ! ତୁମ ଦୁହିଁଙ୍କର ଈଶ୍ୱର କିଏ ?" ୫୦. ମୁ'ସା ଉତ୍ତର ଦେଲେ, "ଆମ ଈଶ୍ୱର ସିଏ, ଯିଏ ପ୍ରତ୍ୟେକ ବସ୍ତୁକୁ ରୂପ ଦେଲେ ଏବଂ ତାକୁ ତା' ବାଟ ଦେଖାଇ ଦେଲେ ।" ୫୧. ସେ ପ୍ରଶ୍ନ କଲା, "ଆଚ୍ଛା ତେବେ ପୂର୍ବ ଲୋକମାନଙ୍କର କ'ଣ ହେବ ?" ୫୨. ମୁ'ସା ଉତ୍ତର ଦେଲେ, "ଏ ବିଷୟ ମୋ' ପାଳନକର୍ତ୍ତାଙ୍କ ପାଖରେ ଥିବା ଏକ ଗ୍ରନ୍ଥରେ ଲେଖା ହୋଇ ରହିଛି । ମୋ' ପ୍ରଭୁ ଭୁଲ୍ କରନ୍ତିନାହିଁ କିମ୍ବା ଭୁଲନ୍ତି ନାହିଁ ।" ୫୩. ସେ ହିଁ ତୁମମାନଙ୍କ ପାଇଁ ଧରିତ୍ରୀକୁ ଶେଯ କରିଛନ୍ତି ଏବଂ ସେଥିରେ ତୁମମାନଙ୍କର (ଯାତାୟାତ କରିବା) ପାଇଁ ରାସ୍ତା ତିଆରି କରିଛନ୍ତି । ସେ ଆକାଶରୁ ଜଳ ବର୍ଷା କରି ସେଥିରୁ ବିଭିନ୍ନ ପ୍ରକାରର ବୃକ୍ଷଲତା ଉପନ୍ନ କରନ୍ତି ।" ୫୪. ତୁମେମାନେ ଖାଅ ଏବଂ ତୁମ ପଶୁମାନଙ୍କୁ ମଧ୍ୟ ଚରାଅ । ଏଥିରେ ବୁଦ୍ଧିମାନ ଲୋକଙ୍କ ପାଇଁ (ତାଙ୍କ ମହିମାର) ଅନେକ ସଙ୍କେତ ରହିଛି । ୫୫. ଏହି ଧରିତ୍ରୀରୁ ଆମ୍ଭେ ତୁମମାନଙ୍କୁ ସୃଷ୍ଟି କରିଛୁ, ଏହାରି ମଧ୍ୟକୁ ତୁମମାନଙ୍କୁ ଫେରାଇ ନେବୁ ଏବଂ ଏହାରି ମଧ୍ୟରୁ ଆଉଥରେ ତୁମମାନଙ୍କୁ (ପୁନର୍ଜୀବିତ କରି) ବାହାର କରିବୁ ।

୫୬. ଫିର୍ଔନକୁ ଆମ୍ଭେ ନିଜର ସବୁ ନିଦର୍ଶନ ଦେଖାଇଲୁ, ମାତ୍ର ସେ ସେଗୁଡ଼ିକୁ ମିଛ ବୋଲି କହି ଅସ୍ୱୀକାର କରିଦେଲା । ୫୭. କହିଲା, "ମୁ'ସା ! କ'ଣ ତୁମେ ଏଇଥିପାଇଁ ଆମ ପାଖକୁ ଆସିଛ ଯେ ନିଜର ଯାଦୁଶକ୍ତି ବଳରେ ଆମକୁ ଆମ ଦେଶରୁ ବାହାରି କରିଦେବ ? ୫୮. ଆଚ୍ଛା ହେଉ, ଏହିପରି ଯାଦୁବିଦ୍ୟା ଆମେ ମଧ୍ୟ ତୁମକୁ ଦେଖାଇବୁ । ଏଥିପାଇଁ ଏକ ଖୋଲା ପଡ଼ିଆରେ ଆମ ଓ ତୁମ ମଧ୍ୟରେ ଏକ ପ୍ରତିଯୋଗିତା କରିବାକୁ ସମୟ ଧାର୍ଯ୍ୟ କରାଯାଉ । ଆମ ଭିତରୁ କେହି ଏହି ଚୁକ୍ତି ଭାଙ୍ଗିବ ନାହିଁ ।" ୫୯. ମୁ'ସା କହିଲେ, "ପ୍ରତିଯୋଗିତା ପାଇଁ (ଆସନ୍ତା) ଉତ୍ସବର ଦିନ ଧାର୍ଯ୍ୟ ହେଉ ଏବଂ (ସେଦିନ) ପୂର୍ବାହ୍ନରେ ଲୋକମାନଙ୍କୁ ଏକାଠି କରାଯାଉ ।" ୬୦. ଏହାପରେ ଫିର୍ଔନ ଚାଲିଗଲା ଏବଂ ନିଜର କଳକୌଶଳ ଏକାଠି କରି (ପ୍ରତିଯୋଗିତା ପାଇଁ) ଆସି ପହଁଚିଲା । ୬୧.

ମୁ'ସା (ଯାଦୁକରମାନଙ୍କୁ) କହିଲେ,"ତୁମମାନଙ୍କର ସର୍ବନାଶ ହେଉ! ଅଲ୍ଲାହଙ୍କ ପ୍ରତି ମିଥ୍ୟାରୋପ କରନାହିଁ ଅନ୍ୟଥା ସେ ଶାସ୍ତି ଦେଇ ତୁମମାନଙ୍କୁ ଧ୍ୱଂସ କରିଦେବେ । ଯିଏ ମିଥ୍ୟା ଗଢ଼େ ତାକୁ କଦାପି ସଫଳତା ମିଳେନାହିଁ ।"

୬୨. ଏହାପରେ ସେମାନଙ୍କ ମଧ୍ୟରେ ଏବିଷୟରେ ମତଭେଦ ହୋଇଗଲା ଏବଂ ସେମାନେ ପରସ୍ପର ମଧ୍ୟରେ ଫୁସ୍‌ଫୁସ୍ ହୋଇ ବିଚାରବିମର୍ଶ କରିବାକୁ ଲାଗିଲେ । ୬୩. (ଶେଷରେ) ସେମାନେ କହିଲେ, "ଏ ଦୁହେଁଯାକ ଯାଦୁକର ଏବଂ ଏମାନେ ଚାହାନ୍ତି ଯେ ନିଜ ଯାଦୁ ବଳରେ ତୁମମାନଙ୍କୁ ତୁମ ଦେଶରୁ ବାହାର କରିଦେବେ ଏବଂ ତୁମମାନଙ୍କର ଆଦର୍ଶ ଧର୍ମର ଅନ୍ତ କରିଦେବେ । ୬୪. ତେଣୁ, ନିଜର ସବୁ କଳକୌଶଳ ଜମା କର ଆଉ (ଜଣଜଣ କରି) ଧାଡ଼ିରେ ଆସ । ପ୍ରକୃତରେ ଆଜି ଯିଏ ଜିତିବ, ସେହି ସଫଳ ହେବ ।"

୬୫. (ସେମାନେ ମୁ'ସାଙ୍କୁ) କହିଲେ, "ମୁ'ସା! ତୁମେ ପ୍ରଥମେ ପକାଅ (ଅର୍ଥାତ୍ ନିଜର କୌଶଳ ଦେଖାଅ) ନଚେତ୍ ଆମେମାନେ ପ୍ରଥମେ ଆରମ୍ଭ କରିବୁ ।" ୬୬. ମୁ'ସା କହିଲେ, "ନା, ବରଂ ତୁମେମାନେ (ପ୍ରଥମେ) ପକାଅ ।" ପୁଣି ହଠାତ୍ ମୁ'ସାଙ୍କୁ ସେମାନଙ୍କର ବାଡ଼ି ଓ ଦଉଡ଼ିଗୁଡ଼ିକ ଯାଦୁବିଦ୍ୟା ବଳରେ ଦଉଡୁଥିବା ପରି ଜଣାଗଲା । ୬୭. ମୁ'ସା ମନେ ମନେ ଡ଼ରିଗଲେ । ୬୮. ଆମ୍ଭେ କହିଲୁ, "ଭୟ କରନାହିଁ । ତୁମେ ନିଶ୍ଚୟ ବିଜୟୀ ହେବ । ୬୯. ତୁମ ଡ଼ାହାଣ ହାତରେ ଯେଉଁ ବାଡ଼ିଟି ଅଛି ତାକୁ ତଳେ ପକାଇଦିଅ । ଏହା ସେମାନଙ୍କର କୃତିଗୁଡ଼ିକୁ (ଅର୍ଥାତ୍ ନକଲି ସାପଗୁଡ଼ିକୁ) ଗିଳିଦେବ । ସେମାନେ ଯାହା ପ୍ରସ୍ତୁତ କଲେ ସେଗୁଡ଼ିକ କେବଳ ଯାଦୁକରମାନଙ୍କର କୌଶଳ । ଜଣେ ଯାଦୁକର ଯେତେ କୁଶଳୀ ହୋଇଥାଉ ପଛେ କଦାପି ସଫଳ ହୁଏନାହିଁ । ୭୦. ଏହାପରେ ଯାଦୁକରମାନେ (ଅଲ୍ଲାହଙ୍କୁ) ଭୂମିଷ୍ଠ ପ୍ରଣାମ କରି କହିଲେ, "ଆମେ ମୁ'ସା ଓ ହାରୁନଙ୍କ ଈଶ୍ୱରଙ୍କ ଉପରେ ଆସ୍ଥା ରଖିଲୁ ।"

୭୧. ଫିରଔନ ସେମାନଙ୍କୁ କହିଲା, "ତୁମେମାନେ ମୋ' ଅନୁମତି ବିନା ତାକୁ (ଅର୍ଥାତ୍ ମୁସାଙ୍କୁ) ମାନିନେଲ ? ତେବେ ସେହି (ମୁ'ସା) ତୁମମାନଙ୍କର ଗୁରୁ ଯିଏ ତୁମମାନଙ୍କୁ ଯାଦୁବିଦ୍ୟା ଶିଖାଇଛି । ଏବେ ମୁଁ ତୁମମାନଙ୍କ ହାତ ଓ ଗୋଡ଼

ବିପରୀତ ଦିଗରୁ (ଅର୍ଥାତ୍ ଡାହାଣ ହାତ ଓ ବାମ ଗୋଡ଼ ଏବଂ ବାମ ହାତ ଓ ଡ଼ାହାଣ ଗୋଡ଼) କାଟିବି ଆଉ ଖଜୁରୀ ଗଛର ଗଣ୍ଡିରେ ତୁମମାନଙ୍କୁ ଶୂଳି ଦେବି। ତା'ହେଲେ ତୁମେମାନେ ଭଲରୂପେ ଜାଣିଯିବ ଯେ ଆମ ଦୁହିଁଙ୍କ ମଧ୍ୟରୁ କାହାର ଦଣ୍ଡ ଅଧିକ କଠୋର ଆଉ ଦୀର୍ଘସ୍ଥାୟୀ।" ୭୨. (ଯାଦୁକରମାନେ) ଉତ୍ତର ଦେଲେ, "ଆମକୁ ଯାହା ପ୍ରମାଣ ମିଳିଛି ତାହା ଦୃଷ୍ଟିରୁ ଆମେ ଆପଣଙ୍କ କଥା ଗ୍ରହଣ କରିପାରିବୁ ନାହିଁ କିମ୍ବା ଆମକୁ ଯିଏ ସୃଷ୍ଟି କରିଛନ୍ତି, ତାଙ୍କ ଉପରେ ଆପଣଙ୍କୁ ପ୍ରାଥମିକତା ଦେଇ ପାରିବୁନାହିଁ। ଆପଣଙ୍କର ଯାହା କରିବାର ଅଛି କରନ୍ତୁ। ଆପଣ କେବଳ ଏହି ସଂସାରରେ ଯାହାକିଛି କରିପାରିବେ। ୭୩. ଆମେ ଆମ ଈଶ୍ୱରଙ୍କ ପ୍ରତି (ଏହି ଆଶାରେ) ଆସ୍ଥା ରଖିଲୁ ଯେ ସେ ଆମ ଦୋଷ କ୍ଷମା କରିଦେବେ ଏବଂ ଆମର ଯାଦୁବିଦ୍ୟା ପ୍ରଦର୍ଶନକୁ ମଧ୍ୟ, ଯାହାପାଇଁ ଆପଣ ଆମମାନଙ୍କୁ ବାଧ୍ୟ କରିଥିଲେ। ଅଲ୍ଲାହ୍ ସର୍ବଶ୍ରେଷ୍ଠ ଏବଂ ଅବିନାଶୀ।" ୭୪. ଯିଏ ଈଶ୍ୱରଙ୍କ ପାଖରେ ଜଣେ ଅପରାଧୀ ରୂପେ ଉପସ୍ଥିତ ହେବ, ସେ ନର୍କଭୋଗ କରିବ। ସେଠାରେ ସେ, ନା ମରି ପାରିବ ନା ଜିଇଁ ପାରିବ। ୭୫. ଆଉ ଯିଏ ବିଶ୍ୱାସ ରଖିଥିବା ଅବସ୍ଥାରେ ଉପସ୍ଥିତ ହେବ ଏବଂ ଭଲ କର୍ମ କରିଥିବ, ଏଭଳି ଲୋକମାନେ ସମ୍ମାନଜନକ ସ୍ଥାନ ଲାଭ କରିବେ। ୭୬. ନିତ୍ୟ ବୈକୁଣ୍ଠର ଉଦ୍ୟାନ ଯାହା ତଳେ ଝରଣା ପ୍ରବାହିତ ହୁଏ ଏବଂ ସେମାନେ ସେଠାରେ ସର୍ବଦା ରହିବେ। ଏହା ଏଭଳି ବ୍ୟକ୍ତିର ପୁରସ୍କାର ଯିଏ ନିଜର ଚିତ୍ତଶୁଦ୍ଧି କରିଥିବ।

୭୭. ଆମ୍ଭେ ମୂ'ସାଙ୍କୁ ଦୈବବାଣୀ କଲୁ, "ତୁମେ ମୋ' ଭକ୍ତମାନଙ୍କୁ ନେଇ ରାତାରାତି ବାହାରି ପଡ଼ ଆଉ ସେମାନଙ୍କ ପାଇଁ (ନିଜର ଅଲୌକିକ ବାଡ଼ି ଦ୍ୱାରା) ସମୁଦ୍ରରେ ଶୁଖିଲା ରାସ୍ତାଟିଏ ତିଆରି କର। ତା'ହେଲେ ତୁମକୁ (ଶତ୍ରୁ ଦ୍ୱାରା) ଧରା ପଡ଼ିଯିବାର ଆଶଂକା ନଥିବ କିମ୍ବା ଅନ୍ୟ କୌଣସି ଭୟ ନଥିବ। ୭୮. ତା'ପରେ ଫିରଔନ୍ ନିଜର ସୈନ୍ୟସାମନ୍ତ ନେଇ ସେମାନଙ୍କର ପିଛା କଲା, ମାତ୍ର ସମୁଦ୍ର ଯେମିତି ମାଡ଼ିଯିବା କଥା ସେମିତି ସେମାନଙ୍କ ଉପରେ ମାଡ଼ିଗଲା। ୭୯. ଫିରଔନ ତା' ସମାଜକୁ ପଥଭ୍ରଷ୍ଟ କରିଦେଲା। ସେ ସେମାନଙ୍କୁ ଠିକ୍ ବାଟ ଦେଖାଇ ନଥିଲା।

୮୦. ହେ ଇସ୍ରାଇଲଙ୍କ ବଂଶଧର! ଆମ୍ଭେ ତୁମମାନଙ୍କୁ ତୁମ ଶତ୍ରୁ କବଳରୁ ମୁକ୍ତି ଦେଲୁ ଏବଂ (ଗ୍ରନ୍ଥ ପ୍ରଦାନ କରିବା ପାଇଁ) ତୁମମାନଙ୍କଠାରୁ (ସିନାଇ) ପାହାଡ଼ର ଦକ୍ଷିଣ ପଟକୁ ଆସିବାର ବଚନ ନେଲୁ ଏବଂ ତୁମମାନଙ୍କ (ଖାଇବା) ପାଇଁ ମନ୍ନ ଓ ସଲ୍‌ୱା ପଠାଇଲୁ। ୮୧. (ଆମ୍ଭେ କହିଥିଲୁ) "ଆମ୍ଭେ ଯାହା ଶୁଦ୍ଧ ଖାଦ୍ୟ ଦେଇଛୁ ତାହା ଖାଅ ଆଉ ଏବିଷୟରେ ସୀମା ଅତିକ୍ରମ କରନାହିଁ, ନଚେତ୍ ତୁମେମାନେ ମୋ' ଆକ୍ରୋଶର ଶିକାର ହେବ ଏବଂ ଯିଏ ମୋ' ଆକ୍ରୋଶର ଶିକାର ହୁଏ, ତା'ର ସର୍ବନାଶ ହୁଏ। ୮୨. ଯିଏ ଅନୁତପ୍ତ ହୁଏ, (ମୋ'ଉପରେ) ଆସ୍ଥା ରଖେ, ଭଲ କର୍ମ କରେ ଏବଂ ସତପଥରେ ଥାଏ, ମୁଁ ନିଶ୍ଚୟ ତା'କୁ କ୍ଷମା କରିଦେବି।

୮୩. (ଯେତେବେଳେ ମୁ'ସା ପାହାଡ଼ ଉପରକୁ ଆସିଲେ) ଆମ୍ଭେ କହିଲୁ, "ହେ ମୁ'ସା, ନିଜ ଲୋକମାନଙ୍କୁ ଛାଡ଼ିଦେଇ ତୁମେ ଏତେଶୀଘ୍ର କାହିଁକି ଚାଲିଆସିଲ?" ୮୪. ମୁ'ସା କହିଲେ, "ସେମାନେ ମୋ' ପଛରେ ଆସୁଛନ୍ତି। ହେ ପ୍ରଭୁ! ତୁମେ ପ୍ରସନ୍ନ ହେବ ବୋଲି ମୁଁ ତୁମ ପାଖକୁ ଶୀଘ୍ର ଚାଲିଆସିଲି।" ୮୫. ଆମ୍ଭେ କହିଲୁ, "ମାତ୍ର ତୁମେ ଆସିବା ପରେ ଆମ୍ଭେ ତୁମ ସଂପ୍ରଦାୟକୁ ଏକ ପରୀକ୍ଷାରେ ପକାଇଦେଲୁ ଏବଂ ସାମରୀ ସେମାନଙ୍କୁ ପଥଭ୍ରଷ୍ଟ କରିଦେଲା।" ୮୬. ତେଣୁ ମୁ'ସା ରାଗିଯାଇ ମନ ଦୁଃଖରେ ନିଜ ସଂପ୍ରଦାୟ ନିକଟକୁ ଫେରିଲେ। ସେମାନଙ୍କୁ କହିଲେ, "ଭାଇମାନେ! କ'ଣ ତୁମ ପାଳନକର୍ତ୍ତା ତୁମମାନଙ୍କୁ ଏକ ଭଲ ପ୍ରତିଶ୍ରୁତି ଦେଇ ନଥିଲେ? କ'ଣ ଏଥିରେ ବହୁତ ବିଳମ୍ବ ହୋଇ ଯାଇଥିଲା ବା ତୁମେମାନେ ପ୍ରଭୁଙ୍କ କୋପକୁ ଆମନ୍ତ୍ରଣ କରୁଥିଲ ଯେଉଁଥିପାଇଁ ମୋତେ ଦେଇଥିବା ବଚନ ଭାଙ୍ଗିଦେଲ?" ୮୭. ସେମାନେ କହିଲେ, "ଆମେ ନିଜ ଇଚ୍ଛାରେ ଆପଣଙ୍କୁ ଦେଇଥିବା ବଚନ ଭାଙ୍ଗିନାହୁଁ। ଆମ ଉପରେ ଲୋକଙ୍କର ଅଳଙ୍କାରର ଯେଉଁ ବୋଝ ଥିଲା, ସେଗୁଡ଼ିକୁ କାଢ଼ି ଆମେ (ନିଆଁରେ) ପକାଇଦେଲୁ। ସେହିପରି ସାମରୀ ମଧ୍ଯ କିଛି ପକାଇଥିଲା।" ୮୮. ପୁଣି ସେ ସେଥିରୁ ସେମାନଙ୍କ ପାଇଁ ବାଛୁରୀର ଏକ ପ୍ରତିମା ଗଢ଼ିଦେଲା ଯେଉଁଥିରୁ ଗାଈର ରଡ଼ି ପରି ଶବ୍ଦ ବାହାରୁଥିଲା। ପୁଣି ସେମାନେ କହିଉଠିଲେ, "ଏହି ହେଉଛି ତୁମର ଈଶ୍ୱର ଏବଂ ମୁ'ସାଙ୍କର ମଧ୍ଯ ଈଶ୍ୱର କିନ୍ତୁ ସେ ଏହା ଭୁଲି ଯାଇଛନ୍ତି।" ୮୯. କ'ଣ ସେମାନେ ଏହା ଦେଖିପାରୁ

ନଥିଲେ ଯେ ସେହି ପ୍ରତିମାଟି ସେମାନଙ୍କୁ କୌଣସି ଉତ୍ତର ଦେଉ ନଥିଲା କିମ୍ବା ସେମାନଙ୍କର କିଛି ଭଲ ବା ମନ୍ଦ କରିବାକୁ ମଧ୍ୟ ସକ୍ଷମ ନଥିଲା ? ୯୦. ହାରୁନ ସେମାନଙ୍କୁ ପ୍ରଥମରୁ କହି ସାରିଥିଲେ, "ଭାଇମାନେ ! ଏହାଦ୍ୱାରା କେବଳ ତୁମମାନଙ୍କୁ ପରୀକ୍ଷା କରାଯାଉଛି । ବାସ୍ତବରେ ଦୟାମୟହିଁ ତୁମମାନଙ୍କର ଈଶ୍ୱର । ତେଣୁ ମୋତେ ଅନୁସରଣ କର ଏବଂ ମୋ' କଥା ମାନ ।" ୯୧. ସେମାନେ କହିଲେ, "ମୁ'ସା ନଫେରିବା ପର୍ଯ୍ୟନ୍ତ ଆମେ ଏହାର ପୂଜା କରୁଥିବୁ ।"

୯୨. ମୁ'ସା (ପୁଣି ହାରୁନଙ୍କୁ ସଂବୋଧନ କରି) କହିଲେ, "ହେ ହାରୁନ ! ଯେତେବେଳେ ତୁମେ ସେମାନଙ୍କୁ ବିଭ୍ରାନ୍ତ ହେବାର ଦେଖିଲ, ସେତେବେଳେ ତୁମର କି ଅସୁବିଧା ହେଲା – ୯୩. ମୋ'ପାଖକୁ ଆସିବାରେ ? କ'ଣ ତୁମେ ମଧ୍ୟ ମୋତେ ଅବଜ୍ଞା କଲ ? ୯୪. ହାରୁନ କହିଲେ, "ହେ ଭାଇ ! ମୋ' ଦାଢ଼ି ବା ଚୁଟିକୁ ଟାଣନା । ମୋ'ର ଭୟ ହେଲା, କାଳେ ତୁମେ କହିବ ଯେ ମୁଁ ଇସ୍ରାଇଲଙ୍କ ବଂଶଧରମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିଦେଲି ଏବଂ ତୁମ କଥାକୁ ଗୁରୁତ୍ୱ ଦେଲିନାହିଁ ।" ୯୫. ପୁଣି ମୁ'ସା (ସାମ୍ରୀକୁ) ପଚାରିଲେ, "ହେ ସାମରୀ ! ତୋତେ କ'ଣ ହେଲା (ଅର୍ଥାତ କାହିଁକି ଏଭଳି କଲୁ) ?" ୯୬. ସେ କହିଲା, "ମୁଁ ଯାହା ଦେଖିଥିଲି, ଅନ୍ୟମାନେ ଦେଖିପାରି ନଥିଲେ । ତେଣୁ ମୁଁ ଦେବଦୂତଙ୍କ ପାଦଚିହ୍ନରୁ ମୁଠାଏ ଧୂଳି ସଂଗ୍ରହ କରିଥିଲି ଯାହାକୁ ସେଥିରେ ପକାଇଦେଲି । ମୋ' ମନ ମୋତେ ଏହିପରି କରିବାକୁ କହିଥିଲା ।" ୯୭. ମୁ'ସା କହିଲେ, "ଚାଲିଯା', ତୁ ଜୀବନସାରା ଏହାହିଁ କହି ବୁଲୁଥିବୁ ଯେ ମୋତେ କେହି ଛୁଅନା । (ଏହା ବ୍ୟତୀତ) ତୋ' ଶାସ୍ତି ପାଇଁ ଆଉ ଏକ ସମୟ ମଧ୍ୟ ସ୍ଥିର ହୋଇଛି ଯାହାକୁ ତୁ ଅଟକାଇ ପାରିବୁନାହିଁ । ଏବେ ତୋ' ଈଶ୍ୱରକୁ ଦେଖ୍, ଯାହାର ପୂଜା-ଅର୍ଚ୍ଚନା କରିବାରେ ତୁ ମଗ୍ନ ଥିଲୁ । ଆମ୍ଭେ ତାହାକୁ ପୋଡ଼ି ପାଉଁଶ କରି ସମୁଦ୍ରରେ ଭସାଇ ଦେବୁ ।"

୯୮. ପ୍ରକୃତରେ ଅଲ୍ଲାହ୍ ହିଁ ତୁମମାନଙ୍କର ଈଶ୍ୱର । ତାଙ୍କ ବ୍ୟତୀତ ଅନ୍ୟ କେହି ପୂଜ୍ୟ ନୁହନ୍ତି । ପ୍ରତ୍ୟେକ ବସ୍ତୁ ବିଷୟରେ ତାଙ୍କର ସଂପୂର୍ଣ୍ଣ ଜ୍ଞାନ ଅଛି । ୯୯. (ହେ ବାର୍ତ୍ତାବହ !) ଏହିପରି ଆମ୍ଭେ ତୁମ ନିକଟରେ ଅତୀତର କେତେକ ଘଟଣା

ବିଷୟରେ ବର୍ଣ୍ଣନା କରୁଛୁ ଏବଂ ନିଜ କୃପାରୁ ତୁମକୁ କୁରଆନ ମଧ୍ୟ ପ୍ରଦାନ କରିଛୁ। ୧୦୦. ଯିଏ ଏହାକୁ ଅସ୍ୱୀକାର କରିବ, ବିଚାର ଦିନ ସେ (ପାପର) ଏକ ବଡ଼ ବୋଝ ବହନ କରିବ। ୧୦୧. ଏଭଳି ଲୋକମାନେ ଚିରଦିନ ଏହାର କୁପରିଣାମ ଭୋଗିବେ। ବିଚାର ଦିନ ଏହି ବୋଝ ସେମାନଙ୍କ ପାଇଁ ଭାରି କଷ୍ଟଦାୟକ ହେବ।

୧୦୨. ଯେଉଁଦିନ ତୁରୀନାଦ ହେବ, ସେଦିନ ଅପରାଧୀମାନଙ୍କୁ ଆମ୍ଭେ ଏଭଳି ଅବସ୍ଥାରେ (ଜୀବିତ କରି) ଏକତ୍ର କରିବୁ ଯେ ସେମାନଙ୍କ ଆଖି (ଭୟରେ) ନୀଳ ପଡ଼ି ଯାଇଥିବ। ୧୦୩. ସେମାନେ ଧୀରେଧୀରେ ପରସ୍ପର ମଧ୍ୟରେ କୁହାକୁହି ହେବେ, "ତୁମେମାନେ ସଂସାରରେ ବୋଧହୁଏ ଦଶଦିନ ମାତ୍ର ରହିଛ।" ୧୦୪. ସେମାନେ ଯାହା କଥାବାର୍ତ୍ତା ହେବେ ତାହା ଆମ୍ଭେ ଭଲରୂପେ ଜାଣୁ। ସେମାନଙ୍କ ମଧ୍ୟରୁ ଯିଏ ଅଧିକ ବୁଦ୍ଧିମାନ ଥିବ ସେ କହିବ, "ତୁମେମାନେ ସେଠାରେ ମାତ୍ର ଦିନଟିଏ ରହିଥିଲ।" ୧୦୫. ଲୋକେ ତୁମକୁ ପାହାଡ଼ପର୍ବତ ବିଷୟରେ ପଚାରୁଛନ୍ତି (ଯେ ପ୍ରଳୟ ଦିନ ସେଗୁଡ଼ିକର ଅବସ୍ଥା କ'ଣ ହେବ)। କହିଦିଅ, "ଈଶ୍ୱର ସେଗୁଡ଼ିକୁ ଧୂଳିମାଟି କରି ଉଡ଼ାଇ ଦେବେ, ୧୦୬. ଏବଂ ଧରାପୃଷ୍ଠକୁ ଏକ ସମତଳ ପଡ଼ିଆରେ ପରିଣତ କରିଦେବେ। ୧୦୭. ତୁମେ ସେଥିରେ କୌଣସି ଖାଲଢ଼ିପ ଦେଖିବାକୁ ପାଇବନାହିଁ।" ୧୦୮. ସେଦିନ ସମସ୍ତେ ଗୋଟିଏ ଡାକର ଅନୁସରଣ କରିବେ ଏବଂ କେହି ନିଜର ଆଣ୍ଠ ଦେଖାଇ ପାରିବେନାହିଁ। ଦୟାମୟଙ୍କ ସମ୍ମୁଖରେ ସମସ୍ତଙ୍କର ସ୍ୱର କ୍ଷୀଣ ପଡ଼ିଯିବ ଏବଂ କେବଳ ଲୋକଙ୍କର ମୃଦୁ ପାଦଶବ୍ଦ ବ୍ୟତୀତ ତୁମକୁ ଆଉ କିଛି ଶୁଭିବନାହିଁ। ୧୦୯. ସେଦିନ କାହାରି ସୁପାରିଶ କାମ ଦେବନାହିଁ ଏବଂ କେବଳ ସେହି ବ୍ୟକ୍ତି (ଅନ୍ୟ ପାଇଁ ସୁପାରିଶ) କରିପାରିବ, ଯାହାକୁ ଦୟାମୟ ଅନୁମତି ଦେଇଥିବେ ଏବଂ ଯାହା କଥା ତାଙ୍କ ନିକଟରେ ଗ୍ରହଣୀୟ ହୋଇଥିବ। ୧୧୦. ସେ ଲୋକମାନଙ୍କର ପୂର୍ବ ଓ ପର ଅବସ୍ଥା ବିଷୟରେ ଜାଣନ୍ତି, ମାତ୍ର ସେମାନେ ନିଜ ଜ୍ଞାନରୁ ଏହା ଜାଣି ପାରିବେନାହିଁ। ୧୧୧. (ସେଦିନ) ଚିରଜୀବି ଏବଂ ସ୍ୱୟମ୍ଭୁଙ୍କ ଆଗରେ ସମସ୍ତଙ୍କର ମୁଣ୍ଡ ନଇଁଯିବ। ଯାହା ଉପରେ କୁକର୍ମର ବୋଝ ଥିବ, ସେ ଅସଫଳ ହେବ।

୧୧୨. ଯିଏ ଭଲ ଆଚରଣ କରିଥିବ ଏବଂ (ଆମ୍ଭ ପ୍ରତି) ବିଶ୍ୱାସ ରଖିଥିବ, ତାକୁ କୌଣସି ଅନ୍ୟାୟର ବା ନିଜ ଅଧିକାରରୁ ବଂଚିତ ହେବାର ଭୟ ନଥିବ ।

୧୧୩. ତେଣୁ, ଆମ୍ଭେ କୁରଆନକୁ ଆରବୀ ଭାଷାରେ ପଠାଇଛୁ ଏବଂ ଏଥିରେ ବିଭିନ୍ନ ଶୈଳୀରେ ଚେତାବନୀ ଦେଇଛୁ ଯେପରିକି ଲୋକମାନେ କୁକର୍ମରୁ ବିରତ ରହନ୍ତୁ ଏବଂ କୁରଆନ ସେମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରୁ ।

୧୧୪. ସେହି ମହାନ ଅଲ୍ଲାହ୍ ହିଁ (ବ୍ରହ୍ମାଣ୍ଡର) ପ୍ରକୃତ ଅଧୀଶ୍ୱର । (ହେ ବାର୍ତ୍ତାବହ!) ତୁମ ପ୍ରତି ହେଉଥିବା ଦୈବବାଣୀ ସଂପୂର୍ଣ୍ଣ ନହେବା ପୂର୍ବରୁ ଏହାକୁ ପଢ଼ିବା ପାଇଁ ଅଧୀର ହୁଅନାହିଁ ଏବଂ ପ୍ରାର୍ଥନା କର ଯେ ହେ ପ୍ରଭୁ! ମୋ'ର ଜ୍ଞାନବୃଦ୍ଧି କର ।

୧୧୫. (ଏହା ପୂର୍ବରୁ) ଆମ୍ଭେ ଆଦମଙ୍କଠାରୁ ଏକ ବଚନ ନେଇଥିଲୁ ମାତ୍ର ସେ ତାହା ଭୁଲିଗଲେ । ଆମ୍ଭେ ତାଙ୍କଠାରେ ଦୃଢ଼ ମନୋବଳ ଦେଖିଲୁନାହିଁ । ୧୧୬. (ସ୍ମରଣ କର) ଯେତେବେଳେ ଆମ୍ଭେ ଆଦମଙ୍କୁ ପ୍ରଣାମ କରିବାକୁ ଦେବଦୂତମାନଙ୍କୁ କହିଲୁ, ସେତେବେଳେ ସମସ୍ତେ ତାଙ୍କୁ ପ୍ରଣାମ କଲେ ମାତ୍ର ଇବଲିସ୍ ପ୍ରଣାମ କଲାନାହିଁ । ସେ ମନା କରିଦେଲା । ୧୧୭. ପୁଣି ଆମ୍ଭେ (ଆଦମଙ୍କୁ) କହିଥିଲୁ, "ହେ ଆଦମ! ସେ ତୁମର ଓ ତୁମ ପତ୍ନୀଙ୍କର ଶତ୍ରୁ । ତେଣୁ (ମନେରଖ), ଯେପରି ସେ ତୁମ ଦୁହିଁଙ୍କୁ ବୈକୁଣ୍ଠରୁ ବାହାର କରି ନଦେଉ, ଅନ୍ୟଥା ତୁମେ ବହୁ ଦୁଃଖକଷ୍ଟ ଭୋଗିବ । ୧୧୮. ଏଠାରେ ତୁମର ଖାଇବା ବା ପିନ୍ଧିବାରେ କିଛି ଅଭାବ ନାହିଁ । ୧୧୯. ଏଠାରେ ତୁମକୁ ଶୋଷ ହୁଏନାହିଁ କିମ୍ବା ଖରା କାଟେନାହିଁ ।" ୧୨୦. ପୁଣି ଶଇତାନ ତାଙ୍କୁ ପ୍ରଲୋଭିତ କରି କହିଲା, "ହେ ଆଦମ! ମୁଁ ତୁମକୁ ଏଭଳି ଗୋଟିଏ ଗଛ ବିଷୟରେ କହୁଛି ଯାହାଦ୍ୱାରା ତୁମେ ଅମରତ୍ୱ ଲାଭ କରିବ ଏବଂ ଏଭଳି କ୍ଷମତା ଓ ଆଧିପତ୍ୟ ଭୋଗ କରିବ ଯାହାର କେବେ ପତନ ଘଟିବ ନାହିଁ ।" ୧୨୧. ଶେଷରେ ସେ ଦୁହେଁ (ପତିପତ୍ନୀ) ସେହି ଗଛରୁ କିଛି (ଫଳ) ଖାଇଦେଲେ ଯାହାଫଳରେ ସେମାନଙ୍କ ସମ୍ମୁଖରେ ସେମାନଙ୍କର ଅଂଗବାସ ଖସିପଡ଼ିଲା ଏବଂ ସେମାନେ ନିଜନିଜ ଶରୀରକୁ ବୈକୁଣ୍ଠର ପତ୍ର ଦ୍ୱାରା ଘୋଡ଼ାଇବାକୁ ଲାଗିଲେ । ଆଦମ ନିଜ ଈଶ୍ୱରଙ୍କର ଅବମାନନା କଲେ ଏବଂ ବାଟବଣା ହୋଇଗଲେ ।

୧୨୨. ତା'ପରେ ଈଶ୍ୱର ତାଙ୍କ ପ୍ରତି ଅନୁଗ୍ରହ କଲେ, ତାଙ୍କର ପଶ୍ଚାତାପ ସ୍ୱୀକାର କଲେ ଏବଂ ତାଙ୍କୁ ସତ୍‌ପଥରେ ପରିଚାଳିତ କଲେ, ୧୨୩. ଏବଂ କହିଲେ, "ତୁମେ ଦୁହେଁ ସ୍ୱର୍ଗରୁ ଓହ୍ଲାଇ ଯାଅ । ତୁମେମାନେ (ଅର୍ଥାତ୍ ମନୁଷ୍ୟ ଓ ଶଇତାନ) ପରସ୍ପରର ଶତ୍ରୁ ହୋଇ ରହିବ । ପୁଣି ଯଦି ତୁମମାନଙ୍କୁ (ମୋ'ଗ୍ରନ୍ଥ ବା ବାର୍ତ୍ତାବହମାନଙ୍କ ମାଧ୍ୟମରେ) ମୋ'ର ନିର୍ଦ୍ଦେଶ ମିଳେ, ତେବେ ଯିଏ ମୋ' ନିର୍ଦ୍ଦେଶ ମାନି ଚଳିବ ସେ ପଥଭ୍ରଷ୍ଟ ହେବନାହିଁ ଏବଂ କଷ୍ଟ ଭୋଗିବନାହିଁ, ୧୨୪. ଏବଂ ଯିଏ ଆମ୍ଭ କଥାକୁ ଉପେକ୍ଷା କରିବ, ତା'ର (ପାର୍ଥିବ) ଜୀବନ କଷ୍ଟମୟ ହେବ ଏବଂ ବିଚାରର ଦିନ ଆମ୍ଭେ ତାକୁ ଅନ୍ଧ କରି ଜୀବିତ କରିବୁ ।" ୧୨୫. ସେ କହିବ, "ପ୍ରଭୁ ! ମୋତେ କାହିଁକି ଅନ୍ଧ କରି ଉଠାଇଲ ? (ସଂସାରରେ) ତ ମୋ'ର ଆଖି ଥିଲା ?" ୧୨୬. ଆମ୍ଭେ କହିବୁ, "ଯେମିତି ତୋ' ପାଖରେ ମୋ' ବାଣୀଗୁଡ଼ିକ ପହଁଚିଥିଲା ମାତ୍ର ତୁ ସେଗୁଡ଼ିକୁ ଉପେକ୍ଷା କରୁଥିଲୁ, ସେମିତି ଆଜି ତୋତେ ମଧ୍ୟ ଉପେକ୍ଷା କରାଯିବ । ୧୨୭. ଯିଏ ସୀମା ଅତିକ୍ରମ କରେ ଏବଂ ତା' ପାଳନକର୍ତ୍ତାଙ୍କ ବାଣୀକୁ ବିଶ୍ୱାସ ନକରେ, ତାକୁ ଆମ୍ଭେ ଏହିଭଳି ଶାସ୍ତି ଦେଉ । ପ୍ରକୃତରେ ପରଲୋକର ଶାସ୍ତି ଅତି ଭୟଙ୍କର ଏବଂ ଏହା ଚିରଦିନ ପାଇଁ ହେବ ।"

୧୨୮. କ'ଣ ଏମାନେ ଏଥିରୁ କିଛି ଶିକ୍ଷା ପାଇଲେନାହିଁ ଯେ ସେମାନଙ୍କ ପୂର୍ବରୁ ଆମେ ଅନେକ ସମାଜ ଧ୍ୱଂସ କରିସାରିଛୁ ଯେଉଁମାନଙ୍କ ଜାଗାରେ ଏମାନେ ଚାଲବୁଲ କରୁଛନ୍ତି ? ବୁଦ୍ଧିମାନମାନଙ୍କ ପାଇଁ ଏଥିରେ ଅନେକ ନିଦର୍ଶନ ରହିଛି ।

୧୨୯. ଯଦି ତୁମ ପ୍ରଭୁଙ୍କ ଦ୍ୱାରା ପୂର୍ବରୁ ଏହା ସ୍ଥିର ନହୋଇ ଥାଆନ୍ତା ଏବଂ ଏଥିପାଇଁ ଏକ ସମୟ ନିଶ୍ଚିତ କରାଯାଇ ନଥାଆନ୍ତା, ତେବେ (ଏପର୍ଯ୍ୟନ୍ତ) ସେମାନଙ୍କୁ ଶାସ୍ତି ମିଳି ସାରିଥାଆନ୍ତା । ୧୩୦. ତେଣୁ, ସେମାନଙ୍କ କଥାକୁ ସହିଯାଅ ଏବଂ ସୂର୍ଯ୍ୟୋଦୟ ପୂବରୁ, ସୂର୍ଯ୍ୟାସ୍ତ ପୂର୍ବରୁ ଏବଂ ରାତିର ବିଭିନ୍ନ ପ୍ରହରରରେ ନିଜ ଈଶ୍ୱରଙ୍କର ସ୍ତୁତି ଓ ଗୁଣଗାନ କର ଏବଂ ଦିନର ଉଭୟ ଭାଗରେ (ଅର୍ଥାତ୍ ପୂର୍ବାହ୍ନ ଓ ଅପରାହ୍ନରେ) ମଧ୍ୟ ତାଙ୍କର ନାମ ନିଅ, ଯାହାଫଳରେ ତୁମେ ପରମ ଆନନ୍ଦ ପାଇବ । ୧୩୧. ବିଭିନ୍ନ ଲୋକମାନଙ୍କୁ ପରୀକ୍ଷା କରିବା ପାଇଁ ଆମ୍ଭେ ସଂସାରର ଯାହା ଥାଟବାଟ ଓ ଭୋଗବିଳାସର ସାଧନ ଦେଇଛୁ, ସେଗୁଡ଼ିକ ପ୍ରତି ତୁମେ ଆଦୌ ଦୃଷ୍ଟି ଦିଅନା । ତୁମ

ଈଶ୍ୱରଙ୍କଠାରୁ (ପରଲୋକରେ) ଯାହା ମିଳିବ, ତାହା ଏହାଠାରୁ ଢ଼େର ଭଲ ଏବଂ ଚିରସ୍ଥାୟୀ । ୧୩୨. ନିଜ ପରିବାରକୁ ନମାଜ ସଂପାଦନ କରିବାର ଆଦେଶ ଦିଅ ଏବଂ ତୁମେ ନିଜେ ମଧ୍ୟ ନିୟମିତ ଭାବରେ ଏହା ସମ୍ପାଦନ କରୁଥାଅ । ଆମ୍ଭେ ତୁମଠାରୁ ଆହାର ମାଗୁନାହୁଁ ବରଂ ଆହାର ତ ଆମ୍ଭେ ତୁମକୁ ଦେଉ । ସଦାଚରିତାର ପରିଣାମ ସର୍ବଦା ଭଲ ହିଁ ହୋଇଥାଏ ।

୧୩୩. ସେମାନେ କହୁଛନ୍ତି, "ଏହି ବ୍ୟକ୍ତି (ଅର୍ଥାତ୍, ମହାମାନ୍ୟ ମୁହମ୍ମଦ) ତାଙ୍କ ଈଶ୍ୱରଙ୍କଠାରୁ କାହିଁକି କୌଣସି ଅଲୌକିକ ନିଦର୍ଶନ ଆଣୁନାହାନ୍ତି ?" କ'ଣ (କୁର୍‌ଆନରେ) ସେମାନଙ୍କୁ ପୂର୍ବ ଗ୍ରନ୍ଥଗୁଡ଼ିକରେ ଥିବା ଶିକ୍ଷାର ସ୍ୱଷ୍ଟ ପ୍ରମାଣ ମିଳିନାହିଁ ?" ୧୩୪. ଯଦି ତାଙ୍କୁ ପଠାଇବା ପୂର୍ବରୁ ଆମ୍ଭେ କୌଣସି ବିପଦ ପଠାଇ ସେମାନଙ୍କୁ ଧ୍ୱଂସ କରି ଦେଇଥାଆନ୍ତୁ ତେବେ ସେମାନେ ନିଶ୍ଚୟ କହିଥାଆନ୍ତେ, "ହେ ପ୍ରଭୁ ! ଆମ ପାଖକୁ କାହିଁକି କୌଣସି ଈଶ୍ୱରଦୂତଙ୍କୁ ପଠାଇଲ ନାହିଁ ? ଆମେ (ଏଠାରେ) ଏପରି ଲଜ୍ଜିତ ଓ ଲାଂଛିତ ହେବା ପୂର୍ବରୁ ତୁମ (ଗ୍ରନ୍ଥର) ଆଦେଶ ପାଳନ କରିଥାଆନ୍ତୁ । ୧୩୫. (ହେ ବାର୍ତ୍ତାବହ !) ସେମାନଙ୍କୁ କହିଦିଅ, "ସମସ୍ତେ (ପରିଣାମ) ଅପେକ୍ଷାରେ ଅଛନ୍ତି । ତୁମେମାନେ ମଧ୍ୟ ଅପେକ୍ଷା କର । ଖୁବ୍‌ଶୀଘ୍ର ତୁମେମାନେ ଏହା ଜାଣିଯିବ ଯେ କିଏ ସଳଖ ବାଟରେ ଅଛି ଏବଂ କିଏ ଠିକ୍ ବାଟ ପାଇଛି ।"

## ଅଧ୍ୟାୟ ୨୧, ଅଲ୍ ଅମ୍ବିୟା

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଲୋକମାନଙ୍କର ବିଚାରର ସମୟ ପାଖେଇ ଆସିଲାଣି, ତଥାପି ସେମାନେ ଏହାକୁ ଗୁରୁତ୍ୱ ନଦେଇ ଉପେକ୍ଷା କରି ଚାଲିଛନ୍ତି । ୨. ଈଶ୍ୱରଙ୍କଠାରୁ ସେମାନଙ୍କ ପାଖକୁ ଯାହା ସଦ୍ୟ ଉପଦେଶ ଆସିଲେ ସୁଦ୍ଧା ସେମାନେ ତାହାକୁ ଖେଳତାମସାରେ ମାତି ରହି ଶୁଣନ୍ତି । ୩. ସେମାନଙ୍କର ମନ ବୃଥା କଥାରେ ବ୍ୟସ୍ତ ରହିଥାଏ । ଦୁରାଚାରୀମାନେ ଗୋପନରେ ପରସ୍ପର ମଧ୍ୟରେ କୁହାକୁହି ହୁଅନ୍ତି ଯେ ଏହି ବ୍ୟକ୍ତି ଜଣକ ତୁମମାନଙ୍କ ପରି ଜଣେ ମଣିଷ, ପୁଣି ତୁମେମାନେ କିପରି ସବୁ ଜାଣିଶୁଣି (ତାଙ୍କ) ଯାଦୁବିଦ୍ୟାର ଫାନ୍ଦରେ ପଡ଼ିଯାଉଛ ?

୪. (ବାର୍ତ୍ତାବହ) କହିଲେ, "ପୃଥିବୀ ଓ ଆକାଶରେ କୁହା ଯାଉଥିବା ପ୍ରତ୍ୟେକ କଥାକୁ ମୋ' ଈଶ୍ୱର ଜାଣନ୍ତି । ସେ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି ।"

୫. ବରଂ ସେମାନେ ଏହା ମଧ୍ୟ କହୁଛନ୍ତି ଯେ କୁରଆନ କେବଳ ତାଙ୍କର ଅବାନ୍ତର ସ୍ୱପ୍ନର କାହାଣୀ ବା ତାଙ୍କର ନିଜ ରଚନା ଅଥବା ସେ ଜଣେ କବି । ଯଦି ଏହା ନୁହେଁ ତେବେ ସେ ଆମକୁ ସେହିଭଳି ଚମତ୍କାରିତା ଦେଖାନ୍ତୁ, ଯେମିତି ପୂର୍ବ ବାର୍ତ୍ତାବହମାନେ ଦେଖାଉଥିଲେ । ୬. ଅଥଚ ଏମାନଙ୍କ ପୂର୍ବରୁ ଯେଉଁ ଜନବସତିଗୁଡ଼ିକୁ ଆମ୍ଭେ ଧ୍ୱଂସ କଲୁ, ସେମାନଙ୍କ ମଧ୍ୟରୁ କେହି (ଅଲୌକିକ ଘଟଣା ଦେଖି ସୁଦ୍ଧା) ମାନି ନଥିଲେ । ତା'ହେଲେ କ'ଣ ଏମାନେ ଏବେ ମାନିଯିବେ ?

୭. ତୁମ ପୂର୍ବରୁ ଆମ୍ଭେ ଯେଉଁ ବାର୍ତ୍ତାବହମାନଙ୍କୁ ପଠାଇଥିଲୁ, ସମସ୍ତେ ମନୁଷ୍ୟ ଥିଲେ, ଯେଉଁମାନଙ୍କୁ ଆମ୍ଭେ ଦୈବବାଣୀ କରୁଥିଲୁ । (ସେମାନଙ୍କୁ କୁହ) ଯଦି ଏବିଷୟରେ ତୁମମାନଙ୍କର ଜ୍ଞାନ ନାହିଁ, ତେବେ ଯେଉଁମାନଙ୍କର ଜ୍ଞାନ ଅଛି, ସେମାନଙ୍କୁ ପଚାର । ୮. ଆମ୍ଭେ ସେମାନଙ୍କୁ ଏଭଳି ଶରୀର ଦେଇ ନଥିଲୁ ଯାହାଦ୍ୱାରା ସେମାନଙ୍କୁ ଖାଇବାକୁ ପଡୁ ନଥିଲା କିମ୍ୱା ସେମାନେ ଅମର ହୋଇ ଯାଉଥିଲେ । ୯. ପୁଣି ଆମ୍ଭେ ସେମାନଙ୍କୁ ଦେଇଥିବା କଥା ରଖିଲୁ ଏବଂ ସେମାନଙ୍କ ସହିତ ଯାହାକୁ ଇଚ୍ଛା କଲୁ, ତାକୁ ରକ୍ଷା କଲୁ ଏବଂ ଯେଉଁମାନେ ସୀମା ଅତିକ୍ରମ କରିଥିଲେ, ସେମାନଙ୍କୁ ଧ୍ୱଂସ କରିଦେଲୁ ।

୧୦. ଆମ୍ଭେ ତୁମମାନଙ୍କ ପାଇଁ ଏଭଳି ଗ୍ରନ୍ଥ ପଠାଇଛୁ ଯେଉଁଥିରେ ତୁମମାନଙ୍କ ବିଷୟରେ କୁହାଯାଇଛି, ତଥାପି କ'ଣ ତୁମେମାନେ ଏହା ବୁଝି ପାରୁନାହଁ (ଯେ ଏହା କାହାର ରଚନା) ?"

୧୧. ଅନେକ ଜନବସତି ଆମ୍ଭେ ଧ୍ୱଂସ କରିଦେଇଛୁ ଯାହାର ବାସିନ୍ଦାମାନେ ଦୁରାଚାରୀ ଥିଲେ । ସେମାନଙ୍କ ପରେ ଆମ୍ଭେ ଅନ୍ୟ ସମାଜ ସୃଷ୍ଟି କଲୁ । ୧୨. ଯେତେବେଳେ ସେମାନେ ଆମ୍ଭର ଶାସ୍ତିର ଆଭାସ ପାଇଲେ, (ନିଜର ପ୍ରାଣରକ୍ଷା କରିବା ପାଇଁ) ସେଠାରୁ ପଳାଇବାକୁ ଲାଗିଲେ । ୧୩. (ଆମ୍ଭେ କହିଲୁ) "ପଳାଇ ଯାଅନାହିଁ । ନିଜ ଘରକୁ ଫେରିଚାଲ ଯେଉଁଠି ତୁମେମାନେ ଭୋଗବିଳାସରେ ବୁଡ଼ି ରହି ଆନନ୍ଦ କରୁଥିଲ, ହୁଏତ କେହି ତୁମମାନଙ୍କର ଭଲମନ୍ଦ ପଚାରିବେ ।" ୧୪. ସେମାନେ ଚିତ୍କାର କଲେ, "ହାୟ ଆମର ଦୁର୍ଭାଗ୍ୟ ! ସତରେ

ଆମେ ପାପୀ ଥିଲୁ ।” ୧୫. ସେମାନେ ଚିତ୍କାର କରିବାରେ ଲାଗିଥିଲେ କିନ୍ତୁ ଆମ୍ଭେ ସେମାନଙ୍କୁ ନିପାତ କରିଦେଲୁ ।

୧୬. ପୃଥିବୀ ଓ ଆକାଶ ଏବଂ ଏଗୁଡ଼ିକ ମଧ୍ୟରେ ଯାହା ଅଛି, ଆମ୍ଭେ ସେଗୁଡ଼ିକୁ ଖେଳ ପାଇଁ ସୃଷ୍ଟି କରିନାହୁଁ । ୧୭. ଯଦି ନିଜର ମନୋରଂଜନ କରିବାର ଇଚ୍ଛା ଥାଆନ୍ତା ଏବଂ ଏହାହିଁ ଆମ୍ଭର ଉଦ୍ଦେଶ୍ୟ ହୋଇଥାଆନ୍ତା, ତେବେ ଏଥିପାଇଁ ଆମ୍ଭେ ଅନ୍ୟ କିଛି ବ୍ୟବସ୍ଥା କରି ନେଇଥାଆନ୍ତୁ । ୧୮. ବରଂ ଆମ୍ଭେ ଅସତ୍ୟ ଉପରେ ସତ୍ୟର ପ୍ରହାର କରୁ ଯାହା ତାହାର ପରାକ୍ରମ ଭାଙ୍ଗିଦିଏ ଏବଂ ଦେଖୁଦେଖୁ ଅସତ୍ୟ ଲୋପ ପାଇଯାଏ । ତୁମେମାନେ ଯାହା ଆରୋପ କରୁଛ ତାହା ଯୋଗୁଁ ତୁମମାନଙ୍କର ସର୍ବନାଶ ହେବ ।

୧୯. ପୃଥିବୀ ଓ ଆକାଶ ମଧ୍ୟରେ ଯେଉଁମାନେ ଅଛନ୍ତି, ସମସ୍ତେ ତାଙ୍କରି (ସୃଷ୍ଟି) । ଯେଉଁମାନେ (ଅର୍ଥାତ ଦେବଦୂତମାନେ) ତାଙ୍କ ପାଖରେ ଥାଆନ୍ତି, ସେମାନେ ନିରହଙ୍କାର ଭାବରେ ତାଙ୍କର ସେବା କରନ୍ତି ଏବଂ କ୍ଳାନ୍ତ ହୁଅନ୍ତିନାହିଁ । ୨୦. ସେମାନେ ଅବିଶ୍ରାନ୍ତ ଭାବରେ ଦିନରାତି ତାଙ୍କର ଗୁଣଗାନ କରୁଥାଆନ୍ତି ।

୨୧. ଏମାନେ ପୃଥିବୀର ଯେଉଁ ଜୀବଜଡ଼ଗୁଡ଼ିକୁ ଈଶ୍ୱର ମାନୁଛନ୍ତି, କ’ଣ ସେମାନେ କାହାକୁ ଜୀବନ ଦେଇପାରିବେ ? ୨୨. ଯଦି ପୃଥିବୀ ଓ ଆକାଶରେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଈଶ୍ୱର ଥାଆନ୍ତେ, ତେବେ ସେଗୁଡ଼ିକ ଛାରଖାର ହୋଇଯାଆନ୍ତା । ସେମାନେ ଯେଉଁ ଆରୋପ କରୁଛନ୍ତି, ତାହା ସହିତ ଦିବ୍ୟସିଂହାସନର ଅଧୀଶ୍ୱରଙ୍କର କୌଣସି ସଂପର୍କ ନାହିଁ । ୨୩. ସେ ଯାହା କରନ୍ତି, ସେଥିପାଇଁ (କାହାରି ନିକଟରେ) ଉତ୍ତରଦାୟୀ ନୁହନ୍ତି କିନ୍ତୁ ସମସ୍ତେ (ତାଙ୍କ ନିକଟରେ) ଉତ୍ତରଦାୟୀ ।

୨୪. କ’ଣ ସେମାନେ ତାଙ୍କୁ ଛାଡ଼ି ଅନ୍ୟମାନଙ୍କୁ ଈଶ୍ୱର ମାନି ନେଇଛନ୍ତି ? (ହେ ବାର୍ତ୍ତାବହ !) ସେମାନଙ୍କୁ କୁହ, “(ଏହା ସପକ୍ଷରେ) ତୁମର ପ୍ରମାଣ ଆଣ । ଏହି (ଏକେଶ୍ୱରବାଦର) ଶିକ୍ଷା ଏମାନଙ୍କୁ (କୁରଆନ୍‌ରେ) ଦିଆ ଯାଇଛି, ଯେଉଁମାନେ ମୋ’ ସହିତ ଅଛନ୍ତି ଏବଂ ଏହି ଶିକ୍ଷା ମଧ୍ୟ ମୋ’ ପୂର୍ବର ଲୋକମାନଙ୍କୁ (ସେମାନଙ୍କ ଗ୍ରନ୍ଥରେ) ଦିଆ ଯାଇଥିଲା ।” ମାତ୍ର ଅଧିକାଂଶ ଲୋକ ଏହି ସତ୍ୟ ବିଷୟରେ ଜାଣନ୍ତିନାହିଁ । ତେଣୁ ସେମାନେ ପ୍ରତ୍ୟାଖ୍ୟାନ କରିଦିଅନ୍ତି । ୨୫. ତୁମ ପୂର୍ବରୁ ଆମ୍ଭେ ଯେଉଁ ବାର୍ତ୍ତାବହଙ୍କୁ

ପଠାଇଛୁ, ତାଙ୍କୁ ଏହି ଦୈବବାଣୀ କରିଛୁ ଯେ ମୋ' ବ୍ୟତୀତ ଅନ୍ୟ କେହି ଈଶ୍ୱର ନାହାନ୍ତି, ତେଣୁ ମୋ'ରି ଉପାସନା କର ।

୨୬. ଏମାନେ କହୁଛନ୍ତି ଯେ ଦୟାମୟ (ଦେବଦୂତମାନଙ୍କୁ) ସନ୍ତାନ ରୂପେ ଗ୍ରହଣ କରିଛନ୍ତି ମାତ୍ର ସେ ପରମ ପବିତ୍ର ଏବଂ ଦେବଦୂତମାନେ ତାଙ୍କର ମର୍ଯ୍ୟାଦାସମ୍ପନ୍ନ ଭକ୍ତ । ୨୭. ସେମାନେ ତାଙ୍କ କଥା ଉପରେ କଥା କହନ୍ତିନାହିଁ, ବରଂ କେବଳ ତାଙ୍କ ଆଜ୍ଞା ପାଳନ କରନ୍ତି । ୨୮. ସେ ଏମାନଙ୍କ ଅତୀତ ଓ ଭବିଷ୍ୟତର ପ୍ରତ୍ୟେକ କଥା ଜାଣନ୍ତି । ସେମାନେ କେବଳ ସେହିମାନଙ୍କ ପାଇଁ ସୁପାରିଶ କରିପାରିବେ ଯେଉଁମାନଙ୍କ ପ୍ରତି ଅଲ୍ଲାହ୍ ପ୍ରସନ୍ନ ଥିବେ । ସେମାନେ ତାଙ୍କ ଭୟରେ ଥରୁଥାଆନ୍ତି । ୨୯. ଯଦି ସେମାନଙ୍କ ମଧ୍ୟରୁ କେହି କହେ ଯେ ଅଲ୍ଲାହଙ୍କ ବ୍ୟତୀତ ମୁଁ ମଧ୍ୟ ଜଣେ ଉପାସ୍ୟ, ତେବେ ଆମ୍ଭେ ତାକୁ ନର୍କଦଣ୍ଡ ଦେବୁ । ଆମ୍ଭେ ପାପୀମାନଙ୍କୁ ଏହିପରି ଦଣ୍ଡ ଦେଉ ।

୩୦. ନାସ୍ତିକମାନଙ୍କୁ କ'ଣ ଏହା ଜଣାନାହିଁ ଯେ (ଆରମ୍ଭରେ) ପୃଥିବୀ ଓ ଆକାଶ ପରସ୍ପର ସଂଯୁକ୍ତ ହୋଇ ରହିଥିଲା ଏବଂ ତା' ପରେ ଆମ୍ଭେ ସେଗୁଡ଼ିକୁ ପୃଥକ କଲୁ ଏବଂ ଆମ୍ଭେ ପ୍ରତ୍ୟେକ ସଜୀବକୁ ଜଳରୁ ସୃଷ୍ଟି କଲୁ ? କ'ଣ ତଥାପି ଏମାନେ (ଆମ୍ଭ ଅସ୍ତିତ୍ୱକୁ) ମାନିବେନାହିଁ ? ୩୧. ଆମ୍ଭେ ଭୂପୃଷ୍ଠରେ ଏହି କାରଣରୁ ପାହାଡ଼ ସୃଷ୍ଟି କଲୁ ଯେ ଏହା ସେମାନଙ୍କୁ ନେଇ ଦୋହଲି ନଯାଉ ଏବଂ ସେଥିରେ ସେମାନଙ୍କ ଯାତାୟାତ ପାଇଁ ପ୍ରଶସ୍ତ ଗିରିପଥ ସୃଷ୍ଟି କଲୁ । ୩୨. ଆମ୍ଭେ ଆକାଶକୁ (ଜୀବଜଗତ ପାଇଁ) ଏକ ସୁରକ୍ଷା ପ୍ରଦାନକାରୀ ଛାତ ରୂପେ ସୃଷ୍ଟି କଲୁ, ମାତ୍ର ଏମାନେ ଆମ୍ଭର ସଂକେତଗୁଡ଼ିକ ପ୍ରତି ଧ୍ୟାନ ଦେଉନାହାନ୍ତି । ୩୩. ସେ ହିଁ ଦିନ ଓ ରାତି ତଥା ସୂର୍ଯ୍ୟ ଓ ଚନ୍ଦ୍ରକୁ ସୃଷ୍ଟି କରିଛନ୍ତି । ପ୍ରତ୍ୟେକ (ଗ୍ରହ ନକ୍ଷତ୍ର) ନିଜନିଜର କକ୍ଷପଥରେ ଭାସି ବୁଲୁଛନ୍ତି ।

୩୪. (ହେ ବାର୍ତ୍ତାବହ!) ତୁମ ପୂର୍ବରୁ ମଧ୍ୟ ଆମ୍ଭେ କୌଣସି ମାନବକୁ ଅମରତ୍ୱ ପ୍ରଦାନ କରିନାହୁଁ । ଯଦି ତୁମର ମୃତ୍ୟୁ ହୁଏ, ତେବେ କ'ଣ ଏମାନେ ଅମର ହୋଇ ରହିବେ ? ୩୫. ପ୍ରତ୍ୟେକ ଜୀବ ମୃତ୍ୟୁର ସ୍ୱାଦ ଚାଖିବ । ଆମ୍ଭେ ତୁମମାନଙ୍କୁ ଭଲ ଓ ମନ୍ଦ ଉଭୟ ପରିସ୍ଥିତିରେ ରଖି ପରୀକ୍ଷା କରିଥାଉ ଏବଂ ତୁମେମାନେ ଆମ୍ଭରି ପାଖକୁ ଫେରିବ ।

୩୬. ଯେତେବେଳେ ମିଥ୍ୟାବିଶ୍ୱାସୀମାନେ ତୁମକୁ ଦେଖନ୍ତି, ବିଦ୍ରୂପ କରି କହନ୍ତି, "କ'ଣ ଏହି ଲୋକଟି ତୁମର ଆରାଧ୍ୟମାନଙ୍କୁ ଭଲମନ୍ଦ କହୁଛି ?" ସେମାନେ ଦୟାମୟଙ୍କ ଚର୍ଚ୍ଚାକୁ ଅଗ୍ରାହ୍ୟ କରୁଛନ୍ତି ।

୩୭. ମନୁଷ୍ୟ ସ୍ୱଭାବତଃ ଅଧୀର । ମୁଁ ଶୀଘ୍ର ତୁମମାନଙ୍କୁ ନିଜର ନିଦର୍ଶନ ଦେଖାଇବି । ଏଥିପାଇଁ ଅଥୟ ହୁଅନାହିଁ । ୩୮. ସେମାନେ କହୁଛନ୍ତି, "ଯଦି ତୁମ କଥା ସତ, ତେବେ ଯାହା ବିଷୟରେ ଧମକ ଦେଉଛ ତାହା କେବେ ସତ ହେବ ?" ୩୯. ଏହି ନାସ୍ତିକମାନେ ସେହି ସମୟର କଥା ଜାଣି ପାରନ୍ତେ କି, ଯେତେବେଳେ ସେମାନେ ନର୍କର ନିଆଁରୁ ନିଜର ମୁହଁକୁ ବା ପିଠିକୁ ରକ୍ଷା କରିପାରିବେ ନାହିଁ କିମ୍ବା ସେମାନଙ୍କୁ କୌଣସି ସାହାଯ୍ୟ ମିଳିବନାହିଁ । ୪୦. ଏହା ସେମାନଙ୍କ ସମ୍ମୁଖରେ ହଠାତ୍ ଉପସ୍ଥିତ ହୋଇ ସେମାନଙ୍କୁ ସ୍ତବ୍ଧ କରିଦେବ । ସେମାନେ ତାକୁ ଏଡ଼ାଇ ପାରିବେ ନାହିଁ କିମ୍ବା ସେମାନଙ୍କୁ ବିରତି ମିଳିବନାହିଁ । ୪୧. ତୁମ ପୂର୍ବରୁ ମଧ୍ୟ ବାର୍ତ୍ତାବହମାନଙ୍କୁ ଉପହାସ କରାଯାଇଛି । ଯେଉଁ ବିପଦକୁ ସେମାନେ ଉପହାସ କରୁଥିଲେ ତାହାହିଁ ସେମାନଙ୍କୁ ଘେରି ନେଇଥିଲା ।

୪୨. ସେମାନଙ୍କୁ ପଚାର, "ରାତି ବେଳେ ହେଉ ବା ଦିନ ବେଳେ ହେଉ, ଦୟାମୟଙ୍କ ଦଣ୍ଡରୁ ତୁମମାନଙ୍କୁ କିଏ ରକ୍ଷା କରିପାରିବ ?" ତଥାପି ସେମାନେ ନିଜର ପାଳନକର୍ତ୍ତାଙ୍କ କଥାକୁ ଉପେକ୍ଷା କରୁଛନ୍ତି । ୪୩. କ'ଣ ଆମ୍ଭ ବ୍ୟତୀତ ସେମାନଙ୍କର ଆଉ କେହି ଈଶ୍ୱର ଅଛନ୍ତି ଯେଉଁମାନେ ସେମାନଙ୍କୁ ରକ୍ଷା କରିପାରିବେ ? ସେମାନେ ନିଜକୁ ରକ୍ଷା କରିବାକୁ ମଧ୍ୟ ସମର୍ଥ ନୁହନ୍ତି । ଆମ୍ଭ ବିରୁଦ୍ଧରେ କେହି ସେମାନଙ୍କୁ ସାହାଯ୍ୟ କରିପାରିବ ନାହିଁ । ୪୪. ଆମ୍ଭେ ସେମାନଙ୍କୁ ଏବଂ ସେମାନଙ୍କ ପୂର୍ବପୁରୁଷମାନଙ୍କୁ ଜୀବନସାରା ସୁଖର ସାଧନ ଦେଇଆସିଲୁ । କ'ଣ ସେମାନଙ୍କୁ ଦେଖାଯାଉ ନାହିଁ ଯେ ଆମ୍ଭେ କିପରି ସେମାନଙ୍କ (ନିୟନ୍ତ୍ରଣରେ ଥିବା) ଅଂଚଳର ସୀମାକୁ ସଂକୁଚିତ କରିଚାଲିଛୁ ? ତଥାପି କ'ଣ ସେମାନେ ବିଜୟୀ ହୋଇଯିବେ ? ୪୫. ସେମାନଙ୍କୁ କୁହ, "ମୁଁ ତୁମମାନଙ୍କୁ ଦୈବବାଣୀ ଦ୍ୱାରା ସାବଧାନ କରୁଛି", ମାତ୍ର ବଧିରମାନଙ୍କୁ ସାବଧାନ କଲେ ସୁଦ୍ଧା ସେମାନେ କଥା ଶୁଣି ପାରନ୍ତିନାହିଁ । ୪୬. ଯଦି ସେମାନଙ୍କୁ ତୁମ ଈଶ୍ୱରଙ୍କ ଶାସ୍ତିର ଟିକିଏ ଧାସ ମଧ୍ୟ ବାଜିଯିବ, ସେମାନେ ନିଶ୍ଚୟ ଚିତ୍କାର କରି ଉଠିବେ ଯେ ହାୟ ! ଆମର ଦୁର୍ଭାଗ୍ୟ ! ଆମେ ପ୍ରକୃତରେ ପାପୀ ।

୪୭. ବିଗ୍ଭର ଦିନ ଆମ୍ଭେ ନ୍ୟାୟର ନିକିତି ସ୍ଥାପନ କରିବୁ ଏବଂ କାହାରି ପ୍ରତି ତିଳେହେଲେ ଅନ୍ୟାୟ କରାଯିବ ନାହିଁ । (କାହାରି) କର୍ମ ସୋରିଷ ପରି ହୋଇଥିଲେ ସୁଦ୍ଧା ଆମ୍ଭେ ତାକୁ ସାମନାକୁ ଆଣିବୁ ଏବଂ ହିସାବ ନେବାପାଇଁ ଆମ୍ଭେ ଯଥେଷ୍ଟ ।

୪୮. ଆମ୍ଭେ ମୁ'ସା ଓ ହାରୁନଙ୍କୁ ଫୁରକାନ୍ (ଅର୍ଥାତ୍ ସତ୍ୟ ଓ ଅସତ୍ୟ ମଧ୍ୟରେ ପ୍ରଭେଦ କରୁଥିବା ଗ୍ରନ୍ଥ) ଦେଇଥିଲୁ । ଏହା ଧର୍ମପରାୟଣ ଲୋକମାନଙ୍କ ପାଇଁ ଉପଦେଶ ଏବଂ ସେମାନଙ୍କ (ମାର୍ଗଦର୍ଶନ) ପାଇଁ ଏକ ଆଲୋକ ଥିଲା, ୪୯. ଯେଉଁମାନେ ନିଜ ପାଳନକର୍ତ୍ତାଙ୍କୁ ନଦେଖି ସୁଦ୍ଧା ତାଙ୍କୁ ଭୟ କରୁଥିଲେ ଏବଂ ପ୍ରଳୟ ଦିନକୁ ଡରୁଥିଲେ । ୫୦. (ସେହିପରି ତୁମମାନଙ୍କ ପାଇଁ) ଆମ୍ଭେ ଏହି ଶୁଭଗ୍ରନ୍ଥଟି ପଠାଇଛୁ । କ'ଣ ତୁମେମାନେ ଏହାକୁ ଅସ୍ୱୀକାର କରିଦେବ ?

୫୧. ଏହା ପୂର୍ବରୁ ଆମ୍ଭେ ଇବ୍ରାହିମଙ୍କୁ ତାଙ୍କର ବାଟ ଦେଖାଇଥିଲୁ ଏବଂ ଆମ୍ଭେ ତାଙ୍କୁ ଭଲରୂପେ ଜାଣିଥିଲୁ । ୫୨. ଯେତେବେଳେ ସେ ତାଙ୍କ ପିତାଙ୍କୁ ଏବଂ ତାଙ୍କ ସଂପ୍ରଦାୟର ଲୋକମାନଙ୍କୁ ପଚ୍ଭରିଲେ, "ଏହି ମୂର୍ତ୍ତିଗୁଡ଼ିକ କ'ଣ, ଯେଉଁମାନଙ୍କ ଆଗରେ ତୁମେମାନେ ଧ୍ୟାନମଗ୍ନ ହୋଇ ବସିଥାଅ ?" ୫୩. ସେମାନେ ଉତ୍ତର ଦେଲେ, "ଅମେମାନେ ଆମ ପୂର୍ବପୁରୁଷମାନଙ୍କୁ ଏମାନଙ୍କର ପୂଜା କରୁଥିବାର ଦେଖିଆସିଛୁ ।" ୫୪. ଇବ୍ରାହିମ କହିଲେ, "ପ୍ରକୃତରେ ତୁମେମାନେ ପୂରାପୂରି ପଥଭ୍ରଷ୍ଟ ହୋଇଯାଇଛ ଏବଂ ତୁମମାନଙ୍କ ପୂର୍ବପୁରୁଷମାନେ ମଧ୍ୟ ପଥଭ୍ରଷ୍ଟ ଥିଲେ ।" ୫୫. ସେମାନେ କହିଲେ, "ତୁମେ ସତରେ ଆମ ପାଇଁ ସତ୍ୟର ବାର୍ତ୍ତା ଆଣିଛ ବା ଆମ ସହିତ ପରିହାସ କରୁଛ ?" ୫୬. ସେ ଉତ୍ତର ଦେଲେ, "ଆଦୌ ନୁହେଁ । ବରଂ ପ୍ରକୃତରେ ତୁମମାନଙ୍କର ଈଶ୍ୱର ସେହି, ଯିଏ ପୃଥିବୀ ଓ ଆକାଶର ମାଲିକ ଏବଂ ସେଗୁଡ଼ିକର ସ୍ରଷ୍ଟା । ମୁଁ ଏହି ସତ୍ୟର ସାକ୍ଷ୍ୟ ଦେଉଛି ।" ୫୭. (ପୁଣି ମନେମନେ କହିଲେ) "ଅଲ୍ଲାହଙ୍କ ରାଣ ! ତୁମେମାନେ ଏଠାରୁ ଯିବା ପରେ ମୁଁ ତୁମ ବିଗ୍ରହମାନଙ୍କ ସହିତ ଏକ କୌଶଳ କରିବି ।" ୫୮. ତା'ପରେ (ସେମାନେ ଯିବା ପରେ) ସେ ସେଗୁଡ଼ିକୁ ଭାଙ୍ଗି ଖଣ୍ଡଖଣ୍ଡ କରିଦେଲେ ଏବଂ ବଡ଼ ମୂର୍ତ୍ତିଟିକୁ ଛାଡ଼ିଦେଲେ ଯେପରିକି ସେମାନେ ତା' ପାଖକୁ ଯିବେ ।

୫୯. ତାଙ୍କ ସଂପ୍ରଦାୟର ଲୋକମାନେ (ବିଗ୍ରହଗୁଡ଼ିକର ଅବସ୍ଥା ଦେଖି) କହିଲେ, "ଆମ ଆରାଧ୍ୟମାନଙ୍କର ଏଭଳି ଅବସ୍ଥା କିଏ କଲା ? ନିଶ୍ଚୟ ସେ ଜଣେ

ଦୁଷ୍ଟ ଲୋକ ।” ୬୦. (କେତେକ ଲୋକ ସେମାନଙ୍କୁ) କହିଲେ, “ଆମେ ଜଣେ ଯୁବକକୁ ସେମାନଙ୍କ ବିଷୟରେ କଥାବାର୍ତ୍ତା କରୁଥିବାର ଶୁଣିଛୁ । ତା’ ନାଁ ଇବ୍ରାହିମ ।” ୬୧. ସେମାନେ (ରାଗିଯାଇ) କହିଲେ, “ତେବେ ତାକୁ ଧରି ଲୋକମାନଙ୍କ ସାମନାକୁ ଆଣ । ସେମାନେ ଏହାର ସାକ୍ଷୀ ରହନ୍ତୁ ।” ୬୨. (ଇବ୍ରାହିମ ପହଁଚିଲା ପରେ) ସେମାନେ ତାଙ୍କୁ ପଚାରିଲେ, “ଇବ୍ରାହିମ ! କ’ଣ ତୁମେ ହିଁ ଆମ ଦେବାଦେବୀମାନଙ୍କ ସହିତ ଏଭଳି ବ୍ୟବହାର କରିଛ ?” ୬୩. ଇବ୍ରାହିମ ଉତ୍ତର ଦେଲେ, “ବରଂ ସେମାନଙ୍କ ମଧ୍ୟରେ ଥିବା ବଡ଼ ବିଗ୍ରହଟି ଏହା କରିଥିବ । ଯଦି ସେମାନେ କଥା କହିପାରନ୍ତି, ତା’ହେଲେ ସେମାନଙ୍କୁ ପଚାରିନିଅ ।” ୬୪. ଏହାପରେ ସେମାନେ ମନରେ ଚିନ୍ତା କଲେ ଏବଂ (ମନେମନେ ନିଜକୁ ଧିକ୍କାର କରି) କହିଲେ, “ପ୍ରକୃତରେ ଆମେମାନେ ନିଜେ ଭୁଲ କରିଛୁ ।” ୬୫. ପୁଣି ସେମାନେ ମଥା ନୁଆଁଇ କହିଲେ, “ତୁମେ ତ ଜାଣ ଯେ ଏମାନେ କଥା କହନ୍ତିନାହିଁ ।” ୬୬. (ଇବ୍ରାହିମ କହିଲେ) “ତା’ହେଲେ ତୁମେମାନେ ଅଲ୍ଲାହଙ୍କୁ ଛାଡ଼ି ଏମାନଙ୍କୁ କାହିଁକି ପୂଜା କରୁଛ ଯେଉଁମାନେ ତୁମମାନଙ୍କର ନା କିଛି ଉପକାର କରି ପାରିବେ ନା ଅନିଷ୍ଟ କରି ପାରିବେ ? ୬୭. ଧିକ୍ ତୁମମାନଙ୍କୁ ଏବଂ ତୁମର ସେହି ଆରାଧ୍ୟମାନଙ୍କୁ ଯେଉଁମାନଙ୍କୁ ତୁମେମାନେ ଅଲ୍ଲାହଙ୍କୁ ଛାଡ଼ି ପୂଜା କରୁଛ । କ’ଣ ତୁମମାନଙ୍କର ଟିକିଏ ବୁଦ୍ଧି ନାହିଁ ?”

୬୮. ସେମାନେ (ରାଗିଯାଇ ନିଜ ଲୋକମାନଙ୍କୁ) କହିଲେ, “ଯଦି ତୁମେମାନେ କିଛି କରିପାରିବ, ତେବେ ଏହି ଲୋକକୁ ପୋଡ଼ିଦିଅ ଏବଂ ନିଜର ଦେବାଦେବୀମାନଙ୍କୁ ରକ୍ଷା କର ।” ୬୯. (ସୁତରାଂ ସେମାନେ ଇବ୍ରାହିମଙ୍କୁ ନିଆଁରେ ପକାଇଦେଲେ ଏବଂ ଆମ୍ଭେ ଆଜ୍ଞା ଦେଲୁ) “ହେ ଅଗ୍ନି ! ଇବ୍ରାହିମଙ୍କ ପାଇଁ ଶୀତଳ ଓ ଶାନ୍ତିପ୍ରଦାୟକ ହୁଅ ।” ୭୦. ସେମାନେ ଇବ୍ରାହିମଙ୍କ ଅନିଷ୍ଟ ପାଂଚିଥିଲେ କିନ୍ତୁ ଆମ୍ଭେ ସେମାନଙ୍କୁ ବିଫଳ କରିଦେଲୁ ।

୭୧. (ତା’ପରେ) ଆମ୍ଭେ ଇବ୍ରାହିମ ଓ ଲୁତ୍‌ଙ୍କୁ (ସେଠାରୁ) ଉଦ୍ଧାର କରି ସେହି ଦେଶକୁ ନେଇଗଲୁ ଯେଉଁଠି ଆମ୍ଭେ ବିଶ୍ୱବାସୀଙ୍କ ପାଇଁ ଅଶେଷ କଲ୍ୟାଣ ରଖିଛୁ । ୭୨. ଆମ୍ଭେ ତାଙ୍କୁ ଇସହାକ୍ (ନାମକ ପୁତ୍ର) ଏବଂ ୟାକୁବ୍ (ନାମକ ପୌତ୍ର) ପ୍ରଦାନ କରିଥିଲୁ ଏବଂ ସେମାନଙ୍କୁ ପୁଣ୍ୟବାନ କରିଥିଲୁ । ୭୩. ଆମ୍ଭେ

ସେମାନଙ୍କୁ ଜନନାୟକ କରିଥିଲୁ ଏବଂ ସେମାନେ ଆମ୍ଭ ନିର୍ଦ୍ଦେଶରେ (ଲୋକମାନଙ୍କର) ମାର୍ଗଦର୍ଶନ କରୁଥିଲେ । ଆମ୍ଭେ ଦୈବବାଣୀ ଦ୍ୱାରା ସେମାନଙ୍କୁ ଭଲ କର୍ମ କରିବା, ନମାଜ ପ୍ରତିଷ୍ଠା କରିବା ଏବଂ ଜକାତ ଦେବାର ନିର୍ଦ୍ଦେଶ ଦେଇଥିଲୁ । ସେମାନେ ସମସ୍ତେ ଆମ୍ଭରି ଉପାସକ ଥିଲେ ।

୭୪. ଆମ୍ଭେ ଲୁତ୍‌ଙ୍କୁ ବିଚାରଶକ୍ତି ଓ ସଦ୍‌ଜ୍ଞାନ ପ୍ରଦାନ କରିଥିଲୁ ଏବଂ ତାଙ୍କୁ ଦୁଷ୍କର୍ମରେ ଲିପ୍ତ ଥିବା ଗ୍ରାମରୁ ଉଦ୍ଧାର କରିଥିଲୁ । ପ୍ରକୃତରେ ସେଠାର ଲୋକମାନେ ଭାରି ଦୁଶ୍ଚରିତ୍ର ଓ ପାପାଚାରୀ ଥିଲେ । ୭୫. ଆମ୍ଭେ ତାଙ୍କୁ ନିଜର କୃପାପାତ୍ର କରିଥିଲୁ । ପ୍ରକୃତରେ ସେ ଜଣେ ପୁଣ୍ୟବାନ ବ୍ୟକ୍ତି ଥିଲେ ।

୭୬. ନୁହ୍‌ଙ୍କ ବିଷୟରେ ଚର୍ଚ୍ଚା କର ଯେ ଯେତେବେଳେ ଏଥିପୂର୍ବରୁ ସେ ଆମ୍ଭଙ୍କୁ ଡାକିଥିଲେ, ଆମ୍ଭେ ତାଙ୍କ ଡାକ ଶୁଣିଥିଲୁ ଏବଂ ତାଙ୍କୁ ଓ ତାଙ୍କ ପରିଜନମାନଙ୍କୁ ଏକ ବଡ଼ ବିପଦରୁ ଉଦ୍ଧାର କରିଥିଲୁ, ୭୭. ଏବଂ ତାଙ୍କ ସମାଜର ଯେଉଁ ଲୋକମାନେ ଆମ୍ଭ ନିଦର୍ଶନଗୁଡ଼ିକୁ ଅସ୍ୱୀକାର କରିଥିଲେ, ସେମାନଙ୍କ ବିରୁଦ୍ଧରେ ଆମ୍ଭେ ତାଙ୍କୁ ସାହାଯ୍ୟ କରିଥିଲୁ । ସେମାନେ ଦୁଶ୍ଚରିତ୍ର ଥିଲେ । ତେଣୁ ଆମ୍ଭେ ସମସ୍ତଙ୍କୁ ଜଳମଗ୍ନ କରି ଦେଇଥିଲୁ ।

୭୮. ଦାଉଦ ଓ ସୁଲେମାନଙ୍କ ବିଷୟରେ ବର୍ଣ୍ଣନା କର ଯେ ଯେତେବେଳେ ସେମାନେ (ଏଭଳି) ଏକ ଜମି ବିବାଦର ନିଷ୍ପତ୍ତି କରୁଥିଲେ ଯେଉଁ ଜମିରେ ରାତିରେ କିଛି ଲୋକଙ୍କର ଛେଳି ପଶି (ଫସଲ) ଚରି ଯାଇଥିଲେ । ସେମାନେ ନିଷ୍ପତ୍ତି କଲାବେଳେ ଆମ୍ଭେ ଦେଖୁଥିଲୁ । ୭୯. ତେଣୁ, ଆମ୍ଭେ ସୁଲେମାନଙ୍କୁ (ଉଚିତ୍ ନିଷ୍ପତ୍ତି କରିବାର) ବାଟ ବତାଇଦେଲୁ । ଆମ୍ଭେ ଦୁହିଁଙ୍କୁ ବିଚାରଶକ୍ତି ଏବଂ ସଦ୍‌ଜ୍ଞାନ ପ୍ରଦାନ କରିଥିଲୁ । ଆମ୍ଭେ ପାହାଡ଼ ଓ ପକ୍ଷୀମାନଙ୍କୁ ଦାଉଦଙ୍କର ବଶବର୍ତ୍ତୀ କରି ଦେଇଥିଲୁ । ସେମାନେ ସମସ୍ତେ ମିଶି ଆମ୍ଭର ଗୁଣଗାନ କରୁଥିଲେ ଏବଂ ଆମ୍ଭେ ସ୍ୱୟଂ ଏଗୁଡ଼ିକର କର୍ତ୍ତା ଥିଲୁ । ୮୦. ତୁମମାନଙ୍କର ଫାଇଦା ପାଇଁ ଆମ୍ଭେ ତାଙ୍କୁ ସାଂଜୁ ତିଆରି କରିବାର କଳା ଶିଖାଇଥିଲୁ ଯେପରିକି ଏହା ଯୁଦ୍ଧ ସମୟରେ ତୁମମାନଙ୍କୁ ସୁରକ୍ଷା ଦେବ । କ'ଣ ତୁମେମାନେ ଆମ୍ଭର ଉପକାର ମାନିବ ? ୮୧. ଆମ୍ଭେ ଦ୍ରୁତ ବେଗରେ ବହୁଥିବା ପବନକୁ ମଧ୍ୟ ସୁଲେମାନଙ୍କ ଆୟତ୍ତାଧୀନ କରିଥିଲୁ ଯାହା ତାଙ୍କ ନିର୍ଦ୍ଦେଶରେ ସେହି ଅଂଚଳ ଆଡ଼କୁ

ବୋହୁଥିଲା ଯାହା ପ୍ରତି ଆମ୍ଭର ଆଶୀର୍ବାଦ ଥିଲା । ଆମ୍ଭେ ପ୍ରତ୍ୟେକ କଥା ଜାଣୁ । ୮୨. କେତେକ ଦୁଷ୍ଟ ଜିନ୍‌ଙ୍କୁ ମଧ୍ୟ ଆମ୍ଭେ ତାଙ୍କର ଅଧୀନସ୍ଥ କରିଥିଲୁ ଯେଉଁମାନେ ତାଙ୍କ ପାଇଁ ସମୁଦ୍ରରେ ବୁଡ଼ାଳିର କାର୍ଯ୍ୟ କରୁଥିଲେ ଏବଂ ଏହାବ୍ୟତୀତ ତାଙ୍କର ଅନ୍ୟ ସେବା ମଧ୍ୟ କରୁଥିଲେ । ଆମ୍ଭେ ସେମାନଙ୍କ ଉପରେ ନଜର ରଖିଥିଲୁ ।

୮୩. ଅୟୁବ୍‌ଙ୍କ ବିଷୟ ବର୍ଣ୍ଣନା କର ଯେ ଯେତେବେଳେ ସେ ନିଜ ପାଳନକର୍ତ୍ତାଙ୍କୁ ଡାକିଥିଲେ, "(ହେ ପ୍ରଭୁ!) ମୁଁ ଅସୁସ୍ଥ ହୋଇପଡ଼ିଛି ଏବଂ ତୁମେ ତ ପରମ ଦୟାଳୁ ।" ୮୪. ଆମ୍ଭେ ତାଙ୍କ ପ୍ରାର୍ଥନା ସ୍ୱୀକାର କରିଥିଲୁ ଏବଂ ତାଙ୍କର କଷ୍ଟ ଲାଘବ କରିଥିଲୁ ଏବଂ ନିଜ କୃପାରୁ ତାଙ୍କ ପରିଜନଙ୍କ ସଂଖ୍ୟା ଦୁଇଗୁଣ କରିଦେଇଥିଲୁ ଯେପରିକି ଏହା ଆମ୍ଭର ଉପାସକମାନଙ୍କ ପାଇଁ ଏକ ଶିକ୍ଷା ହେବ ।

୮୫. (ସେହିପରି) ଇସମାଇଲ୍, ଇଦ୍ରିସ ଓ ଜୁଲ୍‌କିଫଲ୍‌ଙ୍କ ବିଷୟରେ ମଧ୍ୟ ବର୍ଣ୍ଣନା କର । ଏମାନେ ସମସ୍ତେ ଭାରି ସହିଷ୍ଣୁ ଥିଲେ । ୮୬. ଆମ୍ଭେ ସେମାନଙ୍କୁ ନିଜର କୃପାପାତ୍ର କରିଥିଲୁ । ସେମାନେ ପୁଣ୍ୟବାନ ଥିଲେ ।

୮୭. ଜୁନ୍ନୁନ୍ (ଅର୍ଥାତ୍ ୟୁନୁସଙ୍କ) ବିଷୟରେ ବର୍ଣ୍ଣନା କର ଯେ ଯେତେବେଳେ ସେ ବିରକ୍ତ ହୋଇ ଚାଲି ଯାଇଥିଲେ ଏବଂ ଭାବିଥିଲେ ଯେ ଆମ୍ଭେ ତାଙ୍କୁ ଦଣ୍ଡିତ କରିବୁନାହିଁ ଏବଂ ପରିଶେଷରେ ସେ (ମାଛ ପେଟରେ) ଅନ୍ଧକାର ଭିତରେ ଥାଇ ଆମ୍ଭଙ୍କୁ ଡାକିଲେ, "(ହେ ପ୍ରଭୁ!) ତୁମ ବ୍ୟତୀତ କେହି ଉପାସ୍ୟ ନାହାନ୍ତି । ତୁମେ ପରମ ପବିତ୍ର । ମୁଁ ଅବଶ୍ୟ ଦୋଷ କରିଛି ।" ୮୮. ସୁତରାଂ, ଆମ୍ଭେ ତାଙ୍କ ପ୍ରାର୍ଥନା ସ୍ୱୀକାର କଲୁ ଏବଂ ତାଙ୍କ ଦୁଃଖ ଦୂର କଲୁ । (ଆମ୍ଭଠାରେ) ବିଶ୍ୱାସ ରଖିଥିବା ଲୋକଙ୍କୁ ଆମ୍ଭେ ଏହିପରି ରକ୍ଷା କରିଥାଉ ।

୮୯. ଜକରିୟାଙ୍କ ବିଷୟ ସ୍ମରଣ କର ଯେତେବେଳେ ସେ ତାଙ୍କ ପାଳନକର୍ତ୍ତାଙ୍କୁ ନିବେଦନ କରିଥିଲେ, "ହେ ପ୍ରଭୁ! ମୋତେ ଏକୁଟିଆ (ପୁତ୍ରହୀନ) ରଖନାହିଁ । ତୁମେ ସର୍ବୋତ୍ତମ ଉତ୍ତରାଧିକାରୀ ।" ୯୦. ସୁତରାଂ, ଆମ୍ଭେ ତାଙ୍କ ପ୍ରାର୍ଥନା ଶୁଣିଥିଲୁ ଏବଂ ତାଙ୍କୁ ୟହ୍‌ୟା ନାମକ ପୁତ୍ର ପ୍ରଦାନ କରିଥିଲୁ । ଆମ୍ଭେ ତାଙ୍କ ପାଇଁ ତାଙ୍କ ପତ୍ନୀଙ୍କ (ବନ୍ଧ୍ୟାତ୍ୱ) ଦୋଷ ଦୂର କରିଥିଲୁ । ଏମାନେ ଭଲ କର୍ମ କରିବାପାଇଁ ସଦା ତତ୍ପର ରହୁଥିଲେ ଏବଂ (ମନରେ) ଆଶା ଓ ଆଶଙ୍କା ରଖି ଆମ୍ଭଙ୍କୁ ଡାକୁଥିଲେ ଏବଂ ଆମ୍ଭ ପାଖରେ ବିନମ୍ର ହୋଇ ରହୁଥିଲେ ।

୯୧. ସେହି ମହିଳା ଯିଏ ନିଜର ସତୀତ୍ୱ ରକ୍ଷା କରିଥିଲେ ଏବଂ ଯାହାଙ୍କ ଗର୍ଭରେ ଆମ୍ଭେ ନିଜ ଆଜ୍ଞା ବଳରେ ପ୍ରାଣସଂଚର କରିଥିଲୁ, ଆମ୍ଭେ ତାଙ୍କୁ ଏବଂ ତାଙ୍କ ସହିତ ତାଙ୍କ ପୁତ୍ରଙ୍କୁ (ଅର୍ଥାତ୍ ଯୀଶୁଙ୍କୁ) ସାରା ବିଶ୍ୱ ପାଇଁ ଏକ ନିଦର୍ଶନ କରିଦେଲୁ ।

୯୨. (ହେ ମନୁଷ୍ୟଗଣ!) ବାସ୍ତବରେ ତୁମମାନଙ୍କର ଏହି ସମାଜ ଗୋଟିଏ ସମାଜ ଏବଂ ମୁଁ ତୁମମାନଙ୍କର ଈଶ୍ୱର । ତେଣୁ ତୁମେମାନେ କେବଳ ମୋ'ରି ଉପାସନା କର । ୯୩. ମାତ୍ର ଲୋକମାନେ (ଧର୍ମ ବିଷୟରେ) ପରସ୍ପର ମଧ୍ୟରେ ମତଭେଦ କରି ଭାଗଭାଗ ହୋଇଗଲେ । ସମସ୍ତଙ୍କୁ ଆମ୍ଭରି ପାଖକୁ ଫେରିବାକୁ ପଡ଼ିବ । ୯୪. ଯିଏ ଆମ୍ଭଠାରେ ଆସ୍ଥା ରଖି ଭଲ କର୍ମ କରିବ, ତା'ର ପରିଶ୍ରମ ବୃଥା ହେବନାହିଁ । ଆମ୍ଭେ (ତା' କର୍ମ ପଂଜିକାରେ) ଏହାକୁ ଲେଖି ରଖୁଛୁ ।

୯୫. ଯେଉଁ ଜନବସତିକୁ ଆମ୍ଭେ ଧ୍ୱଂସ କରିଦେଲୁ, ତାହାର ବାସିନ୍ଦାମାନେ ଆଉଥରେ (ସଂସାରକୁ) ଫେରିବା ସମ୍ଭବ ନୁହେଁ । ୯୬. ଏପରିକି (ସେହି ସମୟ ଆସିଯିବ ଯେତେବେଳେ) ୟାଜୁଜ୍ ଓ ମାଜୁଜଙ୍କୁ ଖୋଲି ଦିଆଯିବ ଏବଂ ସେମାନେ ଉଚ୍ଚଉଚ୍ଚ ଜାଗାମାନଙ୍କରୁ ବାହାରି (ଚାରିଆଡେ) ମାଡ଼ିଯିବେ, ୯୭. ଏବଂ (ଅଲ୍ଲାହଙ୍କ) ବଚନ ସତ ପ୍ରମାଣିତ ହେବାର ସମୟ ପାଖେଇ ଆସିବ, ସେତେବେଳେ ମିଥ୍ୟାବିଶ୍ୱାସୀମାନଙ୍କର ଆଖି ଭୟରେ ବିସ୍ଫାରିତ ହୋଇଯିବ । ସେମାନେ କହିବେ, "ହାୟ ଆମର ଦୁର୍ଭାଗ୍ୟ! ଆମେ ଏ ବିଷୟରେ ଘୋର ଅବହେଳା କଲୁ । ସତରେ ଆମେ ବଡ଼ ଭୁଲ କଲୁ ।" ୯୮. (ହେ ମିଥ୍ୟାବିଶ୍ୱାସୀମାନେ!) ଅଲ୍ଲାହଙ୍କ ବ୍ୟତୀତ ତୁମେମାନେ ଯେଉଁମାନଙ୍କର ପୂଜା କରୁଛ, ସେମାନେ ନର୍କର ଇନ୍ଧନ ହେବେ ଏବଂ ତୁମେମାନେ ମଧ୍ୟ ସେହି ନର୍କକୁ ଯିବ । ୯୯. ଯଦି ସେମାନେ ପ୍ରକୃତରେ ଈଶ୍ୱର ହୋଇଥାଆନ୍ତେ ତେବେ ନର୍କକୁ ଯାଆନ୍ତେନାହିଁ । ସେମାନେ ସମସ୍ତେ ସେଠାରେ ଚିରଦିନ ପାଇଁ ରହିବେ । ୧୦୦. ସେମାନେ ସେଠାରେ କେବଳ ଚିତ୍କାର କରିବେ କିନ୍ତୁ କିଛି ଶୁଣି ପାରିବେନାହିଁ । ୧୦୧. ହଁ, ଯେଉଁମାନଙ୍କୁ ଆମ୍ଭର ପୁରସ୍କାର ମିଳିବ ବୋଲି ପୂର୍ବରୁ ନିଷ୍ପତ୍ତି ହୋଇସାରିଥିବ, ସେମାନଙ୍କୁ ନର୍କରୁ ଦୂରେଇ ରଖାଯିବ । ୧୦୨. ସେମାନେ ନର୍କର ସ୍ୱରଶବ୍ଦ ଶୁଣିବେନାହିଁ ଏବଂ ସେମାନଙ୍କ ମନପସନ୍ଦର ଭୋଗବିଳାସରେ ମଗ୍ନ

ରହିବେ । ୧୦୩. (ପ୍ରଳୟ ଦିନର) ଭୟଙ୍କର ବିପଦ ସେମାନଙ୍କୁ ବ୍ୟଥିତ କରିବନାହିଁ । ଦେବଦୂତମାନେ ସେମାନଙ୍କୁ ସ୍ୱାଗତ କରି କହିବେ, "ଏହା ତୁମମାନଙ୍କର (ଆନନ୍ଦର) ଦିନ, ଯାହାର ପ୍ରତିଶ୍ରୁତି ତୁମମାନଙ୍କୁ ଦିଆ ଯାଇଥିଲା ।

୧୦୪. ସେଦିନ ଆମ୍ଭେ ଆକାଶକୁ ଏମିତି ଗୁଡ଼ାଇଦେବୁ ଯେପରି ନଥିପତ୍ର ଗୁଡ଼ାଇ ଦିଆଯାଏ । ଯେପରି ଆମ୍ଭେ ପ୍ରଥମ ଥର ସୃଷ୍ଟିର ନିର୍ମାଣ କରିଥିଲୁ ସେହିପରି ଏହାର ପୁନଃନିର୍ମାଣ କରିବୁ । ଏହା ଆମ୍ଭର ବଚନ ଯାହା ଆମ୍ଭେ ନିଶ୍ଚୟ ରକ୍ଷା କରିବୁ । ୧୦୫. ଆମ୍ଭେ ଜବୁର୍ ଗ୍ରନ୍ଥରେ ଉପଦେଶ ଦେଲାପରେ ଏହା ଲେଖି ଦେଇଥିଲୁ ଯେ ଆମ୍ଭର ପୁଣ୍ୟବାନ ଭକ୍ତମାନେ ଧରାପୃଷ୍ଠର ଉତ୍ତରାଧିକାରୀ ହେବେ । ୧୦୬. ଅଲ୍ଲାହଙ୍କର ଉପାସକମାନଙ୍କ ପାଇଁ ଏଥିରେ ଏକ ବଡ଼ ସନ୍ଦେଶ ଅଛି ।

୧୦୭. (ହେ ମୁହମ୍ମଦ !) ଆମ୍ଭେ ତୁମକୁ ସାରା ବିଶ୍ୱ ପାଇଁ ଏକ କରୁଣା ସ୍ୱରୂପ ପଠାଇଛୁ । ୧୦୮. କହିଦିଅ, "ମୋତେ ଦୈବବାଣୀ ହୁଏ ଯେ ତୁମମାନଙ୍କର ଈଶ୍ୱର ଜଣେ ଈଶ୍ୱର । କ'ଣ ତୁମେମାନେ ତାଙ୍କଠାରେ ନିଜକୁ ସମର୍ପଣ କରିବ ?" ୧୦୯. ତଥାପି ଯଦି ସେମାନେ ନମାନନ୍ତି ତେବେ କହିଦିଅ, "ମୁଁ ତୁମ ସମସ୍ତଙ୍କୁ ସମାନ ଭାବରେ ସତର୍କ କରି ଦେଇଛି ଏବଂ ଯାହା ବିଷୟରେ ତୁମମାନଙ୍କୁ ସାବଧାନ କରାଯାଇଛି ତାହା କେତେ ପାଖରେ ବା ଦୂରରେ, ଏହା ମୁଁ ଜାଣେନା । ୧୧୦. ଯାହା ପ୍ରକାଶ୍ୟ ଭାବରେ କୁହାଯାଏ, ସେ ତାହା ଜାଣନ୍ତି ଏବଂ ଯାହା ତୁମେମାନେ ଗୋପନ ରଖ, ତାହା ମଧ୍ୟ ଜାଣନ୍ତି । ୧୧୧. ମୁଁ ଜାଣେ ନା, ସମ୍ଭବତଃ ଏହି ବିଳମ୍ବ ତୁମମାନଙ୍କ ପାଇଁ ଏକ ପରୀକ୍ଷା ଏବଂ କିଛିକାଳ (ଜୀବନକୁ) ଉପଭୋଗ କରିବାର ଏକ ଅବସର ।"

୧୧୨. ବାର୍ତ୍ତାବହ କହିଲେ, "ହେ ପ୍ରଭୁ ! (ଆମ ମଧ୍ୟରେ) ନ୍ୟାୟସଂଗତ ଭାବରେ ନିଷ୍ପତ୍ତି କରିଦିଅ । ଆମ ପାଳନକର୍ତ୍ତା ପରମ ଦୟାଳୁ । ତୁମେମାନେ ଯେଉଁ ମନଗଢ଼ା କଥା ସବୁ କହୁଛ, ସେବିଷୟରେ ଆମ୍ଭେ ତାଙ୍କରି ସାହାଯ୍ୟ ଭିକ୍ଷା କରୁଛୁ ।"

## ଅଧ୍ୟାୟ ୨୨, ଅଲ୍ ହଜ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ହେ ମନୁଷ୍ୟଗଣ! ନିଜର ପାଳନକର୍ତ୍ତାଙ୍କୁ ଭୟ କର। ପ୍ରକୃତରେ ପ୍ରଳୟ ସମୟର ଭୂମିକମ୍ପ ଭାରି ଭୟଙ୍କର ହେବ। ୨. ଯେଉଁଦିନ ତୁମେମାନେ ଏହା ଦେଖିବ, ସେଦିନ ଦୁଗ୍ଧପାନ କରାଉଥିବା ପ୍ରତ୍ୟେକ ମହିଳା ସେମାନଙ୍କ ପିଲାଙ୍କୁ ଭୁଲିଯିବ ଏବଂ ଗର୍ଭବତୀ ମହିଳାମାନଙ୍କର ଗର୍ଭପାତ ହୋଇଯିବ। ଲୋକମାନେ ତୁମକୁ ନିଶାଗ୍ରସ୍ତ ଥିବା ପରି ଜଣା ପଡ଼ିବେ କିନ୍ତୁ ସେମାନେ ନିଶାଗ୍ରସ୍ତ ନଥିବେ। ବରଂ (ସେଦିନ) ଅଲ୍ଲାହଙ୍କର ପ୍ରକୋପ ଅତି ଭୟଙ୍କର ହେବ।

୩. କିଛି ଲୋକ ଅଛନ୍ତି ଯେଉଁମାନେ ସଠିକ୍ ଜ୍ଞାନ ନଥାଇ ଅଲ୍ଲାହଙ୍କ ବିଷୟରେ ଯୁକ୍ତିତର୍କ କରନ୍ତି ଏବଂ ପ୍ରତ୍ୟେକ ଅବାଧ ଶଇତାନର ଅନୁସରଣ କରନ୍ତି, ୪. ଯାହା ଭାଗ୍ୟରେ ଲେଖିଦିଆ ଯାଇଛି ଯେ ଯିଏ ତା' ସହିତ ବନ୍ଧୁତା କରିବ, ସେ ତାକୁ ପଥଭ୍ରଷ୍ଟ କରି ନର୍କାଗ୍ନି ଆଡ଼କୁ ନେଇଯିବ।

୫. ହେ ମନୁଷ୍ୟଗଣ! ଯଦି ମୃତ୍ୟୁ ପରେ ପୁନର୍ଜୀବନ ପାଇବା ବିଷୟରେ ତୁମମାନଙ୍କର ସନ୍ଦେହ ଥାଏ, ତେବେ (ଏହା ଭୁଲିଯାଅନା ଯେ) ଆମ୍ଭେ ତୁମମାନଙ୍କୁ ପ୍ରଥମେ ମାଟିରୁ, ପୁଣି ଶୁକ୍ରରୁ, ପୁଣି ଘନୀଭୂତ ରକ୍ତରୁ ଏବଂ ତା'ପରେ ଏକ ମାଂସ ପିଣ୍ଡୁଳାରୁ ଗଢ଼ିଛୁ ଯାହା (ବେଳେବେଳେ) ପୂର୍ଣ୍ଣ ରୂପ ନିଏ ଏବଂ (ବେଳେବେଳେ) ଅସମ୍ପୂର୍ଣ୍ଣ ରହିଯାଏ। ଏହାଦ୍ୱାରା ଆମ୍ଭେ ତୁମମାନଙ୍କୁ (ନିଜର ଶକ୍ତି) ଦେଖାଇଦେଉ। ଆମ୍ଭେ ଯାହାକୁ ଇଚ୍ଛା କରୁ ତାକୁ ଏକ ନିର୍ଦ୍ଧାରିତ ସମୟ ପର୍ଯ୍ୟନ୍ତ ଗର୍ଭରେ ରଖୁ, ପୁଣି ତୁମମାନଙ୍କୁ ଶିଶୁ ରୂପେ ସଂସାରକୁ ଆଣୁ। ଏହାପରେ ତୁମେମାନେ ଯୁବା ଅବସ୍ଥାରେ ପହଁଚିଯାଅ। ତୁମମାନଙ୍କ ମଧ୍ୟରୁ କେତେକ (ଏହା ପୂର୍ବରୁ) ମୃତ୍ୟୁ ବରଣ କରନ୍ତି ଏବଂ ଆଉ କେତେକ ବାର୍ଦ୍ଧକ୍ୟର ଜୀର୍ଣ୍ଣାବସ୍ଥାରେ ପହଁଚିଯାଆନ୍ତି, ଯାହାର ପରିଣାମ ସ୍ୱରୂପ ସେମାନେ (ଅନେକ କଥା) ଜାଣି ସୁଦ୍ଧା କିଛି ଜାଣିପାରନ୍ତି ନାହିଁ। ତୁମେମାନେ ଦେଖୁଥିବ ଯେ ଭୂଇଁ ଶୁଖିଲା ପଡ଼ିଥାଏ କିନ୍ତୁ ଯେତେବେଳେ ଆମ୍ଭେ ମେଘ ବର୍ଷା କରୁ, ଏହା ସତେଜ ହୋଇ ଫୁଲିଉଠେ ଏବଂ ବିଭିନ୍ନ ପ୍ରକାରର ସୁନ୍ଦର ଗଛଲତା ଉତ୍ପନ୍ନ କରେ। ୬. ଏହାର ଉଦ୍ଦେଶ୍ୟ (ତୁମେମାନେ ଜାଣିବ ଯେ) ଅଲ୍ଲାହ୍ ହିଁ ସତ୍ୟ। ସେ ମୃତମାନଙ୍କୁ ଜୀବିତ କରନ୍ତି ଏବଂ ସେ ସବୁକିଛି କରିବାକୁ ସକ୍ଷମ।

୭. ପ୍ରଳୟ ସମୟ ପାଖେଇ ଆସିଲାଣି, ଏଥିରେ କୌଣସି ସନ୍ଦେହ ନାହିଁ । ଅଲ୍ଲାହ୍ କବର ଭିତରେ ଥିବା (ମୃତ) ଲୋକମାନଙ୍କୁ ନିଶ୍ଚୟ ଜୀବିତ କରିବେ ।

୮. କେତେକ ଲୋକ ଅଛନ୍ତି ଯେଉଁମାନେ ସଦ୍ଜ୍ଞାନ, ସତ୍ଶିକ୍ଷା ବା କୌଣସି ସଦ୍ଗ୍ରନ୍ଥର ଆଧାର ବିନା ଅଲ୍ଲାହଙ୍କ ବିଷୟରେ ଯୁକ୍ତିତର୍କ କରନ୍ତି, ୯. ଏବଂ (ଅହଙ୍କାରରେ) ବେକ ବୁଲାଇ ନିଅନ୍ତି ଯେପରିକି ଅଲ୍ଲାହଙ୍କ ମାର୍ଗରୁ ଲୋକମାନଙ୍କୁ ବିଭ୍ରାନ୍ତ କରିବେ । ଏଭଳି ବ୍ୟକ୍ତି ଦୁନିଆରେ ଅପମାନିତ ହେବ ଏବଂ ବିଚାରର ଦିନ ଆମ୍ଭେ ତାକୁ ଜଳନ୍ତା ନିଆଁର ମଜା ଚଖାଇବୁ । ୧୦. (ତାକୁ କୁହାଯିବ) ଏହା ହେଉଛି ତୋ'ର ସେହି କର୍ମର ଫଳ ଯାହା ତୁ (ସଂସାରରେ) ଅର୍ଜନ କରିଥିଲୁ । ଅଲ୍ଲାହ୍ ତାଙ୍କ ଦାସମାନଙ୍କ ପ୍ରତି ଆଦୌ ଅନ୍ୟାୟ କରନ୍ତିନାହିଁ ।

୧୧. ଲୋକଙ୍କ ମଧ୍ୟରେ କିଛି ଅଛନ୍ତି ଯେଉଁମାନେ ଦ୍ୱିଧା ମନରେ ଅଲ୍ଲାହଙ୍କର ଉପାସନା କରନ୍ତି । ଯଦି ସେମାନଙ୍କୁ କିଛି (ସାଂସାରିକ) ଫାଇଦା ମିଳିଯାଏ ତେବେ ସନ୍ତୁଷ୍ଟ ହୋଇଯାଆନ୍ତି, କିନ୍ତୁ ଯଦି କୌଣସି ବିପଦ ପଡ଼ିଯାଏ ତେବେ ସିଧା ମୁହଁ ମୋଡ଼ି (ନାସ୍ତିକ ଅବସ୍ଥାକୁ) ଫେରିଯାଆନ୍ତି । ଏମାନଙ୍କର ଇହଲୋକ ଓ ପରଲୋକ, ଉଭୟ ନଷ୍ଟ ହେଲା । ଏହା ସବୁଠାରୁ ବଡ଼ କ୍ଷତି ।

୧୨. ଏମାନେ ଅଲ୍ଲାହଙ୍କ ବ୍ୟତୀତ ସେମାନଙ୍କୁ ଡାକନ୍ତି ଯେଉଁମାନେ ଏମାନଙ୍କର କିଛି ଉପକାର କରିପାରନ୍ତି ନାହିଁ ବା ଅନିଷ୍ଟ କରି ପାରନ୍ତିନାହିଁ । ଏହା ଏକ ବଡ଼ ଭ୍ରାନ୍ତି । ୧୩. ଏମାନେ ସେମାନଙ୍କୁ ଡାକନ୍ତି ଯାହାଦ୍ୱାରା ଲାଭ ଅପେକ୍ଷା କ୍ଷତି ଅଧିକ ହୁଏ । (ଏଭଳି) ଆଶ୍ରୟଦାତା ମନ୍ଦ ଏବଂ (ଏଭଳି) ବନ୍ଧୁ ମଧ୍ୟ ଅତି ମନ୍ଦ । ୧୪. ଯେଉଁମାନେ (ଅଲ୍ଲାହଙ୍କୁ) ବିଶ୍ୱାସ କରନ୍ତି ଏବଂ ଭଲ କର୍ମ କରନ୍ତି, ଅଲ୍ଲାହ୍ ସେମାନଙ୍କୁ ବୈକୁଣ୍ଠର ଉଦ୍ୟାନରେ ରଖିବେ ଯାହା ତଳେ ଝରଣା ପ୍ରବାହିତ ହୁଏ । ଅଲ୍ଲାହ୍ ଯାହା ଇଚ୍ଛା କରନ୍ତି ତାହା କରନ୍ତି । ୧୫. ଯିଏ ଭାବୁଛି ଯେ ଅଲ୍ଲାହ୍ ତାଙ୍କୁ (ଅର୍ଥାତ୍ ବାର୍ତ୍ତାବହଙ୍କୁ) ଇହଲୋକ ବା ପରଲୋକରେ ସାହାଯ୍ୟ କରିବେନାହିଁ, ସେ ଛାତରେ ଦଉଡ଼ି ବାନ୍ଧି ଆତ୍ମହତ୍ୟା କରିନେଉ ଏବଂ ଦେଖୁ ଯେ କ'ଣ ଏହି ଉପାୟ ଦ୍ୱାରା ତା'ର ରାଗ ଶାନ୍ତ ହେଲା ?

୧୬. ଏହିପରି ଆମ୍ଭେ କୁରଆନକୁ ପରିଷ୍କାର ବାଣୀ ରୂପେ ପଠାଇଛୁ ଏବଂ ଅଲ୍ଲାହ୍ ଯାହାକୁ ଇଚ୍ଛା କରନ୍ତି ତାକୁ ଠିକ୍ ବାଟ ଦେଖାଇଦିଅନ୍ତି ।

୧୭. ଯେଉଁମାନେ (ଅଲ୍ଲାହ୍ ଓ ରସୁଲଙ୍କୁ) ବିଶ୍ୱାସ କଲେ ଏବଂ ଯେଉଁମାନେ ୟିହୁଦୀ, ସାବୀ, ଖ୍ରୀଷ୍ଟିୟାନ, ମଜୁସୀ (ଅର୍ଥାତ୍ ଅଗ୍ନି ଉପାସକ) ଅଥବା ବହୁଈଶ୍ୱରବାଦୀ, ବିଚାର ଦିନ ଅଲ୍ଲାହ୍ ସେମାନଙ୍କ ମଧ୍ୟରେ ନିଷ୍ପତ୍ତି କରିଦେବେ । ଅଲ୍ଲାହ୍ ସବୁ ଦେଖୁଛନ୍ତି ।

୧୮. କ'ଣ ତୁମେମାନେ ଦେଖୁନାହଁ ଯେ ପୃଥିବୀ ଓ ଆକାଶର ସକଳ ସୃଷ୍ଟି - ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର, ପାହାଡ଼-ପର୍ବତ, ବୃକ୍ଷଲତା, ଜୀବଜନ୍ତୁ ଏବଂ ବହୁ ମନୁଷ୍ୟ (କିପରି) ଅଲ୍ଲାହଙ୍କୁ ପ୍ରଣାମ କରନ୍ତି ? ବହୁସଂଖ୍ୟକ ଲୋକଙ୍କ ପାଇଁ ଶାସ୍ତିର ନିଷ୍ପତ୍ତି ହୋଇ ସାରିଛି । ଅଲ୍ଲାହ୍ ଯାହାକୁ ଅପମାନିତ କରିବେ, ତାକୁ କେହି ସମ୍ମାନ ଦେଇ ପାରିବ ନାହିଁ । ଅଲ୍ଲାହ୍ ଯାହା ଇଚ୍ଛା କରନ୍ତି ତାହା କରନ୍ତି । [ପ୍ରଣାମ]

୧୯. ଏହି ଦୁଇ ପକ୍ଷ (ଆସ୍ତିକ ଓ ନାସ୍ତିକ) ପରସ୍ପର ମଧ୍ୟରେ ନିଜ ଈଶ୍ୱରଙ୍କ ବିଷୟରେ ବିବାଦ କରୁଛନ୍ତି । ସୁତରାଂ, ନାସ୍ତିକମାନଙ୍କ ପାଇଁ ନିଆଁର ବସ୍ତ୍ର ତିଆରି କରାଯିବ ଏବଂ ସେମାନଙ୍କ ମୁଣ୍ଡରେ ଫୁଟୁଥିବା ପାଣି ଢ଼ଳାଯିବ । ୨୦. ଏହାଦ୍ୱାରା ସେମାନଙ୍କ ଚମଡ଼ା ସହ ପେଟ ଭିତରେ ଯାହା ଅଛି, ସବୁ ପୋଡ଼ିଯିବ । ୨୧. ସେମାନଙ୍କୁ ଲୁହାର ହାତୁଡ଼ି ମାଡ଼ ମଧ୍ୟ ହେବ । ୨୨. ଯେତେବେଳେ ଯନ୍ତ୍ରଣା ଯୋଗୁଁ ସେମାନେ ନର୍କରୁ ବାହାରିବାକୁ ଚାହିଁବେ, ସେମାନଙ୍କୁ ପୁଣି ନର୍କ ମଧ୍ୟକୁ ଠେଲି ଦିଆଯିବ ଏବଂ କୁହାଯିବ ଯେ ଜଳନ୍ତା ନିଆଁର ମଜା ଚାଖୁଥାଅ । ୨୩. ଯେଉଁମାନେ (ଅଲ୍ଲାହ୍ ଓ ତାଙ୍କ ବାର୍ତ୍ତାବହଙ୍କୁ) ବିଶ୍ୱାସ କରନ୍ତି ଏବଂ ଭଲ କର୍ମ କରନ୍ତି, ଅଲ୍ଲାହ୍ ସେମାନଙ୍କୁ ବୈକୁଣ୍ଠର ଉଦ୍ୟାନରେ ରଖିବେ, ଯାହା ତଳେ ଝରଣା ପ୍ରବାହିତ ହୁଏ । ସେଠାରେ ସେମାନଙ୍କୁ ସୁନା କଙ୍କଣ ଓ ମୋତି-ମାଣିକ୍ୟ ଦ୍ୱାରା ବିଭୂଷିତ କରାଯିବ ଏବଂ ସେମାନେ ରେଶମ ବସ୍ତ୍ର ପିନ୍ଧିବେ, ୨୪. କାରଣ ସେମାନଙ୍କୁ (ଏକେଶ୍ୱରବାଦର) ପବିତ୍ର ମନ୍ତ୍ର ସ୍ୱୀକାର କରିବାର ସୌଭାଗ୍ୟ ପ୍ରଦାନ କରା ଯାଇଥିଲା ଏବଂ ସ୍ତୁତିଯୋଗ୍ୟ ପ୍ରଭୁଙ୍କ ମାର୍ଗରେ ପରିଚାଳିତ କରା ଯାଇଥିଲା ।

୨୫. ଯେଉଁମାନେ ଅଧର୍ମକୁ ଗ୍ରହଣ କଲେ ଏବଂ ଲୋକମାନଙ୍କୁ ଅଲ୍ଲାହଙ୍କ ମାର୍ଗରୁ ରୋକିଲେ ଏବଂ ପବିତ୍ର (କାବା) ମସ୍ଜିଦକୁ ଯିବାରେ ବାଧା ଦେଲେ ଯାହାକୁ ଆମ୍ଭେ ସମୁଦାୟ ମାନବସମାଜ ପାଇଁ ନିର୍ମାଣ କରିଛୁ, ଯେଉଁଠି ସ୍ଥାନୀୟ ବାସିନ୍ଦା ଏବଂ

ବାହାରୁ ଆସୁଥିବା ଲୋକ ସମସ୍ତେ ସମାନ । ଯିଏ ସେଠାରେ ଅଧର୍ମ ବା ଅପକର୍ମ କରିବାକୁ ଚେଷ୍ଟା କରିବ, ଆମ୍ଭେ ତାକୁ ଭୟଙ୍କର ଶାସ୍ତିର ମଜା ଚଖାଇବୁ ।

୨୬. (ସେହି ସମୟର କଥା ମନେ ପକାଅ) ଯେତେବେଳେ ଆମ୍ଭେ ଇବ୍ରାହିମଙ୍କୁ କାବାଗୃହର ସ୍ଥାନ ଦେଖାଇଥିଲୁ (ଏବଂ କହିଥିଲୁ ଯେ) କାହାରିକୁ ମୋ' ସହିତ ସମକକ୍ଷ କରିବନାହିଁ ଏବଂ ମୋ' ଗୃହର ପରିକ୍ରମା କରୁଥିବା, (ନମାଜରେ) ଠିଆ ହେଉଥିବା, ମୁଣ୍ଡ ନୁଆଉଁଥିବା ଏବଂ ପ୍ରଣାମ କରୁଥିବା ଲୋକମାନଙ୍କ ପାଇଁ ପବିତ୍ର ରଖିବ, ୨୭. ଏବଂ ଲୋକଙ୍କ ମଧ୍ୟରେ ଘୋଷଣା କରିଦିଅ ଯେ ସେମାନେ ଦୂରଦୂରାନ୍ତରୁ ଚାଲିଚାଲି ବା ଓଟରେ ବସି ହଜ୍ ସମ୍ପାଦନ କରିବାପାଇଁ ତୁମ ପାଖକୁ ଆସନ୍ତୁ । ୨୮. ଯାହାଫଳରେ ସେମାନେ ସେଠାରେ ବିଭିନ୍ନ ରୂପେ ଲାଭାନ୍ୱିତ ହୁଅନ୍ତୁ ଏବଂ ନିର୍ଦ୍ଧାରିତ ଦିନଗୁଡ଼ିକରେ ଅଲ୍ଲାହ୍ ଦେଇଥିବା ନିର୍ଦ୍ଦିଷ୍ଟ ପଶୁମାନଙ୍କୁ ତାଙ୍କରି ନାମରେ ଉତ୍ସର୍ଗ କରନ୍ତୁ । ସେଥିରୁ ନିଜେ ଖାଆନ୍ତୁ ଏବଂ ଦୀନଦୁଃଖୀମାନଙ୍କୁ ମଧ୍ୟ ଦିଅନ୍ତୁ । ୨୯. ଏହାପରେ ସେମାନେ ଶୁଦ୍ଧ ହୋଇ ନିଜର ମାନସିକ ପୂରଣ କରନ୍ତୁ ଏବଂ ପ୍ରାଚୀନ କାବାଗୃହର ପରିକ୍ରମା କରନ୍ତୁ ।

୩୦. ଏହା ଆମ୍ଭର ଆଦେଶ । ଯିଏ ଅଲ୍ଲାହଙ୍କ ପବିତ୍ର ବିଧିର ଆଦର କରିବ, (ସେ ଜାଣିଥାଉ ଯେ) ପ୍ରଭୁଙ୍କ ଦୃଷ୍ଟିରେ ଏହା ତା'ପାଇଁ ମଂଗଳକର । ଯେଉଁ ପଶୁଗୁଡ଼ିକ ବିଷୟରେ ତୁମମାନଙ୍କୁ ପଢ଼ି ଶୁଣାଇ ଦିଆଯାଇଛି, ସେଗୁଡ଼ିକ ବ୍ୟତୀତ ଅନ୍ୟ ପଶୁ ତୁମମାନଙ୍କ (ଖାଇବା) ପାଇଁ ବୈଧ । ତେଣୁ, ତୁମେମାନେ ମୂର୍ତ୍ତିପୂଜାର ଅଶୁଦ୍ଧିରୁ ଏବଂ (ପ୍ରତ୍ୟେକ) ମିଥ୍ୟା କଥାରୁ ଦୂରେଇ ରୁହ । ୩୧. ଅଲ୍ଲାହଙ୍କ ପ୍ରତି ଏକନିଷ୍ଠ ହୁଅ ଏବଂ ତାଙ୍କ ସହିତ କାହାରିକୁ ସମକକ୍ଷ କରନାହିଁ । ଯିଏ ଅଲ୍ଲାହଙ୍କ ସହିତ ଅନ୍ୟ କାହାରିକୁ ସମକକ୍ଷ କଲା, ସତେଯେପରି ସେ ଆକାଶରୁ ଖସିପଡ଼ିଲା । ପୁଣି ହୁଏତ ତାକୁ ପକ୍ଷୀମାନେ ଝାମ୍ପି ନେବେ କିମ୍ବା ପବନ ଉଡ଼ାଇ ନେଇ କୌଣସି ଦୂର ଜାଗାରେ ଫିଙ୍ଗିଦେବ । ୩୨. ଏହା ଆମ୍ଭର ଆଦେଶ । ଯିଏ ଅଲ୍ଲାହଙ୍କ ନିଦର୍ଶନଗୁଡ଼ିକର ସମ୍ମାନ କରେ, (ସେ ଜାଣିରଖୁ ଯେ) ଏହା ତା' ଆନ୍ତରିକ ଧର୍ମନିଷ୍ଠାର ପରିଚାୟକ । ୩୩. ତୁମେମାନେ ଏହି ପଶୁମାନଙ୍କଠାରୁ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ଲାଭବାନ ହୋଇପାରିବ । ତା'ପରେ ସେହି ପ୍ରାଚୀନ କାବା ନିକଟରେ ସେମାନଙ୍କୁ (ବଳି ରୂପେ) ଉତ୍ସର୍ଗ କରାଯିବ ।

୩୪. ଆମ୍ଭେ ପ୍ରତ୍ୟେକ ସମାଜ ପାଇଁ ବଳିର ଏକ (ନିର୍ଦ୍ଦିଷ୍ଟ) ବିଧି ନିର୍ଦ୍ଧାରିତ କରିଛୁ ଯେପରିକି (ସେମାନଙ୍କ ଆହାର ପାଇଁ) ଅଲ୍ଲାହଙ୍କ ଦ୍ୱାରା ଦିଆଯାଇଥିବା ପଶୁମାନଙ୍କୁ (ବଳି ରୂପେ) ଉତ୍ସର୍ଗ କଲାବେଳେ ସେମାନେ ଅଲ୍ଲାହଙ୍କ ନାମ ଉଚ୍ଚାରଣ କରନ୍ତୁ । ତୁମମାନଙ୍କର ଈଶ୍ୱର ଜଣେ ଈଶ୍ୱର । ତେଣୁ ତୁମେମାନେ ତାଙ୍କର ଆଜ୍ଞାବହ ହୁଅ । (ହେ ବାର୍ତ୍ତାବହ!) ବିନୟୀ ଭକ୍ତମାନଙ୍କୁ ସୁସମାଚାର ଦେଇଦିଅ, ୩୫. ଯେଉଁମାନଙ୍କ ହୃଦୟ ଅଲ୍ଲାହଙ୍କ ନାଁ ଶୁଣିଲେ ଥରିଉଠେ ଏବଂ ସେମାନେ ବିପଦଆପଦରେ ଧୈର୍ଯ୍ୟ ଅବଲମ୍ବନ କରନ୍ତି, ନମାଜ ସଂପାଦନ କରନ୍ତି ଏବଂ ଆମ୍ଭେ ଯାହା ଦେଇଛୁ ସେଥିରୁ (ଆମ୍ଭ ପ୍ରସନ୍ନତା ପାଇଁ) ଖର୍ଚ୍ଚ କରନ୍ତି ।

୩୬. ବଳିର ଓଟମାନଙ୍କୁ ଆମ୍ଭେ ତୁମମାନଙ୍କ ପାଇଁ ଅଲ୍ଲାହଙ୍କର ନିଦର୍ଶନ କରିଛୁ ଯେଉଁଥିରେ ତୁମମାନଙ୍କର କଲ୍ୟାଣ ନିହିତ ଅଛି । ତେଣୁ, ସେମାନଙ୍କୁ ଧାଡ଼ିରେ ଠିଆ କଲାପରେ ଅଲ୍ଲାହଙ୍କ ନାମ ନେଇ ବଧ କର ଏବଂ ଯେତେବେଳେ ସେମାନେ (ନିର୍ଜୀବ ହୋଇ) ତଳେ ପଡ଼ିଯାଆନ୍ତି, ସେମାନଙ୍କ ମାଂସ ଖାଅ ଏବଂ ମାଗୁଥିବା ଗରିବମାନଙ୍କୁ ଏବଂ ମାଗୁ ନଥିବା (ଅଭାବୀ) ଲୋକମାନଙ୍କୁ ମଧ୍ୟ ଖାଇବାକୁ ଦିଅ । ଏହିପରି ଆମ୍ଭେ ଏହି ପଶୁମାନଙ୍କୁ ତୁମମାନଙ୍କର ବଶବର୍ତ୍ତୀ କରିଦେଇଛୁ ଯେପରକି ତୁମେମାନେ ଆମ୍ଭର ଉପକାର ମାନିବ । ୩୭. ଅଲ୍ଲାହଙ୍କ ପାଖରେ ସେମାନଙ୍କର ମାଂସ ବା ରକ୍ତ ପହଁଚେ ନାହିଁ କିନ୍ତୁ ତୁମମାନଙ୍କର ନିଷ୍ଠା ପହଁଚିଥାଏ । ଏହିପରି, ଅଲ୍ଲାହ ସେମାନଙ୍କୁ ତୁମମାନଙ୍କର ବଶବର୍ତ୍ତୀ କରି ଦେଇଛନ୍ତି ଯେପରିକି ତାଙ୍କର ମାର୍ଗଦର୍ଶନ ଯୋଗୁଁ ତୁମେମାନେ ତାଙ୍କର ମହିମାଗାନ କରିବ । (ହେ ବାର୍ତ୍ତାବହ!) ସଦାଚାରୀମାନଙ୍କୁ (ସ୍ୱର୍ଗର) ସୁସମାଚାର ଦେଇଦିଅ ।

୩୮. ଯେଉଁମାନେ ବିଶ୍ୱାସ କରନ୍ତି, ଅଲ୍ଲାହ୍ ସେମାନଙ୍କୁ ସୁରକ୍ଷା ପ୍ରଦାନ କରନ୍ତି । ଅଲ୍ଲାହ୍ କୌଣସି ବିଶ୍ୱାସଘାତୀ କୃତଘ୍ନକୁ ପସନ୍ଦ କରନ୍ତି ନାହିଁ । ୩୯. ଯେଉଁମାନଙ୍କ ବିରୁଦ୍ଧରେ ଯୁଦ୍ଧ କରାଯାଉଛି, ସେମାନଙ୍କୁ ଏହାର ଅନୁମତି ଦିଆଗଲା (ଯେ ସେମାନେ ମଧ୍ୟ ନିଜର ପ୍ରତିରକ୍ଷା ପାଇଁ ଯୁଦ୍ଧ କରନ୍ତୁ) କାରଣ ସେମାନଙ୍କ ପ୍ରତି ଅତ୍ୟାଚାର କରାଯାଇଛି । ଅଲ୍ଲାହ୍ ସେମାନଙ୍କୁ ସାହାଯ୍ୟ କରିବାକୁ ଅବଶ୍ୟ ସକ୍ଷମ । ୪୦. ସେମାନଙ୍କୁ ଅନ୍ୟାୟରେ ସେମାନଙ୍କ ଘରୁ କେବଳ ଏହି କାରଣରୁ ବିତାଡ଼ିତ କରାଗଲା ଯେ ସେମାନେ କହିଲେ, "ଆମ ଈଶ୍ୱର ହେଉଛନ୍ତି ଅଲ୍ଲାହ୍" । ଯଦି ଅଲ୍ଲାହ୍ ଲୋକମାନଙ୍କୁ

ପରସ୍ପର ଦ୍ୱାରା ନିୟନ୍ତ୍ରଣ ନକରନ୍ତେ, ତେବେ ମଠ, ଗୀର୍ଜା, ଉପାସନାପୀଠ ଓ ମସ୍‌ଜିଦଗୁଡ଼ିକ ଧ୍ୱଂସ ହୋଇଯାଆନ୍ତା ଯେଉଁଠି ନିରନ୍ତର ଅଲ୍ଲାହଙ୍କ ନାମ ସ୍ମରଣ କରାଯାଏ । ଯିଏ ଅଲ୍ଲାହଙ୍କୁ ସାହାଯ୍ୟ କରେ, ଅଲ୍ଲାହ୍ ନିଶ୍ଚୟ ତାକୁ ସାହାଯ୍ୟ କରିବେ । ଅଲ୍ଲାହ୍ ମହାଶକ୍ତିମାନ ଓ ପ୍ରବଳ ପରାକ୍ରମୀ । ୪୧. ଏଭଳି ଲୋକମାନଙ୍କୁ ଯଦି ଆମ୍ଭେ ଦେଶରେ କ୍ଷମତା ଦେଉ ତେବେ ସେମାନେ ନମାଜ ପ୍ରତିଷ୍ଠା କରିବେ, ଜକାତ୍ ଦେବେ, ଭଲ କର୍ମ କରିବାର ଆଦେଶ ଦେବେ ଏବଂ କୁକର୍ମ କରିବାକୁ ବାରଣ କରିବେ । ସମସ୍ତ କର୍ମର ପରିଣାମ ଅଲ୍ଲାହଙ୍କ ହାତରେ ଅଛି ।

୪୨. ଯଦି ଏମାନେ ତୁମକୁ ମିଥ୍ୟାବାଦୀ ବୋଲି କହୁଛନ୍ତି, (ତେବେ କିଛି ବିଚିତ୍ର ନୁହେଁ କାରଣ) ଏମାନଙ୍କ ପୂର୍ବରୁ ନୂହଙ୍କ ସଂପ୍ରଦାୟ ଏବଂ ଆଦ୍ ଓ ସମୁଦ ସଂପ୍ରଦାୟ ମଧ୍ୟ (ସେମାନଙ୍କ ଈଶ୍ୱରଦୂତମାନଙ୍କୁ) ମିଥ୍ୟାବାଦୀ ବୋଲି କହି ସାରିଛନ୍ତି, ୪୩. ଏବଂ ଇବ୍ରାହିମ ଓ ଲୁତ୍‌ଙ୍କ ସଂପ୍ରଦାୟ ମଧ୍ୟ, ୪୪. ଏବଂ ମଦୟନବାସୀମାନେ ମଧ୍ୟ (ଏହିପରି କରିଛନ୍ତି) । ମୁ'ସାଙ୍କୁ ମଧ୍ୟ ମିଥ୍ୟାବାଦୀ ବୋଲି କୁହାଯାଇଥିଲା । ତେଣୁ, ସେହି ନାସ୍ତିକମାନଙ୍କୁ ମୁଁ କିଛି ସମୟ ଦେଲି (ଏବଂ) ତା'ପରେ ସେମାନଙ୍କୁ ଶାସ୍ତି ଦେଲି । କିଭଳି ଥିଲା ମୋ' ଶାସ୍ତି ? ୪୫. କେତେ ଗାଁ ଆମ୍ଭେ ଧ୍ୱଂସ କରିଦେଇଛୁ ଯାହାର ବାସିନ୍ଦାମାନେ ଦୁରାଚାରୀ ଥିଲେ । ସେଗୁଡ଼ିକ ଆଜି ଧ୍ୱସ୍ତବିଧ୍ୱସ୍ତ ଅବସ୍ଥାରେ ପଡ଼ିଛି ଏବଂ ଅନେକ କୂଅ ଏବଂ ବଡ଼ବଡ଼ ମହଲ ପରିତ୍ୟକ୍ତ ଅବସ୍ଥାରେ ପଡ଼ିରହିଛି । ୪୬. କ'ଣ ଏମାନେ ଦେଶ ଭିତରେ ବୁଲାବୁଲି କରୁନାହାନ୍ତି ? ଏହାଦ୍ୱାରା ହୁଏତ ସେମାନଙ୍କର ମନ କିଛି ବୁଝି ପାରନ୍ତା ବା କାନ କିଛି ଶୁଣି ପାରନ୍ତା । ପ୍ରକୃତରେ ଆଖି ଅନ୍ଧ ହୁଏନାହିଁ ବରଂ ମନ ଅନ୍ଧ ହୋଇଯାଏ ଯାହା ହୃଦୟ ଭିତରେ ଥାଏ ।

୪୭. ଏମାନେ ଦୈବୀଦଣ୍ଡ ଭୋଗିବା ପାଇଁ ଅଧୟ ହେଉଛନ୍ତି । ଅଲ୍ଲାହ୍ ଆଦୌ ନିଜର ବଚନ ଭଂଗ କରିବେନାହିଁ । ପ୍ରକୃତରେ ତୁମ ପ୍ରଭୁଙ୍କର ଗୋଟିଏ ଦିନ ତୁମମାନଙ୍କ ଗଣନା ଅନୁଯାୟୀ ଏକ ହଜାର ବର୍ଷ ସହ ସମାନ । ୪୮. ଅନେକ ଦୁରାଚାରୀ ଜନବସତିକୁ ଆମ୍ଭେ (ପ୍ରଥମେ ସୁଧୁରିବାର) ସୁଯୋଗ ଦେଲୁ ଏବଂ ଶେଷରେ ସେମାନଙ୍କୁ ଦଣ୍ଡିତ କଲୁ । ଆମ୍ଭରି ପାଖକୁ (ସମସ୍ତଙ୍କୁ) ଫେରିବାକୁ ହେବ ।

୪୯. (ହେ ବାର୍ତ୍ତାବହ!) କୁହ, "ହେ ମନୁଷ୍ୟଗଣ! ମୁଁ ତୁମମାନଙ୍କୁ ସ୍ପଷ୍ଟ ରୂପେ ସାବଧାନ କରି ଦେବାକୁ ଆସିଛି। ୫୦. ତେଣୁ ଯେଉଁମାନେ ବିଶ୍ୱାସ କଲେ ଏବଂ ଭଲ କର୍ମ କଲେ, ସେମାନଙ୍କୁ କ୍ଷମା ମିଳିବ ଏବଂ ଅତି ଉତ୍କୃଷ୍ଟ ମାନର ସୁଖସମ୍ଭୋଗ ମଧ୍ୟ। ୫୧. ଯେଉଁମାନେ ଆମ୍ଭ ବାଣୀର ଉଦ୍ଦେଶ୍ୟକୁ ବିଫଳ କରିବାକୁ ଚେଷ୍ଟା କଲେ, ସେମାନେ ନର୍କବାସୀ ହେବେ।

୫୨. ତୁମ ପୂର୍ବରୁ ମଧ୍ୟ ଆମ୍ଭେ ଯେଉଁ ରସୁଲ ବା ବାର୍ତ୍ତାବହଙ୍କୁ ପଠାଇଛୁ ଏବଂ ଯେତେବେଳେ ସେ କିଛି ମନସ୍ଥ କରିଛନ୍ତି, ଶଇତାନ ତାଙ୍କ ମନରେ ଦୁର୍ଭାବନା ଜାତ କରିଛି କିନ୍ତୁ ଅଲ୍ଲାହ୍ ଶଇତାନର ଦୁର୍ଭାବନାକୁ ନଷ୍ଟ କରି ନିଜ କଥାକୁ ପକ୍କା କରିଦିଅନ୍ତି। ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ। ୫୩. ଏହା ଏଇଥିପାଇଁ ହୁଏ ଯେ ସେ ଏହି ଦୁର୍ଭାବନା ଦ୍ୱାରା ସେହି ଲୋକମାନଙ୍କୁ ପରୀକ୍ଷା କରିବେ ଯେଉଁମାନଙ୍କର ହୃଦୟ ବ୍ୟାଧିଗ୍ରସ୍ତ ହୋଇଯାଇଛି ଏବଂ କଠୋର ମଧ୍ୟ। ବାସ୍ତବରେ ଦୁରାଚାରୀମାନେ ବିରୋଧ କରିବାରେ ବହୁ ଦୂର ଆଗେଇ ଯାଇଛନ୍ତି। ୫୪. ଏହା ଏଥିପାଇଁ ମଧ୍ୟ ହୁଏ ଯେ ସଦ୍‌ଜ୍ଞାନ ପ୍ରାପ୍ତ କରିଥିବା ଲୋକମାନେ ଜାଣିନିଅନ୍ତୁ ଯେ ଏହା (ଅର୍ଥାତ୍ ଏହି ଦୈବବାଣୀ) ତୁମ ଈଶ୍ୱରଙ୍କଠାରୁ ଆସିଥିବା ସତ୍ୟ। ତେଣୁ ସେମାନେ ଏହାକୁ ଗ୍ରହଣ କରିନିଅନ୍ତୁ ଏବଂ ସେମାନଙ୍କ ହୃଦୟ ଅଲ୍ଲାହଙ୍କ ସମ୍ମୁଖରେ ନଇଁଯାଉ। ବିଶ୍ୱାସ ରଖିଥିବା ଲୋକମାନଙ୍କୁ ଅଲ୍ଲାହ୍ ଅବଶ୍ୟ ଠିକ୍ ବାଟ ଦେଖାଇଦିଅନ୍ତି।

୫୫. ଅବିଶ୍ୱାସ କରୁଥିବା ଲୋକମାନେ ସର୍ବଦା ଏହାପ୍ରତି ସନ୍ଦେହ କରୁଥିବେ ଏବଂ ହଠାତ୍ ଏହି ଅବସ୍ଥାରେ (ଦିନେ) ସେମାନଙ୍କ ସାମନାରେ ପ୍ରଳୟ ଆସିଯିବ କିମ୍ବା କୌଣସି ଅଶୁଭ ଦିନର ବିପର୍ଯ୍ୟୟ। ୫୬. ସେଦିନ ଆଧିପତ୍ୟ କେବଳ ଅଲ୍ଲାହଙ୍କର ହେବ। ସେ ସେମାନଙ୍କର ବିଚାର କରିବେ। ଯେଉଁମାନେ (ଅଲ୍ଲାହ୍ ଓ ତାଙ୍କ ବାର୍ତ୍ତାବହଙ୍କୁ) ବିଶ୍ୱାସ କରନ୍ତି ଏବଂ ସତ୍‌କର୍ମ କରନ୍ତି, ସେମାନେ ଐଶ୍ୱର୍ଯ୍ୟଭରା ଉଦ୍ୟାନରେ ରହିବେ। ୫୭. କିନ୍ତୁ ଯେଉଁମାନେ ଅବିଶ୍ୱାସ କରନ୍ତି ଏବଂ ଆମ୍ଭର ବାଣୀକୁ ମିଥ୍ୟା ବୋଲି କହନ୍ତି, ସେମାନେ ଅପମାନଜନକ ଶାସ୍ତି ଭୋଗିବେ। ୫୮. ଯେଉଁମାନେ ଅଲ୍ଲାହଙ୍କ ମାର୍ଗରେ ଘରଦ୍ୱାର ଛାଡ଼ିଲେ ଏବଂ (ଶତ୍ରୁ ଦ୍ୱାରା) ନିହତ ହେଲେ ବା ମୃତ୍ୟୁ

ବରଣ କଲେ, ଅଲ୍ଲାହ୍ ସେମାନଙ୍କୁ ଉତ୍କୃଷ୍ଟ ମାନର ସୁଖସମ୍ଭୋଗ ପ୍ରଦାନ କରିବେ। ନିଃସନ୍ଦେହରେ ଅଲ୍ଲାହ୍ ସର୍ବୋତ୍ତମ ଐଶ୍ୱର୍ଯ୍ୟଦାତା। ୫୯. ସେ ସେମାନଙ୍କୁ ଏଭଳି ସ୍ଥାନରେ ରଖିବେ ଯାହାଦ୍ୱାରା ସେମାନେ ଖୁବ ଆନନ୍ଦିତ ହେବେ। ଅଲ୍ଲାହ୍ ସର୍ବଜ୍ଞ ଏବଂ ସହନଶୀଳ। ୬୦. ଏହା ନିଶ୍ଚିତ। ଯେଉଁ ବ୍ୟକ୍ତି ନିଜ ପ୍ରତି ହୋଇଥିବା ଅନ୍ୟାୟର ସମାନ ପ୍ରତିଶୋଧ ନିଏ କିନ୍ତୁ ଏହା ସତ୍ତ୍ୱେ ଯଦି ପୁଣି ସେହି ବ୍ୟକ୍ତି ପ୍ରତି ଅତ୍ୟାଚାର ହୁଏ, ତେବେ ଅଲ୍ଲାହ୍ ନିଶ୍ଚୟ ତା'ର ସହାୟତା କରିବେ। ଅଲ୍ଲାହ୍ ଅବଶ୍ୟ ଦୋଷମାର୍ଜନାକାରୀ ଏବଂ କ୍ଷମାଶୀଳ।

୬୧. ଏହା ଏଇଥିପାଇଁ ଯେ ଅଲ୍ଲାହ୍ ରାତିକୁ ଦିନ ମଧ୍ୟରେ ଏବଂ ଦିନକୁ ରାତି ମଧ୍ୟରେ ବିଲୀନ କରିଦିଅନ୍ତି ଏବଂ ଅଲ୍ଲାହ୍ ସର୍ବଶ୍ରୋତା ଓ ସର୍ବଦ୍ରଷ୍ଟା, ୬୨. ଏବଂ ଏଥିପାଇଁ ମଧ୍ୟ ହୁଏ ଯେ ଅଲ୍ଲାହ୍ ହିଁ ସତ୍ୟ ଏବଂ ତାଙ୍କ ବ୍ୟତୀତ ଏମାନେ ଯେଉଁମାନଙ୍କୁ ଡାକନ୍ତି, ସେମାନେ ମିଥ୍ୟା ଈଶ୍ୱର। ଅବଶ୍ୟ ଅଲ୍ଲାହ୍ ସର୍ବଶ୍ରେଷ୍ଠ ଓ ସର୍ବମହାନ। ୬୩. କ'ଣ ତୁମେ ଦେଖୁନାହଁ ଯେ ଅଲ୍ଲାହ୍ ଆକାଶରୁ ଜଳ ବର୍ଷା କଲେ ଧରିତ୍ରୀରେ ସବୁଜିମା ଆସେ? ଅଲ୍ଲାହ୍ ସୂକ୍ଷ୍ମଦର୍ଶୀ ଏବଂ ସର୍ବଜ୍ଞ। ୬୪. ଯାହା ପୃଥିବୀରେ ଅଛି ଏବଂ ଯାହା ଆକାଶରେ ଅଛି, ସବୁ ତାଙ୍କରି। ଅଲ୍ଲାହ୍ ଆବଶ୍ୟକତାରହିତ ଏବଂ ସ୍ତୁତିଯୋଗ୍ୟ। ୬୫. କ'ଣ ତୁମେ ଦେଖୁନାହଁ ଯେ ପୃଥିବୀରେ ଯାହା ଅଛି, ଅଲ୍ଲାହ୍ କିପରି ସେଗୁଡ଼ିକୁ ତୁମମାନଙ୍କ ଆୟତ୍ତାଧୀନ କରି ଦେଇଛନ୍ତି? ଜାହାଜଗୁଡ଼ିକ ତାଙ୍କରି ଆଜ୍ଞାରେ ସମୁଦ୍ରରେ ଚଳାଚଳ କରେ। ସେ ହିଁ ଆକାଶକୁ ଧାରଣ କରିଛନ୍ତି ଯେପରିକି ଏହା ତାଙ୍କ ଆଜ୍ଞା ବିନା ପୃଥିବୀ ଉପରେ ପଡ଼ି ନଯାଉ। ପ୍ରକୃତରେ ଅଲ୍ଲାହ୍ ମାନବସମାଜ ପ୍ରତି ଅତ୍ୟନ୍ତ ଦୟାଳୁ ଏବଂ କୃପାଶୀଳ। ୬୬. ସେ ତୁମମାନଙ୍କୁ ଜୀବନ ଦେଲେ, ପୁଣି ତୁମମାନଙ୍କୁ ମୃତ୍ୟୁ ଦେବେ ଏବଂ ପୁଣି ଜୀବିତ କରିବେ। ବାସ୍ତବରେ ମଣିଷ ଭାରି କୃତଘ୍ନ।

୬୭. ଆମ୍ଭେ ପ୍ରତ୍ୟେକ ସମାଜ ପାଇଁ ସେବା-ଉପାସନାର ଏକ (ସ୍ୱତନ୍ତ୍ର) ବିଧି ନିର୍ଦ୍ଧାରିତ କରିଛୁ ଯାହା ସେମାନେ ପାଳନ କରିଥାଆନ୍ତି। ତେଣୁ ଏବିଷୟରେ ସେମାନେ ତୁମ ସହିତ ଯୁକ୍ତିତର୍କ କରିବା ଉଚିତ ନୁହେଁ। ତୁମେ (ଲୋକମାନଙ୍କୁ) ନିଜ ପ୍ରଭୁଙ୍କ ବାଟକୁ ଡାକୁଥାଅ। ନିଃସନ୍ଦେହରେ ତୁମେ ଠିକ୍ ବାଟରେ ରହିଛ।

୬୮. ଯଦି ସେମାନେ ତୁମ ସହିତ ଯୁକ୍ତିତର୍କ କରନ୍ତି ତେବେ କହିଦିଅ, "ତୁମେମାନେ ଯାହା କରୁଛ, ଅଲ୍ଲାହ୍ ତାହା ଭଲରୂପେ ଜାଣନ୍ତି । ୬୯. ଯେଉଁ ବିଷୟରେ ତୁମେମାନେ ବିବାଦ କରୁଛ, ବିଚାର ଦିନ ଅଲ୍ଲାହ୍ ଏହାର ନିଷ୍ପତ୍ତି କରିଦେବେ ।" ୭୦. କ'ଣ ତୁମେମାନେ ଏହା ଜାଣନାହିଁ ଯେ ପୃଥିବୀ ଓ ଆକାଶରେ ଯାହା ଅଛି, ସବୁ ଅଲ୍ଲାହଙ୍କୁ ଜଣା ? ସବୁକଥା ଏକ ଗ୍ରନ୍ଥରେ (ସୁରକ୍ଷିତ) ରହିଛି । ଏହା ଅଲ୍ଲାହଙ୍କ ପାଇଁ ଭାରି ସହଜ ।

୭୧. ଏମାନେ ଅଲ୍ଲାହଙ୍କୁ ଛାଡ଼ି ଅନ୍ୟମାନଙ୍କର ପୂଜା କରୁଛନ୍ତି ଯାହାର କୌଣସି ପ୍ରମାଣ ଅଲ୍ଲାହ୍ ପଠାଇନାହାନ୍ତି କିମ୍ବା ଏବିଷୟରେ ଏମାନଙ୍କର କୌଣସି ଜ୍ଞାନ ନାହିଁ । ଏଭଳି ଦୁରାଚାରୀମାନଙ୍କୁ କେହି ସାହାଯ୍ୟ କରିବେନାହିଁ । ୭୨. ଯେତେବେଳେ ଅଧର୍ମୀମାନଙ୍କ ପାଖରେ ଆମ୍ଭର ସ୍ପଷ୍ଟ ବାଣୀ ପାଠ କରାଯାଏ, ତୁମେ ସେମାନଙ୍କ ମୁହଁରେ ବିରକ୍ତିଭାବ ଦେଖିବ, ସତେଯେପରି ଏହିକ୍ଷଣି ସେମାନେ ଆମ୍ଭର ବାଣୀ ପାଠ କରୁଥିବା ଲୋକଙ୍କ ଉପରେ ଆକ୍ରମଣ କରିଦେବେ । ସେମାନଙ୍କୁ କହିଦିଅ, "କ'ଣ ମୁଁ ତୁମମାନଙ୍କୁ ଏହାଠାରୁ ଅଧିକ ଅପ୍ରିୟ କଥାର ସୂଚନା ଦେବି ? ତାହା ହେଉଛି ନର୍କର ନିଆଁ ଯାହା ବିଷୟରେ ଅଲ୍ଲାହ ନାସ୍ତିକମାନଙ୍କୁ ସତର୍କ କରି ସାରିଛନ୍ତି ଏବଂ ଏହା ଅତି କଦର୍ଯ୍ୟ ସ୍ଥାନ ।"

୭୩. ହେ ମନୁଷ୍ୟଗଣ ! ଗୋଟିଏ ଦୃଷ୍ଟାନ୍ତ ଦିଆଯାଉଛି ଧ୍ୟାନ ଦେଇ ଶୁଣ । ପ୍ରକୃତରେ ତୁମେମାନେ ଅଲ୍ଲାହଙ୍କୁ ଛାଡ଼ି ଯେଉଁମାନଙ୍କୁ ଡାକ, ସେମାନେ ଗୋଟିଏ ମାଛି ମଧ୍ୟ ସୃଷ୍ଟି କରିପାରିବେ ନାହିଁ ଯଦିଓ ସମସ୍ତେ ଏଥିପାଇଁ ଏକଜୁଟ ହୋଇଯାଆନ୍ତି । ଯଦି ମାଛି ସେମାନଙ୍କଠାରୁ କିଛି ନେଇ ପଳାଇଯାଏ, ତେବେ ସେମାନେ ତା'ଠାରୁ ଛଡ଼ାଇ ମଧ୍ୟ ଆଣି ପାରିବେନାହିଁ । ଏଭଳି ପ୍ରାର୍ଥନାକାରୀ ଦୁର୍ବଳ ଏବଂ ଯାହାକୁ ପ୍ରାର୍ଥନା କରାଯାଉଛି ସେ ମଧ୍ୟ

ଦୁର୍ବଳ । ୭୪. ସେମାନେ ଅଲ୍ଲାହଙ୍କର ଉଚିତ ମୂଲ୍ୟାୟନ କଲେ ନାହିଁ । ପ୍ରକୃତରେ ଅଲ୍ଲାହ୍ ମହାଶକ୍ତିମାନ ଏବଂ ପ୍ରବଳ ପରାକ୍ରମୀ ।

୭୫. ଅଲ୍ଲାହ୍ ଦେବଦୂତମାନଙ୍କ ମଧ୍ୟରୁ ନିଜର ବାର୍ତ୍ତାବହ ମନୋନୀତ କରିଥାଆନ୍ତି ଏବଂ ମନୁଷ୍ୟମାନଙ୍କ ମଧ୍ୟରୁ ମଧ୍ୟ । ଅଲ୍ଲାହ୍ ସର୍ବଶ୍ରୋତା ଓ ସର୍ବଦ୍ରଷ୍ଟା । ୭୬. ଯାହା ସେମାନଙ୍କର ଆଗରେ ଅଛି ଏବଂ ଯାହା ସେମାନଙ୍କ ପଛରେ ଅଛି, ତାହା ସେ ଜାଣନ୍ତି ଏବଂ ପ୍ରତ୍ୟେକ ଘଟଣା (ନିଷ୍ପତ୍ତି ପାଇଁ) ତାଙ୍କରି ପାଖକୁ ଯାଏ ।

୭୭. ହେ ମୁସଲମାନଗଣ! ତୁମେମାନେ ଅଲ୍ଲାହଙ୍କ ଆଗରେ ମୁଣ୍ଡ ନୁଆଁଅ, (ତାଙ୍କୁ) ପ୍ରଣିପାତ କର, ନିଜ ପାଳନକର୍ତ୍ତାଙ୍କର ଉପାସନା କର ଏବଂ ଭଲ କର୍ମ କରୁଥାଅ, ଯାହାଫଳରେ ତୁମେମାନେ ସଫଳ ହେବ ।[ପ୍ରଣାମ] ୭୮. ଅଲ୍ଲାହଙ୍କ ମାର୍ଗରେ ସେହିପରି ସଂଘର୍ଷ କର, ଯେପରି ସଂଘର୍ଷ (ତାଙ୍କ ପାଇଁ) ହେବା ଉଚିତ । ସେ ତୁମମାନଙ୍କୁ (ନିଜ କାର୍ଯ୍ୟ ପାଇଁ) ମନୋନୀତ କରିଛନ୍ତି ଏବଂ ତୁମମାନଙ୍କ ପାଇଁ ଧର୍ମକୁ କଠିନ କରି ନାହାନ୍ତି । ଏହା ତୁମ ପିତା ଇବ୍ରାହିମଙ୍କ ଧର୍ମ । ଏହା ପୂର୍ବରୁ ସେ ତୁମମାନଙ୍କର ନାଁ "ମୁସ୍‌ଲିମ" (ଅର୍ଥାତ୍ ଈଶ୍ୱରଙ୍କର ଆଜ୍ଞାଧୀନ) ରଖିଥିଲେ ଏବଂ ଏହି ଗ୍ରନ୍ଥରେ ମଧ୍ୟ (ସେହି ନାଁ) ରଖିଛନ୍ତି ଯେପରିକି ଈଶ୍ୱରଦୂତ ତୁମମାନଙ୍କର ସାକ୍ଷୀ ରହନ୍ତୁ ଏବଂ ତୁମେମାନେ ଅନ୍ୟ ଲୋକମାନଙ୍କର ସାକ୍ଷୀ ରୁହ । ତେଣୁ ନମାଜ ପ୍ରତିଷ୍ଠା କର, ଜକାତ ଦିଅ ଏବଂ ଅଲ୍ଲାହଙ୍କୁ ଦୃଢ଼ ଭାବରେ ଧରିଥାଅ । ସେ ତୁମମାନଙ୍କର ବନ୍ଧୁ ଏବଂ ଖୁବ୍ ଭଲ ବନ୍ଧୁ ଏବଂ ଖୁବ୍ ଭଲ ସହାଯ୍ୟକାରୀ ।

## ଅଧ୍ୟାୟ ୨୩, ଅଲ୍ ମୁ'ମିନୁନ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ସଦ୍‌ବିଶ୍ୱାସୀମାନେ ଅବଶ୍ୟ ସଫଳ ହେଲେ, ୨. ଯେଉଁମାନେ ବିନୟପୂର୍ବକ ନମାଜ ପାଠ କରନ୍ତି, ୩. ଅଦରକାରୀ କଥାରୁ ଦୂରେଇ ରହନ୍ତି, ୪. ନିୟମିତ ଜକାତ୍ ଦିଅନ୍ତି, ୫. ଏବଂ ନିଜ ଗୁପ୍ତାଂଗକୁ (ଅବୈଧ ଯୌନକ୍ରିୟାରୁ) ସୁରକ୍ଷିତ ରଖନ୍ତି, ୬. ମାତ୍ର ସେମାନଙ୍କର ପତ୍ନୀ ବା ସେମାନଙ୍କ ଅଧୀନକୁ ଆସିଥିବା ଦାସୀମାନଙ୍କ ପାଖକୁ ଯିବା ସେମାନଙ୍କ ପାଇଁ ଦୋଷାବହ ନୁହେଁ । ୭. କିନ୍ତୁ

ଯେଉଁମାନେ ଏହା ବ୍ୟତୀତ ଅନ୍ୟ ବାଟ ଖୋଜନ୍ତି, ସେମାନେ ସୀମା ଅତିକ୍ରମ କରନ୍ତି । ୮. ଯେଉଁମାନେ (ଭରସାରେ ରଖା ଯାଇଥିବା) ପରର ଅମାନତ ପ୍ରତି ଏବଂ ନିଜର ବଚନ ପ୍ରତି ସଦା ସଚେତନ ଥାଆନ୍ତି, ୯. ଏବଂ ନିଜ ନମାଜ ପ୍ରତି ଯତ୍ନବାନ ଥାଆନ୍ତି, ୧୦. ଏହି ଲୋକମାନେ (ବୈକୁଣ୍ଠର) ଅଧିକାରୀ ହେବେ । ୧୧. ସେମାନେ ବୈକୁଣ୍ଠଲାଭ କରିବେ ଏବଂ ସେଠାରେ ସର୍ବଦା ରହିବେ ।

୧୨. ଆମ୍ଭେ ମାନବକୁ ମାଟିର ସାରରୁ ସୃଷ୍ଟି କଲୁ । ୧୩. ପୁଣି ଆମ୍ଭେ ତାକୁ ଶୁକ୍ରବିନ୍ଦୁ ରୂପେ ଏକ ନିରାପଦ ସ୍ଥାନରେ ରଖିଲୁ । ୧୪. ଏହାପରେ ସେହି ଶୁକ୍ରକୁ ଘନୀଭୂତ ରକ୍ତର ରୂପ ଦେଲୁ ଏବଂ ଘନୀଭୂତ ରକ୍ତକୁ ମାଂସ ପିଣ୍ଡୁଳାରେ ପରିଣତ କଲୁ ଏବଂ ମାଂସ ପିଣ୍ଡୁଳାରୁ ଅସ୍ଥି ସୃଷ୍ଟି କଲୁ । ପୁଣି ଆମ୍ଭେ ଅସ୍ଥି ଉପରେ ମାଂସର ଆବରଣ ଚଢ଼ାଇଲୁ ଏବଂ ତାକୁ ଏକ ଭିନ୍ନ ସୃଷ୍ଟି ରୂପେ ଗଢ଼ିଦେଲୁ । ମଙ୍ଗଳମୟ ଅଲ୍ଲାହ୍ ହେଉଛନ୍ତି ସର୍ବୋତ୍ତମ ସ୍ରଷ୍ଟା । ୧୫. ଏହାପରେ ତୁମେମାନେ ନିଶ୍ଚୟ ମରିବ । ୧୬. ପୁଣି ବିଚାରର ଦିନ ପୁନର୍ଜୀବନ ପାଇ ଉଠିବ ।

୧୭. ଆମ୍ଭେ ତୁମମାନଙ୍କ ଉପରେ (ସ୍ତରସ୍ତର କରି) ସାତଗୋଟି ଆକାଶ ନିର୍ମାଣ କରିଛୁ ଏବଂ ଆମ୍ଭେ ନିଜ ସୃଷ୍ଟିକୁ ଭୁଲିଯାଇ ନାହୁଁ । ୧୮. ଆମ୍ଭେ ଆକାଶରୁ ଠିକ୍ ମାତ୍ରାରେ ଜଳ ବର୍ଷା କରୁ ଏବଂ ଏହାକୁ ଭୂପୃଷ୍ଠରେ ଗଚ୍ଛିତ କରି ରଖୁ । ଆମ୍ଭେ ଏହାକୁ (ଆକାଶକୁ) ଫେରାଇ ନେବାକୁ ମଧ୍ୟ ସକ୍ଷମ । ୧୯. ଏହାଦ୍ୱାରା ଆମ୍ଭେ ତୁମମାନଙ୍କ ପାଇଁ ଖଜୁରୀ ଓ ଅଙ୍ଗୁର ବଗିଚା ଆଦି ସୃଷ୍ଟି କରୁ ଯେଉଁଥିରେ ତୁମମାନଙ୍କ ପାଇଁ ବିଭିନ୍ନ ଫଳମୂଳ ଉତ୍ପନ୍ନ ହୁଏ ଏବଂ ତୁମେମାନେ ସେଗୁଡ଼ିକୁ ଖାଅ । ୨୦. ସିନାଇ ପାହାଡ଼ରେ ଉଠୁଥିବା ଏପରି ଗଛ (ଅର୍ଥାତ୍ ଅଲିଭ୍ ଗଛ) ମଧ୍ୟ ଆମ୍ଭେ ସୃଷ୍ଟି କରିଛୁ ଯେଉଁଥିରୁ ତେଲ ବାହାରେ ଏବଂ ଏହା ଲୋକମାନଙ୍କର ଖାଦ୍ୟ ରୂପେ ମଧ୍ୟ ବ୍ୟବହୃତ ହୁଏ ।

୨୧. ଚତୁଷ୍ପଦ ପ୍ରାଣୀମାନଙ୍କଠାରେ ମଧ୍ୟ ତୁମମାନଙ୍କ ପାଇଁ ଅନେକ ଶିକ୍ଷା ଅଛି । ଆମ୍ଭେ ସେମାନଙ୍କ ପେଟରୁ ତୁମମାନଙ୍କୁ (ଦୁଗ୍ଧ) ପିଇବାକୁ ଦେଇଥାଉ ଏବଂ ସେମାନଙ୍କଠାରୁ ତୁମେମାନେ ଆହୁରି ଅନେକ ଉପକାର ପାଅ ଏବଂ କେତେକଙ୍କୁ ତୁମେମାନେ ଖାଦ୍ୟ ରୂପେ ମଧ୍ୟ ବ୍ୟବହାର କରିଥାଅ । ୨୨. ତୁମେମାନେ

(ଯାତାୟାତ କରିବା ଲାଗି) ସେମାନଙ୍କ ପିଠିରେ ବସ ଏବଂ ନୌକାରେ ମଧ୍ଯ ଆରୋହଣ କର ।

୨୩. ଆମ୍ଭେ ନୂହଙ୍କୁ ତାଙ୍କ ସମାଜ ପାଖକୁ ପଠାଇଲୁ । ସେ ସେମାନଙ୍କୁ କହିଲେ, “ଭାଇମାନେ ! ଅଲ୍ଲାହଙ୍କର ଉପାସନା କର । ତାଙ୍କ ବ୍ୟତୀତ କେହି ତୁମମାନଙ୍କର ଈଶ୍ଵର ନୁହେଁ । କ’ଣ ତାଙ୍କ ପ୍ରତି ତୁମମାନଙ୍କର ଟିକିଏ ଭୟ ନାହିଁ ?” ୨୪. (ଏହା ଶୁଣି) ତାଙ୍କ ସଂପ୍ରଦାୟର ନାସ୍ତିକ ସର୍ଦ୍ଦାରମାନେ (ପରସ୍ପର ମଧ୍ଯରେ) କଥାବାର୍ତ୍ତା ହେଲେ, “ଏହି ଲୋକଟି ତୁମମାନଙ୍କ ପରି ଜଣେ ମଣିଷ ଏବଂ ସେ ତୁମମାନଙ୍କ ଉପରେ ନିଜର ପ୍ରଭୁତ୍ୱ ବିସ୍ତାର କରିବାକୁ ଚାହୁଁଛି । ଅଲ୍ଲାହ୍ ଚାହିଁଥିଲେ ଦେବଦୂତମାନଙ୍କୁ ପଠାଇ ଦେଇଥାଆନ୍ତେ । ଏଭଳି କଥା ତ ଆମେ ଆମ ବାପଅଜାଙ୍କଠାରୁ କେବେ ଶୁଣିନାହୁଁ ? ୨୫. ଏହି ଲୋକଟିର ମତିଭ୍ରମ ହୋଇଯାଇଛି । ତେଣୁ କିଛି ସମୟ ଅପେକ୍ଷା କରିଯାଅ (ହୁଏତ ସେ ସୁସ୍ଥ ହୋଇଯିବ) ।”

୨୬. ନୂହ୍ ପ୍ରାର୍ଥନା କଲେ, “ହେ ପ୍ରଭୁ ! ଏମାନେ ମୋ’ ପ୍ରତି ମିଥ୍ୟାରୋପ କରୁଛନ୍ତି । ମୋତେ ସାହାଯ୍ୟ କର ।” ୨୭. ତେଣୁ, ଆମ୍ଭେ ତାଙ୍କୁ ଆଦିଷ୍ଟବାଣୀ କଲୁ ଯେ ଆମ୍ଭ ସାମନାରେ ଆମ୍ଭରି ଆଜ୍ଞା ଅନୁଯାୟୀ ନୌକାଟିଏ ତିଆରି କର । ପୁଣି ଯେତେବେଳେ ଆମ୍ଭର ଆଜ୍ଞା ହେବ ଏବଂ ଚୁଲି (ପାଣିରେ ପୂର୍ଣ୍ଣ ହୋଇ) ଉଚ୍ଛୁଳି ପଡ଼ିବ, ସେତେବେଳେ ପ୍ରତ୍ୟେକ ପ୍ରକାରର ପ୍ରାଣୀଙ୍କ ମଧ୍ଯରୁ ଗୋଟିଏ ଲେଖାଏଁ ଯୋଡ଼ି (ଅର୍ଥାତ୍ ଗୋଟିଏ ଅଣ୍ଡିରା ଓ ଗୋଟିଏ ମାଈ) ନେଇ ନୌକାରେ ରଖ । ଯେଉଁମାନଙ୍କ (ବିନାଶ) ବିଷୟରେ ଆମ୍ଭର ନିଷ୍ପତ୍ତି ହୋଇସାରିଛି, ସେମାନଙ୍କୁ ଛାଡ଼ି ନିଜର ଅନ୍ୟ ପରିଜନମାନଙ୍କୁ ନୌକାରେ ବସାଇଦିଅ ଏବଂ ସେହି ପାପୀମାନଙ୍କ ବିଷୟରେ ମୋତେ କିଛି କୁହନାହିଁ । ସେମାନେ ନିଶ୍ଚୟ ଜଳମଗ୍ନ ହେବେ । ୨୮. ପୁଣି ତୁମେ ଓ ତୁମ ସାଥୀମାନେ ନୌକାରେ ବସିଯିବା ପରେ କୁହ, “ଅଲ୍ଲାହଙ୍କୁ ଅଶେଷ ଧନ୍ୟବାଦ, ଯିଏ ଆମମାନଙ୍କୁ ପାପିଷ୍ଠମାନଙ୍କ କବଳରୁ ମୁକ୍ତି ଦେଲେ ।” ୨୯. ଏବଂ ପ୍ରାଥନା କର, “ହେ ପ୍ରଭୁ ! ମୋତେ ଏକ ଶୁଭ ଜାଗାରେ ପହଁଚାଇ ଦିଅ । ତୁମେହିଁ (ସମସ୍ତଙ୍କୁ) ସକୁଶଳେ ପହଁଚାଇଥାଅ ।” ୩୦. ବାସ୍ତବରେ

ଏହି ଘଟଣାରେ ଅନେକ ସଂକେତ ରହିଛି ଏବଂ ଆମ୍ଭେ ତ (ଲୋକମାନଙ୍କୁ) ପରୀକ୍ଷା କରିଥାଉ ।

୩୧. ପୁଣି ସେମାନଙ୍କ ପରେ ଆମ୍ଭେ ଆଉ ଏକ ସମାଜ ସୃଷ୍ଟି କଲୁ, ୩୨. ଏବଂ ସେମାନଙ୍କ ପାଖକୁ ସେଇମାନଙ୍କ (ସଂପ୍ରଦାୟ) ମଧ୍ୟରୁ ଜଣେ ବାର୍ତ୍ତାବହଙ୍କୁ ପଠାଇଲୁ (ଯିଏ କହିଲେ), "ଅଲ୍ଲାହଙ୍କର ଉପାସନା କର, ତାଙ୍କ ବ୍ୟତୀତ କେହି ତୁମମାନଙ୍କର ଈଶ୍ୱର ନୁହେଁ । କ'ଣ ତୁମମାନଙ୍କର ତାଙ୍କ ପ୍ରତି ଟିକିଏ ଭୟ ନାହିଁ?" ୩୩. (ଏହା ଶୁଣି) ତାଙ୍କ ସଂପ୍ରଦାୟର ସେହି ସର୍ଦ୍ଦାରଗଣ, ଯେଉଁମାନେ ନାସ୍ତିକ ଥିଲେ ତଥା ପରଲୋକକୁ ମିଥ୍ୟା ମନେ କରୁଥିଲେ ଏବଂ ଯେଉଁମାନଙ୍କୁ ଆମ୍ଭେ ସଂସାରରେ ପ୍ରଚୁର ସୁଖସମୃଦ୍ଧି ଦେଇଥିଲୁ, (ପରସ୍ପରକୁ) କହିଲେ, "ଏହି ଲୋକଟି ତ ତୁମମାନଙ୍କ ପରି ଜଣେ ମଣିଷ । ସେ ସେଇୟା ଖାଏ, ଯାହା ତୁମେମାନେ ଖାଅ ଏବଂ ତାହାହିଁ ପିଏ ଯାହା ତୁମେମାନେ ପିଅ । ୩୪. ଯଦି ତୁମେମାନେ ନିଜ ପରି ଜଣେ ମଣିଷର କଥା ମାନିବ, ତେବେ ନିଜର ହିଁ କ୍ଷତି କରିବ । ୩୫. କ'ଣ ସେ ତୁମମାନଙ୍କୁ ଏହା କହୁଛି ଯେ ତୁମେମାନେ ମରିସାରି ହାଡ଼ ଓ ମାଟି ହୋଇଗଲା ପରେ ମଧ୍ୟ ପୁଣି ଥରେ ଜିଇଁ ଉଠିବ? ୩୬. ଏହା ସମ୍ଭବ ନୁହେଁ । ତୁମମାନଙ୍କୁ ଯାହା କୁହାଯାଉଛି ତାହା ସଂପୂର୍ଣ୍ଣ ଅସମ୍ଭବ । ୩୭. ଯାହାକିଛି ଅଛି, ଏହି ସଂସାରରେ ଅଛି । ଏଇଠି ଆମେ ଜିଇଁଥାଉ ଏବଂ ଏଇଠି ମରିଥାଉ ଏବଂ ଆମେ ଆଉ ପୁନର୍ଜୀବନ ପାଇବୁନାହିଁ । ୩୮. ଏହି ଲୋକ ଜଣକ ଏମିତି ଲୋକ, ଯିଏ ଅଲ୍ଲାହଙ୍କ ନାଁରେ ମିଛ କହୁଛି କିନ୍ତୁ ଆମେ ତା' କଥା ଆଦୌ ମାନିବୁ ନାହିଁ ।"

୩୯. ବାର୍ତ୍ତାବହ ପ୍ରାର୍ଥନା କଲେ, "ପ୍ରଭୁ! ଏମାନେ ମୋତେ ମିଥ୍ୟାବାଦୀ କହିଲେ । ତେଣୁ, ମୋତେ ସାହାଯ୍ୟ କର ।" ୪୦. (ଆମ୍ଭେ ଉତ୍ତର ଦେଲୁ), "ଅତିଶୀଘ୍ର ସେମାନେ ଅନୁତପ୍ତ ହେବେ ।" ୪୧. ପୁଣି ସେମାନେ ଯଥାର୍ଥରେ ଏକ ଭୟଙ୍କର ଶବ୍ଦର ଶିକାର ହେଲେ ଏବଂ ଆମ୍ଭେ ସେମାନଙ୍କୁ ଅଳିଆ-ଆବର୍ଜନାରେ ପରିଣତ କରିଦେଲୁ । ଦୂର ହୁଅନ୍ତୁ ପାପୀମାନେ !

୪୨. ପୁଣି ସେମାନଙ୍କ ପରେ ଆମ୍ଭେ ଆଉ ଏକ ସମାଜ ସୃଷ୍ଟି କଲୁ । ୪୩. କୌଣସି ସମାଜର ଅନ୍ତ ଏହାର ନିର୍ଦ୍ଧାରିତ ସମୟ ପୂର୍ବରୁ ବା ପରେ ହୁଏନାହିଁ । ୪୪. ପୁଣି ଆମ୍ଭେ ଜଣଜଣ କରି ବାର୍ତ୍ତାବହମାନଙ୍କୁ ପଠାଇଲୁ । ଯେତେବେଳେ କୌଣସି ସମାଜ ପାଖକୁ ସେମାନଙ୍କ ବାର୍ତ୍ତାବହ ଆସିଲେ, ସେମାନେ ତାଙ୍କୁ ମିଥ୍ୟାବାଦୀ ବୋଲି କହିଲେ । ଆମ୍ଭେ ମଧ୍ୟ ଗୋଟିଏ ପରେ ଗୋଟିଏ ସମାଜକୁ ବିନାଶ କରି ଚାଲିଲୁ ଏବଂ ସେମାନଙ୍କୁ କାହାଣୀରେ ପରିଣତ କରିଦେଲୁ । ଧିକ୍ ସେମାନଙ୍କୁ ଯେଉଁମାନେ (ସତ୍ୟକୁ) ମାନନ୍ତିନାହିଁ ।

୪୫. ତା’ପରେ ଆମ୍ଭେ ମୁ’ସା ଏବଂ ତାଙ୍କ ଭାଇ ହାରୁନଙ୍କୁ ନିଜର ନିଦର୍ଶନ ସହିତ ସ୍ପଷ୍ଟ ପ୍ରମାଣ ଦେଇ ପଠାଇଲୁ - ୪୬. ଫିର୍‌ଔନ ଏବଂ ତା’ ପାରିଷଦମାନଙ୍କ ପାଖକୁ, କିନ୍ତୁ ସେମାନେ ଅହଙ୍କାର କଲେ । ସେମାନେ ଭାରି ଆତ୍ମଗର୍ବୀ ଥିଲେ । ୪୭. ସେମାନେ କହିଲେ, “କ’ଣ ଆମେ ନିଜ ପରି ଦୁଇଜଣ ମଣିଷଙ୍କ କଥା ମାନିନେବୁ ଯେଉଁମାନଙ୍କ ସଂପ୍ରଦାୟର ଲୋକମାନେ ଆମର ଦାସତ୍ୱ କରନ୍ତି ?” ୪୮. ସେମାନେ ଏଦୁହିଁଙ୍କୁ ମିଥ୍ୟାବାଦୀ କହିଲେ ଏବଂ ଶେଷରେ ଧ୍ୱଂସ ହେଲେ । ୪୯. ଆମ୍ଭେ ମୁ’ସାଙ୍କୁ ଗ୍ରନ୍ଥ ଦେଇଥିଲୁ ଯେପରିକି ସେମାନେ ଠିକ୍ ବାଟକୁ ଆସିବେ ।

୫୦. ଆମ୍ଭେ ମରୟମ୍‌ଙ୍କ ପୁତ୍ର (ଯୀଶୁ) ଏବଂ ତାଙ୍କ ମାଆଙ୍କୁ ନିଜର ନିଦର୍ଶନ କରିଥିଲୁ ଏବଂ ସେମାନଙ୍କୁ ଏକ ଉଚ୍ଚ ଓ ନିରାପଦ ଜାଗାରେ ଆଶ୍ରୟ ଦେଇଥିଲୁ ଯେଉଁଠି ଝରଣା ବହି ଯାଉଥିଲା ।

୫୧. ହେ ବାର୍ତ୍ତାବହଗଣ ! ଶୁଦ୍ଧ ଖାଦ୍ୟ ଖାଅ ଏବଂ ଭଲ କର୍ମ କର । ତୁମେମାନେ ଯାହା କରୁଛ, ମୁଁ ଭଲରୂପେ ଜାଣେ । ୫୨. ବାସ୍ତବରେ ତୁମମାନଙ୍କର ଏହି ମାନବସମାଜ ଗୋଟିଏ ଭ୍ରାତୃତ୍ୱ ଏବଂ ମୁଁ ତୁମମାନଙ୍କର ଈଶ୍ୱର । ତେଣୁ କେବଳ ମୋତେ ହିଁ ଭୟ କର । ୫୩. କିନ୍ତୁ ଲୋକମାନେ ସେମାନଙ୍କ ଧର୍ମକୁ ଖଣ୍ଡଖଣ୍ଡ କରି ଭାଗଭାଗ ହୋଇଗଲେ । ଯେଉଁ ଗୋଷ୍ଠୀ ପାଖରେ ଯାହା ଅଛି, ସେ ସେଇଥିରେ ମଗ୍ନ ରହିଛି । ୫୪. ଠିକ୍ ଅଛି, ସେମାନଙ୍କୁ କିଛି ସମୟ ଭ୍ରାନ୍ତି ମଧ୍ୟରେ ପଡ଼ି ରହିବାକୁ ଦିଅ ।

୫୫. କ'ଣ ସେମାନେ ଭାବୁଛନ୍ତି ଯେ ଆମ୍ଭେ ସେମାନଙ୍କର ଧନଜନରେ ଯେଉଁ ବୃଦ୍ଧି କରୁଛୁ, ୫୬. ତାହାର କାରଣ ଆମ୍ଭେ ସେମାନଙ୍କ କଲ୍ୟାଣ ପାଇଁ ବ୍ୟଗ୍ର ହୋଇ ଉଠିଛୁ ? ଆଦୌ ନୁହେଁ ବରଂ ସେମାନେ (ପ୍ରକୃତ କଥା) ବୁଝୁନାହାନ୍ତି । ୫୭. ପ୍ରକୃତରେ ଯେଉଁମାନେ ଈଶ୍ୱରଙ୍କ ଭୟରେ ଡରିଡରି ରହନ୍ତି, ୫୮. ଏବଂ ଯେଉଁମାନେ ସେମାନଙ୍କ ପ୍ରଭୁଙ୍କ ବାଣୀକୁ ବିଶ୍ୱାସ କରନ୍ତି, ୫୯. ଯେଉଁମାନେ ଅନ୍ୟ କାହାରିକୁ ପ୍ରଭୁଙ୍କର ସମକକ୍ଷ କରନ୍ତିନାହିଁ, ୬୦. ଏବଂ ଯେତେବେଳେ ଦାନ କରନ୍ତି, ସେମାନଙ୍କ ମନରେ ଭୟ ଥାଏ ଯେ (ଦିନେ) ସେମାନେ ନିଜ ପ୍ରଭୁଙ୍କ ପାଖକୁ ଫେରିବେ । ୬୧. ଏହି ଲୋକମାନେ ଭଲ କର୍ମ କରିବାପାଇଁ ତତ୍ପର ଥାଆନ୍ତି ଏବଂ ଏହିମାନେ ସେଥିରେ ଅଗ୍ରଣୀ ରହିବେ । ୬୨. ଆମ୍ଭେ କୌଣସି ବ୍ୟକ୍ତିକୁ ତା' ସାମର୍ଥ୍ୟଠାରୁ ଅଧିକ ଦାୟିତ୍ୱ ଦେଉନା । ଆମ୍ଭ ପାଖରେ ଏକ ଗ୍ରନ୍ଥ ଅଛି ଯାହା ସତ୍ୟ ପ୍ରକାଶ କରେ ଏବଂ ସେମାନଙ୍କ ପ୍ରତି ଆଦୌ ଅନ୍ୟାୟ କରାଯିବ ନାହିଁ ।

୬୩. ମାତ୍ର ଏହି (ଅଧର୍ମୀ) ଲୋକମାନଙ୍କର ମନ ଏବିଷୟରେ ଭାରି ଉଦାସୀନ ଏବଂ ଏହା ବ୍ୟତୀତ ଏମାନେ ଆହୁରି ଅନେକ କୁକର୍ମ ମଧ କରୁଥାଆନ୍ତି । ୬୪. ପୁଣି ଯେତେବେଳେ ଆମ୍ଭେ ସେମାନଙ୍କ ମଧ୍ୟରେ ଥିବା ସମୃଦ୍ଧଶାଳୀ ଲୋକମାନଙ୍କୁ ଶାସ୍ତି ଦେବୁ, ସେମାନେ ବିକଳ ହୋଇ ଗୁହାରି କରିବେ । ୬୫. (ସେମାନଙ୍କୁ କୁହାଯିବ) ଆଜି କନ୍ଦାକଟା କରନାହିଁ । ତୁମମାନଙ୍କୁ ଆମ୍ଭଠାରୁ କୋଣସି ସାହାଯ୍ୟ ମିଳିବନାହିଁ । ୬୬. ତୁମମାନଙ୍କୁ ମୋ' ବାଣୀ ପଢ଼ି ଶୁଣାଇ ଦିଆ ଯାଉଥିଲା କିନ୍ତୁ ତୁମେମାନେ ତାହାକୁ ଖାତିର ନକରି ଚାଲି ଯାଉଥିଲ । ୬୭. ରାତିରେ ବସି ଭାରି ଗର୍ବରେ କୁରଆନ ବିଷୟରେ ଅବାନ୍ତର କଥାସବୁ କହୁଥିଲ ।

୬୮. କ'ଣ ସେମାନେ ଏହି ଗ୍ରନ୍ଥ ପ୍ରତି ଧ୍ୟାନ ଦେଉନାହାନ୍ତି ବା କ'ଣ ସେମାନଙ୍କ ପାଖକୁ ଏଭଳି କିଛି (ନୂଆ କଥା) ଆସିଯାଇଛି ଯାହା ସେମାନଙ୍କ ପୂର୍ବପୁରୁଷମାନଙ୍କ ପାଖକୁ ଆସି ନଥିଲା ? ୬୯. କିମ୍ବା ସେମାନେ ନିଜ ରସୁଲଙ୍କୁ ଚହ୍ନି ପାରୁନାହାନ୍ତି ଯେଉଁଥିପାଇଁ ତାଙ୍କୁ ଗ୍ରହଣ କରୁନାହାନ୍ତି ? ୭୦. କିମ୍ବା କ'ଣ ସେମାନେ ଏହା କହୁଛନ୍ତି ଯେ ତାଙ୍କର ମତିଭ୍ରମ ଘଟିଛି ? ବରଂ ସେ ସେମାନଙ୍କ ପାଖକୁ ସତ୍ୟର ବାର୍ତ୍ତା ନେଇ ଆସିଛନ୍ତି କିନ୍ତୁ ଅଧିକାଂଶ ଲୋକଙ୍କୁ ସତ୍ୟ ଅପ୍ରିୟ

ଲାଗୁଛି । ୭୧. ଯଦି ଈଶ୍ୱର ସେମାନଙ୍କ ଇଚ୍ଛାର ଅନୁସରଣ କରନ୍ତେ, ତେବେ ପୃଥିବୀ ଓ ଆକାଶ ଏବଂ ସେଗୁଡ଼ିକରେ ଥିବା ସମସ୍ତ ସୃଷ୍ଟି ଧ୍ୱଂସ ପାଇଯାଆନ୍ତା । ଆମ୍ଭେ ସେମାନଙ୍କ ପାଖରେ ସେମାନଙ୍କର ମାର୍ଗଦର୍ଶକ ଗ୍ରନ୍ଥ ପହଁଚାଇ ଦେଇଛୁ ମାତ୍ର ସେମାନେ ନିଜ ଗ୍ରନ୍ଥକୁ ଉପେକ୍ଷା କରୁଛନ୍ତି ।

୭୨. (ହେ ବାର୍ତ୍ତାବହ!) କ'ଣ ତୁମେ ସେମାନଙ୍କୁ କିଛି ଧନ ମାଗୁଛ? ତୁମ ଈଶ୍ୱର ତୁମକୁ ଯାହା ଦେଇଛନ୍ତି, ତାହା ସବୁଠାରୁ ଭଲ ଏବଂ ସେ ସର୍ବୋତ୍ତମ ଦାତା । ୭୩. ତୁମେ ଅବଶ୍ୟ ସେମାନଙ୍କୁ ଠିକ୍ ବାଟକୁ ଡାକୁଛ । ୭୪. ଯେଉଁମାନେ ପରଲୋକରେ ବିଶ୍ୱାସ ନକରନ୍ତି, ସେମାନେ ପଥଭ୍ରଷ୍ଟ ହୋଇ ଯାଇଛନ୍ତି ।

୭୫. ଯଦି ଆମ୍ଭେ ସେମାନଙ୍କ ପ୍ରତି ଦୟା କରୁ ଏବଂ ସେମାନଙ୍କର କଷ୍ଟ ଦୂର କରିଦେଉ, ତଥାପି ସେମାନେ ନିଜର ଅହଙ୍କାରରେ ଅଟଳ ରହିଥିବେ ଏବଂ (ଏହିଭଳି) ବିଭ୍ରାନ୍ତ ହେଉଥିବେ । ୭୬. ଆମ୍ଭେ ସେମାନଙ୍କୁ ଶାସ୍ତି ଦେଲୁ, ମାତ୍ର ସେତେବେଳେ ମଧ୍ୟ ସେମାନେ ନିଜ ଈଶ୍ୱରଙ୍କ ଆଗରେ ମୁଣ୍ଡ ନୁଆଁଇଲେ ନାହିଁ କିମ୍ବା ତାଙ୍କଠାରେ କାକୁତିମିନତି କଲେନାହିଁ । ୭୭. କିନ୍ତୁ ଯଦି ଆମ୍ଭେ ସେମାନଙ୍କ ପାଇଁ କଠୋର ଶାସ୍ତିର ଦ୍ୱାର ଖୋଲିଦେଉ, ତେବେ ସେମାନେ ସମ୍ପୂର୍ଣ୍ଣ ହତାଶ ହୋଇପଡ଼ିବେ ।

୭୮. ସେହି ଅଲ୍ଲାହ୍ ତୁମମାନଙ୍କୁ ଆଖି, କାନ ଓ ହୃଦୟ ଦେଇଛନ୍ତି କିନ୍ତୁ ତୁମେମାନେ କ୍ୱଚିତ୍ ଉପକାର ମାନିଥାଅ । ୭୯. ସେ ତୁମମାନଙ୍କୁ ପୃଥିବୀସାରା ଖେଳାଇ ଦେଇଛନ୍ତି ଏବଂ ତାଙ୍କରି ପାଖରେ ତୁମେମାନେ ଦିନେ ଏକାଠି ହେବ । ୮୦. ସେ ହିଁ ଜୀବନ ଦିଅନ୍ତି ଏବଂ ସେ ହିଁ ମୃତ୍ୟୁ ଦିଅନ୍ତି ଏବଂ ଦିନ ଓ ରାତିର ପରିବର୍ତ୍ତନ ତାଙ୍କରି ନିର୍ଦ୍ଦେଶରେ ହୁଏ । କ'ଣ ତୁମେମାନେ ଏହା ବୁଝି ପାରୁନାହିଁ? ୮୧. ମାତ୍ର ଏମାନେ ସେଇକଥା କହୁଛନ୍ତି ଯାହା ସେମାନଙ୍କ ପୂର୍ବପୁରୁଷମାନେ କହିଥିଲେ । ୮୨. ସେମାନେ କହୁଛନ୍ତି, "ଯେତେବେଳେ ଆମେମାନେ ମରିସାରି ହାଡ଼ ଓ ମାଟିରେ ପରିଣତ ହୋଇଯିବୁ, କ'ଣ ସତରେ ପୁଣି ପୁନର୍ଜୀବନ ପାଇ ଉଠିବୁ? ୮୩. ଏହିକଥା ଆମକୁ କୁହାଯାଇଛି ଏବଂ ଆମ ପୂର୍ବରୁ ଆମ ପୂର୍ବପୁରୁଷମାନଙ୍କୁ ମଧ୍ୟ କୁହା ଯାଇଥିଲା । ଏଗୁଡ଼ାକ କେବଳ ପ୍ରାଚୀନ କାଳର ଲୋକକଥା ।

୮୪. ସେମାନଙ୍କୁ ପଚାର, "ପୃଥିବୀ ଏବଂ ପୃଥିବୀରେ ଯାହାକିଛି ଅଛି, ସେଗୁଡ଼ିକ ସବୁ କାହାର? ଯଦି ତୁମମାନଙ୍କୁ ଜଣାଅଛି ତେବେ ଉତ୍ତର ଦିଅ।" ୮୫. ସେମାନେ କହିବେ, "ଅଲ୍ଲାହଙ୍କର"। କୁହ,"ପୁଣି ତୁମେମାନେ କାହିଁକି ଧ୍ୟାନ ଦେଉନାହଁ? ୮୬. (ପୁଣି) ପଚାର, "ସପ୍ତଆକାଶର ମାଲିକ ଏବଂ ଗୌରବମୟ ଦିବ୍ୟସିଂହାସନର ଅଧୀଶ୍ୱର କିଏ?" ୮୭. ସେମାନେ କହିବେ, "ଅଲ୍ଲାହ୍"। କୁହ, "ତେବେ ତୁମେମାନେ ତାଙ୍କୁ କାହିଁକି ଭୟ କରୁନାହଁ?" ୮୮. ସେମାନଙ୍କୁ ପଚାର, "ସୃଷ୍ଟିର ସବୁ ଜୀବଜଡ଼ କାହା ଅଧୀନରେ ଅଛନ୍ତି ଏବଂ କିଏ (ସମସ୍ତଙ୍କୁ) ଆଶ୍ରୟ ଦିଅନ୍ତି କିନ୍ତୁ ତାଙ୍କ ଇଚ୍ଛା ବିରୁଦ୍ଧରେ କେହି କାହାରିକୁ ଆଶ୍ରୟ ଦେଇ ପାରନ୍ତିନାହିଁ? ଯଦି ତୁମେମାନେ ଜାଣିଛ, ତେବେ ଉତ୍ତର ଦିଅ"। ୮୯. ସେମାନେ କହିବେ, "ଅଲ୍ଲାହ୍"। ସେମାନଙ୍କୁ କୁହ,"ପୁଣି ତୁମମାନଙ୍କୁ କେମିତି ଗୁଣି ହୋଇଯାଉଛି?"

୯୦. ଆମ୍ଭେ ସେମାନଙ୍କ ପାଖରେ ସତ୍ୟ ପହଁଚାଇ ଦେଇଛୁ ମାତ୍ର ସେମାନେ ପକ୍କା ମିଥ୍ୟାବାଦୀ। ୯୧. ଅଲ୍ଲାହ୍ କାହାରିକୁ ପୁଅ କରିନାହାନ୍ତି କିମ୍ବା (ବ୍ରହ୍ମାଣ୍ଡରେ) ତାଙ୍କ ସହିତ ଅନ୍ୟ କେହି ଈଶ୍ୱର ନାହାନ୍ତି। ଯଦି ଏମିତି ହୋଇଥାଆନ୍ତା, ତେବେ ପ୍ରତ୍ୟେକ ଈଶ୍ୱର ନିଜନିଜର ସୃଷ୍ଟିକୁ ନେଇ ଅଲଗା ହୋଇଯାଆନ୍ତେ ଏବଂ ପରସ୍ପର ଉପରେ ଆକ୍ରମଣ କରନ୍ତେ। ଏମାନେ ଅଲ୍ଲାହଙ୍କ ବିଷୟରେ ଯେଉଁ କଥାସବୁ ଗଢୁଛନ୍ତି, ଅଲ୍ଲାହ୍ ସେଥିରୁ ବହୁ ଊର୍ଦ୍ଧ୍ୱରେ। ୯୨. ସେ ଦୃଷ୍ଟ ଓ ଅଦୃଷ୍ଟର ଜ୍ଞାତା। ଏମାନେ ଯେମିତି ତାଙ୍କ ସହିତ ଅନ୍ୟକୁ ସମକକ୍ଷ କରୁଛନ୍ତି, ତାଙ୍କର ମହିମା ତା'ଠାରୁ କାହିଁ ଊର୍ଦ୍ଧ୍ୱରେ।

୯୩. (ହେ ବାର୍ତ୍ତାବହ!) ପ୍ରାର୍ଥନା କର, "ହେ ପ୍ରଭୁ! ସେମାନଙ୍କୁ ଶାସ୍ତିର ଯେଉଁ ଚେତାବନୀ ଦିଆଯାଉଛି, ଯଦି ତୁମେ ମୋତେ ଏହା ଦେଖାଅ, ୯୪. ତେବେ ପ୍ରଭୁ! ମୋତେ ସେହି ପାପୀ ଲୋକମାନଙ୍କ ସହିତ ମିଶାଇବ ନାହିଁ।" ୯୫. ଆମ୍ଭେ ସେମାନଙ୍କୁ ଯେଉଁ ଦଣ୍ଡର ଚେତାବନୀ ଦେଉଛୁ ତାହା ତୁମକୁ ଦେଖାଇ ଦେବାକୁ ଆମ୍ଭେ ଅବଶ୍ୟ ସକ୍ଷମ।

୯୬. ଖରାପ ବ୍ୟବହାରର ଉତ୍ତର ଭଲ ବ୍ୟବହାର ଦ୍ୱାରା ଦିଅ । ସେମାନେ ଯାହା କହୁଛନ୍ତି ଆମ୍ଭେ ଭଲରୂପେ ଜାଣୁ । ୯୭. ଏବଂ ପ୍ରାର୍ଥନା କର, "ହେ ପାଳନକର୍ତ୍ତା ! ଶଇତାନମାନେ ଉତ୍ପନ୍ନ କରୁଥିବା ଦୁର୍ଭାବନାରୁ ମୁଁ ତୁମର ଆଶ୍ରୟ ମାଗୁଛି, ୯୮. ମୋତେ ଆଶ୍ରୟ ଦିଅ ଯେପରିକି ସେମାନେ ମୋ' ପାଖକୁ ନଆସନ୍ତୁ ।"

୯୯. ଯେତେବେଳେ ସେମାନଙ୍କ ମଧ୍ୟରୁ କାହାରି ମୃତ୍ୟୁ ଆସି ପହଁଚିବ, ସେ କହିବ, "ହେ ପ୍ରଭୁ ! ମୋତେ (ସେହି ସଂସାରକୁ) ଫେରାଇନିଅ, ୧୦୦. ଯାହାକୁ ମୁଁ ଛାଡ଼ିଆସିଛି ଯେପରିକି ମୁଁ ସେଠାରେ ଯାଇ ଭଲ କର୍ମ କରିବି ।" କଦାପି ନୁହେଁ, ଏହା କେବଳ ତା' କହିବା କଥା । ସେମାନଙ୍କ ସମ୍ମୁଖରେ ଏକ ପ୍ରତିରୋଧକ ଥିବ ଯାହା ପୁନର୍ଜୀବନ ଲାଭ କରିବା ପର୍ଯ୍ୟନ୍ତ ରହିବ । ୧୦୧. ପୁଣି ଯେତେବେଳେ ତୂରୀନାଦ ହେବ, ସେଦିନ ସେମାନଙ୍କ ମଧ୍ୟରେ ପାରସ୍ପରିକ ସମ୍ପର୍କ ରହିବନାହିଁ କିମ୍ବା ସେମାନେ କେହି କାହାରିକୁ ପଚାରିବେ ନାହିଁ । ୧୦୨. ଯେଉଁମାନଙ୍କ ପୁଣ୍ୟର ଓଜନ ବେଶୀ ହେବ ସେମାନେ ସଫଳ ହେବେ । ୧୦୩. ଏବଂ ଯେଉଁମାନଙ୍କ ପୁଣ୍ୟର ଓଜନ କମ୍ ହେବ, ସେମାନେ ନିଜର କ୍ଷତି କଲେ ଏବଂ ସେମାନେ ଚିରକାଳ ନର୍କରେ ରହିବେ । ୧୦୪. ନିଆଁ ସେମାନଙ୍କ ମୁହଁକୁ ପୋଡ଼ିଦେବ ଏବଂ ସେମାନଙ୍କୁ ସଂପୂର୍ଣ୍ଣ ବିକୃତ କରିଦେବ ।

୧୦୫. (ସେମାନଙ୍କୁ ପ୍ରଶ୍ନ କରାଯିବ) କ'ଣ ତୁମମାନଙ୍କୁ ମୋ' ବାଣୀ ପାଠ କରି ଶୁଣାଇ ଦିଆଯାଉ ନଥିଲା ? ତୁମେମାନେ ସେଗୁଡ଼ିକୁ ମିଛ ବୋଲି କହି ଅସ୍ୱୀକାର କରୁଥିଲ । ୧୦୬. ସେମାନେ କହିବେ, "ହେ ପ୍ରଭୁ ! ଆମକୁ ଆମ ଦୁର୍ଭାଗ୍ୟ ଗ୍ରାସ କରିନେଇଥିଲା ଏବଂ ଆମେମାନେ ପଥଭ୍ରଷ୍ଟ ହୋଇଯାଇଥିଲୁ । ୧୦୭. ହେ ପାଳନକର୍ତ୍ତା ! ଆମକୁ ଏଥିରୁ ବାହାର କର । ଯଦି ଆମେ ପୁଣି ଏଭଳି କର୍ମ କରିବୁ, ତେବେ ନିଶ୍ଚୟ ପାପୀ ରୂପେ ବିବେଚିତ ହେବୁ ।" ୧୦୮. ଅଲ୍ଲାହ୍ କହିବେ, "ଲାଂଛିତ ହୋଇ ଏଇଠି ପଡ଼ିଥାଅ । ମୋ' ସହିତ କଥାବାର୍ତ୍ତା କରନାହିଁ ।" ୧୦୯. ମୋ' ଭକ୍ତମାନଙ୍କ ମଧ୍ୟରୁ କେତେକ ଏପରି ପ୍ରାର୍ଥନା କହୁଥିଲେ, "ହେ ପ୍ରଭୁ ! ଆମେମାନେ ଆସ୍ଥା

ରଖିଲୁ । ଆମକୁ କ୍ଷମା କରିଦିଅ ଏବଂ ଆମ ପ୍ରତି ଦୟା କର । ତୁମେ ତ ପରମ ଦୟାଳୁ ।" ୧୧୦. ତୁମେମାନେ କିନ୍ତୁ ସେମାନଙ୍କ ସହିତ ଥଟ୍ଟା କରୁଥିଲ । ଏପରିକି ସେମାନଙ୍କ ପଛରେ ପଡ଼ି ମୋ' ସ୍ମରଣ-ଚିନ୍ତନ ମଧ୍ୟ ଭୁଲିଗଲ ଏବଂ ସେମାନଙ୍କୁ ବିଦ୍ରୂପ କରିବାରେ ଲାଗିରହିଲ । ୧୧୧. ଆଜି ମୁଁ ସେମାନଙ୍କୁ ସେମାନଙ୍କ ଧୈର୍ଯ୍ୟର ପୁରସ୍କାର ଦେଲି ଯାହାଫଳରେ ସେମାନେ ସଫଳ ହେଲେ ।" ୧୧୨. (ପୁଣି ଅଲ୍ଲାହ୍) ପଚାରିବେ, "ତୁମେମାନେ ପୃଥିବୀରେ କେତେ ବର୍ଷ ରହିଲ ?" ୧୧୩. ସେମାନେ ଉତ୍ତର ଦେବେ, "ଆମେ ସେଠାରେ ଦିନେ ବା ଦିନକରୁ କମ ସମୟ ରହିଥିଲୁ । ଯେଉଁମାନେ ସମୟର ଗଣନା କରନ୍ତି, ସେମାନଙ୍କୁ ପଚାରିନିଅ ।" ୧୧୪. ଅଲ୍ଲାହ୍ କହିବେ, "ତୁମେମାନେ ଖୁବ୍ କମ୍ ସମୟ ରହିଥିଲ । ଭଲ ହୋଇଥାଆନ୍ତା, ଯଦି ଏହାପୂର୍ବରୁ ତୁମେମାନେ ଜାଣି ନେଇଥାଆନ୍ତ ।" ୧୧୫. "କ'ଣ ତୁମେମାନେ ଭାବିଥିଲ ଯେ ଆମ୍ଭେ ତୁମମାନଙ୍କୁ ବୃଥାରେ ସୃଷ୍ଟି କରିଛୁ ଏବଂ ତୁମେମାନେ ଆଉ ଆମ୍ଭ ପାଖକୁ ଫେରିବନାହିଁ ?"

୧୧୬. ମହିମାମୟ ଅଲ୍ଲାହ୍ହିଁ (ବ୍ରହ୍ମାଣ୍ଡର) ପ୍ରକୃତ ଅଧିପତି । ତାଙ୍କ ବ୍ୟତୀତ ଆଉ କେହି ଈଶ୍ୱର ନାହାନ୍ତି । ସେ ଗୌରବମୟ ସିଂହାସନର ସ୍ୱାମୀ । ୧୧୭. ଯିଏ ଅଲ୍ଲାହଙ୍କ ସହିତ କଳ୍ପିତ ଈଶ୍ୱରକୁ ଡାକେ ଯାହା ସପକ୍ଷରେ ତା' ପାଖରେ କୌଣସି ପ୍ରମାଣ ନାହିଁ, ତା'ର ନିଷ୍ପତ୍ତି ଅଲ୍ଲାହଙ୍କ ପାଖରେ ହେବ । ନାସ୍ତିକମାନେ ଆଦୌ ସଫଳ ହେବେନାହିଁ ।

୧୧୮. ପ୍ରାର୍ଥନା କରୁଥାଅ ଯେ ହେ ପ୍ରଭୁ ! ମୋତେ କ୍ଷମା କରିଦିଅ ଏବଂ ମୋ' ପ୍ରତି ଦୟା କର । ତୁମେ ଅବଶ୍ୟ ପରମ ଦୟାଳୁ ।

## ଅଧ୍ୟାୟ ୨୪, ଅନ୍ ନୂର୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଏହା (କୁର୍‌ଆନର) ଏକ ଅଧ୍ୟାୟ ଯାହାକୁ ଆମ୍ଭେ ପଠାଇଛୁ ଏବଂ ଏହାର ଆଦେଶ ପାଳନ କରିବା ଅନିର୍ବାଯ୍ୟ କରିଛୁ ଏବଂ ଏଥିରେ ପରିଷ୍କାର ନିର୍ଦ୍ଦେଶ ଦେଇଛୁ, ଯେପରିକି ତୁମେମାନେ ମନେ ରଖିବ ।

୨. ପ୍ରତ୍ୟେକ ବ୍ୟଭିଚାରିଣୀ ନାରୀ ଓ ବ୍ୟଭିଚାରୀ ପୁରୁଷକୁ ଶହେ ଲେଖାଏଁ କୋରଡ଼ା ମାଡ଼ ଦିଅ । ଯଦି ତୁମେମାନେ ଅଲ୍ଲାହଙ୍କୁ ଏବଂ ବିଚାରଦିନକୁ ବିଶ୍ୱାସ କରୁଥାଅ, ତେବେ ଅଲ୍ଲାହଙ୍କ ବିଧାନ ପାଳନ କଲାବେଳେ ତୁମମାନଙ୍କୁ ସେମାନଙ୍କ ଉପରେ ଦୟା ନଆସୁ ଏବଂ ସେମାନଙ୍କୁ ଦଣ୍ଡ ଦେଲାବେଳେ ମୁସଲମାନ ମାନଙ୍କର ଗୋଟିଏ ସମୁଦାୟ ସେଠାରେ ଉପସ୍ଥିତ ରହୁ ।

୩. ବ୍ୟଭିଚାରୀ ପୁରୁଷ କେବଳ ବ୍ୟଭିଚାରିଣୀ ବା ବହୁଈଶ୍ୱରବାଦିନୀ ନାରୀକୁ ବିବାହ କରେ ଏବଂ ବ୍ୟଭିଚାରିଣୀ ନାରୀ ବ୍ୟଭିଚାରୀ ପୁରୁଷ ବା ବହୁଈଶ୍ୱରବାଦୀ ପୁରୁଷକୁ ବିବାହ କରିଥାଏ । ଏପରି ବିବାହ ସଦ୍‌ବିଶ୍ୱାସୀମାନଙ୍କ ପାଇଁ ନିଷିଦ୍ଧ । ୪. ଯେଉଁମାନେ ସତୀ ନାରୀମାନଙ୍କ ଚରିତ୍ର ପ୍ରତି ଦୋଷାରୋପ କରନ୍ତି ମାତ୍ର (ଏହା ପ୍ରମାଣିତ କରିବା ପାଇଁ) ଚାରିଜଣ ସାକ୍ଷୀ ନଆଣନ୍ତି, ସେମାନଙ୍କୁ ଅଶୀ କୋରଡ଼ା ମାଡ଼ ଦିଅ । ସେମାନଙ୍କ ସାକ୍ଷ୍ୟ ଆଦୌ ଗ୍ରହଣ କରନାହିଁ କାରଣ ସେମାନେ ପାପାଚାରୀ । ୫. ମାତ୍ର ଯେଉଁମାନେ ଏହାପରେ ଅନୁତପ୍ତ ହୁଅନ୍ତି ଏବଂ ନିଜକୁ ସଂଶୋଧନ କରି ନିଅନ୍ତି, ତେବେ (ସେମାନେ ଜାଣି ରଖନ୍ତୁ ଯେ) ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ ପରମ ଦୟାଳୁ ।

୬. ଯେଉଁମାନେ ସେମାନଙ୍କ ପତ୍ନୀମାନଙ୍କ ପ୍ରତି (ବ୍ୟଭିଚାରର) ଦୋଷାରୋପ କରନ୍ତି ଏବଂ କେବଳ ନିଜ ବ୍ୟତୀତ ସେମାନଙ୍କ ପାଖରେ ଅନ୍ୟ କେହି ସାକ୍ଷୀ ନଥାନ୍ତି, ତେବେ ଏହାର ସାକ୍ଷ୍ୟ ରୂପେ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ବ୍ୟକ୍ତି ଅଲ୍ଲାହଙ୍କ ନାମରେ ନିୟମ କରି ଚାରିଥର କହୁ ଯେ ସେ ସତ କହୁଛି, ୭. ଏବଂ ପଞ୍ଚମ ଥର (ନିୟମ କରି) କହୁ ଯେ ଯଦି ସେ ମିଛ କହୁଥାଏ ତେବେ ତା'କୁ ଅଲ୍ଲାହଙ୍କର ଧିକ୍କାର ହେଉ । ୮. ଯଦି ପତ୍ନୀ ଅଲ୍ଲାହ୍‌ଙ୍କ ନାମରେ ଚାରିଥର ନିୟମ କରି

କହେ ଯେ ତା' ପତି ମିଛ କହୁଛି, ତେବେ ସେ ନିଜ ଉପରୁ ଦଣ୍ଡକୁ ଏଡ଼ାଇ ଦେଇପାରିବ, ୯. ଏବଂ ପଂଚମ ଥର (ନିୟମ କରି) କହୁ ଯେ ଯଦି ପତି ସତ କହୁଥାଏ ତେବେ ତା' ଉପରେ ଅଲ୍ଲାହଙ୍କର କୋପ ପଡ଼ିବ । ୧୦. ଯଦି ତୁମମାନଙ୍କ ପ୍ରତି ଅଲ୍ଲାହଙ୍କର କୃପା ଓ କରୁଣା ନଥାଆନ୍ତା (ତେବେ ତୁମେମାନେ ଅସୁବିଧାରେ ପଡ଼ନ୍ତ) । ଅଲ୍ଲାହ୍ ଅବଶ୍ୟ ପଶ୍ଚାତାପ ସ୍ୱୀକାର କରନ୍ତି ଏବଂ ସେ ତତ୍ତ୍ୱଜ୍ଞାନୀ ।

୧୧. ପ୍ରକୃତରେ ଯେଉଁମାନେ ଏହି ଅପବାଦ ଗଢ଼ିଛନ୍ତି, ସେମାନେ ତୁମମାନଙ୍କ ମଧ୍ୟରେ ଥିବା ଏକ ଗୋଷ୍ଠୀ । ତୁମେମାନେ ଏହି ଘଟଣାକୁ ନିଜ ପକ୍ଷରେ ଅନିଷ୍ଟକର ମନେ କରନାହିଁ ବରଂ ଏହା ତୁମମାନଙ୍କ ପକ୍ଷରେ ହିତକର । ସେମାନଙ୍କ ମଧ୍ୟରୁ ଯେଉଁ ବ୍ୟକ୍ତି ଯାହା ପାପ ଅର୍ଜନ କରିଛି, ତାକୁ ସେହି ପରିମାଣରେ ଶାସ୍ତି ମିଳିବ ଏବଂ ଯିଏ ଏହି ଅପବାଦର ଗୁରୁଭାର ବହନ କରିଛି, ତାକୁ କଠୋର ଶାସ୍ତି ଭୋଗିବାକୁ ହେବ । ୧୨. ଯେତେବେଳେ ତୁମେମାନେ ଏହି (ଅପବାଦ) କଥା ଶୁଣିଲ, ସେତେବେଳେ ମୁସଲମାନ ପୁରୁଷ ଓ ମୁସଲମାନ ମହିଳାମାନେ କାହିଁକି ମନରେ ଭଲ ବିଚାର ରଖିଲେ ନାହିଁ ଏବଂ କାହିଁକି କହିଲେ ନାହିଁ ଯେ ଏହା ଏକ ତୁଚ୍ଛା ଅପବାଦ ? ୧୩. ସେମାନେ କାହିଁକି ଏବିଷୟରେ ଚାରିଜଣ ସାକ୍ଷୀ ଆଣିଲେନାହିଁ ? ଯେହେତୁ ସେମାନେ ସାକ୍ଷୀ ଆଣିଲେନାହିଁ, ଅଲ୍ଲାହଙ୍କ ଦୃଷ୍ଟିରେ ସେମାନେ ମିଥ୍ୟାବାଦୀ । ୧୪. ଯଦି ଇହଲୋକ ଓ ପରଲୋକରେ ତୁମମାନଙ୍କ ପ୍ରତି ଅଲ୍ଲାହଙ୍କ କୃପା ଓ କରୁଣା ନଥାଆନ୍ତା, ତେବେ ତୁମେମାନେ ଯେଉଁ ବିଷୟରେ ଚର୍ଚ୍ଚା କରୁଥିଲ, ତାହା ଯୋଗୁଁ ତୁମମାନଙ୍କ ଉପରେ ଭାରି ବଡ଼ ବିପଦ ପଡ଼ିଥାଆନ୍ତା ୧୫. ତୁମେମାନେ ନିଜ ତୁଣ୍ଡରେ ଏଭଳି କଥାର ପ୍ରଚାର କରୁଥିଲ ଏବଂ ନିଜ ମୁହଁରେ ଏମିତି କଥା କହୁଥିଲ ଯାହା ବିଷୟରେ ତୁମମାନଙ୍କର କୌଣସି ଜ୍ଞାନ ନଥିଲା । ତୁମେମାନେ ଏହାକୁ ସାଧାରଣ କଥା ମନେ କରୁଥିଲ କିନ୍ତୁ ଅଲ୍ଲାହଙ୍କ ଦୃଷ୍ଟିରେ ଏହା ଏକ ଗୁରୁତର କଥା ଥିଲା ।

୧୬. ଯେତେବେଳେ ତୁମେମାନେ ଏହା ଶୁଣିଲ, ସେତେବେଳେ କାହିଁକି ଏହା ନକହିଲ ଯେ ଆମେମାନେ ଏଭଳି କଥା ତୁଣ୍ଡରେ ଧରିବା ଉଚିତ ନଥିଲା ? ହେ ଅଲ୍ଲାହ୍ ! ତୁମେ ପରମ ପବିତ୍ର ! ଏହା ଏକ ଗୁରୁତର ଅପବାଦ । ୧୭. ଅଲ୍ଲାହ୍

ତୁମମାନଙ୍କୁ ଉପଦେଶ ଦେଉଛନ୍ତି ଯେ ଯଦି ତୁମେମାନେ ସଦ୍‌ବିଶ୍ୱାସୀ ହୋଇଥାଅ, ତେବେ କଦାପି ଆଉ ଏପରି କରିବନାହିଁ । ୧୮. ଅଲ୍ଲାହ୍ ତୁମମାନଙ୍କ ନିକଟରେ ତାଙ୍କର ବାଣୀଗୁଡ଼ିକୁ ପରିଷ୍କାର ଭାବରେ ବର୍ଣ୍ଣନା କରୁଛନ୍ତି । ସେ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ ।

୧୯. ଯେଉଁମାନେ ଚାହାନ୍ତି ଯେ ମୁସଲମାନମାନଙ୍କ ମଧ୍ୟରେ ନିର୍ଲଜତାର ପ୍ରସାର ହେଉ, ସେମାନେ ଇହଲୋକ ଓ ପରଲୋକରେ କଷ୍ଟଦାୟକ ଶାସ୍ତି ଭୋଗିବେ । ଅଲ୍ଲାହ୍ ଜାଣନ୍ତି, ମାତ୍ର ତୁମେମାନେ ଜାଣନାହିଁ । ୨୦. ଯଦି ତୁମମାନଙ୍କ ପ୍ରତି ଅଲ୍ଲାହଙ୍କର କୃପା ଓ କରୁଣା ନଥାଆନ୍ତା (ତେବେ ତୁମେମାନେ ବିପଦରେ ପଡ଼ନ୍ତ) । ଅଲ୍ଲାହ୍ ଅତ୍ୟନ୍ତ କରୁଣାଶୀଳ ଏବଂ ପରମ ଦୟାଳୁ ।

୨୧. ହେ ମୁସଲମାନମାନେ ! ଶଇତାନର ପଦାଙ୍କ ଅନୁସରଣ କରନାହିଁ । ଯଦି କେହି ଶୈତାନର ପିଛା ଧରିବ, ତେବେ ସେ ତାକୁ ଅଶ୍ଳୀଳତା ଓ ଅପକର୍ମ କରିବାର ପ୍ରେରଣା ଦେବ । ଯଦି ତୁମମାନଙ୍କ ପ୍ରତି ଅଲ୍ଲାହଙ୍କର କୃପା ଓ କରୁଣା ନଥାଆନ୍ତା ତେବେ ତୁମମାନଙ୍କ ମଧ୍ୟରୁ କେହି ଜଣେ ଶୁଦ୍ଧ ହୁଅନ୍ତାନାହିଁ କିନ୍ତୁ ଅଲ୍ଲାହ୍ ଯାହାକୁ ଚାହାନ୍ତି ତାକୁ ଶୁଦ୍ଧ କରନ୍ତି । ଅଲ୍ଲାହ୍ ସର୍ବଶ୍ରୋତା ଏବଂ ସର୍ବଜ୍ଞ ।

୨୨. ତୁମମାନଙ୍କ ମଧ୍ୟରୁ ଯେଉଁମାନଙ୍କ ପ୍ରତି ଅଲ୍ଲାହ୍ ଅନୁଗ୍ରହ କରିଛନ୍ତି ଏବଂ ସେମାନେ ଆର୍ଥିକ ରୂପେ ସ୍ୱଚ୍ଛଳ, ସେମାନେ ନିଜର ସଂପର୍କୀୟ, ଦୁଃଖୀଦରିଦ୍ର ତଥା ଅଲ୍ଲାହଙ୍କ ମାର୍ଗରେ ଘରଦ୍ୱାର ଛାଡ଼ି ଆସିଥିବା ଲୋକଙ୍କୁ ସାହାଯ୍ୟ ନକରିବାର ରାଣ ଖାଆନ୍ତୁ ନାହିଁ ବରଂ ସେମାନଙ୍କୁ କ୍ଷମା କରିଦିଅନ୍ତୁ ଏବଂ ସେମାନଙ୍କ କଥା ପ୍ରତି ଧ୍ୟାନ ଦିଅନ୍ତୁନାହିଁ । କ'ଣ ତୁମେମାନେ ଏହା ଚାହଁନା ଯେ ଅଲ୍ଲାହ୍ ତୁମମାନଙ୍କର ଦୋଷ କ୍ଷମା କରନ୍ତୁ ? ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ ପରମ ଦୟାଳୁ ।

୨୩. ଯେଉଁମାନେ ସତୀ, ସରଳା ଓ ସଦବିଶ୍ୱାସିନୀ ମହିଳାଙ୍କ ପ୍ରତି (ବ୍ୟଭିଚାରର) ଆରୋପ କରୁଛନ୍ତି, ସେମାନଙ୍କୁ ଇହଲୋକ ଓ ପରଲୋକରେ ଧିକ୍କାର । ସେମାନେ କଠୋର ଦଣ୍ଡ ଭୋଗିବେ । ୨୪. ସେଦିନ (ଅର୍ଥାତ୍ ବିଚାର ଦିନ) ସେମାନଙ୍କ ମୁହଁ, ହାତ ଓ ଗୋଡ଼ ସେମାନଙ୍କ କାର୍ଯ୍ୟକଳାପ ବିରୁଦ୍ଧରେ ସାକ୍ଷ୍ୟ ଦେବେ । ୨୫. ସେଦିନ ଅଲ୍ଲାହ୍ ସେମାନଙ୍କୁ ସଂପୂର୍ଣ୍ଣ ଓ ସମୁଚିତ ପ୍ରତିଫଳ ଦେବେ ଏବଂ ସେମାନେ ଜାଣିଯିବେ ଯେ ଅଲ୍ଲାହ୍ ହିଁ ସତ୍ୟ ଯିଏ (ସତ୍ୟକୁ) ପ୍ରକାଶ କରିଥାଆନ୍ତି ।

୨୬. ଚରିତ୍ରହୀନା ନାରୀମାନେ ଚରିତ୍ରହୀନ ପୁରୁଷ ଏବଂ ଚରିତ୍ରହୀନ ପୁରୁଷମାନେ ଚରିତ୍ରହୀନା ନାରୀଙ୍କର ଯୋଗ୍ୟ। ଚରିତ୍ରବତୀ ନାରୀମାନେ ଚରିତ୍ରବାନ ପୁରୁଷ ଏବଂ ଚରିତ୍ରବାନ ପୁରୁଷମାନେ ଚରିତ୍ରବତୀ ନାରୀଙ୍କର ଯୋଗ୍ୟ। ଏଭଳି (ପବିତ୍ର) ନରନାରୀଙ୍କ ବିଷୟରେ ସେମାନେ ଯାହା କହୁଛନ୍ତି, ସେହି ଦୋଷରୁ ଏମାନେ ମୁକ୍ତ। ଏମାନଙ୍କୁ (ଅଲ୍ଲାହଙ୍କର) କ୍ଷମା ମିଳିବ ଏବଂ ଉତ୍କୃଷ୍ଟ ସୁଖସମ୍ଭୋଗ ମଧ୍ୟ।

୨୭. ହେ ମୁସଲମାନଗଣ! ନିଜ ଘର ବ୍ୟତୀତ ଅନ୍ୟ କାହାରି ଘରେ (ଗୃହକର୍ତ୍ତାଙ୍କର) ଅନୁମତି ନନେଇ ବା ଗୃହସ୍ଥଙ୍କୁ ଶୁଭେଚ୍ଛା ନଜଣାଇ ପ୍ରବେଶ କରନାହିଁ। ଏହା ତୁମମାନଙ୍କ ପାଇଁ ଖୁବ ଭଲ, ଏକଥା ମନେରଖ। ୨୮. ଯଦି ଘରେ କେହି ନଥାଆନ୍ତି, ତେବେ ଅନୁମତି ନମିଳିବା ପର୍ଯ୍ୟନ୍ତ ଘର ଭିତରେ ପ୍ରବେଶ କରନାହିଁ। ଯଦି ତୁମକୁ ଫେରିଯିବାକୁ କୁହାଯାଏ ତେବେ ଫେରିଯାଅ। ଏହା ତୁମମାନଙ୍କ ପାଇଁ ଏକ ପବିତ୍ର ପନ୍ଥା। ତୁମେମାନେ ଯାହା କର, ଅଲ୍ଲାହ୍ ଭଲରୂପେ ଜାଣନ୍ତି। ୨୯. ଏମିତି ଘରେ (ବିନା ଅନୁମତିରେ) ପ୍ରବେଶ କରିବାରେ ତୁମମାନଙ୍କର ଦୋଷ ନାହିଁ ଯେଉଁଠି କେହି ରହନ୍ତିନାହିଁ କିନ୍ତୁ ସେଠାରେ ତୁମର ଦରକାରୀ ଜିନିଷପତ୍ର ଅଛି। ଯାହା ତୁମେମାନେ ପ୍ରକାଶ କର ଏବଂ ଯାହା ଗୋପନ ରଖ, ଅଲ୍ଲାହ୍ ସବୁ ଜାଣନ୍ତି।

୩୦. ମୁସଲମାନ ପୁରୁଷମାନଙ୍କୁ କୁହ ଯେ ସେମାନେ ଦୃଷ୍ଟି ତଳକୁ ରଖନ୍ତୁ ଏବଂ ନିଜ ଗୁପ୍ତାଂଗଗୁଡ଼ିକୁ ସୁରକ୍ଷିତ ରଖନ୍ତୁ। ଏହା ସେମାନଙ୍କ ପାଇଁ ଏକ ପବିତ୍ର ପନ୍ଥା। ସେମାନେ ଯାହା କରନ୍ତି, ଅଲ୍ଲାହ୍ ଭଲରୂପେ ଜାଣନ୍ତି।

୩୧. ମୁସଲମାନ ମହିଳାମାନଙ୍କୁ କୁହ ଯେ ସେମାନେ (ମଧ୍ୟ) ଦୃଷ୍ଟି ତଳକୁ ରଖନ୍ତୁ ଏବଂ ନିଜ ଗୁପ୍ତାଂଗଗୁଡ଼ିକୁ ସୁରକ୍ଷିତ ରଖନ୍ତୁ ଏବଂ ନିଜର ସୌନ୍ଦର୍ଯ୍ୟର ପ୍ରଦର୍ଶନ ନକରନ୍ତୁ କିନ୍ତୁ ଯାହା ଆପେ ପ୍ରକାଶ ପାଇଥାଏ ତା'କଥା ଭିନ୍ନ। ସେମାନେ ନିଜ ବକ୍ଷକୁ ଓଢ଼ଣା ଦ୍ୱାରା ଘୋଡ଼ାଇ ରଖନ୍ତୁ। ସେମାନେ ନିଜ ପତି, ପିତା, ଶ୍ୱଶୁର, ନିଜ ପୁତ୍ର ବା ପତିଙ୍କ ପୁତ୍ର, ନିଜ ଭାଇ, ପୁତୁରା, ଭଣଜା, ବାନ୍ଧବୀ, ଦାସୀ, କିମ୍ବା ମହିଳାଙ୍କ ପ୍ରତି ଆଗ୍ରହ ରଖୁ ନଥିବା (ବୃଦ୍ଧ) ସେବକ, ବା ମହିଳାମାନଙ୍କର ଗୁପ୍ତ କଥାଗୁଡ଼ିକ ବିଷୟରେ

ଅଙ୍ଗ ଥିବା ଛୋଟ ପିଲାଙ୍କ ବ୍ୟତୀତ ଅନ୍ୟ କାହାରି ସାମନାରେ ନିଜର ସୌନ୍ଦର୍ଯ୍ୟ ପ୍ରଦର୍ଶନ କରନ୍ତୁନାହିଁ । ସେମାନେ ଚାଲିବା ବେଳେ ଭୂଇଁରେ ପାଦ କଚାଡ଼ି ଏପରି ଚାଲନ୍ତୁନାହିଁ ଯେପରିକି ସେମାନଙ୍କର ଲୁଚି ରହିଥିବା ଆଭୂଷଣ ପ୍ରକାଶ ପାଇବ । ହେ ମୁସଲମାନଗଣ ! ତୁମେ ସମସ୍ତେ ଅଲ୍ଲାହ୍‌ଙ୍କ ନିକଟରେ (ନିଜର ପାପ ପାଇଁ) ଅନୁତାପ କର ଯାହାଫଳରେ ତୁମେମାନେ ସଫଳ ହେବ ।

୩୨. ତୁମମାନଙ୍କ ମଧ୍ୟରେ ଯେଉଁମାନେ ଅବିବାହିତ ଅଛନ୍ତି, ସେମାନଙ୍କର ବିବାହ କରାଇଦିଅ ଏବଂ ତୁମ ଦାସ-ଦାସୀମାନଙ୍କ ମଧ୍ୟରେ ଯେଉଁମାନେ ବିବାହଯୋଗ୍ୟ, ସେମାନଙ୍କର ମଧ୍ୟ । ଯଦି ସେମାନେ ଅଭାବୀ ହୋଇ ଥାଆନ୍ତି, ତେବେ ଅଲ୍ଲାହ୍ ନିଜ କୃପାରୁ ସେମାନଙ୍କର ଅଭାବ ଦୂର କରିଦେବେ । ଅଲ୍ଲାହ୍ ସକଳ ପ୍ରାଚୁର୍ଯ୍ୟର ଅଧିକାରୀ ଏବଂ ସେ ସବୁ ଜାଣନ୍ତି । ୩୩. ଯେଉଁମାନଙ୍କର ବିବାହ କରିବାର ସାମର୍ଥ୍ୟ ନାହିଁ, ଅଲ୍ଲାହ୍ ତାଙ୍କ କୃପାରୁ ସେମାନଙ୍କର ଅଭାବ ଦୂର କରିବା ପର୍ଯ୍ୟନ୍ତ ସେମାନେ ସଂଯମ ଆଚରଣ କରନ୍ତୁ । ତୁମ ଦାସଦାସୀମାନଙ୍କ ମଧ୍ୟରୁ ଯଦି କେହି (କିଛି ଦେଇ ଦାସତ୍ୱରୁ) ମୁକ୍ତ ହେବା ପାଇଁ ଚୁକ୍ତିନାମା କରିବାକୁ ଚାହାନ୍ତି ଏବଂ ତୁମେମାନେ ସେମାନଙ୍କଠାରେ କିଛି ଭଲ ଗୁଣ ଦେଖ, ତେବେ ଚୁକ୍ତିନାମା କରିଦିଅ ଏବଂ ଅଲ୍ଲାହ୍ ତୁମମାନଙ୍କୁ ଯାହା ଧନ ଦେଇଛନ୍ତି ସେଥିରୁ ସେମାନଙ୍କୁ ମଧ୍ୟ ଦିଅ । ଯଦି ତୁମ ଦାସୀମାନେ ପବିତ୍ର ଜୀବନଯାପନ କରିବାକୁ ଚାହାନ୍ତି, ତେବେ ତୁମେମାନେ ସାମୟିକ ସାଂସାରିକ ଫାଇଦା ପାଇଁ ସେମାନଙ୍କୁ ଦେହ ବ୍ୟବସାୟ କରିବାକୁ ବାଧ୍ୟ କରନାହିଁ । ଯଦି କେହି ଏଥିପାଇଁ ସେମାନଙ୍କୁ ବାଧ୍ୟ କରେ, ତେବେ ଯେଉଁମାନଙ୍କୁ ବାଧ୍ୟ କରାଯାଏ, ସେମାନଙ୍କ ପ୍ରତି ଅଲ୍ଲାହ୍ ଅବଶ୍ୟ କ୍ଷମାଶୀଳ ଓ ଦୟାଶୀଳ ।

୩୪. ଆମ୍ଭେ ତୁମମାନଙ୍କ ପାଇଁ ସ୍ପଷ୍ଟ ବାଣୀ ପଠାଇଛୁ ଏବଂ ତୁମ ପୂର୍ବ ଲୋକମାନଙ୍କର ଅନେକ ଉଦାହରଣ ମଧ୍ୟ ଦେଇଛୁ ଏବଂ ଅଲ୍ଲାହ୍‌ଙ୍କୁ ଭୟ କରୁଥିବା ଲୋକମାନଙ୍କ ପାଇଁ ଉପଦେଶ ମଧ୍ୟ ।

୩୫. ଅଲ୍ଲାହ୍ ପୃଥିବୀ ଓ ଆକାଶର ଜ୍ୟୋତି । ତାଙ୍କ ଜ୍ୟୋତିର ଦୃଷ୍ଟାନ୍ତ ହେଉଛି ଥାକ ଉପରେ ରଖା ଯାଇଥିବା ଏକ ଦୀପ ପରି ଯାହା ଏକ କାଚ ଭିତରେ ଅଛି ଏବଂ କାଚଟି ସତେ ଯେପରି ଝଟକୁଥିବା ଏକ ତାରା । ସେହି ଦୀପଟି

ମଂଗଳକାରୀ ଜଇତୁନ୍ (ଅର୍ଥାତ୍ ଅଲିଭ) ଗଛର ତେଲ ଦ୍ୱାରା ଜଳିଥାଏ, (ଯାହାର ପ୍ରକାଶ) ନା କେବଳ ପୂର୍ବ ଦିଗକୁ ଥାଏ ନା ପଶ୍ଚିମ ଦିଗକୁ । ସତେ ଯେପରି ଏହାର ତେଲ ଅଗ୍ନି ସଂଯୋଗ ବିନା ହିଁ ଜଳିଉଠିବ । ଅଲୋକ ପରେ ଆଲୋକ । ଅଲ୍ଲାହ୍ ଯାହାକୁ ଇଚ୍ଛା କରନ୍ତି ତାକୁ ନିଜ ଜ୍ୟୋତିର ବାଟ ଦେଖାଇଦିଅନ୍ତି । ଲୋକମାନଙ୍କ ବୁଝିବା ପାଇଁ ଅଲ୍ଲାହ୍ ଏହିଭଳି ଉଦାହରଣମାନ ଦେଇଥାଆନ୍ତି । ଅଲ୍ଲାହ୍ ସବୁ ଜାଣନ୍ତି । ୩୬. (ଏହି ଦୀପ) ସେହି (ଉପାସନା) ଗୃହମାନଙ୍କରେ ରହିଛି ଯେଉଁ ଗୃହ ବିଷୟରେ ଅଲ୍ଲାହ୍ ଆଦେଶ ଦେଇଛନ୍ତି ଯେ ସେଗୁଡ଼ିକର ସମ୍ମାନ କରାଯାଉ ଏବଂ ସେଠାରେ ତାଙ୍କର ନାମ ସ୍ମରଣ କରାଯାଉ । ସେଠାରେ ଏଭଳି ଲୋକମାନେ ସଂଜସକାଳେ ତାଙ୍କର ଗୁଣଗାନ କରନ୍ତି, ୩୭. ଯେଉଁମାନଙ୍କୁ ସେମାନଙ୍କର କିଣାବିକା ବା ବାଣିଜ୍ୟବ୍ୟବସାୟ ଅଲ୍ଲାହଙ୍କ ସ୍ମରଣଚିନ୍ତନରୁ କିମ୍ବା ନମାଜ ଏବଂ ଜକାତରୁ ଭୁଲାଇ ରଖିପାରେ ନାହିଁ । ସେମାନେ ସେହି ଦିନ ପ୍ରତି ଭୟଭୀତ ଥାଆନ୍ତି ଯେଉଁଦିନ ସେମାନଙ୍କ ହୃଦୟ କମ୍ପିଉଠିବ ଏବଂ ଚକ୍ଷୁ ବିସ୍ଫାରିତ ହୋଇଯିବ । ୩୮. (ସେମାନେ ଏଇଥିପାଇଁ ଏହା କରନ୍ତି ଯେ) ଅଲ୍ଲାହ୍ ସେମାନଙ୍କ କର୍ମର ଖୁବ୍ ଭଲ ପୁରସ୍କାର ଦେବେ ଏବଂ ନିଜ କୃପାରୁ ଆହୁରି ଅଧିକ ଦେବେ । ଅଲ୍ଲାହ୍ ଯାହାକୁ ଚାହାନ୍ତି ପ୍ରଚୁର ସୁଖସମୃଦ୍ଧି ଦିଅନ୍ତି ।

୩୯. ଯେଉଁମାନେ (ସତ୍ୟକୁ) ଅବିଶ୍ୱାସ କରନ୍ତି, ସେମାନଙ୍କ କର୍ମଗୁଡ଼ିକ ମରୁ ମରିଚିକା ପରି ଯାହାକୁ ତୃଷାର୍ତ୍ତ ବ୍ୟକ୍ତି ଜଳ ମନେ କରିଥାଏ, ମାତ୍ର ଯେତେବେଳେ ସେ ତାହା ପାଖକୁ ଯାଏ, ସେଠାରେ କିଛି ପାଏନାହିଁ ବରଂ ନିଜ ପାଖରେ ଅଲ୍ଲାହଙ୍କୁ ପାଇଥାଏ, ଯିଏ ତା'ର ସଂପୂର୍ଣ୍ଣ କର୍ମଫଳ ଦିଅନ୍ତି । ଅଲ୍ଲାହ୍ ଖୁବ୍ ଶୀଘ୍ର ବିଚାର କରିବେ । ୪୦. ଅଥବା ସେମାନଙ୍କର ଅବସ୍ଥା ଗଭୀର ସମୁଦ୍ରର ଘନ ଅନ୍ଧକାର ପରି ଯେଉଁଠି ତରଂଗ ଉପରେ ତରଂଗ ସମାଚ୍ଛନ୍ନ, ତା'ଉପରେ ମେଘମାଳା ଏବଂ (ଭିତରେ) ଗୋଟିକ ପରେ ଗୋଟିଏ ଘନ ଅନ୍ଧକାରର ସ୍ତର । ମଣିଷ ନିଜ ହାତ ବାହାରକୁ କାଢ଼ିଲେ ତାକୁ ମଧ୍ୟ ଦେଖିପାରିବ ନାହିଁ । ଯାହାକୁ ଅଲ୍ଲାହ୍ ଆଲୋକ ପ୍ରଦାନ ନକରନ୍ତି, ତା'ପାଇଁ କୌଣସି ଆଲୋକ ନାହିଁ ।

୪୧. କ'ଣ ତୁମେ ଏହା ଦେଖୁନାହଁ ଯେ ଯେଉଁମାନେ ପୃଥିବୀ ଓ ଆକାଶରେ ଅଛନ୍ତି, ସମସ୍ତେ ଅଲ୍ଲାହଙ୍କର ଗୁଣଗାନ କରନ୍ତି ? ଡେଣା ମେଲାଇ

ଉଡୁଥିବା ପକ୍ଷୀମାନେ ମଧ୍ୟ । ସମସ୍ତଙ୍କୁ ନିଜନିଜର ନମାଜ ଜଣା ଅଛି ଏବଂ (ଅଲ୍ଲାହଙ୍କର) ଗୁଣଗାନ କରିବାର ବାଟ ମଧ୍ୟ । ସେମାନେ ଯାହାକିଛି କରନ୍ତି ଅଲ୍ଲାହ୍ ଜାଣନ୍ତି । ୪୨. ପୃଥିବୀ ଓ ଆକାଶରେ କେବଳ ଅଲ୍ଲାହଙ୍କର ରାଜତ୍ୱ ଚାଲେ ଏବଂ ତାଙ୍କରି ନିକଟକୁ ସମସ୍ତଙ୍କୁ ଫେରିବାକୁ ହେବ ।

୪୩. କ'ଣ ତୁମେ ଦେଖୁନାହଁ ଯେ ଅଲ୍ଲାହ୍ ବାଦଲଗୁଡ଼ିକୁ ଚଲାଇ ନିଅନ୍ତି ଏବଂ ସେଗୁଡ଼ିକୁ ପରସ୍ପର ସହ ସଂଯୁକ୍ତ କରିଦିଅନ୍ତି । ତା'ପରେ ସେଗୁଡ଼ିକୁ ସ୍ତରସ୍ତର କରି ସ୍ତୂପରେ ପରିଣତ କରିଦିଅନ୍ତି ଏବଂ ସେଥିରୁ ମେଘ ବର୍ଷିବାର ତୁମେମାନେ ଦେଖ । ଆକାଶରେ ଥିବା (ବାଦଲର) ପାହାଡ଼ଗୁଡ଼ିକରୁ ସେ କୁଆପଥର ବୃଷ୍ଟି କରନ୍ତି ଏବଂ ତାହାଦ୍ୱାରା ଯାହାର (କ୍ଷତି କରିବାକୁ) ଚାହାନ୍ତି ତା'ର କ୍ଷତି କରନ୍ତି ଏବଂ ଯାହାକୁ ଚାହାନ୍ତି, ସେଥିରୁ ରକ୍ଷା କରନ୍ତି । ବିଜୁଳିର ଚମକ ଏମିତି, ସତେଯେମିତି ଦୃଷ୍ଟିଶକ୍ତି ହରଣ କରିନେବ । ୪୪. ସେ ହିଁ ଦିନ ଓ ରାତିକୁ ପରିବର୍ତ୍ତନ କରନ୍ତି । ଯେଉଁମାନେ ଅନ୍ତର୍ଦୃଷ୍ଟିସମ୍ପନ୍ନ, ସେମାନଙ୍କ ପାଇଁ ଏଥିରେ ଏକ ଶିକ୍ଷା ଅଛି ।

୪୫. ଅଲ୍ଲାହ୍ ପ୍ରତ୍ୟେକ ସଜୀବକୁ ଜଳରୁ ସୃଷ୍ଟି କରିଛନ୍ତି । ସେମାନଙ୍କ ମଧ୍ୟରୁ କେତେକ ପେଟରେ ଭରା ଦେଇ ଚାଲନ୍ତି, କେତେକ ଦୁଇ ଗୋଡ଼ରେ ଚାଲନ୍ତି ଏବଂ ଆଉ କେତେକ ଚାରି ଗୋଡ଼ରେ ଚାଲନ୍ତି । ଅଲ୍ଲାହ୍ ଯାହା ଇଚ୍ଛା କରନ୍ତି ତାହା ସୃଷ୍ଟି କରନ୍ତି । ଅଲ୍ଲାହ୍ ସବୁକିଛି କରିବାକୁ ସକ୍ଷମ ।

୪୬. ଆମ୍ଭେ ଅବଶ୍ୟ ସ୍ପଷ୍ଟ ବାଣୀ ପଠାଇଛୁ । ଅଲ୍ଲାହ୍ ଯାହାକୁ ଇଚ୍ଛା କରନ୍ତି, ତାକୁ ଠିକ୍ ବାଟରେ ନେଇଯାଆନ୍ତି ।

୪୭. କେତେକ ଲୋକ କହନ୍ତି ଯେ ଆମେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ ବିଶ୍ୱାସ କଲୁ ଏବଂ ସେମାନଙ୍କର ଆଜ୍ଞାବହ ହୋଇଗଲୁ । ଏହାପରେ ମଧ୍ୟ ସେମାନଙ୍କ ମଧ୍ୟରୁ ଦଳେ ମୁହଁ ବୁଲାଇ ଚାଲିଯାଆନ୍ତି । ସେମାନେ ଆଦୌ ସଦ୍‌ବିଶ୍ୱାସୀ ନୁହନ୍ତି । ୪୮. ଯେତେବେଳେ ସେମାନଙ୍କୁ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ ବାଟକୁ ଡକାଯାଏ ଯେ ଅଲ୍ଲାହଙ୍କ ରସୁଲ୍ ସେମାନଙ୍କ ବିବାଦର ନିଷ୍ପତ୍ତି କରିବେ, ସେମାନଙ୍କ ମଧ୍ୟରୁ ଦଳେ ମୁହଁ ବୁଲାଇ ଚାଲିଯାଆନ୍ତି । ୪୯. ଯଦି (କୌଣସି

ବିଷୟରେ) ନ୍ୟାୟ ସେମାନଙ୍କ ପକ୍ଷରେ ଥାଏ ତା'ହେଲେ ଆଜ୍ଞାବହ ପରି ତୁରନ୍ତ ତାଙ୍କ ପାଖରେ ପହଁଚି ଯାଆନ୍ତି । ୫୦. କ'ଣ ସେମାନଙ୍କର ହୃଦୟ ବ୍ୟାଧିଗ୍ରସ୍ତ ହୋଇଯାଇଛି ବା ସେମାନେ ସନ୍ଦେହରେ ପଡ଼ିଛନ୍ତି ? କିମ୍ବା ସେମାନେ ଭୟ କରୁଛନ୍ତି ଯେ ଅଲ୍ଲାହ୍ ଓ ତାଙ୍କର ରସୁଲ୍ ସେମାନଙ୍କ ପ୍ରତି ଅନ୍ୟାୟ କରିବେ ? ଏହା ନୁହେଁ, ବରଂ (ପ୍ରକୃତ କଥା ହେଉଛି ଯେ) ଏମାନେ ନିଜେ ଅନ୍ୟାୟ କରନ୍ତି । ୫୧. ସଦବିଶ୍ୱାସୀମାନଙ୍କ କଥା ଏଇଭଳି ହୋଇଥାଏ ଯେ ସେମାନଙ୍କୁ କୌଣସି ବିବାଦର ନିଷ୍ପତ୍ତି ଲାଗି ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ (ଶିକ୍ଷା) ଆଡ଼କୁ ଡାକିଲେ ସେମାନେ କହନ୍ତି ଯେ ଆମେ ଶୁଣିଲୁ ଏବଂ ମାନିନେଲୁ । ଏହି ଲୋକମାନେ ସଫଳ ହେବେ । ୫୨. ଯେଉଁମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ କଥା ମାନନ୍ତି, ଅଲ୍ଲାହଙ୍କୁ ଭୟ କରନ୍ତି ଏବଂ ସଦାଚାରୀ ହୁଅନ୍ତି, ସେହିମାନେ ସଫଳ ହେବେ ।

୫୩. (କପଟୀ) ଲୋକମାନେ ଭାରି ଦମ୍ଭରେ ଅଲ୍ଲାହଙ୍କ ରାଣ ଖାଇ କହୁଛନ୍ତି ଯେ ଯଦି ତୁମେ ସେମାନଙ୍କୁ ନିର୍ଦ୍ଦେଶ ଦେବ, ତା'ହେଲେ ସେମାନେ ନିଶ୍ଚୟ (ଘର ଛାଡ଼ି ଅଲ୍ଲାହଙ୍କ ମାର୍ଗରେ) ବାହାରି ପଡ଼ିବେ । ସେମାନଙ୍କୁ କହିଦିଅ, "ଏତେ ରାଣ-ନିୟମ କରନାହିଁ । ତୁମମାନଙ୍କର ଆଜ୍ଞାକାରିତା ଭଲରୂପେ ଜଣା ଅଛି । ତୁମେମାନେ ଯାହା କରୁଛ ଅଲ୍ଲାହ୍ ଠିକ୍ ଜାଣନ୍ତି ।" ୫୪. ସେମାନଙ୍କୁ କୁହ, "ଅଲ୍ଲାହଙ୍କ କଥା ମାନ ଏବଂ ରସୁଲଙ୍କ କଥା ମାନ । ଯଦି ତୁମେମାନେ ନମାନିବ, ତେବେ (ଜାଣିରଖ) ରସୁଲଙ୍କର ଦାୟିତ୍ୱ କେବଳ ସେତିକି, ଯେତିକି ତାଙ୍କ ଉପରେ ନ୍ୟସ୍ତ କରାଯାଇଛି ଏବଂ ଯେଉଁ ଦାୟିତ୍ୱ ତୁମମାନଙ୍କୁ ଦିଆଯାଇଛି ସେଥିପାଇଁ ତୁମେମାନେ ଉତ୍ତରଦାୟୀ । ଯଦି ତୁମେମାନେ ତାଙ୍କ କଥା ମାନି ଚଳିବ ତା'ହେଲେ ଠିକ୍ ବାଟ ପାଇବ । କେବଳ ପରିଷ୍କାର ଭାବରେ ବାର୍ତ୍ତା ଦେଇଦେବା ବାର୍ତ୍ତାବହଙ୍କର ଦାୟିତ୍ୱ ।

୫୫. ତୁମମାନଙ୍କ ମଧ୍ୟରୁ ଯେଉଁମାନେ (ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ) ବିଶ୍ୱାସ କରନ୍ତି ଏବଂ ଭଲ କର୍ମ କରନ୍ତି, ଅଲ୍ଲାହ୍ ସେମାନଙ୍କୁ ବଚନ ଦେଇଛନ୍ତି ଯେ ସେ ସେମାନଙ୍କୁ ନିଶ୍ଚୟ ପୃଥିବୀପୃଷ୍ଠରେ ସେହିପରି କ୍ଷମତା ଦେବେ ଯେପରି କ୍ଷମତା ସେ ସେମାନଙ୍କ ପୂର୍ବ ଲୋକମାନଙ୍କୁ ଦେଇଥିଲେ ଏବଂ ସେମାନଙ୍କ ପାଇଁ (ସେଠାରେ) ସେହି ଧର୍ମକୁ ପ୍ରତିଷ୍ଠିତ କରିଦେବେ ଯାହାକୁ ସେ ସେମାନଙ୍କ ପାଇଁ ପସନ୍ଦ କରିଛନ୍ତି ଏବଂ

ସେମାନଙ୍କର ଭୟକୁ ଅଭୟରେ ପରିଣତ କରିଦେବେ । ସେମାନେ କେବଳ ମୋ'ରି ସେବା-ଉପାସନା କରନ୍ତୁ ଏବଂ କାହାରିକୁ ମୋ'ର ସମକକ୍ଷ ନକରନ୍ତୁ । ଏହାପରେ ଯେଉଁମାନେ ଅବଜ୍ଞା କରିବେ, ସେମାନେ ପାପୀ । ୫୬. ନିୟମିତ ନମାଜ ସଂପାଦନ କରୁଥାଅ ଏବଂ ଜକାତ୍ ଦେଉଥାଅ ଏବଂ ରସୁଲଙ୍କ କଥା ମାନି ଚଳୁଥାଅ, ତା'ହେଲେ ତୁମମାନଙ୍କ ପ୍ରତି (ତାଙ୍କର) କୃପା ହେବ । ୫୭. ତୁମେମାନେ ଏହା ମନେ କରନା ଯେ ନାସ୍ତିକମାନେ ଧରାପୃଷ୍ଠରେ ଆମ୍ଭକୁ ନିରୁପାୟ କରିଦେବେ । ନର୍କ ସେମାନଙ୍କର ଘର ହେବ, ଯାହା ଏକ କଦର୍ଯ୍ୟ ସ୍ଥାନ ।

୫୮. ହେ ମୁସଲମାନଗଣ ! ତୁମମାନଙ୍କର ଦାସଦାସୀ ଏବଂ ଅପ୍ରାପ୍ତବୟସ୍କ ପିଲାମାନେ ତିନୋଟି ସମୟରେ ତୁମଠାରୁ ଅନୁମତି ନେଇ ତୁମ ପାଖକୁ ଆସନ୍ତୁ; ସକାଳର ନମାଜ ପୂର୍ବରୁ, ଦ୍ୱିପହର ସମୟରେ ଯେତେବେଳେ ତୁମେମାନେ (ବିଶ୍ରାମ କରିବା ପାଇଁ) ପୋଷାକ ଓଲ୍ଲାଇଦିଅ ଏବଂ ରାତିର ନମାଜ ପରେ ।  ଏହି ତିନୋଟି ସମୟ ତୁମମାନଙ୍କର ଏକାନ୍ତର ସମୟ । ଏହାବ୍ୟତୀତ (ଅନ୍ୟ ସମୟରେ ବିନା ଅନୁମତିରେ) ଯିବାଆସିବା କରିବା ତୁମମାନଙ୍କ ପାଇଁ କିମ୍ବା ସେମାନଙ୍କ ପାଇଁ ଦୋଷାବହ ନୁହେଁ କାରଣ ତୁମେମାନେ ପରସ୍ପର ପାଖକୁ ପ୍ରାୟ ଯିବାଆସିବା କରିଥାଅ । ଏହିପରି ଅଲ୍ଲାହ୍ ତୁମମାନଙ୍କ ନିକଟରେ ତାଙ୍କର ବାଣୀଗୁଡ଼ିକୁ ପରିଷ୍କାର ଭାବରେ ବର୍ଣ୍ଣନା କରୁଛନ୍ତି । ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ । ୫୯. ଯେତେବେଳେ ତୁମମାନଙ୍କ ପିଲାମାନେ ପ୍ରାପ୍ତବୟସ୍କ ହୋଇଯାଆନ୍ତି, ସେମାନେ ମଧ୍ୟ ସେହିପରି ଅନୁମତି ନେବା ଉଚିତ ଯେପରି ସେମାନଙ୍କ ଗୁରୁଜନମାନେ ଅନୁମତି ନେଉଥିଲେ । ଏହିପରି ଅଲ୍ଲାହ୍ ତାଙ୍କର ବାଣୀଗୁଡ଼ିକୁ ପରିଷ୍କାର ଭାବରେ ବର୍ଣନା କରୁଛନ୍ତି । ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ ।

୬୦. ଯେଉଁ ମହିଳାମାନଙ୍କର ବିବାହ ବୟସ ଗଡ଼ିଯାଇଛି ଏବଂ ଆଉ ବିବାହ କରିବାର କୌଣସି ଆଶା ନାହିଁ, ସେମାନେ ସୌନ୍ଦର୍ଯ୍ୟ ପ୍ରଦର୍ଶନ ନକରି ଯଦି ନିଜର (ଅତିରିକ୍ତ) ବସ୍ତ୍ର (ଓଢ଼ଣା ବା ଚାଦର ଆଦି) କାଢ଼ି ଦିଅନ୍ତି, ତେବେ ଏହା ସେମାନଙ୍କ ପାଇଁ ଦୋଷବାହ ନୁହେଁ । ତଥାପି (ଶାଳୀନତା ଦୃଷ୍ଟିରୁ) ଯଦି ଏହା ମଧ୍ୟ ନକରନ୍ତି, ତେବେ ସେମାନଙ୍କ ପକ୍ଷରେ ଖୁବ୍ ଭଲ ହେବ । ଅଲ୍ଲାହ୍ ସର୍ବଶ୍ରୋତା ଏବଂ ସର୍ବଜ୍ଞ ।

୬୧. ଅନ୍ଧ, ଛୋଟା ବା ରୋଗିଣା ଲୋକ ପାଇଁ (ବିନା ଅନୁମତିରେ କାହାରି ଘରେ ଖାଇବା) ଦୋଷାବହ ନୁହେଁ କିମ୍ବା ତୁମମାନଙ୍କ ପାଇଁ ମଧ୍ୟ ନିଜ ଘରୁ, ବାପା–ଜେଜେବାପା ବା ମାଆ–ଜେଜେମା'ଙ୍କ ଘରୁ ବା ଭାଇ ଅଥବା ଭଉଣୀମାନଙ୍କ ଘରୁ ବା ନିଜ କକେଇ, ପିଉସୀ, ମାମୁଁ ବା ମାଉସୀମାନଙ୍କ ଘରୁ କିମ୍ବା ଯେଉଁ ଘରର ତୁମକୁ ଦାୟିତ୍ୱ ଦିଆଯାଇଛି କିମ୍ବା ନିଜ ବନ୍ଧୁ ଘରୁ କିଛି ଖାଇବା ଦୋଷାବହ ନୁହେଁ। ସେହିପରି, ତୁମେମାନେ ଏକାଠି ମିଶି ଭୋଜନ କର ବା ଅଲଗା ଅଲଗା ଭୋଜନ କର ସେଥିରେ କୌଣସି ଦୋଷ ନାହିଁ। ଯେତେବେଳେ ତୁମେମାନେ କାହାରି ଘରେ ପ୍ରବେଶ କର, ଘର ଲୋକଙ୍କୁ ସଲାମ୍ (ଅର୍ଥାତ୍ ତୁମମାନଙ୍କର ମଙ୍ଗଳ ହେଉ) କହି ଶୁଭେଚ୍ଛା ଜଣାଅ । ଏହା ଅଲ୍ଲାହଙ୍କ ଦ୍ୱାରା ନିରୂପିତ ଏକ ପବିତ୍ର ଶୁଭକାମନା। ଏହିପରି ଅଲ୍ଲାହ୍ ତୁମମାନଙ୍କ ପାଇଁ ତାଙ୍କର ଆଜ୍ଞାଗୁଡ଼ିକୁ ପରିଷ୍କାର ଭାବରେ ବର୍ଣ୍ଣନା କରୁଛନ୍ତି ଯେପରିକି ତୁମେମାନେ ବୁଝିପାରିବ।

୬୨. ସେହିମାନେ ସଦ୍‌ବିଶ୍ୱାସୀ, ଯେଉଁମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ ବିଶ୍ୱାସ କରନ୍ତି। ଯେତେବେଳେ ସେମାନେ କୋଣସି ସାମୂହିକ କର୍ମରେ ତାଙ୍କ ସହିତ ଥାଆନ୍ତି, ତାଙ୍କର ବିନା ଅନୁମତିରେ ସେଠାରୁ ଉଠି କୁଆଡ଼େ ଯାଆନ୍ତିନାହିଁ ଏବଂ (ହେ ରସୁଲ!) ଯେଉଁମାନେ ସେଠାରୁ ତୁମର ଅନୁମତି ନେଇ ଯାଆନ୍ତି, ସେଇମାନେ ହିଁ ଅଲ୍ଲାହ୍ ଏବଂ ତାଙ୍କ ରସୁଲଙ୍କୁ ବିଶ୍ୱାସ କରନ୍ତି। ତେଣୁ, ଯେତେବେଳେ ସେମାନେ କୌଣସି କାର୍ଯ୍ୟ ସକାଶେ ତୁମଠାରୁ ଅନୁମତି ମାଗନ୍ତି, ଯାହାକୁ ଚାହଁ ଅନୁମତି ଦେଇଦିଅ ଏବଂ ସେମାନଙ୍କ ପାଇଁ ଅଲ୍ଲାହଙ୍କଠାରେ କ୍ଷମା ପ୍ରାର୍ଥନା କର। ନିଃସନ୍ଦେହରେ ଅଲ୍ଲାହ୍ କ୍ଷମାଶୀଳ ଏବଂ ପରମ ଦୟାଳୁ।

୬୩. (ହେ ମୁସଲମାନଗଣ!) ତୁମେମାନେ ରସୁଲଙ୍କର ଡାକିବାକୁ ପରସ୍ପର ମଧ୍ୟରେ ଡକାଡକି ହେବା ପରି (ସାଧାରଣ କଥା) ମନେକର ନାହିଁ। ଅଲ୍ଲାହ୍ ତୁମମାନଙ୍କ ମଧ୍ୟରେ ଥିବା ସେହି ଲୋକମାନଙ୍କୁ ଜାଣନ୍ତି ଯେଉଁମାନେ

ଲୋକଙ୍କ ଆଢୁଆଳରେ ଲୁଚି (ତାଙ୍କ ପାଖରୁ) ଖସି ଚାଲିଯାଆନ୍ତି । ଯେଉଁମାନେ ରସୁଲଙ୍କ ଆଜ୍ଞାର ବିରୁଦ୍ଧାଚରଣ କରନ୍ତି, ସେମାନେ ଏବିଷୟରେ ଭୟ କରିବା ଉଚିତ ଯେ ହୁଏତ ସେମାନେ କୌଣସି କଠିନ ପରୀକ୍ଷାରେ ପଡ଼ିଯିବେ କିମ୍ବା ସେମାନଙ୍କ ଉପରେ କୌଣସି ବଡ଼ ବିପଦ ପଡ଼ିଯିବ । ୬୪. ମନେରଖ, ଧରିତ୍ରୀ ଓ ଆକାଶରେ ଯାହାକିଛି ଅଛି, ସବୁ ଅଲ୍ଲାହଙ୍କର । ତୁମମାନେ ଯେଉଁଭଳି ଅବସ୍ଥାରେ ଥାଅ, ସେ ଭଲରୂପେ ଜାଣନ୍ତି । ଯେଉଁଦିନ ସମସ୍ତଙ୍କୁ ତାଙ୍କ ନିକଟକୁ ଫେରାଇ ନିଆଯିବ, ସେଦିନ ସେ ସେମାନଙ୍କୁ ସେମାନଙ୍କ କାର୍ଯ୍ୟକଳାପ ସଂପର୍କରେ ଜଣାଇ ଦେବେ । ଅଲ୍ଲାହ୍ ସବୁକିଛି ଜାଣନ୍ତି ।

## ଅଧ୍ୟାୟ ୨୫, ଅଲ୍ ଫୁରକାନ୍

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ମଂଗଳମୟ ସେହି ସତ୍ତା ଯିଏ ନିଜ ଭକ୍ତଙ୍କ ପାଖକୁ ଠିକ୍ ଓ ଭୁଲ୍ ମଧ୍ୟରେ ପ୍ରଭେଦ କରୁଥିବା ଗ୍ରନ୍ଥ (ଅର୍ଥାତ୍ କୁରଆନ) ପଠାଇଛନ୍ତି ଯେପରିକି ସେ ବିଶ୍ୱକୁ ସାବଧାନ କରିବେ । ୨. ପୃଥିବୀ ଓ ଆକାଶରେ ତାଙ୍କରି ରାଜତ୍ୱ ଏବଂ ତାଙ୍କର କେହି ପୁତ୍ର ନାହାନ୍ତି କିମ୍ବା ତାଙ୍କ ସାମ୍ରାଜ୍ୟରେ କାହାରି ଭାଗ ନାହିଁ । ସେ ପ୍ରତ୍ୟେକ ଜୀବଜଡ଼କୁ ସୃଷ୍ଟି କରିଛନ୍ତି ଏବଂ ତା'ର ଭାଗ୍ୟ ନିରୂପଣ କରିଛନ୍ତି । ୩. ତଥାପି ଲୋକମାନେ ତାଙ୍କୁ ଛାଡ଼ି ସେମାନଙ୍କୁ ଈଶ୍ୱର ରୂପେଗ୍ରହଣ କରି ନେଇଛନ୍ତି ଯେଉଁମାନେ କିଛି ସୃଷ୍ଟି କରନ୍ତିନାହିଁ ବରଂ ନିଜେ (ଅଲ୍ଲାହଙ୍କ ଦ୍ୱାରା) ସୃଷ୍ଟି ହୁଅନ୍ତି । ନିଜର ହାନିଲାଭ ସେମାନଙ୍କ ଆୟତ୍ତରେ ନାହିଁ କିମ୍ବା ଜୀବନ, ମୃତ୍ୟୁ ବା ପୁନର୍ଜୀବନ ଉପରେ ମଧ୍ୟ ସେମାନଙ୍କର କିଛି କର୍ତ୍ତୃତ୍ୱ ନାହିଁ ।

୪. ମିଥ୍ୟାବିଶ୍ୱାସୀମାନେ କହୁଛନ୍ତି ଯେ କୁରଆନ ଏକ ମନଗଢ଼ା କଥା ଯାହାକୁ ସେ (ଅର୍ଥାତ୍ ମହାମାନ୍ୟ ମୁହମ୍ମଦ) ନିଜେ ରଚନା କରିଛନ୍ତି ଏବଂ ଅନ୍ୟ କେତେକ ଲୋକ ଏଥିରେ ତାଙ୍କୁ ସାହାଯ୍ୟ କରିଛନ୍ତି । ଏଭଳି କଥା କହି ସେମାନେ ଗୁରୁତର ମିଥ୍ୟାରୋପ ଏବଂ ଘୋର ଅନ୍ୟାୟ କରିଛନ୍ତି । ୫. ସେମାନେ ଏହା ମଧ୍ୟ କହୁଛନ୍ତି ଯେ କୁରଆନ ପ୍ରାଚୀନ ଯୁଗର ଲୋକକଥା ଯାହାକୁ ସେ ଲେଖାଇ

ନେଇଛନ୍ତି ଏବଂ ତାହାହିଁ ସକାଳେ ଓ ସନ୍ଧ୍ୟାରେ ତାଙ୍କ ପାଖରେ ପାଠ କରାଯାଉଛି । ୬. ସେମାନଙ୍କୁ କହିଦିଅ, "ଏହି ଗ୍ରନ୍ଥକୁ ସେ ପଠାଇଛନ୍ତି ଯିଏ ପୃଥିବୀ ଓ ଆକାଶର ସବୁ ରହସ୍ୟ ଜାଣନ୍ତି । ବାସ୍ତବରେ ସେ ଅତ୍ୟନ୍ତ କ୍ଷମାଶୀଳ ଏବଂ ପରମ ଦୟାଳୁ ।"

୭. ସେମାନେ କହନ୍ତି ଯେ ଏହି ବ୍ୟକ୍ତି ଜଣକ କିପରି ରସୁଲ ଯିଏ ଖିଆପିଆ କରେ ଏବଂ ବଜାରରେ ବୁଲାବୁଲି ମଧ କରେ ? ତା' ପାଖକୁ କାହିଁକି କୌଣସି ଦେବଦୂତକୁ ପଠାଗଲା ନାହିଁ ଯିଏ ତା' ସଂଗେ ମିଶି ଲୋକମାନଙ୍କୁ ସାବଧାନ କରିଥାଆନ୍ତା ? ୮. କିମ୍ବା ତା' ପାଇଁ (ସ୍ୱର୍ଗରୁ) ଧନର ଭଣ୍ଡାର ଓହ୍ଲାଇ ଥାଆନ୍ତା ବା ତା'ର କୌଣସି ବଗିଚା ଥାଆନ୍ତା ଯେଉଁଥିରୁ ସେ (ଫଳମୂଳ) ଖାଆନ୍ତା ? ପାପିଷ୍ଠମାନେ (ମୁସଲମାନମାନଙ୍କୁ) କହୁଛନ୍ତି ଯେ ତୁମେମାନେ ଏମିତି ଜଣେ ଲୋକର କଥା ମାନୁଛ ଯାହାକୁ ଗୁଣି କରି ଦିଆଯାଇଛି । ୯. (ହେ ରସୁଲ !) ଦେଖତ ! ଏମାନେ ତୁମ ବିଷୟରେ କିଭଳି ବିଚିତ୍ର କଥା କହୁଛନ୍ତି । ସୁତରାଂ, ସେମାନେ ପଥଭ୍ରଷ୍ଟ ହୋଇ ଯାଇଛନ୍ତି ଏବଂ ଆଉ ବାଟ ପାଇବେନାହିଁ । ୧୦. ମଂଗଳମୟ ଅଲ୍ଲାହ୍ ଇଚ୍ଛା କଲେ ତୁମକୁ ଏହାଠାରୁ ଯଥେଷ୍ଟ ଭଲ ବସ୍ତୁ ଦେଇ ପାରିବେ – ଏମିତି ଅନେକ ଉଦ୍ୟାନ ଯାହା ତଳେ ଝରଣା ବହୁଥିବ ଏବଂ (ଏହା ସହିତ) ବଡ଼ବଡ଼ ପ୍ରାସାଦ ମଧ୍ୟ ।

୧୧. ଏମାନେ ସେହି ସମୟକୁ (ଅର୍ଥାତ୍ ବିଚାର ଦିନକୁ) ଅସ୍ୱୀକାର କରୁଛନ୍ତି । ଯେଉଁମାନେ ପ୍ରଳୟକୁ ମିଥ୍ୟା ବୋଲି କହନ୍ତି, ସେମାନଙ୍କ ପାଇଁ ଆମ୍ଭେ ଜଳନ୍ତା ନିଆଁ ପ୍ରସ୍ତୁତ କରି ରଖିଛୁ । ୧୨. ଯେତେବେଳେ ସେମାନଙ୍କୁ ଦୂରରୁ ନର୍କ ଦେଖାଯିବ, ସେତେବେଳେ ସେମାନେ ଏହାର ଭୟଙ୍କର ଗର୍ଜନ ଶୁଣିବେ । ୧୩. ଏବଂ ଯେତେବେଳେ ସେମାନଙ୍କୁ ଏକାଠି (ଜଂଜିରରେ) ବାନ୍ଧି ନର୍କର ଏକ ସଂକୀର୍ଣ୍ଣ ଜାଗାରେ ଫିଙ୍ଗି ଦିଆଯିବ, ସେତେବେଳେ ସେମାନେ ମୃତ୍ୟୁକୁ ଡ଼ାକିବେ । ୧୪. ସେମାନଙ୍କୁ କୁହାଯିବ, "ଆଜି ଗୋଟିଏ ମୃତ୍ୟୁକୁ ନୁହେଁ, ଅନେକ ମୃତ୍ୟୁକୁ ଡାକ ।"

୧୫. ସେମାନଙ୍କୁ ପଚାର ଯେ ଏହା ଭଲ ନା ସେହି ଶାଶ୍ୱତ ବୈକୁଣ୍ଠର ଉଦ୍ୟାନ ଭଲ ଯାହାର ପ୍ରତିଶ୍ରୁତି ସଦାଚାରୀମାନଙ୍କୁ ଦିଆଯାଇଛି ? ଏହା ସେମାନଙ୍କର ପୁରସ୍କାର ହେବ ଏବଂ ଏହାହିଁ ସେମାନଙ୍କର ଅନ୍ତିମ ଲକ୍ଷ୍ୟ ହେବ । ୧୬. ସେମାନେ

ସେଠାରେ ଯାହା ଋହିଁବେ ତାହା ପାଇବେ ଏବଂ ସେଠାରେ ଚିରଦିନ ରହିବେ । ଏହା ତୁମ ପ୍ରଭୁଙ୍କର ଏକ ପ୍ରତିଶ୍ରୁତି ଯାହାକୁ ପୂରଣ କରିବା ତାଙ୍କର ଦାୟିତ୍ୱ ।

୧୭. ଯେଉଁଦିନ ସେ ଏମାନଙ୍କ ସହିତ ସେମାନଙ୍କୁ ମଧ୍ୟ ଏକାଠି କରିବେ ଯେଉଁମାନଙ୍କୁ ଏମାନେ ଅଲ୍ଲାହଙ୍କ ବ୍ୟତୀତ ପୂଜା କରୁଥିଲେ ଏବଂ ପଚାରିବେ, "ତୁମେମାନେ ମୋ' ଦାସମାନଙ୍କୁ ପଥଭ୍ରଷ୍ଟ କରିଥିଲ ବା ସେମାନେ ନିଜେ ପଥଭ୍ରଷ୍ଟ ହୋଇ ଯାଇଥିଲେ ?" ୧୮. ସେମାନେ ଉତ୍ତର ଦେବେ, "ହେ ପାଳନକର୍ତ୍ତା ! ତୁମେ ପରମ ପବିତ୍ର । ତୁମ ବ୍ୟତୀତ ଅନ୍ୟ କାହାରିକୁ ଆଶ୍ରୟଦାତା ରୂପେ ଗ୍ରହଣ କରିବାର ଧୃଷ୍ଟତା ଆମେ କରି ନପାରୁ । ତୁମେ ସେମାନଙ୍କୁ ଏବଂ ସେମାନଙ୍କ ପୂର୍ବପୁରୁଷମାନଙ୍କୁ ପ୍ରଚୁର ଭୋଗବିଳାସର ସାଧନ ଦେଇଦେଲ, ଯାହାଫଳରେ ସେମାନେ ତୁମ ଉପଦେଶ ଭୁଲିଗଲେ ଏବଂ ନିଜର ସର୍ବନାଶ କରି ବସିଲେ ।" ୧୯. (ଅଲ୍ଲାହ୍ କହିବେ) "ସେମାନେ ତ ତୁମମାନଙ୍କର ସବୁ କଥାକୁ ଅସ୍ୱୀକାର କରିଦେଲେ । ତେଣୁ, ତୁମେମାନେ ଆଜି ଶାସ୍ତିକୁ ଅଟକାଇ ପାରିବନାହିଁ କିମ୍ବା କୌଣସି ସାହାଯ୍ୟ ପାଇବନାହିଁ । ତୁମମାନଙ୍କ ମଧ୍ୟରୁ ଯିଏ ଅନ୍ୟାୟ କରିଛି, ଆମ୍ଭେ ତାକୁ କଠୋର ଶାସ୍ତିର ମଜା ଚଖାଇବୁ ।

୨୦. ତୁମ ପୂର୍ବରୁ ଆମ୍ଭେ ଯେତେ ବାର୍ତ୍ତାବହ ପଠାଇଛୁ, ସେମାନେ ସମସ୍ତେ ଖାଦ୍ୟ ଖାଉଥିଲେ ଏବଂ ବଜାରରେ ଚଳପ୍ରଚଳ ହେଉଥିଲେ । ଆମ୍ଭେ ତୁମମାନଙ୍କ ମଧ୍ୟରୁ କିଛି ଲୋକଙ୍କୁ ଅନ୍ୟ କିଛି ଲୋକଙ୍କ ମାଧ୍ୟମରେ ପରୀକ୍ଷା କରିଥାଉ । ତୁମେମାନେ ଧୈର୍ଯ୍ୟ ଅବଲମ୍ବନ କରିବ କି ? ତୁମ ପ୍ରଭୁ ସବୁ ଦେଖୁଛନ୍ତି ।

୨୧. ଯେଉଁମାନେ ଆମ୍ଭ ସହିତ ସାକ୍ଷାତ କରିବେ ବୋଲି ଆଶା କରୁନାହାନ୍ତି ସେମାନେ କୁହନ୍ତି ଯେ ଆମ ପାଖକୁ କାହିଁକି ଦେବଦୂତ ଆସୁନାହାନ୍ତି ବା ଆମେ (ନିଜ ଆଖିରେ) ଈଶ୍ୱରଙ୍କୁ କାହିଁକି ଦେଖୁନାହୁଁ ? ଏମାନଙ୍କ ମନରେ ଭାରି ଗର୍ବ, ଯେଉଁଥିପାଇଁ ଏମାନେ ଅତି ଉଦ୍ଧତ ହୋଇ ଯାଇଛନ୍ତି । ୨୨. ଯେଉଁଦିନ ଏମାନେ ଦେବଦୂତମାନଙ୍କୁ ଦେଖିବେ ସେଦିନ ଅପରାଧୀମାନଙ୍କ ପାଇଁ ଏହା କୌଣସି ଆନନ୍ଦର କଥା ହେବନାହିଁ । ସେଦିନ ସେମାନେ ଚିତ୍କାର କରିବେ, "ପ୍ରଭୁ ! ରକ୍ଷା କର, ଏମାନଙ୍କୁ ଦୂରେଇ ରଖ ।" ୨୩. ଆମ୍ଭେ ସେମାନଙ୍କର ଅର୍ଜିତ କର୍ମଗୁଡ଼ିକୁ ଦେଖିବୁ ଏବଂ ସେଗୁଡ଼ିକୁ ଧୂଳି ପରି

ଉଡ଼ାଇ ଦେବୁ । ୨୪. ସେଦିନ ବୈକୁଣ୍ଠବାସୀମାନଙ୍କର ବାସସ୍ଥାନ ମଧ୍ୟ ଖୁବ୍ ଭଲ ଥିବ ଏବଂ ବିଶ୍ରାମକକ୍ଷ ମଧ୍ୟ । ୨୫. ଯେଉଁଦିନ ଆକାଶ ବାଦଲ ସହ ଫାଟିବ ଏବଂ ଦଳଦଳ କରି ଦେବଦୂତମାନଙ୍କୁ ଓହ୍ଲାଇ ଦିଆଯିବ, ୨୬. ସେଦିନ ପ୍ରକୃତ ରାଜତ୍ୱ ଦୟାମୟଙ୍କର ହେବ ଏବଂ ଏହି ଦିନଟି ମିଥ୍ୟାବିଶ୍ୱାସୀମାନଙ୍କ ପାଇଁ ଭାରି କଠିନ ଦିନ ହେବ । ୨୭. ସେଦିନ (ଅବଶୋଷରେ) ପ୍ରତ୍ୟେକ ପାପୀ ନିଜ ହାତକୁ କାମୁଡ଼ି ପକାଇବ ଏବଂ କହିବ, "କେତେ ଭଲ ହୋଇଥାଆନ୍ତା ଯଦି ମୁଁ ଈଶ୍ୱରଦୂତଙ୍କ ବାଟ ଧରିଥାଆନ୍ତି !" ୨୮. "ହାୟ ମୋର ଦୁର୍ଭାଗ୍ୟ ! ମୁଁ ଅମୁକ ଲୋକକୁ ନିଜର ବନ୍ଧୁ କରି ନଥାଆନ୍ତି କି ! ୨୯. ମୋ' ପାଖରେ (କୁରଆନର) ଉପଦେଶ ପହଁଚି ସାରିଥିଲା କିନ୍ତୁ ସେହି ଲୋକଟା ମୋତେ ବିଭ୍ରାନ୍ତ କରିଦେଲା ।" ଶଇତାନ ତ ମଣିଷକୁ ଠିକ୍ ସମୟରେ ଠକିଦିଏ । ୩୦. (ବିଚାରଦିନ) ରସୁଲ୍ କହିବେ,"ହେ ପ୍ରଭୁ ! ପ୍ରକୃତରେ ମୋ' ସମାଜର ଲୋକମାନେ କୁରଆନକୁ ପରିତ୍ୟାଗ କରି ଦେଇଥିଲେ ।"

୩୧. ଏହିପରି ଆମ୍ଭେ ପାପୀ ଲୋକମାନଙ୍କୁ ପ୍ରତ୍ୟେକ ବାର୍ତ୍ତାବହଙ୍କର ଶତ୍ରୁ କରିଥାଉ । ମାର୍ଗଦର୍ଶନ କରିବା ଏବଂ ସାହାଯ୍ୟ କରିବା ପାଇଁ ତୁମ ପ୍ରଭୁ ଯଥେଷ୍ଟ ।

୩୨. ନାସ୍ତିକମାନେ କହୁଛନ୍ତି, "ତାଙ୍କ ପାଖକୁ ସଂପୂର୍ଣ୍ଣ କୁରଆନ ଏକାଥରକେ କାହିଁକି ଆସିଲାନାହିଁ ?" (ହେ ରସୁଲ !) ଆମ୍ଭେ ଏହି କାରଣରୁ (ପର୍ଯ୍ୟାୟ କ୍ରମେ) ପଠାଇଲୁ ଯେ ଏହାଦ୍ୱାରା ଆମ୍ଭେ ତୁମର ମନୋବଳ ଦୃଢ଼ କରିବୁ । ସୁତରାଂ ଆମ୍ଭେ ଏହାକୁ ଅଳ୍ପଅଳ୍ପ କରି ପଠାଇଲୁ, ୩୩. ଏବଂ ଯେତେବେଳେ ସେମାନେ କୌଣସି ନୂଆ ପ୍ରଶ୍ନ ନେଇ ତୁମ ପାଖକୁ ଆସନ୍ତି, ଆମ୍ଭେ (କୁରଆନ ମାଧ୍ୟମରେ) ତୁମକୁ ତାହାର ସଠିକ୍ ଉତ୍ତର ବିସ୍ତାର ପୂର୍ବକ ଜଣାଇଦେଉ । ୩୪. ଯେଉଁ ଲୋକମାନଙ୍କୁ ମୁହଁ ଭାରରେ ନର୍କ ଆଡ଼କୁ ଘଉଡ଼ାଇ ନିଆଯିବ, ସେମାନେ ଅତି କଦର୍ଯ୍ୟ ଅବସ୍ଥାରେ ରହିବେ କାରଣ ସେମାନେ ପଥଭ୍ରଷ୍ଟ ।

୩୫. ଆମ୍ଭେ ମୁ'ସାଙ୍କୁ ଗ୍ରନ୍ଥ ଦେଇଥିଲୁ ଏବଂ ତାଙ୍କ ସହିତ ତାଙ୍କ ଭାଇ ହାରୁନଙ୍କୁ ତାଙ୍କର ସହକାରୀ ନିଯୁକ୍ତ କରିଥିଲୁ । ୩୬. ପୁଣି ଆମ୍ଭେ ସେମାନଙ୍କୁ କହିଲୁ, "ତୁମେ ଦୁହେଁ ସେମାନଙ୍କ ପାଖକୁ ଯାଅ ଯେଉଁମାନେ ଆମ୍ଭ ନିଦର୍ଶନଗୁଡ଼ିକୁ ଅସ୍ୱୀକାର କରିଛନ୍ତି ।" ଶେଷରେ ଆମ୍ଭେ ସେମାନଙ୍କୁ ଧ୍ୱଂସ କରିଦେଲୁ । ୩୭.

ଯେତେବେଳେ ନୂହଙ୍କ ସଂପ୍ରଦାୟ ବାର୍ତ୍ତାବହମାନଙ୍କୁ ପ୍ରତ୍ୟାଖ୍ୟାନ କଲେ, ଆମ୍ଭେ ସେମାନଙ୍କୁ ମଧ୍ୟ ଜଳମଗ୍ନ କରିଦେଲୁ ଏବଂ ସେମାନଙ୍କୁ ମାନବସମାଜ ପାଇଁ ଏକ ନିଦର୍ଶନ କରିଦେଲୁ । ପାପିଷ୍ଠମାନଙ୍କ ପାଇଁ ଆମ୍ଭେ ଯନ୍ତ୍ରଣାଦାୟକ ଶାସ୍ତି ପ୍ରସ୍ତୁତ କରି ରଖିଛୁ । ୩୮. ଆଦ୍ ଓ ସମୁଦ୍ ଏବଂ କୂଅ ନିକଟରେ ବାସ କରୁଥିବା ସଂପ୍ରଦାୟ ତଥା ସେମାନଙ୍କ ମଧ୍ୟବର୍ତ୍ତୀ ସମୟର ଅନେକ ବଂଶ ମଧ୍ୟ ଆମ୍ଭେ ଧ୍ୱଂସ କରିଦେଇଛୁ । ୩୯. ପ୍ରତ୍ୟେକ ସମାଜକୁ (ବୁଝାଇବା ପାଇଁ) ଆମ୍ଭେ ଅନେକ ଉଦାହରଣ ଦେଲୁ ଏବଂ ଶେଷରେ ସମସ୍ତଙ୍କୁ ଧ୍ୱଂସ କରିଦେଲୁ । ୪୦. ଏମାନେ ତ ସେହି ଗାଁ ମଧ୍ୟ ଦେଇ ଯାତାୟାତ କରିଛନ୍ତି ଯେଉଁଠି ବିନାଶକାରୀ ବର୍ଷା ହୋଇଥିଲା । କ'ଣ ସେମାନେ ଏହାର ଅବସ୍ଥା ଦେଖୁନାହାନ୍ତି ? ପ୍ରକୃତରେ ମୃତ୍ୟୁ ପରେ ପୁନର୍ଜୀବନ ପାଇବାରେ ସେମାନଙ୍କର ବିଶ୍ୱାସ ନାହିଁ ।

୪୧. ଏମାନେ ଯେତେବେଳେ ତୁମକୁ ଦେଖନ୍ତି, ବିଦ୍ରୂପ କରି କହନ୍ତି, "କଣ ଏହି ଲୋକଟିକୁ ଅଲ୍ଲାହ୍ ନିଜର ରସୁଲ କରି ପଠାଇଛନ୍ତି ? ୪୨. ଯଦି ଆମେ ଆମ ଭକ୍ତିରେ ଅଟଳ ରହି ନଥାଆନ୍ତୁ ତେବେ ଏହି ଲୋକ ଜଣକ ନିଶ୍ଚୟ ଆମକୁ ଆମ ଆରାଧ୍ୟମାନଙ୍କ ମାର୍ଗରୁ ବିଭ୍ରାନ୍ତ କରିଦିଅନ୍ତା ।" ଯେତେବେଳେ ସେମାନେ (ଅଲ୍ଲାହଙ୍କର) ଶାସ୍ତି ଦେଖିବେ, ଠିକ୍ ଜାଣିଯିବେ ଯେ କିଏ ବିଭ୍ରାନ୍ତ ହୋଇଥିଲା ।

୪୩. (ହେ ରସୁଲ !) କ'ଣ ତୁମେ ଏଭଳି ଲୋକକୁ ଦେଖିଛ ଯିଏ ନିଜର କାମନାକୁ ଈଶ୍ୱର ରୂପେ ଗ୍ରହଣ କରିନେଇଛି ? କ'ଣ ତୁମେ ସେହି ଲୋକର (ମାର୍ଗଦର୍ଶନର) ଦାୟିତ୍ୱ ନେଇପାରିବ ? ୪୪. କ'ଣ ତୁମେ ଭାବୁଛ ଯେ ଏମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ କିଛି ଶୁଣନ୍ତି ବା ବୁଝନ୍ତି ? ଏମାନେ ପଶୁତୁଲ୍ୟ (ଅର୍ଥାତ୍ ନା କିଛି ଶୁଣନ୍ତି ନା ବୁଝନ୍ତି) ବରଂ ସେମାନଙ୍କଠାରୁ ଅଧିକ ପଥହରା ।

୪୫. କ'ଣ ତୁମେ ଏହା ଲକ୍ଷ୍ୟ କରିନାହଁ ଯେ ତୁମ ପ୍ରଭୁ କିପରି ଛାୟାକୁ ବିସ୍ତାରିତ କରନ୍ତି ? ସେ ଚାହିଁଲେ ଏହାକୁ ସ୍ଥିର ରଖିପାରନ୍ତେ । ପୁଣି ଆମ୍ଭେ ସୂର୍ଯ୍ୟକୁ ଏହାର ସଂଚାଳକ କରିଦେଲୁ । ୪୬. ପୁଣି ଆମ୍ଭେ ଧୀରେଧୀରେ ତାକୁ ନିଜ ଆଡ଼କୁ ଫେରାଇ ନେଉ । ୪୭. ସେ ହିଁ ତୁମମାନଙ୍କ ପରଦା (ଅର୍ଥାତ୍ ଗୋପନୀୟତା) ପାଇଁ ରାତି ସୃଷ୍ଟି କଲେ, ବିଶ୍ରାମ ପାଇଁ ନିଦ୍ରା ଏବଂ ପୁନର୍ବାର ନିଦରୁ ଉଠିବା ପାଇଁ ଦିନ

ସୃଷ୍ଟି କଲେ । ୪୮. ସେ ତାଙ୍କ କରୁଣା (ଅର୍ଥାତ୍ ବର୍ଷା) ପୂର୍ବରୁ ଶୁଭସୂଚନା ସ୍ୱରୂପ ବାୟୁ ପ୍ରବାହିତ କରନ୍ତି । ଆମ୍ଭେହିଁ ଆକାଶରୁ ଶୁଦ୍ଧ ଜଳ ବର୍ଷା କରୁ । ୪୯. ଯାହାଦ୍ୱାରା ଆମ୍ଭେ ନିର୍ଜୀବ ଭୂଇଁରେ ପ୍ରାଣ ସଂଚାର କରୁ ଏବଂ ସେଥିରୁ ନିଜ ସୃଷ୍ଟିର ଅସଂଖ୍ୟ ମଣିଷ ଓ ଜୀବଜନ୍ତୁଙ୍କର ତୃଷା ନିବାରଣ କରୁ । ୫୦. ଆମ୍ଭେ ଏହାକୁ ସେମାନଙ୍କ ମଧ୍ୟରେ (ବିଭିନ୍ନ ରୂପରେ) ବିତରଣ କରୁ ଯେପରିକି ସେମାନେ ଶିକ୍ଷା ଲାଭ କରିବେ । ମାତ୍ର ଅଧିକାଂଶ ଲୋକ କୃତଘ୍ନ ହୋଇଯାଆନ୍ତି ।

୫୧. ଆମ୍ଭେ ଚାହିଁଲେ ସାବଧାନ କରିବା ପାଇଁ ପ୍ରତ୍ୟେକ ଗାଁକୁ ଜଣେ ଲେଖାଏଁ ବାର୍ତ୍ତାବହ ପଠାଇ ପାରନ୍ତୁ । ୫୨. ତେଣୁ, ତୁମେ ଅଧର୍ମୀମାନଙ୍କ କଥା ମାନନାହିଁ ଏବଂ ଏହି କୁରଆନ ଦ୍ୱାରା (ସତ୍ୟର ପ୍ରଚାର ପାଇଁ) ସେମାନଙ୍କ ସହିତ ସଂଘର୍ଷ କରୁଥାଅ – କଠିନ ସଂଘର୍ଷ ।

୫୩. ସେ ଦୁଇଟି ସାଗରକୁ ପରସ୍ପର ସହିତ ମିଶାଇ ଦେଇଛନ୍ତି । ଗୋଟିକର ଜଳ ସ୍ୱାଦିଷ୍ଟ ଓ ମଧୁର ଏବଂ ଅନ୍ୟଟିର ଜଳ ତିକ୍ତ ଓ ଲବଣାକ୍ତ ଏବଂ ଉଭୟଙ୍କ ମଧ୍ୟରେ ସେ ଏକ ଅଲଂଘ୍ୟ ପ୍ରାଚୀର ସୃଷ୍ଟି କରି ଦେଇଛନ୍ତି । ୫୪. ସେ ହିଁ ମାନବକୁ ଜଳରୁ ସୃଷ୍ଟି କଲେ ଏବଂ ତାକୁ ବଂଶଗତ ଓ ବୈବାହିକ ସଂବନ୍ଧରେ ବାନ୍ଧିଦେଲେ । ତୁମ ପ୍ରଭୁ ସବୁକିଛି କରିପାରନ୍ତି ।

୫୫. ଏମାନେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟମାନଙ୍କର ପୂଜା-ଅର୍ଚ୍ଚନା କରନ୍ତି ଯେଉଁମାନେ ସେମାନଙ୍କର କୌଣସି ଲାଭ କରିପାରନ୍ତି ନାହିଁ ବା କ୍ଷତି କରି ପାରନ୍ତିନାହିଁ । ନାସ୍ତିକ ବ୍ୟକ୍ତି ସବୁବେଳେ ତା'ପାଳନକର୍ତ୍ତାଙ୍କ ବିରୁଦ୍ଧରେ ଅଣ୍ଟା ଭିଡ଼ି ଠିଆ ହୋଇଥାଏ ।

୫୬. (ହେ ବାର୍ତ୍ତାବହ!) ଆମ୍ଭେ ତୁମକୁ (ପୁଣ୍ୟବାନ ଲୋକମାନଙ୍କୁ) ସୁସମାଚାର ଦେବାପାଇଁ ଏବଂ (ପାପୀମାନଙ୍କୁ) ସାବଧାନ କରିବାପାଇଁ ପଠାଇଛୁ । ୫୭. ସେମାନଙ୍କୁ କୁହ, "ମୁଁ ଏହି କାର୍ଯ୍ୟ ପାଇଁ ତୁମମାନଙ୍କଠାରୁ କୌଣସି ମୂଲ୍ୟ ମାଗୁନାହିଁ ମାତ୍ର କେବଳ ଏତିକି (ଚାହୁଁଛି ଯେ) ଯାହାର ଇଚ୍ଛା, ସେ ତା'ଈଶ୍ୱରଙ୍କର ବାଟ ଧରିନେଉ । ୫୮. ଭରସା ରଖ ସେହି ଚିରଜୀବୀ ସତ୍ତାଙ୍କ ଉପରେ ଯାହାଙ୍କର ମୃତ୍ୟୁ ନାହିଁ ଏବଂ ତାଙ୍କର ସ୍ତୁତିଗାନ ଓ ଗୁଣଗାନ କରୁଥାଅ । ସେ ତାଙ୍କ ଦାସମାନଙ୍କ

ପାପର ଖବର ରଖିବା ପାଇଁ ଯଥେଷ୍ଟ, ୫୯. ଯିଏ ପୃଥିବୀ ଓ ଆକାଶ ଏବଂ ସେଗୁଡ଼ିକ ମଧ୍ୟରେ ଯାହାକିଛି ଅଛି, ସେଗୁଡ଼ିକୁ ଛଅ ଦିନରେ ସୃଷ୍ଟି କଲେ । ତା'ପରେ ଦିବ୍ୟସିଂହାସନରେ ଅଧିଷ୍ଠିତ ହେଲେ । ସେ ପରମ ଦୟାଳୁ । କୌଣସି ଜ୍ଞାନୀ ବ୍ୟକ୍ତିକୁ ତାଙ୍କ ବିଷୟରେ ପଚାରି ବୁଝିନିଅ ।

୬୦. ଯେତେବେଳେ ସେମାନଙ୍କୁ କୁହାଯାଏ ଯେ "ଦୟାମୟଙ୍କୁ ଭୂମିଷ୍ଠ ପ୍ରଣାମ କର", ସେମାନେ କହନ୍ତି "ଦୟାମୟ କିଏ ? କ'ଣ ତୁମେ ଯାହାକୁ ପ୍ରଣାମ କରିବାକୁ କହିବ, ଆମେ ତାକୁ ପ୍ରଣାମ କରିବୁ ?" ଏହା ସେମାନଙ୍କର ଘୃଣାଭାବ ବୃଦ୍ଧି କରେ । [ପ୍ରଣାମ]

୬୧. ଅତ୍ୟନ୍ତ ମଂଗଳମୟ ସେହି ସତ୍ତା ଯିଏ ଆକାଶରେ ତାରକାମଣ୍ଡଳ ସୃଷ୍ଟି କଲେ ଏବଂ ସେଥିରେ ଏକ ପ୍ରଦୀପ (ଅର୍ଥାତ୍ ସୂର୍ଯ୍ୟ) ଏବଂ ଏକ ପ୍ରକାଶମାନ ଚନ୍ଦ୍ର ସୃଷ୍ଟି କଲେ । ୬୨. ସେ ହିଁ ଦିନ ଓ ରାତିକୁ ସୃଷ୍ଟି କରିଛନ୍ତି ଏବଂ ଉଭୟ ପରସ୍ପରକୁ ଅନୁସରଣ କରିଥାଆନ୍ତି । (କିନ୍ତୁ ଏସବୁ କଥା) ସେହି ବ୍ୟକ୍ତି ପାଇଁ (ଲାଭକାରୀ) ଯିଏ ଶିକ୍ଷା ଗ୍ରହଣ କରିବାକୁ ଏବଂ କୃତଜ୍ଞ ହେବାକୁ ଚାହେଁ ।

୬୩. ଦୟାମୟଙ୍କ ଭକ୍ତ ସେଇମାନେ, ଯେଉଁମାନେ ବିନମ୍ର ହୋଇ ଧରାପୃଷ୍ଠରେ ଚାଲନ୍ତି ଏବଂ ଯେତେବେଳେ ନିର୍ବୋଧମାନେ ଏମାନଙ୍କୁ କୌଣସି (ମୂର୍ଖତାପୂର୍ଣ୍ଣ) କଥା କହନ୍ତି, ଏମାନେ ଭଦ୍ର ଭାବରେ ଏହାର ଉତ୍ତର ଦିଅନ୍ତି । ୬୪. ସେମାନେ ସେମାନଙ୍କ ପ୍ରଭୁଙ୍କ ସମ୍ମୁଖରେ ନମାଜରେ ଛିଡ଼ା ହୋଇ ଏବଂ ପ୍ରଣାମ କରି ରାତି ବିତାଇ ଦିଅନ୍ତି । ୬୫. ସେମାନେ ପ୍ରାର୍ଥନା କରନ୍ତି, "ହେ ପ୍ରଭୁ ! ଆମକୁ ନର୍କଦଣ୍ଡରୁ ଦୂରେଇ ରଖ । ବାସ୍ତବରେ ଏହାର ଯନ୍ତ୍ରଣା ଅତି ଭୟଙ୍କର, ୬୬. ଏବଂ ଏହା ରହିବା ଏବଂ ବାସ କରିବା ପାଇଁ ଭାରି କଦର୍ଯ୍ୟ ସ୍ଥାନ ।" ୬୭. ସେମାନେ ଖର୍ଚ୍ଚ କଲାବେଳେ ବଦ୍‌ଖର୍ଚ୍ଚ କରନ୍ତି ନାହିଁ କିମ୍ବା କୃପଣତା ମଧ୍ୟ କରନ୍ତି ନାହିଁ ବରଂ ମଧ୍ୟମ ମାର୍ଗ ଅବଲମ୍ବନ କରନ୍ତି । ୬୮. ସେମାନେ ଅଲ୍ଲାହଙ୍କ ସହିତ ଅନ୍ୟ କୌଣସି କଳ୍ପିତ ଉପାସ୍ୟକୁ ଡାକନ୍ତିନାହିଁ ଏବଂ ଅଲ୍ଲାଙ୍କ ଦ୍ୱାରା ନିଷିଦ୍ଧ କରା ଯାଇଥିବା କୌଣସି ଜୀବକୁ ଅନଧିକାର ହତ୍ୟା କରନ୍ତିନାହିଁ କିମ୍ବା ବ୍ୟଭିଚାର କରନ୍ତିନାହିଁ । ଯିଏ ଏଭଳି କର୍ମ କରିବ, ତାକୁ ତା' ପାପର ପରିଣାମ ଭୋଗିବାକୁ ପଡ଼ିବ । ୬୯. ବିଚାର ଦିନ

ତାକୁ ଦ୍ୱିଗୁଣ ଦଣ୍ଡ ଭୋଗିବାକୁ ହେବ ଏବଂ ସେ ଲାଂଛିତ ଅବସ୍ଥାରେ ପଡ଼ିରହି ଚିରଦିନ ନର୍କଦଣ୍ଡ ଭୋଗିବ, ୭୦. କିନ୍ତୁ ଯିଏ ପଶ୍ଚାତାପ କରେ, (ଅଲ୍ଲାହ୍ ଓ ତାଙ୍କ ବାର୍ତ୍ତାବହଙ୍କ ପ୍ରତି) ବିଶ୍ୱାସ ରଖେ ଏବଂ ଭଲ କର୍ମ କରୁଥାଏ, ଏଭଳି ଲୋକମାନଙ୍କର ପାପକୁ ଅଲ୍ଲାହ୍ ପୁଣ୍ୟରେ ବଦଳିଦେବେ । ସେ ଅତ୍ୟନ୍ତ କ୍ଷମାଶୀଳ ଏବଂ ପରମ ଦୟାଳୁ । ୭୧. ଯିଏ ଅନୁତପ୍ତ ହୁଏ ଏବଂ ଭଲ କର୍ମ କରେ, ସେ ଯଥାର୍ଥରେ ଅଲ୍ଲାହଙ୍କ ପାଖକୁ ଫେରିଥାଏ ।

୭୨. ସେମାନେ ମଧ୍ୟ (ଦୟାମୟଙ୍କ ପ୍ରକୃତ ଭକ୍ତ) ଯେଉଁମାନେ କୌଣସି ଅନୁଚିତ କାର୍ଯ୍ୟରେ ମିଶନ୍ତିନାହିଁ ଏବଂ ଯଦି କୌଣସି ଅନୁଚିତ କାର୍ଯ୍ୟକଳାପ ହେଉଥିବାର ଦେଖନ୍ତି ସେଠାରୁ ଭଦ୍ର ଭାବରେ ଚାଲିଯାଆନ୍ତି । ୭୩. ଯଦି ସେମାନଙ୍କୁ ସେମାନଙ୍କ ପାଳନକର୍ତ୍ତାଙ୍କ ବାଣୀ ଦ୍ୱାରା ଉପଦେଶ ଦିଆଯାଏ, ସେମାନେ ସେଥିପ୍ରତି ଅନ୍ଧ ଓ ବଧିର ହୋଇଯାଆନ୍ତି ନାହିଁ (ବରଂ ଧ୍ୟାନ ଦେଇ ଶୁଣନ୍ତି), ୭୪. ଏବଂ ପ୍ରାର୍ଥନା କରନ୍ତି, "ହେ ପାଳନକର୍ତ୍ତା ! ଆମ ପତ୍ନୀ ଓ ସନ୍ତାନମାନଙ୍କ ଆଚରଣ ଦ୍ୱାରା ଆମ ଆଖିକୁ ଶୀତଳ କର (ଅର୍ଥାତ୍ ଆମକୁ ଶାନ୍ତି ପ୍ରଦାନ କର) ଏବଂ ଆମକୁ ସଦାଚାରୀମାନଙ୍କ ପାଇଁ ଆଦର୍ଶ କରିଦିଅ ।" ୭୫. ଏହି ଲୋକମାନଙ୍କୁ ସେମାନଙ୍କ ସହିଷ୍ଣୁତାର ପୁରସ୍କାର ସ୍ୱରୂପ ବୈକୁଣ୍ଠରେ ଉଚ୍ଚଉଚ୍ଚ ପ୍ରାସାଦ ମିଳିବ ଏବଂ ଶୁଭେଚ୍ଛା ଜଣାଇ ସେମାନଙ୍କୁ ସ୍ୱାଗତ କରାଯିବ । ୭୬. ସେମାନେ ସେଥିରେ ସର୍ବଦା ରହିବେ । ଏହା ରହିବା ଓ ବାସ କରିବା ପାଇଁ ଏକ ଖୁବ୍ ଭଲ ସ୍ଥାନ ।

୭୭. କହିଦିଅ, "ଯଦି ତୁମେମାନେ ତାଙ୍କୁ ପ୍ରାର୍ଥନା ନକର, ତେବେ ଈଶ୍ୱର ତୁମମାନଙ୍କୁ ଖାତିର କରନ୍ତିନାହିଁ । ତୁମେମାନେ ତ ପ୍ରତ୍ୟାଖ୍ୟାନ କରି ସାରିଛ, ଏବେ ଶୀଘ୍ର ଶାସ୍ତି ଭୋଗିବ ।"

## ଅଧ୍ୟାୟ ୨୬, ଅଶ୍ ଶୁ'ଅରା

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ତା - ସୀମ୍ – ମୀମ୍ । ୨. ଏହା ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରୁଥିବା ଗ୍ରନ୍ଥର ବାଣୀ ।

୩. (ହେ ବାର୍ତ୍ତାବହ!) ସେମାନେ ମାନୁନାହାନ୍ତି ବୋଲି ବୋଧହୁଏ (ଦୁଃଖରେ) ତୁମେ ନିଜର ଜୀବନ ହାରିଦେବ! ୪. ଆମ୍ଭେ ଇଛା କଲେ ସେମାନଙ୍କ ପାଇଁ ସ୍ୱର୍ଗରୁ ଏଭଳି ଏକ ନିଦର୍ଶନ ପଠାଇ ଦିଅନ୍ତୁ ଯାହାକୁ ଦେଖିବା ପରେ ସେମାନଙ୍କର ମଥା (ସର୍ବଦା) ନଇଁ ରହନ୍ତା । ୫. ଦୟାମୟଙ୍କ ପାଖରୁ ସେମାନଙ୍କ ପାଖକୁ ଯାହା ନୂଆ ଉପଦେଶ ଆସେ, ସେମାନେ ତାହାକୁ ଅସ୍ୱୀକାର କରିଦିଅନ୍ତି । ୬. ସେମାନେ (ସତ୍ୟକୁ) ଅସ୍ୱୀକାର କରି ସାରିଛନ୍ତି । ଯାହାକୁ ସେମାନେ ବିଦ୍ରୂପ କରୁଛନ୍ତି, ଶୀଘ୍ର ସେମାନେ ତାହାର ବାସ୍ତବତା ଜାଣିଯିବେ ।

୭. କ'ଣ ସେମାନେ ପୃଥିବୀକୁ ଲକ୍ଷ୍ୟ କରୁନାହାନ୍ତି ଯେ ଆମ୍ଭେ କିପରି ସେଥିରେ କିପରି ବିଭିନ୍ନ ପ୍ରକାର ଭଲଭଲ ବୃକ୍ଷଲତା ସୃଷ୍ଟି କରିଛୁ? ୮. ଏଥିରେ ଏକ (ସ୍ପଷ୍ଟ) ସଂକେତ ଅଛି ମାତ୍ର ଅଧିକାଂଶ ଲୋକ ବିଶ୍ୱାସ କରନ୍ତିନାହିଁ । ୯. ବାସ୍ତବରେ ତୁମ ପ୍ରଭୁ ପ୍ରବଳ ପରାକ୍ରମୀ ଓ ପରମ ଦୟାଳୁ ।

୧୦. (ସେ ସମୟର କଥା ଶୁଣ) ଯେତେବେଳେ ତୁମ ପ୍ରଭୁ ମୁ'ସାଙ୍କୁ କହିଥିଲେ, "ତୁମେ ସେହି ଦୁଷ୍ଟମାନଙ୍କ ପାଖକୁ ଯାଅ, ୧୧. ସେହି ଫିରଔନ୍‌ର ସଂପ୍ରଦାୟ ପାଖକୁ । କ'ଣ ସେମାନଙ୍କୁ ଅଲ୍ଲାହଙ୍କର ଭୟ ନାହିଁ?" ୧୨. ମୁ'ସା ଉତ୍ତର ଦେଲେ, "ହେ ପ୍ରଭୁ! ମୋତେ ଭୟ ଲାଗୁଛି ଯେ କାଳେ ସେମାନେ ମୋତେ ମିଥ୍ୟାବାଦୀ ବୋଲି କହିବେ । ୧୩. ମୋତେ କୁଣ୍ଠାବୋଧ ହେଉଛି ଏବଂ ମୋ'ର ପାଟି (ଭଲରୂପେ) ଫିଟୁନାହିଁ । ତେଣୁ ତୁମେ ହାରୁନଙ୍କୁ ମଧ୍ୟ ଆଦିଷ୍ଟବାଣୀ କର । ୧୪. (ଏହା ବ୍ୟତୀତ) ମୋ' ବିରୁଦ୍ଧରେ ସେମାନଙ୍କର ଏକ (ନରହତ୍ୟା) ଅପରାଧର ଅଭିଯୋଗ ମଧ୍ୟ ଅଛି । ତେଣୁ ମୋତେ ଭୟ ଲାଗୁଛି ଯେ ହୁଏତ ସେମାନେ ମୋତେ ହତ୍ୟା କରିଦେବେ ।" ୧୫. ଅଲ୍ଲାହ୍ କହିଲେ, "ଏହା କଦାପି ହେବନାହିଁ । ତୁମେ ଦୁହେଁ ମୋ' ଠାରୁ କେତୋଟି ଅଲୌକିକ ନିଦର୍ଶନ ନେଇ

ଯାଅ । ଆମ୍ଭେ ତୁମମାନଙ୍କ ସହିତ ରହି ସବୁ ଶୁଣୁଥିବୁ । ୧୬. ଫିରଔନ୍ ପାଖକୁ ଯାଅ ଏବଂ ତାକୁ କୁହ, "ଆମେମାନେ ଜଗତପାଳକଙ୍କ ବାର୍ତ୍ତାବହ । ୧୭. ଏବେ ତୁମେ ଇସ୍ରାଇଲଙ୍କ ବଂଶଧରମାନଙ୍କୁ ଆମ ସହିତ ପଠାଇଦିଅ ।"

୧୮. (ଫିର୍ଔନ ମୂ'ସାଙ୍କୁ) କହିଲା, "କ'ଣ ଆମ୍ଭେ ତୋତେ ପିଲାଟି ବେଳୁ ପାଖରେ ରଖି ଲାଳନପାଳନ କରିନାହୁଁ? ତୁ ତୋ' ଜୀବନର ବହୁ ବର୍ଷ ଆମମାନଙ୍କ ସହିତ ବିତାଇଛୁ । ୧୯. ତା'ପରେ ତୁ ଯାହା କରିବା କଥା କଲୁ । ତୁ ଜଣେ କୃତଘ୍ନ ଲୋକ ।" ୨୦. ମୂ'ସା ଉତ୍ତର ଦେଲେ, "ମୁଁ ସେତେବେଳେ ଭୁଲ୍‌ବଶତଃ ଏହା କରି ଦେଇଥିଲି । ୨୧. ପୁଣି ତୁମମାନଙ୍କ ଭୟରେ ମୁଁ ତୁମମାନଙ୍କୁ ଛାଡ଼ି ପଳାଇଗଲି । ତା'ପରେ ମୋ' ପ୍ରଭୁ ମୋତେ ତତ୍ତ୍ୱଜ୍ଞାନ ଦେଲେ ଏବଂ ମୋତେ ଜଣେ ବାର୍ତ୍ତାବହ ରୂପେ ନିଯୁକ୍ତ କଲେ । ୨୨. କ'ଣ ମୋ' ପ୍ରତି ତୁମେ ଏହି ଉପକାର କଲ ଯେ ଇସ୍ରାଇଲଙ୍କ ବଂଶଜମାନଙ୍କୁ କ୍ରୀତଦାସ କରି ରଖିଲ ?" ୨୩. ଫିରଔନ୍ ପଚାରିଲା, "ଆଚ୍ଛା, ଏହି ଜଗତପାଳକ ଜଣକ କିଏ ?" ୨୪. ମୂ'ସା ଉତ୍ତର ଦେଲେ, "ଯଦି ତୁମେମାନେ ବିଶ୍ୱାସ କର, ତେବେ (ଜାଣିରଖ) ସେ ପୃଥିବୀ ଓ ଆକାଶ ଏବଂ ସେଗୁଡ଼ିକରେ ଥିବା ସକଳ ସୃଷ୍ଟିର ମାଲିକ ।" ୨୫. ଫିରଔନ୍ ଉପସ୍ଥିତ ଲୋକମାନଙ୍କୁ (ସମ୍ବୋଧନ କରି) କହିଲା, "କ'ଣ ତୁମେମାନେ ଶୁଣୁଛ ?" ୨୬. ମୂ'ସା କହିଲେ, "ସେ ତୁମର ମଧ୍ୟ ଈଶ୍ୱର ଏବଂ ତୁମ ପୂର୍ବପୁରୁଷମାନଙ୍କର ମଧ୍ୟ ଈଶ୍ୱର ।" ୨୭. ଫିରଔନ୍ କହିଲା, "(ଶୁଣୁଛ !) ତୁମମାନଙ୍କର ଏହି ରସୁଲ୍ ଯାହାକୁ ତୁମମାନଙ୍କ ପାଖକୁ ପଠାଯାଇଛି, ପ୍ରକୃତରେ ଜଣେ ପାଗଳ ।"

୨୮. ମୂ'ସା ପୁଣି କହିଲେ, "ପୂର୍ବ ଓ ପଶ୍ଚିମ ଏବଂ ଏହା ମଧ୍ୟରେ ଯାହାକିଛି ଅଛି, ସେସବୁର ସେ ମାଲିକ । ଯଦି ତୁମମାନଙ୍କର ବୁଦ୍ଧି ଥାଏ (ତେବେ ବିଚାର କର) ।" ୨୯. ଫିରଔନ୍ କହିଲା "ଯଦି ତୁ ମୋ' ବ୍ୟତୀତ ଅନ୍ୟ କାହାରିକୁ ଈଶ୍ୱର ମାନିବୁ, ତେବେ ମୁଁ ତୋତେ ନିଶ୍ଚୟ କାରାଗାରରେ ବନ୍ଦୀ କରି ରଖିବି ।" ୩୦. ମୂ'ସା କହିଲେ, "ଯଦି ମୁଁ ତୁମକୁ ଏହାର ସ୍ପଷ୍ଟ ପ୍ରମାଣ ଦିଏ ?" ୩୧. ଫିରଔନ୍ କହିଲା, "ଯଦି ତୁ ସତ୍ୟବାଦୀ ତେବେ ପ୍ରମାଣ

ଦେ ।" ୩୨. ଏହାପରେ ମୁ'ସା ତାଙ୍କର ଲାଠି ତଳେ ପକାଇଦେଲେ ଏବଂ ଚାହୁଁଚାହୁଁ ଏହା ପରିଷ୍କାର ରୂପେ ଏକ ସର୍ପରେ ପରିଣତ ହୋଇଗଲା । ୩୩. ପୁଣି ସେ ନିଜ ହାତ ବାହାରକୁ କାଢ଼ିଲେ ଏବଂ ତାହା ଦେଖଣାହାରୀଙ୍କୁ ଶୁଭ୍ର ଦେଖାଗଲା । ୩୪. ଫିରଔନ୍ ନିଜର ପାରିଷଦବର୍ଗଙ୍କୁ କହିଲା, "ଏହି ଲୋକ ଜଣକ ଅବଶ୍ୟ ଜଣେ ଦକ୍ଷ ଯାଦୁକର । ୩୫. ସେ ଚାହୁଁଛି ଯେ ନିଜର ଯାଦୁଶକ୍ତି ବଳରେ ତୁମମାନଙ୍କୁ ତୁମ ଦେଶରୁ ତଡ଼ିଦେବ । ତୁମମାନଙ୍କର ମତାମତ କ'ଣ ? " ୩୬. ସେମାନେ ଉତ୍ତର ଦେଲେ, "ମୁ'ସା ଓ ତାଙ୍କ ଭାଇଙ୍କ ବିଷୟ କିଛି ସମୟ ପାଇଁ ସ୍ଥଗିତ କରନ୍ତୁ । (ପ୍ରଥମେ) ସବୁ ସହରଗୁଡ଼ିକୁ ଦୂତ ପଠାନ୍ତୁ, ୩୭. ଯେପରିକି ସେମାନେ ସବୁ କୁଶଳୀ ଯାଦୁକରମାନଙ୍କୁ ଆପଣଙ୍କ ପାଖରେ ଆଣି ହାଜର କରିବେ ।" ୩୮. ସୁତରାଂ ଦିନେ ନିର୍ଦ୍ଧାରିତ ସମୟରେ ଯାଦୁକରମାନଙ୍କୁ ଏକତ୍ରିତ କରାଗଲା, ୩୯. ଏବଂ ଲୋକମାନଙ୍କୁ କୁହାଗଲା, "ତୁମେ ସମସ୍ତେ ମଧ୍ୟ ଏକାଠି ହୁଅ ।" ୪୦. ଯଦି ଯାଦୁକରମାନେ ବିଜୟୀ ହୁଅନ୍ତି, ତେବେ ଆମେ ସେମାନଙ୍କର ପନ୍ଥା ଗ୍ରହଣ କରିନେବା ।"

୪୧. ଯେତେବେଳେ ଯାଦୁକରମାନେ ପହଁଚିଲେ, ସେମାନେ ଫିରଔନ୍‌କୁ ପଚାରିଲେ, "ଯଦି ଆମେ ବିଜୟୀ ହେଉ ତେବେ କ'ଣ ଆମକୁ କିଛି ପୁରସ୍କାର ମିଳିବ ?" ୪୨. ସେ ଉତ୍ତର ଦେଲା, "ନିଶ୍ଚୟ ମିଳିବ ଏବଂ ତୁମେମାନେ ମୋ'ର ବିଶ୍ୱସ୍ତ ପାରିଷଦ ମଧ୍ୟ ହେବ ।" ୪୩. (ନିର୍ଦ୍ଧାରିତ ଦିନ ସମସ୍ତେ ଏକାଠି ହେଲା ପରେ) ମୁ'ସା କହିଲେ, "କ'ଣ ପକାଇବାର ଅଛି, ଏବେ ପକାଅ ।" ୪୪. ତେଣୁ, ଯାଦୁକରମାନେ ସେମାନଙ୍କର ଲାଠି ଓ ଦଉଡ଼ି ତଳେ ପକାଇଦେଲେ ଏବଂ କହିଲେ "ଫିରଔନ୍‌ଙ୍କ ଗାରିମାର ରାଣ ! ଆମେମାନେ ନିଶ୍ଚୟ ବିଜୟୀ ହେବୁ । " ୪୫. ତା'ପରେ ମୁ'ସା ତାଙ୍କର ଲାଠି ପକାଇଲେ ଏବଂ ଦେଖୁଦେଖୁ ଏହା (ସାପ ହୋଇ) ସେମାନଙ୍କ ମାୟାର କୃତିଗୁଡ଼ିକୁ ଗିଳିବାକୁ ଆରମ୍ଭ କଲା । ୪୬. (ଏହା ଦେଖି) ଯାଦୁକରମାନେ ତତ୍‌କ୍ଷଣାତ୍ (ଅଲ୍ଲାହଙ୍କୁ) ସାଷ୍ଟାଙ୍ଗ ପ୍ରଣାମ କଲେ, ୪୭. ଏବଂ କହିଲେ, "ଆମେମାନେ ଜଗତପାଳକଙ୍କୁ (ଈଶ୍ୱର ରୂପେ) ମାନିନେଲୁ ।" ୪୮. ଯିଏ ମୁ'ସା ଓ ହାରୁନଙ୍କର ଈଶ୍ୱର ।"

୪୯. ଫିରଔନ୍ (ରାଗିଯାଇ) କହିଲା, "ମୋ' ଅନୁମତି ବିନା ତୁମେମାନେ ତାକୁ ମାନିନେଲ? ସେ ନିଶ୍ଚୟ ତୁମମାନଙ୍କର ଗୁରୁ ଯିଏ ତୁମମାନଙ୍କୁ ଯାଦୁବିଦ୍ୟା ଶିଖାଇଛି। ଏବେ ଦେଖିବ କିପରି ମୁଁ ତୁମମାନଙ୍କର ଗୋଟିଏ ପଟର ହାତ ଓ ଅନ୍ୟ ପଟର ଗୋଡ଼ କାଟିବି ଏବଂ ତୁମ ସମସ୍ତଙ୍କୁ ଶୂଳିରେ ବସାଇବି।" ୫୦. ସେମାନେ କହିଲେ, "କିଛି ଆପତ୍ତି ନାହିଁ। ଆମେମାନେ ଆମ ପ୍ରଭୁଙ୍କ ପାଖକୁ ଫେରିଯିବୁ। ୫୧. ଆମେ ଆଶା କରୁଛୁ ଯେ ଆମ ପାଳନକର୍ତ୍ତା ଆମ ଦୋଷ କ୍ଷମା କରିଦେବେ କାରଣ ଆମେମାନେ ସର୍ବପ୍ରଥମେ (ତାଙ୍କଠାରେ) ଅସ୍ଥା ରଖିଲୁ।"

୫୨. ଆମ୍ଭେ ମୁ'ସାଙ୍କୁ ଆଦିଷ୍ଟବାଣୀ କଲୁ, "ମୋ' ଭକ୍ତମାନଙ୍କୁ ନେଇ ରାତାରାତି ବାହାରିଯାଅ। ସେମାନେ ନିଶ୍ଚୟ ତୁମମାନଙ୍କର ପିଛା କରିବେ।" ୫୩. ଏହାପରେ ଫିର୍ଔନ ପ୍ରତ୍ୟେକ ସହରକୁ ଦୂତ ପଠାଇଲା। ୫୪. (ଏବଂ ଘୋଷଣା କଲା ଯେ) "ଏମାନେ ମାତ୍ର କେଇଜଣ ଲୋକ, ୫୫. ଏବଂ ଏମାନେ ଆମ୍ଭକୁ କ୍ରୋଧାନ୍ୱିତ କରିଛନ୍ତି। ୫୬. ଆମେ ନିଜର ଦଳବଳ ସହିତ (ସର୍ବଦା) ସତର୍କ ରହିଛୁ।"

୫୭. ପୁଣି ଆମ୍ଭେ ସେମାନଙ୍କୁ ସେମାନଙ୍କ ବଗିଚା ଓ ଝରଣାମାନଙ୍କରୁ ବଂଚିତ କରିଦେଲୁ, ୫୮. ଏବଂ ସେମାନଙ୍କର ଧନସଂପତ୍ତି ଏବଂ ସୁନ୍ଦର ଘରଗୁଡ଼ିକରୁ ମଧ୍ୟ। ୫୯. ଏହିପରି ହେଲା ଏବଂ ଆମ୍ଭେ ଇସ୍ରାଇଲଙ୍କ ବଂଶଧରମାନଙ୍କୁ ଏଗୁଡ଼ିକର ଉତ୍ତରାଧିକାରୀ କରିଦେଲୁ।

୬୦. ସୁତରାଂ ସକାଳୁସକାଳୁ ସେମାନେ (ଅର୍ଥାତ୍ ଫିରଔନର ଦଳବଳ) ଏମାନଙ୍କର ପିଛା କରିବାକୁ ବାହାରିପଡ଼ିଲେ। ୬୧. ଯେତେବେଳେ ଉଭୟ ଦଳ ପରସ୍ପରକୁ ଦେଖିଲେ, ମୁ'ସାଙ୍କ ଅନୁଗତମାନେ କହିଲେ, "ଏବେ ଆମେ ଧରା ପଡ଼ିଗଲୁ।" ୬୨. ମୁ'ସା କହିଲେ, "କଦାପି ନୁହେଁ। ମୋ' ପ୍ରଭୁ ମୋ' ସହିତ ଅଛନ୍ତି। ସେ ନିଶ୍ଚୟ ମୋ'ର ମାର୍ଗଦର୍ଶନ କରିବେ।" ୬୩. ପୁଣି ଆମ୍ଭେ ମୁ'ସାଙ୍କୁ ଆଦିଷ୍ଟବାଣୀ କଲୁ ଯେ ନିଜ ଲାଠି ଦ୍ୱାରା ସମୁଦ୍ରକୁ ପ୍ରହାର କର। ଏହାଫଳରେ ସମୁଦ୍ର ଦୁଇଭାଗ ହୋଇଗଲା ଏବଂ ପ୍ରତ୍ୟେକ ଭାଗ ଗୋଟିଏ ଲେଖାଏଁ ବିରାଟ ପାହାଡ଼ ସଦୃଶ ହୋଇଗଲା। ୬୪. ଆମ୍ଭେ ଅନ୍ୟ ଦଳଟିକୁ ମଧ୍ୟ ତା' ପାଖକୁ

ନେଇଆସିଲୁ, ୬୫. ଏବଂ ମୁ'ସା ଓ ତାଙ୍କର ସବୁ ସାଥୀମାନଙ୍କୁ ଆମେ ରକ୍ଷା କଲୁ, ୬୬. କିନ୍ତୁ ଅନ୍ୟମାନଙ୍କୁ ଜଳମଗ୍ନ କରିଦେଲୁ ।

୬୭. ବାସ୍ତବରେ ଏହି ଘଟଣାରେ ଏକ ସଂକେତ ଅଛି କିନ୍ତୁ ଏମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ବିଶ୍ୱାସ କରନ୍ତିନାହିଁ । ୬୮. ତୁମ ପାଳନକର୍ତ୍ତା ପ୍ରବଳ ପରାକ୍ରମୀ ଏବଂ ପରମ ଦୟାଳୁ ।

୬୯. ସେମାନଙ୍କୁ ଇବ୍ରାହିମଙ୍କ କଥା ପଢ଼ି ଶୁଣାଅ । ୭୦. ଯେତେବେଳେ ସେ ତାଙ୍କ ପିତାଙ୍କୁ ଏବଂ ତାଙ୍କ ସଂପ୍ରଦାୟକୁ ପଚାରିଲେ, "ତୁମେମାନେ କାହାର ଉପାସନା କରୁଛ ?" ୭୧. ସେମାନେ ଉତ୍ତର ଦେଲେ, "ଆମେ ପ୍ରତିମାପୂଜା କରୁ ଏବଂ (ସର୍ବଦା) ସେମାନଙ୍କ ସେବାରେ ଲାଗିଥାଉ ।" ୭୨. (ଇବ୍ରାହିମ) ପଚାରିଲେ, "ଯେତେବେଳେ ତୁମେମାନେ ଡାକ, କ'ଣ ସେମାନେ ତୁମମାନଙ୍କର ଡାକ ଶୁଣନ୍ତି ? ୭୩. ବା ତୁମମାନଙ୍କର କିଛି ଉପକାର ବା ଅନିଷ୍ଟ କରିପାରନ୍ତି ? ୭୪. ସେମାନେ ଉତ୍ତର ଦେଲେ, "ନା, କିନ୍ତୁ ଆମେ ଆମ ପୂର୍ବପୁରୁଷମାନଙ୍କୁ ଏହିପରି କରୁଥିବାର ଦେଖିଆସିଛୁ ।" ୭୫. (ଇବ୍ରାହିମ୍) କହିଲେ, "ତୁମେମାନେ ଯେଉଁମାନଙ୍କର ପୂଜା କରୁଛ, କ'ଣ ସେମାନଙ୍କ ବିଷୟରେ କେବେ ଚିନ୍ତା କରିଛ ? ୭୬. ତୁମେମାନେ ମଧ୍ୟ ତାହାହିଁ କରୁଛ ଯାହା ତୁମ ପୂର୍ବପୁରୁଷମାନେ କରୁଥିଲେ । ୭୭. ସେମାନେ ମୋର ଶତ୍ରୁ, ମାତ୍ର ଜଗତପାଳକ (ମୋର ମିତ୍ର) । ୭୮. ସେ ହିଁ ମୋତେ ସୃଷ୍ଟି କରିଛନ୍ତି ଏବଂ ସେ ହିଁ ମୋ'ର ପଥପ୍ରଦର୍ଶନ କରନ୍ତି, ୭୯. ସେ ହିଁ ମୋତେ ଖାଇବା ପିଇବାକୁ ଦିଅନ୍ତି, ୮୦. ଏବଂ ଯେତେବେଳେ ମୁଁ ଅସୁସ୍ଥ ହୁଏ, ସେ ହିଁ ମୋତେ ଆରୋଗ୍ୟ କରିଥାଆନ୍ତି । ୮୧. (ଦିନେ) ସେ ମୋତେ ମୃତ୍ୟୁ ଦେବେ ଏବଂ ପୁଣି ଥରେ ଜୀବିତ ମଧ୍ୟ କରିବେ, ୮୨. ଏବଂ ତାଙ୍କଠାରେ ମୁଁ ଆଶା ରଖିଛି ଯେ ବିଚାର ଦିନ ସେ ମୋ' ଦୋଷ କ୍ଷମା କରିଦେବେ । ୮୩. ହେ ମୋ' ପାଳନକର୍ତ୍ତା ! ମୋତେ ତତ୍ତ୍ୱଜ୍ଞାନ ପ୍ରଦାନ କର ଏବଂ ମୋତେ ପୁଣ୍ୟବାନ ଲୋକମାନଙ୍କ ମଧ୍ୟରେ ରଖ, ୮୪. ଏବଂ ଆଗାମୀ ବଂଶଧରମାନଙ୍କ ମଧ୍ୟରେ ମୋ'ର ସୁନାମ ବଜାଏ ରଖ । ୮୫. ମୋତେ ସୁଖଦାୟକ ବୈକୁଣ୍ଠ ଉଦ୍ୟାନର ଅଧିକାରୀ କର, ୮୬. ଏବଂ ମୋ' ପିତାଙ୍କୁ କ୍ଷମା କରିଦିଅ । ସେ ପଥଭ୍ରଷ୍ଟ ହୋଇ

ଯାଇଛନ୍ତି । ୮୭. ପୁନର୍ଜୀବନ ପାଇବା ଦିନ ମୋତେ ଅପମାନିତ କରନାହିଁ ।" ୮୮. ଯେଉଁଦିନ, ନା ଧନସଂପତ୍ତି କାମରେ ଆସିବ ନା ସନ୍ତାନସନ୍ତତି, ୮୯. ସେଦିନ କେବଳ ସେହି ମୁକ୍ତି ପାଇବ, ଯିଏ ଶୁଦ୍ଧ ମନ ନେଇ (ପ୍ରଭୁଙ୍କ ଦରବାରରେ) ଉପସ୍ଥିତ ହେବ ।

୯୦. (ସେଦିନ) ବୈକୁଣ୍ଠକୁ ସଦାଚାରୀମାନଙ୍କ ପାଖକୁ ଅଣାଯିବ, ୯୧. ଏବଂ ନର୍କକୁ ଭ୍ରଷ୍ଟାଚାରୀମାନଙ୍କ ସମ୍ମୁଖରେ ପ୍ରକଟ କରି ଦିଆଯିବ । ୯୨. ସେମାନଙ୍କୁ ପ୍ରଶ୍ନ କରାଯିବ, "ସେମାନେ ଏବେ କାହାନ୍ତି ଯେଉଁମାନଙ୍କର ତୁମେମାନେ ପୂଜାଆରଧନା କରୁଥିଲ, ୯୩. (ଏବଂ) ଅଲ୍ଲାହଙ୍କୁ ଛାଡ଼ି ଦେଇଥିଲ ? କ'ଣ ସେମାନେ ତୁମମାନଙ୍କୁ କିଛି ସାହାଯ୍ୟ କରିପାରିବେ ବା ନିଜକୁ ରକ୍ଷା କରିପାରିବେ ?" ୯୪. ସେମାନଙ୍କ ସହିତ ଅନ୍ୟ ଭ୍ରଷ୍ଟ ଲୋକମାନଙ୍କୁ ମଧ୍ୟ ତଳମୁହାଁ କରି ନର୍କରେ ଫିଙ୍ଗି ଦିଆଯିବ, ୯୫. ଏବଂ ଶଇତାନର ସୈନ୍ୟସାମନ୍ତମାନଙ୍କୁ ମଧ୍ୟ । ୯୬. ସେମାନେ ପରସ୍ପର ମଧ୍ୟରେ ବିବାଦ କରିବେ ଏବଂ (ନିଜନିଜର ଆରଧ୍ୟମାନଙ୍କୁ) କହିବେ, ୯୭. "ଅଲ୍ଲାହଙ୍କ ରାଣ ! ଆମେ ସେତେବେଳେ ପୂରାପୂରି ପଥଭ୍ରଷ୍ଟ ହୋଇ ଯାଇଥିଲୁ, ୯୮. ଯେତେବେଳେ ତୁମମାନଙ୍କୁ ଜଗତପାଳକଙ୍କର ସମକକ୍ଷ କରିଥିଲୁ । ୯୯. ପାପିଷ୍ଠମାନେ ଆମକୁ ପଥଭ୍ରଷ୍ଟ କରି ଦେଲେ । ୧୦୦. ଏବେ ଆମପାଇଁ ସୁପାରିଶ କରିବାକୁ କେହି ନାହିଁ, ୧୦୧. କିମ୍ବା କେହି ଅନ୍ତରଙ୍ଗ ବନ୍ଧୁ ନାହାନ୍ତି । ୧୦୨. ଯଦି ଆମକୁ ଆଉଥରେ (ସଂସାରକୁ) ଫେରିବାର ସୁଯୋଗ ମିଳନ୍ତା, ତେବେ ଆମେ ନିଶ୍ଚୟ ସଦବିଶ୍ୱାସୀ ହୁଅନ୍ତୁ ।"

୧୦୩. ଏହି ଘଟଣାରେ ଏକ ନିଦର୍ଶନ ଅଛି ମାତ୍ର ଅଧିକାଂଶ ଲୋକ ବିଶ୍ୱାସ କରନ୍ତିନାହିଁ । ୧୦୪. ବାସ୍ତବରେ ତୁମ ପ୍ରଭୁ ପ୍ରବଳ ପରାକ୍ରମୀ ଓ ପରମ ଦୟାଳୁ ।

୧୦୫. ନୁହଙ୍କ ସଂପ୍ରଦାୟର ଲୋକମାନେ ବାର୍ତ୍ତାବହମାନଙ୍କୁ ମିଥ୍ୟାବାଦୀ ବୋଲି କହିଲେ । ୧୦୬. ଯେତେବେଳେ ସେମାନଙ୍କ ଭାଇ ନୁହ ସେମାନଙ୍କୁ କହିଲେ, "କ'ଣ ତୁମମାନଙ୍କୁ ଅଲ୍ଲାହଙ୍କର ଭୟ ନାହିଁ ?" ୧୦୭. "ମୁଁ ତୁମମାନଙ୍କ ପାଖକୁ ପଠାଯାଇ ଥିବା ଜଣେ ବିଶ୍ୱସ୍ତ ବାର୍ତ୍ତାବହ । ୧୦୮. ତେଣୁ ଅଲ୍ଲାହଙ୍କୁ ଭୟ

କର ଏବଂ ମୋ' କଥା ମାନ । ୧୦୯. ମୁଁ ତୁମମାନଙ୍କଠାରୁ ଏହା ବିନିମୟରେ କୌଣସି ମୂଲ୍ୟ ମାଗୁନାହିଁ । ମୋତେ ପାରିଶ୍ରମିକ ଦେବା ଜଗତପାଳକଙ୍କ ଦାୟିତ୍ୱ । ୧୧୦. ତେଣୁ ଅଲ୍ଲାହଙ୍କୁ ଭୟ କର ଏବଂ ମୋ' କଥା ମାନି ଚଳ ।" ୧୧୧. ସେମାନେ କହିଲେ, "କ'ଣ ଆମେ ତୁମ କଥା ମାନିବୁ, ଯାହାର ଅନୁଗତମାନେ ଅତି ନୀଚ ଶ୍ରେଣୀର ଲୋକ ?" ୧୧୨. ନୁହ୍ କହିଲେ, "ସେମାନେ କ'ଣ କରନ୍ତି ମୋତେ ଜଣାନାହିଁ । ୧୧୩. ସେମାନଙ୍କ (କର୍ମର) ହିସାବ ରଖିବା ମୋ' ପ୍ରଭୁଙ୍କ ଦାୟିତ୍ୱ, (ଭଲ ହୁଅନ୍ତା) ଯଦି ତୁମେମାନେ ଏହା ବୁଝିପାରନ୍ତ । ୧୧୪. ମୁଁ ସଦ୍‌ବିଶ୍ୱାସୀ ଲୋକମାନଙ୍କୁ ନିଜ ପାଖରୁ ଦୂରେଇ ଦେଇ ପାରିବିନାହିଁ । ୧୧୫. କେବଳ ପରିଷ୍କାର ଭାବରେ ଚେତାଇଦେବା ମୋ' କାମ ।" ୧୧୬. ସେମାନେ କହିଲେ, "ହେ ନୁହ୍ ! ଯଦି ତୁମେ ଏଥିରୁ କ୍ଷାନ୍ତ ନହୁଅ, ତେବେ ତୁମକୁ ପଥର ମାରି ହତ୍ୟା କରି ଦିଆଯିବ ।" ୧୧୭. (ଏହା ଶୁଣି) ନୁହ୍ ପ୍ରାର୍ଥନା କଲେ, "ହେ ପ୍ରଭୁ ! ମୋ' ସଂପ୍ରଦାୟ ମୋ' କଥାକୁ ମିଛ ବୋଲି କହିଲା । ୧୧୮. ତେଣୁ, ଆମମାନଙ୍କ ମଧ୍ୟରେ ଅନ୍ତିମ ନିଷ୍ପତ୍ତି କରିଦିଅ ଏବଂ ମୋତେ ଏବଂ ମୋ'ର ସଦ୍‌ବିଶ୍ୱାସୀ ସାଥୀମାନଙ୍କୁ ରକ୍ଷା କର ।" ୧୧୯. ତେଣୁ, ଆମ୍ଭେ ତାଙ୍କୁ ଏବଂ ତାଙ୍କ ସାଥୀମାନଙ୍କୁ ବୋଝରେ ପୂର୍ଣ୍ଣ ହୋଇ ଯାଇଥିବା ଏକ ନୌକା ସାହାଯ୍ୟରେ ରକ୍ଷା କଲୁ । ୧୨୦. ଅବଶିଷ୍ଟ ଲୋକମାନଙ୍କୁ ଜଳମଗ୍ନ କରିଦେଲୁ ।

୧୨୧. ଏଥିରେ ଏକ ନିଦର୍ଶନ ଅଛି ମାତ୍ର ଏମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ବିଶ୍ୱାସ କରନ୍ତି ନାହିଁ । ୧୨୨. ବାସ୍ତବରେ ତୁମ ପ୍ରଭୁ ପ୍ରବଳ ପରାକ୍ରମୀ ଏବଂ ପରମ ଦୟାଳୁ ।

୧୨୩. ଆଦ୍ ସଂପ୍ରଦାୟର ଲୋକମାନେ ମଧ୍ୟ ବାର୍ତ୍ତାବହମାନଙ୍କୁ ମିଥ୍ୟାବାଦୀ ବୋଲି କହିଲେ । ୧୨୪. ଯେତେବେଳେ ସେମାନଙ୍କ ଭାଇ ହୁଦ୍ ସେମାନଙ୍କୁ କହିଲେ, "କ'ଣ ତୁମମାନଙ୍କୁ ଅଲ୍ଲାହଙ୍କର ଭୟ ନାହିଁ ?" ୧୨୫. "ମୁଁ ତୁମମାନଙ୍କ ପାଖକୁ ପଠା ଯାଇଥିବା ଜଣେ ବିଶ୍ୱସ୍ତ ବାର୍ତ୍ତାବହ । ୧୨୬. ତେଣୁ, ଅଲ୍ଲାହଙ୍କୁ ଭୟ କର ଏବଂ ମୋ' କଥା ମାନ । ୧୨୭. ଏଥିପାଇଁ ମୁଁ ତୁମମାନଙ୍କଠାରୁ କୌଣସି ମୂଲ୍ୟ ମାଗୁନାହିଁ । ମୋତେ ପାରିଶ୍ରମିକ ଦେବା

ଜଗତପାଳକଙ୍କ ଦାୟିତ୍ୱ। ୧୨୮. କ'ଣ ତୁମେମାନେ ଅଯଥାରେ ଉଚ୍ଚ ଜାଗାମାନଙ୍କରେ ସ୍ମାରକ ଗଢୁଛ, ୧୨୯. ଏବଂ ଭବ୍ୟ ଅଟ୍ଟାଳିକା ନିର୍ମାଣ କରୁଛ ସତେଯେପରି ତୁମେମାନେ ଏଠି ଚିରଦିନ ରହିବ? ୧୩୦. ଯେତେବେଳେ ତୁମେମାନେ କାହାକୁ ଧରୁଛ, ଅତ୍ୟାଚାରୀ ପାଲଟିଯାଉଛ। ୧୩୧. ଅଲ୍ଲାହଙ୍କୁ ଭୟ କର ଏବଂ ମୋ' କଥା ମାନ। ୧୩୨. ତାଙ୍କୁ ଭୟ କର, ଯିଏ ତୁମମାନଙ୍କୁ ବହୁତ କିଛି ଦେଇଛନ୍ତି ଯାହା ତୁମେମନେ ଜାଣ। ୧୩୩. ସେ ତୁମମାନଙ୍କୁ ପଶୁସଂପଦ ଦେଲେ ଏବଂ ସନ୍ତାନସନ୍ତତି ଦେଲେ, ୧୩୪. ବଗିଚା ଏବଂ ଝରଣା ମଧ୍ୟ ଦେଲେ। ୧୩୫. ମୋ'ର ଭୟ ହେଉଛି ଯେ ହୁଏତ ତୁମମାନଙ୍କ ଉପରେ ଦିନେ ଏକ ଭୟଙ୍କର ବିପଦ ପଡ଼ିପାରେ।" ୧୩୬. ସେମାନେ କହିଲେ, "ତୁମେ ଆମକୁ ଉପଦେଶ ଦିଅ ବା ନଦିଅ, ଆମପାଇଁ ଉଭୟ କଥା ସମାନ। ୧୩୭. ଏହାତ ଏକ ପ୍ରାଚୀନ ପରମ୍ପରା। ୧୩୮. ଆମମାନଙ୍କ ଉପରେ କୌଣସି ବିପଦ ଆସିବନାହିଁ।" ୧୩୯. ସେମାନେ ତାଙ୍କୁ ପ୍ରତ୍ୟାଖ୍ୟାନ କରିଦେଲେ ଏବଂ ଆମ୍ଭେ ମଧ୍ୟ ସେମାନଙ୍କୁ ଧ୍ୱଂସ କରିଦେଲୁ। ଏଥିରେ ଏକ ନିଦର୍ଶନ ଅଛି କିନ୍ତୁ ଅଧିକାଂଶ ଲୋକ ବିଶ୍ୱାସ କରନ୍ତିନାହିଁ। ୧୪୦. ବାସ୍ତବରେ ତୁମ ପ୍ରଭୁ ପ୍ରବଳ ପରାକ୍ରମୀ ଓ ପରମ ଦୟାଳୁ।

୧୪୧. (ସେହିପରି) ସମୁଦ୍ ସଂପ୍ରଦାୟ ମଧ୍ୟ ବାର୍ତ୍ତାବହମାନଙ୍କୁ ଅସ୍ୱୀକାର କଲେ। ୧୪୨. ଯେତେବେଳେ ସେମାନଙ୍କ ଭାଇ ସ୍ୱାଲେହ୍ ସେମାନଙ୍କୁ କହିଲେ, "ତୁମେମାନେ କାହିଁକି ଅଲ୍ଲାହଙ୍କୁ ଭୟ କରୁନାହିଁ?" ୧୪୩. "ମୁଁ ତୁମମାନଙ୍କ ପାଖକୁ ପଠା ଯାଇଥିବା ଜଣେ ଭରସାଯୋଗ୍ୟ ବାର୍ତ୍ତାବହ। ୧୪୪. ତେଣୁ, ଅଲ୍ଲାହଙ୍କୁ ଭୟ କର ଏବଂ ମୋ' କଥା ମାନ। ୧୪୫. ଏଥିପାଇଁ ମୁଁ ତୁମମାନଙ୍କଠାରୁ କିଛି ମୂଲ୍ୟ ମାଗୁନାହିଁ। ମୋତେ ପାରିଶ୍ରମିକ ଦେବା ଜଗତପାଳକଙ୍କ ଦାୟିତ୍ୱ। ୧୪୬. କ'ଣ ଏଠାରେ ଯାହାସବୁ ଅଛି ତୁମମାନଙ୍କୁ ସେଗୁଡ଼ିକ ମଧ୍ୟରେ ନିଶ୍ଚିନ୍ତରେ ରହିବାକୁ ଦିଆଯିବ? ୧୪୭. ବଗିଚା ଓ ଝରଣାମାନଙ୍କରେ, ୧୪୮. ଏବଂ ଶସ୍ୟକ୍ଷେତ୍ର ଏବଂ ଖଜୁରୀ ଉଦ୍ୟାନରେ ଯାହାର ଫଳଗୁଡ଼ିକ ଅତି କୋମଳ? ୧୪୯. ଏବଂ ତୁମେମାନେ ପାହାଡ଼କୁ କାଟି ଗର୍ବର ସହିତ ଘର ତିଆରି କରୁଛ? ୧୫୦. ଅଲ୍ଲାହଙ୍କୁ ଭୟ କର ଏବଂ ମୋ' କଥା ମାନ। ୧୫୧. ଏବଂ ସୀମା ଅତିକ୍ରମ କରୁଥିବା ଲୋକମାନଙ୍କ କଥା ଶୁଣନାହିଁ,

୧୫୨. ଯେଉଁମାନେ ଭୂପୃଷ୍ଠରେ ଅଶାନ୍ତି ସୃଷ୍ଟି କରନ୍ତି ମାତ୍ର ସୁଧାର କାର୍ଯ୍ୟ କରନ୍ତି ନାହିଁ।" ୧୫୩. ସେମାନେ କହିଲେ, "ତୁମକୁ କେହି ଗୁଣି କରିଦେଇଛି। ୧୫୪. ତୁମେ ଆମମାନଙ୍କ ପରି ଜଣେ ମଣିଷ। ଯଦି ତୁମ କଥା ସତ, ତେବେ କୌଣସି ଅଲୌକିକ କାର୍ଯ୍ୟ କରି ଦେଖାଅ।" ୧୫୫. ସ୍ୱାଲେହ୍ କହିଲେ, "ଦେଖ, ଏହା ଗୋଟିଏ ମାଈ ଓଟ। (କୂଅରୁ) ପାଣି ପିଇବା ପାଇଁ ଦିନେ ତା'ର ପାଳି ଏବଂ ଦିନେ ତୁମମାନଙ୍କର ପାଳି। ୧୫୬. ତାକୁ କୌଣସି ମନ୍ଦ ଉଦ୍ଦେଶ୍ୟରେ କଦାପି ସ୍ପର୍ଶ କରିବନାହିଁ ଅନ୍ୟଥା ତୁମେମାନେ ବଡ଼ ବିପଦରେ ପଡ଼ିଯିବ। ୧୫୭. ତଥାପି ସେମାନେ ତା'ର ଗୋଛି କାଟିଦେଇ ମାରିଦେଲେ ଏବଂ ତା'ପରେ ଅବଶୋଷ କଲେ। ୧୫୮. ଏହାପରେ ସେମାନଙ୍କ ଉପରେ ଦୈବୀବିପତ୍ତି ପଡ଼ିଲା। ଏଥିରେ ଅବଶ୍ୟ ଏକ ନିଦର୍ଶନ ଅଛି ମାତ୍ର ଅଧିକାଂଶ ଲୋକ ଏହା ବିଶ୍ୱାସ କରନ୍ତି ନାହିଁ। ୧୫୯. ବାସ୍ତବରେ ତୁମ ପ୍ରଭୁ ପ୍ରବଳ ପରାକ୍ରମୀ ଓ ପରମ ଦୟାଳୁ।

୧୬୦. ଲୁତ୍‌ଙ୍କ ସଂପ୍ରଦାୟ ମଧ୍ୟ ବାର୍ତ୍ତାବହମାନଙ୍କୁ ମିଥ୍ୟାବାଦୀ ବୋଲି କହିଲା। ୧୬୧. ଯେତେବେଳେ ସେମାନଙ୍କ ଭାଇ ଲୁତ୍ ସେମାନଙ୍କୁ କହିଲେ, "କ'ଣ ତୁମମାନଙ୍କୁ ଅଲ୍ଲାହଙ୍କର ଭୟ ନାହିଁ? ୧୬୨. ମୁଁ ତୁମମାନଙ୍କ ପାଖକୁ ତାଙ୍କ ଦ୍ୱାରା ପଠା ଯାଇଥିବା ଜଣେ ବିଶ୍ୱସ୍ତ ବାର୍ତ୍ତାବହ। ୧୬୩. ତେଣୁ, ଅଲ୍ଲାହଙ୍କୁ ଭୟ କର ଏବଂ ମୋ' କଥା ମାନ। ୧୬୪. ଏଥିପାଇଁ ମୁଁ ତୁମମାନଙ୍କଠାରୁ କୌଣସି ମୂଲ୍ୟ ମାଗୁନାହିଁ। ମୋତେ ପାରିଶ୍ରମିକ ଦେବା ଜଗତପାଳକଙ୍କ ଦାୟିତ୍ୱ। ୧୬୫. କ'ଣ ସଂସାରରେ ତୁମେମାନେ କେବଳ ପୁରୁଷମାନଙ୍କ ପ୍ରତି ଆସକ୍ତ ହେଉଛ? ୧୬୬. ଏବଂ ସେମାନଙ୍କୁ ଛାଡ଼ିଦେଉଛ ଯେଉଁମାନଙ୍କୁ ଈଶ୍ୱର ତୁମମାନଙ୍କର ପତ୍ନୀ ରୂପେ ସୃଷ୍ଟି କରିଛନ୍ତି? ତୁମେମାନେ ସୀମା ଅତିକ୍ରମ କରି ଯାଉଛ।" ୧୬୭. ସେମାନେ କହିଲେ, "ହେ ଲୁତ୍! ଯଦି ତୁମେ ଏଥିରୁ କ୍ଷାନ୍ତ ନହୁଅ ତେବେ ତୁମକୁ ନିଶ୍ଚୟ ସହରରୁ ତଡ଼ି ଦିଆଯିବ।" ୧୬୮. ଲୁତ୍ କହିଲେ, "ମୁଁ ତୁମମାନଙ୍କର ଏହି (ସମଲିଙ୍ଗୀ) ଆଚରଣକୁ ଘୃଣା କରେ। ୧୬୯. ହେ ପ୍ରଭୁ! ମୋତେ ଓ ମୋ' ପରିଜନମାନଙ୍କୁ ଏମାନଙ୍କ ଦୁଷ୍କର୍ମର ପରିଣତିରୁ ରକ୍ଷା କର।" ୧୭୦. ସୁତରାଂ, ଆମ୍ଭେ ତାଙ୍କୁ ଏବଂ ତାଙ୍କ ପରିବାରର ସମସ୍ତଙ୍କୁ ରକ୍ଷା କଲୁ, ୧୭୧. କେବଳ ଜଣେ ବୃଦ୍ଧା ରହିଗଲା। ୧୭୨. ଅନ୍ୟ ସମସ୍ତଙ୍କୁ ଆମ୍ଭେ ନିପାତ କରିଦେଲୁ।

୧୭୩. ଏବଂ ଆମ୍ଭେ ସେମାନଙ୍କ ଉପରେ ବର୍ଷା କଲୁ । ଏହି ବିନାଶକାରୀ ବର୍ଷା ସେଇମାନଙ୍କ ଉପରେ ବର୍ଷିଲା ଯେଉଁମାନଙ୍କୁ (ପୂର୍ବରୁ) ସାବଧାନ କରା ଯାଇଥିଲା । ୧୭୪. ଏଥିରେ ଏକ ନିଦର୍ଶନ ଅଛି ମାତ୍ର ଅଧିକାଂଶ ଲୋକ ବିଶ୍ୱାସ କରନ୍ତିନାହିଁ । ୧୭୫. ବାସ୍ତବରେ ତୁମ ପ୍ରଭୁ ପ୍ରବଳ ପରାକ୍ରମୀ ଓ ପରମ ଦୟାଳୁ ।

୧୭୬. ଐକାବାସୀ ମଧ୍ୟ ବାର୍ତ୍ତାବହମାନଙ୍କୁ ଅସ୍ୱୀକାର କଲେ । ୧୭୭. ଯେତେବେଳେ ଶୋଏବ ସେମାନଙ୍କୁ କହିଲେ, "କ'ଣ ତୁମେମାନଙ୍କୁ (ଅଲ୍ଲାହଙ୍କର) ଭୟ ନାହିଁ? ୧୭୮. "ମୁଁ ତୁମମାନଙ୍କ ପାଖକୁ ପଠା ଯାଇଥିବା ଜଣେ ଭରସାଯୋଗ୍ୟ ବାର୍ତ୍ତାବହ । ୧୭୯. ତେଣୁ, ଅଲ୍ଲାହଙ୍କୁ ଭୟ କର ଏବଂ ମୋ' କଥା ମାନ । ୧୮୦. ଏଥିପାଇଁ ମୁଁ ତୁମମାନଙ୍କଠାରୁ କୌଣସି ମୂଲ୍ୟ ମାଗୁନାହିଁ । ମୋତେ ପାରିଶ୍ରମିକ ଦେବା ଜଗତପାଳକଙ୍କ ଦାୟିତ୍ୱ । ୧୮୧. ତୁମେମାନେ ମାପପାତ୍ର ପୂର୍ଣ୍ଣ କରି ଦିଅ ଏବଂ କାହାରି କ୍ଷତି କରନାହିଁ, ୧୮୨. ଏବଂ ଠିକ୍ ନିକିତିରେ ଓଜନ କର । ୧୮୩. ଲୋକମାନଙ୍କୁ ସେମାନଙ୍କର ଜିନିଷ (ଦେଲାବେଳେ) କମ୍ କରି ଦିଅନାହିଁ ଏବଂ ଦେଶରେ ଅଶାନ୍ତି ସୃଷ୍ଟି କରନାହିଁ । ୧୮୪. ତାଙ୍କୁ ଭୟ କର ଯିଏ ତୁମମାନଙ୍କୁ ଏବଂ ତୁମ ପୂର୍ବଜମାନଙ୍କୁ ମଧ୍ୟ ସୃଷ୍ଟି କରିଛନ୍ତି । ୧୮୫. ସେମାନେ କହିଲେ, "ତୁମକୁ କେହି ଗୁଣି କରି ଦେଇଛି ।" ୧୮୬. ତୁମେ ଆମରି ପରି ଜଣେ ମଣିଷ ଏବଂ ଆମେ ତୁମକୁ ଜଣେ ମିଥ୍ୟାବାଦୀ ମନେକରୁଛୁ । ୧୮୭. ଯଦି ତୁମେ ସତ କହୁଛ, ତେବେ ଆମ ଉପରେ ଖଣ୍ଡେ ଆକାଶ ଖସାଇଦିଅ ।" ୧୮୮. ସେ ଉତ୍ତର ଦେଲେ, "ତୁମେମାନେ ଯାହା କରୁଛ, ମୋ' ଈଶ୍ୱର ଭଲରୂପେ ଜାଣନ୍ତି । ୧୮୯. ପୁଣି ସେମାନେ ତାଙ୍କୁ ପ୍ରତ୍ୟାଖ୍ୟାନ କରିଦେଲେ, ଯାହାଫଳରେ ଦିନେ ସେମାନଙ୍କ ଉପରେ ବିନାଶକାରୀ କଳା ବାଦଲ ମାଡ଼ି ଆସିଲା । ସେହି ବିପଦର ଦିନଟି ଭାରି ଭୟଙ୍କର ଥିଲା । ୧୯୦. ଏଥିରେ ଏକ ନିଦର୍ଶନ ଅଛି ମାତ୍ର ଅଧିକାଂଶ ଲୋକ ବିଶ୍ୱାସ କରନ୍ତିନାହିଁ । ୧୯୧. ବାସ୍ତବରେ ତୁମ ପ୍ରଭୁ ପ୍ରବଳ ପରାକ୍ରମୀ ଓ ପରମ ଦୟାଳୁ ।

୧୯୨. ଏହି କୁରଆନ୍ ବ୍ରହ୍ମାଣ୍ଡର ଅଧୀଶ୍ୱରଙ୍କ ଦ୍ୱାରା ପଠାଯାଇଛି, ୧୯୩. ଏବଂ ଜଣେ ବିଶ୍ୱସ୍ତ ଦେବଦୂତ ଏହାକୁ ନେଇ ଅବତରଣ କରିଛନ୍ତି ।

୧୯୪. ଏବଂ ଏହାକୁ ତୁମ ଅନ୍ତର ମଧ୍ୟରେ ପ୍ରକଟ କରିଛନ୍ତି ଯେପରିକି ତୁମେ ଲୋକମାନଙ୍କୁ ସାବଧାନ କରିବ, ୧୯୫. ପରିଷ୍କାର ଆରବୀ ଭାଷାରେ। ୧୯୬. ଏହାର ଉଲ୍ଲେଖ ପୂର୍ବ ବାର୍ତ୍ତାବହମାନଙ୍କ ଗ୍ରନ୍ଥରେ ମଧ୍ୟ ରହିଛି। ୧୯୭. କ'ଣ ଏମାନଙ୍କ ପାଇଁ ଏହା ଏକ ପ୍ରମାଣ ନୁହେଁ ଯେ ଇସ୍ରାଇଲଙ୍କ ବଂଶଧରମାନଙ୍କ ମଧ୍ୟରେ ଥିବା ବିଦ୍ୱାନମାନେ ଏକଥା ଜାଣନ୍ତି? ୧୯୮. (ଏମାନେ ଏଭଳି ଜିଦ୍‌ଖୋର ଯେ) ଯଦି ଆମ୍ଭେ ଏହାକୁ ଜଣେ ଅଣ-ଆରବୀୟ ବ୍ୟକ୍ତିଙ୍କ ପ୍ରତି ପ୍ରକଟ କରି ଥାଆନ୍ତୁ, ୧୯୯. ଏବଂ ସେ ଏମାନଙ୍କୁ ପଢ଼ି ଶୁଣାଇ ଦେଇଥାଆନ୍ତେ, ତଥାପି ଏମାନେ ମାନି ନଥାଆନ୍ତେ। ୨୦୦. ଏହିପରି ଆମ୍ଭେ ପାପୀମାନଙ୍କ ହୃଦୟରେ ଅବିଶ୍ୱାସର ବୀଜ ରୋପଣ କରିଦେଇଛୁ। ୨୦୧. ଯେପର୍ଯ୍ୟନ୍ତ ସେମାନେ ଏକ ଭୟଙ୍କର ବିପଦ ନଦେଖିଛନ୍ତି ସେପର୍ଯ୍ୟନ୍ତ ବିଶ୍ୱାସ କରିବେନାହିଁ। ୨୦୨. ଏହି ବିପଦ ସେମାନଙ୍କ ଉପରେ ଆକସ୍ମିକ ଭାବରେ ଆସିବ ଏବଂ ସେମାନେ କିଛି ଜାଣିପାରିବେ ନାହିଁ। ୨୦୩. ସେତେବେଳେ ସେମାନେ କହିବେ, "କ'ଣ ଆମମାନଙ୍କୁ ଆଉ କିଛି ସମୟ ମିଳିବ?"

୨୦୪. କ'ଣ ସେମାନେ ଆମ୍ଭର ଶାସ୍ତି ପାଇଁ ଭାରି ବ୍ୟଗ୍ର ଅଛନ୍ତି? ୨୦୫. କହିଲ ଭଲା! ଯଦି ଆମ୍ଭେ ସେମାନଙ୍କୁ ବର୍ଷବର୍ଷ କାଳ (ସଂସାରରେ) ସୁଖଭୋଗ କରିବାର ସୁଯୋଗ ଦେଉ, ୨୦୬. ପୁଣି ସେମାନଙ୍କ ଉପରେ ସେହି ବିପଦ ପଡ଼େ ଯାହା ବିଷୟରେ ସେମାନଙ୍କୁ ସାବଧାନ କରାଯାଉଛି, ୨୦୭. ତେବେ ସେହି ଭୋଗ୍ୟବସ୍ତୁଗୁଡ଼ିକ ଭଲା ସେମାନଙ୍କର କି କାମରେ ଆସିବ?

୨୦୮. ଆମ୍ଭେ ଏପରି କୌଣସି ଜନବସତିକୁ ଧ୍ୱଂସ କରିନାହୁଁ ଯେଉଁଠାକୁ ପୂର୍ବରୁ କୌଣସି ସଚେତକଙ୍କୁ ପଠାଯାଇ ନାହିଁ - ୨୦୯. ଉପଦେଶ ଦେବା ନିମନ୍ତେ। ଆମ୍ଭେ ଅନ୍ୟାୟୀ ନୋହୁଁ।

୨୧୦. ଏହି କୁରଆନକୁ ଶଇତାନମାନେ ନେଇ ଆସିନାହାନ୍ତି। ୨୧୧. ସେମାନେ ଏହାର ଯୋଗ୍ୟ ନୁହନ୍ତି କି ସେମାନଙ୍କର ଏହା କରିବାର କ୍ଷମତା ମଧ୍ୟ ନାହିଁ। ୨୧୨. ସେମାନଙ୍କୁ ଏହାକୁ ଶୁଣିବାରୁ ବଂଚିତ କରିଦିଆ ଯାଇଛି।

୨୧୩. ସୁତରାଂ, ଅଲ୍ଲାହଙ୍କ ସହିତ ଅନ୍ୟ କୌଣସି କଳ୍ପିତ ଈଶ୍ୱରକୁ ଡାକନାହିଁ, ଅନ୍ୟଥା ତୁମେ ଶାସ୍ତି ଭୋଗିବ । ୨୧୪. (ହେ ବାର୍ତ୍ତାବହ!) ନିଜ ଆତ୍ମୀୟସ୍ୱଜନଙ୍କୁ ଏବିଷୟରେ ସାବଧାନ କରିଦିଅ ।୨୧୫. ଯେଉଁ ସଦ୍‌ବିଶ୍ୱାସୀମାନେ ତୁମର ଅନୁଗତ ହୋଇ ସାରିଛନ୍ତି, ସେମାନଙ୍କ ସହିତ ସ୍ନେହପୂର୍ଣ୍ଣ ବ୍ୟବହାର କର । ୨୧୬. ଯଦି ସେମାନେ ତୁମର ଅବଜ୍ଞା କରନ୍ତି ତେବେ କହିଦିଅ ଯେ ତୁମେମାନେ ଯାହା କରୁଛ, ସେଥିପାଇଁ ମୁଁ ଦାୟୀ ନୁହେଁ । ୨୧୭. ଏବଂ ସର୍ବଶକ୍ତିମାନ ଏବଂ ପରମ ଦୟାଳୁ ଅଲ୍ଲାହଙ୍କ ଉପରେ ଭରସା ରଖ, ୨୧୮. ଯିଏ ତୁମକୁ ସେତେବେଳେ ମଧ୍ୟ ଦେଖୁଥାଆନ୍ତି ଯେତେବେଳେ ତୁମେ ନମାଜରେ ଛିଡ଼ା ହୁଅ । ୨୧୯. ଏବଂ ସେତେବେଳେ ମଧ୍ୟ, ଯେତେବେଳେ ତୁମେ ନମାଜୀମାନଙ୍କ ଗହଣରେ ବୁଲାବୁଲି କରୁଥାଅ । ୨୨୦. ସେ ସର୍ବଶ୍ରୋତା ଏବଂ ସର୍ବଜ୍ଞ ।

୨୨୧. କ'ଣ ମୁଁ ତୁମମାନଙ୍କୁ କହିବି ଯେ ଶଇତାନ (ଅର୍ଥାତ୍ ଜିନ୍‌ମାନେ) କାହା ଉପରେ ଉଭା ହୁଅନ୍ତି? ୨୨୨. ସେମାନେ ମିଥ୍ୟାବାଦୀ ପାପିଷ୍ଠମାନଙ୍କ ଉପରେ ଉଭା ହୁଅନ୍ତି । ୨୨୩. ଶୁଣାଶୁଣି କଥାକୁ ସେମାନେ କାନରେ ଫୁଙ୍କି ଦିଅନ୍ତି । ଏମାନଙ୍କ ମଧ୍ୟରୁ ଅଧିକାଂଶ ମିଥ୍ୟାବାଦୀ ।

୨୨୪. କବିମାନଙ୍କୁ ପଥଭ୍ରଷ୍ଟ ଲୋକମାନେ ଅନୁସରଣ କରିଥାଆନ୍ତି । ୨୨୫. କ'ଣ ତୁମେ ଦେଖୁନାହିଁ ଯେ ସେମାନେ କିପରି ପ୍ରତ୍ୟେକ କ୍ଷେତ୍ରରେ ବିଭ୍ରାନ୍ତ ହୋଇ ବୁଲନ୍ତି ? ୨୨୬. ସେମାନେ ଯାହା କହନ୍ତି ତାହା କରନ୍ତିନାହିଁ । ୨୨୭. ହଁ, ଯେଉଁମାନେ (ଅର୍ଥାତ୍ ଯେଉଁ କବିମାନେ) ବିଶ୍ୱାସ କରନ୍ତି, ଭଲ କର୍ମ କରନ୍ତି, ଅଲ୍ଲାହଙ୍କୁ ନିରନ୍ତର ସ୍ମରଣ କରନ୍ତି ଏବଂ ସେମାନଙ୍କ ଉପରେ ଅତ୍ୟାଚାର ହେଲାପରେ କେବଳ ନିଜର ପ୍ରତିରକ୍ଷା କରନ୍ତି, ସେମାନଙ୍କ କଥା ଭିନ୍ନ । ଅତ୍ୟାଚାରୀ ଲୋକମାନେ ଖୁବ୍‌ଶୀଘ୍ର ଜାଣିଯିବେ ଯେ ସେମାନଙ୍କର କି ପରିଣାମ ହେବ ।

## ଅଧ୍ୟାୟ ୨୭, ଅନ୍ ନମଲ୍

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍ଙ୍କ ନାମରେ

୧. ତା - ସୀନ୍ । ଏଗୁଡ଼ିକ ପ୍ରାଂଜଳ ଭାବରେ ବର୍ଣ୍ଣନା କରୁଥିବା କୁରଆନ୍ ଗ୍ରନ୍ଥର ବାଣୀ। ୨. ଏହି ବାଣୀଗୁଡ଼ିକ ସଦ୍‌ବିଶ୍ୱାସୀ ଲୋକମାନଙ୍କର ମାର୍ଗଦର୍ଶନ କରେ ଏବଂ ସେମାନଙ୍କୁ (ସ୍ୱର୍ଗପ୍ରାପ୍ତିର) ସୁସମାଚର ଦିଏ, ୩. ଯେଉଁମାନେ ନମାଜ ପ୍ରତିଷ୍ଠା କରନ୍ତି, ଜକାତ୍ ଦିଅନ୍ତି ଏବଂ ପରଲୋକରେ ବିଶ୍ୱାସ କରନ୍ତି। ୪. ଯେଉଁମାନେ ପରଲୋକରେ ବିଶ୍ୱାସ କରନ୍ତିନାହିଁ, ଆମ୍ଭେ ସେମାନଙ୍କ କର୍ମଗୁଡ଼ିକୁ ସେମାନଙ୍କ ଦୃଷ୍ଟିରେ ଶୋଭନୀୟ କରି ଦେଇଛୁ। ତେଣୁ, ସେମାନେ ବିଭ୍ରାନ୍ତ ହେଉଛନ୍ତି। ୫. ଏହି ଲୋକମାନେ ଅତି କଠୋର ଯାତନା ଭୋଗିବେ ଏବଂ ପରଲୋକରେ କ୍ଷତିଗ୍ରସ୍ତ ହେବେ। ୬. (ହେ ବାର୍ତ୍ତାବହ!) ନିଃସନ୍ଦେହ ଏହି କୁରଆନ ତୁମ ପାଖକୁ ଜଣେ ତତ୍ତ୍ୱଜ୍ଞାନୀ ଏବଂ ସର୍ବଜ୍ଞ ସତ୍ତାଙ୍କ ଦ୍ୱାରା ପଠାଯାଉଛି।

୭. (ସ୍ମରଣ କର) ଯେତେବେଳେ ମୁ'ସା ତାଙ୍କ ଘର ଲୋକଙ୍କୁ କହିଥିଲେ,"ମୁଁ ନିଆଁ ଜଳୁଥିବାର ଦେଖିଲି। ମୁଁ ଯାଉଛି ସେଠାରୁ କିଛି ଖବର ଆଣିବି, ନହେଲେ ତୁମପାଇଁ କିଛି ଜଳନ୍ତା ଅଙ୍ଗାର ନେଇ ଆସିବି ଯେ ତୁମେମାନେ ସେକି ହେବ।" ୮. ପୁଣି ଯେତେବେଳେ ସେ ତା' ପାଖକୁ ଗଲେ, (ଦେଖିଲେ ଯେ ଏହା ନିଆଁ ସଦୃଶ ଏକ ଅପୂର୍ବ ଜ୍ୟୋତି ଥିଲା ଏବଂ) ତାଙ୍କୁ ଶୂନ୍ୟବାଣୀ ହେଲା, "ସେମାନଙ୍କର ମଙ୍ଗଳ ହେଉ ଯେଉଁମାନେ ଏହି ଜ୍ୟୋତି ମଧ୍ୟରେ ତଥା ଏହାର ଚତୁଃପାର୍ଶ୍ୱରେ ଅଛନ୍ତି। ଜଗତପାଳକ ଅଲ୍ଲାହ୍ ପରମ ପବିତ୍ର। ୯. ହେ ମୁ'ସା! ଆମ୍ଭେ ଅଲ୍ଲାହ୍ – ମହାଶକ୍ତିମାନ ଓ ତତ୍ତ୍ୱଜ୍ଞ। ୧୦. ତୁମେ ନିଜର ଲାଠି ତଳେ ପକାଇଦିଅ।" ପୁଣି ଯେତେବେଳେ ମୁ'ସା (ନିଜ ଲାଠି ପକାଇଲେ ଏବଂ) ଦେଖିଲେ ଯେ ଲାଠିଟି ସାପ ପରି ହଲଚଲ ହେଉଛି, ସେ ବୁଲିପଡ଼ି ପଳାଇବାକୁ ଲାଗିଲେ ଏବଂ ପଛକୁ ମଧ୍ୟ ଫେରି ଚାହିଁଲେନାହିଁ।" (ଆମ୍ଭେ କହିଲୁ) "ହେ ମୁ'ସା! ଭୟ କରନାହିଁ। ମୋ'ପାଖରେ ରସୁଲମାନେ ଭୟଭୀତ ହୁଅନ୍ତିନାହିଁ। ୧୧. ମାତ୍ର ଯିଏ କିଛି ଦୋଷ କରିଥାଏ, ପୁଣି ମନ୍ଦ କର୍ମ ଛାଡ଼ି ଭଲକର୍ମ କରେ ତେବେ (ସେ

ଜାଣିରଖ଼ୁ ଯେ) ମୁଁ କ୍ଷମାଶୀଳ ଏବଂ ପରମ ଦୟାଳୁ” ୧୨. (ଏବେ) ନିଜ ହାତକୁ କାଖ ତଳେ ରଖ ଯାହା ଶୁଭ୍ର ହୋଇ ବାହାରିବ ଯଦିଓ ଏହା ରୋଗାକ୍ରାନ୍ତ ନଥିବ । ଏଗୁଡ଼ିକ ସେହି ନଅ ଗୋଟି ଅଲୌକିକ ନିଦର୍ଶନ ମଧ୍ୟର ରହିଛି ଯାହାକୁ ନେଇ ତୁମେ ଫିରଔନ ଓ ତା’ ସଂପ୍ରଦାୟ ପାଖକୁ ଯିବ । ସେମାନେ ଅତ୍ୟନ୍ତ ଦୁରାଚ୍ଚରୀ ।”

୧୩. ପୁଣି ଯେତେବେଳେ ସେମାନଙ୍କ ପାଖରେ ଆମ୍ଭର ଅଲୌକିକ ନିଦର୍ଶନ ପହଁଚିଲା ଯାହା ଅତି ସ୍ପଷ୍ଟ ଥିଲା, ସେମାନେ କହିଲେ ଯେ ଏଗୁଡ଼ିକ ପରିଷ୍କାର ଯାଦୁବିଦ୍ୟା । ୧୪. ସେମାନଙ୍କୁ (ସେଗୁଡ଼ିକର ସତ୍ୟତା ସଂପର୍କରେ) ବିଶ୍ୱାସ ହୋଇ ଯାଇଥିଲା କିନ୍ତୁ ସେମାନେ କେବଳ ଅନ୍ୟାୟ ଓ ଅହଙ୍କାର ଯୋଗୁଁ ସେଗୁଡ଼ିକୁ ଅସ୍ୱୀକାର କରିଦେଲେ । ଏବେ ଦେଖ ଦୁରାଚାରୀମାନଙ୍କର କିଭଳି ପରିଣାମ ହେଲା ।

୧୫. ଆମ୍ଭେ ଦାଉଦ୍ ଓ ସୁଲେମାନଙ୍କୁ (ଅର୍ଥାତ୍ ଡେଭିଡ୍ ଓ ସଲୋମନଙ୍କୁ) ସଦ୍‌ଜ୍ଞାନ ପ୍ରଦାନ କରିଥିଲୁ । ସେମାନେ କହିଲେ, “ଅଲ୍ଲାହଙ୍କୁ ଅଶେଷ ଧନ୍ୟବାଦ, ଯିଏ ଆମକୁ ତାଙ୍କର ଅଧିକାଂଶ ବିଶ୍ୱାସୀ ଭକ୍ତଙ୍କ ମଧ୍ୟରେ ଶ୍ରେଷ୍ଠତା ପ୍ରଦାନ କଲେ ।” ୧୬. ସୁଲେମାନ ଦାଉଦଙ୍କ ଉତ୍ତରାଧିକାରୀ ହେଲେ । ସେ କହିଲେ,“ଭାଇମାନେ ! ମୋତେ ପକ୍ଷୀମାନଙ୍କର ଭାଷା ଶିଖାଇ ଦିଆଯାଇଛି ଏବଂ ସବୁ ପ୍ରକାରର ଐଶ୍ୱର୍ଯ୍ୟ ଦିଆଯାଇଛି । ଏହା ତାଙ୍କର ପରମ ଅନୁଗ୍ରହ । ୧୭. ସୁଲେମାନଙ୍କ ପାଇଁ ମାନବ, ଜିନ୍ ଏବଂ ପକ୍ଷୀମାନଙ୍କର ସେନାଙ୍କୁ ଏକାଠି କରି ସେମାନଙ୍କୁ ଶ୍ରେଣୀବଦ୍ଧ କରା ଯାଉଥିଲା । ୧୮. ଥରେ ଯେତେବେଳେ ସେମାନେ ପିମ୍ପୁଡ଼ିମାନଙ୍କର ଏକ ଅଂଚଳରେ ପହଁଚିଲେ, ଗୋଟିଏ ପିମ୍ପୁଡ଼ି କହିଲା, “ହେ ପିମ୍ପୁଡ଼ିମାନେ ! ନିଜନିଜ ଘର ଭିତରକୁ ଚ୍ଚଲିଯାଅ, ନହେଲେ ସୁଲେମାନ ଓ ତା’ସେନା ଅଜାଣତରେ ତୁମମାନଙ୍କୁ ଦଳିଚକଟି ଦେବେ ।” ୧୯. ସୁଲେମାନ୍ ତା’ କଥା ଶୁଣି ହସିଦେଲେ ଏବଂ ପ୍ରାର୍ଥନା କଲେ, “ହେ ପ୍ରଭୁ ! ମୋତେ ଶକ୍ତି ଦିଅ ଯେ ମୋ’ ପ୍ରତି ଏବଂ ମୋ’ ପିତାମାତାଙ୍କ ପ୍ରତି ତୁମେ କରିଥିବା ଅନୁଗ୍ରହ ପାଇଁ ମୁଁ କୃତଜ୍ଞ ରହିବି ଏବଂ ଏଭଳି ଭଲକର୍ମ କରିବି ଯାହାଦ୍ୱାରା ତୁମେ ପ୍ରସନ୍ନ ହେବ । ନିଜ କୃପାରୁ ମୋତେ ତୁମର ସଦାଚାରୀ ଭକ୍ତମାନଙ୍କ ମଧ୍ୟରେ ସ୍ଥାନ ଦିଅ ।”

୨୦. (ଦିନେ) ସେ ପକ୍ଷୀମାନଙ୍କୁ ନିରୀକ୍ଷଣ କରିସାରି କହିଲେ, "କଥା କ'ଣ ? ମୁଁ ହୁଦ୍‌ହୁଦ୍‌କୁ ତ କାହିଁ ଦେଖୁନାହିଁ ? କ'ଣ ସେ ଅନୁପସ୍ଥିତ ଅଛି ? ୨୧. ସେ (ନିଜ ଅନୁପସ୍ଥିତିର) ଉଚିତ କାରଣ ଦର୍ଶାଉ, ନହେଲେ ମୁଁ ତାକୁ କଠୋର ଦଣ୍ଡ ଦେବି କିମ୍ବା ତାକୁ ହତ୍ୟା କରିବି ।" ୨୨. ଅଳ୍ପ ସମୟ ପରେ ହୁଦହୁଦ୍ ଆସି କହିଲା, "ମୁଁ ଏମିତି ଖବର ଆଣିଛି ଯାହା ଆପଣ ଜାଣିନାହାନ୍ତି । ମୁଁ ସବା ରାଜ୍ୟରୁ ଆପଣଙ୍କ ପାଇଁ ଗୋଟିଏ ପକ୍କା ଖବର ଆଣିଛି । ୨୩. ମୁଁ ଦେଖିଲି ଯେ ଜଣେ ମହିଳା ସେମାନଙ୍କୁ (ଅର୍ଥାତ୍ ସବାବାସୀଙ୍କୁ) ଶାସନ କରୁଛି । ତାକୁ ସବୁ ପ୍ରକାରର ଐଶ୍ୱର୍ଯ୍ୟ ଦିଆଯାଇଛି ଏବଂ ତା'ର ଏକ ବିଶାଳକାୟ ସିଂହାସନ ମଧ୍ୟ ଅଛି । ୨୪. ମୁଁ ଦେଖିଲି ଯେ ସେ ଓ ତା' ସଂପ୍ରଦାୟର ଲୋକମାନେ ଅଲ୍ଲାହଙ୍କୁ ଛାଡ଼ି ସୂର୍ଯ୍ୟକୁ ପ୍ରଣାମ କରୁଛନ୍ତି । ଶଇତାନ ସେମାନଙ୍କ ଦୃଷ୍ଟିରେ ସେମାନଙ୍କର କର୍ମଗୁଡ଼ିକୁ ସୁନ୍ଦର କରି ଦେଖାଇ ଦେଇଛି ଏବଂ ସେମାନଙ୍କୁ ସତପଥରୁ ଅଟକାଇ ଦେଇଛି । ତେଣୁ ସେମାନେ ବାଟ ପାଉନାହାନ୍ତି । ୨୫. ସୁତରାଂ ସେମାନେ ଅଲ୍ଲାହଙ୍କୁ ପ୍ରଣାମ କରନ୍ତିନାହିଁ ଯିଏ ପୃଥିବୀ ଓ ଆକାଶର ରହସ୍ୟ ଉନ୍ମୋଚନ କରନ୍ତି ଏବଂ ତୁମେମାନେ ଯାହା ଗୋପନ ରଖ ବା ଯାହା ପ୍ରକାଶ କର, ସେ ସବୁ ଜାଣନ୍ତି ।" ୨୬. ସେ ଅଲ୍ଲାହ୍, ଯାହାଙ୍କ ବ୍ୟତୀତ କେହି ଉପାସନାଯୋଗ୍ୟ ନୁହେଁ । ସେ ଦିବ୍ୟସିଂହାସନର ସ୍ୱାମୀ । [ପ୍ରଣାମ]

୨୭. ସୁଲେମାନ କହିଲେ, "ଆମ୍ଭେ ଏବେ ଦେଖିବୁ ଯେ ତୁ ସତ କହୁଛୁ ବା ମିଛ । ୨୮. ମୋର ଏହି ପତ୍ରଟି ନେଇ ଯା' ଏବଂ ସେମାନଙ୍କୁ ଏହା ଦେଇସାରି ସେମାନଙ୍କ ପାଖରୁ ଦୂରେଇ ଯିବୁ ଏବଂ ଦେଖିବୁ ଯେ ସେମାନେ ଏହାର କି ଉତ୍ତର ଦେଉଛନ୍ତି ।"

୨୯. ରାଣୀ (ସୁଲେମାନଙ୍କ ପତ୍ର ପାଇ) କହିଲା, "ହେ ପାରିଷଦଗଣ ! ମୋ' ପାଖକୁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ପତ୍ର ଆସିଛି । ୩୦. ଏହା ସୁଲେମାନଙ୍କଠାରୁ ଆସିଛି ଏବଂ ଏହାକୁ ଅତ୍ୟନ୍ତ କୃପାଶୀଳ (ଏବଂ) ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ ଆରମ୍ଭ କରାଯାଇଛି ।", ୩୧. (ଏହାପରେ ଲେଖାଯାଇଛି) "ମୋ' ପାଖରେ ଅହଂକାର କରନାହିଁ ଏବଂ ବଶତା ସ୍ୱୀକାର କରି ମୋ' ସମ୍ମୁଖରେ ଉପସ୍ଥିତ ହୁଅ ।"

୩୨. ରାଣୀ ନିଜ ପାରିଷଦମାନଙ୍କୁ ପଚାରିଲା, "ହେ ପାରିଷଦଗଣ! ଏବିଷୟରେ ମୋତେ ପରାମର୍ଶ ଦିଅ। ମୁଁ ତୁମମାନଙ୍କ ଅନୁପସ୍ଥିତିରେ କୋଣସି ନିଷ୍ପତ୍ତି ନିଏନାହିଁ।" ୩୩. ସେମାନେ କହିଲେ, "ଆମେ ବୀର ଏବଂ ଦକ୍ଷ ଯୋଦ୍ଧା ମଧ୍ୟ। ନିଷ୍ପତ୍ତି ଆପଣଙ୍କ ହାତରେ। ଆପଣ ନିଜେ ବିଚାର କରନ୍ତୁ ଯେ କି' ଆଦେଶ ଦେବେ।" ୩୪. ରାଣୀ କହିଲା, "ଯେତେବେଳେ ରାଜପୁରୁଷମାନେ କୌଣସି ସହର ଉପରେ ଆକ୍ରମଣ କରନ୍ତି, ତାକୁ ଧ୍ୱସ୍ତବିଧ୍ୱସ୍ତ କରିଦିଅନ୍ତି ଏବଂ ସେଠାର ପ୍ରତିଷ୍ଠିତ ଲୋକମାନଙ୍କୁ ଲାଂଛିତ କରନ୍ତି। ଏମାନେ ମଧ୍ୟ ସେଇୟା କରିବେ। ୩୫. ମୁଁ ସେମାନଙ୍କ ପାଖକୁ କିଛି ଉପହାର ପଠାଉଛି। ଦେଖାଯାଉ, ଦୂତମାନେ କି ଉତ୍ତର ନେଇ ଆସୁଛନ୍ତି।"

୩୬. ପୁଣି ଯେତେବେଳେ ତା' ଦୂତ ଉପହାର ନେଇ ସୁଲେମାନଙ୍କ ପାଖରେ ପହଁଚିଲା ସେ ତାକୁ କହିଲେ, "ତୁମେମାନେ ଧନ ଦେଇ ମୋତେ ସାହାଯ୍ୟ କରିବାକୁ ଚାହୁଁଛ କିନ୍ତୁ ଅଲ୍ଲାହ୍ ମୋତେ ଯାହା ଦେଇଛନ୍ତି ତାହା ତୁମମାନଙ୍କୁ ଦିଆ ଯାଇଥିବା ଧନସମ୍ପଦ ଠାରୁ ଢେର ଭଲ। ବରଂ ତୁମେମାନେ ନିଜ ଉପହାର ସହ ଆନନ୍ଦ କର। ୩୭. ସେମାନଙ୍କ ପାଖକୁ ଫେରିଯାଅ (ଏବଂ ଜଣାଇଦିଅ ଯେ) ଆମ୍ଭେ ଏଭଳି ସୈନ୍ୟବାହିନୀ ସହିତ ସେମାନଙ୍କ ଉପରେ ଆକ୍ରମଣ କରିବୁ ଯାହାର ମୁକାବିଲା ସେମାନେ କରି ପାରିବେନାହିଁ। ଆମ୍ଭେ ସେମାନଙ୍କୁ ଲାଂଛିତ ଓ ଅପମାନିତ କରି ସେଠାରୁ ବାହାର କରିଦେବୁ।"

୩୮. ପୁଣି (ସୁଲେମାନ ପାରିଷଦବର୍ଗଙ୍କୁ) କହିଲେ, "ହେ ପାରିଷଦବର୍ଗ! ସେମାନେ ବଶତା ସ୍ୱୀକାର କରି ଏଠାରେ ପହଁଚିବା ପୂର୍ବରୁ ତୁମମାନଙ୍କ ମଧ୍ୟରେ କିଏ ଅଛି ଯିଏ ତା' ସିଂହାସନ ମୋ' ପାଖକୁ ଆଣିପାରିବ?" ୩୯. ଜଣେ ଶକ୍ତିଶାଳୀ ଜିନ୍ କହିଲା, "ଆପଣ ନିଜ ସ୍ଥାନରୁ ଉଠିବା ପୂର୍ବରୁ ମୁଁ ଏହା ଆପଣଙ୍କ ପାଖକୁ ନେଇ ଆସିବି। ମୁଁ ଏହା କରିବାକୁ ସକ୍ଷମ ଏବଂ ମୁଁ ବିଶ୍ୱସ୍ତ ମଧ୍ୟ।" ୪୦. ଗ୍ରନ୍ଥଜ୍ଞାନ ପ୍ରାପ୍ତ କରିଥିବା ଜଣେ ବ୍ୟକ୍ତି କହିଲା, "ଆପଣଙ୍କ ଆଖିର ପଲକ ପଡ଼ିବା ପୂର୍ବରୁ ମୁଁ ଆପଣଙ୍କ ପାଖକୁ ଏହା ନେଇଆସିବି। ପୁଣି ସୁଲେମାନ ସେହି ସିଂହାସନକୁ ନିଜ ପାଖରେ ଥୁଆ ହୋଇଥିବାର ଦେଖି କହିଲେ, "ଏହା ମୋ'

ଈଶ୍ୱରଙ୍କର କୃପା । ଏହାଦ୍ୱାରା ସେ ମୋ'ର ପରୀକ୍ଷା ନେଉଛନ୍ତି ଯେ ମୁଁ ତାଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛି ନା କୃତଘ୍ନ ହେଉଛି । ଯିଏ ତାଙ୍କ ପ୍ରତି କୃତଜ୍ଞ ହୁଏ ସେ ନିଜ ମଂଗଳ ପାଇଁ ହୁଏ ଏବଂ ଯିଏ କୃତଘ୍ନ ହୁଏ, (ସେ ଜାଣି ରଖୁ ଯେ) ମୋ'ଈଶ୍ୱର ଆବଶ୍ୟକତା ରହିତ ଏବଂ ସକଳ ଐଶ୍ୱର୍ଯ୍ୟର ଅଧିକାରୀ ।"

୪୧. ସୁଲେମାନ (ନିଜ ସେବକମାନଙ୍କୁ) କହିଲେ, "ତା' ସିଂହାସନର ରୂପ ବଦଳି ଦିଅ । ଦେଖିବା ଯେ ସେ ଏହାକୁ ଚିହ୍ନି ପାରୁଛି ନା ନାହିଁ?" ୪୨. ଯେତେବେଳେ ରାଣୀ ଆସି ପହଁଚିଲା, ତାକୁ ପଚରାଗଲା, "କ'ଣ ଆପଣଙ୍କ ସିଂହାସନଟି ଏହିପରି ?" ସେ ଉତ୍ତର ଦେଲା, "ଏହାତ ଅବିକଳ ସେହି ସିଂହାସନ । ଆମକୁ (ସୁଲେମାନଙ୍କ ବିଷୟରେ) ପୂର୍ବରୁ ଜଣା ପଡ଼ି ଯାଇଥିଲା ଏବଂ ଆମେ ଆନୁଗତ୍ୟ ସ୍ୱୀକାର କରି ସାରିଛୁ ।" ୪୩. ସେ ଅଲ୍ଲାହଙ୍କୁ ଛାଡ଼ି ଅନ୍ୟମାନଙ୍କର ପୂଜା କରୁଥିଲା ଯାହା କରିବାକୁ ସୁଲେମାନ ତାକୁ ମନାକଲେ । ସେ ଏକ ନାସ୍ତିକ ସଂପ୍ରଦାୟର ମହିଳା ଥିଲା । ୪୪. ପୁଣି ତାକୁ ରାଜମହଲ ଭିତରେ ପ୍ରବେଶ କରିବାକୁ କୁହାଗଲା । ଯେତେବେଳେ ସେ (ଏହାର ଚଟାଣ) ଦେଖିଲା, ତାକୁ ପାଣି ମନେ କରି ନିଜ ଗୋଡ଼ରୁ ବସ୍ତ୍ର ଟେକିଦେଲା । (ଏହା ଦେଖି) ସୁଲେମାନ କହିଲେ, "ଏହି ପ୍ରାସାଦଟିର ଚଟାଣରେ କାଚ ଲାଗିଛି (ଅର୍ଥାତ୍ ପାଣି କାଚ ତଳେ ଅଛି) ।" ସେ କହିଲା, "ହେ ପ୍ରଭୁ! ମୁଁ ନିଜର ଅନିଷ୍ଟ କରିଛି । ଏବେ ସୁଲେମାନଙ୍କ ସହିତ ମୁଁ ସାରା ଜଗତର ପାଳନକର୍ତ୍ତାଙ୍କ ପାଖରେ ନିଜକୁ ସମର୍ପଣ କରୁଛି ।"

୪୫. ଆମ୍ଭେ ସମୁଦ୍ ସଂପ୍ରଦାୟ ପାଖକୁ ସେମାନଙ୍କ ଭାଇ ସ୍ୱାଲେହଙ୍କୁ (ଏହି ବାର୍ତ୍ତା ଦେଇ) ପଠାଇଥିଲୁ ଯେ ସେମାନେ ଅଲ୍ଲାହଙ୍କର ଉପାସନା କରନ୍ତୁ କିନ୍ତୁ ସେମାନେ ଦୁଇ ଭାଗ ହୋଇ ପରସ୍ପର ମଧ୍ୟରେ ବିବାଦ କରିବାକୁ ଲାଗିଲେ । ୪୬. ସ୍ୱାଲେହ କହିଲେ, "ଭାଇମାନେ ! ତୁମେମାନେ ନିଜର ମଙ୍ଗଳ ପରିବର୍ତ୍ତେ ଅମଙ୍ଗଳ ପାଇଁ କାହିଁକି ଏତେ ଉଚ୍ଛନ୍ନ ହେଉଛ ? ଅଲ୍ଲାହଙ୍କଠାରେ କାହିଁକି କ୍ଷମାପ୍ରାର୍ଥନା କରୁନାହଁ? ହୁଏତ ତୁମମାନଙ୍କ ପ୍ରତି ତାଙ୍କର କୃପା ହେବ ।" ୪୭. ସେମାନେ ଉତ୍ତର ଦେଲେ, "ଆମେ ତୁମ ସହିତ ତୁମ ସାଥିମାନଙ୍କୁ ମଧ୍ୟ ଅଶୁଭ ମନେ କରୁଛୁ ।" ସ୍ୱାଲେହ କହିଲେ, "ତୁମମାନଙ୍କର ଶୁଭ-ଅଶୁଭ ଅଲ୍ଲାହଙ୍କ ହାତରେ । ବାସ୍ତବରେ ତୁମମାନଙ୍କର ପରୀକ୍ଷା ନିଆଯାଉଛି ।"

୪୮. (ସ୍ୱାଲେହଙ୍କ) ସହରରେ ନଅ ଜଣ ଲୋକ ଥିଲେ, ଯେଉଁମାନେ ସେହି ଅଂଚଳରେ ଅଶାନ୍ତି ସୃଷ୍ଟି କରୁଥିଲେ କିନ୍ତୁ କୌଣସି ସୁଧାର କାର୍ଯ୍ୟ କରୁ ନଥିଲେ । ୪୯. ସେମାନେ ପରସ୍ପରକୁ କହିଲେ, "ଚାଲ ଆମେ ଅଲ୍ଲାହ୍‌ଙ୍କ ନାଁରେ ନିୟମ କରିବା ଯେ ଆମେ ସ୍ୱାଲେହ ଓ ତାଙ୍କ ପରିବାର ଉପରେ ରାତାରାତି ଆକ୍ରମଣ କରି ସେମାନଙ୍କୁ ହତ୍ୟା କରିବା ଏବଂ ତା'ପରେ ତାଙ୍କ ଆତ୍ମୀୟମାନଙ୍କୁ କହିଦେବା ଯେ ତାଙ୍କ ପରିବାରର ହତ୍ୟା ସମୟରେ ଆମେ ଘଟଣାସ୍ଥଳରେ ଉପସ୍ଥିତ ନଥିଲୁ ଏବଂ ଆମେ ସଂପୂର୍ଣ ସତ କହୁଛୁ ।" ୫୦. ସେମାନେ ଗୋଟିଏ ଚକ୍ରାନ୍ତ କଲେ ଏବଂ ଆମ୍ଭେ ମଧ୍ୟ ଏକ ଯୋଜନା କଲୁ ଯାହା ବିଷୟରେ ସେମାନଙ୍କୁ ଜଣା ନଥିଲା । ୫୧. ଦେଖିନିଅ, ସେମାନଙ୍କ ଚାଲାକିର କି ପରିଣାମ ହେଲା । ଆମ୍ଭେ ସେମାନଙ୍କୁ ଏବଂ ସେମାନଙ୍କ ସଂପ୍ରଦାୟକୁ ସମୂଳେ ଧ୍ୱଂସ କରିଦେଲୁ । ୫୨. ଏବେ ଦେଖ, ଏହି ଘରଗୁଡ଼ିକ ସେମାନଙ୍କର ଦୁରାଚାର ଯୋଗୁଁ କିପରି ଧ୍ୱସ୍ତ-ବିଧ୍ୱସ୍ତ ହୋଇ ପଡ଼ିରହିଛି । ଏଥିରେ ଜ୍ଞାନୀ ଲୋକମାନଙ୍କ ପାଇଁ ଏକ ସଂକେତ ଅଛି । ୫୩. ଯେଉଁମାନେ ବିଶ୍ୱାସ କରିଥିଲେ ଏବଂ ସଦାଚାରୀ ଥିଲେ, ଆମ୍ଭେ ସେମାନଙ୍କୁ ରକ୍ଷା କରିଥିଲୁ ।

୫୪. ଲୁତ୍‌ଙ୍କୁ (ସ୍ମରଣ କର) ଯେତେବେଳେ ସେ ତାଙ୍କ ସଂପ୍ରଦାୟକୁ କହିଲେ, "ତୁମେମାନେ କ'ଣ ସମସ୍ତଙ୍କ ସାମନାରେ ଅଶ୍ଳୀଳ କର୍ମ କରୁଛ ? ୫୫. ଏବଂ ନାରୀମାନଙ୍କ ପରିବର୍ତ୍ତେ ପୁରୁଷମାନଙ୍କୁ ସମ୍ଭୋଗ କରୁଛ ? ପ୍ରକୃତରେ ତୁମେମାନେ ନିହାତି ମୂର୍ଖ ।" ୫୬. ତାଙ୍କ ସଂପ୍ରଦାୟ ପାଖରେ ଏହାର କୌଣସି ଉତ୍ତର ନଥିଲା । ସେମାନେ କେବଳ ଏତିକି କହିଲେ, "ଲୁତ୍‌ଙ୍କ ପରିବାରକୁ ସହରରୁ ବାହାର କରିଦିଅ । ସେମାନେ ନିଜକୁ ଭାରି ପବିତ୍ର ମନେ କରୁଛନ୍ତି ।" ୫୭. ପୁଣି ଆମ୍ଭେ ଲୁତ୍ ଓ ତାଙ୍କ ପରିବାରକୁ ରକ୍ଷା କଲୁ । କେବଳ ତାଙ୍କ ପତ୍ନୀ ରହିଗଲା ଯାହାର (ବିନାଶର) ନିଷ୍ପତ୍ତି ଆମ୍ଭେ କରି ସାରିଥିଲୁ । ୫୮. ଯେଉଁମାନଙ୍କୁ ପୂର୍ବରୁ ସାବଧାନ କରାଯାଇ ଥିଲା, ସେମାନଙ୍କ ଉପରେ ଆମ୍ଭେ ଏକ ବିଶେଷ ବର୍ଷା କଲୁ ଯାହା ଏକ ବିନାଶକାରୀ ବର୍ଷା ଥିଲା ।

୫୯. କୁହ, "ଅଲ୍ଲାହ୍ ହିଁ ସକଳ ପ୍ରଶଂସାର ଯୋଗ୍ୟ । ମଙ୍ଗଳ ହେଉ ତାଙ୍କ ଭକ୍ତମାନଙ୍କର ଯେଉଁମାନଙ୍କୁ ସେ ପସନ୍ଦ କଲେ । ତେବେ ଅଲ୍ଲାହ୍ ଭଲ ବା ସେମାନେ ଭଲ, ଯେଉଁମାନଙ୍କୁ ଏମାନେ ଅଲ୍ଲାହଙ୍କର ସମକକ୍ଷ କରୁଛନ୍ତି ?

୬୦. କିଏ ପୃଥିବୀ ଓ ଆକାଶ ସୃଷ୍ଟି କରିଛି ଏବଂ କିଏ ତୁମମାନଙ୍କ ପାଇଁ ଆକାଶରୁ ଜଳ ବର୍ଷା କରେ ? ଆମ୍ଭେହିଁ ଏହାଦ୍ୱାରା ରମଣୀୟ ଉଦ୍ୟାନ ସୃଷ୍ଟି କରୁ । ଏହି ବୃକ୍ଷଲତାଗୁଡ଼ିକୁ ଉତ୍ପନ୍ନ କରିବା ତୁମମାନଙ୍କ ପକ୍ଷରେ ସମ୍ଭବପର ନଥିଲା । କ'ଣ ଅଲ୍ଲାହଙ୍କ ସହିତ ଅନ୍ୟ କୌଣସି ଈଶ୍ୱର ମଧ୍ୟ (ଏହି କାର୍ଯ୍ୟରେ ଅଂଶୀଦାର) ଅଛନ୍ତି ? (ଆଦୌ ନୁହେଁ) ବରଂ ଏମାନେ ବାଟବଣା ହୋଇ ଯାଉଛନ୍ତି ।

୬୧. କିଏ ଧରାପୃଷ୍ଠକୁ ବାସୋପଯୋଗୀ କଲେ, ଏଥିରେ ନଦନଦୀ ସୃଷ୍ଟି କଲେ, ଏହାକୁ ସ୍ଥିର ରଖିବା ପାଇଁ ପାହାଡ଼-ପର୍ବତ ସୃଷ୍ଟିକଲେ ଏବଂ ଦୁଇ ସମୁଦ୍ର ମଧ୍ୟରେ ଏକ (ଅଦୃଶ୍ୟ) ପ୍ରାଚୀର ସୃଷ୍ଟି କରିଦେଲେ ? କ'ଣ ଅଲ୍ଲାହଙ୍କ ସହିତ ଅନ୍ୟ କୌଣସି ଈଶ୍ୱର ମଧ୍ୟ (ଏହି କାର୍ଯ୍ୟରେ ଅଂଶୀଦାର) ଅଛନ୍ତି ? କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଏହା ଜାଣନ୍ତିନାହିଁ ।

୬୨. ଦୁଃଖୀ ଡାକିଲେ, କିଏ ତା' ଗୁହାରୀ ଶୁଣେ ଏବଂ କିଏ ତା' ଦୁଃଖ ନିବାରଣ କରେ ? କିଏ ଭୂପୃଷ୍ଠରେ ତୁମମାନଙ୍କୁ (ତୁମ ପୂର୍ବଜମାନଙ୍କର) ଉତ୍ତରାଧିକାରୀ କରେ ? କ'ଣ ଅଲ୍ଲାହଙ୍କ ସହିତ ଅନ୍ୟ କୌଣସି ଈଶ୍ୱର ମଧ୍ୟ (ଏହି କାର୍ଯ୍ୟରେ ଅଂଶୀଦାର) ଅଛନ୍ତି ? ପ୍ରକୃତରେ ତୁମେମାନେ କ୍ୱଚିତ ଧ୍ୟାନ ଦିଅ ।

୬୩. କିଏ ତୁମମାନଙ୍କୁ ଜଳ ଓ ସ୍ଥଳର ଅନ୍ଧକାର ମଧ୍ୟରେ ବାଟ ଦେଖାଏ ଏବଂ କିଏ ନିଜର କରୁଣା (ଅର୍ଥାତ୍ ବର୍ଷା) ପୂର୍ବରୁ ଶୁଭସୂଚନା ଦେଇ ଶୀତଳ ପବନ ପଠାଇଥାଏ ? କ'ଣ (ବ୍ରହ୍ମାଣ୍ଡରେ) ଅଲ୍ଲାହଙ୍କ ସହିତ ଅନ୍ୟ କୌଣସି ଈଶ୍ୱର ମଧ୍ୟ ଅଛନ୍ତି ? ଅଲ୍ଲାହ୍ ସେମାନଙ୍କର ବହୁଈଶ୍ୱରବାଦରୁ ବହୁ ଉର୍ଦ୍ଧ୍ୱରେ ।

୬୪. କିଏ ସୃଷ୍ଟିର ପ୍ରାରମ୍ଭ କରିଛି ଏବଂ ଏହାର ପୁନରାବୃତ୍ତି ମଧ୍ୟ କରିବ ? କିଏ ଧରିତ୍ରୀ ଓ ଆକାଶରୁ ତୁମମାନଙ୍କୁ ଆହାର ଯୋଗାଏ ? କ'ଣ ଅଲ୍ଲାହଙ୍କ ସହିତ ଅନ୍ୟ କୌଣସି ଈଶ୍ୱର ମଧ୍ୟ (ଏହି କାର୍ଯ୍ୟରେ ଅଂଶୀଦାର) ଅଛନ୍ତି ? ସେମାନଙ୍କୁ କୁହ, "ଯଦି ତୁମେମାନେ ସତ୍ୟବାଦୀ, ତେବେ ନିଜର ପ୍ରମାଣ ଦିଅ ।"

୬୫. ସେମାନଙ୍କୁ କହିଦିଅ, "ପୃଥିବୀ ଓ ଆକାଶରେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଅଦୃଷ୍ଟ ବିଷୟରେ ଜାଣନ୍ତିନାହିଁ କିମ୍ବା ସେମାନଙ୍କୁ ଏହା ମଧ୍ୟ ଜଣାନାହିଁ ଯେ ସେମାନେ କେବେ ପୁନର୍ଜୀବନ ପାଇ ଉଠିବେ।" ୬୬. ମାତ୍ର ପରଲୋକ ବିଷୟରେ ଏମାନଙ୍କର ଜ୍ଞାନ ଲୋପ ପାଇଯାଇଛି। ଏମାନେ ଏବିଷୟରେ ସନ୍ଦେହରେ ରହିଛନ୍ତି, ବରଂ ଅନ୍ଧ ହୋଇ ଯାଇଛନ୍ତି।

୬୭. ନାସ୍ତିକମାନେ କହନ୍ତି, "ଯେତେବେଳେ ଆମେ ଓ ଆମ ପୂର୍ବପୁରୁଷମାନେ ମାଟିରେ ମିଶିଯିବୁ, କ'ଣ ପ୍ରକୃତରେ ପୁଣି ପୁନର୍ଜୀବନ ପାଇ ଉଠିବୁ? ୬୮. ଏହି କଥା ଆମକୁ କୁହାଯାଇଛି ଏବଂ ଏହିକଥା ଆମ ପୂର୍ବରୁ ଆମ ପୂର୍ବଜମାନଙ୍କୁ ମଧ୍ୟ କୁହା ଯାଇଥିଲା। ଏଗୁଡ଼ାକ କେବଳ ପ୍ରାଚୀନ କାଳର ଲୋକକଥା।" ୬୯. ସେମାନଙ୍କୁ କୁହ, "ଧରାପୃଷ୍ଠରେ ବୁଲାବୁଲି କରି ଦେଖ ଯେ ପାପୀମାନଙ୍କର କିଭଳି ପରିଣାମ ହେଲା।" ୭୦. (ହେ ବାର୍ତ୍ତାବହ!) ସେମାନଙ୍କ ଅବସ୍ଥା ଯୋଗୁଁ ଦୁଃଖ କରନାହିଁ କିମ୍ବା ସେମାନଙ୍କ ଚକ୍ରାନ୍ତ ଯୋଗୁଁ ମନ ଉଣା କରନାହିଁ। ୭୧. ସେମାନେ କହୁଛନ୍ତି ଯେ ଯଦି ତୁମେ ସତ୍ୟବାଦୀ, ତେବେ ଏହି (ଶାସ୍ତିର) ଧମକ କେବେ ସତ ହେବ? ୭୨. କହିଦିଅ, "ବିଚିତ୍ର ନୁହେଁ ଯେ ଯେଉଁ ଦୈବୀଦଣ୍ଡ ପାଇଁ ତୁମେମାନେ ଉଛନ୍ନ ହେଉଛ, ହୁଏତ ସେଥିରୁ କିଛି ତୁମମାନଙ୍କର ନିକଟତର ହେଲାଣି।"

୭୩. ବାସ୍ତବରେ ତୁମ ପ୍ରଭୁ ମାନବଜାତି ପ୍ରତି ଅତ୍ୟନ୍ତ କୃପାଶୀଳ କିନ୍ତୁ ଅଧିକାଂଶ ଲୋକ କୃତଜ୍ଞ ହୁଅନ୍ତିନାହିଁ। ୭୪. ଯାହା ସେମାନେ ନିଜ ମନରେ ଲୁଚାଇ ରଖନ୍ତି ବା ଯାହା ପ୍ରକାଶ କରନ୍ତି, ତୁମ ଈଶ୍ୱର ତାହା ଜାଣନ୍ତି। ୭୫. ପୃଥିବୀ ଓ ଆକାଶର ଏଭଳି କିଛି ଗୁପ୍ତ କଥା ନାହିଁ ଯାହା (ଅଲ୍ଲାହଙ୍କ ପାଖରେ ଥିବା) ଏକ ପରିଷ୍କାର ଗ୍ରନ୍ଥରେ ଲିପିବଦ୍ଧ ହୋଇ ରହିନାହିଁ।

୭୬. ଏହି କୁରଆନ ଇସ୍ରାଇଲଙ୍କ ବଂଶଜମାନଙ୍କ ପାଖରେ ଏଭଳି ଅନେକ କଥାର ବାସ୍ତବତା ପ୍ରକାଶ କରେ ଯେଉଁଥିରେ ସେମାନେ ମତଭେଦ କରୁଛନ୍ତି। ୭୭. ପ୍ରକୃତରେ ଏହା ସଦ୍‌ବିଶ୍ୱାସୀମାନଙ୍କ ପାଇଁ ଏକ ମାର୍ଗଦର୍ଶନକାରୀ ଗ୍ରନ୍ଥ ଏବଂ ତାଙ୍କର ଏକ କରୁଣା । ୭୮. (ହେ ରସୁଲ!) ତୁମ ପ୍ରଭୁ ନିଜେ ବିଚାର

କରି ସେମାନଙ୍କ ମଧ୍ୟରେ ନିଷ୍ପତ୍ତି କରିଦେବେ । ସେ ପ୍ରବଳ ପରାକ୍ରମଶାଳୀ ଏବଂ ଓ ମହାଜ୍ଞାନୀ । ୭୯. ତେଣୁ ଅଲ୍ଲାହଙ୍କ ଉପରେ ଭରସା ରଖ । ତୁମେ ସଂପୂର୍ଣ୍ଣ ଠିକ୍ ବାଟରେ ରହିଛ । ୮୦. ତୁମେ ମୃତ ଲୋକମାନଙ୍କୁ ନିଜର କଥା ଶୁଣାଇ ପାରିବନାହିଁ ବା ବଧିରମାନେ ପ୍ରତ୍ୟାଖ୍ୟାନ କଲାପରେ, ସେମାନଙ୍କୁ ମଧ୍ୟ ଶୁଣାଇ ପାରିବନାହିଁ, ୮୧. କିମ୍ବା ପଥଭ୍ରଷ୍ଟ ହୋଇଯାଇଥିବା ଅନ୍ଧମାନଙ୍କୁ ବାଟକୁ ଆଣି ପାରିବନାହିଁ । ତୁମେ କେବଳ ସେଇମାନଙ୍କୁ (ନିଜର କଥା) ଶୁଣାଇ ପାରିବ, ଯେଉଁମାନେ ଆମ୍ଭର ବାଣୀରେ ବିଶ୍ୱାସ କରନ୍ତି ଏବଂ ଆଜ୍ଞାକାରୀ ହୁଅନ୍ତି ।

୮୨. ଯେତେବେଳେ ସେମାନଙ୍କ ବିଷୟରେ ଆମ୍ଭର ନିଷ୍ପତ୍ତି ହୋଇଯିବ, ଆମ୍ଭେ ସେମାନଙ୍କ ପାଇଁ ଭୂଗର୍ଭରୁ ଗୋଟିଏ ଜୀବ ସୃଷ୍ଟି କରିବୁ ଯିଏ ସେମାନଙ୍କ ସହିତ କଥାବାର୍ତ୍ତା କରି କହିବ ଯେ ସେହି ଲୋକମାନେ ଆମ୍ଭର ବାଣୀ ପ୍ରତି ବିଶ୍ୱାସ କରୁ ନଥିଲେ । ୮୩. ସେଦିନ ଆମ୍ଭେ ପ୍ରତ୍ୟେକ ସମାଜରୁ ସେହିମାନଙ୍କର ଦଳକୁ ଏକତ୍ରିତ କରିବୁ ଯେଉଁମାନେ ଆମ୍ଭର ବାଣୀକୁ ମିଥ୍ୟା ବୋଲି କହିଥିଲେ ଏବଂ ପୁଣି ସେମାନଙ୍କୁ ବିଭିନ୍ନ ଶ୍ରେଣୀରେ ବାଣ୍ଟି ଦିଆଯିବ । ୮୪. ପୁଣି ଯେତେବେଳେ ସେମାନେ ସମସ୍ତେ ନିଜ ପାଳନକର୍ତ୍ତାଙ୍କ ସମ୍ମୁଖରେ ଉପସ୍ଥିତ ହେବେ, ଅଲ୍ଲାହ୍ କହିବେ, "କ'ଣ ତୁମେମାନେ ମୋ' ବାଣୀକୁ ଭଲରୂପେ ନବୁଝି ମିଥ୍ୟା ବୋଲି କହିଦେଲ ନା ଆଉ କ'ଣ କଲ ? ୮୫. ସେମାନଙ୍କର ଅନ୍ୟାୟ-ଅତ୍ୟାଚାର ଯୋଗୁଁ ସେମାନଙ୍କ ପ୍ରତି ଶାସ୍ତିର ଯଥାର୍ଥତା ପ୍ରମାଣିତ ହୋଇଯିବ ଏବଂ ସେମାନଙ୍କ ପାଟିରୁ କଥା ବାହାରିବ ନାହିଁ ।

୮୬. କ'ଣ ସେମାନେ ଲକ୍ଷ୍ୟ କରୁନାହାନ୍ତି ଯେ ଆମ୍ଭେ ସେମାନଙ୍କ ବିଶ୍ରାମ ପାଇଁ ରାତି ସୃଷ୍ଟି କରିଛୁ ଏବଂ (ଦୈନନ୍ଦିନର କର୍ମ କରିବା ପାଇଁ) ଦିନକୁ ପ୍ରକାଶମାନ କରିଛୁ ? ଏଥିରେ ବିଶ୍ୱାସ କରୁଥିବା ଲୋକଙ୍କ ପାଇଁ (ତାଙ୍କ ମହିମାର) ଅନେକ ସଂକେତ ରହିଛି ।

୮୭. ଯେଉଁଦିନ ତୂରୀ ଫୁଙ୍କି ଦିଆଯିବ, ସେଦିନ ପୃଥିବୀ ଓ ଆକାଶରେ ଯେଉଁମାନେ ଅଛନ୍ତି, ସମସ୍ତେ ଭୟରେ ଥରିବାକୁ ଲାଗିବେ । ହଁ, ଅଲ୍ଲାହ୍ ଯେଉଁମାନଙ୍କୁ ରକ୍ଷା କରିବାକୁ ଚାହିଁବେ ସେମାନଙ୍କ କଥା ଭିନ୍ନ । ସମସ୍ତେ ବିନୀତ

ଭାବରେ ତାଙ୍କ ଛାମୁରେ ଉପସ୍ଥିତ ହୋଇଯିବେ । ୮୮. ତୁମେ ପାହାଡ଼ଗୁଡ଼ିକୁ ଦେଖି ମନେକରୁଛ ଯେ ସେଗୁଡ଼ିକୁ ନିଶ୍ଚଳ ହୋଇ ଠିଆ ହୋଇଛନ୍ତି ମାତ୍ର ସେଗୁଡ଼ିକ (ସେଦିନ) ବାଦଲ ପରି ଉଡୁଥିବେ । ଏହା ଅଲ୍ଲାହଙ୍କର କୃତି, ଯିଏ ପ୍ରତ୍ୟେକ ବସ୍ତୁକୁ ନିଖୁଣ ଭାବରେ ଗଢ଼ିଛନ୍ତି । ତୁମେମାନେ ଯାହା କର, ସେ ଜାଣନ୍ତି । ୮୯. ଯିଏ ସେଦିନ ସତ୍‌କର୍ମ କରି (ଆମ୍ଭ ପାଖକୁ) ଆସିବ, ତାକୁ ତା'ଅପେକ୍ଷା ଢ଼େର ଭଲ ପୁରସ୍କାର ମିଳିବ । ଏଭଳି ଲୋକମାନେ ସେଦିନ ନିର୍ଭୟରେ ଓ ନିରାପଦରେ ରହିବେ । ୯୦. ଏବଂ ଯିଏ ଅସତ୍ କର୍ମ କରି ଆସିବ, ଏଭଳି ଲୋକମାନଙ୍କୁ ତଳମୁହାଁ କରି ନର୍କରେ ଫିଙ୍ଗି ଦିଆଯିବ ।  ତୁମେମାନେ ଯେମିତି କର୍ମ କରୁଥିଲ, ସେମିତି ଫଳ ଭୋଗିବ ।

୯୧. (କୁହ !) "ମୋତେ ଆଜ୍ଞା ଦିଆଯାଇଛି ଯେ ମୁଁ ଏହି (ମକ୍କା) ନଗରୀର ଅଧୀଶ୍ୱରଙ୍କର ସେବା-ଉପାସନା କରିବି ଯିଏ ଏହି ସହରକୁ ଏକ ପବିତ୍ର ଧାମ କରିଛନ୍ତି । ସକଳ ସୃଷ୍ଟି ତାଙ୍କରି । ମୋତେ ଆଦେଶ ଦିଆଯାଇଛି ଯେ ମୁଁ ତାଙ୍କର ଆଜ୍ଞାଧୀନ ହୋଇ ରହିବି, ୯୨. ଏବଂ କୁର୍‌ଆନ ପଢ଼ି ଶୁଣାଇବି ।" ସୁତରାଂ,  ଯିଏ ଠିକ୍ ବାଟକୁ ଆସିବ ସେ ନିଜର ମଂଗଳ ପାଇଁ ଆସିବ ଏବଂ ଯିଏ ଅବାଟରେ ଯିବ, ତାକୁ କହିଦିଅ ଯେ ତୁମମାନଙ୍କୁ କେବଳ ସାବଧାନ କରିବା ମୋ' କାମ । ୯୩. କୁହ ଯେ ଅଲ୍ଲାହ୍ ହିଁ ସକଳ ପ୍ରଶଂସାର ଯୋଗ୍ୟ । ଅତିଶୀଘ୍ର ସେ ତୁମମାନଙ୍କୁ ନିଜର ନିଦର୍ଶନ ଦେଖାଇବେ ଏବଂ ତୁମେମାନେ ସେଗୁଡ଼ିକୁ ଚିହ୍ନିପାରିବ । ତୁମ ପାଳନକର୍ତ୍ତା ତୁମ କାର୍ଯ୍ୟକଳାପ ସମ୍ପର୍କରେ ଅଜ୍ଞ ନୁହନ୍ତି ।

## ଅଧ୍ୟାୟ ୨୮, ଅଲ୍ କସସ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ତା – ସୀମ୍ - ମୀମ୍ । ୨. ଏଗୁଡ଼ିକ ପ୍ରାଂଜଳ ଭାବରେ ବର୍ଣ୍ଣନା କରୁଥିବା କୁର୍‌ଆନ ଗ୍ରନ୍ଥର ବାଣୀ ।

୩. (ହେ ବାର୍ତ୍ତାବହ !) ବିଶ୍ୱାସ କରୁଥିବା ଲୋକମାନଙ୍କ ପାଇଁ ଆମ୍ଭେ ମୁ'ସା ଓ ଫିରଔନର ଘଟଣାରୁ କିଛି ତୁମକୁ ସଠିକ୍ ଭାବରେ ଶୁଣାଉଛୁ । ୪. ବାସ୍ତବରେ ଫିରଔନ ଭୂପୃଷ୍ଠରେ ଭାରି ଅହଙ୍କାରୀ ହୋଇ ଯାଇଥିଲା ଏବଂ

ଦେଶବାସୀଙ୍କୁ ବିଭିନ୍ନ ଦଳରେ ବାଣ୍ଟି ଦେଇଥିଲା ଏବଂ ସେମାନଙ୍କ ମଧ୍ୟରୁ ଗୋଟିଏ ସମୁଦାୟକୁ ନିସ୍ପେଷିତ କରୁଥିଲା । ସେ ସେମାନଙ୍କ ପୁତ୍ରମାନଙ୍କୁ ହତ୍ୟା କରୁଥିଲା ଏବଂ କନ୍ୟାମାନଙ୍କୁ ଜୀବିତ ରଖୁଥିଲା । ପ୍ରକୃତରେ ସେ ଜଣେ ଭ୍ରଷ୍ଟାଚାରୀ ଥିଲା । ୫. ଆମ୍ଭେ ଇଚ୍ଛା କଲୁ ଯେ ଦେଶର ଦଳିତ ଓ ନିସ୍ପେଷିତ ଲୋକମାନଙ୍କ ପ୍ରତି କୃପା କରିବୁ, ସେମାନଙ୍କୁ ଜନନାୟକ କରିବା ସହିତ ଦେଶର ଉତ୍ତରାଧିକାରୀ କରିବୁ । ୬. ଏଥିସହିତ ସେମାନଙ୍କୁ ଦେଶରେ କ୍ଷମତାସୀନ କରିବୁ ଏବଂ ଫିରଔନ, ହାମାନ୍ ଏବଂ ସେମାନଙ୍କର ସୈନ୍ୟସାମନ୍ତମାନଙ୍କୁ ଯାହାର ଆଶଙ୍କା ଅଛି, ତାହା ସେମାନଙ୍କୁ ଦେଖାଇ ଦେବୁ ।

୭. ଆମ୍ଭେ ମୁ'ସାଙ୍କ ମାତାଙ୍କୁ ଆଦିଷ୍ଟବାଣୀ କଲୁ ଯେ ମୁ'ସାଙ୍କୁ ସ୍ତନ୍ୟପାନ କରାଉଥାଅ । ଯଦି ତାଙ୍କ ବିଷୟରେ ତୁମର କୌଣସି ଆଶଙ୍କା ହୁଏ, ତେବେ ତାଙ୍କୁ ନଦୀରେ ଭସାଇ ଦିଅ । ଭୟ କରନା କିମ୍ବା ଦୁଃଖ କରନା । ଆମ୍ଭେ (ଦିନେ) ତାଙ୍କୁ ତୁମ ପାଖକୁ ଫେରାଇ ଆଣିବୁ ଏବଂ ତାଙ୍କୁ ନିଜର ଜଣେ ବାର୍ତ୍ତାବହ ରୂପେ ନିଯୁକ୍ତ କରିବୁ । ୮. ଏହାପରେ ଫିରଔନର ଘର ଲୋକେ (ଶିଶୁ ମୁ'ସାଙ୍କୁ ନଦୀରୁ) ଉଦ୍ଧାର କଲେ (ମାତ୍ର ସେମାନଙ୍କୁ ଜଣା ନଥିଲା) ଯେ ସେ ଦିନେ ସେମାନଙ୍କର ଶତ୍ରୁ ହେବେ ଏବଂ ସେମାନଙ୍କର ଦୁଃଖର କାରଣ ହେବେ । ପ୍ରକୃତରେ ଫିର୍‌ଔନ, ହାମାନ୍ ଓ ସେମାନଙ୍କର ସୈନ୍ୟସାମନ୍ତ ଭୁଲ୍ କଲେ ।

୯. ଫିରଔନର ପତ୍ନୀ ତାକୁ କହିଲା, "ଏହି ପିଲାଟି ଦ୍ୱାରା ଆମ ଦୁହିଁଙ୍କର ଆଖି ତୃପ୍ତ ହେବ । ତେଣୁ, ତାକୁ ମାରି ଦିଅନାହିଁ । ସମ୍ଭବତଃ ସେ ଆମର କୌଣସି କାମରେ ଆସିବ ନହେଲେ ଆମେ ତାକୁ ପୋଷ୍ୟପୁତ୍ର କରିନେବା ।" ସେମାନଙ୍କୁ ଏହାର ପରିଣାମ ଜଣା ନଥିଲା ।

୧୦. ଏପଟେ ମୁ'ସାଙ୍କ ମାଆଙ୍କ ମନ ବିଚଳିତ ହେଲା । ଯଦି (ଆମ୍ଭ କଥାରେ) ବିଶ୍ୱାସ ରଖିବା ଲାଗି ଆମ୍ଭେ ତାଙ୍କ ମନକୁ ମଜଭୁତ କରି ନଥାଆନ୍ତୁ, ତେବେ ସେ (ମୁ'ସାଙ୍କ ରହସ୍ୟ) ପ୍ରକାଶ କରି ଦେଇଥାଆନ୍ତେ । ୧୧. ସେ ମୁ'ସାଙ୍କ ଭଉଣୀକୁ କହିଲେ, "ତୁ ତା' ପଛେପଛେ ଯା ।" ସୁତରାଂ ସେ ଦୂରରୁ ତାଙ୍କ ଉପରେ ନଜର ରଖିଲା ଏବଂ ସେମାନେ କିଛି ଜାଣି ପାରିଲେନାହିଁ । ୧୨.

ପୂର୍ବରୁ ଆମ୍ଭେ ମୁ'ସାଙ୍କ ଉପରେ ପ୍ରତିବନ୍ଧ ଲଗାଇ ଦେଇଥିଲୁ ଯେ ସେ ଅନ୍ୟ କାହାରି କ୍ଷୀରପାନ କରିବେ ନାହିଁ । ତେଣୁ, ମୁ'ସାଙ୍କ ଭଉଣୀ ସେମାନଙ୍କୁ ପ୍ରସ୍ତାବ ଦେଲେ, "ମୁଁ ତୁମମାନଙ୍କୁ ଏମିତି ଏକ ପରିବାର ବିଷୟରେ କହିବି କି, ଯେଉଁମାନେ ଖୁବ୍ ଭଲ ଭାବରେ ତା'ର ଲାଳନପାଳନ କରିବେ ?" ୧୩. ଏହିପରି ଆମ୍ଭେ ମୁ'ସାଙ୍କୁ ତାଙ୍କ ମାଆଙ୍କ ପାଖକୁ ଫେରାଇ ଆଣିଲୁ, ଯାହାଫଳରେ ତାଙ୍କ ଆଖି ତୃପ୍ତ ହେବ ଏବଂ ସେ ଦୁଃଖ କରିବେନାହିଁ ଏବଂ ଏହା ଜାଣିଯିବେ ଯେ ଅଲ୍ଲାହଙ୍କ ବଚନ ସତ୍ୟ, ମାତ୍ର ଅଧିକାଂଶ ଲୋକ ଏହା ଜାଣନ୍ତି ନାହିଁ ।

୧୪. ଯେତେବେଳେ ମୁ'ସା ଯୁବାବସ୍ଥାରେ ପହଁଚିଲେ ଏବଂ ସଂପୂର୍ଣ୍ଣ ଯୁବକ ହୋଇଗଲେ, ଆମ୍ଭେ ତାଙ୍କୁ ସଦ୍‌ଜ୍ଞାନ ଓ ବୁଦ୍ଧିମତ୍ତା ପ୍ରଦାନ କଲୁ । ଭଲ କର୍ମ କରୁଥିବା ଲୋକଙ୍କୁ ଆମ୍ଭେ ଏହିପରି ପୁରସ୍କୃତ କରିଥାଉ । ୧୫. (ଦିନେ) ସେ ଏମିତି ସମୟରେ ସହରରେ ପ୍ରବେଶ କଲେ ଯେତେବେଳେ ସହରବାସୀ ଜାଗ୍ରତ ନଥିଲେ । ସେ ଦେଖିଲେ ଦୁଇଜଣ ବ୍ୟକ୍ତି ପରସ୍ପର ମଧ୍ୟରେ ମାଡ଼ଗୋଳ ହେଉଛନ୍ତି । ଜଣେ ମୁ'ସାଙ୍କ ନିଜ ସଂପ୍ରଦାୟର ଲୋକ ଥିଲା ଏବଂ ଅନ୍ୟ ଜଣକ ତାଙ୍କ ଶତ୍ରୁ ଗୋଷ୍ଠୀର ଥିଲା । ତାଙ୍କ ଗୋଷ୍ଠୀର ବ୍ୟକ୍ତି ଜଣକ ଶତ୍ରୁ ଗୋଷ୍ଠୀର ଲୋକ ବିରୁଦ୍ଧରେ ମୁ'ସାଙ୍କର ସାହାଯ୍ୟ ମାଗିଲା । ତେଣୁ ମୁ'ସା (ଶତ୍ରୁ ଗୋଷ୍ଠୀର) ସେହି ବ୍ୟକ୍ତିକୁ ଏକ ମୁଥ ମାରିଲେ, ଯାହାଫଳରେ ତା'ର ମୃତ୍ୟୁ ହୋଇଗଲା । (ଏହାଦେଖି) ସେ (ଅନୁତପ୍ତ ହୋଇ) କହିଲେ, "ଏହା ଏକ ଶଇତାନୀ କାର୍ଯ୍ୟ । ବାସ୍ତବରେ ସେ (ମଣିଷର) ପରମ ଶତ୍ରୁ ଯିଏ ସେମାନଙ୍କୁ ପଥଭ୍ରଷ୍ଟ କରିଥାଏ ।" ୧୬. ପୁଣି ପ୍ରାର୍ଥନା କଲେ, "ହେ ପ୍ରଭୁ! ମୁଁ ନିଜର ଅନିଷ୍ଟ କରିଛି, ମୋତେ କ୍ଷମା କରିଦିଅ ।" ସୁତରାଂ, ଅଲ୍ଲାହ୍ ତାଙ୍କୁ କ୍ଷମା କରିଦେଲେ । ସେ ଅତ୍ୟନ୍ତ କ୍ଷମାଶୀଳ ଓ ପରମ ଦୟାଳୁ । ୧୭. ମୁସା କହିଲେ, "ହେ ପ୍ରଭୁ! ତୁମେ ମୋ' ପ୍ରତି ଯେଉଁ କୃପା କଲ, (ଏହି ଉପକାର ବଦଳରେ) ମୁଁ ଆଉ କେବେ କୌଣସି ଅପରାଧୀକୁ ସାହାଯ୍ୟ କରିବିନାହିଁ ।"

୧୮. (ପରଦିନ) ସକାଳେ ଯେତେବେଳେ ସେ ଡରିଡରି ଅତି ସନ୍ତର୍ପଣରେ ସହରକୁ ଗଲେ, ଯେଉଁ ବ୍ୟକ୍ତିଜଣକ ପୂର୍ବଦିନ ତାଙ୍କୁ ସାହାଯ୍ୟ

ମାଗିଥିଲା ସେହି ବ୍ୟକ୍ତି ପୁଣି ତାଙ୍କୁ ସାହାଯ୍ୟ ପାଇଁ ଡାକିଲା । (ଏହାଦେଖି) ମୁ'ସା ତାକୁ କହିଲେ, "ତୁ ଭାରି ଦୁଷ୍ଟ ଲୋକ ।" ୧୯. ପୁଣି ଯେତେବେଳେ ମୁ'ସା ସେହି ବ୍ୟକ୍ତିକୁ ଧରିବାକୁ ଉଦ୍ୟତ ହେଲେ, ମୁ'ସାଙ୍କ ସଂପ୍ରଦାୟର ସେହି ବ୍ୟକ୍ତି, ଯିଏ ସେ ଦୁହିଁଙ୍କର ଶତ୍ରୁ ଥିଲା କହିଲା, "ହେ ମୁ'ସା! କ'ଣ ତୁମେ କାଲି ଯେମିତି ଜଣେ ଲୋକକୁ ମାରିଦେଲ, ସେମିତି ମୋତେ ମାରି ଦେବାକୁ ବସିଛ ? ତୁମେ ଦେଶରେ ସ୍ୱେଚ୍ଛାଚାରିତା କରିବାକୁ ଚାହଁ କିନ୍ତୁ ସୁଧାର କାର୍ଯ୍ୟ କରିବାକୁ ଚାହଁନା ।" ୨୦. ପୁଣି ସହରର ଅପର ପାର୍ଶ୍ୱରୁ ଜଣେ ଲୋକ ଧାଇଁଧାଇଁ ଆସି ମୁ'ସାଙ୍କୁ କହିଲା, "(ରାଜାଙ୍କ) ପାରିଷଦମାନଙ୍କ ମଧ୍ୟରେ ତୁମକୁ ହତ୍ୟା କରିବାର ମନ୍ତ୍ରଣା ଚାଲିଛି । ତେଣୁ ଶୀଘ୍ର ଏଠାରୁ ପଳାଇଯାଅ । ମୁଁ ତୁମର ଜଣେ ହିତାକାଂକ୍ଷୀ ।" ୨୧. ତେଣୁ ସେ ଭୟଭୀତ ହୋଇ ସାବଧାନତାର ସହିତ ସେଠାରୁ ବାହାରିଗଲେ ଏବଂ ପ୍ରାର୍ଥନା କଲେ, "ହେ ପ୍ରଭୁ ! ମୋତେ ଅତ୍ୟାଚାରୀ ଲୋକମାନଙ୍କଠାରୁ ରକ୍ଷା କର ।"

୨୨. ଯେତେବେଳେ ସେ ମଦୟନ ଆଡ଼କୁ ମୁହାଁଇଲେ, କହିଲେ, "ମୁଁ ଆଶା କରୁଛି ଯେ ମୋ' ପାଳନକର୍ତ୍ତା ମୋତେ ଠିକ୍ ବାଟରେ ନେବେ ।" ୨୩. ଯେତେବେଳେ ସେ ମଦୟନର ଗୋଟିଏ କୂଅ ପାଖରେ ପହଁଚିଲେ, ଦେଖିଲେ ଯେ ସେଠାରେ କିଛି ଲୋକ (ସେମାନଙ୍କର ପଶୁମାନଙ୍କୁ) ପାଣି ପିଆଉଛନ୍ତି ଏବଂ କିଛି ଦୂରରେ ଦୁଇଜଣ ଯୁବତୀ ସେମାନଙ୍କ ପଶୁଙ୍କୁ ଧରି ଅପେକ୍ଷା କରିଛନ୍ତି । ମୁ'ସା ସେମାନଙ୍କୁ ପଚାରିଲେ,"ତୁମର ସମସ୍ୟା କ'ଣ ?" ସେ ଦୁହେଁ ଉତ୍ତର ଦେଲେ, "ମେଷପାଳକମାନେ ସେମାନଙ୍କ ପଶୁମାନଙ୍କୁ ସେଠାରୁ ନନେବା ପର୍ଯ୍ୟନ୍ତ ଆମେ ଆମ ପଶୁଙ୍କୁ ପାଣି ପିଆଇ ପାରିବୁନାହିଁ । ଆମ ବାପା ଅତିଶୟ ବୃଦ୍ଧ ।" ୨୪. ତେଣୁ, ମୁ'ସା ସେମାନଙ୍କ ପଶୁମାନଙ୍କୁ ପାଣି ପିଆଇଦେଲେ ଏବଂ ତା'ପରେ ଛାଇକୁ ଫେରିଆସି ପ୍ରାର୍ଥନା କଲେ, "ହେ ପ୍ରଭୁ ! ମୁଁ ନିଃସ୍ୱ, ତୁମେ ନିଜ କୃପାରୁ ମୋ' ପ୍ରତି ଯାହା ଅନୁଗ୍ରହ କରିବ ।" ୨୫. (କିଛି ସମୟ ପରେ) ଦୁଇ ଯୁବତୀଙ୍କ ମଧ୍ୟରୁ ଜଣେ ଲାଜେଇ ଲାଜେଇ ତାଙ୍କ ପାଖକୁ ଆସିଲା ଏବଂ କହିଲା, "ଆମ ବାପା ତୁମକୁ ଡାକୁଛନ୍ତି ଯେ ତୁମେ ଆମ ପଶୁମାନଙ୍କୁ ପାଣି ପିଆଇ ଥିବାରୁ ସେ ତୁମକୁ

ଏହାର ପାରିଶ୍ରମିକ ଦେବେ ।” ପୁଣି ଯେତେବେଳେ ମୁ’ସା ତାଙ୍କ ପାଖରେ ପହଁଚିଲେ ଏବଂ ତାଙ୍କ ପାଖରେ ନିଜର ସଂପୂର୍ଣ୍ଣ କାହାଣୀ ବର୍ଣ୍ଣନା କଲେ, ସେ କହିଲେ, “ଭୟ କରନାହିଁ । ଏବେ ତୁମେ ଅତ୍ୟାଚାରୀମାନଙ୍କ କବଳରୁ ରକ୍ଷା ପାଇଯାଇଛ ।”

୨୬. ସେମାନଙ୍କ ମଧ୍ୟରୁ ଜଣେ ଯୁବତୀ କହିଲା. “ବାପା ! ଏହି ବ୍ୟକ୍ତିକୁ ନିଜର ସେବକ ରୂପେ ରଖିନିଅ । ଜଣେ ବଳବାନ ଓ ବିଶ୍ୱସ୍ତ ଲୋକହିଁ ତୁମର ସେବକ ହେବାପାଇଁ ଉପଯୁକ୍ତ ।” ୨୭. (ଏହାପରେ ଯୁବତୀର ପିତା ମୁ’ସାଙ୍କୁ) କହିଲେ, “ମୁଁ ଚାହୁଁଛି ଯେ ନିଜର ଏହି ଦୁଇ ଝିଅଙ୍କ ମଧ୍ୟରୁ ଜଣକ ସହିତ ତୁମର ବିବାହ କରିଦେବି ମାତ୍ର ଏହି ସର୍ତ୍ତରେ ଯେ ତୁମେ ଆଠ ବର୍ଷ ମୋ’ର ସେବା କରିବ । ଯଦି ତୁମେ ସ୍ୱଇଚ୍ଛାରେ ଦଶ ବର୍ଷ ସମ୍ପୂର୍ଣ୍ଣ କର, ତେବେ ଏହା ମୋ’ପ୍ରତି ତୁମର ଉପକାର ହେବ, କିନ୍ତୁ ମୁଁ ତୁମକୁ କଷ୍ଟ ଦେବାକୁ ଚାହେଁନାହିଁ । ଅଲ୍ଲାହ୍ ଚାହିଁଲେ ମୁଁ ଜଣେ ଭଲ ଲୋକ ବୋଲି ତୁମେ ଜାଣିଯିବ ।” ୨୮. ମୁ’ସା କହିଲେ, “ଆମ ଦୁହିଁଙ୍କ ମଧ୍ୟରେ ଏହିକଥା ସ୍ଥିର ହେଲା । ଏହି ଦୁଇଟି ମଧ୍ୟରୁ ମୁଁ ଯେକୌଣସି ଅବଧି ପୂରଣ କରିପାରେ । ତା’ପରେ ମୋ’ ପ୍ରତି କୌଣସି ପ୍ରକାରର ବାଧ୍ୟବାଧକତା କରା ନଯାଉ । ଅଲ୍ଲାହ୍ ଆମ କଥାର ସାକ୍ଷୀ ରହିଲେ ।”

୨୯. ଏହାପରେ ନିର୍ଦ୍ଧାରିତ ସର୍ତ୍ତ ପୂରଣ କରିସାରିବା ପରେ ଯେତେବେଳେ ମୁ’ସା ନିଜ ପରିବାରକୁ ନେଇ ଯାଉଥିଲେ, ସେ ତୁର୍ ପାହାଡ଼ ପଟରେ କିଛି ନିଆଁ ଦେଖିଲେ । ତେଣୁ ସେ ନିଜ ପରିଜନଙ୍କୁ କହିଲେ, “ତୁମେ ଏଇଠି ଥାଅ । ମୋତେ ନିଆଁ ଦେଖାଯାଉଛି । ମୁଁ ଯାଉଛି ସେଠାରୁ (ରାସ୍ତା ବିଷୟରେ) କିଛି ଖବର ଆଣିବି କିମ୍ବା କିଛି ଜଳନ୍ତା ଅଙ୍ଗାର ନେଇଆସିବି ଯେ ତୁମେ ସେକି ହେବ ।” ୩୦. ଯେତେବେଳେ ସେ ସେଠାରେ ପହଁଚିଲେ, ଉପତ୍ୟକାର ଦକ୍ଷିଣ ପାର୍ଶ୍ୱରେ ଏକ ପବିତ୍ର ସ୍ଥାନରେ ଥିବା ଗୋଟିଏ ବୃକ୍ଷ ମଧ୍ୟରୁ ଶବ୍ଦ ଶୁଭିଲା, “ହେ ମୁ’ସା ! ମୁଁ ହିଁ ଜଗତପାଳକ ଅଲ୍ଲାହ୍ । ୩୧. ନିଜର ଲାଠି ତଳେ ପକାଇଦିଅ ।” ଏହାପରେ ଯେତେବେଳେ ସେ ଦେଖିଲେ ଯେ ସେହି ଲାଠିଟି ସାପ ପରି ହଲଚଲ ହେଉଛି, ସେ ବୁଲିପଡ଼ି ପଳାଇବାକୁ ଲାଗିଲେ ଏବଂ ପଛକୁ ମଧ୍ୟ

ଫେରି ଚାହିଁଲେନାହିଁ । (ତେଣୁ ଆମ୍ଭେ କହିଲୁ) "ହେ ମୁ'ସା ! ପାଖକୁ ଆସ ଏବଂ ଭୟ କରନା, ତୁମେ ସଂପୂର୍ଣ୍ଣ ନିରାପଦ ।" ୩୨. ନିଜ ହାତ କାଖ ତଳେ ରଖ । ଏହା ରୋଗାକ୍ରାନ୍ତ ନଥାଇ ମଧ୍ୟ ଶୁଭ୍ର ହୋଇ ବାହାରିବ ଏବଂ ଭୟ ଦୂର କରିବା ସକାଶେ ନିଜ ହାତକୁ ଜାକିନିଅ । ତୁମ ପ୍ରଭୁଙ୍କଠାରୁ ଏହି ଦୁଇଟି ପ୍ରମାଣ ନେଇ ତୁମେ ଫିରଔନ ଓ ତା' ପାରିଷଦମାନଙ୍କ ପାଖକୁ ଯାଅ । ସେମାନେ ଭାରି ଅବାଧ୍ୟ ।" ୩୩. ମୁ'ସା କହିଲେ "ହେ ପ୍ରଭୁ ! ମୁଁ ସେମାନଙ୍କର ଜଣେ ଲୋକକୁ ମାରି ଦେଇଛି । ତେଣୁ, ମୋତେ ଭୟ ଲାଗୁଛି ଯେ ହୁଏତ ସେମାନେ ମୋତେ ହତ୍ୟା କରିଦେବେ । ୩୪. ମୋ' ଭାଇ ହାରୁନଙ୍କ କଥା ମୋ'ଠାରୁ ଅଧିକ ସ୍ପଷ୍ଟ । ତେଣୁ ମୋ' ସହିତ ତାଙ୍କୁ ମୋ'ର ସହଯୋଗୀ ରୂପେ ପଠାଅ ଯେପରିକି ସେ ମୋତେ ସମର୍ଥନ କରିବେ । ମୋ'ର ଆଶଙ୍କା ହେଉଛି ଯେ ସେମାନେ ମୋତେ ମିଥ୍ୟାବାଦୀ ବୋଲି କହିବେ ।" ୩୫. (ଆମ୍ଭେ କହିଲୁ) "ଆମ୍ଭେ ତୁମ ଭାଇଙ୍କ ଦ୍ୱାରା ତୁମର ହାତମୁଠା ଟାଣ କରିବୁ ଏବଂ ତୁମ ଦୁହିଁଙ୍କୁ ଏଭଳି କ୍ଷମତା ଦେବୁ ଯେ ସେମାନେ ତୁମମାନଙ୍କର କୌଣସି ଅନିଷ୍ଟ କରିପାରିବେ ନାହିଁ । ଆମ୍ଭ ନିଦର୍ଶନ ବଳରେ ତୁମେ ଓ ତୁମ ଅନୁଗତମାନେ ନିଶ୍ଚୟ ବିଜୟୀ ହେବ ।"

୩୬. ଯେତେବେଳେ ମୁ'ସା ଆମ୍ଭର ସ୍ପଷ୍ଟ ନିଦର୍ଶନ ନେଇ ସେମାନଙ୍କ ପାଖରେ ପହଁଚିଲେ, ସେମାନେ କହିଲେ, "ଏହା କେବଳ ତୁମମାନଙ୍କର ନିଜ କୃତ ଯାଦୁଖେଳ ବ୍ୟତୀତ ଆଉ କିଛି ନୁହେଁ । ଏଭଳି କଥା ଆମେ ଆମ ବାପ-ଅଜାଙ୍କ କାଳରୁ ଶୁଣିନାହୁଁ ।" ୩୭. ମୁ'ସା କହିଲେ, "ମୋ ଈଶ୍ୱର ଭଲରୂପେ ଜାଣନ୍ତି ଯେ କିଏ ତାଙ୍କଠାରୁ ସତ୍‌ବାର୍ତ୍ତା ନେଇ ଆସିଛି ଏବଂ କାହାର ପରିଣାମ ଭଲ ହେବ । ଦୁରାଚାରୀମାନଙ୍କର ଆଦୌ ମଙ୍ଗଳ ହେବନାହିଁ ।"

୩୮. ଫିରଔନ କହିଲା, "ହେ ପାରିଷଦବର୍ଗ ! ମୁଁ ମୋ' ନିଜ ବ୍ୟତୀତ ତୁମମାନଙ୍କର ଅନ୍ୟ କୌଣସି ଈଶ୍ୱରକୁ ଜାଣେନାହିଁ ।" (ପୁଣି ହାମାନ୍‌କୁ କହିଲା) "ହେ ହାମାନ ! ମୋ'ପାଇଁ (ଭାଟି ପ୍ରସ୍ତୁତ କରି) ଇଟା ପୋଡ଼ ଏବଂ ଗୋଟିଏ (ଉଚ୍ଚ) ଅଟ୍ଟାଳିକା ନିର୍ମାଣ କର ଯହାଦ୍ୱାରା ମୁଁ ତା' ଉପରେ ଚଢ଼ି ମୁ'ସାର ଈଶ୍ୱରକୁ ଦେଖିବି । ମୋ'ର ମନେହୁଏ ସେ ଜଣେ ମିଥ୍ୟାବାଦୀ ।"

୩୯. ଫିରଔନ୍ ଓ ତା' ସୈନ୍ୟସାମନ୍ତ ଦେଶରେ ଅନୁଚିତ ଅହଂକାର ପ୍ରଦର୍ଶନ କଲେ ଏବଂ ଭାବିଲେ ଯେ ସେମାନେ ଆଉ ଆମ୍ଭ ନିକଟକୁ ଫେରିବେ ନାହିଁ । ୪୦. ତେଣୁ, ଆମ୍ଭେ ତା' ସହିତ ତା' ସୈନ୍ୟସାମନ୍ତଙ୍କୁ ନେଇ ସମୁଦ୍ରରେ ଫିଙ୍ଗି ଦେଲୁ । ଦେଖିନିଅ, ଅତ୍ୟାଚାରୀମାନଙ୍କର କି ପରିଣାମ ହେଲା । ୪୧. ଆମ୍ଭେ ସେମାନଙ୍କୁ ଏଭଳି ଲୋକନାୟକ କରିଥିଲୁ ଯେଉଁମାନେ ଲୋକଙ୍କୁ ନର୍କ ଆଡ଼କୁ ଡାକୁଥିଲେ । ବିଚାର ଦିନ ସେମାନଙ୍କୁ କୌଣସି ପ୍ରକାର ସାହାଯ୍ୟ ମିଳିବନାହିଁ । ୪୨. ଆମ୍ଭେ ସେମାନଙ୍କୁ ସଂସାରରେ ଅଭିଶପ୍ତ କଲୁ ଏବଂ ବିଚାର ଦିନ ମଧ୍ୟ ସେମାନେ ଘୋର ଦୁର୍ଦ୍ଦଶା ଭୋଗିବେ ।

୪୩. ପୂର୍ବ ବଂଶଗୁଡ଼ିକୁ ଧ୍ୱଂସ କଲା ପରେ ଆମ୍ଭେ ମୁ'ସାଙ୍କୁ ଗ୍ରନ୍ଥ ଦେଲୁ ଯାହା ଲୋକମାନଙ୍କର ମାର୍ଗଦର୍ଶନ ଏବଂ ଜ୍ଞାନୋଦୟର ଏକ ସାଧନ ଥିଲା ଏବଂ (ଆମ୍ଭର) ଏକ କରୁଣା ମଧ୍ୟ, ଯେପରିକି ସେମାନେ (ସେଥିରୁ) ଶିକ୍ଷା ଲାଭ କରିବେ । ୪୪. (ହେ ମୁହମ୍ମଦ!) ଯେତେବେଳେ ତୁର୍ ପାହାଡ଼ର ପଶ୍ଚିମ ପଟେ ଆମ୍ଭେ ମୁ'ସାଙ୍କୁ ଧର୍ମାଦେଶ ଦେଉଥିଲୁ, ତୁମେ ସେଠାରେ ଉପସ୍ଥିତ ନଥିଲ କିମ୍ବା ଏହି ଘଟଣା ଦେଖୁ ନଥିଲ । ୪୫. (ମୁ'ସାଙ୍କ ପରେ) ଆମ୍ଭେ ଅନେକ ବଂଶ ସୃଷ୍ଟି କଲୁ ଏବଂ ଏହା ମଧ୍ୟରେ ଦୀର୍ଘ ସମୟ ବିତିଗଲା । ତୁମେ ମଦୟନ୍‌ବାସୀଙ୍କ ମଧ୍ୟରେ ରହୁ ନଥିଲ ଯେ ସେମାନଙ୍କୁ ଆମ୍ଭର ବାଣୀ ପାଠ କରି ଶୁଣାଇଥାଆନ୍ତ । ମାତ୍ର ଆମ୍ଭେହିଁ ବାର୍ତ୍ତାବହମାନଙ୍କୁ ପଠାଉଥିଲୁ । ୪୬. ଏବଂ ସେତେବେଳେ ମଧ୍ୟ ତୁମେ ତୁର୍ ପାହାଡ଼ ନିକଟରେ ଉପସ୍ଥିତ ନଥିଲ, ଯେତେବେଳେ ଆମ୍ଭେ ମୁ'ସାଙ୍କୁ (ସେଠାକୁ) ଡାକିଥିଲୁ । ମାତ୍ର ଏହା ତୁମ ପ୍ରଭୁଙ୍କ କରୁଣା (ଯେ ତୁମକୁ ଦୈବବାଣୀ ମାଧ୍ୟମରେ ଏହାର ସୂଚନା ଦିଆଯାଉଛି) ଯେପରିକି ତୁମେ ସେହି ଲୋକମାନଙ୍କୁ ସାବଧାନ କରିବ ଯେଉଁମାନଙ୍କ ପାଖକୁ ସାବଧାନ କରିବାକୁ କେହି ଆସିନାହାନ୍ତି, ଯେପରିକି ସେମାନେ ଶିକ୍ଷାଲାଭ କରିବେ । ୪୭. ଏହା ହୋଇ ନଥିଲେ ସେମାନଙ୍କର ଅର୍ଜିତ କର୍ମ ଯୋଗୁଁ ଯଦି ସେମାନଙ୍କ ଉପରେ କୌଣସି ବିପଦ ପଡ଼ିଥାଆନ୍ତା ସେମାନେ କହିଥାଆନ୍ତେ ଯେ ହେ ପ୍ରଭୁ! ଆମ ପାଖକୁ କାହିଁକି କୌଣସି ବାର୍ତ୍ତାବହ ପଠାଇଲନାହିଁ ଯାହାଫଳରେ ଆମେ ତୁମ ବାଣୀ ଅନୁସାରେ ଚଳିଥାଆନ୍ତୁ ଏବଂ ସଦ୍‌ବିଶ୍ୱାସୀ ହୋଇଥାଆନ୍ତୁ ।

୪୮. ପୁଣି ଯେତେବେଳେ ଆମ୍ଭେ ପଠାଇଥିବା ସତ୍ୟ ସେମାନଙ୍କ ପାଖରେ ପହଁଚିଲା, ସେମାନେ କହିଲେ, "ଯେଭଳି (ଅଲୌକିକ ନିଦର୍ଶନ) ମୁ'ସାଙ୍କୁ ଦିଆ ଯାଇଥିଲା, ସେହିଭଳି (ନିଦର୍ଶନ) ଏହି ଈଶ୍ୱରଦୂତଙ୍କୁ କାହିଁକି ଦିଆ ନଗଲା ?" (ଅଚ୍ଛା !) ଏହା ପୂର୍ବରୁ ମୁ'ସାଙ୍କୁ ଯାହା ଦିଆ ଯାଇଥିଲା, କ'ଣ ସେମାନେ ତାହାକୁ ଅସ୍ୱୀକାର କରି ନଥିଲେ ? ସେମାନେ କହିଥିଲେ ଯେ ଏ ଦୁଇଜଣ (ଅର୍ଥାତ୍ ମୁ'ସା ଏବଂ ହାରୁନ) ଯାଦୁକର ଏବଂ ଏମାନେ ପରସ୍ପରର ସମର୍ଥକ ଏବଂ କହିଥିଲେ ଯେ ଆମେ କାହାରିକୁ ମାନୁନାହୁଁ । ୪୯. (ହେ ମୁହମ୍ମଦ !) ସେମାନଙ୍କୁ କୁହ, "ଯଦି ତୁମେମାନେ ସତ୍ପୁରୁଷ, ତେବେ ଅଲ୍ଲାହଙ୍କଠାରୁ ଏଭଳି ଏକ ଗ୍ରନ୍ଥ ନେଇଆସ ଯାହା ଏହି ଦୁଇ ଗ୍ରନ୍ଥ (ଅର୍ଥାତ୍ ତୌରାତ୍ ଓ କୁରଆନ୍) ଅପେକ୍ଷା ଅଧିକ ଭଲ ବାଟ ଦେଖାଇ ପାରିବ । ତା'ହେଲେ, ମୁଁ ତାହାକୁ ମାନି ଚଳିବି ।" ୫୦. ଯଦି ସେମାନେ ତୁମ କଥା ଗ୍ରହଣ ନକରନ୍ତି ତେବେ ଜାଣିନିଅ ଯେ ସେମାନେ କାମନାର ବଶବର୍ତ୍ତୀ ହୋଇ ପଡ଼ିଛନ୍ତି । ସେହି ବ୍ୟକ୍ତିଠାରୁ ଅଧିକ ପଥଭ୍ରଷ୍ଟ ଆଉ କିଏ ହେବ ଯିଏ ଅଲ୍ଲାହଙ୍କର ମାର୍ଗଦର୍ଶନ ଛାଡ଼ି ନିଜ ଇନ୍ଦ୍ରିୟ ଲାଳସା ପୂରଣ କରେ ? ଅଲ୍ଲାହ୍ ଦୁରାଚାରୀମାନଙ୍କର ମାର୍ଗଦର୍ଶନ କରନ୍ତିନାହିଁ ।

୫୧. ଆମ୍ଭେ ନିରନ୍ତର ଭାବରେ ସେମାନଙ୍କୁ ଆମ୍ଭର ବାଣୀ ପଠାଉଛୁ ଯେପରିକି ସେମାନେ ଧ୍ୟାନ ଦେବେ । ୫୨. କୁରଆନ୍ ପୂର୍ବରୁ ଯେଉଁମାନଙ୍କୁ ଆମ୍ଭେ ଦିବ୍ୟଗ୍ରନ୍ଥ ଦେଇଥିଲୁ, ସେମାନେ ଏହି କୁରଆନ୍ ଗ୍ରନ୍ଥରେ ବିଶ୍ୱାସ କରିନିଅନ୍ତି । ୫୩. ଯେତେବେଳେ ସେମାନଙ୍କ ପାଖରେ ଏହା ପାଠ କରାଯାଏ, ସେମାନେ କହନ୍ତି ଯେ ଏହି ସତ୍ୟ ଆମ ପ୍ରଭୁଙ୍କଠାରୁ ଆସିଛି ବୋଲି ଆମେ ବିଶ୍ୱାସ କରୁ । ଆମେ ତ ଏହା ପୂର୍ବରୁ ମଧ୍ୟ ମୁସଲିମ୍ (ଅର୍ଥାତ୍ ତାଙ୍କର ଆଜ୍ଞାଧୀନ) ଥିଲୁ । ୫୪. ଏମାନଙ୍କୁ ଦୁଇଗୁଣ ପୁରସ୍କାର ଦିଆଯିବ କାରଣ ଏମାନେ ସଂଯମ ଆଚରଣ କରନ୍ତି, ଖରାପ ବ୍ୟବହାରକୁ ଭଲ ବ୍ୟବହାର ଦ୍ୱାରା ଏଡ଼ାଇ ଦିଅନ୍ତି ଏବଂ ଯାହା ଆମ୍ଭେ ସେମାନଙ୍କୁ ଦେଇଛୁ, ସେଥିରୁ (ପୁଣ୍ୟ କାର୍ଯ୍ୟରେ) ଖର୍ଚ୍ଚ କରନ୍ତି । ୫୫. ଯେତେବେଳେ ସେମାନେ କୌଣସି ଅନୁଚିତ କଥା ଶୁଣନ୍ତି, ଏହା କହି ସେଠାରୁ ଦୂରେଇ ଯାଆନ୍ତି ଯେ ଆମ କର୍ମ ଆମ ପାଇଁ ଏବଂ ତୁମ କର୍ମ ତୁମପାଇଁ । ତୁମର

ମଂଗଳ ହେଉ, ଆମେ ନିର୍ବୋଧମାନଙ୍କ ସହିତ ଯୁକ୍ତି କରିବାକୁ ଚାହୁଁନା । ୫୬. (ହେ ବାର୍ତ୍ତାବହ !) ତୁମେ ଯାହାକୁ ଚାହିଁବ ତାକୁ ସତ୍‌ପଥକୁ ଆଣି ପାରିବନାହିଁ, ମାତ୍ର ଅଲ୍ଲାହ୍ ଯାହାକୁ ଚାହାନ୍ତି ତାକୁ ସତ୍‌ପଥକୁ ଆଣନ୍ତି । ଯେଉଁମାନେ ସତ୍‌ମାର୍ଗ ଅବଲମ୍ବନ କରିବେ ସେମାନଙ୍କୁ ସେ ଭଲରୂପେ ଜାଣନ୍ତି ।

୫୭. ସେମାନେ ତୁମକୁ କହୁଛନ୍ତି, "ଯଦି ଆମେ ତୁମ ସହିତ ମିଶି ସତ୍‌ମାର୍ଗ ଅବଲମ୍ବନ କରୁ, ତେବେ ଆମକୁ ଦେଶରୁ ତଡ଼ି ଦିଆଯିବ ।" (ସେମାନଙ୍କୁ ପଚାର) କ'ଣ ଆମେ ସେମାନଙ୍କୁ ଶାନ୍ତିଧାମରେ (ଅର୍ଥାତ୍ ମକ୍କାରେ) ସ୍ଥାନ ଦେଇନାହୁଁ ଯେଉଁଠାରେ ସବୁ ପ୍ରକାରର ଫଳମୂଳ ପହଁଚିଯାଏ ଯାହାକୁ ଆମ୍ଭେ ସେମାନଙ୍କର ଆହାର ରୂପେ ପଠାଉ ? ମାତ୍ର ଏମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଜାଣନ୍ତିନାହିଁ ।

୫୮. ଅନେକ ଜନବସତି ଆମ୍ଭେ ଧ୍ୱଂସ କରି ଦେଇଛୁ ଯାହାର ବାସିନ୍ଦାମାନେ ଧନସମ୍ପଦର ପ୍ରାଚୁର୍ଯ୍ୟ ଯୋଗୁଁ ଅହଂକାରୀ ହୋଇ ଯାଇଥିଲେ । ଏଗୁଡ଼ିକ ସେମାନଙ୍କର ଘର ଯେଉଁଠି ସେମାନଙ୍କ ପରେ ଖୁବ୍ ଅଳ୍ପ ସମୟ ପାଇଁ କେହି ରହିଛନ୍ତି । ଆମ୍ଭେ ହିଁ ସେଗୁଡ଼ିକର ମାଲିକ ହେଲୁ । ୫୯. ତୁମ ପ୍ରଭୁ କୌଣସି ଜନବସତିକୁ ସେପର୍ଯ୍ୟନ୍ତ ଧ୍ୱଂସ କରନ୍ତିନାହିଁ ଯେପର୍ଯ୍ୟନ୍ତ ସେ ସେମାନଙ୍କର କୌଣସି ପ୍ରମୁଖ ସହରରେ ତାଙ୍କର ବଣୀ ପଢ଼ି ଶୁଣାଇବା ପାଇଁ ଜଣେ ବାର୍ତ୍ତାବହଙ୍କୁ ନପଠାଇଛନ୍ତି । ଯେପର୍ଯ୍ୟନ୍ତ କୌଣସି ସହରର ବାସିନ୍ଦାମାନେ ଦୁରାଚାରୀ ନହୋଇଛନ୍ତି ସେପର୍ଯ୍ୟନ୍ତ ଆମ୍ଭେ ସେହି ସହରଗୁଡ଼ିକୁ ଧ୍ୱଂସ କରୁନା ।

୬୦. ତୁମମାନଙ୍କୁ ଯାହା ଦିଆଯାଇଛି ସେଗୁଡ଼ିକ ପାର୍ଥିବ ଜୀବନର (କ୍ଷଣସ୍ଥାୟୀ) ସାଧନ ଓ ସୌନ୍ଦର୍ଯ୍ୟ ମାତ୍ର, କିନ୍ତୁ ଅଲ୍ଲାହଙ୍କ ପାଖରେ ଯାହା ଅଛି ତାହା ଏହାଠାରୁ ଯଥେଷ୍ଟ ଭଲ ଏବଂ ଚିରସ୍ଥାୟୀ । କ'ଣ ତୁମେମାନେ ଏହା ବୁଝିବନାହିଁ? ୬୧. ଯେଉଁ ବ୍ୟକ୍ତିକୁ ଆମ୍ଭେ (ବୈକୁଣ୍ଠଲାଭ କରିବାର) ଶୁଭବଚନ ଦେଇଛୁ ଏବଂ ସେ ଏହା ପୂରଣ ହେବାର ମଧ୍ୟ ଦେଖିବ, କ'ଣ ଏହି ବ୍ୟକ୍ତି ଏଭଳି ଜଣେ ବ୍ୟକ୍ତି ସହିତ ସମାନ ହୋଇପାରେ ଯାହାକୁ ଆମ୍ଭେ ସଂସାରରେ କିଛି ଭୋଗ୍ୟ ବସ୍ତୁ ଦେଇଛୁ ମାତ୍ର ବିଚାର ଦିନ ତାକୁ ଆମ୍ଭ ସମ୍ମୁଖରେ (ଜଣେ ଅପରାଧୀ ରୂପେ) ହାଜର କରାଯିବ ?

୬୨. ସେଦିନ ଈଶ୍ୱର ସେମାନଙ୍କୁ ଡାକି ପଚାରିବେ, "ସେମାନେ କାହାନ୍ତି ଯେଉଁମାନଙ୍କୁ ତୁମେମାନେ ମୋ' ଈଶ୍ୱରତ୍ୱରେ ଅଂଶୀଦାର କରୁଥିଲ ?" ୬୩. ଯେଉଁମାନଙ୍କ ବିରୁଦ୍ଧରେ ଆମ୍ଭର ଶାସ୍ତି ପ୍ରମାଣିତ ହେବ ସେମାନେ କହିବେ, "ହେ ପ୍ରଭୁ! ଏହି ଲୋକମାନଙ୍କୁ ଆମେ ପଥଭ୍ରଷ୍ଟ କରିଥିଲୁ । ଆମେ ନିଜେ ଯେମିତି ବିଭ୍ରାନ୍ତ ହୋଇଥିଲୁ, ସେମାନଙ୍କୁ ମଧ୍ୟ ସେମିତି ବିଭ୍ରାନ୍ତ କଲୁ । ଆମେ ଏବେ ତୁମ ଆଗରେ ସେମାନଙ୍କଠାରୁ ସମ୍ପର୍କ ଛିନ୍ନ କରୁଛୁ । ସେମାନେ ତ ଆମର ଉପାସନା କରୁ ନଥିଲେ ।" ୬୪. ଏହାପରେ ସେମାନଙ୍କୁ (ଅର୍ଥାତ୍ ନାସ୍ତିକମାନଙ୍କୁ) କୁହାଯିବ, "ଏବେ ସେମାନଙ୍କୁ ଡାକ ଯେଉଁମାନଙ୍କୁ ତୁମେମାନେ ଅଲ୍ଲାହଙ୍କର ସମକକ୍ଷ କରିଥିଲ ।" ଏମାନେ ସେମାନଙ୍କୁ ଡାକିବେ ମାତ୍ର ସେମାନେ କୌଣସି ଉତ୍ତର ଦେବେନାହିଁ ଏବଂ ଏମାନେ ନର୍କଦଣ୍ଡ ଭୋଗିବେ । ଭଲ ହୋଇଥାଆନ୍ତା ଯଦି ଏମାନେ ସତ୍‌ପଥ ଅବଲମ୍ବନ କରିଥାଆନ୍ତେ ।

୬୫. ଯେଉଁଦିନ ଅଲ୍ଲାହ୍ ସେମାନଙ୍କୁ ଡାକିବେ ଏବଂ ପଚାରିବେ, "ଆମ୍ଭ ବାର୍ତ୍ତାବହମାନଙ୍କୁ ତୁମେମାନେ କି ଉତ୍ତର ଦେଇଥିଲ ?" ୬୬. ସେଦିନ ସେମାନଙ୍କର ପାଟି ଫିଟିବନାହିଁ ଏବଂ ସେମାନେ ପରସ୍ପରକୁ କିଛି ପଚାରି ମଧ୍ୟ ପାରିବେନାହିଁ । ୬୭. ଅବଶ୍ୟ ଯେଉଁମାନେ ଅନୁତପ୍ତ ହେଲେ, (ସତ୍ୟରେ) ବିଶ୍ୱାସ କଲେ ଏବଂ ଭଲ କର୍ମ କଲେ, ସେମାନେ ନିଶ୍ଚୟ ସଫଳ ହେବେ ।

୬୮. ତୁମ ପ୍ରଭୁ ଯାହା ଇଚ୍ଛା କରନ୍ତି ତାହା ସୃଷ୍ଟି କରନ୍ତି ଏବଂ ଯାହାକୁ ଚାହାନ୍ତି ତାକୁ (ନିଜ କାର୍ଯ୍ୟ ପାଇଁ) ମନୋନିତ କରନ୍ତି । ସେମାନଙ୍କର ଏହି କ୍ଷମତା ନାହିଁ । ସେମାନଙ୍କର ବହୁଈଶ୍ୱରବାଦ ସହିତ ଅଲ୍ଲାହଙ୍କର କୌଣସି ସଂପର୍କ ନାହିଁ ଏବଂ ସେ ସେଥିରୁ ବହୁ ଉର୍ଦ୍ଧ୍ୱରେ । ୬୯. ସେମାନେ ନିଜ ମନରେ ଯାହା ଗୋପନ ରଖନ୍ତି ଏବଂ ଯାହା ପ୍ରକାଶ କରନ୍ତି, ତୁମ ପ୍ରଭୁ ତାହା ଜାଣନ୍ତି । ୭୦. ସେ ଅଲ୍ଲାହ୍, ଯାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସନାଯୋଗ୍ୟ ନୁହେଁ । ଇହଲୋକ ଓ ପରଲୋକରେ ତାଙ୍କରି ସ୍ତୁତି ହୁଏ ଏବଂ ତାଙ୍କରି ହିଁ ଆଦେଶ ପାଳନ କରାଯାଏ । ତାଙ୍କରି ପାଖକୁ ତୁମେମାନେ ଫେରିବ ।

୭୧. ସେମାନଙ୍କୁ ପଚାର, "କ'ଣ ତୁମେମାନେ କେବେ ଚିନ୍ତା କରିଛ ଯେ ଯଦି ଅଲ୍ଲାହ୍ ତୁମମାନଙ୍କ ପାଇଁ ପ୍ରଳୟ ପର୍ଯ୍ୟନ୍ତ ସର୍ବଦା ରାତି କରି ରଖନ୍ତି, ତେବେ ତାଙ୍କ ବ୍ୟତୀତ ଆଉ କେଉଁ ଈଶ୍ୱର ଅଛି ଯିଏ ତୁମମାନଙ୍କ ପାଇଁ (ଦିନର) ଆଲୋକ ଆଣିଦେବ? କ'ଣ ତୁମେମାନେ କଥା ଶୁଣିବନାହିଁ?" ୭୨. ସେମାନଙ୍କୁ ପଚାର, "କ'ଣ ତୁମେମାନେ କେବେ ଭାବିଛ ଯେ ଯଦି ଅଲ୍ଲାହ୍ ତୁମମାନଙ୍କ ପାଇଁ ପ୍ରଳୟ ପର୍ଯ୍ୟନ୍ତ ସର୍ବଦା ଦିନ କରି ରଖନ୍ତି, ତେବେ ତାଙ୍କ ବ୍ୟତୀତ କେଉଁ ଈଶ୍ୱର ଅଛି ଯିଏ ତୁମମାନଙ୍କ ବିଶ୍ରାମ ପାଇଁ ରାତି ଆଣିଦେବ? କ'ଣ ତୁମେମାନେ ବୁଝି ପାରୁନାହଁ? ୭୩. ଏହା ତାଙ୍କର କୃପା ଯେ ସେ ତୁମମାନଙ୍କ ପାଇଁ ଦିନ ଓ ରାତି ସୃଷ୍ଟି କଲେ ଯେପରିକି ତୁମେମାନେ (ଦିନରେ) ତାଙ୍କର କୃପା (ଅର୍ଥାତ୍ ଜୀବିକା) ଅନ୍ୱେଷଣ କରିବ ଏବଂ (ରାତିରେ) ବିଶ୍ରାମ କରିବ ଏବଂ ତାଙ୍କ ପ୍ରତି କୃତଜ୍ଞ ହେବ।

୭୪. ଯେଉଁଦିନ ଅଲ୍ଲାହ ସେମାନଙ୍କୁ ଡାକି ପଚାରିବେ, "ଯେଉଁମାନଙ୍କୁ ତୁମେମାନେ ମୋ'ର ସମକକ୍ଷ କରିଥିଲ, ସେମାନେ କାହାନ୍ତି?" ୭୫. ଆମ୍ଭେ ପ୍ରତ୍ୟେକ ସମାଜରୁ ଜଣେ ଲେଖାଏଁ ସାକ୍ଷୀଙ୍କୁ ହାଜର କରିବୁ ଏବଂ ସେମାନଙ୍କୁ ପଚାରିବୁ ଯେ ତୁମମାନଙ୍କର (ବହୁଈଶ୍ୱରବାଦର) ପ୍ରମାଣ ଦିଅ। ସେଦିନ ସେମାନେ ଜାଣିଯିବେ ଯେ ଅଲ୍ଲାହଙ୍କ କଥା ହିଁ ସତ୍ୟ ଏବଂ ଯାହା ମିଥ୍ୟା ସେମାନେ ଗଢ଼ିଛନ୍ତି ସେଗୁଡ଼ିକ ଲୋପ ପାଇଯିବ।

୭୬. କାରୁନ୍ ମୁ'ସାଙ୍କ ସଂପ୍ରଦାୟର ଜଣେ ବ୍ୟକ୍ତି ଥିଲା ମାତ୍ର ସେ ସେମାନଙ୍କ ପ୍ରତି ଅତ୍ୟାଚାର କରୁଥିଲା। ଆମେ ତାକୁ ଏତେ ଧନ ଦେଇଥିଲୁ ଯେ ଭଣ୍ଡାରଘରର ଚାବିଗୁଡ଼ିକୁ ଉଠାଇବା ଅନେକ ବଳବାନ ପରୁଷଙ୍କ ପକ୍ଷରେ ମଧ୍ୟ କଷ୍ଟକର ହେଉଥିଲା। ଥରେ ତା' ସଂପ୍ରଦାୟର ଲୋକମାନେ ତାକୁ କହିଲେ, "ଗର୍ବ କରନାହିଁ, କାରଣ ଅଲ୍ଲାହ୍ ଗର୍ବୀ ଲୋକମାନଙ୍କୁ ପସନ୍ଦ କରନ୍ତି ନାହିଁ। ୭୭. ଅଲ୍ଲାହ୍ ତୁମକୁ ଯାହା ଧନସଂପତ୍ତି ଦେଇଛନ୍ତି, ଏହାଦ୍ୱାରା ପରଲୋକରେ (ବୈକୁଣ୍ଠର) ଘର ଲାଭ କରିବାର ପ୍ରୟାସ କର ଏବଂ ଇହଲୋକରେ ମଧ୍ୟ ନିଜର ଭାଗକୁ ଉପେକ୍ଷା କରନାହିଁ। ଅଲ୍ଲାହ୍ ଯେମିତି ତୁମର ଉପକାର କରିଛନ୍ତି, ତୁମେ ମଧ୍ୟ ସେମିତି

(ଅନ୍ୟମାନଙ୍କର) ଉପକାର କର ଏବଂ ଦେଶରେ ଅଶାନ୍ତି ସୃଷ୍ଟି କରିବାକୁ ଚେଷ୍ଟା କରନାହିଁ। ଯେଉଁମାନେ ଅଶାନ୍ତି ସୃଷ୍ଟି କରନ୍ତି ଅଲ୍ଲାହ୍ ସେମାନଙ୍କୁ ପସନ୍ଦ କରନ୍ତିନାହିଁ।” ୭୮. ସେ ଉତ୍ତର ଦେଲା, “ଏସବୁ ମୋତେ ମୋ’ ବିଦ୍ୟାବୁଦ୍ଧି ବଳରେ ମିଳିଛି।” କ’ଣ ତାକୁ ଏହା ଜଣା ନଥିଲା ଯେ ଏହା ପୂର୍ବରୁ ଅଲ୍ଲାହ୍ ବହୁ ସମାଜକୁ ଧ୍ୱଂସ କରି ଦେଇଛନ୍ତି ଯେଉଁମାନଙ୍କର ପରାକ୍ରମ ଓ (ଧନସଂପତ୍ତିର) ପ୍ରାଚୁର୍ଯ୍ୟ ତା’ଠାରୁ ଯଥେଷ୍ଟ ଅଧିକ ଥିଲା? ପାପୀମାନଙ୍କୁ ସେମାନଙ୍କ ପାପ ବିଷୟରେ ପ୍ରଶ୍ନ କରାଯିବ ନାହିଁ (ଯେ ସେମାନେ ଏହା କରିଛନ୍ତି ନା ନାହିଁ)।

୭୯. ଦିନେ କାରୁନ୍ ଥାଟବାଟ ସହ ନିଜ ଲୋକମାନଙ୍କ ସାମନାକୁ ଆସିଲା। ଯେଉଁମାନେ ସଂସାରପ୍ରେମୀ ଥିଲେ, (ତାକୁ ଦେଖି) କହିଲେ, “ଆହା! କାରୁନକୁ ଯେମିତି (ଧନସଂପଦ) ମିଳିଛି, ଆମକୁ ଭଲା ସେମିତି ମିଳନ୍ତା? ସତରେ ସେ ଭାରି ଭାଗ୍ୟଶାଳୀ!” ୮୦. କିନ୍ତୁ ଯେଉଁମାନେ ସଦ୍‌ଜ୍ଞାନ ପ୍ରାପ୍ତ କରିଥିଲେ, ସେମାନେ କହିଲେ, “ତୁମମାନଙ୍କର ସର୍ବନାଶ ହେଉ! ସଦାଚାରୀ ଓ ସଦ୍‌ବିଶ୍ୱାସୀ ଲୋକମାନଙ୍କୁ ଅଲ୍ଲାହଙ୍କଠାରୁ ଯାହା ପୁରସ୍କାର ମିଳିବ ତାହା ଏଗୁଡ଼ିକ ତୁଳନାରେ ଢେର ଗୁଣରେ ଭଲ। ଏହା କେବଳ ସେଇମାନଙ୍କୁ ମିଳେ ଯେଉଁମାନେ ସଂଯମ ଆଚରଣ କରନ୍ତି।” ୮୧. ପୁଣି ଆମ୍ଭେ କାରୁନ୍‌କୁ ତା’ ପ୍ରାସାଦ ସହିତ ଭୂଗର୍ଭରେ ଲୀନ ଲରିଦେଲୁ। ଅଲ୍ଲାହଙ୍କ ବିରୋଧରେ କୌଣସି ଗୋଷ୍ଠୀ ତାକୁ ସାହାଯ୍ୟ କରିପାରିଲା ନାହିଁ କିମ୍ବା ସେ ନିଜେ ମଧ୍ୟ ନିଜକୁ ରକ୍ଷା କରିପାରିଲା ନାହିଁ। ୮୨. ଯେଉଁମାନେ ଦିନକ ପୂର୍ବରୁ (ନିଜ ପାଇଁ) ତା’ରି ପରି ସାମାଜିକ ପ୍ରତିଷ୍ଠା କାମନା କରୁଥିଲେ, କହିଲେ, “ଓହୋଃ! ଆମେ ଭୁଲି ଯାଇଥିଲୁ। ଅଲ୍ଲାହ୍ ତାଙ୍କ ଭକ୍ତମାନଙ୍କ ମଧ୍ୟରୁ ଯାହାକୁ ଚାହାନ୍ତି ପ୍ରଚୁର ସାଂସାରିକ ସାଧନ ଦିଅନ୍ତି ଏବଂ ଯାହାକୁ ଚାହାନ୍ତି, ମାପିଚୁପି ଦିଅନ୍ତି। ଯଦି ଅଲ୍ଲାହ୍ ଆମ ପ୍ରତି କୃପା ନକରନ୍ତେ, ତେବେ ଆମକୁ ମଧ୍ୟ ଭୂଗର୍ଭରେ ଲୀନ କରିଦିଅନ୍ତେ। ହାୟ ଦୁର୍ଭାଗ୍ୟ! ଅଧର୍ମୀମନଙ୍କୁ କଦାପି ସଫଳତା ମିଳେନାହିଁ।

୮୩. ବୈକୁଣ୍ଠର ଘର ଆମ୍ଭେ ସେହି ଲୋକମାନଙ୍କ ପାଇଁ ପ୍ରସ୍ତୁତ କରି ରଖିଛୁ ଯେଉଁମାନେ ଧରାପୃଷ୍ଠରେ ଆତ୍ମବଡ଼ିମା ଚାହାନ୍ତି ନାହିଁ କିମ୍ବା ଅଶାନ୍ତି ସୃଷ୍ଟି

କରିବାକୁ ଚାହାନ୍ତିନାହିଁ । ଭଲ ପରିଣାମ ସର୍ବଦା ସଦାଚାରୀଙ୍କ ପକ୍ଷରେ ହିଁ ହୋଇଥାଏ । ୮୪. ଯିଏ (ସଂସାରରେ) ଭଲ କର୍ମ କରି ଆସିବ, ତାକୁ ତା' କର୍ମ ତୁଳନାରେ ଅଧିକ ଭଲ ଫଳ ମିଳିବ ଏବଂ ଯେଉଁମାନେ କୁକର୍ମ କରି ଆସିବେ ସେମାନଙ୍କୁ କେବଳ ସେମାନେ କରିଥିବା କୁକର୍ମର ଫଳ ମିଳିବ ।

୮୫. (ହେ ରସୁଲ !) ଯିଏ ତୁମ ଉପରେ କୁରଆନର ଦାୟିତ୍ୱ ନ୍ୟସ୍ତ କରିଛନ୍ତି, ସେ ନିଶ୍ଚୟ ତୁମକୁ ତୁମ (ପୂର୍ବ) ସ୍ଥାନକୁ (ଅର୍ଥାତ୍ ମକ୍କା ସହରକୁ) ଫେରାଇ ଆଣିବେ । ସେମାନଙ୍କୁ କହିଦିଅ, "ମୋ' ଈଶ୍ୱର ଭଲରୂପେ ଜାଣନ୍ତି ଯେ କିଏ ସଦ୍‌ବାର୍ତ୍ତା ନେଇ ଆସିଛି ଏବଂ କିଏ ସଂପୂର୍ଣ୍ଣ ରୂପେ ପଥଭ୍ରଷ୍ଟ ହୋଇଯାଇଛି ।" ୮୬. ତୁମେ କେବେ ଆଶା କରି ନଥିଲ ଯେ ତୁମ ପ୍ରତି ଏହି ଗ୍ରନ୍ଥ ପ୍ରକଟ ହେବ । ଏହାତ ତୁମ ପାଳନକର୍ତ୍ତାଙ୍କର କରୁଣା । ତେଣୁ ତୁମେ ନାସ୍ତିକମାନଙ୍କର ସମର୍ଥନ କରନାହିଁ । ୮୭. ତୁମ ପାଖରେ ଅଲ୍ଲାହଙ୍କ ବାଣୀ ପହଁଚିଲା ପରେ ଯେପରି ସେମାନେ ଏହାର ପ୍ରଚାରରେ ବାଧା ନଦିଅନ୍ତୁ । ତୁମେ (ଲୋକମାନଙ୍କୁ) ନିଜ ପାଳନକର୍ତ୍ତାଙ୍କ ଆଡ଼କୁ ଡାକୁଥାଅ ଏବଂ କାହାରିକୁ ଅଲ୍ଲାହଙ୍କର ସମକକ୍ଷ କରନାହିଁ ।

୮୮. ଅଲ୍ଲାହଙ୍କ ସହିତ ଅନ୍ୟ କାହାରିକୁ ଈଶ୍ୱର ମନେକରି ଡାକନାହିଁ । ତାଙ୍କ ବ୍ୟତୀତ କେହି ଉପାସନାଯୋଗ୍ୟ ନୁହନ୍ତି । ତାଙ୍କ ବ୍ୟତୀତ ପ୍ରତ୍ୟେକ ସୃଷ୍ଟି ବିନାଶଶୀଳ । ତାଙ୍କରି ଆଜ୍ଞା ପାଳନୀୟ ଏବଂ ତାଙ୍କରି ନିକଟକୁ ତୁମେମାନେ ଫେରିଯିବ ।

## ଅଧ୍ୟାୟ ୨୯, ଅନକବୁତ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲିଫ୍ - ଲାମ୍ - ମୀମ୍ । ୨. କ'ଣ ଲୋକମାନେ ଭାବିଛନ୍ତି ଯେ କେବଳ "ଆମେ ବିଶ୍ୱାସ କରୁ" ବୋଲି କହିଦେଲେ ସେମାନଙ୍କୁ ଛାଡ଼ି ଦିଆଯିବ ? ସେମାନଙ୍କୁ ପରୀକ୍ଷା କରାଯିବ ନାହିଁ ? ୩. ଆମ୍ଭେ ଏମାନଙ୍କ ପୂର୍ବଜମାନଙ୍କୁ ମଧ୍ୟ ପରୀକ୍ଷା କରିଥିଲୁ । ଅଲ୍ଲାହ୍ ଏମାନଙ୍କୁ ମଧ୍ୟ ନିଶ୍ଚୟ (ପରୀକ୍ଷା କରି) ଦେଖିବେ ଯେ ଏମାନଙ୍କ ମଧ୍ୟରୁ କେଉଁମାନେ ସତ କହୁଛନ୍ତି ଏବଂ କେଉଁମାନେ ମିଥ୍ୟାବାଦୀ ।

୪. ଯେଉଁମାନେ କୁକର୍ମ କରୁଛନ୍ତି, କ'ଣ ସେମାନେ ଭାବୁଛନ୍ତି ଯେ ଆମ୍ଭ କବଳରୁ ଖସିଯିବେ ? ସେମାନେ ଭୁଲ୍ ଅନୁମାନ କରୁଛନ୍ତି ।

୫. ଯିଏ ଅଲ୍ଲାହଙ୍କ ସହିତ ସାକ୍ଷାତର ଆଶା ରଖିଛି, (ସେ ଜାଣିରଖୁ ଯେ) ଅଲ୍ଲାହଙ୍କ ନିର୍ଦ୍ଧାରିତ ସମୟ ପାଖେଇ ଆସୁଛି । ସେ ସର୍ବଶ୍ରୋତା ଏବଂ ସର୍ବଜ୍ଞ । ୬. ଯିଏ (ଅଲ୍ଲାହଙ୍କ ମାର୍ଗରେ) ପରିଶ୍ରମ କରେ, ସେ ନିଜର ମଂଗଳ ପାଇଁ ପରିଶ୍ରମ କରେ । ଅଲ୍ଲାହ୍ ଜଗତବାସୀଙ୍କଠାରୁ କିଛି ଚାହାନ୍ତି ନାହିଁ । ୭. ଯେଉଁମାନେ (ଅଲ୍ଲାହଙ୍କୁ) ବିଶ୍ୱାସ କଲେ ଏବଂ ଭଲ କର୍ମ କଲେ, ଆମ୍ଭେ ନିଶ୍ଚୟ ସେମାନଙ୍କର ପାପ ନାଶ କରିବୁ ଏବଂ ସେମାନଙ୍କୁ ସେମାନଙ୍କ କର୍ମର ଭଲ ପୁରସ୍କାର ଦେବୁ ।

୮. ଆମ୍ଭେ ମନୁଷ୍ୟଙ୍କୁ ତା' ପିତାମାତାଙ୍କ ସହିତ ଭଲ ବ୍ୟବହାର କରିବାର ଆଜ୍ଞା ଦେଇଛୁ । ଯଦି ସେମାନେ ତୁମକୁ ଏଥିପାଇଁ ବାଧ୍ୟ କରନ୍ତି ଯେ ତୁମେ ଅନ୍ୟ କାହାରିକୁ ମୋ'ର ସମକକ୍ଷ କର ଯାହା ବିଷୟରେ ତୁମର କୌଣସି (ପ୍ରାମାଣିକ) ଜ୍ଞାନ ନାହିଁ, ତେବେ ସେମାନଙ୍କ କଥା ମାନନାହିଁ । ତୁମମାନଙ୍କୁ ମୋ'ରି ପାଖକୁ ଫେରିବାକୁ ହେବ ଏବଂ ତୁମେମାନେ ଯାହା କରିଥିଲ, ସେତେବେଳେ ମୁଁ ତୁମମାନଙ୍କୁ ଜଣାଇ ଦେବି । ୯. ଯେଉଁମାନେ (ଅଲ୍ଲାହ୍‌ଙ୍କୁ) ବିଶ୍ୱାସ କରନ୍ତି ଏବଂ ଭଲ କର୍ମ କରନ୍ତି, ଆମ୍ଭେ ନିଶ୍ଚୟ ସେମାନଙ୍କୁ ନିଜର ପୁଣ୍ୟବାନ ଭକ୍ତମାନଙ୍କ ସହିତ ରଖିବୁ ।

୧୦. କିଛି ଲୋକ ଏମିତି ଅଛନ୍ତି ଯେଉଁମାନେ କହନ୍ତି ଯେ ଆମେ ଅଲ୍ଲାହ୍‌ଙ୍କୁ ବିଶ୍ୱାସ କରୁ ମାତ୍ର ଯଦି ସେମାନଙ୍କୁ ଅଲ୍ଲାହଙ୍କ ମାର୍ଗରେ କିଛି କଷ୍ଟ ସହିବାକୁ ପଡ଼େ, ସେମାନେ ମଣିଷମାନଙ୍କ ଦ୍ୱାରା ଦିଆ ଯାଉଥିବା କଷ୍ଟକୁ ଅଲ୍ଲାହଙ୍କର ଦଣ୍ଡ ବୋଲି ଭାବିନିଅନ୍ତି ଏବଂ ଯଦି ତୁମ ପ୍ରଭୁଙ୍କଠାରୁ (ତୁମକୁ) କିଛି ସାହାଯ୍ୟ ମିଳିଯାଏ, ତେବେ କହନ୍ତି ଯେ ଆମେ ପରା ତୁମମାନଙ୍କ ସହିତ ଥିଲୁ । ଜଗତବାସୀଙ୍କ ମନରେ ଯାହା ଅଛି, କ'ଣ ଅଲ୍ଲାହଙ୍କୁ ଜଣାନାହିଁ? ୧୧. ଅଲ୍ଲାହ ନିଶ୍ଚୟ ଏହା (ପରୀକ୍ଷା କରି) ଦେଖିବେ ଯେ କେଉଁମାନେ (ତାଙ୍କ ପ୍ରତି) ଆସ୍ଥା ରଖିଛନ୍ତି ଏବଂ ଏହା ମଧ୍ୟ ଦେଖିବେ ଯେ କେଉଁମାନେ ଛଳନା କରୁଛନ୍ତି ।

୧୨. ନାସ୍ତିକମାନେ ସଦ୍‌ବିଶ୍ୱାସୀମାନଙ୍କୁ କହୁଛନ୍ତି ଯେ ତୁମେମାନେ ଆମ ପନ୍ଥା ଅବଲମ୍ବନ କର ଏବଂ ଆମେ ତୁମମାନଙ୍କର ପାପଭାର ବହନ କରିବୁ, ଅଥଚ ସେମାନେ ପାପରୁ କିଛି ବହନ କରିବେନାହିଁ । ସେମାନେ ପକ୍କା ମିଥ୍ୟାବାଦୀ । ୧୩.

ସେମାନେ ନିଜ ପାପର ବୋଝ ମୁଣ୍ଡାଇବେ ଏବଂ ଏଥିସହିତ ଅନ୍ୟ ଲୋକମାନଙ୍କର ବୋଝ ମଧ୍ୟ । ଯେଉଁ ମିଥ୍ୟା ସବୁ ସେମାନେ ଗଢୁଛନ୍ତି, ବିଚାର ଦିନ ସେମାନଙ୍କୁ ସେବିଷୟରେ ନିଶ୍ଚୟ ପ୍ରଶ୍ନ କରାଯିବ ।

୧୪. ଆମ୍ଭେ ନୂହଙ୍କୁ ତାଙ୍କ ସଂପ୍ରଦାୟ ପାଖକୁ ପଠାଇଥିଲୁ ଏବଂ ସେ ସେମାନଙ୍କ ମଧ୍ୟରେ ନଅଶହ ପଚାଶ ବର୍ଷ ରହିଥିଲେ । ପୁଣି ସେମାନଙ୍କ ଉପରେ ଏକ ମହାବାତ୍ୟା ମାଡ଼ି ଆସିଥିଲା କାରଣ ସେମାନେ ଦୁରାଚାରୀ ଥିଲେ । ୧୫. ପୁଣି ଆମ୍ଭେ ନୂହଙ୍କୁ ଏବଂ ନୌକାରେ ଥିବା ତାଙ୍କ ସାଥିମାନଙ୍କୁ ଉଦ୍ଧାର କଲୁ ଏବଂ ଏହି ଘଟଣାକୁ ବିଶ୍ୱବାସୀଙ୍କ ପାଇଁ ଏକ ନିଦର୍ଶନ କରିଦେଲୁ ।

୧୬. ଆମ୍ଭେ ଇବ୍ରାହିମଙ୍କୁ ପଠାଇଲୁ, ଯିଏ ତାଙ୍କ ସମାଜକୁ କହିଲେ, “ଅଲ୍ଲାହଙ୍କର ଉପାସନା କର ଏବଂ ତାଙ୍କୁ ଭୟ କର । ଯଦି ତୁମମାନଙ୍କର ବୁଦ୍ଧି ଥାଏ ତେବେ (ଜାଣିରଖ ଯେ) ଏହାହିଁ ତୁମମାନଙ୍କ ପାଇଁ ମଙ୍ଗଳକର ।” ୧୭. “ତୁମେମାନେ ଅଲ୍ଲାହଙ୍କୁ ଛାଡ଼ି ପ୍ରତିମାପୂଜା କରୁଛ ଏବଂ ମିଥ୍ୟା ଗଢୁଛ । ଅଲ୍ଲାହଙ୍କ ବ୍ୟତୀତ ଯେଉଁମାନଙ୍କର ତୁମେମାନେ ଉପାସନା କର, ସେମାନେ ତୁମମାନଙ୍କୁ ଆହାର ଦେବାପାଇଁ ସକ୍ଷମ ନୁହନ୍ତି । ଅଲ୍ଲାହଙ୍କୁ ଆହାର ମାଗ, ତାଙ୍କରି ସେବା-ଉପାସନା କର ଏବଂ ତାଙ୍କଠାରେ କୃତଜ୍ଞ ହୁଅ । ତାଙ୍କରି ପାଖକୁ ତୁମେମାନେ ଫେରିଯିବ । ୧୮. ଯଦି ତୁମେମାନେ ଅସ୍ୱୀକାର କରିବ, ତେବେ ଏହାପୂର୍ବରୁ ଅନେକ ସଂପ୍ରଦାୟ ଅସ୍ୱୀକାର କରି ସାରିଛନ୍ତି । (ଜାଣିରଖ) କେବଳ ପରିଷ୍କାର ଭାବରେ ବାର୍ତ୍ତା ଦେଇଦେବା ହେଉଛି ବାର୍ତ୍ତାବହଙ୍କର ଦାୟିତ୍ୱ ।”

୧୯. କ’ଣ ସେମାନେ ଦେଖି ନାହାନ୍ତି ଯେ ଅଲ୍ଲାହ୍ କିପରି ସୃଷ୍ଟିର ଆରମ୍ଭ କରନ୍ତି ? ପୁଣି ସେ ଏହାର ପୁନରାବୃତ୍ତି ମଧ୍ୟ କରିବେ । ଅଲ୍ଲାହଙ୍କ ପାଇଁ ଏହା ଏକ ସାମାନ୍ୟ କଥା । ୨୦. ସେମାନଙ୍କୁ କୁହ, “ଭୂପୃଷ୍ଠରେ ବୁଲାବୁଲି କରି ଦେଖ ଯେ ସେ କିପରି ସୃଷ୍ଟିର ଆରମ୍ଭ କଲେ । ପୁଣି ଅଲ୍ଲାହ୍ ପରଲୋକରେ ଆଉଥରେ ତୁମମାନଙ୍କୁ ଜୀବିତ କରିବେ । ଅଲ୍ଲାହ୍ ସବୁକିଛି କରିବାକୁ ସକ୍ଷମ । ୨୧. ସେ ଯାହାକୁ ଚାହିଁବେ ଦଣ୍ଡ ଦେବେ ଏବଂ ଯାହା ପ୍ରତି ଚାହିଁବେ ଦୟା କରିବେ । ତୁମ ସମସ୍ତଙ୍କୁ ତାଙ୍କରି ନିକଟକୁ ଫେରାଇ ନିଆଯିବ । ୨୨. ତୁମେମାନେ ତାଙ୍କୁ, ନା

ପୃଥିବୀରେ ନିରୂପାୟ କରିପାରିବ ନା ଆକାଶରେ । ଅଲ୍ଲାହଙ୍କ ବ୍ୟତୀତ ତୁମମାନଙ୍କର କେହି ଆଶ୍ରୟଦାତା ବା ସାହାଯ୍ୟକାରୀ ନାହାନ୍ତି ।” ୨୩. ଯେଉଁମାନେ ଅଲ୍ଲାହଙ୍କ ବାଣୀକୁ ଅସ୍ୱୀକାର କରନ୍ତି ଏବଂ (ପରଲୋକରେ) ତାଙ୍କ ସହିତ ସାକ୍ଷାତକୁ ମାନନ୍ତି ନାହିଁ, ସେମାନେ ମୋ’ କରୁଣାରୁ ନିରାଶ ହୋଇ ଯାଇଛନ୍ତି । ସେମାନେ କଠୋର ଦଣ୍ଡ ଭୋଗିବେ ।

୨୪. ଇବ୍ରାହିମଙ୍କ ସମାଜର ଏହାହିଁ ଉତ୍ତର ଥିଲା ଯେ ତାକୁ ମାରିଦିଅ ବା ପୋଡ଼ିଦିଅ । ଶେଷରେ ଅଲ୍ଲାହ୍ ଇବ୍ରାହିମ୍‌ଙ୍କୁ ନିଆଁରୁ ଉଦ୍ଧାର କରିଥିଲେ । ଅଲ୍ଲାହଙ୍କୁ ବିଶ୍ୱାସ କରିଥିବା ଲୋକମାନଙ୍କ ପାଇଁ ଏଥିରେ ଅନେକ ନିଦର୍ଶନ ଅଛି । ୨୫. (ଇବ୍ରାହିମ୍) କହିଲେ, “ତୁମେମାନେ ଅଲ୍ଲାହଙ୍କୁ ଛାଡ଼ି ଯେଉଁ ମୂର୍ତ୍ତିଗୁଡ଼ିକୁ (ଈଶ୍ୱର ରୂପେ) ଗ୍ରହଣ କରିଛ, ଏହା କେବଳ ସଂସାରିକ ଜୀବନରେ ପରସ୍ପର ମଧ୍ୟରେ ଥିବା ପ୍ରେମ (ଅର୍ଥାତ୍ ତୁମମାନଙ୍କର ସାମାଜିକ ସଂପର୍କ) ଯୋଗୁଁ କରୁଛ, ମାତ୍ର ବିଚାର ଦିନ ତୁମେମାନେ ପରସ୍ପରକୁ ଅସ୍ୱୀକାର କରିବ ଏବଂ ଧିକ୍କାର ମଧ୍ୟ କରିବ । ନର୍କ ତୁମମାନଙ୍କର ଘର ହେବ ଏବଂ କେହି ତୁମମାନଙ୍କୁ ସାହାଯ୍ୟ କରିବେନାହିଁ । ୨୬. ସୁତରାଂ, ଲୁତ୍ ଇବ୍ରାହିମଙ୍କୁ ମାନିନେଲେ । ଇବ୍ରାହିମ କହିଲେ, “ମୁଁ ମୋ’ ପ୍ରଭୁଙ୍କ ମାର୍ଗରେ ଦେଶତ୍ୟାଗ କରିବାକୁ ଯାଉଛି । ସେ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ ।” ୨୭. ଆମ୍ଭେ ତାଙ୍କୁ ଇସହାକ୍ ଓ ୟାକୁବ୍ (ନାମକ ପୁତ୍ର ଓ ପୌତ୍ର) ଦେଲୁ ଏବଂ ତାଙ୍କ ବଂଶରେ ଦିବ୍ୟଗ୍ରନ୍ଥ ଓ ଦିବ୍ୟପ୍ରତିନିଧିତ୍ୱର ପରମ୍ପରା ଜାରି କଲୁ । ଆମ୍ଭେ ତାଙ୍କୁ ସଂସାରରେ ପୁରସ୍କୃତ କଲୁ ଏବଂ ପରଲୋକରେ ମଧ୍ୟ ସେ ପୁଣ୍ୟବାନ ବ୍ୟକ୍ତିମାନଙ୍କ ସହିତ ରହିବେ ।

୨୮. ଆମ୍ଭେ ଲୁତ୍‌ଙ୍କୁ ପଠାଇଲୁ, ଯିଏ ତାଙ୍କ ସମାଜକୁ କହିଲେ, “ତୁମେମାନେ ଏଭଳି ନିର୍ଲଜ କର୍ମ କରୁଛ ଯାହା ତୁମ ପୂର୍ବରୁ ସଂସାରରେ କେହି କରିନାହିଁ । ୨୯. ତୁମେମାନେ (କାମବାସନା ଚରିତାର୍ଥ କରିବାପାଇଁ) ପୁରୁଷମାନଙ୍କ ପାଖକୁ ଯାଉଛ, ରାସ୍ତାରେ ଡ଼କାୟତି କରୁଛ ଏବଂ ନିଜର ସଭାସମିତିରେ ମଧ୍ୟ ଦୁଷ୍କର୍ମ କରୁଛ ।” ତାଙ୍କ ସମାଜର (ଲୋକମାନଙ୍କର) ଗୋଟିଏ ଉତ୍ତର ଥିଲା, “ଯଦି ତୁମେ ଜଣେ ସତ୍‌ପୁରୁଷ, ତେବେ ଆମ ପାଇଁ ଅଲ୍ଲାହଙ୍କର ଶାସ୍ତି ନେଇଆସ ।”

୩୦. (ତେଣୁ ଲୁତ୍) ପ୍ରାର୍ଥନା କଲେ, "ହେ ଈଶ୍ୱର ! ଏହି ଦୁଷ୍ଟମାନଙ୍କ ବିରୁଦ୍ଧରେ ମୋତେ ସାହାଯ୍ୟ କର ।"

୩୧. ଯେତେବେଳେ ଆମ୍ଭର ଦେବଦୂତମାନେ ଇବ୍ରାହିମଙ୍କ ପାଖରେ (ପୁତ୍ରପ୍ରାପ୍ତିର) ଶୁଭବାର୍ତ୍ତା ନେଇ ପହଁଚିଲେ, ତାଙ୍କୁ କହିଲେ, "ଆମେ ସେହି ସହରର ବାସିନ୍ଦାମାନଙ୍କୁ ଧ୍ୱଂସ କରିବୁ । ସେହି ସହରବାସୀମାନେ ଭାରି ପାପୀ ।" ୩୨. ଇବ୍ରାହିମ କହିଲେ, "ସେଠାରେ ତ (ଈଶ୍ୱରଦୂତ) ଲୁତ୍ ମଧ୍ୟ ଅଛନ୍ତି ?" ସେମାନେ ଉତ୍ତର ଦେଲେ, "ଯେଉଁମାନେ ସେଠାରେ ଅଛନ୍ତି ଆମେ ଜାଣୁ । ଆମେ ତାଙ୍କୁ ଓ ତାଙ୍କ ପରିଜନମାନଙ୍କୁ ରକ୍ଷା କରିବୁ ମାତ୍ର ତାଙ୍କ ପତ୍ନୀ (ଦଣ୍ଡ ଭୋଗିବା ପାଇଁ) ରହିବ ।"

୩୩. ଯେତେବେଳେ ଆମ୍ଭର ଦେବଦୂତଗଣ ଲୁତ୍‌ଙ୍କ ପାଖରେ ପହଁଚିଲେ, ସେ ସେମାନଙ୍କୁ ଦେଖି ଭାରି ବ୍ୟସ୍ତ ହେଲେ ଏବଂ ମନ କଷ୍ଟ କଲେ । ଦେବଦୂତମାନେ (ତାଙ୍କୁ ଆଶ୍ୱାସନା ଦେଇ) କହିଲେ, "ଭୟ କରନାହିଁ ବା ଦୁଃଖ କରନାହିଁ । ଆମେମାନେ ତୁମକୁ ଓ ତୁମ ସଂପର୍କୀୟମାନଙ୍କୁ ରକ୍ଷା କରିବୁ । କେବଳ ତୁମ ପତ୍ନୀ ରହିଯିବ । ୩୪. ଆମେମାନେ ଏହି ସହରବାସୀଙ୍କ ପାଇଁ ଦୈବୀବିପତ୍ତି ନେଇଆସିବୁ କାରଣ ସେମାନେ ଦୁଷ୍କର୍ମ କରୁଛନ୍ତି ।" ୩୫. ବୁଦ୍ଧିମାନ ଲୋକମାନଙ୍କ ପାଇଁ ଆମ୍ଭେ ସେଠାରେ ଏହାର ଏକ ସ୍ପଷ୍ଟ ଚିହ୍ନ (ଅର୍ଥାତ୍ ମୃତ ସାଗର) ଛାଡ଼ି ଦେଇଛୁ ।

୩୬. ଆମ୍ଭେ ମଦ୍‌ୟନବାସୀଙ୍କ ପାଖକୁ ସେମାନଙ୍କ ଭାଇ ଶୁଏବଙ୍କୁ (ବାର୍ତ୍ତାବହ କରି) ପଠାଇଲୁ । ସେ ସେମାନଙ୍କୁ କହିଲେ, "ଭାଇମାନେ ! ଅଲ୍ଲାହଙ୍କର ଉପାସନା କର ଏବଂ ବିଚାର ଦିନର ଆଶା ରଖିଥାଅ ଏବଂ ଦେଶରେ ଅଶାନ୍ତି ସୃଷ୍ଟି କରନାହିଁ ।" ୩୭. ମାତ୍ର ସେମାନେ ତାଙ୍କୁ ମିଥ୍ୟାବଦୀ ବୋଲି କହିଲେ । ତେଣୁ, ସେମାନେ ଏକ ଭୂମିକମ୍ପର ଶିକାର ହୋଇଗଲେ ଏବଂ (ମୃତ ଅବସ୍ଥାରେ) ନିଜନିଜ ଘରେ ମୁହଁମାଡ଼ି ପଡ଼ି ରହିଲେ ।

୩୮. ଆଦ୍ ଓ ସମୁଦ ସଂପ୍ରଦାୟକୁ ମଧ୍ୟ (ଆମ୍ଭେ ଧ୍ୱଂସ କଲୁ) । ସେମାନଙ୍କ ଘରଗୁଡ଼ିକର ଧ୍ୱଂସାବଶେଷ ତୁମମାନଙ୍କ ସାମନାରେ ଅଛି । ଶଇତାନ୍ ସେମାନଙ୍କ କର୍ମଗୁଡ଼ିକୁ ସେମାନଙ୍କୁ ସୁନ୍ଦର କରି ଦେଖାଇଲା ଏବଂ ସେମାନଙ୍କୁ

ସତ୍‌ପଥରୁ ବିଚ୍ୟୁତ କରିଦେଲା ଯଦିଓ ସେମାନେ ଭାରି ଚତୁର ଥିଲେ । ୩୯. ଆମ୍ଭେ କାରୁନ୍, ଫିର୍‌ଔନ ଓ ହାମାନ୍‌ର ମଧ୍ୟ ବିନାଶ କଲୁ । ମୁ'ସା ସେମାନଙ୍କ ପାଖକୁ ଅନେକ ସ୍ପଷ୍ଟ ପ୍ରମାଣ ନେଇ ଯାଇଥିଲେ ।  ସେମାନେ ଦେଶରେ ଅହଙ୍କାର କଲେ କିନ୍ତୁ ଆମ୍ଭ କବଳରୁ ଖସି ପାରିଲେ ନାହିଁ । ୪୦. ଆମ୍ଭେ ସମସ୍ତଙ୍କୁ ସେମାନଙ୍କ ପାପ ପାଇଁ ଦଣ୍ଡ ଦେଲୁ । କେତେକଙ୍କ ଉପରେ ପଥର ମାଡ଼ କରୁଥିବା ବାତ୍ୟା ପଠାଇଲୁ, କେତେକ ପ୍ରଚଣ୍ଡ ଶବ୍ଦର ଶିକାର ହେଲେ, କେତେକଙ୍କୁ ଆମ୍ଭେ ଭୂଗର୍ଭରେ ଲୀନ କରିଦେଲୁ ଏବଂ ଆଉ କେତେକଙ୍କୁ ଜଳମଗ୍ନ କରିଦେଲୁ । ଅଲ୍ଲାହ୍ ଏମିତି ନୁହନ୍ତି ଯେ ଲୋକମାନଙ୍କ ଉପରେ ଅତ୍ୟାଚାର କରିବେ ମାତ୍ର ସେଇମାନେ ନିଜ ଆତ୍ମା ପ୍ରତି ଅତ୍ୟାଚାର କରୁଥିଲେ ।

୪୧. ଯେଉଁମାନେ ଅଲ୍ଲାହଙ୍କୁ ଛାଡ଼ି ଅନ୍ୟମାନଙ୍କୁ ଆଶ୍ରୟଦାତା ମାନିଛନ୍ତି, ସେମାନଙ୍କ ଦୃଷ୍ଟାନ୍ତ ବୁଢ଼ିଆଣୀ ପରି ଯିଏ ନିଜ ପାଇଁ ଘର ତିଆରି କରେ, କିନ୍ତୁ ସବୁଠୁ ଦୁର୍ବଳ ଘର ବୁଢ଼ିଆଣୀର ଘର । ଭଲ ହୁଅନ୍ତା ଯଦି ସେମାନେ ଏହା ଜାଣି ପାରନ୍ତେ । ୪୨. ଏମାନେ ଅଲ୍ଲାହଙ୍କ ବ୍ୟତୀତ ଯାହାକୁ ଡ଼ାକନ୍ତି, ଅଲ୍ଲାହ୍ ତାକୁ ଭଲରୂପେ ଜାଣନ୍ତି । ସେ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ । ୪୩. ଆମ୍ଭେ ଲୋକମାନଙ୍କ ବୁଝିବା ପାଇଁ ଏହିଭଳି ଉଦାହରଣ ଦେଉ, ମାତ୍ର କେବଳ ଜ୍ଞାନୀ ଲୋକମାନେ ଏହାକୁ ବୁଝିପାରନ୍ତି । ୪୪. ଅଲ୍ଲାହ୍ ପୃଥିବୀ ଓ ଆକାଶକୁ ଯଥାର୍ଥ ଉଦ୍ଦେଶ୍ୟରେ ସୃଷ୍ଟି କରିଛନ୍ତି । ଏଥିରେ ସଦ୍‌ବିଶ୍ୱାସୀମାନଙ୍କ ପାଇଁ ଏକ ନିଦର୍ଶନ ଅଛି ।

୪୫. ଯେଉଁ ଗ୍ରନ୍ଥଟିକୁ ତୁମ ପାଖକୁ ଦୈବବାଣୀ କରାଯାଇଛି ତାହାକୁ ପାଠ କରୁଥାଅ ଏବଂ ନିୟମିତ ନମାଜ ସଂପାଦନ କରୁଥାଅ । ନିଃସନ୍ଦେହରେ ନମାଜ ଅଶ୍ଳୀଳତା ଓ ଅପକର୍ମରୁ ନିବୃତ୍ତ ରଖିଥାଏ । ଅଲ୍ଲାହଙ୍କ ସ୍ମରଣଚିନ୍ତନ ଏକ ମହାନ କାର୍ଯ୍ୟ । ତୁମେମାନେ ଯାହା କରୁଛ ଅଲ୍ଲାହ୍ ସବୁ ଜାଣନ୍ତି ।

୪୬. ଗ୍ରନ୍ଥବିଶ୍ୱାସୀମାନଙ୍କ ସହିତ ଖୁବ୍ ଭଲ ଭାବରେ ଆଲୋଚନା କର ମାତ୍ର ସେମାନଙ୍କ ମଧ୍ୟରୁ ଯେଉଁମାନେ ଅନ୍ୟାୟ କରନ୍ତି, ସେମାନଙ୍କ କଥା ଭିନ୍ନ । କହିଦିଅ, "ଆମେ ଏହି ଗ୍ରନ୍ଥକୁ ବିଶ୍ୱାସ କରୁଛୁ ଯାହା ଆମମାନଙ୍କ ପାଖକୁ ପଠାଯାଇଛି ଏବଂ ସେହି ଗ୍ରନ୍ଥକୁ ମଧ୍ୟ ବିଶ୍ୱାସ କରୁଛୁ ଯାହା ତୁମମାନଙ୍କ ପାଖକୁ ପଠାଯାଇଥିଲା । ଆମ ଈଶ୍ୱର ଓ

ତୁମ ଈଶ୍ୱର ଜଣେ ଏବଂ ଆମେମାନେ ତାଙ୍କରି ଆଜ୍ଞାଧୀନ।" ୪୭. ସେହିପରି ଆମ୍ଭେ ତୁମ ପାଖକୁ (ମଧ୍ୟ) ଗ୍ରନ୍ଥ ପଠାଇଛୁ। ଯେଉଁମାନଙ୍କୁ ଆମ୍ଭେ ପୂର୍ବରୁ ଗ୍ରନ୍ଥ ଦେଇଥିଲୁ ସେମାନେ ଏହାକୁ ବିଶ୍ୱାସ କରୁଛନ୍ତି ଏବଂ ଏମାନଙ୍କ (ଅର୍ଥାତ୍ ବହୁଦେବବାଦୀଙ୍କ) ମଧ୍ୟରୁ ମଧ୍ୟ ଅନେକ ବିଶ୍ୱାସ କରୁଛନ୍ତି। ଆମ୍ଭର ବାଣୀକୁ କେବଳ ସେହିମାନେ ଅସ୍ୱୀକାର କରୁଛନ୍ତି ଯେଉଁମାନେ ନାସ୍ତିକ।

୪୮. (ହେ ମୁହମ୍ମଦ!) ଏହା ପୂର୍ବରୁ ତୁମେ କୌଣସି ଧର୍ମଗ୍ରନ୍ଥ ପଢୁ ନଥିଲ କିମ୍ବା ନିଜ ହାତରେ କିଛି ଲେଖୁ ନଥିଲ। ଯଦି ଏପରି ହୋଇଥାଆନ୍ତା, ତେବେ ମିଥ୍ୟାବିଶ୍ୱାସୀମାନେ ନିଶ୍ଚୟ ସନ୍ଦେହ କରିଥାଆନ୍ତେ। ୪୯. ପ୍ରକୃତରେ ଏଗୁଡ଼ିକ ପରିଷ୍କାର ବାଣୀ ଏବଂ ସେହି ଲେକମାନଙ୍କ ହୃଦୟରେ (ସୁରକ୍ଷିତ ହୋଇ) ରହିଛି ଯେଉଁମାନେ ସଦ୍‌ଜ୍ଞାନ ପ୍ରାପ୍ତ କରିଛନ୍ତି। ଆମ୍ଭ ବାଣୀକୁ କେବଳ ସେଇମାନେ ମାନନ୍ତିନାହିଁ ଯେଉଁମାନେ ଅତ୍ୟାଚାରୀ। ୫୦.  ସେମାନେ କହୁଛନ୍ତି ଯେ ତାଙ୍କୁ ତାଙ୍କ ପ୍ରଭୁଙ୍କ ଦ୍ୱାରା କାହିଁକି ଅଲୌକିକ ନିଦର୍ଶନ ଦିଆଗଲା ନାହିଁ। କହିଦିଅ, "ନିଦର୍ଶନ ସବୁ ଅଲ୍ଲାହଙ୍କ ଅଧୀନରେ ରହିଛି। ମୁଁ ତ କେବଳ ସ୍ପଷ୍ଟ ରୂପେ ଚେତାବନୀ ଦେବା ପାଇଁ ଆସିଛି।" ୫୧. କ'ଣ ସେମାନଙ୍କ ପାଇଁ ଏହା ଯଥେଷ୍ଟ ନୁହେଁ ଯେ ଆମ୍ଭେ ତୁମ ପାଖକୁ ଏକ ଗ୍ରନ୍ଥ ପଠାଇଛୁ ଯାହା ସେମାନଙ୍କୁ ପଢ଼ି ଶୁଣାଇ ଦିଆଯାଉଛି ? ବାସ୍ତବରେ ଏହା ଅଲ୍ଲାହଙ୍କର ଏକ କରୁଣା ଏବଂ ଏଥିରେ ବିଶ୍ୱାସ କରୁଥିବା ଲୋକମାନଙ୍କ ପାଇଁ ଉପଦେଶ ଅଛି। ୫୨. କହିଦିଅ, "ତୁମର ଓ ମୋ'ର ସାକ୍ଷୀ ରୂପେ ଅଲ୍ଲାହ୍ ଯଥେଷ୍ଟ। ପୃଥିବୀ ଓ ଆକାଶ ମଧ୍ୟରେ ଯାହା ଅଛି ସେ ସବୁ ଜାଣନ୍ତି।" ଯେଉଁମାନେ  ଅସତ୍ୟରେ ବିଶ୍ୱାସ କରନ୍ତି ଏବଂ ଅଲ୍ଲାହଙ୍କୁ ଅବିଶ୍ୱାସ କରନ୍ତି, ସେମାନେ କ୍ଷତିଗ୍ରସ୍ତ ହେବେ।

୫୩. ଏମାନେ ତୁମକୁ କହୁଛନ୍ତି ଯେ ଶୀଘ୍ର ଦୈବୀବିପତ୍ତି ନେଇଆସ। ଯଦି ଏଥିପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ସ୍ଥିର ହୋଇ ନଥାଆନ୍ତା, ତେବେ (ଏପର୍ଯ୍ୟନ୍ତ) ସେମାନଙ୍କ ଉପରେ ବିପଦ ପଡ଼ି ସାରିଥାଆନ୍ତା। ଏହି ବିପଦ ସେମାନଙ୍କ ଉପରେ ଅତର୍କିତ ଭାବରେ ଆସିବ ଏବଂ ସେମାନେ ଜାଣି ପାରିବେନାହିଁ। ୫୪. ଏମାନେ ଶୀଘ୍ର ଦୈବୀବିପତ୍ତି ନେଇ ଆସିବାକୁ କହୁଛନ୍ତି ଅଥଚ ନର୍କ ଅଧର୍ମୀମାନଙ୍କୁ

ଘେରିରହିଛି । ୫୫. ସେଦିନ ନିଆଁ ସେମାନଙ୍କୁ ତଳୁ ଉପର ପର୍ଯ୍ୟନ୍ତ ଘୋଡ଼ାଇ ନେବ ଏବଂ ସେମାନଙ୍କୁ କୁହାଯିବ, "ତୁମେମାନେ ଯାହା କରିଛ, ଏବେ ତାହାର ମଜା ଚାଖ ।"

୫୬. ହେ ମୋ' ସଦବିଶ୍ୱାସୀ ଭକ୍ତଗଣ! ମୋ' ଧରିତ୍ରୀ ଅତି ବିଶାଳ । ତେଣୁ କେବଳ ମୋ'ରି ଉପାସନା କର । ୫୭. ପ୍ରତ୍ୟେକ ଜୀବ ମୃତ୍ୟୁର ସ୍ୱାଦ ଚାଖିବ । ପୁଣି ତୁମମାନଙ୍କୁ ମୋ'ରି ପାଖକୁ ଫେରାଇ ଅଣାଯିବ । ୫୮. ଯେଉଁମାନେ ବିଶ୍ୱାସ କଲେ ଏବଂ ଭଲ କର୍ମ କଲେ, ଆମ୍ଭେ ନିଶ୍ଚୟ ସେମାନଙ୍କୁ ବୈକୁଣ୍ଠର ଉପରିସ୍ଥ ପ୍ରକୋଷ୍ଠମାନଙ୍କରେ ରଖିବୁ ଯାହା ତଳେ ଝରଣା ବହେ । ସେମାନେ ସେଠାରେ ସର୍ବଦା ରହିବେ । କର୍ମ କରୁଥିବା ଲୋକମାନଙ୍କ ପାଇଁ ଏହା ଖୁବ୍ ସୁନ୍ଦର ପୁରସ୍କାର । ୫୯. ସେମାନେ ସଂଯମ ଆଚରଣ କରନ୍ତି ଏବଂ ସେମାନଙ୍କ ପାଳନକର୍ତ୍ତାଙ୍କ ଉପରେ ଭରସା ରଖନ୍ତି । ୬୦. ଅନେକ ପ୍ରାଣୀ ଅଛନ୍ତି, ଯେଉଁମାନେ ନିଜର ଆହାର ଧରି ବୁଲନ୍ତିନାହିଁ । ଅଲ୍ଲାହ୍ ହିଁ ସେମାନଙ୍କୁ ଆହାର ଦିଅନ୍ତି ଏବଂ ତୁମମାନଙ୍କୁ ମଧ୍ୟ । ସେ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି ।

୬୧. ଯଦି ତୁମେ ସେମାନଙ୍କୁ ପଚାରିବ ଯେ ପୃଥିବୀ ଓ ଆକାଶକୁ କିଏ ସୃଷ୍ଟି କରିଛି ଏବଂ କିଏ ସୂର୍ଯ୍ୟ ଓ ଚନ୍ଦ୍ରକୁ ତୁମ ସେବାରେ ନିୟୋଜିତ କରିଛି, ସେମାନେ ନିଶ୍ଚୟ ଉତ୍ତର ଦେବେ, "ଅଲ୍ଲାହ୍" । ପୁଣି ସେମାନେ କୁଆଡ଼େ ଓଲଟା ବାଟରେ ଯାଉଛନ୍ତି ? ୬୨. ଅଲ୍ଲାହ୍ ନିଜ ଦାସମାନଙ୍କ ମଧ୍ୟରୁ ଯାହାକୁ ଚାହାନ୍ତି ପର୍ଯ୍ୟାପ୍ତ ଆହାର ଦିଅନ୍ତି ଏବଂ ଯାହାକୁ ଚାହାନ୍ତି, ମାପିଚୁପି ଦିଅନ୍ତି । ଅଲ୍ଲାହ୍ ସବୁକିଛି ଜାଣନ୍ତି । ୬୩. ଯଦି ତୁମେ ସେମାନଙ୍କୁ ପଚାରିବ ଯେ କିଏ ଆକାଶରୁ ଜଳବର୍ଷା କରେ ଏବଂ ଏହାଦ୍ୱାରା ନିର୍ଜୀବ ଭୂମିକୁ ଜୀବନ୍ତ କରିଦିଏ, ତେବେ ସେମାନେ ନିଶ୍ଚୟ କହିବେ, "ଅଲ୍ଲାହ୍" । କହିଦିଅ, "ଅଲ୍ଲାହ୍ ହିଁ ପ୍ରଶଂସାର ଯୋଗ୍ୟ", ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକଙ୍କର ବୁଦ୍ଧି ନାହିଁ ।"

୬୪. ପାର୍ଥିବ ଜୀବନ କେବଳ ଏକ ଖେଳ-ତାମସା । ପରଲୋକର ଘର ହେଉଛି ପ୍ରକୃତ ଘର । ଆହା! ସେମାନେ ଏହା ଜାଣିନିଅନ୍ତେ କି! ୬୫. ଯେତେବେଳେ ସେମାନେ ନୌକାରେ ବସନ୍ତି, ନିଜ ଭକ୍ତିକୁ କେବଳ ଅଲ୍ଲାହଙ୍କ

ପାଇଁ ବିଶୁଦ୍ଧ ରଖି ତାଙ୍କୁ ଡାକନ୍ତି, ମାତ୍ର ଯେତେବେଳେ ସେ ସେମାନଙ୍କୁ ନିରାପଦରେ କୂଳରେ ପହଁଚାଇ ଦିଅନ୍ତି, ସେମାନେ ସଙ୍ଗେସଙ୍ଗେ (ଅନ୍ୟମାନଙ୍କୁ) ତାଙ୍କର ସମକକ୍ଷ କରିଦିଅନ୍ତି । ୬୬. ଏଭଳି କରିବା ଦ୍ୱାରା ସେମାନେ ଆମ୍ଭ ଉପକାରକୁ ଅସ୍ୱୀକାର କରନ୍ତି ଏବଂ କିଛି ମଉଜ କରନ୍ତି । ହେଉ, ଶୀଘ୍ର ସେମାନେ (ଏହାର ପରିଣାମ) ଜାଣିଯିବେ ।

୬୭. କ'ଣ ସେମାନେ ଏହା ଦେଖୁନାହାନ୍ତି ଯେ ଆମ୍ଭେ କିପରି (ପବିତ୍ର ମକ୍କାକୁ) ଏକ ନିରାପଦ ଆଶ୍ରୟସ୍ଥଳ କରିଛୁ, ଅଥଚ ଏହାର ଆଖପାଖର ଲୋକମାନେ ନିର୍ଯ୍ୟାତନାର ଶିକାର ହୁଅନ୍ତି ? ତଥାପି କ'ଣ ସେମାନେ ଅସତ୍ୟକୁ ମାନୁଛନ୍ତି ଏବଂ ଅଲ୍ଲାହଙ୍କ ଉପକାରଗୁଡ଼ିକୁ ଅସ୍ୱୀକାର କରୁଛନ୍ତି ? ୬୮. ସେହି ବ୍ୟକ୍ତିଠାରୁ ବଡ଼ ପାପୀ ଆଉ କିଏ ହେବ, ଯିଏ ଅଲ୍ଲାହଙ୍କ ପ୍ରତି ମିଥ୍ୟାରୋପ କରେ କିମ୍ବା ନିଜ ପାଖକୁ ସତ୍ୟର ବାର୍ତ୍ତା ଆସିଯିବା ପରେ ତାକୁ ପ୍ରତ୍ୟାଖ୍ୟାନ କରେ ? କ'ଣ ନାସ୍ତିକମାନଙ୍କର ଠିକଣା ନର୍କ (ହେବା ଉଚିତ) ନୁହେଁ ?

୬୯. ଯେଉଁମାନେ ଆମ୍ଭ (ପ୍ରସନ୍ନତା) ପାଇଁ ସଂଘର୍ଷ କରନ୍ତି, ଆମ୍ଭେ ନିଶ୍ଚୟ ସେମାନଙ୍କୁ ଆମ୍ଭ ମାର୍ଗରେ ପରିଚାଳିତ କରିବୁ । ଅଲ୍ଲାହ୍ ଅବଶ୍ୟ ପୁଣ୍ୟବାନ ଲୋକମାନଙ୍କ ସହିତ ରହିଥାଆନ୍ତି ।

## ଅଧ୍ୟାୟ ୩୦, ଅର୍ ରୁମ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲିଫ୍ – ଲାମ୍ – ମୀମ । ୨. ରୋମୀୟମାନେ ପରାଜିତ ହୋଇ ଯାଇଛନ୍ତି ୩. ନିକଟବର୍ତ୍ତୀ ଭୂଖଣ୍ଡରେ । ମାତ୍ର ଏହି ପରାଜୟ ପରେ ସେମାନେ ପୁଣି ବିଜୟୀ ହେବେ ୪. କିଛି ବର୍ଷ ମଧ୍ୟରେ । ପୂର୍ବେ ମଧ୍ୟ ନିଷ୍ପତ୍ତି ଅଲ୍ଲାହଙ୍କ ହାତରେ ଥିଲା ଏବଂ ଭବିଷ୍ୟତରେ ମଧ୍ୟ ରହିବ । ସେଦିନ ମୁସଲମାନମାନେ ଆନନ୍ଦିତ ହେବେ - ୫. ଅଲ୍ଲାହଙ୍କଠାରୁ ସାହାଯ୍ୟ ପାଇଥିବା ଯୋଗୁଁ । ସେ ଯାହାକୁ ଚାହାନ୍ତି, ବିଜୟୀ କରନ୍ତି । ସେ ପ୍ରବଳ ପରାକ୍ରମୀ ଏବଂ ପରମ ଦୟାଳୁ । ୬. ଏହା ଅଲ୍ଲାହଙ୍କର ବଚନ । ଅଲ୍ଲାହ୍ ବଚନ ଭଂଗ କରନ୍ତି ନାହିଁ, ମାତ୍ର ଅଧିକାଂଶ ଲୋକ ଏହା ଜାଣନ୍ତିନାହିଁ ।

୭. ସେମାନେ କେବଳ ପାର୍ଥିବ ଜୀବନର ବାହ୍ୟ ରୂପକୁ ଜାଣନ୍ତି କିନ୍ତୁ ପରଲୋକ ବିଷୟରେ ଜାଣନ୍ତିନାହିଁ । ୮. କ'ଣ ସେମାନେ ଚିନ୍ତା କରିନାହାନ୍ତି ଯେ ପୃଥିବୀ ଓ ଆକାଶ ଏବଂ ସେଗୁଡ଼ିକ ମଧ୍ୟରେ ଥିବା ସମସ୍ତ ସୃଷ୍ଟିକୁ ଅଲ୍ଲାହ୍ ଏକ ନିର୍ଦ୍ଦିଷ୍ଟ ସମୟ ପାଇଁ ଉଚିତ ଲକ୍ଷ୍ୟରେ ସୃଷ୍ଟି କରିଛନ୍ତି ? ମାତ୍ର ଅଧିକାଂଶ ଲୋକ ଈଶ୍ୱରଙ୍କୁ ସାକ୍ଷାତ କରିବେ ବୋଲି ବିଶ୍ୱାସ କରନ୍ତିନାହିଁ । ୯. କ'ଣ ସେମାନେ ଦେଶରେ ବୁଲାବୁଲି କରି ଦେଖୁନାହାନ୍ତି ଯେ ସେମାନଙ୍କ ପୂର୍ବ ଲୋକମାନଙ୍କର କିଭଳି ଅନ୍ତ ହେଲା ? ସେମାନେ ଏମାନଙ୍କଠାରୁ ଯଥେଷ୍ଟ ଶକ୍ତିଶାଳୀ ଥିଲେ ଏବଂ ଏମାନଙ୍କ ଅପେକ୍ଷା ଅଧିକ ଋଷବାସ ଓ ଘରଦ୍ୱାର କରିଥିଲେ । ସେମାନଙ୍କ ପାଖକୁ ସେମାନଙ୍କର ବାର୍ତ୍ତାବହମାନେ ସ୍ପଷ୍ଟ ପ୍ରମାଣ ନେଇ ଆସିଥିଲେ (ମାତ୍ର ସେମାନେ ପ୍ରତ୍ୟାଖାନ କରିଥିଲେ) । ଅଲ୍ଲାହ୍ ସେମାନଙ୍କ ପ୍ରତି ଅନ୍ୟାୟ କରିନାହାନ୍ତି, ମାତ୍ର ସେଇମାନେ ନିଜ ପ୍ରତି ଅନ୍ୟାୟ କରୁଥିଲେ । ୧୦. ପରିଶେଷରେ ଯେଉଁମାନେ କୁକର୍ମ କରିଥିଲେ, ସେମାନଙ୍କର ପରିଣାମ ମଧ୍ୟ ଶୋଚନୀୟ ହେଲା କାରଣ ସେମାନେ ଅଲ୍ଲାହଙ୍କ ବାଣୀକୁ ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ଏହାକୁ ବିଦ୍ରୂପ କରୁଥିଲେ ।

୧୧. ଅଲ୍ଲାହ୍ ସୃଷ୍ଟିର ଆରମ୍ଭ କରିଛନ୍ତି ଏବଂ ସେ ଏହାର ପୁନରାବୃତ୍ତି କରିବେ । ଏହାପରେ ତୁମମାନଙ୍କୁ ତାଙ୍କରି ପାଖକୁ ଫେରାଇ ନିଆଯିବ । ୧୨. ଯେଉଁଦିନ ପ୍ରଳୟ ହେବ, ସେଦିନ ପାପୀମାନେ ନିରାଶ ହେବେ । ୧୩. ଯେଉଁମାନଙ୍କୁ ଏମାନେ ଅଲ୍ଲାହଙ୍କର ସମକକ୍ଷ କରିଥିଲେ, ସେମାନଙ୍କ ମଧ୍ୟରୁ କେହି ଏମାନଙ୍କର ପକ୍ଷ ସମର୍ଥନ କରିବେନାହିଁ । ତେଣୁ ଏମାନେ ସେହି କଳ୍ପିତ ଈଶ୍ୱରମାନଙ୍କୁ ପ୍ରତ୍ୟାଖ୍ୟାନ କରିଦେବେ । ୧୪. ଯେଉଁଦିନ ପ୍ରଳୟ ହେବ, ସେଦିନ ଲୋକମାନେ (ବିଭିନ୍ନ ଶ୍ରେଣୀରେ) ବାଣ୍ଟି ହୋଇଯିବେ । ୧୫. ଯେଉଁମାନେ (ଅଲ୍ଲାହଙ୍କୁ) ବିଶ୍ୱାସ କରୁଥିଲେ ଏବଂ ଭଲ କର୍ମ କରୁଥିଲେ, ସେମାନେ ବୈକୁଣ୍ଠ ଉଦ୍ୟାନରେ ରହି ଆନନ୍ଦ କରିବେ । ୧୬. ଏବଂ ଯେଉଁମାନେ ଅବିଶ୍ୱାସ କରୁଥିଲେ ଏବଂ ଆମ୍ଭର ବାଣୀକୁ ତଥା ପରଲୋକରେ ଆମ୍ଭ ସହିତ ସାକ୍ଷାତ କରିବାକୁ ମିଥ୍ୟା ମନେ କରୁଥିଲେ, ସେମାନେ ନର୍କଦଣ୍ଡରେ ଦଣ୍ଡିତ ହେବେ ।

୧୭. ଯେତେବେଳେ ତୁମମାନଙ୍କର ସଂଧ୍ୟା ହୁଏ ଏବଂ ଯେତେବେଳେ ସକାଳ ହୁଏ, ଅଲ୍ଲାହଙ୍କର ଗୁଣଗାନ କର। ୧୮. ପୃଥିବୀ ଓ ଆକାଶରେ ତାଙ୍କରି ବନ୍ଦନା ହୁଏ। ମଧ୍ୟାହ୍ନ ଓ ଅପରାହ୍ନରେ ମଧ୍ୟ ତାଙ୍କର ଗୁଣଗାନ କର। ୧୯. ସେ ନିର୍ଜୀବରୁ ସଜୀବ ଏବଂ ସଜୀବରୁ ନିର୍ଜୀବ ଉତ୍ପନ୍ନ କରନ୍ତି ଏବଂ ଜମି (ଶୁଷ୍କ ହୋଇ) ନିର୍ଜୀବ ହୋଇଗଲା ପରେ ପୁଣି (ବର୍ଷାଜଳ ଦ୍ୱାରା) ତାକୁ ଜୀବନ୍ତ କରିଦିଅନ୍ତି। ଏହିପରି ତୁମମାନଙ୍କୁ ମଧ୍ୟ (ପୁନର୍ଜୀବିତ କରି) ବାହାର କରାଯିବ।

୨୦. ତାଙ୍କର ଗୋଟିଏ ନିଦର୍ଶନ ହେଉଛି ଯେ ସେ ତୁମମାନଙ୍କୁ ମାଟିରୁ ସୃଷ୍ଟି କରିଛନ୍ତି। ପୁଣି ଦେଖ, ତୁମେମାନେ ମାନବ ରୂପରେ ଧରାପୃଷ୍ଠରେ ବ୍ୟାପି ଯାଇଛ। ୨୧. ତାଙ୍କର ଗୋଟିଏ ନିଦର୍ଶନ ହେଉଛି ଯେ ସେ ତୁମରି ମଧ୍ୟରୁ ତୁମମାନଙ୍କ ପାଇଁ (ନର ଓ ନାରୀର) ଯୋଡ଼ି ସୃଷ୍ଟି କଲେ ଯେପରିକି ତୁମେମାନେ ପରସ୍ପରଠାରୁ ଶାନ୍ତି ପାଇବ ଏବଂ ସେ ତୁମମାନଙ୍କ ମଧ୍ୟରେ ଦୟା ଓ ପ୍ରେମ ଉତ୍ପନ୍ନ କରିଦେଲେ। ଏଥିରେ ବିଚାରଶୀଳ ଲୋକମାନଙ୍କ ପାଇଁ (ତାଙ୍କ ମହିମାର) ଅନେକ ସଂକେତ ଅଛି।

୨୨. ତାଙ୍କର ନିଦର୍ଶନଗୁଡ଼ିକ ମଧ୍ୟରେ ଅଛି ପୃଥିବୀ ଓ ଅନ୍ତରୀକ୍ଷର ସଂରଚନା ଏବଂ ତୁମମାନଙ୍କ ଭାଷା ଓ ବର୍ଣ୍ଣରେ ଭିନ୍ନତା। ଜ୍ଞାନୀ ଲୋକମାନଙ୍କ ପାଇଁ ଏଥିରେ (ଅଲ୍ଲାହଙ୍କ ମହିମାର) ଅନେକ ସଂକେତ ଅଛି।

୨୩. ରାତି ଏବଂ ଦିନରେ ତୁମମାନଙ୍କର ଶୋଇବା ଏବଂ ତାଙ୍କର କୃପା (ଅର୍ଥାତ୍ ଜୀବିକା) ଅନ୍ୱେଷଣ କରିବା ମଧ୍ୟ ତାଙ୍କର ଏକ ନିଦର୍ଶନ। ଯେଉଁମାନେ (ଧ୍ୟାନ ଦେଇ) ଶୁଣନ୍ତି, ସେମାନଙ୍କ ପାଇଁ ଏଥିରେ ଅନେକ ସଙ୍କେତ ଅଛି।

୨୪. ଏହା ମଧ୍ୟ ତାଙ୍କର ଏକ ନିଦର୍ଶନ ଯେ ତୁମମାନଙ୍କ ମନରେ ଭୟ ଓ ଆଶାର ସଂଚାର କରିବାଲାଗି ସେ ବିଜୁଳିର ଚମକ ଦେଖାଇ ଥାଆନ୍ତି ଏବଂ ଆକାଶରୁ ଜଳ ବର୍ଷା କରି ଏହାଦ୍ୱାରା ମୃତ ଭୂମିକୁ ଜୀବନ୍ତ କରିଦିଅନ୍ତି। ଏଥିରେ ସେମାନଙ୍କ ପାଇଁ ଅନେକ ସଂକେତ ଅଛି, ଯେଉଁମାନେ ବୁଦ୍ଧି ବ୍ୟବହାର କରନ୍ତି।

୨୫. ତାଙ୍କର ଗୋଟିଏ ନିଦର୍ଶନ ହେଉଛି ଯେ ପୃଥିବୀ ଓ ଆକାଶ ତାଙ୍କରି ଆଜ୍ଞାରୁ ତିଷ୍ଠି ରହିଛି। (ବିଚାର ଦିନ) ଯେତେବେଳେ ସେ ତୁମମାନଙ୍କୁ

ଡାକିବେ, ତୁମେମାନେ ଗୋଟିଏ ଡାକରେ ଧରିତ୍ରୀ ମଧ୍ୟରୁ ବାହାରି ଆସିବ। ୨୬. ପୃଥିବୀ ଓ ଆକାଶରେ ଯେଉଁମାନେ ଅଛନ୍ତି, ସମସ୍ତେ ତାଙ୍କରି ଏବଂ ସମସ୍ତେ ତାଙ୍କର ଆଜ୍ଞାଧୀନ।

୨୭. ସେ ହିଁ ସୃଷ୍ଟିର ଆରମ୍ଭ କରିଛନ୍ତି ଏବଂ (ବିଲୟ ପରେ) ଏହାର ପୁନରାବୃତ୍ତି ମଧ୍ୟ କରିବେ। ଏହା କରିବା ତାଙ୍କ ପାଇଁ ଭାରି ସହଜ। ପୃଥିବୀ ଓ ଆକାଶରେ ତାଙ୍କର ଅପାର ମହିମା। ସେ ମହାଶକ୍ତିମାନ ଏବଂ ତତ୍ତ୍ୱଜ୍ଞ।

୨୮. ଅଲ୍ଲାହ୍ ତୁମମାନଙ୍କ ପାଇଁ ତୁମର (ବ୍ୟକ୍ତିଗତ ଜୀବନର) ଉଦାହରଣ ଦେଉଛନ୍ତି। ଆମ୍ଭେ ତୁମମାନଙ୍କୁ ଦେଇଥିବା ଧନସଂପତ୍ତିରେ କ'ଣ ତୁମ ଦାସଦାସୀମାନଙ୍କ ମଧ୍ୟରୁ କେହି ତୁମର ଅଂଶୀଦାର ଅଛନ୍ତି ଯେଉଁମାନେ ତୁମର ସମକକ୍ଷ ହୋଇ ଯାଇଛନ୍ତି? କ'ଣ ତୁମେମାନେ ସେହି ଦାସଦାସୀମାନଙ୍କୁ ସେମିତି ଭୟ କର ଯେମିତି କୌଣସି ଭାଗିଦାରୀରେ) ପରସ୍ପରକୁ ଭୟ କର? ଯେଉଁମାନେ ବୁଦ୍ଧି ବ୍ୟବହାର କରନ୍ତି, ଆମ୍ଭେ ସେମାନଙ୍କ ପାଇଁ ନିଜ ବାଣୀଗୁଡ଼ିକୁ ଏହିପରି ପରିଷ୍କାର ଭାବରେ ବର୍ଣ୍ଣନା କରିଥାଉ। ୨୯. ମାତ୍ର ଦୁରାଚାରୀ ଲୋକମାନେ ନିଜର ଅଜ୍ଞାନତା ଯୋଗୁଁ କାମନାର ବଶବର୍ତ୍ତୀ ହୋଇଯାଆନ୍ତି। ଅଲ୍ଲାହ୍ ଯାହାକୁ ପଥଭ୍ରଷ୍ଟ ହେବାକୁ ଛାଡ଼ିଦିଅନ୍ତି, ତାକୁ କିଏ ବାଟକୁ ଆଣି ପାରିବ? ଏଭଳି ଲୋକମାନଙ୍କୁ କେହି ସାହାଯ୍ୟ କରିବେନାହିଁ।

୩୦. ତେଣୁ, ଏକନିଷ୍ଠ ହୋଇ ଏହି ଏକେଶ୍ୱରବାଦୀ ଧର୍ମ ପାଳନ କର। ଅଲ୍ଲାହଙ୍କ ପ୍ରଦତ୍ତ ସେହି (ଜନ୍ମଗତ) ସ୍ୱଭାବର ଅନୁକରଣ କର ଯେଉଁ ସ୍ୱଭାବ ଦେଇ ସେ ମନୁଷ୍ୟମାନଙ୍କୁ ଗଢ଼ିଛନ୍ତି। ଅଲ୍ଲାହଙ୍କ ସର୍ଜନାରେ ପରିବର୍ତ୍ତନ ହୁଏନାହିଁ। ଏହା ଚିରପ୍ରତିଷ୍ଠିତ ଧର୍ମ କିନ୍ତୁ ଅଧିକାଂଶ ଲୋକ ଏକଥା ଜାଣନ୍ତିନାହିଁ। ୩୧. ପଶ୍ଚାତାପ କରି ଅଲ୍ଲାହଙ୍କ ପାଖକୁ ଫେରିଆସ ଏବଂ ତାଙ୍କୁ ଭୟ କରୁଥାଅ। ନମାଜ ପାଠ କରୁଥାଅ ଏବଂ ବହୁଈଶ୍ୱରବାଦୀ ହୁଅନାହିଁ। ୩୨. (କିମ୍ବା ସେହି ଲୋକମାନଙ୍କ ପରି ହୁଅନାହିଁ) ଯେଉଁମାନେ ସେମାନଙ୍କ ଧର୍ମକୁ ଖଣ୍ଡଖଣ୍ଡ କରିଦେଲେ ଏବଂ ଅନେକ ଗୋଷ୍ଠୀରେ ବିଭକ୍ତ ହୋଇଗଲେ। ଯେଉଁ ଗୋଷ୍ଠୀ ପାଖରେ ଯାହା ଅଛି, ସେ ସେଇଥିରେ ମଗ୍ନ।

୩୩. ଯେତେବେଳେ ଲୋକଙ୍କ ଉପରେ ବିପଦ ପଡ଼େ, ସେମାନେ (ପଶ୍ଚାତାପ କରି) ଏକ ଲୟରେ ପ୍ରଭୁଙ୍କୁ ଡାକନ୍ତି ମାତ୍ର ଯେତେବେଳେ ସେ ସେମାନଙ୍କୁ ତାଙ୍କ କୃପାର ସ୍ୱାଦ ଚଖାଇ ଦିଅନ୍ତି, ସେତେବେଳେ କିଛି ଲୋକ ଅନ୍ୟମାନଙ୍କୁ ନିଜ ପାଳନକର୍ତ୍ତାଙ୍କର ସମକକ୍ଷ କରିଦିଅନ୍ତି। ୩୪. ଏହାଦ୍ୱାରା ସେମାନେ ଆମ୍ଭର ଉପକାର ବଦଳରେ କୃତଘ୍ନତା କରନ୍ତି। ଠିକ୍ ଅଛି, କିଛି ମଜା କରିନିଅ। ଅତିଶୀଘ୍ର (ଏହାର ପରିଣାମ) ଜାଣିଯିବ। ୩୫. କ'ଣ ଆମ୍ଭେ ସେମାନଙ୍କ ପାଖକୁ ଏଭଳି କୌଣସି ପ୍ରମାଣ ପଠାଇଛୁ ଯାହା ସେମାନଙ୍କୁ ବହୁଈଶ୍ୱରବାଦର ଶିକ୍ଷା ଦିଏ ?

୩୬. ଯଦି ଆମ୍ଭେ ଲୋକଙ୍କୁ କୃପାର ସ୍ୱାଦ ଚଖାଇଦେଉ, ସେମାନେ ଆନନ୍ଦରେ ଉତଫୁଲ୍ଲିତ ହୋଇଯାଆନ୍ତି, ମାତ୍ର ଯଦି ସେମାନଙ୍କର ଅର୍ଜିତ କର୍ମ ଯୋଗୁଁ ସେମାନଙ୍କ ଉପରେ କୌଣସି ବିପଦ ପଡ଼େ, ତା'ହେଲେ ନିରାଶ ହୋଇଯାଆନ୍ତି। ୩୭. କ'ଣ ସେମାନେ ଏହା ଲକ୍ଷ୍ୟ କରୁନାହାନ୍ତି ଯେ ଅଲ୍ଲାହ ଯାହାକୁ ଚାହାନ୍ତି ତାକୁ ପର୍ଯ୍ୟାପ୍ତ ପରିମାଣରେ ସାଂସାରିକ ସାଧନ ଦିଅନ୍ତି ଏବଂ ଯାହାକୁ ଚାହାନ୍ତି ମାପିଚୁପି ଦିଅନ୍ତି ? ବିଶ୍ୱାସ କରୁଥିବା ଲୋକମାନଙ୍କ ପାଇଁ ଏଥିରେ ଅନେକ ସଂକେତ ଅଛି।

୩୮. ନିଜର ଆତ୍ମୀୟ, ଦୀନଦୁଃଖୀ ଓ (ଅସହାୟ) ପଥିକମାନଙ୍କୁ ସେମାନଙ୍କର ପ୍ରାପ୍ୟ ଦେଉଥାଅ। ଯେଉଁମାନେ ଅଲ୍ଲାହଙ୍କର ପ୍ରସନ୍ନତା ଚାହାନ୍ତି, ସେମାନଙ୍କ ପାଇଁ ଏହା ଖୁବ ଭଲ ଏବଂ ସେହିମାନେ ସଫଳତା ଲାଭ କରିବେ। ୩୯. ଲୋକଙ୍କର ଧନରେ ବୃଦ୍ଧି ହେବ ବୋଲି ତୁମେମାନେ ଯେଉଁ ସୁଧ ଦିଅ, ଅଲ୍ଲାହଙ୍କ ଦୃଷ୍ଟିରେ ଏହା ବୃଦ୍ଧି ହୁଏନାହିଁ, ମାତ୍ର ତୁମେମାନେ ଅଲ୍ଲାହଙ୍କ ପ୍ରସନ୍ନତା ପାଇଁ ଯାହା ଦାନ କର, ତାହା ତୁମମାନଙ୍କ ଧନରେ ବହୁଗୁଣ ବୃଦ୍ଧି କରିଥାଏ।

୪୦. ଅଲ୍ଲାହ୍ ସିଏ, ଯିଏ ତୁମମାନଙ୍କୁ ସୃଷ୍ଟି କଲେ, ଆହାର ଦେଲେ, ପୁଣି ମୃତ୍ୟୁ ଦେବେ ଏବଂ ପୁଣି ତୁମମାନଙ୍କୁ ଜୀବିତ କରିବେ। ଯେଉଁମାନଙ୍କୁ ତୁମେମାନେ ଈଶ୍ୱର ମାନିଛ, କ'ଣ ସେମାନଙ୍କ ମଧ୍ୟରେ ଏପରି କେହି ଅଛି ଯିଏ ଏଥି ମଧ୍ୟରୁ କୌଣସି କାର୍ଯ୍ୟ କରେ? ସେ ପରମ ପବିତ୍ର ଏବଂ ଏମାନଙ୍କର ବହୁଈଶ୍ୱରବାଦରୁ ବହୁ ଉର୍ଦ୍ଧ୍ୱରେ।

୪୧. ଲୋକମାନଙ୍କର ଅର୍ଜିତ କର୍ମ ଯୋଗୁଁ ଜଳ ଓ ସ୍ଥଳରେ ଅଶାନ୍ତି ଦେଖା ଦେଇଛି । ଏହାଦ୍ୱାରା ସେ ସେମାନଙ୍କୁ ସେମାନଙ୍କ କିଛି କୁକର୍ମର ମଜା ଚଖାଇବେ, ଯାହାଫଳରେ ହୁଏତ ସେମାନେ ସେଥିରୁ ବିରତ ରହିବେ । ୪୨. ସେମାନଙ୍କୁ କୁହ, "ଦେଶରେ ବୁଲାବୁଲି କରି ଦେଖ ଯେ ତୁମମାନଙ୍କ ପୂର୍ବ ଲୋକମାନଙ୍କର କିଭଳି ପରିଣାମ ହେଲା । ସେମାନଙ୍କ ମଧ୍ୟରୁ ଅଧିକାଂଶ ବହୁଈଶ୍ୱରବାଦୀ ଥିଲେ ।" ୪୩. ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ପ୍ରଳୟର ଦିନଟି ଆସିବା ପୂର୍ବରୁ ଏକାଗ୍ରତାର ସହିତ ଯୁଗେଯୁଗେ ପ୍ରତିଷ୍ଠିତ ଏହି ଧର୍ମର ପାଳନ କର । ସେହି ଦିନଟିକୁ କେହି ଅଟକାଇ ପାରିବେନାହିଁ । ସେଦିନ ଲୋକମାନେ (ଦୁଇ ଭାଗରେ) ବାଣ୍ଟି ହୋଇଯିବେ । ୪୪. ଯିଏ ଅବିଶ୍ୱାସ କରେ, ସେ ଅବିଶ୍ୱାସର କୁପରିଣାମ ଭୋଗିବ ଏବଂ ଯେଉଁମାନେ ଭଲ କର୍ମ କରନ୍ତି, ସେମାନେ ପରଲୋକରେ ସୁଖ ପାଇବା ପାଇଁ ପ୍ରସ୍ତୁତି କରୁଛନ୍ତି । ୪୫. ଯେଉଁମାନେ ଆସ୍ଥା ରଖିଲେ ଏବଂ ଭଲକର୍ମ କଲେ, ଅଲ୍ଲାହ୍ ସେମାନଙ୍କୁ ନିଜ କୃପାରୁ ପୁରସ୍କୃତ କରିବେ । ଅଲ୍ଲାହ୍ ନାସ୍ତିକମାନଙ୍କୁ ଭଲ ପାଆନ୍ତିନାହିଁ ।

୪୬. ତାଙ୍କର ଗୋଟିଏ ନିଦର୍ଶନ ହେଉଛି ଯେ ସେ (ବର୍ଷାର) ସୁସମାଚାର ଦେବାପାଇଁ ବାୟୁ ପଠାନ୍ତି ଯେପରିକି ସେ ତୁମମାନଙ୍କୁ ନିଜ କୃପାର ସ୍ୱାଦ ଚଖାଇବେ, ନୌକାଗୁଡ଼ିକ ତାଙ୍କ ଆଜ୍ଞାରେ ଚଳିବ ଏବଂ ତୁମେମାନେ ତାଙ୍କର କୃପା (ଅର୍ଥାତ୍ ଜୀବିକା) ଅନ୍ୱେଷଣ କରିବ । ସମ୍ଭବତଃ (ଏହାଦ୍ୱାରା) ତୁମେମାନେ କୃତଜ୍ଞ ହେବ ।

୪୭. ଆମ୍ଭେ ତୁମ ପୂର୍ବରୁ ଅନେକ ବାର୍ତ୍ତାବହଙ୍କୁ ସେମାନଙ୍କ ସଂପ୍ରଦାୟ ପାଖକୁ ପଠାଇଥିଲୁ ଯେଉଁମାନେ ସ୍ୱଷ୍ଟ ପ୍ରମାଣ ନେଇ ଯାଇଥିଲେ । ପୁଣି ଯେଉଁମାନେ ଅପରାଧ କରୁଥିଲେ, ଆମ୍ଭେ ସେମାନଙ୍କଠାରୁ ପ୍ରତିଶୋଧ ନେଲୁ । ସଦ୍‌ବିଶ୍ୱାସୀମାନଙ୍କୁ ସାହାଯ୍ୟ କରିବା ଆମ୍ଭର ଦାୟିତ୍ୱ ।

୪୮. ଅଲ୍ଲାହ୍ ବାଦଲଗୁଡ଼ିକୁ ଚଲାଇବା ପାଇଁ ବାୟୁ ପ୍ରବାହିତ କରନ୍ତି । ପୁଣି ସେ ଯେମିତି ଚାହାନ୍ତି, ସେଗୁଡ଼ିକୁ ଆକାଶରେ ଖେଳାଇ ଦିଅନ୍ତି ଏବଂ ସେଗୁଡ଼ିକୁ ସ୍ତରସ୍ତର କରିଦିଅନ୍ତି । ପୁଣି ସେଥିରୁ ମେଘ ବର୍ଷା ହେବାର ତୁମେମାନେ

ଦେଖ । ପୁଣି ସେ ତାଙ୍କର ଯେଉଁ ଦାସମାନଙ୍କ ପାଇଁ ଇଚ୍ଛା କରନ୍ତି ଜଳବୃଷ୍ଟି କରନ୍ତି, ଯାହାଦ୍ୱାରା ସେମାନେ ଖୁସି ହୋଇଯାଆନ୍ତି । ୪୯. ଅଥଚ ବର୍ଷା ହେବା ପୂର୍ବରୁ ସେମାନେ ନିରାଶ ହୋଇ ଯାଇଥିଲେ । ୫୦. ସୁତରାଂ, (ସୃଷ୍ଟିରେ) ଅଲ୍ଲାହଙ୍କ କରୁଣାର ନିଦର୍ଶନଗୁଡ଼ିକୁ ଲକ୍ଷ୍ୟ କରୁଥାଅ ଯେ ସେ ମୃତ ଅବସ୍ଥାରେ ପଡ଼ିଥିବା ଭୂମିକୁ କିପରି (ବର୍ଷାଜଳ ଦ୍ୱାରା) ଜୀବନ୍ତ କରନ୍ତି । ଏହିପରି ସେ ମୃତ ଲୋକମାନଙ୍କୁ ନିଶ୍ଚୟ ପୁନର୍ଜୀବିତ କରିବେ । ସେ ସବୁକିଛି କରିବାକୁ ସକ୍ଷମ । ୫୧. ଯଦି ଆମ୍ଭେ ଏଭଳି ବାୟୁ ପଠାନ୍ତୁ, ଯାହାଦ୍ୱାରା ସେମାନଙ୍କର ଶସ୍ୟ ଶୁଖି ହଳଦିଆ ପଡ଼ିଯାଆନ୍ତା, ତେବେ ସେମାନେ କୃତଘ୍ନ ହୋଇ ଯାଆନ୍ତେ । ୫୨. (ହେ ବାର୍ତ୍ତାବହ !) ତୁମେ ମୃତମାନଙ୍କୁ ନିଜର କଥା ଶୁଣାଇପାରିବ ନାହିଁ କିମ୍ବା ମୁହଁ ବୁଲାଇ ଚାଲି ଯାଉଥିବା ବଧିରମାନଙ୍କୁ ମଧ୍ୟ ଶୁଣାଇ ପାରିବନାହିଁ । ୫୩. କିମ୍ବା ଅନ୍ଧମାନଙ୍କୁ ସେମାନଙ୍କ ଭ୍ରାନ୍ତି ମଧ୍ୟରୁ ବାହାର କରି ବାଟକୁ ଆଣି ପାରିବନାହିଁ । ତୁମେ କେବଳ ସେଇମାନଙ୍କୁ (ନିଜର କଥା) ଶୁଣାଇ ପାରିବ ଯେଉଁମାନେ ଆମ୍ଭ ବାଣୀକୁ ବିଶ୍ୱାସ କରନ୍ତି ଏବଂ ଯେଉଁମାନେ ଆମ୍ଭର ଆଜ୍ଞାଧୀନ ।

୫୪. ଅଲ୍ଲାହ୍ ସିଏ, ଯିଏ ତୁମମାନଙ୍କୁ (ଶିଶୁ ରୂପେ) ଦୁର୍ବଳ ଅବସ୍ଥାରେ ସୃଷ୍ଟି କଲେ, ପୁଣି ଦୁର୍ବଳତା ପରେ ତୁମମାନଙ୍କୁ ବଳ ଦେଲେ, ତା'ପରେ ପୁନର୍ବାର ତୁମମାନଙ୍କୁ ଦୁର୍ବଳ ଓ ବୃଦ୍ଧ କରିଦେଲେ । ସେ ଯାହା ଇଚ୍ଛା କରନ୍ତି ତାହା ସୃଷ୍ଟି କରନ୍ତି । ସେ ମହାଜ୍ଞାନୀ ଏବଂ ସବୁକିଛି କରିବାକୁ ସକ୍ଷମ ।

୫୫. ଯେଉଁଦିନ ସୃଷ୍ଟିର ପ୍ରଳୟ ହେବ, ପାପୀମାନେ ରାଣ ଖାଇ କହିବେ ଯେ ସେମାନେ ଘଣ୍ଟାକଠାରୁ ବେଶୀ ସମୟ ରହି ନଥିଲେ । ଏହିପରି ସେମାନେ (ସଂସାରରେ) ପ୍ରତାରିତ ହେଉଥିଲେ । ୫୬. ମାତ୍ର ସଦବିଶ୍ୱାସୀ ଓ ସଦ୍ଜ୍ଞାନୀମାନେ କହିବେ, "ଅଲ୍ଲାହଙ୍କ ଲିଖନ ଅନୁଯାୟୀ ତୁମେମାନେ ପୁନର୍ଜୀବନ ପାଇବା ପର୍ଯ୍ୟନ୍ତ ରହିଥିଲ । ଆଜି ସେହି ପୁନର୍ଜୀବନ ପାଇବାର ଦିନ, ମାତ୍ର ତୁମେମାନେ ଏହାକୁ ବିଶ୍ୱାସ କରୁ ନଥିଲ । ୫୭. ସେଦିନ ଦୁରାଚାରୀମାନଙ୍କର କୌଣସି ବାହାନା ଚଳିବ ନାହିଁ କିମ୍ବା ସେମାନଙ୍କୁ କ୍ଷମାପ୍ରାର୍ଥନା କରିବାର ଅନୁମତି ଦିଆଯିବ ନାହିଁ ।

୫୮. ଆମ୍ଭେ ଲୋକମାନଙ୍କ (ବୁଝିବା) ପାଇଁ ଏହି କୁରଆନରେ ବିଭିନ୍ନ ପ୍ରକାରର ଉଦାହରଣ ଦେଇଛୁ, ମାତ୍ର ତୁମେମାନେ ଯାହା ପ୍ରମାଣ ଦେଲେ ସୁଦ୍ଧା ମିଥ୍ୟାବିଶ୍ୱାସୀମାନେ କହିବେ ଯେ ତୁମେ ମିଛ କହୁଛ। ୫୯. ଏହିପରି, ଯେଉଁମାନେ କିଛି ବୁଝନ୍ତିନାହିଁ, ଅଲ୍ଲାହ୍ ସେମାନଙ୍କ ହୃଦୟର ଦ୍ୱାର ବନ୍ଦ କରିଦିଅନ୍ତି। ୬୦. (ହେ ବାର୍ତ୍ତାବହ!) ଧୈର୍ଯ୍ୟ ଧର। ଅଲ୍ଲାହଙ୍କ ବଚନ ଅବଶ୍ୟ ସତ୍ୟ। ଯେଉଁମାନଙ୍କର ବିଶ୍ୱାସ ନାହିଁ, ସେମାନେ ତୁମକୁ ବିଚଳିତ କରି ନଦିଅନ୍ତୁ।

## ଅଧ୍ୟାୟ ୩୧, ଲୁକ୍‌ମାନ

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲିଫ - ଲାମ୍ – ମୀମ୍। ୨. ଏହା ତତ୍ତ୍ୱଜ୍ଞାନରେ ପରିପୂର୍ଣ୍ଣ ଗ୍ରନ୍ଥର ବାଣୀ। ୩. ଏହା (ସେହି) ପୁଣ୍ୟବାନ ଲୋକମାନଙ୍କ ପାଇଁ ଏକ ମାର୍ଗଦର୍ଶନକାରୀ ଗ୍ରନ୍ଥ ଏବଂ (ଈଶ୍ୱରଙ୍କର) ଏକ କରୁଣା, ୪. ଯେଉଁମାନେ ନମାଜ ପାଠ କରନ୍ତି, ଜକାତ୍ ଦିଅନ୍ତି ଏବଂ ପରଲୋକରେ ବିଶ୍ୱାସ କରନ୍ତି। ୫. ଏହି ଲୋକମାନେ ଈଶ୍ୱରଙ୍କ ମାର୍ଗରେ ଅଛନ୍ତି ଏବଂ ଏହିମାନେ ସଫଳ ହେବେ।

୬. ଏଭଳି କିଛି ଲୋକ ଅଛନ୍ତି, ଯେଉଁମାନେ ଅଜ୍ଞାନତା ଯୋଗୁଁ ଲୋକମାନଙ୍କୁ ଅଲ୍ଲାହଙ୍କ ମାର୍ଗରୁ ରୋକିବା ପାଇଁ ଏବଂ ଏହାକୁ ପରିହାସ କରିବା ଉଦ୍ଦେଶ୍ୟରେ କିଛି ମନୋରଂଜନକାରୀ ସାମଗ୍ରୀ କିଣି ଆଣନ୍ତି। ଏଭଳି ଲୋକମାନେ ଅପମାନଜନକ ଶାସ୍ତି ଭୋଗିବେ। ୭. ଏଭଳି ବ୍ୟକ୍ତି ପାଖରେ ଯେତେବେଳେ ଆମ୍ଭର ବାଣୀ ପାଠ କରାଯାଏ, ସେ ଗର୍ବରେ ମୁହଁ ବୁଲାଇ ନିଏ ସତେଯେପରି କିଛି ଶୁଣିନାହିଁ କିମ୍ବା ତା' କାନ ବଧିର ହୋଇଯାଇଛି। ତେଣୁ, ତା'କୁ ଭୟଙ୍କର ଶାସ୍ତି ମିଳିବ ବୋଲି ସୂଚନା ଦେଇଦିଅ। ୮. ଯେଉଁମାନେ ବିଶ୍ୱାସ କଲେ ଏବଂ ଭଲ କର୍ମ କଲେ, ସେମାନଙ୍କ ପାଇଁ ସୁଖଦାୟକ (ବୈକୁଣ୍ଠର) ଉଦ୍ୟାନ ରହିଛି, ୯. ଯେଉଁଠି ସେମାନେ ସର୍ବଦା ରହିବେ। ଏହା ଅଲ୍ଲାହଙ୍କ ଦୃଢ଼ ବଚନ। ଅଲ୍ଲାହ୍ ମହାଶକ୍ତିମାନ ଏବଂ ତତ୍ତ୍ୱଜ୍ଞ।

୧୦. ସେ ଆକାଶକୁ ବିନା ସ୍ତମ୍ଭରେ ସୃଷ୍ଟି କରିଛନ୍ତି ଯେମିତି ତୁମେମାନେ ଦେଖୁଛ ଏବଂ ଭୂପୃଷ୍ଠରେ ପାହାଡ଼ଗୁଡ଼ିକୁ ପୋତି ଦେଇଛନ୍ତି, ଯେପରିକି ଧରିତ୍ରୀ

ତୁମମାନଙ୍କୁ ନେଇ ଦୋହଲି ନଯାଉ ଏବଂ ସେଥିରେ ବିଭିନ୍ନ ପ୍ରକାରର ଜୀବଜନ୍ତୁ (ସୃଷ୍ଟି କରି) ଚାରିଆଡ଼େ ଖେଳାଇ ଦେଇଛନ୍ତି । ଆମ୍ଭେ ଆକାଶରୁ ଜଳ ବର୍ଷା କରୁ ଏବଂ ଭୂପୃଷ୍ଠରେ ବିଭିନ୍ନ ପ୍ରକାରର ଭଲଭଲ ବୃକ୍ଷଲତା ଉତ୍ପନ୍ନ କରୁ । ୧୧. ଏଗୁଡ଼ିକ ତ ଅଲ୍ଲାହଙ୍କର ସୃଷ୍ଟି । ଏବେ ମୋତେ ଦେଖାଅ ଯେ ତାଙ୍କ ବ୍ୟତୀତ ଅନ୍ୟମାନେ କ'ଣ ସବୁ ସୃଷ୍ଟି କରିଛନ୍ତି? ପ୍ରକୃତରେ ପାପିଷ୍ଠମାନେ ପୂରାପୂରି ପଥଭ୍ରଷ୍ଟ ହୋଇ ଯାଇଛନ୍ତି ।

୧୨. ଆମ୍ଭେ ଲୁକ୍‌ମାନ୍‌ଙ୍କୁ ବୁଦ୍ଧିମତା ପ୍ରଦାନ କରିଥିଲୁ (ଏବଂ କହିଥିଲୁ) "ଅଲ୍ଲାହଙ୍କ ପ୍ରତି କୃତଜ୍ଞ ହୁଅ ।" ଯିଏ କୃତଜ୍ଞ ହୁଏ, ସେ ନିଜର ମଂଗଳ ପାଇଁ ହୁଏ, ମାତ୍ର ଯଦି କେହି କୃତଘ୍ନ ହୁଏ (ତେବେ ଏହାର ପରିଣାମ ମଧ୍ୟ ସେ ହିଁ ଭୋଗିବ) । ଅଲ୍ଲାହ୍ ଆବଶ୍ୟକତା ରହିତ ଏବଂ ପ୍ରଶଂସାଯୋଗ୍ୟ ।

୧୩. (ସେ ସମୟର କଥା ପଢ଼ି ଶୁଣାଅ) ଯେତେବେଳେ ଲୁକ୍‌ମାନ ନିଜ ପୁଅକୁ ଉପଦେଶ ଦେଇ କହିଥିଲେ, "ହେ ପୁତ୍ର! କାହାରିକୁ ଅଲ୍ଲାହଙ୍କର ସମକକ୍ଷ କରିବନାହିଁ । ବାସ୍ତବରେ ବହୁଈଶ୍ୱରବାଦ ଘୋର ଅନ୍ୟାୟ ।" ୧୪. ଆମ୍ଭେ ମନୁଷ୍ୟକୁ ତା' ବାପାମାଆଙ୍କ ଅଧିକାର ବିଷୟରେ ସାବଧାନ କରିଛୁ, କାରଣ ତା' ମାଆ କଷ୍ଟ ଉପରେ କଷ୍ଟ ସହି ତାକୁ ଗର୍ଭରେ ଧାରଣ କରେ ଏବଂ ତା' କ୍ଷୀର ଛାଡ଼ିବାକୁ ଦୁଇ ବର୍ଷ ଲାଗିଥାଏ । (ତେଣୁ, ଆମ୍ଭେ ତାକୁ ନିର୍ଦ୍ଦେଶ ଦେଲୁ) "ଆମ୍ଭ ପ୍ରତି ଏବଂ ନିଜ ବାପାମାଆଙ୍କ ପ୍ରତି କୃତଜ୍ଞ ହୁଅ । ଆମ୍ଭରି ପାଖକୁ ତୋତେ ଫେରିବାକୁ ହେବ । ୧୫. ମାତ୍ର ଯଦି ସେ ଦୁହେଁ ତୋତେ ଅନ୍ୟ କାହାରିକୁ ମୋ' ଈଶ୍ୱରତ୍ୱରେ ଅଂଶୀଦାର କରିବାକୁ ବାଧ୍ୟ କରନ୍ତି ଯାହା ବିଷୟରେ ତୋର କୌଣସି (ପ୍ରାମାଣିକ) ଜ୍ଞାନ ନାହିଁ, ତେବେ ସେମାନଙ୍କ କଥା ମାନିବୁନାହିଁ । ହଁ, ସଂସାରରେ ସେମାନଙ୍କ ସହିତ ଭଲରୂପେ ନିର୍ବାହ କରୁଥା ଏବଂ ସେହି ବ୍ୟକ୍ତିର ପଥ ଅନୁସରଣ କର ଯିଏ ମୋ'ର ଶରଣ ନେଇଛି । ପୁଣି ତୁମେ ସମସ୍ତେ ମୋ'ରି ପାଖକୁ ଫେରି ଆସିବ । ତୁମେମାନେ ଯାହା କର୍ମ କରୁଥିଲ, ସେତେବେଳେ ମୁଁ ତୁମମାନଙ୍କୁ ଜଣାଇଦେବି ।"

୧୬. (ଲୁକ୍‌ମାନ୍ କହିଲେ) "ହେ ପୁତ୍ର! କୌଣସି କର୍ମ ସୋରିଷଦାନା ପରି କ୍ଷୁଦ୍ର ହେଉ ଏବଂ ଏହା କୌଣସି ପଥର ଭିତରେ କିମ୍ବା ଧରିତ୍ରୀ ବା ଆକାଶରେ

ଲୁଚିଥାଉ, (ବିଚାର ଦିନ) ଅଲ୍ଲାହ୍ ନିଶ୍ଚୟ ତାହାକୁ ବାହାର କରି ଆଣିବେ। ଅଲ୍ଲାହ୍ ସୂକ୍ଷ୍ମଦର୍ଶୀ ଏବଂ ସର୍ବଜ୍ଞ । ୧୭. ହେ ପୁତ୍ର! ନିୟମିତ ନମାଜ ସଂପାଦନ କରୁଥାଅ, (ଲୋକମାନଙ୍କୁ) ଭଲ କର୍ମ କରିବାର ଉପଦେଶ ଦେଉଥାଅ ଏବଂ କୁକର୍ମ କରିବାକୁ ମନା କରୁଥାଅ। ଯଦି ତୁମ ଉପରେ କୌଣସି ବିପଦ ପଡ଼େ, ତେବେ ଧୈର୍ଯ୍ୟ ଅବଲମ୍ବନ କର। ଏଗୁଡ଼ିକ ଅବଶ୍ୟ ଭାରି ସାହସିକ କାର୍ଯ୍ୟ। ୧୮. ଲୋକମାନଙ୍କ ପାଖରୁ (ଅହଂକାରରେ) ମୁହଁ ଫେରାଇ ନିଅନାହିଁ କିମ୍ବା ଭୂମି ଉପରେ ଦାମ୍ଭିକତାର ସହିତ ଚାଲନାହିଁ। ଅଲ୍ଲାହ୍ କୌଣସି ଆତ୍ମଗର୍ବୀ ଓ ଅହଂକାରୀକୁ ପସନ୍ଦ କରନ୍ତିନାହିଁ। ୧୯. (ଚାଲିବା ବେଳେ) ମଧ୍ୟମ ବେଗରେ ଚାଲ ଏବଂ ଧୀର ସ୍ୱରରେ କଥା କୁହ। ସବୁଠାରୁ କର୍କଶ ସ୍ୱର ହେଉଛି ଗଧର ସ୍ୱର।"

୨୦. କ'ଣ ତୁମେମାନେ ଦେଖୁନାହଁ ଯେ ପୃଥିବୀ ଓ ଆକାଶରେ ଯାହା ଅଛି, ଅଲ୍ଲାହ୍ କିପରି ସେଗୁଡ଼ିକୁ ତୁମମାନଙ୍କ ସେବାରେ ଲଗାଇ ଦେଇଛନ୍ତି ଏବଂ ତୁମମାନଙ୍କ ପ୍ରତି ଗୁପ୍ତ ଓ ପ୍ରକାଶ୍ୟ ଭାବରେ ଅପାର କରୁଣା କରିଛନ୍ତି? (ଏହା ସତ୍ତ୍ୱେ) କିଛି ଲୋକ ବିନା ଜ୍ଞାନ, ବିନା ଶିକ୍ଷା କିମ୍ବା କୌଣସି ପ୍ରକାଶମାନ ଗ୍ରନ୍ଥର ଆଧାର ବିନା ଅଲ୍ଲାହଙ୍କ ବିଷୟରେ ଯୁକ୍ତିତର୍କ କରନ୍ତି। ୨୧. ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଅଲ୍ଲାହ୍ ଯେଉଁ ଗ୍ରନ୍ଥ ପଠାଇଛନ୍ତି ତାହାକୁ ମାନି ଚଳ, ସେମାନେ କହନ୍ତି, "ନା, ଆମେ ତ ସେହି ବାଟରେ ଯିବୁ ଯେଉଁ ବାଟରେ ଆମ ପୂର୍ବପୁରୁଷମାନଙ୍କୁ ଯିବାର ଦେଖିଛୁ।" ଯଦିଓ ଶଇତାନ ସେମାନଙ୍କ ପୂର୍ବପୁରୁଷମାନଙ୍କୁ ନର୍କଦଣ୍ଡ ଭୋଗିବା ପାଇଁ ଡାକୁଥାଉ?"

୨୨. ଯିଏ ନିଜକୁ ଅଲ୍ଲାହଙ୍କଠାରେ ସମର୍ପଣ କରିଦିଏ ଏବଂ ପୁଣ୍ୟବାନ ହୋଇଥାଏ, ଅବଶ୍ୟ ସେ ଏକ ଦୃଢ଼ ଆଶ୍ରୟ ନେଇଛି। ସବୁ କର୍ମର ଅନ୍ତିମ ନିଷ୍ପତ୍ତି ଅଲ୍ଲାହଙ୍କ ହାତରେ ରହିଛି। ୨୩. ଯିଏ ପ୍ରତ୍ୟାଖ୍ୟାନ କରେ, ତୁମେ ତା' ପ୍ରତ୍ୟାଖ୍ୟାନ ଯୋଗୁଁ ଦୁଃଖ କରନାହିଁ। ଶେଷରେ ସେମାନେ ଆମ୍ଭରି ପାଖକୁ ଫେରିବେ। ପୁଣି ସେମାନେ ଯାହା କରୁଥିଲେ, ଆମ୍ଭେ ସେମାନଙ୍କୁ ଜଣାଇଦେବୁ। ଅଲ୍ଲାହ୍ ମନର ଗୋପନ କଥା ଜାଣନ୍ତି। ୨୪. ଆମ୍ଭେ (ଏବେ) ସେମାନଙ୍କୁ (ସଂସାରରେ) କିଛି ମଉଜ କରିବାର ସୁଯୋଗ ଦେଉଛୁ। ପୁଣି ସେମାନଙ୍କୁ କଠୋର ଦଣ୍ଡ ଭୋଗିବା ପାଇଁ ତଡ଼ିନେବୁ।

୨୫. ଯଦି ତୁମେ ସେମାନଙ୍କୁ ପଚାରିବ ଯେ ପୃଥିବୀ ଓ ଆକାଶକୁ କିଏ ସୃଷ୍ଟି କରିଛି, ସେମାନେ ନିଶ୍ଚୟ ଉତ୍ତର ଦେବେ, "ଅଲ୍ଲାହ୍" । ସେମାନଙ୍କୁ କୁହ ଯେ ଅଲ୍ଲାହ୍ ହିଁ ଧନ୍ୟବାଦର ପାତ୍ର, ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଏହା ଜାଣନ୍ତିନାହିଁ । ୨୬. ପୃଥିବୀ ଓ ଆକାଶରେ ଯାହା ଅଛି, ସବୁ ଅଲ୍ଲାହଙ୍କର । ଅଲ୍ଲାହ୍ ଆବଶ୍ୟକତାରହିତ ଏବଂ ସ୍ତୁତିଯୋଗ୍ୟ । ୨୭. ଯଦି ପୃଥିବୀର ସମସ୍ତ ବୃକ୍ଷ କଲମ ହୋଇ ଯାଆନ୍ତି ଏବଂ ସମୁଦ୍ର କାଳି ହୋଇଯାଆନ୍ତି ଏବଂ ଏହା ସହିତ ଆଉ ସାତଟି ସମୁଦ୍ର ଆସି ମିଶି ଯାଆନ୍ତି, ତଥାପି ଅଲ୍ଲାହଙ୍କ କଥା ଲେଖିଲେ ସରିବ ନାହିଁ । ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ । ୨୮. ତୁମ ସମସ୍ତଙ୍କୁ ସୃଷ୍ଟି କରିବା ଏବଂ (ମୃତ୍ୟୁ ପରେ) ପୁର୍ନଜୀବିତ କରିବା (ତାଙ୍କ ପାଇଁ) ଜଣେ ବ୍ୟକ୍ତିକୁ ସୃଷ୍ଟି କରିବା ଓ ପୁନର୍ଜୀବିତ କରିବା ସହ ସମାନ । ଅଲ୍ଲାହ୍ ସର୍ବଦ୍ରଷ୍ଟା ଓ ସର୍ବଶ୍ରୋତା ।

୨୯. କ'ଣ ତୁମେମାନେ ଦେଖୁନାହଁ ଅଲ୍ଲାହ୍ କିପରି ରାତିକୁ ଦିନ ମଧ୍ୟରେ ଏବଂ ଦିନକୁ ରାତି ମଧ୍ୟରେ ପୂରାଇ ଦିଅନ୍ତି ଏବଂ (କିପରି) ସୂର୍ଯ୍ୟ ଓ ଚନ୍ଦ୍ରକୁ (ତୁମମାନଙ୍କ ସେବାରେ) ନିୟୋଜିତ କରିଛନ୍ତି? ସମସ୍ତେ ଏକ ନିଶ୍ଚିତ ସମୟ ପାଇଁ (ନିଜନିଜ କକ୍ଷରେ) ବୁଲୁଛନ୍ତି । ତୁମେମାନେ ଯାହାକିଛି କର ଅଲ୍ଲାହ୍ ଭଲରୂପେ ଜାଣନ୍ତି । ୩୦. ଏହାର କାରଣ ଏକମାତ୍ର ଅଲ୍ଲାହ୍ ହିଁ ସତ୍ୟ ଏବଂ ତାଙ୍କ ବ୍ୟତୀତ ଯେଉଁମାନଙ୍କୁ ଏମାନେ ଡ଼ାକନ୍ତି, ସେଗୁଡ଼ିକ ସବୁ ମିଥ୍ୟା । ଅଲ୍ଲାହ୍ ସମସ୍ତଙ୍କଠାରୁ ଶ୍ରେଷ୍ଠ ଏବଂ ସମସ୍ତଙ୍କଠାରୁ ମହାନ ।

୩୧. କ'ଣ ତୁମେମାନେ ଦେଖୁନାହଁ ଯେ ଅଲ୍ଲାହଙ୍କ କୃପାରୁ କିପରି ଜାହାଜଗୁଡ଼ିକ ସମୁଦ୍ରରେ ଯାତାୟାତ କରନ୍ତି? ଏହାଦ୍ୱାରା ସେ ତୁମମାନଙ୍କୁ ନିଜର କେତେକ ନିଦର୍ଶନ ଦେଖାନ୍ତି । ଏଥିରେ ପ୍ରତ୍ୟେକ ସଂଯମୀ ଓ କୃତଜ୍ଞ ବ୍ୟକ୍ତି ପାଇଁ (ତାଙ୍କ ମହିମାର) ସଂକେତ ରହିଛି । ୩୨. ଯେତେବେଳେ (ସମୁଦ୍ର ଭିତରେ) ସେମାନଙ୍କ ଉପରକୁ ବାଦଲ ପରି ଢ଼େଉ ମାଡ଼ିଆସେ, ସେତେବେଳେ ସେମାନେ ଏକନିଷ୍ଠ ଭାବରେ କେବଳ ଅଲ୍ଲାହଙ୍କୁ ଡାକନ୍ତି । ପୁଣି ଯଦି ସେ ସେମାନଙ୍କୁ ନିରାପଦରେ ଆଣି କୂଳରେ ପହଁଚାଇ ଦିଅନ୍ତି, ସେମାନଙ୍କ ମଧ୍ୟରୁ କେବଳ ଅଳ୍ପ ଲୋକ ଠିକ୍ ବାଟରେ ରହନ୍ତି । ଆମ୍ଭ ନିଦର୍ଶନଗୁଡ଼ିକୁ ସେହିମାନେ ଅସ୍ୱୀକାର କରନ୍ତି ଯେଉଁମାନେ ବିଶ୍ୱାସଘାତୀ ଏବଂ କୃତଘ୍ନ ।

୩୩. ହେ ମନୁଷ୍ୟଗଣ ! (ନିଜର କର୍ତ୍ତବ୍ୟ ବିଷୟରେ) ଈଶ୍ୱରଙ୍କୁ ଭୟ କର ଏବଂ ସେହି ଦିନକୁ ଭୟ କର ଯେଉଁଦିନ କୌଣସି ପିତା ତା’ ପୁତ୍ରର କାମରେ ଆସବନାହିଁ କିମ୍ବା ପୁତ୍ର ତା’ ପିତାର କାମରେ ଆସିବନାହିଁ । ଜାଣିରଖ ଯେ ଅଲ୍ଲାହଙ୍କ ବଚନ ସତ୍ୟ । ଏଣୁ, ପାର୍ଥିବ ଜୀବନ ତୁମମାନଙ୍କୁ ମୋହଗ୍ରସ୍ତ ନକରୁ କିମ୍ବା କୌଣସି ମାୟାବୀ ତୁମମାନଙ୍କୁ ବିଭ୍ରାନ୍ତ ନକରୁ ।

୩୪. ପ୍ରଳୟର ସମୟ କେବଳ ଅଲ୍ଲାହଙ୍କୁ ହିଁ ଜଣା । ସେ ହିଁ ବର୍ଷା କରନ୍ତି ଏବଂ ଗର୍ଭାଶୟ ମଧ୍ୟରେ ଯାହା ଥାଏ, ତାହା ଜାଣନ୍ତି । କୌଣସି ବ୍ୟକ୍ତିକୁ ଏହା ଜଣାନାହିଁ ଯେ ଆସନ୍ତା କାଲି ସେ କ’ଣ କରିବ କିମ୍ବା କେହି ଏହା ମଧ୍ୟ ଜାଣେନାହିଁ ଯେ ସେ କେଉଁ ମାଟିରେ ମରିବ । ଅଲ୍ଲାହ୍ ହିଁ ସବୁ ଜାଣନ୍ତି ଏବଂ ସବୁ ଖବର ରଖନ୍ତି ।

## ଅଧ୍ୟାୟ ୩୨, ଅସ୍ ସଜ୍‌ଦା

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲିଫ୍ – ଲାମ୍ – ମୀମ । ୨. ଏଥିରେ ସନ୍ଦେହ ନାହିଁ ଯେ ଏହି ଗ୍ରନ୍ଥଟି ସର୍ବଲୋକଶ୍ୱର ଅଲ୍ଲାହଙ୍କ ଦ୍ୱାରା ପଠାଯାଇଛି । ୩. କ’ଣ ସେମାନେ କହୁଛନ୍ତି ଯେ ବାର୍ତ୍ତାବହ ନିଜେ ଏହାକୁ ରଚନା କରିଛନ୍ତି ? ଆଦୌ ନୁହେଁ, ଏହି ସତ୍ୟ ତୁମ ପାଳନକର୍ତ୍ତାଙ୍କଠାରୁ ଆସିଛି ଯାହାଦ୍ୱାରା ତୁମେ ସେମାନଙ୍କୁ ସାବଧାନ କରିବ, ଯେଉଁମାନଙ୍କୁ ସାବଧାନ କରିବାକୁ ତୁମ ପୂର୍ବରୁ କେହି ଆସିନାହାନ୍ତି ଯେପରିକି ସେମାନେ ଠିକ୍ ବାଟକୁ ଆସିବେ ।

୪. ଅଲ୍ଲାହ୍ ସେହି, ଯିଏ ପୃଥିବୀ ଓ ଆକାଶ ଏବଂ ସେଗୁଡ଼ିକରେ ଥିବା ସକଳ ଜୀବଜଡ଼କୁ ଛଅ ଦିନରେ ସୃଷ୍ଟି କଲେ ଏବଂ ତା’ପରେ ଦିବ୍ୟସିଂହାସନରେ ଅଧିଷ୍ଠିତ ହେଲେ । ତାଙ୍କ ବ୍ୟତୀତ ତୁମମାନଙ୍କର କେହି ଆଶ୍ରୟଦାତା କିମ୍ବା ସୁପାରିଶକର୍ତ୍ତା ନାହାନ୍ତି । କ’ଣ ତଥାପି ତୁମେମାନେ ଏଥିପ୍ରତି ଧ୍ୟାନ ଦେବନାହିଁ ? ୫. ସେ ପୃଥିବୀ ଓ ଆକାଶରେ ହେଉଥିବା ପ୍ରତ୍ୟେକ କାର୍ଯ୍ୟର ପରିଚାଳନା କରନ୍ତି । ଶେଷରେ ଦିନେ ସବୁ କାର୍ଯ୍ୟ ତାଙ୍କରି ନିକଟରେ ଉପସ୍ଥାପିତ ହେବ, ଯେଉଁ ଦିନର ଅବଧି ତୁମମାନଙ୍କର ଗଣନା ଅନୁଯାୟୀ ଏକ ହଜାର ବର୍ଷ ସହ ସମାନ । ୬. ସେହି

ହେଉଛନ୍ତି ଦୃଷ୍ଟ ଓ ଅଦୃଷ୍ଟର ଜ୍ଞାତା, ଯିଏ ପ୍ରବଳ ପରାକ୍ରମୀ ଏବଂ ପରମ ଦୟାଳୁ । ୭. ଯିଏ ପ୍ରତ୍ୟେକ ବସ୍ତୁକୁ ନିଖୁଣ ଭାବରେ ସୃଷ୍ଟି କଲେ ଏବଂ ମାନବର ସୃଷ୍ଟି ମାଟିରୁ ଆରମ୍ଭ କଲେ । ୮. ପୁଣି ଏକ ତୁଚ୍ଛ ପାଣିରୁ ତା' ବଂଶବୃଦ୍ଧି କଲେ । ୯. ସେ ତାକୁ ଭଲ ରୂପେ ଗଢ଼ିଲେ ଏବଂ ନିଜ ଆଜ୍ଞା ବଳରେ ତା' ମଧ୍ୟରେ ପ୍ରାଣ ସଂଚାର କଲେ । ସେ ତୁମମାନଙ୍କ ପାଇଁ ଆଖି, କାନ ଓ ହୃଦୟ ସୃଷ୍ଟି କଲେ, ମାତ୍ର ତୁମେମାନେ କ୍ୱଚିତ୍ ଉପକାର ମାନିଥାଅ ।

୧୦. ସେମାନେ କହୁଛନ୍ତି, "ଯେତେବେଳେ ଆମେ ମାଟିରେ ମିଶିଯିବୁ, କ'ଣ ପୁଣି ନୂଆ ଜନ୍ମ ପାଇବୁ ?" ପ୍ରକୃତରେ ସେମାନେ ନିଜ ପାଳନକର୍ତ୍ତାଙ୍କୁ ସାକ୍ଷାତ କରିବେ ବୋଲି ବିଶ୍ୱାସ କରନ୍ତିନାହିଁ । ୧୧. ସେମାନଙ୍କୁ କହିଦିଅ,"ତୁମ ପାଇଁ ନିଯୁକ୍ତ ହୋଇଥିବା ମୃତ୍ୟୁଦେବତା ତୁମମାନଙ୍କ ଆତ୍ମାକୁ ହରଣ କରିନେବେ । ତା'ପରେ ତୁମମାନଙ୍କୁ ତୁମ ପ୍ରଭୁଙ୍କ ପାଖକୁ ଫେରାଇ ନିଆଯିବ ।"

୧୨. ତୁମେ ଏହା ଦେଖିପାରନ୍ତ କି ଯେତେବେଳେ ଅପରାଧୀମାନେ ସେମାନଙ୍କ ପାଳନକର୍ତ୍ତାଙ୍କ ସମ୍ମୁଖରେ ମୁଣ୍ଡ ନୁଆଁଇ ଠିଆ ହୋଇଥିବେ ଏବଂ କହୁଥିବେ,"ହେ ପ୍ରଭୁ ! ଆମେ ସବୁ ଦେଖିଲୁ ଏବଂ ସବୁ ଶୁଣିଲୁ । ଏବେ ଆମେ ଭଲ କର୍ମ କରିବୁ । ଆମକୁ (ସଂସାରକୁ) ଫେରାଇ ନିଅ । ଏବେ ଆମର ବିଶ୍ୱାସ ହୋଇଯାଇଛି ।" ୧୩. ଆମ୍ଭେ ଚାହିଁଲେ ପ୍ରତ୍ୟେକ ବ୍ୟକ୍ତିକୁ ସତ୍‌ମାର୍ଗରେ ପରିଚାଳିତ କରିପାରନ୍ତୁ କିନ୍ତୁ ଆମ୍ଭର ନିଷ୍ପତ୍ତି ହୋଇ ସାରିଛି ଯେ ଆମ୍ଭେ ନର୍କକୁ (ଅବାଧ) ମାନବ ଓ ଜିନ୍‌ମାନଙ୍କ ଦ୍ୱାରା ପୂର୍ଣ୍ଣ କରିବୁ । ୧୪. ଏଥର ମଜା ଚାଖ । ଯେମିତି ତୁମେମାନେ ଆଜିର ଏହି ସାକ୍ଷାତର ଦିନକୁ ଭୁଲି ଯାଇଥିଲ, ଆଜି ଆମ୍ଭେ ମଧ୍ୟ ସେହିପରି ତୁମମାନଙ୍କୁ ଭୁଲିଯିବୁ । ଏବେ ନିଜର ଅର୍ଜିତ କର୍ମର ଫଳ ସ୍ୱରୂପ ଚିରଦିନ ଶାସ୍ତିର ମଜା ଚାଖୁଥାଅ ।

୧୫. ଆମ୍ଭର ବାଣୀ ପ୍ରତି କେବଳ ସେଇମାନଙ୍କର ବିଶ୍ୱାସ ଅଛି ଯେଉଁମାନଙ୍କୁ ଏହି ବାଣୀ ଶୁଣାଇ ଉପଦେଶ ଦେଲେ ସେମାନେ ଭୂମିଷ୍ଠ ପ୍ରଣାମ କରନ୍ତି ଏବଂ ପ୍ରଭୁଙ୍କର ସ୍ତୁତି କରିବା ସହିତ ତାଙ୍କର ଗୁଣଗାନ କରନ୍ତି । ସେମାନେ ଅହଂକାର କରନ୍ତି ନାହିଁ ।[ପ୍ରଣାମ] ୧୬. ସେମାନେ (ରାତିରେ) ଶଯ୍ୟାତ୍ୟାଗ କରି

ଉଠିପଡ଼ନ୍ତି, ମନରେ ଭୟ ଓ ଆଶା ରଖି ପ୍ରଭୁଙ୍କୁ ଡାକନ୍ତି ଏବଂ ଯାହା ଧନ ଆମ୍ଭେ ସେମାନଙ୍କୁ ଦେଇଛୁ ସେଥିରୁ (ପୁଣ୍ୟ କାର୍ଯ୍ୟରେ) ଖର୍ଚ୍ଚ କରନ୍ତି । ୧୭. ଏହା କାହାରିକୁ ଜଣାନାହିଁ ଯେ ଏଭଳି ଲୋକମାନଙ୍କ ପାଇଁ ସେମାନଙ୍କର କର୍ମର ପୁରସ୍କାର ସ୍ୱରୂପ କିଭଳି ସୁଖ (ପରଲୋକରେ) ଲୁଚାଇ ରଖାଯାଇଛି । ୧୮. କ'ଣ ଜଣେ ସଦ୍‌ବିଶ୍ୱାସୀ ବ୍ୟକ୍ତି ଜଣେ ଅବାଧ ବ୍ୟକ୍ତି ସହିତ ସମାନ ହୋଇପାରେ ? ଏଦୁହେଁ କଦାପି ସମାନ ହୋଇ ନପାରନ୍ତି । ୧୯. ଯେଉଁମାନେ (ଅଲ୍ଲାହଙ୍କୁ) ବିଶ୍ୱାସ କରନ୍ତି ଏବଂ ଭଲକର୍ମ କରନ୍ତି, ସେମାନେ ବୈକୁଣ୍ଠର ଉଦ୍ୟାନରେ ବିଶ୍ରାମ କରିବେ । ସେମାନଙ୍କର କର୍ମ ବଦଳରେ ଏହା ସେମାନଙ୍କର ଆତିଥ୍ୟ ହେବ । ୨୦. ଏବଂ ଯେଉଁମାନେ (ଆମ୍ଭ ଆଦେଶର) ଅବମାନନା କରୁଛନ୍ତି, ସେମାନେ ନର୍କରେ ବାସ କରିବେ । ଯେତେବେଳେ ସେଥିରୁ ବାହାରିବାକୁ ଚାହିଁବେ, ସେମାନଙ୍କୁ ତା' ମଧ୍ୟକୁ ଠେଲି ଦିଆଯିବ ଏବଂ କୁହାଯିବ, "ଯେଉଁ ନର୍କଦଣ୍ଡକୁ ତୁମେମାନେ ମିଛ ମନେ କରୁଥିଲ, ଏବେ ତା' ମଜା ଚାଖ ।"

୨୧. ଏହି ଭୟଙ୍କର ଶାସ୍ତି ପୂର୍ବରୁ ଆମ୍ଭେ (ସଂସାରରେ ମଧ୍ୟ) ସେମାନଙ୍କୁ କିଛି ଲଘୁଦଣ୍ଡର ମଜା ଚଖାଇବୁ । ହୁଏତ ଏହାଦ୍ୱାରା ସେମାନେ ଅନୁତାପ କରି ବାଟକୁ ଆସିବେ । ୨୨. ସେହି ଲୋକଠାରୁ ଅଧିକ ଦୁରାଚାରୀ ଆଉ କିଏ ହୋଇପାରେ ଯାହାକୁ ତା' ଈଶ୍ୱରଙ୍କ ବାଣୀ ଶୁଣାଇ ଉପଦେଶ ଦେଲେ ସେ ଏହାକୁ ଉପେକ୍ଷା କରେ ? ଏଭଳି ଅପରାଧୀମାନଙ୍କଠାରୁ ଆମ୍ଭେ ନିଶ୍ଚୟ ପ୍ରତିଶୋଧ ନେବୁ ।

୨୩. (ଏହା ପୂର୍ବରୁ) ଆମ୍ଭେ ମୁ'ସାଙ୍କୁ ଗ୍ରନ୍ଥ ଦେଇଥିଲୁ । ତେଣୁ, ତୁମେ ଏହି ଗ୍ରନ୍ଥପ୍ରାପ୍ତି ବିଷୟରେ ଆଦୌ ସନ୍ଦେହ କରନାହିଁ । ଆମ୍ଭେ ସେହି ଗ୍ରନ୍ଥଟିକୁ ଇସ୍ରାଇଲଙ୍କ ବଂଶଜମାନଙ୍କ ମାର୍ଗଦର୍ଶନ ପାଇଁ ପଠାଇଥିଲୁ । ୨୪. ସେମାନେ ସଂଯମ ଆଚରଣ କରିଥିବାରୁ ଆମ୍ଭେ ସେମାନଙ୍କ ମଧ୍ୟରୁ କେତେକଙ୍କୁ ମାର୍ଗଦର୍ଶକ କରିଥିଲୁ, ଯେଉଁମାନେ ଆମ୍ଭର ଆଜ୍ଞା ଅନୁସାରେ ଲୋକଙ୍କର ମାର୍ଗଦର୍ଶନ କରୁଥିଲେ । ସେମାନେ ଆମ୍ଭ ବାଣୀରେ ବିଶ୍ୱାସ ରଖିଥିଲେ । ୨୫. ଯେଉଁ ବିଷୟରେ ସେମାନେ ମତଭେଦ କଲେ, ବିଚାର ଦିନ ତୁମ ପ୍ରଭୁ ସେମାନଙ୍କ ମଧ୍ୟରେ ଅବଶ୍ୟ ନିଷ୍ପତ୍ତି କରିଦେବେ ।

୨୬. କ'ଣ ଏହି (ଐତିହାସିକ) ଘଟଣାବଳୀରୁ ଏମାନଙ୍କୁ କିଛି ଶିକ୍ଷା ମିଳୁନାହିଁ ଯେ ଏମାନଙ୍କ ପୂର୍ବରୁ ଆମ୍ଭେ କେତେ ବଂଶ ଧ୍ୱଂସ କରିଦେଇଛୁ, ଯେଉଁମାନଙ୍କର ବାସସ୍ଥାନ ଦେଇ ସେମାନେ ଏବେ ଯାତାୟାତ କରୁଛନ୍ତି? ଏଥିରେ ଅନେକ ସଂକେତ ଅଛି। କ'ଣ ତଥାପି ଏମାନେ କଥା ଶୁଣିବେ ନାହିଁ? ୨୭. କ'ଣ ସେମାନେ ଦେଖୁ ନାହାନ୍ତି ଯେ ଆମ୍ଭେ କିପରି ବାଦଲଗୁଡ଼ିକୁ ଶୁଷ୍କ ଭୂମି ଆଡ଼କୁ ନେଇଯାଉ, ପୁଣି ସେହି ଜଳ ଦ୍ୱାରା ଫସଲ ଉତ୍ପନ୍ନ କରୁ, ଯାହା ସେମାନଙ୍କ ପଶୁଙ୍କର ଖାଦ୍ୟ ହୁଏ ଏବଂ ସେଥିରୁ ସେମାନେ ନିଜେ ମଧ୍ୟ ଖାଆନ୍ତି ? କ'ଣ ସେମାନେ ଦେଖି ପାରୁନାହାନ୍ତି ? ୨୮. ସେମାନେ କହୁଛନ୍ତି, "ଯଦି ତୁମ କଥା ସତ, ତେବେ (ତୁମ ଓ ଆମ ମଧ୍ୟରେ) ଏହି ନିଷ୍ପତ୍ତି କେବେ ହେବ?" ୨୯. କହିଦିଅ ଯେ ବିଚାର ଦିନ ବିଶ୍ୱାସ କଲେ ନାସ୍ତିକମାନଙ୍କର କିଛି ଲାଭ ହେବନାହିଁ କି ସେମାନଙ୍କୁ କୌଣସି ବିରାମ ଦିଆଯିବ ନାହିଁ। ୩୦. ତେଣୁ, ତୁମେ ସେମାନଙ୍କୁ ସେମାନଙ୍କ ଅବସ୍ଥାରେ ଛାଡ଼ିଦିଅ ଏବଂ ଅପେକ୍ଷା କର। ସେମାନେ ମଧ୍ୟ ଅପେକ୍ଷା କରୁଛନ୍ତି।

## ଅଧ୍ୟାୟ ୩୩, ଅଲ୍ ଅହଜାବ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ହେ ବାର୍ତ୍ତାବହ! ଅଲ୍ଲାହଙ୍କୁ ଭୟ କରୁଥାଅ ଏବଂ ନାସ୍ତିକ ଓ କପଟୀମାନଙ୍କ କଥା ମାନନାହିଁ। ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ। ୨. ତୁମ ଈଶ୍ୱରଙ୍କ ଦ୍ୱାରା ତୁମକୁ ଯାହା ଦୈବବାଣୀ କରାଯାଉଛି, ତାକୁ ମାନି ଚଳ। ତୁମେମାନେ ଯାହା କରୁଛ, ଅଲ୍ଲାହଙ୍କୁ ସେବିଷୟରେ ଭଲରୂପେ ଜଣା ଅଛି। ୩. ଅଲ୍ଲାହଙ୍କ ଉପରେ ଭରସା ରଖ। ତୁମର କାର୍ଯ୍ୟସିଦ୍ଧି ପାଇଁ ଅଲ୍ଲାହ୍ ଯଥେଷ୍ଟ।

୪. ଅଲ୍ଲାହ୍ କୌଣସି ବ୍ୟକ୍ତିର ଶରୀର ମଧ୍ୟରେ ଦୁଇଟି ହୃଦୟ ସୃଷ୍ଟି କରି ନାହାନ୍ତି କିମ୍ବା ତୁମ ପତ୍ନୀମାନଙ୍କୁ ତୁମମାନଙ୍କର ମାଆ କରି ନାହାନ୍ତି ଯେଉଁମାନଙ୍କୁ ତୁମେମାନେ ମାଆ ବୋଲି କହିଦେଉଛ କିମ୍ବା ପୋଷ୍ୟପୁତ୍ରମାନଙ୍କୁ ସେ ତୁମମାନଙ୍କର ପ୍ରକୃତ ପୁତ୍ର କରି ଦେଇନାହାନ୍ତି। ଏଗୁଡ଼ିକ କେବଳ ତୁମମାନଙ୍କ ମୁହଁର କଥା। ଅଲ୍ଲାହ୍ ସତ କହନ୍ତି ଏବଂ ସତ୍‌ମାର୍ଗ ଦେଖାଇ ଥାଆନ୍ତି। ୫. ତୁମେମାନେ ପୋଷ୍ୟପୁତ୍ରମାନଙ୍କୁ

ସେମାନଙ୍କ (ପ୍ରକୃତ) ପିତାଙ୍କ ନାମ ଅନୁସାରେ ଡାକ । ଏହି କଥା ଅଲ୍ଲାହଙ୍କ ଦୃଷ୍ଟିରେ ନ୍ୟାୟସଂଗତ । ଯଦି ତୁମମାନଙ୍କୁ ସେମାନଙ୍କ ପିତାଙ୍କ ନାମ ଜଣାନାହିଁ, ତା'ହେଲେ ଧର୍ମରେ ସେମାନେ ତୁମମାନଙ୍କର ଭାଇ ଓ ବନ୍ଧୁ । ତୁମେମାନେ ଯାହା ଭୁଲବଶତଃ କର, ସେଥିଯୋଗୁଁ ତୁମମାନଙ୍କୁ ପାପ ହେବନାହିଁ କିନ୍ତୁ ଯଦି ତୁମେମାନେ ମନରେ ସଂକଳ୍ପ କରି (ଜାଣିଶୁଣି) କିଛି କର, (ତେବେ ତୁମମାନଙ୍କୁ ଏହାର ପାପ ଲାଗିବ) । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଏବଂ ପରମ ଦୟାଳୁ ।

୬. ମୁସଲମାନମାନଙ୍କ ପାଇଁ ରସୁଲ୍ ସେମାନଙ୍କ ପ୍ରାଣଠାରୁ ଅଧିକ ପ୍ରିୟ ଏବଂ ତାଙ୍କ ପତ୍ନୀମାନେ ଏମାନଙ୍କର ମାଆ । ଅଲ୍ଲାହଙ୍କ ବିଧାନ ଅନୁଯାୟୀ (ଉତ୍ତରାଧିକାର ସ୍ୱତ୍ୱରେ) ରକ୍ତ ସଂପର୍କୀୟ ଆତ୍ମୀୟମାନଙ୍କର ଅଧିକାର ସାଧାରଣ ମୁସଲମାନ ଓ ଦେଶତ୍ୟାଗ କରିଥିବା ମୁସଲମାନମାନଙ୍କ ଅଧିକାର ତୁଳନାରେ ବେଶୀ । ହଁ, ଯଦି ତୁମେମାନେ (ଇଚ୍ଛାପତ୍ର କରି) ନିଜ ବନ୍ଧୁମାନଙ୍କର କିଛି ଉପକାର କରିବାକୁ ଚାହଁ ତେବେ ଭିନ୍ନ କଥା । ଏହା ଗ୍ରନ୍ଥରେ ଉଲ୍ଲେଖ ଅଛି ।

୭. (ହେ ବାର୍ତ୍ତାବହ! ସ୍ମରଣ କର) ଯେତେବେଳେ ଆମ୍ଭେ ବାର୍ତ୍ତାବହମାନଙ୍କଠାରୁ ବଚନ ନେଇଥିଲୁ ଏବଂ (ବିଶେଷ କରି) ତୁମଠାରୁ ଏବଂ ନୂହ୍, ଇବ୍ରାହିମ୍, ମୁ'ସା ଓ ମର୍ୟମଙ୍କ ପୁତ୍ର ଇସାଙ୍କଠାରୁ । ଆମ୍ଭେ ସେମାନଙ୍କଠାରୁ ଦୃଢ଼ ବଚନ ନେଇଥିଲୁ । ୮. ଯଦ୍ଦ୍ୱାରା ଅଲ୍ଲାହ୍ ସତ୍ୟନିଷ୍ଠ ବ୍ୟକ୍ତିମାନଙ୍କୁ ସେମାନଙ୍କ ସତ୍ୟ ବିଷୟରେ ପ୍ରଶ୍ନ କରିବେ । ମିଥ୍ୟାବିଶ୍ୱାସୀମାନଙ୍କ ପାଇଁ ସେ ଯନ୍ତ୍ରଣାଦାୟକ ଶାସ୍ତି ପ୍ରସ୍ତୁତ କରି ରଖିଛନ୍ତି ।

୯. ହେ ମୁସଲମାନଗଣ! ତୁମମାନଙ୍କ ପ୍ରତି ଅଲ୍ଲାହ୍ କରିଥିବା ଉପକାରକୁ ମନେପକାଅ ଯେ ଯେତେବେଳେ ତୁମମାନଙ୍କ ଉପରକୁ ଶତ୍ରୁସେନା ମାଡ଼ି ଆସିଥିଲେ ଏବଂ ଆମ୍ଭେ ସେମାନଙ୍କୁ ପ୍ରତିହତ କରିବା ପାଇଁ ପ୍ରବଳ ଝଡ଼ତୋଫାନ ସୃଷ୍ଟି କରିଥିଲୁ ଏବଂ ଏଭଳି ସେନା ପଠାଇଥିଲୁ ଯେଉଁମାନେ ତୁମକୁ ଦେଖାଯାଉ ନଥିଲେ । ତୁମେମାନେ ଯାହା କରୁଥିଲ, ଅଲ୍ଲାହ୍ ସବୁ ଦେଖୁଥିଲେ । ୧୦. ଯେତେବେଳେ ଶତ୍ରୁ ଉପର ଓ ତଳ, ଉଭୟପଟରୁ ତୁମମାନଙ୍କ ଉପରେ ଆକ୍ରମଣ କରିଥିଲେ ଏବଂ (ଭୟରେ) ତୁମମାନଙ୍କର ଆଖି ବିସ୍ଫାରିତ ହୋଇ ଯାଇଥିଲା, ପ୍ରାଣ

କଣ୍ଠ ପର୍ଯ୍ୟନ୍ତ ଆସି ଯାଇଥିଲା ଏବଂ ତୁମେମାନେ ଅଲ୍ଲାହଙ୍କ ବିଷୟରେ ବିଭିନ୍ନ ପ୍ରକାରର ଅଟକଳ କରିବା ଆରମ୍ଭ କରି ଦେଇଥିଲ । ୧୧. ସେତେବେଳେ ବିଶ୍ୱାସ ରଖିଥିବା ଲୋକମାନଙ୍କର (ବିଶ୍ୱାସର) ପରୀକ୍ଷା ନିଆ ଯାଇଥିଲା ଏବଂ ସେମାନଙ୍କୁ ସଂପୂର୍ଣ୍ଣ ଭାବରେ ଦୋହଲାଇ ଦିଆ ଯାଇଥିଲା ।

୧୨. ଯେଉଁମାନଙ୍କ ମନରେ ରୋଗ ଥିଲା ଏବଂ ଯେଉଁମାନେ କପଟ କରୁଥିଲେ, ସେମାନେ ସେତେବେଳେ କହିଲେ, "ଅଲ୍ଲାହ୍ ଓ ତାଙ୍କ ରସୁଲ ଆମକୁ ଯେଉଁ ପ୍ରତିଶ୍ରୁତି ଦେଇଥିଲେ, ତାହା କେବଳ ଏକ ଛଳନା ଥିଲା ।" ୧୩. ଯେତେବେଳେ ସେମାନଙ୍କ ଭିତରୁ ଦଳେ କହିଲେ, "ହେ ମଦିନାବାସୀ! ତୁମେମାନେ (ଶତ୍ରୁ ଆଗରେ) ତିଷ୍ଠି ପାରିବନାହିଁ । ତେଣୁ ଫେରିଚାଲ ।" କିଛି ଲୋକ ରସୁଲଙ୍କଠାରୁ ଏହା କହି ଫେରିଯିବାର ଅନୁମତି ମାଗିଲେ ଯେ ସେମାନଙ୍କ ଘର ସୁରକ୍ଷିତ ନୁହେଁ କିନ୍ତୁ ସେମାନଙ୍କର ଘର ଅସୁରକ୍ଷିତ ନଥିଲା । ପ୍ରକୃତରେ ସେମାନେ କେବଳ ପଳାୟନ କରିବାକୁ ଚାହୁଁଥିଲେ । ୧୪. ଯଦି (ସହରର) ଚାରିପଟୁ ଶତ୍ରୁ ପଶି ଆସନ୍ତେ ଏବଂ ଏମାନଙ୍କୁ ସହରରେ ଉପଦ୍ରବ କରିବା ପାଇଁ ଡାକନ୍ତେ, ତେବେ ଏମାନେ ଟିକିଏ ବିଳମ୍ବ ନକରି (ମୁସଲମାନମାନଙ୍କ ବିରୁଦ୍ଧରେ) ଡେଇଁ ପଡନ୍ତେ । ୧୫. ଏହା ପୂର୍ବରୁ ଏମାନେ ଅଲ୍ଲାହଙ୍କୁ ବଚନ ଦେଇଥିଲେ ଯେ ପଛଘୁଂଚା ଦେବେନାହିଁ । (ଜାଣିରଖ) ଅଲ୍ଲାହଙ୍କୁ ଦିଆ ଯାଇଥିବା ବଚନ ସଂପର୍କରେ ନିଶ୍ଚୟ ପ୍ରଶ୍ନ କରାଯିବ ।

୧୬. (ହେ ମୁହମ୍ମଦ!) ସେମାନଙ୍କୁ କହିଦିଅ, "ଯଦି ତୁମେମାନେ ମରିବା ବା (ଯୁଦ୍ଧରେ) ନିହତ ହେବା ଭୟରେ ପଳାୟନ କର, ତେବେ ଏହି ପଳାୟନ ଦ୍ୱାରା ତୁମର କିଛି ଲାଭ ହେବନାହିଁ । ଏହାପରେ ତୁମମାନଙ୍କୁ ମାତ୍ର ଅଳ୍ପ ଦିନ (ଜୀବନକୁ) ଉପଭୋଗ କରିବାର ସୁଯୋଗ ମିଳିବ । ୧୭. ସେମାନଙ୍କୁ ପଚାର, "ଯଦି ଅଲ୍ଲାହ୍ ତୁମମାନଙ୍କଙ୍କର କ୍ଷତି କରିବାକୁ ଚାହାନ୍ତି, ତେବେ କିଏ ଅଛି ଯିଏ ତାଙ୍କଠାରୁ ତୁମମାନଙ୍କୁ ରକ୍ଷା କରି ପାରିବ କିମ୍ୱା ଯଦି ସେ ତୁମମାନଙ୍କ ପ୍ରତି କୃପା କରିବାକୁ ଚାହାନ୍ତି (ତେବେ କିଏ ତାଙ୍କୁ ରୋକି ପାରିବ)?" ଅଲ୍ଲାହଙ୍କ ବ୍ୟତୀତ ସେମାନଙ୍କୁ ଆଉ କେହି ଆଶ୍ରୟଦାତା ବା ସାହାଯ୍ୟକାରୀ ମିଳିବେନାହିଁ ।

୧୮. ଅଲ୍ଲାହ୍ ତୁମମାନଙ୍କ ମଧ୍ୟରେ ଥିବା ସେହି ଲୋକମାନଙ୍କୁ ଭଲରୂପେ ଜାଣନ୍ତି, ଯେଉଁମାନେ (ଯୁଦ୍ଧରେ) ପ୍ରତିବନ୍ଧକ ସୃଷ୍ଟି କରନ୍ତି ଏବଂ ନିଜର ଭାଇବନ୍ଧୁମାନଙ୍କୁ କହନ୍ତି ଯେ ଆମ ପାଖକୁ ଚାଲିଆସ । ସେମାନେ କେବଳ ନାମକୁ ମାତ୍ର ଯୁଦ୍ଧରେ ଭାଗ ନିଅନ୍ତି । ୧୯. ସେମାନେ ତୁମକୁ ସହଯୋଗ କରିବାକୁ କୁଣ୍ଠାବୋଧ କରନ୍ତି କିନ୍ତୁ ଯେତେବେଳେ କୌଣସି ବିପଦ ପଡ଼େ, ତୁମେ ଦେଖ ଯେ ସେମାନେ ଆକୁଳ ନୟନରେ ତୁମକୁ ଏମିତି ଦେଖନ୍ତି ଯେମିତି ମୃତ୍ୟୁ ଯନ୍ତ୍ରଣା ଭୋଗୁଛନ୍ତି । ପୁଣି ଯେତେବେଳେ ବିପଦ ଟଳିଯାଏ, ବିଜୟଲବ୍ଧ ଧନ ଲୋଭରେ ତୁମ ପ୍ରତି କଟୁଭାଷା ପ୍ରୟୋଗ କରନ୍ତି । ଏମାନଙ୍କର ଆଦୌ ଆସ୍ଥା ନାହିଁ । ତେଣୁ ଅଲ୍ଲାହ୍ ସେମାନଙ୍କର କର୍ମଗୁଡ଼ିକୁ ନିଷ୍ଫଳ କରି ଦେଇଛନ୍ତି । ଏହା କରିବା ଅଲ୍ଲାହଙ୍କ ପାଇଁ ଭାରି ସହଜ । ୨୦. ଏମାନଙ୍କ ଧାରଣା ଯେ ଶତ୍ରୁ ସେନା ଏପର୍ଯ୍ୟନ୍ତ ଫେରିନାହାନ୍ତି । ଯଦି ମିଳିତବାହିନୀ ପୁନର୍ବାର ଆସନ୍ତି, ତେବେ ଏମାନଙ୍କର ଇଚ୍ଛା ଯେ ବେଦୁଇନମାନଙ୍କ ସହିତ ଯାଇ (ଗାଁ ଭିତରେ) ରହିବେ ଏବଂ ସେଇଠି ରହି ତୁମମାନଙ୍କର ଖବର ସଂଗ୍ରହ କରିବେ । ଯଦି ସେମାନଙ୍କୁ ତୁମ ସହିତ ରହିବାକୁ ପଡେ, ତେବେ ଯୁଦ୍ଧରେ ନାମକୁ ମାତ୍ର ଭାଗ ନେବେ ।

୨୧. ପ୍ରକୃତରେ ରସୁଲଙ୍କ ଜୀବନଶୈଳୀରେ ତୁମମାନଙ୍କ ପାଇଁ ଅତି ସୁନ୍ଦର ଚରିତ୍ରର ଉଦାହରଣ ଅଛି, ଏଭଳି ପ୍ରତ୍ୟେକ ବ୍ୟକ୍ତି ପାଇଁ (ମଧ୍ୟ) ଯିଏ ଅଲ୍ଲାହ୍‌ଙ୍କ ଦର୍ଶନର ଏବଂ ବିଚାର ଦିନର ଆଶା ରଖିଥାଏ ଏବଂ ଅଲ୍ଲାହଙ୍କୁ ସର୍ବଦା ସ୍ମରଣ କରୁଥାଏ ।

୨୨. ଯେତେବେଳେ ସଦ୍‌ବିଶ୍ୱାସୀମାନେ (ଶତ୍ରୁମାନଙ୍କର) ମିଳିତ ବାହିନୀକୁ ଦେଖିଲେ, ସେମାନେ କହିଲେ, "ଅଲ୍ଲାହ୍ ଓ ତାଙ୍କ ରସୁଲ ଆମକୁ ଏହାର ପୂର୍ବସୂଚନା ଦେଇଥିଲେ ଏବଂ ଅଲ୍ଲାହ୍ ଓ ତାଙ୍କ ରସୁଲ ସତ କହିଥିଲେ ।" ଏହି ଘଟଣା ସେମାନଙ୍କ ଆସ୍ଥା ଓ ଆନୁଗତ୍ୟକୁ ଆହୁରି ସୁଦୃଢ଼ କରିଥିଲା । ୨୩. ସଦ୍‌ବିଶ୍ୱାସୀମାନଙ୍କ ମଧ୍ୟରେ ଏଭଳି ଲୋକ ଅଛନ୍ତି ଯେଉଁମାନେ ଅଲ୍ଲାହଙ୍କୁ ଦେଇଥିବା କଥାକୁ ସତ ସାବ୍ୟସ୍ତ କରି ଦେଖାଇଦେଲେ । ସେମାନଙ୍କ ମଧ୍ୟରୁ କେତେକ ନିଜର ପ୍ରତିଜ୍ଞା ପୂରଣ କରି ସାରିଛନ୍ତି (ଅର୍ଥାତ ଶହୀଦ୍ ହୋଇଛନ୍ତି) ଏବଂ

ଆଉ କେତେକ ଏହି ସୁଯୋଗର ଅପେକ୍ଷାରେ ଅଛନ୍ତି । ସେମାନଙ୍କ ସଂକଳ୍ପରେ କୌଣସି ପରିବର୍ତ୍ତନ ହୋଇନାହିଁ । ୨୪. ଏହାଫଳରେ ଅଲ୍ଲାହ୍ ଏହି ସତ୍ପୁରୁଷମାନଙ୍କୁ ସେମାନଙ୍କର ସତ୍ୟନିଷ୍ଠା ଯୋଗୁଁ ପୁରସ୍କୃତ କରିବେ ଏବଂ ଯଦି ଚାହିଁବେ କପଟୀମାନଙ୍କୁ ଦଣ୍ଡ ଦେବେ ଅଥବା ସେମାନଙ୍କ ପଶ୍ଚାତାପ ଗ୍ରହଣ କରିବେ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଏବଂ ପରମ ଦୟାଳୁ ।

୨୫. ରାଗି ଯାଇଥିବା ନାସ୍ତିକମାନଙ୍କୁ ଅଲ୍ଲାହ୍ ଫେରାଇ ଦେଲେ ଏବଂ ସେମାନଙ୍କର କିଛି ଲାଭ ହେଲାନାହିଁ । ଯୁଦ୍ଧରେ ମୁସଲମାନମାନଙ୍କ (ସୁରକ୍ଷା) ପାଇଁ ଅଲ୍ଲାହ୍ ଯଥେଷ୍ଟ ହେଲେ । ଅଲ୍ଲାହ୍ ମହାଶକ୍ତିମାନ ଓ ପ୍ରବଳ ପରାକ୍ରମୀ । ୨୬. ଯେଉଁ ଗ୍ରନ୍ଥବିଶ୍ୱାସୀମାନେ ଆକ୍ରମଣକାରୀମାନଙ୍କୁ ସହଯୋଗ କରିଥିଲେ, ଅଲ୍ଲାହ୍ ସେମାନଙ୍କୁ ସେମାନଙ୍କ ଦୁର୍ଗ ମଧ୍ୟରୁ ବାହାର କରି ଆଣିଲେ ଏବଂ ସେମାନଙ୍କ ମନରେ ଏଭଳି ଆତଙ୍କ ସୃଷ୍ଟି କରିଦେଲେ, ଯାହାଫଳରେ ତୁମେମାନେ କେତେକଙ୍କୁ ହତ୍ୟା କଲ ଏବଂ କେତେକଙ୍କୁ ବନ୍ଦୀ କଲ । ୨୭. ଅଲ୍ଲାହ୍ ତୁମମାନଙ୍କୁ ସେମାନଙ୍କ ଜମିବାଡ଼ି, ଘରଦ୍ୱାର ଓ ଧନସଂପତ୍ତିର ଉତ୍ତରାଧିକାରୀ କରିଦେଲେ ଏବଂ ସେହି ଅଂଚଳର ମଧ୍ୟ, ଯେଉଁଠାରେ ଏପର୍ଯ୍ୟନ୍ତ ତୁମମାନଙ୍କର ପାଦ ପଡ଼ି ନଥିଲା । ଅଲ୍ଲାହ୍ ସବୁକିଛି କରିପାରନ୍ତି ।

୨୮. ହେ ବାର୍ତ୍ତାବହ ! ନିଜର ପତ୍ନୀମାନଙ୍କୁ କହିଦିଅ ଯେ ଯଦି ତୁମେମାନେ ପାର୍ଥିବ ଜୀବନ ଓ ଏହାର ଶୋଭା ଚାହଁ, ତେବେ ଆସ ମୁଁ ତୁମମାନଙ୍କୁ କିଛି (ଧନ) ଦେଇ ସସମ୍ମାନେ ବିଦାୟ ଦେବି, ୨୯. କିନ୍ତୁ ଯଦି ତୁମେମାନେ ଅଲ୍ଲାହ୍, ତାଙ୍କ ରସୁଲ ଏବଂ ସ୍ୱର୍ଗର ଅଭିଳାଷୀ, ତେବେ (ଜାଣିରଖ ଯେ) ତୁମମାନଙ୍କ ମଧ୍ୟରେ ଥିବା ପୁଣ୍ୟବତୀ ନାରୀମାନଙ୍କ ପାଇଁ ଅଲ୍ଲାହ୍ ଅଜସ୍ର ପୁରସ୍କାର ରଖିଛନ୍ତି । ୩୦. ହେ ରସୁଲଙ୍କ ପତ୍ନୀଗଣ !  ଯଦି ତୁମମାନଙ୍କ ମଧ୍ୟରୁ କେହି ସ୍ପଷ୍ଟ ନିର୍ଲଜ କର୍ମ କରିବ, ତାକୁ ଦୁଇଗୁଣ ଶାସ୍ତି ଦିଆଯିବ । ଏହା ଅଲ୍ଲାହଙ୍କ ପାଇଁ ଏକ ସାମାନ୍ୟ କାର୍ଯ୍ୟ ।

୩୧. ତୁମମାନଙ୍କ ମଧ୍ୟରୁ ଯିଏ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ କଥା ମାନିବ ଏବଂ ଭଲ କର୍ମ କରିବ, ଆମ୍ଭେ ତାକୁ ଦ୍ୱିଗୁଣ ପୁରସ୍କାର ଦେବୁ । ଆମ୍ଭେ ତା'ପାଇଁ

ଖୁବ୍ ଭଲ ସୁଖସମ୍ଭୋଗର ବ୍ୟବସ୍ଥା କରିଛୁ । ୩୨. ହେ ରସୁଲଙ୍କ ପତ୍ନୀଗଣ ! ତୁମେମାନେ ସାଧାରଣ ମହିଳାଙ୍କ ପରି ମହିଳା ନୁହଁ । ଯଦି ତୁମେମାନେ ଅଲ୍ଲାହଙ୍କୁ ଭୟ କରୁଥାଅ, ତେବେ (ପରପୁରୁଷଙ୍କ ସହିତ) ନରମ ସ୍ୱରରେ କଥାବାର୍ତ୍ତା କରନାହିଁ । ଏହାଦ୍ୱାରା ଯେଉଁ ବ୍ୟକ୍ତିର ମନରେ ଦୋଷ ଅଛି, ସେ ପ୍ରଲୋଭନରେ ପଡ଼ିଯିବ (ଅର୍ଥାତ ଆକର୍ଷିତ ହୋଇଯିବ) । ସାମାନ୍ୟ ଭାବରେ କଥାବାର୍ତ୍ତା କର । ୩୩. ନିଜ ଘରେ ରୁହ ଏବଂ ପୂର୍ବରୁ ଅଜ୍ଞାନ ଯୁଗରେ ଯେମିତି ହେଉଥିଲା, ସେମିତି ନିଜର ସୌନ୍ଦର୍ଯ୍ୟ ପ୍ରଦର୍ଶନ କରନାହିଁ । ନିୟମିତ ନମାଜ ପାଠ କରୁଥାଅ, ଜକାତ୍ ଦେଉଥାଅ ଏବଂ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ କଥା ମାନି ଚଳୁଥାଅ । ହେ ରସୁଲଙ୍କ ପରିଜନଗଣ ! ଅଲ୍ଲାହ୍ ତୁମମାନଙ୍କଠାରୁ (ସବୁ ପ୍ରକାରର) ଅଶୁଦ୍ଧତା ଦୂର କରି ତୁମମାନଙ୍କୁ ସଂପୂର୍ଣ୍ଣ ଭାବରେ ପବିତ୍ର କରିବାକୁ ଚାହାନ୍ତି । ୩୪. ତୁମମାନଙ୍କ ଘରେ ଅଲ୍ଲାହଙ୍କର ଯାହା ବାଣୀ ପାଠ କରାଯାଏ ଏବଂ ତତ୍ତ୍ୱଜ୍ଞାନର ଯାହା ଶିକ୍ଷା ଦିଆଯାଏ, ତାହା ମନେରଖ । ଅଲ୍ଲାହ୍ ସୂକ୍ଷ୍ମଦର୍ଶୀ ଏବଂ ସେ ସବୁ ଖବର ରଖନ୍ତି ।

୩୫. ବାସ୍ତବରେ (ଅଲ୍ଲାହଙ୍କଠାରେ) ନିଜକୁ ସମର୍ପଣ କରିଥିବା ପୁରୁଷ ଓ ନାରୀ ବିଶ୍ୱାସ ରଖିଥିବା ପୁରୁଷ ଓ ବିଶ୍ୱାସ ରଖିଥିବା ନାରୀ, ଆଜ୍ଞାଧୀନ ପୁରୁଷ ଓ ଆଜ୍ଞାଧୀନ ନାରୀ, ସତ୍ୟବାଦୀ ପୁରୁଷ ଓ ସତ୍ୟବାଦିନୀ ନାରୀ, ସଂଯମୀ ପୁରୁଷ ଓ ସଂଯମୀ ନାରୀ, ବିନୟୀ ପୁରୁଷ ଓ ବିନୟୀ ନାରୀ, ଦାନୀ ପୁରୁଷ ଓ ଦାନୀ ନାରୀ, ଉପବାସ କରୁଥିବା ପୁରୁଷ ଓ ଉପବାସ କରୁଥିବା ନାରୀ, ଗୁପ୍ତାଂଗର ସୁରକ୍ଷା କରୁଥିବା ପୁରୁଷ ଓ ନାରୀ, ଅଲ୍ଲାହଙ୍କୁ ନିରନ୍ତର ସ୍ମରଣ କରୁଥିବା ପୁରୁଷ ଓ ନାରୀ – ଏମାନେ ଅଲ୍ଲାହଙ୍କର କ୍ଷମା ଲାଭ କରିବେ ଏବଂ ଅଜସ୍ର ପୁରସ୍କାର ମଧ୍ୟ ।

୩୬. ଯଦି ଅଲ୍ଲାହ୍ ଓ ତାଙ୍କ ରସୁଲ କୌଣସି ବିଷୟରେ ନିଷ୍ପତ୍ତି କରିଦିଅନ୍ତି, ତେବେ ସେବିଷୟରେ ନିଜ ଇଚ୍ଛାରେ ନିଷ୍ପତ୍ତି ନେବାର ଅଧିକାର କୌଣସି ମୁସଲମାନ ପୁରୁଷ ବା ମହିଳାର ନାହିଁ । ଯିଏ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କର ଅବମାନନା କରେ, ସେ ସମ୍ପୂର୍ଣ୍ଣ ରୂପେ ପଥଭ୍ରଷ୍ଟ ହୋଇଯାଏ ।

୩୭. (ହେ ରସୁଲ୍ ସ୍ମରଣ କର) ଯେତେବେଳେ ସେହି ବ୍ୟକ୍ତିକୁ, ଯାହା ପ୍ରତି ଅଲ୍ଲାହଙ୍କର ଏବଂ ତୁମର ଅନୁଗ୍ରହ ଥିଲା, ତୁମେ କହୁଥିଲ, "ନିଜ ପତ୍ନୀକୁ

ତ୍ୟାଗ କରନାହିଁ ଏବଂ ଅଲ୍ଲାହଙ୍କୁ ଭୟ କର", (ସତେବେଳେ) ତୁମେ ନିଜ ମନରେ ଯାହା ଲୁଚାଇ ରଖିଥିଲ ଅଲ୍ଲାହ୍ ତାହା ପ୍ରକାଶ କରିବାକୁ ଚାହୁଁଥିଲେ । ତୁମେ ଲୋକଙ୍କୁ ଭୟ କରୁଥିଲ କିନ୍ତୁ ଅଲ୍ଲାହଙ୍କୁ ଅଧିକ ଭୟ କରିବା ଉଚିତ । ପୁଣି ଯେତେବେଳେ ଜୈଦ୍ ତାଙ୍କ ପତ୍ନୀଙ୍କୁ ତ୍ୟାଗ କରିଦେଲେ, ଆମ୍ଭେ ତାଙ୍କ ସହିତ (ଅର୍ଥାତ୍ ଜୈନବ୍ଙ୍କ ସହିତ) ତୁମର ବିବାହ କରାଇ ଦେଲୁ ଯେପରିକି ପୋଷ୍ୟପୁତ୍ରମାନେ ପତ୍ନୀମାନଙ୍କୁ ତ୍ୟାଗ କଲା ପରେ ସେମାନଙ୍କୁ ବିବାହ କରିବାରେ ମୁସଲମାନମାନଙ୍କ ମନରେ କୌଣସି ସଂକୋଚ ନରହୁ । ଅଲ୍ଲାହଙ୍କର ଆଦେଶ ଅବଶ୍ୟ କାର୍ଯ୍ୟକାରୀ ହୋଇଥାଏ । ୩୮. ରସୁଲଙ୍କ ପକ୍ଷରେ ଏଭଳି କାର୍ଯ୍ୟରେ ସଂକୋଚ କରିବାର ଅବକାଶ ନାହିଁ ଯାହା ଅଲ୍ଲାହ୍ ତାଙ୍କ ପାଇଁ ସ୍ଥିର କରି ଦେଇଛନ୍ତି । ତାଙ୍କ ପୂର୍ବ ରସୁଲମାନଙ୍କ ବିଷୟରେ ମଧ୍ୟ ଅଲ୍ଲାହଙ୍କର ଏହି ନୀତି ରହି ଆସିଛି । ଅଲ୍ଲାହଙ୍କର ଆଦେଶ ହେଉଛି ଭାଗ୍ୟର ନିଷ୍ପତ୍ତି । ୩୯. ସେମାନେ (ଲୋକମାନଙ୍କୁ) ଅଲ୍ଲାହଙ୍କ ବାର୍ତ୍ତା ଦେଉଥିଲେ, କେବଳ ତାଙ୍କୁ ହିଁ ଭୟ କରୁଥିଲେ ଏବଂ ତାଙ୍କ ବ୍ୟତୀତ ଅନ୍ୟ କାହାରିକୁ ଭୟ କରୁ ନଥିଲେ । ଅଲ୍ଲାହ୍ ସ୍ୱୟଂ ହିସାବ ନେବା ପାଇଁ ଯଥେଷ୍ଟ ।

୪୦. ମୁହମ୍ମଦ୍ ତୁମ ପୁରୁଷମାନଙ୍କ ମଧ୍ୟରୁ କାହାରି ପିତା ନୁହନ୍ତି ବରଂ ସେ ଅଲ୍ଲାହଙ୍କର ଜଣେ ରସୁଲ୍ ଏବଂ ଈଶ୍ୱରଦୂତମାନଙ୍କ ମଧ୍ୟରେ ଅନ୍ତିମ ଈଶ୍ୱରଦୂତ । ଅଲ୍ଲାହ୍ ପ୍ରତ୍ୟେକ ବିଷୟରେ ଜାଣନ୍ତି ।

୪୧. ହେ ମୁସଲମାନଗଣ ! ଅଲ୍ଲାହଙ୍କୁ ଅଧିକରୁ ଅଧିକ ସ୍ମରଣ କର । ୪୨. ଏବଂ ସକାଳେ ଓ ସନ୍ଧ୍ୟାରେ ତାଙ୍କର ଗୁଣଗାନ କରୁଥାଅ । ୪୩. ସେ ତୁମମାନଙ୍କ ପ୍ରତି ତାଙ୍କର ଶୁଭାଶିଷ ପଠାଇ ଥାଆନ୍ତି ଏବଂ ତାଙ୍କର ଦେବଦୂତମାନେ ମଧ୍ୟ, ଯାହାଦ୍ୱାରା ସେ ତୁମମାନଙ୍କୁ ଅନ୍ଧକାରରୁ ବାହାର କରି ଅଲୋକକୁ ଆଣିବେ । ସଦ୍‌ବିଶ୍ୱାସୀମାନଙ୍କ ପାଇଁ ସେ ଭାରି ଦୟାଳୁ । ୪୪. ଯେଉଁଦିନ ସେମାନେ ତାଙ୍କୁ ସାକ୍ଷାତ କରିବେ, ସେଦିନ "ତୁମମାନଙ୍କର ମଙ୍ଗଳ ହେଉ" କହି ସେମାନଙ୍କୁ ସ୍ୱାଗତ କରାଯିବ । ଅଲ୍ଲାହ୍ ସେମାନଙ୍କ ପାଇଁ ଖୁବ ସୁନ୍ଦର ପୁରସ୍କାରର ବ୍ୟବସ୍ଥା କରିଛନ୍ତି ।

୪୫. ହେ ବାର୍ତ୍ତାବହ ! ଆମ୍ଭେ ତୁମକୁ (ସଦାଚାରୀମାନଙ୍କୁ) ସୁସମାଚାର ଦେବାପାଇଁ ଏବଂ (ଦୁରାଚାରୀମାନଙ୍କୁ) ସାବଧାନ କରିବା ପାଇଁ ଜଣେ ସାକ୍ଷୀ ରୂପେ

ପଠାଇଛୁ । ୪୬. ତୁମେ ଅଲ୍ଲାହଙ୍କ ଆଜ୍ଞାରୁ (ଲୋକମାନଙ୍କୁ) ତାଙ୍କ ମାର୍ଗକୁ ଡାକୁଥିବା ଏକ ଆଲୋକ ପ୍ରଦାନକାରୀ ପ୍ରଦୀପ । ୪୭. ସଦ୍‌ବିଶ୍ୱାସୀ ଭକ୍ତମାନଙ୍କୁ ସୁସମାଚାର ଦିଅ ଯେ ସେମାନେ ଅଲ୍ଲାହଙ୍କର ଅପାର କରୁଣା ଲାଭ କରିବେ । ୪୮. ଏବଂ ନାସ୍ତିକ ଓ କପଟୀ ଲୋକମାନଙ୍କର କଥା ମାନନାହିଁ କିମ୍ବା ସେମାନେ ଦେଉଥିବା ନିର୍ଯ୍ୟାତନାକୁ ଭ୍ରୁକ୍ଷେପ କରନାହିଁ । ଅଲ୍ଲାହଙ୍କ ଉପରେ ଭରସା ରଖ । ତୁମର କାର୍ଯ୍ୟସିଦ୍ଧି ପାଇଁ ଅଲ୍ଲାହ୍ ଯଥେଷ୍ଟ ।

୪୯. ହେ ମୁସଲମାନଗଣ! ଯଦି ତୁମେମାନେ ମୁସଲିମ୍ ମହିଳାଙ୍କୁ ବିବାହ କର କିନ୍ତୁ ସେମାନଙ୍କୁ ସ୍ପର୍ଶ କରିବା (ଅର୍ଥାତ୍ ସହବାସ କରିବା) ପୂର୍ବରୁ ସେମାନଙ୍କୁ ତଲାକ୍ ଦେଇଦିଅ, ତେବେ ତୁମମାନଙ୍କ ପକ୍ଷରେ ସେମାନଙ୍କର ପ୍ରତୀକ୍ଷା କାଳ ଗଣିବାର ଆବଶ୍ୟକତା ନାହିଁ । ତେଣୁ ସେମାନଙ୍କୁ କିଛି ଉପହାର ଆଦି ଦେଇ ଭଲ ଭାବରେ ବିଦାୟ ଦିଅ ।

୫୦. ହେ ବାର୍ତ୍ତାବହ! ଆମ୍ଭେ ତୁମ ପାଇଁ ତୁମର ସେହି ପତ୍ନୀମାନଙ୍କୁ ବୈଧ କରିଛୁ ଯେଉଁମାନଙ୍କୁ ତୁମେ ମେହର (ଅର୍ଥାତ୍ ବିବାହକାଳୀନ ଦେୟ) ଦେଇସାରିଛ ଏବଂ ସେହି ଦାସୀମାନଙ୍କୁ ମଧ୍ୟ, ଯେଉଁମାନଙ୍କୁ ଅଲ୍ଲାହ୍ ଯୁଦ୍ଧବନ୍ଦୀ ରୂପେ ତୁମ ଅଧୀନକୁ ଆଣିଛନ୍ତି ଏବଂ ତୁମ କକା ଝିଅ, ପିଉସୀ ଝିଅ, ମାମୁଁ ଝିଅ, ମାଉସୀ ଝିଅ ଯେଉଁମାନେ ତୁମ ସହ ଦେଶତ୍ୟାଗ କରିଛନ୍ତି (ସେମାନେ ମଧ୍ୟ ତୁମ ବିବାହ ପାଇଁ ବୈଧ) ଏବଂ ସେହି ମୁସଲିମ୍ ମହିଳା ମଧ୍ୟ ଯିଏ (ମେହେର ଦାବୀ ନକରି) ନିଜକୁ ରସୁଲଙ୍କୁ ଅର୍ପଣ କରିବାକୁ ଚାହେଁ, ଏହି ସର୍ତ୍ତରେ ଯେ ରସୁଲ ମଧ୍ୟ ତା' ସହିତ ବିବାହ କରିବାକୁ ଆଗ୍ରହୀ । ଏହି ଅନୁମତି କେବଳ ତୁମ ପାଇଁ ଦିଆଗଲା କିନ୍ତୁ ଅନ୍ୟ ମୁସଲମାନମାନଙ୍କ ପାଇଁ ନୁହେଁ । ସେମାନଙ୍କ ପତ୍ନୀ ଓ ଦାସୀମାନଙ୍କ ବିଷୟରେ ଆମ୍ଭେ ଯାହା ନିୟମ ଧାର୍ଯ୍ୟ କରିଛୁ, ତାହା ଆମ୍ଭେ ଜାଣୁ । (ମାତ୍ର ତୁମ ପାଇଁ ଏହି ଅନୁମତି) ଏଇଥିପାଇଁ ଯେ ତୁମର କୌଣସି ଅସୁବିଧା ନହେଉ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଏବଂ ପରମ ଦୟାଳୁ । ୫୧. ଏମାନଙ୍କ ମଧ୍ୟରୁ ଯାହା ପ୍ରତି ତୁମର ଆଗ୍ରହ ଥାଏ ତାକୁ ନିଜ ପାଖରେ ରଖିପାର ଏବଂ ଯାହା କ୍ଷେତ୍ରରେ ଚାହଁ ବିଳମ୍ବ ମଧ୍ୟ କରିପାର ଏବଂ ଯାହା କ୍ଷେତ୍ରରେ ବିଳମ୍ବ କରିଛ, ତାକୁ

ପୁଣି ପାଖକୁ ନେଇ ଆସିଲେ ମଧ୍ୟ ତୁମର କୌଣସି ଦୋଷ ହେବନାହିଁ । (ଆମ୍ଭର ଏହି ଅନୁମତି ଯୋଗୁଁ) ସଂଭବତଃ ସେମାନଙ୍କ ମନ ଶାନ୍ତ ହେବ ଏବଂ ସେମାନେ ମନ ଦୁଃଖ କରିବେନାହିଁ ବରଂ ତୁମେ ଯାହାକିଛି ସେମାନଙ୍କୁ ଦେବ, ସେଥିରେ ସମସ୍ତେ ସନ୍ତୁଷ୍ଟ ରହିବେ । ଅଲ୍ଲାହ୍ ଜାଣନ୍ତି ଯାହାକିଛି ତୁମମାନଙ୍କ ମନରେ ଅଛି । ଅଲ୍ଲାହ୍ ସର୍ବଜ୍ଞ ଓ ସହନଶୀଳ । ୫୨. (ହେ ରସୁଲ୍!) ଏମାନଙ୍କ ବ୍ୟତୀତ ଅନ୍ୟ ମହିଳାମାନେ ତୁମ ପାଇଁ ବୈଧ ନୁହନ୍ତି କିମ୍ବା ଏହା ମଧ୍ୟ ବୈଧ ନୁହେଁ ଯେ ଏମାନଙ୍କ ପରିବର୍ତ୍ତେ ତୁମେ ଅନ୍ୟ ମହିଳାମାନଙ୍କୁ ପତ୍ନୀ ରୂପେ ଗ୍ରହଣ କର ଯଦିଓ ସେମାନଙ୍କର ସୌନ୍ଦର୍ଯ୍ୟ ତୁମକୁ ଭଲ ଲାଗେ । ହଁ, ଯେଉଁମାନେ ତୁମର ଦାସୀ, ସେମାନଙ୍କ କଥା ଭିନ୍ନ । ଅଲ୍ଲାହ୍ ପ୍ରତ୍ୟେକ ବିଷୟ ଉପରେ ନଜର ରଖିଛନ୍ତି ।

୫୩. ହେ ମୁସଲମାନଗଣ ! ରସୁଲଙ୍କ ଘରେ ବିନା ଅନୁମତିରେ ପ୍ରବେଶ କରନାହିଁ । ହଁ, ଯଦି ଭୋଜନ ପାଇଁ ତୁମମାନଙ୍କୁ ଆମନ୍ତ୍ରିତ କରା ଯାଇଥାଏ ତେବେ ଯାଅ କିନ୍ତୁ (ପୂର୍ବରୁ ଯାଇ) ଭୋଜନ ପ୍ରସ୍ତୁତ ହେବା ଅପେକ୍ଷାରେ ବସି ରୁହନାହିଁ । ଯେତେବେଳେ ଡକାଯାଏ ସେତେବେଳେ ଯାଅ ଆଉ ଭୋଜନ କରି ସାରିବା ପରେ ସେଠାରୁ ଚାଲିଆସ । କଥାବାର୍ତ୍ତାରେ ମଗ୍ନ ରହି ସେଠାରେ ବସି ରୁହନାହିଁ । ଏହାଦ୍ୱାରା ଈଶ୍ୱରଦୂତଙ୍କୁ କଷ୍ଟ ହୁଏ କିନ୍ତୁ ସେ ତୁମମାନଙ୍କୁ କହିବାକୁ ଲଜ୍ୟାବୋଧ କରନ୍ତି, ମାତ୍ର ଅଲ୍ଲାହ୍ ସତ କହିବାକୁ ଲଜ୍ଜାବୋଧ କରନ୍ତିନାହିଁ । ଯଦି ତୁମେମାନେ ରସୁଲଙ୍କ ପତ୍ନୀମାନଙ୍କଠାରୁ କୌଣସି ଜିନିଷ ମାଗିବାକୁ ପଡ଼େ ତେବେ ପରଦା ଆଢୁଆଳରେ ଥାଇ ମାଗ । ଏହା ତୁମମାନଙ୍କର ଓ ସେମାନଙ୍କର ମନର ଶୁଦ୍ଧତା ପାଇଁ ଖୁବ୍ ଭଲ । ଅଲ୍ଲାହଙ୍କ ରସୁଲଙ୍କୁ କଷ୍ଟ ଦେବା ତୁମମାନଙ୍କ ପାଇଁ ନିଷିଦ୍ଧ ଏବଂ ତାଙ୍କ ଅନ୍ତେ ତାଙ୍କ ପତ୍ନୀମାନଙ୍କ ସହିତ ବିବାହ କରିବା ମଧ୍ୟ ତୁମମାନଙ୍କ ପାଇଁ ବୈଧ ନୁହେଁ । ଏହା ଅଲ୍ଲାହ୍‌ଙ୍କ ଦୃଷ୍ଟିରେ ଏକ ମହାପାପ । ୫୪. ତୁମେମାନେ କୌଣସି କଥାକୁ ଗୋପନ ରଖ ବା ପ୍ରକାଶ କର, ଅଲ୍ଲାହ୍ ସବୁକଥା ଜାଣନ୍ତି ।

୫୫. ରସୁଲଙ୍କ ପତ୍ନୀମାନେ ସେମାନଙ୍କ ପିତା, ପୁତ୍ର, ଭାଇ, ପୁତୁରା, ଭଣଜା, ପରିଚିତା ମହିଳା ବା ଦାସୀମାନଙ୍କ ସାମନାକୁ ଆସିଲେ କୌଣସି ଦୋଷ ନାହିଁ । ଅଲ୍ଲାହଙ୍କୁ ଭୟ କରୁଥାଅ । ଅଲ୍ଲାହ ସବୁକଥା ପ୍ରତି ନଜର ରଖିଛନ୍ତି ।

୫୬. ଅଲ୍ଲାହ୍ ନିଜ ରସୁଲଙ୍କୁ ଶୁଭାଶିଷ ପ୍ରଦାନ କରନ୍ତି ଏବଂ ତାଙ୍କର ଦେବଦୂତମାନେ ମଧ୍ୟ ତାଙ୍କର ମଙ୍ଗଳ ପାଇଁ ପ୍ରାର୍ଥନା କରନ୍ତି । ହେ ମୁସଲମାନଗଣ ! ତୁମେମାନେ ମଧ୍ୟ ତାଙ୍କ ପାଇଁ (ଅଲ୍ଲାହଙ୍କର) ଆଶିଷ ଭିକ୍ଷା କର ଏବଂ ତାଙ୍କର ସର୍ବମଙ୍ଗଳ କାମନା କରି ପ୍ରାର୍ଥନା କରୁଥାଅ ।

୫୭. ଯେଉଁମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ କଷ୍ଟ ଦେଉଛନ୍ତି, ଅଲ୍ଲାହ୍ ସେମାନଙ୍କୁ ଇହଲୋକ ଓ ପରଲୋକ ପାଇଁ ଶାପ ଦେଲେ ଏବଂ ସେମାନେ ଅପମାନଜନକ ଶାସ୍ତି ଭୋଗିବେ । ୫୮. ଯେଉଁମାନେ ସଦ୍‌ବିଶ୍ୱାସୀ ପୁରୁଷ ବା ମହିଳାଙ୍କୁ ବିନା ଦୋଷରେ ଦୁଃଖ ଦେଉଛନ୍ତି, ସେମାନେ ନିଜ ଉପରକୁ ଏକ ମିଥ୍ୟା ଅପବାଦ ଓ ଜଘନ୍ୟ ପାପର ବୋଝ ନେଉଛନ୍ତି ।

୫୯. ହେ ବାର୍ତ୍ତାବହ ! ନିଜର ପତ୍ନୀ, କନ୍ୟା ଏବଂ ଅନ୍ୟ ମୁସଲମାନ ମହିଳାମାନଙ୍କୁ କହିଦିଅ ଯେ ସେମାନେ (ବାହାରକୁ ଯିବା ସମୟରେ) ସେମାନଙ୍କର ଓଢ଼ଣା ଟାଣି ନିଅନ୍ତୁ । ଏହାଦ୍ୱାରା ଖୁବ୍‌ସମ୍ଭବ ଯେ ସେମାନେ (ଭଦ୍ର ମହିଳା ରୂପେ) ଚିହ୍ନିତ ହେବେ ଏବଂ ଅସଦ୍ ବ୍ୟବହାରରୁ ରକ୍ଷା ପାଇବେ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ କରୁଣାମୟ ।

୬୦. ଯେଉଁମାନେ କପଟୀ, ଯେଉଁମାନଙ୍କର ମନ ବ୍ୟାଧିଗ୍ରସ୍ତ ଏବଂ ଯେଉଁମାନେ ମଦିନା ସହରରେ ମିଥ୍ୟା ଗୁଜବ ପ୍ରଚାର କରୁଛନ୍ତି, ଯଦି ସେମାନେ ଏଥିରୁ କ୍ଷାନ୍ତ ନହୁଅନ୍ତି ତେବେ ଆମ୍ଭେ ତୁମକୁ ସେମାନଙ୍କ ବିରୁଦ୍ଧରେ (କାର୍ଯ୍ୟାନୁଷ୍ଠାନ କରିବା ପାଇଁ) ଠିଆ କରିଦେବୁ । ତା'ପରେ ସେମାନେ ତୁମ ସହିତ ଏହି ସହରରେ ବେଶୀ ଦିନ ରହି ପାରିବେନାହିଁ । ୬୧. ସେମାନେ ଅପମାନିତ ହେବେ, ଯୁଆଡ଼େ ଯିବେ ଧରାଯିବେ ଏବଂ ସେମାନଙ୍କୁ ନିର୍ମମ ଭାବରେ ହତ୍ୟା କରାଯିବ । ୬୨. ଏମାନଙ୍କ ପୂର୍ବ ଲୋକମାନଙ୍କ ପାଇଁ ମଧ୍ୟ ଅଲ୍ଲାହଙ୍କର ଏହି ନୀତି ଥିଲା । ତୁମେ ଅଲ୍ଲାହଙ୍କ ନୀତିରେ କୌଣସି ପରିବର୍ତ୍ତନ ଦେଖିବାକୁ ପାଇବନାହିଁ ।

୬୩. ଲୋକେ ତୁମକୁ ପ୍ରଳୟ ବିଷୟରେ ପଚାରୁଛନ୍ତି । କହିଦିଅ, "ଏକଥା କେବଳ ଅଲ୍ଲାହ୍ ଜାଣନ୍ତି । ତୁମମାନଙ୍କୁ କ'ଣ ଜଣା, ହୁଏତ ପ୍ରଳୟ ସମୟ ପାଖେଇ ଆସିଲାଣି ।" ୬୪. ଯେଉଁମାନେ (ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ)

ପ୍ରତ୍ୟାଖ୍ୟାନ କଲେ, ଅଲ୍ଲାହ୍ ସେମାନଙ୍କୁ ଧିକ୍କାର କଲେ ଏବଂ ସେମାନଙ୍କ ପାଇଁ ସେ ଜ୍ୱଳନ୍ତ ନିଆଁ ପ୍ରସ୍ତୁତ କରି ରଖିଛନ୍ତି, ୬୫. ଯେଉଁଠି ସେମାନେ ସର୍ବଦା ରହିବେ । ସେଠାରେ ସେମାନଙ୍କର କେହି ବନ୍ଧୁ ବା ସାହାଯ୍ୟକାରୀ ନଥିବେ । ୬୬. ଯେଉଁଦିନ ସେମାନଙ୍କ ମୁହଁକୁ ନିଆଁରେ ପକାଇ ଓଲଟ-ପାଲଟ କରାଯିବ, ସେଦିନ ସେମାନେ (ଅବଶୋଷ କରି) କହିବେ, "ହାୟ! ଆମେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ କଥା ମାନିନେଇ ଥାଆନ୍ତୁ କି ?" ୬୭. ଏବଂ କହିବେ, "ହେ ପ୍ରଭୁ! ଆମେ ଆମ ମୁଖିଆ ଓ ବଡ଼ବଡ଼ିଆଙ୍କ କଥାରେ ଚାଲିଲୁ ଯାହାଫଳରେ ସେମାନେ ଆମକୁ ସତମାର୍ଗରୁ ବିଭ୍ରାନ୍ତ କରିଦେଲେ । ୬୮. ହେ ଈଶ୍ୱର! ସେମାନଙ୍କୁ ଦ୍ୱିଗୁଣ ଦଣ୍ଡ ଦିଅ ଏବଂ ଖୁବ୍ ଧିକ୍କାର କର ।"

୬୯. ହେ ସଦ୍‌ବିଶ୍ୱାସୀଗଣ! ସେହି ଲୋକମାନଙ୍କ ପରି ହୁଅନାହିଁ ଯେଉଁମାନେ ମୁ'ସାଙ୍କୁ କଷ୍ଟ ଦେଇଥିଲେ, ମାତ୍ର ଅଲ୍ଲାହ୍ ତାଙ୍କୁ ସେମାନଙ୍କ ଆରୋପରୁ ମୁକ୍ତ କରିଥିଲେ । ଅଲ୍ଲାହଙ୍କ ଦୃଷ୍ଟିରେ ସେ ଜଣେ ସମ୍ମାନିତ ବ୍ୟକ୍ତି ଥିଲେ । ୭୦. ହେ ସଦ୍‌ବିଶ୍ୱାସୀଗଣ ! ଅଲ୍ଲାହଙ୍କୁ ଭୟ କର ଏବଂ ସଠିକ୍ କଥା କୁହ । ୭୧. ସେ ତୁମମାନଙ୍କର ଆଚରଣ ସୁଧାରି ଦେବେ ଏବଂ ତୁମମାନଙ୍କର ପାପ କ୍ଷମା କରିଦେବେ । ଯିଏ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ କଥା ମାନିବ, ସେ ବିରାଟ ସଫଳତା ପାଇବ ।

୭୨. ଆମ୍ଭେ ଏହି ଅମାନତର (ଅର୍ଥାତ୍ ନିଜ ଇଚ୍ଛାରେ ଅଲ୍ଲାହଙ୍କ ବିଧାନ ପାଳନ କରିବାର) ଦାୟିତ୍ୱ ନେବା ପାଇଁ ଧରିତ୍ରୀ, ଆକାଶ ଓ ପାହାଡ଼ଗୁଡ଼ିକୁ ପ୍ରସ୍ତାବ ଦେଲୁ, ମାତ୍ର ସେମାନେ ଭୟକଲେ ଏବଂ ଏହି ଦାୟିତ୍ୱ ନେବାକୁ ମନା କଲେ କିନ୍ତୁ ମନୁଷ୍ୟ ଏହି ଦାୟିତ୍ୱ ନେଲା । ପ୍ରକୃତରେ ତା'ର ଜ୍ଞାନ ନାହିଁ ଏବଂ ସେ ନିଜର ଅନିଷ୍ଟ କରିଥାଏ । ୭୩. ଏହାର ଫଳ ସ୍ୱରୂପ ଅଲ୍ଲାହ୍ କପଟୀ ଓ ବହୁଦେବବାଦୀ ନରନାରୀମାନଙ୍କୁ ଶାସ୍ତି ଦେବେ ଏବଂ ସଦ୍‌ବିଶ୍ୱାସୀ ନରନାରୀମାନଙ୍କ ପ୍ରତି କୃପାଦୃଷ୍ଟି ଦେବେ । ଅଲ୍ଲାହ୍ କ୍ଷମାଶୀଳ ଓ କରୁଣାମୟ ।

## ଅଧ୍ୟାୟ ୩୪, ଅସ୍ ସବା

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲ୍ଲାହ୍ ହିଁ ସକଳ ପ୍ରଶଂସାର ଯୋଗ୍ୟ ଯିଏ ପୃଥିବୀ ଓ ଆକାଶରେ ଥିବା ସମସ୍ତ ସୃଷ୍ଟିର ମାଲିକ । ପରଲୋକରେ ମଧ୍ୟ ତାଙ୍କରି ସ୍ତୁତି ଓ ବନ୍ଦନା ହୁଏ । ସେ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ । ୨. ଯାହା ପୃଥିବୀରେ ପ୍ରବେଶ କରେ ଓ ଯାହା ସେଥିରୁ ବାହାରେ ଏବଂ ଯାହା ଆକାଶରୁ ଆସେ ଓ ଯାହା ଆକାଶକୁ ଯାଏ, ସେ ଜାଣନ୍ତି । ସେ ପରମ ଦୟାଳୁ ଏବଂ ଅତ୍ୟନ୍ତ କ୍ଷମାଶୀଳ ।

୩. ନାସ୍ତିକମାନେ କହନ୍ତି ଯେ ପ୍ରଳୟ ହେବନାହିଁ । ସେମାନଙ୍କୁ କୁହ, "କାହିଁକି ହେବନାହିଁ? ମୋ' ଈଶ୍ୱରଙ୍କ ରାଣ, ଯିଏ ଅଦୃଷ୍ଟର ଜ୍ଞାତା, ତୁମେମାନେ ନିଶ୍ଚୟ ପ୍ରଳୟ ଦେଖିବ । ପୃଥିବୀ ବା ଆକାଶରେ ଅଣୁ ପରିମାଣର ବସ୍ତୁ ମଧ୍ୟ ତାଙ୍କଠାରୁ ଲୁଚି ରହିନାହିଁ । ତା'ଠାରୁ ବଡ଼ ହେଉ ବା ଛୋଟ, ସବୁକିଛି ଏକ ପରିଷ୍କାର ଗ୍ରନ୍ଥରେ ଲେଖା ହୋଇ ରହିଛି ।" ୪. (ସୃଷ୍ଟିର ପ୍ରଳୟ ହେବ, କାରଣ) ଯେଉଁମାନେ ବିଶ୍ୱାସ କଲେ ଏବଂ ଭଲ କର୍ମ କଲେ, ଅଲ୍ଲାହ୍ ସେମାନଙ୍କୁ ପୁରସ୍କୃତ କରିବେ । ଏମାନେ ପ୍ରଭୁଙ୍କର କ୍ଷମା ଲାଭ କରିବେ ଏବଂ (ସ୍ୱର୍ଗରେ) ପରମ ସୁଖ ଭୋଗ କରିବେ, ୫. ଏବଂ ଯେଉଁମାନେ ଆମ୍ଭର ବାଣୀର ଉଦ୍ଦେଶ୍ୟକୁ ବ୍ୟର୍ଥ କରିବାକୁ ଚେଷ୍ଟା କଲେ, ସେମାନେ କଠୋର ଶାସ୍ତି ଭୋଗିବେ । ୬. ଯେଉଁମାନଙ୍କୁ ସଦ୍‌ଜ୍ଞାନ ଦିଆଯାଇଛି, ସେମାନେ ଜାଣନ୍ତି ଯେ ଈଶ୍ୱର ତୁମ ପାଖକୁ ଯାହା ପଠାଇଛନ୍ତି ତାହା ସତ୍ୟ ଏବଂ ଏହା ମହାଶକ୍ତିମାନ ଓ ସ୍ତୁତିଯୋଗ୍ୟ ଈଶ୍ୱରଙ୍କର ବାଟ ଦେଖାଏ ।

୭. ନାସ୍ତିକମାନେ (ଲୋକମାନଙ୍କୁ) କହୁଛନ୍ତି, "(ଆସ), ଆମେ ତୁମକୁ ଏମିତି ଜଣେ ଲୋକ ବିଷୟରେ କହିବୁ, ଯିଏ କହୁଛି ଯେ ତୁମେମାନେ (ମରି ସାରି) ଧୂଳିମାଟି ହୋଇଗଲା ପରେ ମଧ୍ୟ ପୁଣି ଏକ ନୂଆ ଜୀବନ ପାଇବ । ୮. ହୁଏତ ସେ ଈଶ୍ୱରଙ୍କ ନାଁରେ ମିଛ କହୁଛି କିମ୍ବା ତା'ର ମତିଭ୍ରମ ହୋଇଯାଇଛି ।" ଆଦୌ ନୁହେଁ । ଯେଉଁମାନେ ପରଲୋକରେ ବିଶ୍ୱାସ କରନ୍ତି ନାହିଁ, ସେମାନେ ଶାସ୍ତି ଭୋଗିବେ । ସେମାନେ ସଂପୂର୍ଣ୍ଣ ରୂପେ ପଥଭ୍ରଷ୍ଟ ହୋଇ ଯାଇଛନ୍ତି । ୯. କ'ଣ ସେମାନେ ଧରିତ୍ରୀ ଓ

ଆକାଶକୁ ଦେଖୁ ନାହାନ୍ତି ଯାହା ସେମାନଙ୍କୁ ଆଗ ଓ ପଛରୁ ଘେରି ରହିଛି ? ଆମ୍ଭେ ଇଚ୍ଛା କଲେ ସେମାନଙ୍କୁ ଭୂଗର୍ଭରେ ଲୀନ କରିଦେବୁ କିମ୍ବା ସେମାନଙ୍କ ଉପରେ ଆକାଶରୁ କୌଣସି ବିପତ୍ତି ପଠାଇଦେବୁ । ଆମ୍ଭ ନିକଟକୁ (ପଶ୍ଚାତାପ କରି) ଫେରୁଥିବା ପ୍ରତ୍ୟେକ ସେବକ ପାଇଁ ଏଥିରେ ଏକ ସଂକେତ ଅଛି ।

୧୦. ଆମ୍ଭେ ଦାଉଦଙ୍କ ପ୍ରତି ବିଶେଷ କୃପା କରିଥିଲୁ । (ଏବଂ ଆଜ୍ଞା ଦେଇଥିଲୁ) "ହେ ପାହାଡ଼-ପର୍ବତ ! ତାଙ୍କ ସହିତ ମିଶି ଅଲ୍ଲାହଙ୍କର ଗୁଣଗାନ କର" ଏବଂ ଏହି ଆଦେଶ ଆମ୍ଭେ ପକ୍ଷୀମାନଙ୍କୁ ମଧ୍ୟ ଦେଇଥିଲୁ । ଆମ୍ଭେ ତାଙ୍କ ପାଇଁ ଲୁହାକୁ ନରମ କରି ଦେଇଥିଲୁ । ୧୧. (ଏବଂ କହିଥିଲୁ) "ସମ୍ପୂର୍ଣ୍ଣ ସାଂଜୁ ତିଆରି କର ଏବଂ ସେଗୁଡ଼ିକର କଡ଼ିଗୁଡ଼ିକୁ ଠିକ୍ ଅନୁପାତରେ ଯୋଡ଼ । ଭଲ କର୍ମ କରୁଥାଅ । ତୁମେମାନେ ଯାହା କରୁଛ, ମୁଁ ସବୁ ଦେଖୁଛି ।"

୧୨. ଆମ୍ଭେ ପବନକୁ ସୁଲେମାନଙ୍କର ଆୟତ୍ତାଧୀନ କରିଥିଲୁ, ଯାହା ଗୋଟିଏ ମାସର ଦୂରତା ପୂର୍ବାହ୍ନରେ ଏବଂ ଗୋଟିଏ ମାସର ଦୂରତା ଅପରାହ୍ନରେ ଅତିକ୍ରମ କରୁଥିଲା । ଆମ୍ଭେ ତାଙ୍କ ପାଇଁ ତରଳ ତମ୍ବାର ସ୍ରୋତ ସୃଷ୍ଟି କରି ଦେଇଥିଲୁ ଏବଂ ଈଶ୍ୱରଙ୍କ ଆଜ୍ଞାରୁ ଅନେକ ଜିନ୍ ତାଙ୍କର ଅଧୀନସ୍ଥ ହୋଇ କାର୍ଯ୍ୟ କରୁଥିଲେ । ଯଦି ସେମାନଙ୍କ ମଧ୍ୟରୁ କେହି ଆମ୍ଭ ଆଜ୍ଞାର ଉଲଂଘନ କରନ୍ତା, ଆମ୍ଭେ ତାକୁ ଜ୍ୱଳନ୍ତ ଅଗ୍ନିର ମଜା ଚଖାଇ ଦିଅନ୍ତୁ । ୧୩. ସୁଲେମାନ ଯାହା ଚାହୁଁଥିଲେ, ସେମାନେ ତାଙ୍କ ପାଇଁ ତାହା ନିର୍ମାଣ କରୁଥିଲେ, ଯଥା – ଉଚ୍ଚଉଚ୍ଚ ଅଟ୍ଟାଳିକା, ଚିତ୍ରକଳା, ଜଳାଶୟ ପରି ପାଣି କୁଣ୍ଡ ଏବଂ ବିଶାଳକାୟ ହାଣ୍ଡି ଯାହା ସବୁବେଳେ ଚୁଲି ଉପରେ ଥାଏ । (ଆମ୍ଭେ କହିଥିଲୁ) "ହେ ଦାଉଦଙ୍କ ସନ୍ତାନଗଣ ! ଆମ୍ଭ ପ୍ରତି କୃତଜ୍ଞ ହୋଇ ଭଲ କର୍ମ କର ।" ମୋ' ଦାସମାନଙ୍କ ମଧ୍ୟରେ ଖୁବ୍ ଅଳ୍ପ ଲୋକ କୃତଜ୍ଞ ଥାଆନ୍ତି ।

୧୪. ଯେତେବେଳେ ଆମ୍ଭେ  ସୁଲେମାନଙ୍କ ମୃତ୍ୟୁର ନିର୍ଦ୍ଦେଶ ଜାରି କଲୁ, ଜିନ୍‌ମାନଙ୍କୁ ତାଙ୍କ ମୃତ୍ୟୁର ସୂଚନା ଭୂଇଁର କୀଟ (ଅର୍ଥାତ୍ ଉଈ) ଦ୍ୱାରା ମିଳିଲା ଯେଉଁମାନେ ତାଙ୍କ ଆଶାବାଡ଼ିକୁ ଖାଇ ଯାଉଥିଲେ । ଯେତେବେଳେ ସୁଲେମାନ ତଳେ ପଡ଼ିଗଲେ, ଜିନ୍‌ମାନେ ଏହା ଜାଣିଗଲେ ଯେ ଯଦି ଅଦୃଷ୍ଟ

ବିଷୟରେ ସେମାନଙ୍କ ଜ୍ଞାନ ଥାଆନ୍ତା ତେବେ ସେମାନେ ଏଭଳି ଅପମାନଜନକ ଯନ୍ତ୍ରଣା ସହି ନଥାଆନ୍ତେ ।

୧୫. ସବା ସଂପ୍ରଦାୟ ପାଇଁ ସେମାନଙ୍କ ରହିବା ସ୍ଥାନରେ ଏକ ନିଦର୍ଶନ ଥିଲା । ଏହାର ଡାହାଣ ଓ ବାମ, ଉଭୟ ପାଖରେ ଦୁଇଟି ବଗିଚା ଥିଲା । (ଆମ୍ଭେ ସେମାନଙ୍କୁ କହିଥିଲୁ) "ପ୍ରଭୁ ଦେଇଥିବା ଆହାର ଖାଅ ଏବଂ ତାଙ୍କ ପ୍ରତି କୃତଜ୍ଞ ହୁଅ । ତୁମ ସହରଟି ଭଲ ଏବଂ ତୁମ ପ୍ରଭୁ ମଧ୍ୟ କ୍ଷମାଶୀଳ ।" ୧୬. କିନ୍ତୁ ସେମାନେ (ଆମ୍ଭ କଥାକୁ) ଉପେକ୍ଷା କଲେ । ତେଣୁ, ଆମ୍ଭେ ସେମାନଙ୍କ ଉଦ୍ଦେଶ୍ୟରେ ପ୍ରବଳ ବନ୍ୟା ପଠାଇଥିଲୁ ଯାହା ବନ୍ଧ ଭାଂଗି ସେମାନଙ୍କ ଉପରକୁ ମାଡ଼ି ଆସିଥିଲା ଏବଂ ଆମ୍ଭେ ସେହି ଦୁଇଟି ବଗିଚାକୁ ଏଭଳି ବଗିଚା କରିଦେଲୁ, ଯେଉଁଥିରେ କଷା ଓ ତିକ୍ତ ଫଳ ଫଳୁଥିଲା, ଝାଉଁ ବୁଦା ଥିଲା ଆଉ କିଛି କୋଳିଗଛ ଥିଲା । ୧୭. ଆମ୍ଭେ ସେମାନଙ୍କୁ ସେମାନଙ୍କ କୃତଘ୍ନତାର ଏହି ଫଳ ଦେଇଥିଲୁ । ଏଭଳି ଦଣ୍ଡ ଆମ୍ଭେ କେବଳ କୃତଘ୍ନମାନଙ୍କୁ ଦେଇଥାଉ ।

୧୮. ସେମାନଙ୍କ ସହର (ସବା) ଏବଂ ଯେଉଁ ସହରଗୁଡ଼ିକୁ ଆମ୍ଭେ ସମୃଦ୍ଧ କରିଥିଲୁ, ତା' ମଝିରେ ଆମ୍ଭେ ଅନେକ ଜନବସତି ସ୍ଥାପନ କରିଥିଲୁ ଯାହା ଦୂରରୁ ପରିଷ୍କାର ଦେଖା ଯାଉଥିଲା ଏବଂ (ଯାତ୍ରା ବିରତି ପାଇଁ) ରାସ୍ତାକୁ ଉଚିତ ପର୍ଯ୍ୟାୟରେ ବାଣ୍ଟି ଦେଇଥିଲୁ ଯେପରିକି ସେମାନେ ଦିନ ବା ରାତିରେ ନିଶ୍ଚିନ୍ତରେ ଯାତ୍ରା କରିପାରିବେ । ୧୯. ମାତ୍ର ସେମାନେ କହିଲେ, "ପ୍ରଭୁ ! ଆମ ଯାତ୍ରାପଥର ବ୍ୟବଧାନ ବଢ଼ାଇ ଦିଅ । ଏହାଦ୍ୱାରା ସେମାନେ ନିଜ ହାତରେ ନିଜର ଅନିଷ୍ଟ କଲେ । ତେଣୁ ଆମ୍ଭେ ସେମାନଙ୍କୁ କାହାଣୀରେ ପରିଣତ କରିଦେଲୁ ଏବଂ ସେମାନଙ୍କୁ ଛିନ୍ନଭିନ୍ନ କରିଦେଲୁ । ଏଥିରେ ପ୍ରତ୍ୟେକ ସଂଯମୀ ଓ କୃତଜ୍ଞ ବ୍ୟକ୍ତି ପାଇଁ ଶିକ୍ଷା ରହିଛି । ୨୦. ଶଇତାନ ସେମାନଙ୍କ ବିଷୟରେ ତା' ଅନୁମାନକୁ ସତ୍ୟ ସାବ୍ୟସ୍ତ କରି ଦେଖାଇଦେଲା ଏବଂ ସଦ୍‌ବିଶ୍ୱାସୀମାନଙ୍କର ଗୋଷ୍ଠୀ ବ୍ୟତୀତ ବାକି ସମସ୍ତେ ତା'ର ଅନୁଗତ ହୋଇଗଲେ । ୨୧. ସେମାନଙ୍କ ଉପରେ ତା'ର କିଛି କର୍ତ୍ତୃତ୍ୱ ନଥିଲା, କିନ୍ତୁ ଆମ୍ଭେ ପରୀକ୍ଷା କରି ଦେଖିବାକୁ ଚାହୁଁଥିଲୁ ଯେ କିଏ ପରଲୋକକୁ ବିଶ୍ୱାସ କରୁଛି ଏବଂ କିଏ ଏବିଷୟରେ ସନ୍ଦେହରେ ଅଛି । ତୁମ ଈଶ୍ୱର ପ୍ରତ୍ୟେକ ବିଷୟ ପ୍ରତି ନଜର ରଖିଛନ୍ତି ।

୨୨. କହିଦିଅ, “ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ ଯେଉଁମାନଙ୍କୁ ଈଶ୍ୱର ମାନିଛ, ସେମାନଙ୍କୁ ଡାକି ଦେଖ । ସେମାନେ ପୃଥିବୀ ବା ଆକାଶରେ ଅଣୁ ପରିମାଣର ବସ୍ତୁର ମଧ୍ୟ ମାଲିକ ନୁହନ୍ତି କିମ୍ବା ପୃଥିବୀ ଓ ଆକାଶରେ (ଅଲ୍ଲାହଙ୍କ ସହିତ) ସେମାନଙ୍କର କୌଣସି ଭାଗିଦାରୀ ନାହିଁ ଅଥବା ଏମାନଙ୍କ ମଧ୍ୟରୁ କେହି ଅଲ୍ଲାହଙ୍କର ସହାୟକ ନୁହନ୍ତି । ୨୩. ଅଲ୍ଲାହ୍ ଯାହାପାଇଁ ସୁପାରିଶ କରିବାର ଅନୁମତି ଦେବେ କେବଳ ତା’ରି ବ୍ୟତୀତ ଅନ୍ୟ କାହାରି ପାଇଁ ସୁପାରିଶ ତାଙ୍କ ପାଖରେ ଚଳିବନାହିଁ । ଯେତେବେଳେ ସେମାନଙ୍କ ମନରୁ ଭୟ ଦୂର ହେବ ସେମାନେ (ପରସ୍ପରକୁ) ପଚାରିବେ, “ପ୍ରଭୁ କି ଆଦେଶ ଦେଲେ ?” ଏମାନେ ଉତ୍ତର ଦେବେ, “ସେ ଉଚିତ୍ ଆଦେଶ ଦେଇଛନ୍ତି । ସେ ଅତି ମହାନ ଏବଂ ସର୍ବଶ୍ରେଷ୍ଠ ।”

୨୪. ସେମାନଙ୍କୁ ପଚାର, “ପୃଥିବୀ ଓ ଆକାଶରୁ ତୁମମାନଙ୍କୁ କିଏ ଆହାର ଯୋଗାଇଥାଏ ?” ତୁମେ ହିଁ କହିଦିଅ, “ଅଲ୍ଲାହ୍ । ଆମ ଓ ତୁମ ମଧ୍ୟରୁ ଗୋଟିଏ ପକ୍ଷ ସତ୍‌ପଥରେ ଅଛି ଅନ୍ୟଟି ପଥଭ୍ରଷ୍ଟ ହୋଇଛି ।” ୨୫. ସେମାନଙ୍କୁ କୁହ, “ଆମ ଅପରାଧ ବିଷୟରେ ତୁମମାନଙ୍କୁ ପ୍ରଶ୍ନ କରାଯିବ ନାହିଁ କିମ୍ବା ତୁମମାନଙ୍କ କର୍ମ ବିଷୟରେ ଆମମାନଙ୍କୁ ପ୍ରଶ୍ନ କରାଯିବ ନାହିଁ ।” ୨୬. କୁହ ଯେ ଆମ ପାଳନକର୍ତ୍ତା (ଦିନେ) ଆମ ସମସ୍ତଙ୍କୁ ଏକାଠି କରିବେ ଏବଂ ଆମ ଭିତରେ ଉଚିତ ନିଷ୍ପତ୍ତି କରିଦେବେ । ସେ ସର୍ବଶ୍ରେଷ୍ଠ ବିଚାରକ ଏବଂ ତତ୍ତ୍ୱଜ୍ଞାନୀ । ୨୭. କୁହ, “ମୋତେ ଟିକିଏ ସେମାନଙ୍କୁ ଦେଖାଇ ଦିଅ, ଯେଉଁମାନଙ୍କୁ ତୁମେମାନେ ତାଙ୍କର ସମକକ୍ଷ କରି ତାଙ୍କ ସହିତ ସମାନ କରିଦେଇଛ । (ତାଙ୍କର ସମକକ୍ଷ) କେହି ନାହାନ୍ତି । ଅଲ୍ଲାହ୍ ସର୍ବଶକ୍ତିମାନ ଓ ତତ୍ତ୍ୱଜ୍ଞ ।”

୨୮. (ହେ ମୁହମ୍ମଦ!) ଆମ୍ଭେ ତୁମକୁ ସମଗ୍ର ମାନବଜାତିକୁ (ସ୍ୱର୍ଗର) ସୁସମାଚାର ଦେବାପାଇଁ ଏବଂ (ନର୍କ ବିଷୟରେ) ସାବଧାନ କରିବାପାଇଁ ପଠାଇଛୁ ମାତ୍ର ଅଧିକାଂଶ ଲୋକ ଏହା ଜାଣନ୍ତିନାହିଁ ।

୨୯. ସେମାନେ ପଚାରୁଛନ୍ତି, “ଯଦି ତୁମ କଥା ସତ, ତେବେ କୁହ ଯେ ତୁମେ ଯେଉଁ (ପ୍ରଳୟର) ଧମକ ଦେଉଛ ତାହା କେବେ ସତ ହେବ ?” ୩୦. ସେମାନଙ୍କୁ କୁହ, “ତୁମମାନଙ୍କ ପାଇଁ ଦିନ ସ୍ଥିର ହୋଇ ସାରିଛି ଏବଂ ତୁମେମାନେ ସେଥିରୁ ମୁହୂର୍ତ୍ତଟିଏ ମଧ୍ୟ ଆଗପଛ ହୋଇ ପାରିବନାହିଁ ।”

୩୧. ନାସ୍ତିକମାନେ କହୁଛନ୍ତି, "ଆମେ ଏହି କୁରଆନକୁ ମାନୁନାହୁଁ ବା ଏହା ପୂର୍ବର କୌଣସି ଗ୍ରନ୍ଥକୁ ମଧ୍ୟ ମାନୁନାହୁଁ।" ତୁମେ ଏହା ଦେଖନ୍ତ କି ଯେତେବେଳେ ଏହି ପାପିଷ୍ଠମାନଙ୍କୁ ସେମାନଙ୍କ ପ୍ରଭୁଙ୍କ ସାମନାରେ ଆଣି ଛିଡ଼ା କରାଯିବ, କିପରି ସେମାନେ ପରସ୍ପରକୁ ଦୋଷ ଦେବେ। (ସେତେବେଳେ) ଦୁର୍ବଳ ଶ୍ରେଣୀର ଲୋକମାନେ ସେମାନଙ୍କର ବଡ଼ବଡ଼ିଆମାନଙ୍କୁ କହିବେ, "ତୁମେମାନେ ନଥିଲେ ଆମେ ନିଶ୍ଚୟ ସଦ୍‌ବିଶ୍ୱାସୀ ହୋଇଥାଆନ୍ତୁ।" ୩୨. ସର୍ଦ୍ଦାରମାନେ ଦୁର୍ବଳ ଶ୍ରେଣୀର ଲୋକମାନଙ୍କୁ ଉତ୍ତର ଦେବେ, "ତୁମମାନଙ୍କ ପାଖକୁ ସତ୍ୟର ବାର୍ତ୍ତା ଆସିବା ପରେ କ'ଣ ଆମେ ତୁମମାନଙ୍କୁ ସେଥିରୁ ରୋକି ଦେଇଥିଲୁ? ଆଦୌ ନୁହେଁ। ଦୋଷ ତୁମମାନଙ୍କର ଥିଲା।" ୩୩. ଏହି ଦୁର୍ବଳ ଶ୍ରେଣୀର ଲୋକମାନେ ଉତ୍ତର ଦେବେ, "ନା, ତୁମେମାନେ ଦିନରାତି (ଆମକୁ ରୋକିବାକୁ) ଚକ୍ରାନ୍ତ କରୁଥିଲ ଅଲ୍ଲାହଙ୍କୁ ନମାନିବାକୁ ଏବଂ ଅନ୍ୟମାନଙ୍କୁ ତାଙ୍କର ସମକକ୍ଷ କରିବାକୁ ନିର୍ଦ୍ଦେଶ ଦେଉଥିଲ।" ଯେତେବେଳେ ଏମାନେ ଶାସ୍ତି ଦେଖିବେ, ମନେମନେ ଅନୁଶୋଚନା କରିବେ। ଆମ୍ଭେ ନାସ୍ତିକମାନଙ୍କ ବେକରେ ଯୁଆଳି ପକାଇଦେବୁ। ସେମାନଙ୍କୁ କେବଳ ସେହି କର୍ମର ଫଳ ମିଳିବ ଯାହା ସେମାନେ କରୁଥିଲେ।

୩୪. ଯେଉଁ ଜନବସତିରେ ଆମ୍ଭେ ସାବଧାନ କରିବା ପାଇଁ କୌଣସି ବାର୍ତ୍ତାବହଙ୍କୁ ପଠାଇଲୁ, ସେଠାର ଧନଶାଳୀ ବର୍ଗ ତାଙ୍କୁ ଏହାହିଁ କହିଲେ, "ତୁମେ ଯେଉଁ ବାର୍ତ୍ତା ଆଣିଛ ଆମେ ତାକୁ ମାନୁନାହୁଁ।" ୩୫. (ଏହା ମଧ୍ୟ) କହିଲେ, "ଆମମାନଙ୍କର ଧନସଂପତ୍ତି ପ୍ରଚୁର ଏବଂ ସନ୍ତାନସଂତତି ମଧ୍ୟ ଅଧିକ। ତେଣୁ ଆମେ ଦଣ୍ଡ ଭୋଗିବୁ ନାହିଁ।" ୩୬. ସେମାନଙ୍କୁ କହିଦିଅ, "ଈଶ୍ୱର ଯାହାକୁ ଚାହାନ୍ତି ପ୍ରଚୁର ଦିଅନ୍ତି ଏବଂ ଯାହାକୁ ଚାହାନ୍ତି, ମାପିଚୁପି ଦିଅନ୍ତି ମାତ୍ର ଅଧିକାଂଶ ଲୋକ (ଏହାର ରହସ୍ୟ) ଜାଣନ୍ତି ନାହିଁ।" ୩୭. ତୁମମାନଙ୍କର ଧନସଂପତ୍ତି କିମ୍ବା ସନ୍ତାନସନ୍ତତି ତୁମମାନଙ୍କୁ ଆମ୍ଭର ନିକଟତର କରି ପାରିବନାହିଁ। ହଁ, ଯିଏ ଅଲ୍ଲାହଙ୍କୁ ବିଶ୍ୱାସ କରିବ ଏବଂ ଭଲ କର୍ମ କରିବ, ଏଭଳି ଲୋକମାନେ ସେମାନଙ୍କ କର୍ମ ଯୋଗୁଁ ଦ୍ୱିଗୁଣ ପୁରସ୍କାର ପାଇବେ ଏବଂ ନିର୍ଭୟରେ (ସ୍ୱର୍ଗର) ଉଚ୍ଚଉଚ୍ଚ ମହଲରେ ବାସ କରିବେ। ୩୮. ଯେଉଁମାନେ ଆମ୍ଭର ବାଣୀର ଉଦ୍ଦେଶ୍ୟକୁ ବିଫଳ କରିବାର ପ୍ରୟାସ କରୁଛନ୍ତି, ସେମାନଙ୍କୁ କଠୋର ଶାସ୍ତି ଭୋଗିବାକୁ ପଡ଼ିବ।

୩୯. କହିଦିଅ, "ମୋ' ପାଳନକର୍ତ୍ତା ତାଙ୍କ ଭକ୍ତମାନଙ୍କ ମଧ୍ୟରୁ ଯାହାକୁ ଚାହାନ୍ତି, ପ୍ରଚୁର ସାଂସାରିକ ସାଧନ ଦିଅନ୍ତି ଏବଂ ଯାହାକୁ ଚାହାନ୍ତି ମାପିଚୁପି ଦିଅନ୍ତି । ତୁମେମାନେ ଯାହା (ତାଙ୍କ ପ୍ରସନ୍ନତା ପାଇଁ) ଖର୍ଚ୍ଚ କର, ସେ ତାହାର ପ୍ରତିଦାନ ଦିଅନ୍ତି । ସେ ସର୍ବୋତ୍ତମ ଆହାରଦାତା ।

୪୦. ଯେଉଁଦିନ ସେ ସମସ୍ତଙ୍କୁ ଏକାଠି କରିବେ ଏବଂ ଦେବଦୂତମାନଙ୍କୁ ପଚାରିବେ, "କ'ଣ ଏମାନେ ତୁମମାନଙ୍କର ଉପାସନା କରୁଥିଲେ ?" ୪୧. ସେମାନେ ଉତ୍ତର ଦେବେ, "ପ୍ରଭୁ! ତୁମେ ପରମ ପବିତ୍ର ଏବଂ ତୁମେହିଁ ଆମର ଆଶ୍ରୟଦାତା କିନ୍ତୁ ଏମାନେ ନୁହନ୍ତି । ବରଂ ଏମାନେ ଜିନ୍‌ମାନଙ୍କର ଉପାସନା କରୁଥିଲେ ଏବଂ ଅଧିକାଂଶ ସେମାନଙ୍କୁ ମାନୁଥିଲେ ।" ୪୨. ଆଜି ତୁମମାନଙ୍କ ମଧ୍ୟରୁ କେହି କାହାରି ଲାଭ ବା ହାନୀ କରିବାକୁ ସକ୍ଷମ ନୁହେଁ । ଆମ୍ଭେ ଦୁରାଚାରୀମାନଙ୍କୁ କହିବୁ ଯେ ଯେଉଁ ନର୍କକୁ ତୁମେମାନେ ମିଛ ମନେ କରୁଥିଲ, ଏବେ ତାହାର ମଜା ଚାଖ ।

୪୩. ଯେତେବେଳେ ସେମାନଙ୍କ ପାଖରେ ଆମ୍ଭର ପରିଷ୍କାର ବାଣୀ ପାଠ କରାଯାଏ, ସେମାନେ (ଆମ୍ଭ ବାର୍ତ୍ତାବହଙ୍କ ବିଷୟରେ) କହନ୍ତି ଯେ ଏହି ଲୋକ ଜଣକ ତୁମମାନଙ୍କୁ ତୁମ ପୂର୍ବଜଙ୍କ ଆରାଧ୍ୟମାନଙ୍କର ପୂଜାଅର୍ଚ୍ଚନାରୁ ରୋକିବାକୁ ଚାହୁଁଛି ଏବଂ (କୁରଆନ ବିଷୟରେ) କହନ୍ତି ଯେ ଏହା ଏକ ମିଥ୍ୟା ଯାହାକୁ ଗଢ଼ା ଯାଇଛି । ନାସ୍ତିକମାନଙ୍କ ପାଖରେ ଯେତେବେଳେ ସତ୍ୟ ପହଁଚିଲା, ସେମାନେ ତାହାକୁ ସଂପୂର୍ଣ୍ଣ ଯାଦୁବିଦ୍ୟା ବୋଲି କହିଦେଲେ । ୪୪. ଆମ୍ଭେ ଏମାନଙ୍କୁ (ଅର୍ଥାତ୍ ମକ୍କାବାସୀଙ୍କୁ) କୌଣସି ଗ୍ରନ୍ଥ ଦେଇ ନଥିଲୁ ଯାହାକୁ ଏମାନେ ପାଠ କରନ୍ତେ କିମ୍ବା ତୁମ ପୂର୍ବରୁ ଏମାନଙ୍କୁ ସାବଧାନ କରିବା ପାଇଁ କାହାରିକୁ ପଠାଇ ନଥିଲୁ । ୪୫. ଏମାନଙ୍କ ପୂର୍ବପୁରୁଷମାନେ ମଧ୍ୟ (ଆମ୍ଭ ବାର୍ତ୍ତାକୁ) ଅସ୍ୱୀକାର କରି ଦେଇଥିଲେ । ଆମ୍ଭେ ସେମାନଙ୍କୁ ଯାହା (ଐଶ୍ୱର୍ଯ୍ୟ) ଦେଇଥିଲୁ ଏମାନେ (ଅର୍ଥାତ୍ ମକ୍କାବାସୀ) ତାହାର ଦଶମାଂଶ ମଧ୍ୟ ପାଇନାହାନ୍ତି । ସେମାନେ ମୋ' ବାର୍ତ୍ତାବହମାନଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ । (ଦେଖ, ସେମାନଙ୍କ ପ୍ରତି) ମୋ' ଶାସ୍ତି କି ଭୟଙ୍କର ଥିଲା !

୪୬. (ହେ ବାର୍ତ୍ତାବହ!) ସେମାନଙ୍କୁ କୁହ, "ମୁଁ ତୁମମାନଙ୍କୁ ଗୋଟିଏ ଉପଦେଶ ଦେଉଛି ଯେ ଅଲ୍ଲାହଙ୍କ ପାଇଁ ଜଣଜଣ ହୋଇ ବା ଦୁଇଦୁଇ ଜଣ ମିଶି ଏବିଷୟରେ ବିଚାର କର। (ପ୍ରକୃତରେ) ତୁମମାନଙ୍କର ସାଥି (ମୁହମ୍ମଦ)ଙ୍କଠାରେ ପାଗଳାମିର କୌଣସି ଚିହ୍ନ ନାହିଁ, ବରଂ ସେ ତ ତୁମମାନଙ୍କୁ ଏକ ଭୟଙ୍କର ବିପଦରୁ ସାବଧାନ କରୁଛନ୍ତି।" ୪୭. କୁହ, "ଯଦି ଏଥିପାଇଁ ମୁଁ ତୁମମାନଙ୍କୁ କିଛି ପାରିଶ୍ରମିକ ମାଗିଥିବି, ତେବେ ତାହା ତୁମେମାନେ ରଖିନିଅ। ମୋତେ ପାରିଶ୍ରମିକ ଦେବା ତ କେବଳ ଅଲ୍ଲାହଙ୍କ ଦାୟିତ୍ୱ ଏବଂ ସେ ସବୁ କଥାର ସାକ୍ଷୀ ରହିଛନ୍ତି।" ୪୮. କୁହ ଯେ ମୋ' ପ୍ରଭୁ (ଅସତ୍ୟ ଉପରେ) ସତ୍ୟକୁ ବିଜୟୀ କରନ୍ତି। ସେ ସମସ୍ତ ଗୋପନ କଥା ଜାଣନ୍ତି। ୪୯. ସେମାନଙ୍କୁ କୁହ ଯେ ସତ୍ୟ ଆସି ସାରିଛି। ଅସତ୍ୟ ନା ପୂର୍ବରୁ କିଛି କରିଥିଲା ନା ଏବେ କିଛି କରିପାରିବ। ୫୦. କହିଦିଅ, "ଯଦି ମୁଁ ପଥଭ୍ରଷ୍ଟ ହୋଇଥାଏ ତେବେ ଏହାର କୁପରିଣାମ ମୁଁ ଭୋଗିବି, ମାତ୍ର ଯଦି ମୁଁ ଠିକ୍ ବାଟରେ ଥାଏ ତେବେ ଏହା କେବଳ ମୋ' ପ୍ରଭୁଙ୍କର ମୋ' ପ୍ରତି ଦୈବବାଣୀ ଯୋଗୁଁ ସମ୍ଭବ ହେଲା। ସେ ସବୁ ଶୁଣନ୍ତି ଏବଂ (ସମସ୍ତଙ୍କର) ନିକଟରେ ଥାଆନ୍ତି।

୫୧. ତୁମେ ଏହା ଦେଖିପାରନ୍ତ କି ଯେତେବେଳେ ସେମାନେ ଭୟାତୁର ହୋଇପଡ଼ିବେ ଏବଂ ଖସିବାର କୌଣସି ବାଟ ପାଇବେ ନାହିଁ! ସେମାନଙ୍କୁ ଅତି ନିକଟରୁ ଧରି ନିଆଯିବ। ୫୨. (ସେତେବେଳେ) ସେମାନେ କହିବେ ଯେ ଆମେ ଏବେ ଏହାକୁ ମାନିଲୁ ମାତ୍ର ଏତେ ଦୂରକୁ ଚାଲିଗଲା ପରେ ସେମାନଙ୍କୁ ଆଉ କିପରି ସୁଯୋଗ ମିଳନ୍ତା? ୫୩. କାରଣ ଏମାନେ ପୂର୍ବେ ଏହାକୁ ସଂପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରି ଦେଇଥିଲେ ଏବଂ ନବୁଝିସୁଝି ଅନ୍ଧାରରେ ବାଡ଼ି ବୁଲାଉଥିଲେ। ୫୪. ସେମାନେ ଯାହା କାମନା କରିବେ, ସେଥିରୁ ସେମାନଙ୍କୁ ବଂଚିତ କରି ଦିଆଯିବ ଯେମିତି ପୂର୍ବରୁ ସେମାନଙ୍କ ପରି ଲୋକଙ୍କୁ ବଂଚିତ କରା ଯାଇଥିଲା। ସେମାନେ ସନ୍ଦେହ ଓ ଦ୍ୱନ୍ଦ ମଧ୍ୟରେ ପଡ଼ି ରହିଥିଲେ।

## ଅଧ୍ୟାୟ ୩୫, ଅଲ୍ ଫାତିର୍
## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଲ୍ଲାହ୍ ହିଁ ସକଳ ପ୍ରଶଂସାର ଯୋଗ୍ୟ ଯିଏ ପୃଥିବୀ ଓ ଆକାଶ ସୃଷ୍ଟି କଲେ ଏବଂ ଦେବଦୂତମାନଙ୍କୁ ସଂଦେଶବାହକ ରୂପେ ନିଯୁକ୍ତ କଲେ ଯେଉଁମାନଙ୍କର ଦୁଇଟି, ତିନୋଟି ବା ଚାରୋଟି ଲେଖାଏଁ ଡେଣା ଥାଏ । ସେ ନିଜ ସୃଷ୍ଟିରେ ଇଚ୍ଛା ଅନୁଯାୟୀ ବୃଦ୍ଧି କରିଥାଆନ୍ତି । ଅଲ୍ଲାହ୍ ସବୁକିଛି କରିପାରନ୍ତି । ୨. ଯଦି ଅଲ୍ଲାହ୍ ଲୋକମାନଙ୍କ ପାଇଁ ନିଜ କୃପାର ଦ୍ୱାର ଖୋଲି ଦିଅନ୍ତି, କେହି ତାକୁ ବନ୍ଦ କରିପାରିବେ ନାହିଁ ଏବଂ ଯଦି ସେ ଏହାକୁ ବନ୍ଦ କରି ଦିଅନ୍ତି ତେବେ କେହି ତାକୁ ଖୋଲି ପାରିବେନାହିଁ । ସେ ପ୍ରବଳ ପରାକ୍ରମୀ ଓ ତତ୍ତ୍ୱଜ୍ଞ ।

୩. ହେ ମନୁଷ୍ୟଗଣ ! ତୁମମାନଙ୍କ ପ୍ରତି ଅଲ୍ଲାହ୍ କରିଥିବା ଉପକାରଗୁଡ଼ିକୁ ମନେପକାଅ । କ'ଣ ଅଲ୍ଲାହଙ୍କ ବ୍ୟତୀତ ଆଉ କେହି ସ୍ରଷ୍ଟା ଅଛନ୍ତି ଯିଏ ତୁମମାନଙ୍କୁ ପୃଥିବୀ ଓ ଆକାଶରୁ ଆହାର ଯୋଗାନ୍ତି ? ତାଙ୍କ ବ୍ୟତୀତ ଆଉ କେହି ଉପାସନାଯୋଗ୍ୟ ନୁହେଁ । ତୁମେମାନେ କେମିତି ବାଟବଣା ହୋଇ ଯାଉଛ ? ୪. (ହେ ବାର୍ତ୍ତାବହ !) ଯଦି ଏହି ଲୋକମାନେ ତୁମକୁ ଅସ୍ୱୀକାର କରୁଛନ୍ତି ତେବେ (ଏହା କିଛି ନୂଆ କଥା ନୁହେଁ), ତୁମ ପୂର୍ବରୁ ମଧ୍ୟ ଅନେକ ବାର୍ତ୍ତାବହଙ୍କୁ ଅସ୍ୱୀକାର କରି ଦିଆଯାଇଛି । ପ୍ରତ୍ୟେକ ବିଷୟ ଅଲ୍ଲାହଙ୍କ ସମ୍ମୁଖରେ ଉପସ୍ଥାପନ ହେବ ।

୫. ହେ ମନୁଷ୍ୟଗଣ ! ଅଲ୍ଲାହଙ୍କ ବଚନ ଅଟଳ ସତ୍ୟ । ତେଣୁ ପାର୍ଥିବ ଜୀବନ ତୁମମାନଙ୍କୁ ମାୟାଗ୍ରସ୍ତ ନକରୁ କିମ୍ବା ମାୟାବୀ ଶଇତାନ ତୁମମାନଙ୍କୁ ବିଭ୍ରାନ୍ତ ନକରୁ । ୬. ଶଇତାନ ତୁମମାନଙ୍କର ଶତ୍ରୁ । ତେଣୁ ତାକୁ ନିଜର ଶତ୍ରୁ ମନେକର । ସେ ତା' ଅନୁଗତମାନଙ୍କୁ ଏଇଥିପାଇଁ (ନିଜ ବାଟକୁ) ଡାକିଥାଏ ଯେ ସେମାନେ ନର୍କବାସୀ ହୋଇଯାଆନ୍ତୁ । ୭. ଯେଉଁମାନେ (ସତ୍ୟକୁ) ଅସ୍ୱୀକାର କଲେ, ସେମାନେ କଠୋର ଦଣ୍ଡ ଭୋଗିବେ କିନ୍ତୁ ଯେଉଁମାନେ ବିଶ୍ୱାସ କଲେ ଏବଂ ଭଲ କର୍ମ କଲେ, ସେମାନଙ୍କୁ କ୍ଷମା କରି ଦିଆଯିବ ଏବଂ ଖୁବ୍ ଭଲ ପୁରସ୍କାର ମଧ୍ୟ ଦିଆଯିବ ।

୮. କ'ଣ ସେହି ବ୍ୟକ୍ତି (ପାଇଁ ଦୁଃଖ କରୁଛ) ଯାହାର କୁକର୍ମଗୁଡ଼ିକୁ ତା' ଦୃଷ୍ଟିରେ ସୁନ୍ଦର କରି ଦିଆଯାଇଛି ଏବଂ ସେ ସେଗୁଡ଼ିକୁ ଭଲ ବୋଲି ମନେ କରୁଛି ?

ଅଲ୍ଲାହ୍ ଯାହାକୁ ଚାହାନ୍ତି ପଥଭ୍ରଷ୍ଟ ହେବାକୁ ଛାଡ଼ିଦିଅନ୍ତି ଏବଂ ଯାହାକୁ ଚାହାନ୍ତି, ଠିକ୍ ବାଟରେ ନେଇ ଯାଆନ୍ତି । ତେଣୁ, (ହେ ବାର୍ତ୍ତାବହ !) ସେମାନଙ୍କ ପାଇଁ ଦୁଃଖ କରି ନିଜ ଜୀବନକୁ ନଷ୍ଟ କରନାହିଁ । ସେମାନେ ଯାହା କରୁଛନ୍ତି, ଅଲ୍ଲାହ୍ ଅବଶ୍ୟ ଜାଣନ୍ତି । ୯. ଅଲ୍ଲାହ୍ ହିଁ ବାୟୁ ପ୍ରବାହିତ କରନ୍ତି ଯାହା ବାଦଲଗୁଡ଼ିକୁ ବୋହିନିଏ ଏବଂ ଆମ୍ଭେ ସେଗୁଡ଼ିକୁ କୌଣସି (ଶୁଷ୍କ) ନିର୍ଜୀବ ଅଂଚଳକୁ ନେଇଯାଉ । ପୁଣି ନିର୍ଜୀବ ହୋଇ ଯାଇଥିବା ସେହି ଭୂମିକୁ ଆମ୍ଭେ (ବର୍ଷାଜଳ ଦ୍ୱାରା) ଜୀବନ୍ତ କରିଦେଉ । ଠିକ୍ ଏହିପରି (ମୃତ ଲୋକମାନଙ୍କୁ) ପୁନର୍ଜୀବିତ କରାଯିବ ।

୧୦. ଯିଏ ସମ୍ମାନ ଚାହେଁ, (ସେ ଜାଣିରଖୁ ଯେ) ସକଳ ସମ୍ମାନ ଅଲ୍ଲାହଙ୍କ ହାତରେ ରହିଛି । (ପ୍ରତ୍ୟେକ) ଭଲ କଥା ତାଙ୍କରି ପାଖକୁ ଯାଏ ଏବଂ ଭଲ କର୍ମ ଏହାକୁ ଉପରକୁ ନେଇଯାଏ । ଯେଉଁମାନେ କୁଚକ୍ରାନ୍ତ କରନ୍ତି, ସେମାନେ କଠୋର ଶାସ୍ତି ଭୋଗିବେ । ସେମାନଙ୍କର ସବୁ ଚକ୍ରାନ୍ତ ପଣ୍ଡ ହୋଇଯିବ ।

୧୧. ଅଲ୍ଲାହ୍ (ପ୍ରଥମେ) ତୁମମାନଙ୍କୁ ମାଟିରୁ ସୃଷ୍ଟି କଲେ, ପୁଣି ଶୁକ୍ରରୁ ସୃଷ୍ଟି କଲେ ଏବଂ ପୁଣି ସେ ତୁମମାନଙ୍କର ଯୋଡ଼ି ସୃଷ୍ଟି କଲେ । ତାଙ୍କ ଅଜାଣତରେ କୌଣସି ନାରୀ ଗର୍ଭ ଧାରଣ କରେନାହିଁ ବା ସନ୍ତାନ ପ୍ରସବ କରେନାହିଁ । ଯେଉଁ ବ୍ୟକ୍ତିକୁ ଆୟୁଷ ପ୍ରଦାନ କରାଯାଇଛି, ତା' ଆୟୁଷରେ ଯାହା ବୃଦ୍ଧି ହୁଏ ବା ଯାହା ହ୍ରାସ ହୁଏ, ତାହା ଏକ ଗ୍ରନ୍ଥରେ ଲେଖା ଅଛି । ଏହା କରିବା ଅଲ୍ଲାହଙ୍କ ପାଇଁ ଭାରି ସହଜ ।

୧୨. ଦୁଇ ସମୁଦ୍ର ସମାନ ନୁହନ୍ତି । ଗୋଟିକର ଜଳ ତୃପ୍ତିକର ଓ ମଧୁର ଯାହା ତୃଷାନିବାରଣ କରିଥାଏ । ଅନ୍ୟଟିର ଜଳ ଲୁଣିଆ ଓ ତିକ୍ତ । ଉଭୟ ସମୁଦ୍ରରୁ ତୁମେମାନେ (ମାଛର) ତଟକା ମାଂସ ଖାଅ ଏବଂ ଅଳଙ୍କାର ସଂଗ୍ରହ କରି ପିନ୍ଧିଥାଅ । ତୁମେମାନେ ଦେଖ ଜାହାଜଗୁଡ଼ିକ ସାଗର ବକ୍ଷକୁ ବିଦୀର୍ଣ୍ଣ କରି ଚାଲିଥାଆନ୍ତି ଯାହାଫଳରେ ତୁମେମାନେ ତାଙ୍କର କୃପା (ଅର୍ଥାତ୍ ଜୀବିକା) ଅନ୍ୱେଷଣ କରିବ ଏବଂ ତାଙ୍କ ଉପକାର ମାନିବ । ୧୩. ସେ ରାତିକୁ ଦିନ ମଧ୍ୟରେ ଏବଂ ଦିନକୁ ରାତି ମଧ୍ୟରେ ବିଲୀନ କରିଦିଅନ୍ତି ଏବଂ ସେ ସୂର୍ଯ୍ୟ ଓ ଚନ୍ଦ୍ରକୁ (ତୁମମାନଙ୍କ) କାର୍ଯ୍ୟରେ ଲଗାଇ ଦେଇଛନ୍ତି ଏବଂ ସେମାନେ ଏକ ନିର୍ଦ୍ଦିଷ୍ଟ ସମୟ ପାଇଁ

(ସେମାନଙ୍କ କକ୍ଷରେ) ପରିକ୍ରମା କରୁଛନ୍ତି । ଏହି ହେଉଛନ୍ତି ତୁମମାନଙ୍କର ପାଳନକର୍ତ୍ତା ଅଲ୍ଲାହ୍ । (ସମଗ୍ର ବ୍ରହ୍ମାଣ୍ଡରେ) ତାଙ୍କରି ଆଧିପତ୍ୟ । ତାଙ୍କୁ ଛାଡ଼ି ଯେଉଁମାନଙ୍କୁ ତୁମେମାନେ ଡାକୁଛ, ସେମାନେ ଖଜୁରୀ ମଂଜିର ଗୋଟିଏ ଚେପାର ମଧ୍ୟ ମାଲିକ ନୁହନ୍ତି । ୧୪. ଯଦି ତୁମେ ସେମାନଙ୍କୁ ଡାକିବ, ସେମାନେ ତୁମ ପ୍ରାର୍ଥନା ଶୁଣି ପାରିବେନାହିଁ ଏବଂ ଯଦି ଶୁଣନ୍ତି, ତେବେ ତୁମମାନଙ୍କର ମାଗୁଣି ପୂରଣ କରି ପାରିବେନାହିଁ । ତୁମେମାନେ ସେମାନଙ୍କର ଯେଉଁ ପୂଜାଅର୍ଚ୍ଚନା କରୁଛ, ବିଚାର ଦିନ ସେମାନେ ଏହାକୁ ଅସ୍ୱୀକାର କରିଦେବେ । କେବଳ ସର୍ବଜ୍ଞ ଅଲ୍ଲାହଙ୍କ ବ୍ୟତୀତ ଆଉ କେହି ତୁମକୁ ଏବିଷୟରେ ଜଣାଇବ ନାହିଁ ।

୧୫. ହେ ମନୁଷ୍ୟଗଣ ! ତୁମ ସମସ୍ତଙ୍କୁ ଅଲ୍ଲାହଙ୍କର ଆବଶ୍ୟକତା ରହିଛି କିନ୍ତୁ ଅଲ୍ଲାହ୍ ଆବଶ୍ୟକତା-ରହିତ ଏବଂ ସ୍ତୁତିଯୋଗ୍ୟ । ୧୬. ଯଦି ସେ ଚାହିଁବେ ତୁମମାନଙ୍କୁ ବିନାଶ କରି ଏକ ନୂଆ ସମାଜ ସୃଷ୍ଟି କରିଦେବେ । ୧୭. ଅଲ୍ଲାହଙ୍କ ପାଇଁ ଏହା କିଛି ବଡ଼ କଥା ନୁହେଁ ।

୧୮. କେହି କାହାରି ବୋଝ ମୁଣ୍ଡାଇବ ନାହିଁ । ପାପଭାରରେ ଦବି ଯାଇଥିବା କୌଣସି ବ୍ୟକ୍ତି ଯଦି ତା'ର କିଛି ବୋଝ ବାଣ୍ଟି ନେବାକୁ କାହାରିକୁ ଡାକେ, ସେ ତା'ର ଆତ୍ମୀୟ ହୋଇଥିଲେ ସୁଦ୍ଧା ତା' ବୋଝ ଟିକିଏ ମଧ୍ୟ ହାଲୁକା କରିବନାହିଁ । (ହେ ବାର୍ତ୍ତବହ !) ତୁମେ କେବଳ ସେଇମାନଙ୍କୁ ସାବଧାନ କରିପାରିବ ଯେଉଁମାନେ ଈଶ୍ୱରଙ୍କୁ ନଦେଖି ମଧ୍ୟ ଭୟ କରନ୍ତି ଏବଂ ନମାଜ ସଂପାଦନ କରନ୍ତି । ଯିଏ ନିଜକୁ ଶୁଦ୍ଧ କରେ, ସେ ନିଜ ମଂଗଳ ପାଇଁ କରେ । ସମସ୍ତଙ୍କୁ ଅଲ୍ଲାହଙ୍କ ନିକଟକୁ ଫେରିବାକୁ ହେବ ।

୧୯. ଆଖି ନଥିବା ଏବଂ ଆଖି ଥିବା ବ୍ୟକ୍ତି ପରସ୍ପର ସମାନ ନୁହନ୍ତି, ୨୦. କିମ୍ବା ଅନ୍ଧକାର ଏବଂ ଆଲୋକ ପରସ୍ପର ସମାନ ନୁହେଁ, ୨୧. ଅଥବା ଖରା ଏବଂ ଛାଇ ମଧ୍ୟ ସମାନ ନୁହେଁ, ୨୨. କିମ୍ବା ଜୀବିତ ଏବଂ ମୃତ ପରସ୍ପର ସହିତ ସମାନ ହୋଇ ନପାରନ୍ତି । ଅଲ୍ଲାହ୍ ଯାହାକୁ ଚାହାନ୍ତି କଥା ଶୁଣିବାର ସୌଭାଗ୍ୟ ପ୍ରଦାନ କରନ୍ତି, କିନ୍ତୁ (ହେ ବାର୍ତ୍ତାବହ !) ତୁମେ ସେମାନଙ୍କୁ ଶୁଣାଇ ପାରିବନାହିଁ, ଯେଉଁମାନେ କବର ଭିତରେ ଅଛନ୍ତି । ୨୩. କେବଳ ସାବଧାନ କରିଦେବା ତୁମର

କାମ । ୨୪. ଆମ୍ଭେ ତୁମକୁ (ସ୍ୱର୍ଗର) ସୁସମାଚାର ଦେବା ପାଇଁ ଏବଂ (ନର୍କ ବିଷୟରେ) ସାବଧାନ କରିବା ପାଇଁ ଏକ ଉଚିତ୍ ଲକ୍ଷ୍ୟରେ ପଠାଇଛୁ । ଏଭଳି କୌଣସି ସମାଜ ନାହିଁ ଯାହାକୁ ସାବଧାନ କରିବା ପାଇଁ ବାର୍ତ୍ତାବହ ଆସିନାହାନ୍ତି । ୨୫. ଯଦି ଏମାନେ ତୁମକୁ ପ୍ରତ୍ୟାଖ୍ୟାନ କରୁଛନ୍ତି, ତେବେ (ଏହା କିଛି ନୂଆ କଥା ନୁହେଁ), ଏମାନଙ୍କ ପୂର୍ବପୁରୁଷମାନେ ମଧ୍ୟ (ବାର୍ତ୍ତାବହମାନଙ୍କୁ) ପ୍ରତ୍ୟାଖ୍ୟାନ କରିଥିଲେ । ସେମାନଙ୍କ ପାଇଁ ନିଯୁକ୍ତ ବାର୍ତ୍ତାବହମାନେ ସେମାନଙ୍କ ପାଖକୁ ସ୍ପଷ୍ଟ ପ୍ରମାଣ, ଲିଖିତ ଆଦେଶନାମା ଏବଂ ପ୍ରକାଶମାନ ଗ୍ରନ୍ଥ ନେଇ ଯାଇଥିଲେ । ୨୬. ପୁଣି ଯେଉଁମାନେ ପ୍ରତ୍ୟାଖ୍ୟାନ କରିଥିଲେ, ଆମ୍ଭେ ସେମାନଙ୍କୁ ଶାସ୍ତି ଦେଲୁ । କି ଭୟଙ୍କର ଥିଲା ଆମ୍ଭର ଶାସ୍ତି !

୨୭. କ'ଣ ତୁମେମାନେ ଦେଖୁନାହଁ ଯେ ଅଲ୍ଲାହ୍ କିପରି ଆକାଶରୁ ମେଘ ବର୍ଷା କରନ୍ତି ଏବଂ ଏହାଦ୍ୱାରା ଆମ୍ଭେ ରଙ୍ଗବେରଙ୍ଗର ଫଳ ସୃଷ୍ଟି କରୁ । ପାହାଡ଼ପର୍ବତଗୁଡ଼ିକରେ ମଧ୍ୟ ଧଳା, ନାଲି ଓ ଗାଢ଼ କଳା ଆଦି ବିଭିନ୍ନ ରଙ୍ଗର ଶିଳାଖଣ୍ଡ ଥାଏ । ୨୮. ସେହିପରି, ମଣିଷ, ଚତୁଷ୍ପଦ ପ୍ରାଣୀ ଓ (ଅନ୍ୟାନ୍ୟ) ଜୀବଜନ୍ତୁମାନଙ୍କର ମଧ୍ୟ ବିଭିନ୍ନ ରଙ୍ଗ ଥାଏ । ଅଲ୍ଲାହଙ୍କ ଦାସମାନଙ୍କ ମଧ୍ୟରୁ କେବଳ ସେହିମାନେ ତାଙ୍କୁ ଭୟ କରନ୍ତି ଯେଉଁମାନେ ଜ୍ଞାନୀ । ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ଅତ୍ୟନ୍ତ କ୍ଷମାଶୀଳ ।

୨୯. ଯେଉଁମାନେ ନିୟମିତ ଅଲ୍ଲାହଙ୍କ ଗ୍ରନ୍ଥ ପାଠ କରନ୍ତି, ନମାଜ ସମ୍ପାଦନ କରନ୍ତି ଏବଂ ଯାହା ଆମ୍ଭେ ସେମାନଙ୍କୁ ଦେଇଛୁ ସେଥିରୁ ଖୋଲାଖୋଲି ଭାବରେ ତଥା ଗୋପନରେ ଖର୍ଚ୍ଚ କରନ୍ତି, ସେମାନେ ଏଭଳି ଏକ ବ୍ୟବସାୟରେ ଆଶା ରଖିଛନ୍ତି ଯେଉଁଥିରେ ଆଦୌ କ୍ଷତି ନାହିଁ । ୩୦.ଏହାଦ୍ୱାରା ଅଲ୍ଲାହ୍ ସେମାନଙ୍କୁ ସେମାନଙ୍କ କର୍ମର ସଂପୂର୍ଣ୍ଣ ଫଳ ଦେବେ ଏବଂ ନିଜ କୃପାରୁ ଅଧିକ ମଧ୍ୟ ଦେବେ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ ଗୁଣଗ୍ରାହୀ ।

୩୧. ଯେଉଁ ଗ୍ରନ୍ଥଟିକୁ ଆମ୍ଭେ ତୁମ ପ୍ରତି ଦୈବବାଣୀ କରିଛୁ ତାହା ସତ୍ୟ ଏବଂ ପୂର୍ବରୁ ଆସିଥିବା ଗ୍ରନ୍ଥମାନଙ୍କର ଏହା ସମର୍ଥନ କରେ । ଅଲ୍ଲାହ୍ ନିଜ ଦାସମାନଙ୍କର ସବୁ ଖବର ରଖନ୍ତି ଏବଂ ସେ ସବୁକିଛି ଦେଖନ୍ତି ।

୩୨. ପୁଣି ଆମ୍ଭେ ଆମ୍ଭର ସେହି ଦାସମାନଙ୍କୁ ଗ୍ରନ୍ଥର ଉତ୍ତରାଧିକାରୀ କଲୁ ଯେଉଁମାନଙ୍କୁ ଆମ୍ଭେ ମନୋନିତ କରିଥିଲୁ । ସେମାନଙ୍କ ମଧ୍ୟରୁ କେତେକ ନିଜ ପ୍ରତି ଅନ୍ୟାୟ କରନ୍ତି, କେତେକ ମଧ୍ୟମ ମାର୍ଗରେ ଅଛନ୍ତି ଏବଂ ଆଉ କେତେକ ଅଲ୍ଲାହଙ୍କ କୃପାରୁ ପୁଣ୍ୟ କାର୍ଯ୍ୟରେ ଅଗ୍ରଣୀ ଅଛନ୍ତି । ଏହା (ଅଲ୍ଲାହଙ୍କର) ପରମ ଅନୁଗ୍ରହ । ୩୩. ସେମାନେ ଶାଶ୍ୱତ ବୈକୁଣ୍ଠରେ ରହିବେ ଯେଉଁଠି ସେମାନଙ୍କୁ ସ୍ୱର୍ଣ୍ଣ ଓ ମୋତିମାଣିକ୍ୟର କଙ୍କଣରେ ବିଭୁଷିତ କରାଯିବ ଏବଂ ସେମାନେ ରେଶମ ବସ୍ତ୍ର ପିନ୍ଧିବେ । ୩୪. ସେମାନେ କହିବେ, “ଅଲ୍ଲାହଙ୍କୁ ଧନ୍ୟବାଦ, ଯିଏ ଆମର ସବୁ ଦୁଃଖ ଦୂର କରିଦେଲେ । ଆମ ପ୍ରଭୁ ଅବଶ୍ୟ ଦୋଷମାର୍ଜନାକାରୀ ଏବଂ ଗୁଣଗ୍ରାହୀ, ୩୫. ଯିଏ ନିଜ କୃପାରୁ ଆମମାନଙ୍କୁ ଶାଶ୍ୱତ ବୈକୁଣ୍ଠଧାମରେ ସ୍ଥାନ ଦେଲେ ଯେଉଁଠି ଆମକୁ କୌଣସି କଷ୍ଟ ହେଉନାହିଁ କିମ୍ୱା କ୍ଳାନ୍ତି ଲାଗୁନାହିଁ ।”

୩୬. ଯେଉଁମାନେ (ଅଲ୍ଲାହଙ୍କୁ) ଅବିଶ୍ୱାସ କଲେ, ସେମାନଙ୍କ ପାଇଁ ପ୍ରସ୍ତୁତ ରହିଛି ନର୍କର ନିଆଁ । ସେଠାରେ ସେମାନଙ୍କୁ ମୃତ୍ୟୁ ଆସିବନାହିଁ ଯେ ସେମାନେ ମରିବେ କିମ୍ୱା ସେମାନଙ୍କର ଦଣ୍ଡ ମଧ୍ୟ କୋହଳ କରାଯିବ ନାହିଁ । ଆମ୍ଭେ ପ୍ରତ୍ୟେକ ନାସ୍ତିକକୁ ଏହିପରି ଦଣ୍ଡ ଦେଉ । ୩୭. ସେମାନେ ନର୍କରେ ଚିତ୍କାର କରିବେ, “ହେ ପ୍ରଭୁ ! ଆମକୁ ଏଠାରୁ ବାହାର କର । ଆମେ ପୂର୍ବରୁ ଯାହା କରୁଥିଲୁ ସେଗୁଡ଼ିକୁ ଛାଡ଼ିଦେଇ ଭଲ କର୍ମ କରିବୁ ।” (ଆମ୍ଭେ ଉତ୍ତର ଦେବୁ) “କ’ଣ ଆମ୍ଭେ ତୁମମାନଙ୍କୁ ଯଥେଷ୍ଟ ଆୟୁଷ ଦେଇ ନଥିଲୁ ଯେ ଯଦି ଏହା ମଧ୍ୟରେ କେହି ବୁଝିବାକୁ ଚେଷ୍ଟା କରନ୍ତା ସେ ବୁଝି ପାରନ୍ତା ? ତୁମମାନଙ୍କୁ ସାବଧାନ କରିବାକୁ ଆମ୍ଭର ବାର୍ତ୍ତାବହ ମଧ୍ୟ ଯାଇଥିଲେ । ଏବେ ମଜା ଚାଖ । ଦୁରାଚାରୀମାନଙ୍କୁ କେହି ସାହାଯ୍ୟ କରିବେନାହିଁ ।”

୩୮. ଅଲ୍ଲାହ୍ ପୃଥିବୀ ଓ ଆକାଶର ଗୁପ୍ତ ରହସ୍ୟ ଜାଣନ୍ତି । ସେ ମନର ଗୋପନ କଥା ମଧ୍ୟ ଜାଣନ୍ତି । ୩୯. ସେ ହିଁ ପୃଥିବୀରେ ତୁମମାନଙ୍କୁ (ପୂର୍ବ ଲୋକମାନଙ୍କର) ଉତ୍ତରାଧିକାରୀ କରିଛନ୍ତି । ତେଣୁ ଯିଏ ତାଙ୍କୁ ଅବିଶ୍ୱାସ କରିବ, ସେ ତା’ ଅବିଶ୍ୱାସର ଫଳ ଭୋଗିବ । ନାସ୍ତିକମାନଙ୍କର ନାସ୍ତିକତା ସେମାନଙ୍କ ପ୍ରତି ଈଶ୍ୱରଙ୍କର ଘୃଣାଭାବ ବୃଦ୍ଧି କରିଥାଏ । ଏହା ନାସ୍ତିକମାନଙ୍କର କେବଳ କ୍ଷତି ହିଁ

କରିଥାଏ । ୪୦. ସେମାନଙ୍କୁ କୁହ, "କ'ଣ ତୁମେମାନେ ତୁମର ସେହି ମିଥ୍ୟା ଈଶ୍ୱରମାନଙ୍କ ବିଷୟରେ କେବେ ଚିନ୍ତା କରିଛ ଯେଉଁମାନଙ୍କୁ ତୁମେମାନେ ଅଲ୍ଲାହଙ୍କ ପରିବର୍ତ୍ତେ ଡ଼ାକ ? ମୋତେ ଟିକିଏ ଦେଖାଅ ଯେ ସେମାନେ ପୃଥିବୀରେ କ'ଣ ସୃଷ୍ଟି କରିଛନ୍ତି କିମ୍ବା ଆକାଶ ନିର୍ମାଣରେ ସେମାନଙ୍କର କେତେ ଭାଗ ଅଛି ? କ'ଣ ଆମ୍ଭେ ସେମାନଙ୍କୁ ଏମିତି କୌଣସି ଗ୍ରନ୍ଥ ଦେଇଛୁ ଯେଉଁଥିରେ ସେମାନଙ୍କ ସପକ୍ଷରେ କୌଣସି ସ୍ୱଷ୍ଟ ପ୍ରମାଣ ଅଛି ?" ଆଦୌ ନୁହେଁ, ବରଂ ଦୁରାଚାରୀମାନେ କେବଳ ପରସ୍ପରକୁ ଛଳନାପୂର୍ଣ୍ଣ ପ୍ରତିଶ୍ରୁତି ଦେଉଛନ୍ତି ।

୪୧. ଅଲ୍ଲାହ୍ ହିଁ ପୃଥିବୀ ଓ ଆକାଶମଣ୍ଡଳକୁ ଧାରଣ କରିଛନ୍ତି ଯେପରିକି ସେଗୁଡ଼ିକ ନିଜନିଜ ସ୍ଥାନରୁ ଖସି ନପଡ଼ନ୍ତୁ ଏବଂ ଯଦି ସେଗୁଡ଼ିକ ଖସିପଡ଼ନ୍ତି, ତେବେ କେବଳ ତାଙ୍କ ବ୍ୟତୀତ ଆଉ କେହି ସେଗୁଡ଼ିକୁ ଧରି ରଖି ପାରିବେନାହିଁ । ସେ ଅତ୍ୟନ୍ତ ସହନଶୀଳ ଓ କ୍ଷମାଶୀଳ ।

୪୨. ସେମାନେ ଅଲ୍ଲାହଙ୍କ ନାଁରେ ବଡ଼ବଡ଼ ରାଣ ଖାଇ କହୁଥିଲେ ଯେ ଯଦି ସେମାନଙ୍କ ପାଖକୁ ସାବଧାନ କରିବାକୁ କୌଣସି ଈଶ୍ୱରଦୂତ ଆସନ୍ତି ତେବେ ସେମାନେ ପୂର୍ବର ଯେକୌଣସି ସମାଜ ଅପେକ୍ଷା ଅଧିକ ସତ୍‌ପଥରେ ରହିବେ, କିନ୍ତୁ ଯେତେବେଳେ ସେମାନଙ୍କ ପାଖକୁ ସାବଧାନ କରିବାକୁ ଜଣେ ଈଶ୍ୱରଦୂତ ଆସିଲେ, ସେମାନେ (ସତପଥରୁ) ଆହୁରି ଦୂରେଇ ଗଲେ । ୪୩. ସେମାନେ ଧରାପୃଷ୍ଠରେ ଅହଂକାର କଲେ ଏବଂ (ସତ୍ୟ ବିରୋଧରେ) କୁଚକ୍ରାନ୍ତ କଲେ, ମାତ୍ର କୁଚକ୍ରାନ୍ତ ଜାଲରେ କେବଳ ସେହି ଚକ୍ରାନ୍ତକାରୀମାନେ ହିଁ ପଡ଼ିଥାଆନ୍ତି । ତେବେ କ'ଣ ସେମାନେ (ଅଲ୍ଲାହଙ୍କର) ସେହି ନୀତିର ପ୍ରତିକ୍ଷାରେ ଅଛନ୍ତି ଯାହା ପୂର୍ବ ସମାଜଗୁଡ଼ିକ ପାଇଁ ଅବଲମ୍ବନ କରା ଯାଇଥିଲା ? ତୁମେ ଅଲ୍ଲାହଙ୍କ ନୀତିରେ ଆଦୌ କୌଣସି ପରିବର୍ତ୍ତନ ଦେଖିବାକୁ ପାଇବନାହିଁ କିମ୍ବା ଅଲ୍ଲାହଙ୍କ ନୀତି ଟଳିବାର ମଧ୍ୟ ଦେଖିବନାହିଁ । ୪୪. କ'ଣ ସେମାନେ ଦେଶରେ ବୁଲାବୁଲି କରି ଦେଖିନାହାନ୍ତି ଯେ ସେମାନଙ୍କ ପୂର୍ବ ଲୋକମାନେ କିଭଳି ପରିଣାମ ଭୋଗିଲେ ? ସେମାନେ ଏମାନଙ୍କ ଅପେକ୍ଷା ଯଥେଷ୍ଟ ଶକ୍ତିଶାଳୀ ଥିଲେ । ପୃଥିବୀ ବା ଆକାଶରେ ଏପରି କେହି ନାହିଁ ଯିଏ ଅଲ୍ଲାହଙ୍କୁ ନିରୂପାୟ କରି ଦେଇପାରିବ । ସେ ସର୍ବଜ୍ଞ ଏବଂ ସର୍ବଶକ୍ତିମାନ ।

୪୫. ଯଦି ଅଲ୍ଲାହ୍ ଲୋକମାନଙ୍କୁ ସେମାନଙ୍କର କୁକର୍ମ ଯୋଗୁଁ ତୁରନ୍ତ ଦଣ୍ଡ ଦିଅନ୍ତେ, ତେବେ ଧରାପୃଷ୍ଠରେ ଗୋଟିଏ ହେଲେ ଜୀବକୁ ଜୀବିତ ଛାଡ଼ନ୍ତେ ନାହିଁ ମାତ୍ର ସେ ସେମାନଙ୍କୁ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ସୁଯୋଗ ଦିଅନ୍ତି । ପୁଣି ଯେତେବେଳେ ସେମାନଙ୍କର ସମୟ ସରିଯିବ, ଅଲ୍ଲାହ୍ ନିଜର ଦାସମାନଙ୍କୁ ସ୍ୱୟଂ ଦେଖିନେବେ ।

## ଅଧ୍ୟାୟ ୩୬, ୟା'ସୀନ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ୟା-ସୀନ୍ । ୨. ତତ୍ତ୍ୱଜ୍ଞାନରେ ପୂର୍ଣ୍ଣ କୁରଆନ୍‌ର ରାଣ, ୩. (ହେ ମୁହମ୍ମଦ!) ନିଃସନ୍ଦେହରେ ତୁମେ (ଅଲ୍ଲାହଙ୍କର) ଜଣେ ବାର୍ତ୍ତାବହ । ୪. ତୁମେ ସଂପୂର୍ଣ୍ଣ ସଳଖ ବାଟରେ ରହିଛ । ୫. ଏହି କୁରଆନ୍ ପ୍ରବଳ ପରାକ୍ରମୀ ଏବଂ ପରମ ଦୟାଳୁ ଅଲ୍ଲାହଙ୍କ ଦ୍ୱାରା ପଠାଯାଇଛି, ୬. ଯେପରିକି ତୁମେ ସେହି ଲୋକମାନଙ୍କୁ ସାବଧାନ କରିବ ଯେଉଁମାନଙ୍କ ପିତୃପିତାମହଙ୍କୁ ସାବଧାନ କରାଯାଇ ନଥିଲା । ସେମାନେ ଅଜ୍ଞାନତା ମଧ୍ୟରେ ରହିଛନ୍ତି ।

୭. ଏମାନଙ୍କ ମଧ୍ୟରୁ ଅଧିକାଂଶ ଲୋକଙ୍କ ବିଷୟରେ (ଅଲ୍ଲାହଙ୍କ) କଥା ସତ ପ୍ରମାଣିତ ହୋଇସାରିଛି । ତେଣୁ, ସେମାନେ ବିଶ୍ୱାସ କରିବେ ନାହିଁ । ୮. ଆମ୍ଭେ ସେମାନଙ୍କ ବେକରେ ଗଳାବନ୍ଧ ପକାଇ ଦେଇଛୁ ଯାହା ସେମାନଙ୍କ ଚିବୁକ ପର୍ଯ୍ୟନ୍ତ ଲାଗିଛି । ତେଣୁ ସେମାନଙ୍କର ମୁଣ୍ଡ ଉପରକୁ ଉଠି ରହିଛି । ୯. ଆମ୍ଭେ ସେମାନଙ୍କ ଆଗରେ ଓ ପଛରେ ଏକ ପ୍ରାଚୀର ଠିଆ କରି ଦେଇଛୁ ଏବଂ ସେମାନଙ୍କୁ ଚାରିପଟୁ ଘୋଡ଼ାଇ ଦେଇଛୁ ଯାହାଫଳରେ ସେମାନେ କିଛି ଦେଖି ପାରୁନାହାନ୍ତି । ୧୦. ତୁମେ ସେମାନଙ୍କୁ (ପରିଣାମ ବିଷୟରେ) ସାବଧାନ କର ବା ନକର, ସେମାନଙ୍କ ପାଇଁ ସମାନ । ସେମାନେ ବିଶ୍ୱାସ କରିବେନାହିଁ । ୧୧. ତୁମେ ତ କେବଳ ସେହି ଲୋକକୁ ସାବଧାନ କରିପାରିବ ଯିଏ ଉପଦେଶ ମାନେ ଏବଂ ଦୟାମୟଙ୍କୁ ନଦେଖି ମଧ୍ୟ ଭୟ କରୁଥାଏ । ସୁତରାଂ, ଏଭଳି ବ୍ୟକ୍ତିକୁ ଶୁଭସମ୍ବାଦ ଦିଅ ଯେ ତାକୁ ତାଙ୍କର କ୍ଷମା ମିଳିବ ଏବଂ ଭଲ ପୁରସ୍କାର ମଧ୍ୟ ।

୧୨. ଆମ୍ଭେ ମୃତମାନଙ୍କୁ ନିଶ୍ଚୟ ପୁନର୍ଜୀବିତ କରିବୁ । ସେମାନେ ଯେଉଁ କର୍ମଗୁଡ଼ିକୁ (ପ୍ରତ୍ୟକ୍ଷ ରୂପେ) କରନ୍ତି ଏବଂ ଯେଉଁ କର୍ମଗୁଡ଼ିକର ପ୍ରଭାବ ପଛରେ ଛାଡ଼ିଯାଆନ୍ତି, ଆମେ ସବୁ ଲେଖିନେଉ । ପ୍ରତ୍ୟେକ କଥାକୁ ଆମ୍ଭେ ଏକ ସ୍ୱଷ୍ଟ ଗ୍ରନ୍ଥରେ ଲେଖି ରଖିଛୁ ।

୧୩. ସେମାନଙ୍କୁ ସେହି ଗ୍ରାମବାସୀମାନଙ୍କର କଥା ଶୁଣାଅ ଯେଉଁମାନଙ୍କ ପାଖକୁ ଆମ୍ଭର ବାର୍ତ୍ତାବହ ଯାଇଥିଲେ । ୧୪. ଆମ୍ଭେ ସେମାନଙ୍କ ପାଖକୁ ଦୁଇଜଣ ବାର୍ତ୍ତାବହଙ୍କୁ ପଠାଇଥିଲୁ ମାତ୍ର ସେମାନେ ଉଭୟଙ୍କୁ ପ୍ରତ୍ୟାଖ୍ୟାନ କଲେ । ତେଣୁ, ଆମ୍ଭେ ସେମାନଙ୍କ ସମର୍ଥନରେ ତୃତୀୟ ବାର୍ତ୍ତାବହଙ୍କୁ ପଠାଇଲୁ । ସେମାନେ ସମସ୍ତେ କହିଥିଲେ ଯେ ଆମକୁ ତୁମମାନଙ୍କ ପାଖକୁ ବାର୍ତ୍ତାବହ ରୂପେ ପଠାଯାଇଛି । ୧୫. ସେମାନେ ଉତ୍ତର ଦେଲେ ଯେ ତୁମେମାନେ ତ ଆମରି ପରି ମଣିଷ । ଦୟାମୟ ପ୍ରଭୁ କିଛି ପଠାଇ ନାହାନ୍ତି । ତୁମେମାନେ କେବଳ ମିଛ କହୁଛ । ୧୬. ବାର୍ତ୍ତାବହମାନେ କହିଲେ, "ଆମ ଈଶ୍ୱର ଜାଣନ୍ତି ଯେ ଆମକୁ ତୁମମାନଙ୍କ ପାଖକୁ (ବାର୍ତ୍ତବହ ରୂପେ) ପଠାଯାଇଛି । ୧୭. କେବଳ ପରିଷ୍କାର ଭାବରେ ବାର୍ତ୍ତା ଦେଇଦେବା ଆମମାନଙ୍କର ଦାୟିତ୍ୱ ।" ୧୮. ସେମାନେ କହିଲେ, "ଆମେ ତୁମମାନଙ୍କୁ ଅଶୁଭ ମନେ କରୁଛୁ । ଯଦି ତୁମେମାନେ ଏଥିରୁ କ୍ଷାନ୍ତ ନହୁଅ ତେବେ ଆମେ ପଥର ମାରି ତୁମମାନଙ୍କର ପ୍ରାଣ ନେଇଯିବୁ । ତୁମେମାନେ ଆମଠାରୁ କଠୋର ନିର୍ଯାତନା ପାଇବ ।" ୧୯. ବାର୍ତ୍ତାବହଗଣ କହିଲେ, "ତୁମ ଅଶୁଭ ତୁମମାନଙ୍କ ପାଇଁ । କ'ଣ ଏହା ଏଇଥିପାଇଁ କହୁଛ ଯେ ତୁମମାନଙ୍କୁ ଭଲ ଉପଦେଶ ଦିଆଗଲା ? ବରଂ ତୁମେମାନେ ସୀମା ଟପିଯାଇଛ ।"

୨୦. ସହରର ଏକ ଦୂର ଅଂଚଳରୁ ଜଣେ ବ୍ୟକ୍ତି ଧାଇଁଧାଇଁ ଆସି କହିଲା, "ଭାଇମାନେ ! ବାର୍ତ୍ତାବହମାନଙ୍କର କଥା ମାନିନିଅ । ୨୧. ସେମାନଙ୍କ କଥା ମାନି ଚଳ ଯେଉଁମାନେ ଏହା ବଦଳରେ ତୁମଠାରୁ କିଛି ମାଗୁନାହାନ୍ତି ଏବଂ ଠିକ୍ ବାଟରେ ମଧ୍ୟ ଅଛନ୍ତି ।"

୨୨. "ମୁଁ କାହିଁକି ବା ତାଙ୍କର ଉପାସନା ନକରିବି ଯିଏ ମୋତେ ସୃଷ୍ଟି କରିଛନ୍ତି ଏବଂ ତାଙ୍କରି ପାଖକୁ ତୁମେମାନେ ଫେରିବ ? ୨୩. କ'ଣ ତାଙ୍କୁ ଛାଡ଼ି

ମୁଁ ଅନ୍ୟମାନଙ୍କୁ ଈଶ୍ୱର ମାନିନେବି? ଯଦି ଦୟାମୟ ମୋ'ର କୌଣସି କ୍ଷତି କରିବାକୁ ଚାହିଁବେ, ତେବେ ସେମାନଙ୍କର ସୁପାରିଶ ମୋ'ର କିଛି କାମରେ ଆସିବ ନାହିଁ କିମ୍ବା ସେମାନେ ମୋତେ ରକ୍ଷା କରି ପାରିବେନାହିଁ। ୨୪. ଏହା କଲେ ମୁଁ ପୂରାପୂରି ପଥଭ୍ରଷ୍ଟ ହୋଇଯିବି। ୨୫. ମୁଁ ତୁମମାନଙ୍କର ପାଳନକର୍ତ୍ତାଙ୍କୁ ମାନି ନେଇଛି। ତେଣୁ ତୁମେମାନେ ମୋ' କଥା ଶୁଣ।"

୨୬. (ଗ୍ରାମବାସୀମାନେ ତାକୁ ହତ୍ୟା କରିଦେଲା ପରେ) ତାକୁ କୁହାଗଲା, "ବୈକୁଣ୍ଠକୁ ଯାଅ"। ସେ କହିଲା, "ଆହା! ମୋ' ସମାଜର ଲୋକମାନେ ଏକଥା ଜାଣି ପାରନ୍ତେ କି! ୨୭. ଯେ ମୋ' ପ୍ରଭୁ ମୋତେ କ୍ଷମା କରି ଦେଇଛନ୍ତି ଏବଂ ସମ୍ମାନିତ ବ୍ୟକ୍ତିମାନଙ୍କ ମଧ୍ୟରେ ସ୍ଥାନ ଦେଇଛନ୍ତି!"

୨୮. ଏହାପରେ ଆମ୍ଭେ ତା' ସଂପ୍ରଦାୟ ପାଇଁ ସ୍ୱର୍ଗରୁ କୌଣସି ସେନାବାହିନୀ ପଠାଇ ନଥିଲୁ। ଆମ୍ଭଙ୍କୁ ଏହାର ଆବଶ୍ୟକତା ମଧ୍ୟ ନଥିଲା। ୨୯. କେବଳ ଏକ ଭୟଙ୍କର ଶବ୍ଦ ହେଲା ଏବଂ ଦେଖୁଦେଖୁ ସମସ୍ତଙ୍କର ଜୀବନଦୀପ ଲିଭିଗଲା। ୩୦. ଏଭଳି ଦାସମାନଙ୍କର ଆଚରଣ ଦୁଃଖଦାୟକ। ସେମାନଙ୍କ ପାଖକୁ ଏପରି କୌଣସି ବାର୍ତ୍ତାବହ ଯାଇନାହାନ୍ତି ଯେଉଁମାନଙ୍କ ସହିତ ସେମାନେ ଥଟ୍ଟା କରିନାହାନ୍ତି। ୩୧. କ'ଣ ଏମାନେ ଦେଖିନାହାନ୍ତି ଯେ ଏମାନଙ୍କ ପୂର୍ବରୁ ଆମ୍ଭେ କେତେ ବଂଶ ଧ୍ୱଂସ କରିଦେଇଛୁ ଯେଉଁମାନେ ଏମାନଙ୍କ ପାଖକୁ ଆଉ ଫେରିବେ ନାହିଁ? ୩୨. ଦିନେ ସମସ୍ତଙ୍କୁ ଏକାଠି କରି ଆମ୍ଭ ସାମନାରେ ହାଜର କରାଯିବ।

୩୩. ସେମାନଙ୍କ ପାଇଁ ଗୋଟିଏ ସଂକେତ ହେଉଛି (ଶୁଷ୍କ) ନିର୍ଜୀବ ଭୂମି। ଆମ୍ଭେ ଏହାକୁ (ବର୍ଷାଜଳ ଦ୍ୱାରା) ଜୀବନ୍ତ କରିଦେଉ ଏବଂ ସେଥିରୁ ଶସ୍ୟ ଉତ୍ପନ୍ନ କରୁ ଯାହାକୁ ସେମାନେ ଖାଆନ୍ତି। ୩୪. ଆମ୍ଭେ ସେଥିରେ ଖଜୁରୀ ଓ ଅଙ୍ଗୁର ବଗିଚା ସୃଷ୍ଟି କଲୁ ଏବଂ ଝରଣା ପ୍ରବାହିତ କଲୁ, ୩୫. ଯେପରିକି ସେମାନେ ଏହାର ଫଳ ଖାଇବେ। ଏଗୁଡ଼ିକୁ ତ ସେମାନଙ୍କର ହାତ ଗଢ଼ିନାହିଁ? ତଥାପି କ'ଣ ସେମାନେ ଆମ୍ଭର ଉପକାର ମାନିବେନାହିଁ? ୩୬. ପରମ ପବିତ୍ର ସେହି ସତ୍ତା ଯିଏ ଧରିତ୍ରୀରୁ ଉତ୍ପନ୍ନ ହେଉଥିବା ସମସ୍ତ ବସ୍ତୁକୁ ଯୋଡ଼ା-ଯୋଡ଼ା କରି

ସୃଷ୍ଟି କଲେ, ସେମାନଙ୍କୁ ମଧ୍ୟ (ଯୋଡ଼ା-ଯୋଡ଼ା କରି ସୃଷ୍ଟି କଲେ) ଏବଂ ସେହି ବସ୍ତୁଗୁଡ଼ିକୁ ମଧ୍ୟ, ଯାହା ବିଷୟରେ ସେମାନେ ଜାଣନ୍ତିନାହିଁ ।

୩୭. ସେମାନଙ୍କ ପାଇଁ ଆଉ ଏକ ସଙ୍କେତ ହେଉଛି ରାତି, ଯେଉଁଥିରୁ ଆମ୍ଭେ ଦିନକୁ ଅପସାରିତ କରିନେଉ ପୁଣି ସେମାନଙ୍କ ଉପରେ ଅନ୍ଧକାର ଘୋଟିଆସେ । ୩୮. ସୂର୍ଯ୍ୟ ତା'ପାଇଁ ସ୍ଥିର କରା ଯାଇଥିବା ଏକ ମାର୍ଗରେ ଗତି କରୁଛି । ଏହା ସର୍ବଶକ୍ତିମାନ ଏବଂ ସର୍ବଜ୍ଞ ସତ୍ତାଙ୍କ ଦ୍ୱାରା ନିର୍ଦ୍ଧାରିତ ବ୍ୟବସ୍ଥା । ୩୯. ଚନ୍ଦ୍ର ପାଇଁ ମଧ୍ୟ ଆମ୍ଭେ ବିଭିନ୍ନ ପର୍ଯ୍ୟାୟ ନିର୍ଦ୍ଧାରଣ କରିଛୁ, ଯାହା (କ୍ରମେକ୍ରମେ ହ୍ରାସ ପାଇ) ଶେଷରେ ଖଜୁରୀଗଛର ଶୁଖିଲା ଡ଼ାଳ ପରି ହୋଇଯାଏ । ୪୦. ସୂର୍ଯ୍ୟର ସାଧ୍ୟ ନାହିଁ ଯେ ଚନ୍ଦ୍ରକୁ ଯାଇ ଧରିପାରିବ କିମ୍ବା ରାତିର ସାଧ୍ୟ ନାହିଁ ଯେ ଦିନକୁ ଅତିକ୍ରମ କରିଯିବ । ସମସ୍ତେ ନିଜ ନିଜର କକ୍ଷପଥରେ ଭାସି ବୁଲୁଛନ୍ତି ।

୪୧. ଏହା ମଧ୍ୟ ସେମାନଙ୍କ ପାଇଁ ଗୋଟିଏ ସଙ୍କେତ ଯେ ଆମ୍ଭେ ସେମାନଙ୍କର ସନ୍ତାନମାନଙ୍କୁ ବୋଝରେ ପୂର୍ଣ୍ଣ ହୋଇ ଯାଇଥିବା ଜାହାଜରେ ବସାଇଲୁ, ୪୨. ଏବଂ ସେମାନଙ୍କ ପାଇଁ ଏଭଳି ଅନେକ (ଯାନବାହନ) ସୃଷ୍ଟି କରିଛୁ ଯେଉଁଥିରେ ସେମାନେ ଯାତାୟାତ କରନ୍ତି । ୪୩. ଯଦି ଆମ୍ଭେ ଇଚ୍ଛା କରିବୁ, ସେମାନଙ୍କୁ ବୁଡ଼ାଇଦେବୁ । ସେତେବେଳେ କେହି ସେମାନଙ୍କର ଡାକ ଶୁଣିବେ ନାହିଁ କିମ୍ବା ସେମାନେ ରକ୍ଷା ପାଇ ପାରିବେନାହିଁ । ୪୪. ମାତ୍ର ଏହା ଆମ୍ଭର କରୁଣା ଯେ ଆମ୍ଭେ ଏକ ନିଶ୍ଚିତ ସମୟ ପର୍ଯ୍ୟନ୍ତ ସଂସାର ଭୋଗ କରିବାର ସୁଯୋଗ ଦେଉ ।

୪୫. ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ତୁମମାନଙ୍କ ପାଇଁ ଆଗକୁ ଯାହା (ବିପଦ) ଅଛି ଏବଂ ଯାହା ତୁମ ପଛରେ ଆସୁଛି, ତାକୁ ଭୟ କର ହୁଏତ ତୁମମାନଙ୍କ ପ୍ରତି ଦୟା କରାଯିବ, (ସେମାନେ ସେଥିପ୍ରତି କର୍ଣ୍ଣପାତ କରନ୍ତିନାହିଁ) । ୪୬. ସେମାନଙ୍କ ପାଖକୁ ଈଶ୍ୱରଙ୍କର ଯେଉଁ ନିଦର୍ଶନ ଆସିଲେ ସୁଦ୍ଧା ସେମାନେ ମୁହଁ ବୁଲାଇ ନିଅନ୍ତି । ୪୭. ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଅଲ୍ଲାହ୍ ତୁମମାନଙ୍କୁ ଯାହା ଦେଇଛନ୍ତି ସେଥିରୁ (ପୁଣ୍ୟ କାର୍ଯ୍ୟରେ) ଖର୍ଚ୍ଚ କର, ନାସ୍ତିକମାନେ ସଦବିଶ୍ୱାସୀମାନଙ୍କୁ କହନ୍ତି, "ଆମେ ସେମାନଙ୍କୁ କାହିଁକି ଭୋଜନ

ଦେବୁ, ଯେଉଁମାନଙ୍କୁ ଅଲ୍ଲାହ୍ ଚାହିଁଲେ ନିଜେ ଖୁଆଇ ପାରନ୍ତେ।" ତୁମେମାନେ ପୂରାପୂରି ପଥଭ୍ରଷ୍ଟ ହୋଇଯାଇଛ।

୪୮. ପୁଣି କହନ୍ତି ଯେ ଯଦି ତୁମେ ସତ୍ୟବାଦୀ ତେବେ ଯେଉଁ ପ୍ରଳୟର ତୁମେ ଧମକ ଦେଉଛ, ତାହା କେବେ ସତ ହେବ? ୪୯. ଏମାନେ ଏକ ଭୟଙ୍କର ଶବ୍ଦର ପ୍ରତୀକ୍ଷାରେ ଅଛନ୍ତି ଯାହା ସେମାନଙ୍କୁ କରଗତ କରିନେବ, ଯେତେବେଳେ ସେମାନେ ଯୁକ୍ତିତର୍କରେ ମାତିଥିବେ। ୫୦. ସେତେବେଳେ ସେମାନେ ନିଜର କୌଣସି ଇଚ୍ଛା ବ୍ୟକ୍ତ କରି ପାରିବେନାହିଁ କିମ୍ବା ନିଜ ପରିବାରକୁ ଫେରି ପାରିବେନାହିଁ। ୫୧. ତୂରୀନାଦ ହେବା ମାତ୍ରେ ସେମାନେ କବର ମଧ୍ୟରୁ ବାହାରି ଈଶ୍ୱରଙ୍କ ପାଖକୁ ଧାଇଁବେ। ୫୨. କହିବେ, "ଓଃ ସର୍ବନାଶ! କିଏ ଆମକୁ ଆମ ଶୋଇବା ଜାଗାରୁ ଉଠାଇ ଆଣିଲା?" (ଉତ୍ତର ଦିଆଯିବ) ଏହି ବିଷୟରେ ଦୟାମୟ ସତର୍କ କରିଥିଲେ ଏବଂ ଈଶ୍ୱରଦୂତମାନେ ସତ କହିଥିଲେ। ୫୩. କେବଳ ଏକ ଭୟଙ୍କର ଶବ୍ଦ ହେବ। ଏହାପରେ ସମସ୍ତଙ୍କୁ ଆମ୍ଭ ସାମନାରେ ଆଣି ହାଜର କରାଯିବ।

୫୪. ସେଦିନ କାହାରି ପ୍ରତି ତିଳେହେଲେ ଅବିଚାର କରାଯିବ ନାହିଁ ଏବଂ ତୁମମାନଙ୍କୁ ତାହାରି ଫଳ ମିଳିବ ଯାହା ତୁମେମାନେ କରୁଥିଲ। ୫୫. ସେଦିନ ବୈକୁଣ୍ଠବାସୀମାନେ ଆନନ୍ଦ ଉଲ୍ଲାସରେ ମାତିଥିବେ, ୫୬. ଏବଂ ନିଜନିଜ ପତ୍ନୀମାନଙ୍କ ସହିତ ଘନ ଛାୟାରେ ଆରାମଦାୟକ ଆସନରେ ତକିଆରେ ଆଉଜି ବସିଥିବେ। ୫୭. ସେଠାରେ ସେମାନଙ୍କୁ ସବୁ ପ୍ରକାର ଫଳ ଖାଇବାକୁ ମିଳିବ ଏବଂ ଯାହା ସେମାନେ ମାଗିବେ, ତାହା ପାଇବେ। ୫୮. ଦୟାମୟ ପ୍ରଭୁଙ୍କ ତରଫରୁ ସେମାନଙ୍କୁ ସଲାମ୍ (ଅର୍ଥାତ୍ ମଙ୍ଗଳ ହେଉ) କୁହାଯିବ।

୫୯. (ନାସ୍ତିକମାନଙ୍କୁ କୁହାଯିବ) "ହେ ଅପରାଧୀମାନେ! ଆଜି ତୁମେମାନେ (ସଦ୍‌ବିଶ୍ୱାସୀମାନଙ୍କଠାରୁ) ଅଲଗା ହୋଇଯାଅ।" ୬୦. ହେ ଆଦମଙ୍କ ସନ୍ତାନଗଣ! କ'ଣ ମୁଁ ତୁମମାନଙ୍କୁ ଆଜ୍ଞା ଦେଇ ନଥିଲି ଯେ ଶଇତାନର ଉପାସନା କରିବନାହିଁ କାରଣ ସେ ତୁମମାନଙ୍କର ପରମ ଶତ୍ରୁ? ୬୧. ଏବଂ (କ'ଣ ଏହା କହି ନଥିଲି ଯେ) କେବଳ ମୋ'ରି ଉପାସନା କରିବ, ଏହାହିଁ ଠିକ୍

ବାଟ ? ୬୨. ସେ ତୁମମାନଙ୍କ ମଧ୍ୟରୁ ଅଧିକାଂଶ ଲୋକଙ୍କୁ ପଥଭ୍ରଷ୍ଟ କରିଦେଲା । କ'ଣ ତୁମମାନଙ୍କର ବୁଦ୍ଧି ନଥିଲା ? ୬୩. ଏହା ହେଉଛି ସେହି ନର୍କ ଯାହା ବିଷୟରେ ତୁମମାନଙ୍କୁ ସତର୍କ କରା ଯାଉଥିଲା । ୬୪. ଯେହେତୁ ତୁମେମାନେ (ସତ୍ୟକୁ) ମାନି ନଥିଲ, ତେଣୁ ଆଜି ନର୍କକୁ ଯାଅ । ୬୫. ଆଜି ଆମ୍ଭେ ସେମାନଙ୍କର ମୁହଁ ବନ୍ଦ କରିଦେବୁ । ସେମାନେ ଯାହା କରୁଥିଲେ, ସେମାନଙ୍କର ହାତ ଆମ୍ଭଙ୍କୁ କହିବ ଏବଂ ସେମାନଙ୍କର ଗୋଡ଼ ତାହାର ସାକ୍ଷ୍ୟ ଦେବ ।

୬୬. ଆମ୍ଭେ ଇଚ୍ଛା କଲେ ସେମାନଙ୍କର ଦୃଷ୍ଟିଶକ୍ତି ଛିନ୍ନ କରିନେବୁ । ପୁଣି ସେମାନେ ବାଟ ପାଇଁ ବିକଳ ହେବେ ମାତ୍ର ବାଟ କେମିତି ପାଇବେ ? ୬୭. ଆମ୍ଭେ ଇଚ୍ଛା କଲେ ସେମାନଙ୍କୁ ସେହି ଅବସ୍ଥାରେ ପଙ୍ଗୁ କରିଦେବୁ ପୁଣି ସେମାନେ ଆଗକୁ ଯାଇ ପାରିବେନାହିଁ କିମ୍ବା ପଛକୁ ଫେରି ପାରିବେନାହିଁ ।

୬୮. ଆମ୍ଭେ ଯାହାକୁ ଦୀର୍ଘାୟୁ କରୁ, ତାକୁ ତା'ର ଜନ୍ମାବସ୍ଥା ଆଡ଼କୁ ଫେରାଇ ନେଉ (ଅର୍ଥାତ୍ ଶାରୀରିକ ଓ ମାନସିକ ରୂପେ ପୁଣି ଦୁର୍ବଳ କରିଦେଉ) । କ'ଣ ସେମାନେ ଏହା ବୁଝି ପାରୁନାହାନ୍ତି ?

୬୯. ଆମ୍ଭେ ନିଜର ବାର୍ତ୍ତାବହଙ୍କୁ କବିତା ଶିଖାଇନାହୁଁ କିମ୍ବା ଏହା ତାଙ୍କ ପକ୍ଷରେ ଶୋଭନୀୟ ନୁହେଁ । ଏହି କୁରଆନ ଏକ ଉପଦେଶପୂର୍ଣ୍ଣ ଗ୍ରନ୍ଥ ଯାହା କଥାକୁ ପରିଷ୍କାର ଭାବରେ ବର୍ଣ୍ଣନା କରେ, ୭୦. ଯେପରିକି ଏହା ପ୍ରତ୍ୟେକ ଜୀବିତ ବ୍ୟକ୍ତିକୁ ସାବଧାନ କରିଦେଉ ଏବଂ ସତ୍ୟକୁ ମାନୁ ନଥିବା ଲୋକମାନଙ୍କ ପ୍ରତି ଶାସ୍ତିର ଯଥାର୍ଥତା ପ୍ରମାଣିତ ହୋଇଯାଉ ।

୭୧. କ'ଣ ସେମାନେ ଏହା ଲକ୍ଷ୍ୟ କରୁନାହାନ୍ତି ଯେ ଯାହାସବୁ ଆମ୍ଭେ ନିଜ ହାତରେ ଗଢ଼ିଛୁ, ସେଥିମଧ୍ୟରୁ ସେମାନଙ୍କ ପାଇଁ ଗୃହପାଳିତ ପଶୁ ମଧ୍ୟ ସୃଷ୍ଟି କରିଛୁ ଯେଉଁମାନଙ୍କର ସେମାନେ ଏବେ ମାଲିକ ହୋଇ ଯାଇଛନ୍ତି ? ୭୨. ଏବଂ ଏହି ପଶୁମାନଙ୍କୁ ଆମ୍ଭେ ସେମାନଙ୍କର ଆୟତ୍ତାଧୀନ କରିଦେଇଛୁ ଯାହାଫଳରେ ସେମାନେ କେତେକଙ୍କୁ ବାହନ ରୂପେ ଏବଂ ଆଉ କେତେକଙ୍କୁ ଖାଦ୍ୟ ରୂପେ ବ୍ୟବହାର କରନ୍ତି । ୭୩. (ଏହାଛଡ଼ା) ସେମାନଙ୍କଠାରୁ (ଦୁଗ୍ଧ ଆଦି) ପାନୀୟ ତଥା

ଅନ୍ୟାନ୍ୟ ଉପକାର ମଧ୍ୟ ପାଇଥାଆନ୍ତି । ତେବେ କ'ଣ ଏହି ଲୋକମାନେ (ଆମ୍ଭ ପ୍ରତି) କୃତଜ୍ଞ ହେବେନାହିଁ ?

୭୪. ଏମାନେ ଅଲ୍ଲାହଙ୍କ ପରିବର୍ତ୍ତେ ଅନ୍ୟମାନଙ୍କୁ ଉପାସ୍ୟ ମାନିଛନ୍ତି ଯେ ସେମାନଙ୍କଠାରୁ ସାହାଯ୍ୟ ପାଇବେ । ୭୫. ସେମାନେ ଏମାନଙ୍କୁ ସାହାଯ୍ୟ କରିବାକୁ ଆଦୌ ସମର୍ଥ ନୁହନ୍ତି ବରଂ ଓଲଟା ଏହି ଉପାସକମାନେ ସେମାନଙ୍କର ସେନାଦଳ ସାଜିଛନ୍ତି । ୭୬. ତେଣୁ, (ରସୁଲ୍ !) ସେମାନଙ୍କ କଥା ଯୋଗୁଁ ତୁମେ ଦୁଃଖ କରନାହିଁ । ଯାହା ସେମାନେ ପ୍ରକାଶ କରନ୍ତି ବା ଯାହା ଗୋପନ ରଖନ୍ତି, ଆମ୍ଭେ ସବୁ ଜାଣୁ ।

୭୭. କ'ଣ ମଣିଷକୁ ଏହା ଜଣାନାହିଁ ଯେ ଆମ୍ଭେ ତାକୁ ଟୋପାଏ ଶୁକ୍ରରୁ ସୃଷ୍ଟି କରିଛୁ ? ପୁଣି ଦେଖ, କେମିତି ସେ ଆମ୍ଭର ଘୋର ବିରୋଧୀ ହୋଇଗଲା । ୭୮. ସେ ଆମ୍ଭ ପାଇଁ ଉପମା ଗଢୁଛି ଆଉ ନିଜ ଜନ୍ମ କଥା ଭୁଲିଯାଉଛି ଏବଂ କହୁଛି ଯେ ହାଡ଼ଗୁଡ଼ିକ ପଚିସଢ଼ି ନଷ୍ଟ ହୋଇଗଲା ପରେ ପୁଣି କିଏ ସେଗୁଡ଼ିକୁ ଜୀବିତ କରିବ ? ୭୯. କହିଦିଅ ଯେ ସେ ହିଁ ଜୀବିତ କରିବେ ଯିଏ ତାକୁ ପ୍ରଥମଥର ସୃଷ୍ଟି କରିଥିଲେ । ସେ ସବୁ ପ୍ରକାରର ସୃଷ୍ଟି କରିବା ଜାଣନ୍ତି । ୮୦. ଯିଏ ତୁମମାନଙ୍କ ପାଇଁ ସବୁଜ ବୃକ୍ଷରୁ ଅଗ୍ନି ସୃଷ୍ଟି କରିଦେଲେ ଯେଉଁଥିରୁ ତୁମେମାନେ ଅଗ୍ନି ସଂଗ୍ରହ କର । ୮୧. ଯିଏ ପୃଥିବୀ ଓ ଆକାଶକୁ ସୃଷ୍ଟି କରିଛନ୍ତି, କ'ଣ ସେ ତୁମମାନଙ୍କ ପରି ମଣିଷମାନଙ୍କୁ ଆଉଥରେ ସୃଷ୍ଟି କରିବାକୁ ସକ୍ଷମ ନୁହନ୍ତି ? ନିଶ୍ଚୟ ସକ୍ଷମ । ସେ ମହାନ ସ୍ରଷ୍ଟା ଏବଂ ମହାଜ୍ଞାନୀ । ୮୨. ଯେତେବେଳେ ସେ କିଛି ଇଚ୍ଛା କରନ୍ତି, ତା'ବିଷୟରେ କେବଳ ଏତିକି କହନ୍ତି, 'ହୋଇଯା' ଏବଂ ତାହା ହୋଇଯାଏ । ୮୩. ପରମ ପବିତ୍ର ସେହି ସତ୍ତା ଯାହାଙ୍କ ହାତରେ ରହିଛି ସକଳ କ୍ଷମତା ।  ତୁମେ ସମସ୍ତେ ଦିନେ ତାଙ୍କରି ପାଖକୁ ଫେରିବ ।

## ଅଧ୍ୟାୟ ୩୭, ଅସ୍ ସାଫ୍‌ଫାତ୍

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ସେମାନଙ୍କର (ଅର୍ଥାତ୍ ଦେବଦୂତମାନଙ୍କର) ରାଣ ଯେଉଁମାନେ ଧାଡ଼ି ବାନ୍ଧି ଛିଡ଼ାହୁଅନ୍ତି, ୨. (ପାପୀମାନଙ୍କୁ) ଭର୍ତ୍ସନା କରନ୍ତି, ୩. ଏବଂ କୁରଆନ୍ ପାଠ କରୁଥାଆନ୍ତି । ୪. ତୁମମାନଙ୍କର ଈଶ୍ୱର କେବଳ ଜଣେ । ୫. ଯିଏ ପୃଥିବୀ ଓ ଆକାଶ ଏବଂ ସେଗୁଡ଼ିକ ମଧ୍ୟରେ ଥିବା ସକଳ ସୃଷ୍ଟିର ସ୍ୱାମୀ ଏବଂ ସମସ୍ତ ଅଂଚଳର ମାଲିକ ଯେଉଁଠାରେ ସୂର୍ଯ୍ୟ ଉଦୟ ହୁଏ ।

୬. ଆମ୍ଭେ ପୃଥିବୀର ନିକଟବର୍ତ୍ତୀ ଆକାଶକୁ ନକ୍ଷତ୍ର ଦ୍ୱାରା ଶୋଭିତ କରିଛୁ, ୭. ଏବଂ ଅବାଧ ଶଇତାନମାନଙ୍କଠାରୁ ଏହାକୁ ସୁରକ୍ଷିତ ରଖିଛୁ । ୮. ସେମାନେ ଦେବସଭାର କଥା ଶୁଣି ପାରନ୍ତିନାହିଁ । ସେମାନଙ୍କ ଉପରେ ଚାରିଆଡୁ (ଉଲ୍‌କା) ମାଡ଼ ହୁଏ - ୯. ସେମାନଙ୍କୁ ଘଉଡ଼ାଇବା ପାଇଁ । ସେମାନେ ଚିରଦିନ ପାଇଁ ନର୍କଦଣ୍ଡ ଭୋଗିବେ । ୧୦. ମାତ୍ର ଯଦି କେହି ଲୁଚିଛପି (ଦେବଦୂତମାନଙ୍କର) କୌଣସି କଥା ଶୁଣିନିଏ, ତେବେ ଏକ ଜ୍ୱଳନ୍ତ ଅଗ୍ନିପିଣ୍ଡ (ଅର୍ଥାତ ଉଲ୍‌କା) ତା'ର ପିଛା କରିଥାଏ ।

୧୧. ଏମାନଙ୍କୁ ଟିକିଏ ପଚାର ଯେ ଏମାନଙ୍କୁ (ପୁନର୍ବାର) ସୃଷ୍ଟି କରିବା ଆମ୍ଭ ପକ୍ଷରେ ଅଧିକ କଠିନ କାର୍ଯ୍ୟ ବା (ବ୍ରହ୍ମାଣ୍ଡରେ ଥିବା) ଅନ୍ୟାନ୍ୟ ବସ୍ତୁଗୁଡ଼ିକୁ ସୃଷ୍ଟି କରିବା ? ଆମ୍ଭେ ତ ଏମାନଙ୍କୁ ଚିକିଟା ମାଟିରୁ ସୃଷ୍ଟି କରିଛୁ । ୧୨. ତୁମେ ସିନା ଆଶ୍ଚର୍ଯ୍ୟ ହେଉଛ କିନ୍ତୁ ସେମାନେ ଥଟ୍ଟା କରୁଛନ୍ତି । ୧୩. ସେମାନଙ୍କୁ ଉପଦେଶ ଦେଲେ ସେମାନେ ଉପଦେଶ ଶୁଣନ୍ତିନାହିଁ, ୧୪. ଏବଂ କୌଣସି ନିଦର୍ଶନ ଦେଖିଲେ ତାକୁ ଥଟ୍ଟାରେ ଉଡ଼ାଇ ଦିଅନ୍ତି, ୧୫. ଏବଂ କହନ୍ତି ଯେ ଏହା ପରିଷ୍କାର ଯାଦୁଖେଳ ବ୍ୟତୀତ ଆଉ କିଛିନୁହେଁ । ୧୬. (ଏବଂ କହୁଛନ୍ତି) "କ'ଣ ଆମେ ହାଡ଼ ଓ ମାଟି ହୋଇ ସାରିଲା ପରେ ମଧ୍ୟ ପୁଣିଥରେ ପୁନର୍ଜୀବନ ପାଇ ଉଠିବୁ ? ୧୭. ଏବଂ କ'ଣ ଆମ ପୂର୍ବପୁରୁଷମାନେ ମଧ୍ୟ ?" ୧୮. କୁହ, "ହଁ, ଏବଂ ତୁମେମାନେ ଲାଂଛିତ ମଧ୍ୟ ହେବ ।"

୧୯. (ପ୍ରଳୟ ଦିନ) କେବଳ ଏକ ଭୟଙ୍କର ଶବ୍ଦ ହେବ ଏବଂ ତା'ପରେ ସେମାନେ ସଙ୍ଗେସଙ୍ଗେ ସବୁ ଦେଖିପାରିବେ, ୨୦. ଏବଂ କହିବେ, "ଓଃ, ଆମର ଦୁର୍ଭାଗ୍ୟ! ଏହା ତ ବିଚାରର ଦିନ!" ୨୧. (ସେମାନଙ୍କୁ କୁହାଯିବ) "ହଁ, ଏହା ସେହି ବିଚାରର ଦିନ ଯାହାକୁ ତୁମେମାନେ ମିଛ ବୋଲି କହୁଥିଲ।" ୨୨. (ଦେବଦୂତମାନଙ୍କୁ ଆଦେଶ ଦିଆଯିବ) "ପାପିଷ୍ଠମାନଙ୍କୁ ସେମାନଙ୍କ ସହଚରମାନଙ୍କ ସହିତ ଘେରିଆଣ ଏବଂ ସେମାନଙ୍କୁ ମଧ୍ୟ, ଯେଉଁମାନଙ୍କର ଏମାନେ ପୂଜା କରୁଥିଲେ, ୨୩. ଅଲ୍ଲାହଙ୍କ ପରିବର୍ତ୍ତେ। ସମସ୍ତଙ୍କୁ ନର୍କର ବାଟ ଦେଖାଇଦିଅ।

୨୪. କିନ୍ତୁ ସେମାନଙ୍କୁ ଟିକିଏ ଅଟକାଅ। ସେମାନଙ୍କୁ କିଛି ପ୍ରଶ୍ନ କରାଯିବ ୨୫. "ଆଚ୍ଛା, ତୁମମାନଙ୍କର କ'ଣ ହେଲା? ତୁମେମାନେ ଏବେ କାହିଁକି ପରସ୍ପରକୁ ସାହାଯ୍ୟ କରୁନାହଁ?" ୨୬. ବରଂ ଆଜି ତ ସେମାନେ ସଂପୂର୍ଣ୍ଣ ଆଜ୍ଞାବହ ପାଲଟି ଯାଇଛନ୍ତି। ୨୭. ସେମାନେ ପରସ୍ପର ଆଡ଼କୁ ବୁଲି ପଡ଼ି ପଚରାପଚରି ହେବେ। ୨୮. (ଅନୁଗତମାନେ ସେମାନଙ୍କ ମୁଖିଆମାନଙ୍କୁ) କହିବେ, "ତୁମେମାନେ ଆମ ଉପରେ ଚାପ ପକାଉଥିଲ।" ୨୯. ସେମାନେ ଉତ୍ତର ଦେବେ, "ଏକଥା ନୁହେଁ, ତୁମେମାନେ ନିଜେ ବିଶ୍ୱାସ କରୁ ନଥିଲ। ୩୦. ତୁମମାନଙ୍କ ଉପରେ ଆମର କିଛି ବଳ ନଥିଲା ବରଂ ତୁମେମାନେ ସୀମା ଟପି ଯାଇଥିଲ। ୩୧. ଆମ ବିଷୟରେ ଈଶ୍ୱରଙ୍କ କଥା ସତ ପ୍ରମାଣିତ ହେଲା। ଆମମାନଙ୍କୁ (ଆମ ପାପର ଫଳ) ଭୋଗିବାକୁ ହେବ। ୩୨. ଆମେ ତୁମମାନଙ୍କୁ ପଥଭ୍ରଷ୍ଟ କଲୁ କାରଣ ଆମେ ନିଜେ ପଥଭ୍ରଷ୍ଟ ହୋଇ ଯାଇଥିଲୁ।" ୩୩. ସୁତରାଂ, ସେଦିନ ନର୍କଦଣ୍ଡରେ ସେମାନେ ପରସ୍ପର ଭାଗୀଦାର ହେବେ। ୩୪. ଆମ୍ଭେ ପାପୀମାନଙ୍କ ସହିତ ଏହିଭଳି ବ୍ୟବହାର କରୁ।

୩୫. ଏମାନେ ସେହି ଲୋକ, ଯେତେବେଳେ ସେମାନଙ୍କୁ କୁହା ଯାଉଥିଲା ଯେ ଅଲ୍ଲାହଙ୍କ ବ୍ୟତୀତ ଆଉ କେହି ଉପାସନାଯୋଗ୍ୟ ନୁହେଁ, ସେମାନେ ଅହଙ୍କାର କରୁଥିଲେ, ୩୬. ଏବଂ କହୁଥିଲେ, "କ'ଣ ଜଣେ ପାଗଳ କବି କଥାରେ ପଡ଼ି ଆମେ ଆମ ଆରାଧ୍ୟମାନଙ୍କୁ ଛାଡ଼ିଦେବୁ?" ୩୭. ଅଥଚ ସେ

ସତ୍ୟର ବାର୍ତ୍ତା ନେଇ ଯାଇଥିଲେ ଏବଂ ପୂର୍ବ ବାର୍ତ୍ତାବହମାନଙ୍କର ସମର୍ଥନ ମଧ୍ୟ କରୁଥିଲେ । ୩୮. ତୁମେମାନେ ନିଶ୍ଚୟ କଠୋର ଦଣ୍ଡ ଭୋଗିବ । ୩୯. ତୁମମାନଙ୍କୁ ନିଜ ଅର୍ଜିତ କର୍ମର ଫଳ ମିଳିବ ।

୪୦. ମାତ୍ର ଯେଉଁମାନେ ଅଲ୍ଲାହଙ୍କର ନିଷ୍ପାପର ଭକ୍ତ, ୪୧. ସେମାନଙ୍କ ପାଇଁ ସୁଖସମ୍ଭୋଗ ନିର୍ଦ୍ଧାରିତ ହୋଇସାରିଛି । ୪୨. ସେମାନଙ୍କୁ (ବିଭିନ୍ନ ପ୍ରକାରର) ଫଳ ଦିଆଯିବ ଏବଂ ସମ୍ମାନିତ କରାଯିବ । ୪୩. ସେମାନେ ବିଳାସପୂର୍ଣ୍ଣ ବୈକୁଣ୍ଠ ଉଦ୍ୟାନରେ ୪୪. ଆରାମଦାୟକ ଆସନରେ ସାମନାସାମନି ହୋଇ ବସିଥିବେ । ୪୫. ସେମାନଙ୍କୁ ପାତ୍ରରେ ପାନୀୟ ପରିବେଷଣ କରା ଯାଉଥିବ । ୪୬. ଏହି ସ୍ୱଚ୍ଛ ପାନୀୟ ସେମାନଙ୍କ ପାଇଁ ଅତି ସ୍ୱାଦିଷ୍ଟ ହୋଇଥିବ । ୪୭. ଏହାକୁ ପିଇବା ଦ୍ୱାରା ସେମାନଙ୍କର ମୁଣ୍ଡବ୍ୟଥା ହେବନାହିଁ ବା ବୁଦ୍ଧିଭ୍ରଷ୍ଟ ହେବନାହିଁ । ୪୮. ସେମାନଙ୍କ ପାଖରେ ଲାଜକୁଳୀ ସୁନୟନା ଅପସରାମାନେ ଥିବେ । ୪୯. (ଯେଉଁମାନଙ୍କୁ ଅତି ଯତ୍ନରେ ରଖା ଯାଇଥିବ) ଯେମିତି (ଖୋଳ ଭିତରେ) ଡିମ୍ବ ଲୁଚି ରହିଥାଏ ।

୫୦. ସେମାନେ ପରସ୍ପର ସାମନାରେ ବସି ପଚରାପଚରି ହେବେ । ୫୧. ସେମାନଙ୍କ ମଧ୍ୟରୁ ଜଣେ କହିବ ଯେ (ସଂସାରରେ) ମୋ'ର ଜଣେ ସାଙ୍ଗ ଥିଲା, ୫୨. ଯିଏ ମୋତେ କହୁଥିଲା, "କ'ଣ ପ୍ରକୃତରେ ତୁମେ ଏଭଳି କଥାକୁ ସତ ମାନୁଛ ? ୫୩. କ'ଣ ଆମେ (ମରିସାରି) ହାଡ଼ ଓ ମାଟି ହୋଇଗଲା ପରେ ମଧ୍ୟ ଆମକୁ କର୍ମଫଳ ଭୋଗିବାକୁ ପଡ଼ିବ ?" ୫୪. (ଏହାପରେ) ସେ କହିବ, "ତୁମେମାନେ ଟିକିଏ ତଳକୁ ଚାହିଁ (ସେହି ଲୋକଟିର ଅବସ୍ଥା) ଦେଖିବ କି ? ୫୫. ପୁଣି ସେ (ନିଜେ ନର୍କ ଭିତରକୁ) ଚାହିଁବ ଏବଂ ତାକୁ ମଝି ନର୍କରେ ଥିବାର ଦେଖିବ ୫୬. ଏବଂ କହିବ, "ଅଲ୍ଲାହଙ୍କ ରାଣ ! ତୁ ତ ମୋର ସର୍ବନାଶ କରିବାକୁ ବସିଥିଲୁ ! ୫୭. ଯଦି ମୋ' ପ୍ରଭୁଙ୍କ କରୁଣା ହୋଇ ନଥାଆନ୍ତା, ତେବେ ମୁଁ ମଧ୍ୟ ସେଇମାନଙ୍କ ସହିତ ଧରା ହୋଇ (ନର୍କକୁ) ଯାଇଥାଆନ୍ତି ।" ୫୮. (ପୁଣି ସେ ଖୁସି ମନରେ ତା'ସାଥିମାନଙ୍କୁ କହିବ) "ସତରେ, ଆମେମାନେ ତ ଆଉ ମରିବୁ ନାହିଁ ? ୫୯. ଥରେ ଯାହା ମରିସାରିଛୁ । ଆମକୁ ଦଣ୍ଡ ମଧ୍ୟ ଭୋଗିବାକୁ ପଡ଼ିବନାହିଁ ।"

୬୦. ଏହାହିଁ ସବୁଠାରୁ ବଡ଼ ସଫଳତା । ୬୧. ଏହିଭଳି ସଫଳତା ପାଇଁ କର୍ମ କରୁଥିବା ଲୋକମାନେ କର୍ମ କରିବା ଉଚିତ । ୬୨. ଏହି ଆତିଥ୍ୟ ଭଲ ବା ଜକ୍କୁମ୍ (ଅର୍ଥାତ୍ ନାଗଫେଣିଆ) ଗଛ ଭଲ? ୬୩. ଏହି ଗଛ ଦ୍ୱାରା ଆମ୍ଭେ ଦୁରାଚାରୀ ମାନଙ୍କୁ ପରୀକ୍ଷା କରୁ । ୬୪. ଏହି ଗଛ ଗଭୀର ନର୍କରେ ଉତ୍ପନ୍ନ ହୁଏ । ୬୫. ଏହାର ଫଳଗୁଡ଼ିକ ଦେଖିବାକୁ ସାପର ଫଣା ପରି । ୬୬. ଏହାକୁ ସେମାନେ ଖାଇବେ ଏବଂ ଏହାଦ୍ୱାରା ନିଜର ପେଟ ପୂର୍ଣ୍ଣ କରିବେ । ୬୭. ଏହାପରେ ସେମାନଙ୍କୁ (ପିଇବା ପାଇଁ) ଫୁଟନ୍ତା ପାଣି ଦିଆଯିବ । ୬୮. ଏଇଭଳି ସେମାନେ ନର୍କରେ ପଡ଼ି ରହିବେ । ୬୯. ସେମାନେ ନିଜର ପୂର୍ବପୁରୁଷମାନଙ୍କୁ ପଥଭ୍ରଷ୍ଟ ଥିବାର ଦେଖିଥିଲେ । ୭୦. ତଥାପି ସେହିମାନଙ୍କର ବାଟ ଧରିଲେ । ୭୧. ସେମାନଙ୍କ ପୂର୍ବରୁ ମଧ୍ୟ ଅଧିକାଂଶ ଲୋକ ପଥଭ୍ରଷ୍ଟ ହୋଇ ଯାଇଥିଲେ । ୭୨. ଅଥଚ ଆମ୍ଭେ ସେମାନଙ୍କ ପାଖକୁ ସାବଧାନ କରିବା ପାଇଁ ବାର୍ତ୍ତାବହମାନଙ୍କୁ ପଠାଇଥିଲୁ । ୭୩. ଯେଉଁମାନଙ୍କୁ ସାବଧାନ କରା ଯାଇଥିଲା, ସେମାନଙ୍କର ପରିଣାମ ଦେଖିନିଅ । ୭୪. ମାତ୍ର ଅଲ୍ଲାହଙ୍କର ନିଷ୍ଠାପର ଭକ୍ତମାନେ ସୁରକ୍ଷିତ ରହିଲେ ।

୭୫. ନୂହ୍ ଆମ୍ଭଙ୍କୁ ଡାକିଥିଲେ ଏବଂ ଆମ୍ଭେ କି ସୁନ୍ଦର ଗୁହାରୀ ଶୁଣିଲୁ । ୭୬. ଆମ୍ଭେ ତାଙ୍କୁ ଓ ତାଙ୍କ ପରିଜନମାନଙ୍କୁ ଏକ ବଡ଼ ବିପଦରୁ ଉଦ୍ଧାର କରିଥିଲୁ, ୭୭. ଏବଂ ତାଙ୍କ ବଂଶଧରମନଙ୍କୁ ଜୀବିତ ରଖିଥିଲୁ । ୭୮. ଏବଂ ଆମ୍ଭେ ପରବର୍ତ୍ତୀ ବଂଶଧରମାନଙ୍କ ମଧ୍ୟରେ ତାଙ୍କ ସୁନାମ ବଜାଏ ରଖିଲୁ । ୭୯. ସାରା ଜଗତରେ ନୂହଙ୍କର ମଂଗଳ ହେଉ । ୮୦. ଭଲ କର୍ମ କରୁଥିବା ଲୋକମାନଙ୍କୁ ଆମ୍ଭେ ଏହିଭଳି ପୁରସ୍କାର ଦେଉ । ୮୧. ସେ ଆମ୍ଭର ଜଣେ ସଦ୍‌ବିଶ୍ୱାସୀ ଭକ୍ତ ଥିଲେ । ୮୨. ପୁଣି ଆମ୍ଭେ ଅନ୍ୟମାନଙ୍କୁ ବୁଡ଼ାଇ ଦେଲୁ ।

୮୩. ଇବ୍ରାହିମ ମଧ୍ୟ ତାଙ୍କରି ପନ୍ଥା ଅନୁସରଣ କରିଥିଲେ । ୮୪. ଯେତେବେଳେ ସେ ଶୁଦ୍ଧ ମନରେ ନିଜ ପ୍ରଭୁଙ୍କ ଶରଣାପନ୍ନ ହେଲେ, ୮୫. ଏବଂ ତାଙ୍କ ପିତାଙ୍କୁ ଓ ତାଙ୍କ ସଂପ୍ରଦାୟର ଲୋକମାନଙ୍କୁ ପଚାରିଲେ, "ତୁମେମାନେ କାହାର ଉପାସନା କରୁଛ?" ୮୬. "କ'ଣ ଅଲ୍ଲାହଙ୍କୁ ଛାଡ଼ି ମନଗଢ଼ା

ଆରାଧ୍ୟମାନଙ୍କର ଉପାସନା କରିବାକୁ ଚାହୁଁଛ ? ୮୭. ତେବେ ଜଗତପାଳକଙ୍କ ବିଷୟରେ ତୁମେମାନେ କ'ଣ ଭାବୁଛ ?" ୮୮. ପୁଣି ସେ (କିଛି ଚିନ୍ତା କରି) ନକ୍ଷତ୍ରମାନଙ୍କ ଆଡ଼କୁ ଚାହିଁଲେ । ୮୯. ଏବଂ କହିଲେ ଯେ ମୋ' ଦେହ ଭଲ ଲାଗୁନାହିଁ । ୯୦. ତେଣୁ ସେମାନେ ତାଙ୍କୁ ଛାଡ଼ି ଚାଲିଗଲେ । ୯୧. ଏହାପରେ ସେ ସେମାନଙ୍କର ଆରାଧ୍ୟମାନଙ୍କୁ ସମ୍ବୋଧନ କରି କହିଲେ, "ତୁମେମାନେ (ତୁମ ସାମନାରେ ଥିବା ଭୋଗ) କାହିଁକି ଖାଉନାହଁ ? ୯୨. କ'ଣ ହେଲା ? କାହିଁକି କିଛି କହୁନାହଁ ?" ୯୩. ପୁଣି ସେ ପୂରା ଜୋରରେ ସେଗୁଡ଼ିକୁ ଭାଙ୍ଗିଦେଲେ ।

୯୪. ଏହାପରେ (ତାଙ୍କ ସଂପ୍ରଦାୟର) ଲୋକମାନେ ତାଙ୍କ ପାଖକୁ ଦଉଡ଼ି ଆସିଲେ । ୯୫. ଇବ୍ରାହିମ ସେମାନଙ୍କୁ ପଚାରିଲେ, "ତୁମେମାନେ କାହିଁକି ସେଗୁଡ଼ିକର ପୂଜା କରୁଛ ଯାହାକୁ ତୁମେ ନିଜ ହାତରେ ଗଢୁଛ ? ୯୬. ଅଥଚ ଅଲ୍ଲାହ୍ ତୁମମାନଙ୍କୁ ସୃଷ୍ଟି କରିଛନ୍ତି ଏବଂ ସେଗୁଡ଼ିକୁ ମଧ୍ୟ ସୃଷ୍ଟି କରିଛନ୍ତି ଯାହା ତୁମେମାନେ ଗଢୁଛ । ୯୭. ସେମାନେ (ନିଜନିଜ ଭିତରେ) କଥାବାର୍ତ୍ତା ହେଲେ, "ତା' ପାଇଁ ଗୋଟିଏ ଅଗ୍ନିକୁଣ୍ଡ ପ୍ରସ୍ତୁତ କର ଏବଂ ତାକୁ ଜଳନ୍ତା ନିଆଁରେ ପକାଇ ଦିଅ ।" ୯୮. ସେମାନେ ତାଙ୍କ ବିରୁଦ୍ଧରେ ଏକ ଯୋଜନା ପ୍ରସ୍ତୁତ କରିଥିଲେ ମାତ୍ର ଆମ୍ଭେ ସେମାନଙ୍କୁ ଅପମାନିତ କଲୁ ।

୯୯. (ନିଆଁରୁ ମୁକ୍ତି ପାଇବା ପରେ) ସେ କହିଲେ, "ମୁଁ ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ବାହାରିଲି । ସେ ନିଶ୍ଚୟ ମୋତେ ବାଟ ଦେଖାଇବେ ।" ୧୦୦. (ଏବଂ ପ୍ରାର୍ଥନା କଲେ) "ହେ ପାଳନକର୍ତ୍ତା ! ମାତେ ପୁଣ୍ୟବାନ ପୁତ୍ରଟିଏ ଦିଅ ।" ୧୦୧. ତେଣୁ, ଆମ୍ଭେ ତାଙ୍କୁ ଶୁଭ ସମାଚାର ଦେଲୁ ଯେ ସେ ଜଣେ ସହିଷ୍ଣୁ ପୁତ୍ରସନ୍ତାନ ଲାଭ କରିବେ । ୧୦୨. ତା'ପରେ ଯେତେବେଳେ ସେହି ବାଳକ ତାଙ୍କ ସହିତ ଚଲାବୁଲା କରିବା ବୟସରେ ପହଁଚିଲା, ଇବ୍ରାହିମ୍ ଦିନେ ତାକୁ କହିଲେ, "ହେ ପୁତ୍ର ! ମୁଁ ସ୍ୱପ୍ନରେ ତୋତେ ବଳି ଦେଉଥିବାର ଦେଖିଲି । ତେଣୁ, ତୋ'ର ମତ କ'ଣ ।" ପୁତ୍ର ଉତ୍ତର ଦେଲା, "ବାପା ! ଆପଣଙ୍କୁ ଯାହା କରିବାର ନିର୍ଦ୍ଦେଶ ମିଳିଛି ଆପଣ ତାହାହିଁ କରନ୍ତୁ । ଅଲ୍ଲାହ୍ ଚାହିଁଲେ ଆପଣ ମୋତେ ଜଣେ ଧୈର୍ଯ୍ୟବାନ ପୁତ୍ର ରୂପେ ଦେଖିବେ ।" ୧୦୩. ସୁତରାଂ, ଯେତେବେଳେ ସେ

ଦୁହେଁ ନିଜକୁ ସମର୍ପିତ କରିଦେଲେ ଏବଂ ଇବ୍ରାହିମ୍ ତାକୁ (ବଳି ଦେବାପାଇଁ) ତଳମୁହାଁ କରି ଶୁଆଇ ଦେଲେ, ୧୦୪. ଆମ୍ଭେ ଡାକିଲୁ, "ହେ ଇବ୍ରାହିମ୍! ୧୦୫. ତୁମେ ସ୍ୱପ୍ନକୁ ସତ୍ୟରେ ପରିଣତ କରିଛ ।" ଆମ୍ଭେ ପୁଣ୍ୟବାନ ଲୋକଙ୍କୁ ଏଇଭଳି ପୁରସ୍କାର ଦେଇଥାଉ ।

୧୦୬. ଏହା ସ୍ପଷ୍ଟ ରୂପେ ତାଙ୍କର ଏକ ପରୀକ୍ଷା ଥିଲା । ୧୦୭. ଆମ୍ଭେ ଏକ ବଡ଼ ବଳି ବଦଳରେ ତାକୁ ମୁକ୍ତ କରିଦେଲୁ, ୧୦୮. ଏବଂ ପରବର୍ତ୍ତୀ ବଂଶଧରମାନଙ୍କ ମଧ୍ୟରେ ତାଙ୍କର ସୁନାମ ବଜାଏ ରଖିଲୁ । ୧୦୯. ଇବ୍ରାହିମଙ୍କର ମଂଗଳ ହେଉ । ୧୧୦. ପୁଣ୍ୟବାନ ଲୋକମାନଙ୍କୁ ଆମ୍ଭେ ଏଇଭଳି ପୁରସ୍କାର ଦେଇଥାଉ । ୧୧୧. ସେ ଆମ୍ଭର ଜଣେ ସଦ୍‌ବିଶ୍ୱାସୀ ଭକ୍ତ ଥିଲେ । ୧୧୨. ପୁଣି ଆମ୍ଭେ ତାଙ୍କୁ ଇସହାକ୍ ନାମକ ପୁତ୍ରର ଶୁଭ ଖବର ଦେଲୁ ଯେ ସେ ଜଣେ ବାର୍ତ୍ତାବହ ହେବେ ଏବଂ ପୁଣ୍ୟବାନ ହେବେ । ୧୧୩. ଆମ୍ଭେ ତାଙ୍କୁ ଏବଂ ଇସ୍‌ହାକଙ୍କୁ ଶୁଭାଶିଷ ପ୍ରଦାନ କଲୁ । ସେମାନଙ୍କ ବଂଶଧରମାନଙ୍କ ମଧ୍ୟରୁ କିଛି ଲୋକ ସଦାଚାରୀ ହେଲେ ଏବଂ ଆଉ କିଛି ଲୋକ ଖୋଲାଖୋଲି ଭାବରେ ନିଜ ପ୍ରତି ଅନ୍ୟାୟ କଲେ ।

୧୧୪. ଆମ୍ଭେ ମୁ'ସା ଓ ହାରୁନଙ୍କ ପ୍ରତି ମଧ୍ୟ ଅନୁଗ୍ରହ କଲୁ । ୧୧୫. ଆମ୍ଭେ ସେମାନଙ୍କୁ ଓ ସେମାନଙ୍କ ସମ୍ପ୍ରଦାୟକୁ ଏକ ବଡ଼ ବିପଦରୁ ଉଦ୍ଧାର କଲୁ, ୧୧୬. ଏବଂ ସେମାନଙ୍କୁ ସାହାଯ୍ୟ କଲୁ ଯାହାଫଳରେ ସେମାନେ ବିଜୟୀ ହେଲେ । ୧୧୭. ଆମ୍ଭେ ସେ ଦୁହିଁଙ୍କୁ ପ୍ରାଂଜଳ ଭାବରେ ବର୍ଣ୍ଣନା କରୁଥିବା ଗ୍ରନ୍ଥ ଦେଲୁ, ୧୧୮. ସେମାନଙ୍କୁ ସତ୍‌ମାର୍ଗରେ ପରିଚାଳିତ କଲୁ ୧୧୯. ଏବଂ ପରବର୍ତ୍ତୀ ସମାଜରେ ସେମାନଙ୍କର ସୁନାମ ବଜାଏ ରଖିଲୁ । ୧୨୦. ମୁ'ସା ଓ ହାରୁନଙ୍କର ମଂଗଳ ହେଉ । ୧୨୧. ପୁଣ୍ୟବାନ ଲୋକଙ୍କୁ ଆମ୍ଭେ ଏଇଭଳି ପୁରସ୍କାର ଦେଉ । ୧୨୨. ସେ ଦୁହେଁ ଆମ୍ଭର ସଦ୍‌ବିଶ୍ୱାସୀ ଭକ୍ତ ଥିଲେ ।

୧୨୩. ଇଲିୟାସ୍ ମଧ୍ୟ ଆମ୍ଭର ଜଣେ ରସୁଲ୍ ଥିଲେ । ୧୨୪. ସେ ତାଙ୍କ ସଂପ୍ରଦାୟର ଲୋକମାନଙ୍କୁ କହିଲେ, "କ'ଣ ତୁମେମାନେ (ଅଲ୍ଲାହଙ୍କୁ) ଭୟ କରିବନାହଁ? ୧୨୫. କ'ଣ ତୁମେମାନେ ବାଲ୍‌କୁ ଡାକିବ ଏବଂ ସର୍ବୋତ୍ତମ

ସ୍ରଷ୍ଟାଙ୍କୁ ଛାଡ଼ିଦେବ ? ୧୨୬. ସେହି ଅଲ୍ଲାହ୍‌ଙ୍କୁ, ଯିଏ ତୁମମାନଙ୍କର ଏବଂ ତୁମ ପୂର୍ବପୁରୁଷମାନଙ୍କର ପ୍ରତିପାଳକ ?” ୧୨୭. ମାତ୍ର ସେମାନେ ତାଙ୍କୁ ମିଥ୍ୟାବାଦୀ ବୋଲି କହିଲେ । ତେଣୁ ସେମାନଙ୍କୁ (ଅପରାଧୀ ରୂପେ) ଅବଶ୍ୟ ହାଜର କରାଯିବ । ୧୨୮. କେବଳ ଅଲ୍ଲାହଙ୍କର ନିଷ୍ଠାପର ଭକ୍ତମାନେ ସୁରକ୍ଷିତ ରହିବେ । ୧୨୯. ଆମ୍ଭେ ପରବର୍ତ୍ତୀ ବଂଶଧରମାନଙ୍କ ମଧ୍ୟରେ ସେମାନଙ୍କର ସୁନାମ ବଜାଏ ରଖିଲୁ । ୧୩୦. ଇଲିୟାସଙ୍କର ମଙ୍ଗଳ ହେଉ । ୧୩୧. ପୁଣ୍ୟବାନ ଲୋକମାନଙ୍କୁ ଆମ୍ଭେ ଏଇଭଳି ପୁରସ୍କାର ଦେଇଥାଉ । ୧୩୨. ବାସ୍ତବରେ ସେ ଆମ୍ଭର ଜଣେ ସଦ୍‌ବିଶ୍ୱାସୀ ଭକ୍ତ ଥିଲେ ।

୧୩୩. ଲୁତ୍ ମଧ୍ୟ ଆମ୍ଭର ଜଣେ ବାର୍ତ୍ତାବହ ଥିଲେ । ୧୩୪. ଆମ୍ଭେ ତାଙ୍କୁ ଓ ତାଙ୍କ ପରିବାରର ସମସ୍ତଙ୍କୁ ଉଦ୍ଧାର କରିଥିଲୁ, ୧୩୫. ମାତ୍ର ଜଣେ ବୃଦ୍ଧା (ଅର୍ଥାତ୍ ତାଙ୍କ ପତ୍ନୀ ଦୁରାଚାରୀମାନଙ୍କ ସହିତ) ରହିଗଲା । ୧୩୬. ଅନ୍ୟମାନଙ୍କୁ ଆମ୍ଭେ ବିନାଶ କରିଦେଲୁ । ୧୩୭. ତୁମେମାନେ ସେମାନଙ୍କ (ଧ୍ୱଂସପ୍ରାପ୍ତ ଗାଁ) ବାଟ ଦେଇ ଦିନରେ ମଧ୍ୟ ଯାତାୟାତ କର, ୧୩୮. ଏବଂ ରାତିରେ ମଧ୍ୟ । କ'ଣ ତଥାପି ବୁଝି ପାରୁନାହଁ ?

୧୩୯. ୟୁନୁସ୍ ମଧ୍ୟ ଆମ୍ଭର ଜଣେ ବାର୍ତ୍ତାବହ ଥିଲେ । ୧୪୦ ଯେତେବେଳେ ସେ ପଳାୟନ କରି ବୋଝରେ ପୂର୍ଣ୍ଣ ହୋଇ ଯାଇଥିବା ଏକ ନୌକାରେ ଯାଇ ବସିଥିଲେ, ୧୪୧. ଏବଂ ଧର୍ମଗୁଳା ପଡ଼ିବାରୁ ସେ ହାରି ଯାଇଥିଲେ । ୧୪୨. ତା'ପରେ ଏକ ବଡ଼ ମାଛ ତାଙ୍କୁ ଗିଳିଦେଲା ଏବଂ ସେ ନିଜକୁ ଭର୍ତ୍ସନା କଲେ । ୧୪୩. ଯଦି ସେ ଅଲ୍ଲାହଙ୍କ ନାମ ସ୍ମରଣ କରି ନଥାଆନ୍ତେ, ୧୪୪. ତେବେ ପ୍ରଳୟ ଦିନ ପର୍ଯ୍ୟନ୍ତ ମାଛ ପେଟରେ ରହିଥାଆନ୍ତେ । ୧୪୫. ପୁଣି ତାଙ୍କୁ ଅସୁସ୍ଥ ଅବସ୍ଥାରେ ଆମ୍ଭେ ଏକ ବିସ୍ତୀର୍ଣ୍ଣ ବେଳାଭୂମୀରେ ପକାଇଦେଲୁ, ୧୪୬. ଏବଂ ତାଙ୍କ ଉପରେ (ଛାଇ କରିବା ପାଇଁ) ଗୋଟିଏ ଲାଉ ଗଛ ଉତ୍ପନ୍ନ କରିଦେଲୁ । ୧୪୭. ଆମ୍ଭେ ତାଙ୍କୁ ଲକ୍ଷାଧିକ ଲୋକଙ୍କ ପାଖକୁ ନିଜର ବାର୍ତ୍ତାବହ କରି ପଠାଇଥିଲୁ । ୧୪୮. ସେମାନେ (ତାଙ୍କୁ) ମାନିନେଲେ । ତେଣୁ, ଆମ୍ଭେ ସେମାନଙ୍କୁ କିଛିକାଳ (ସଂସାରର) ସୁଖ ଭୋଗ କରିବାର ସୁଯୋଗ ଦେଲୁ ।

୧୪୯. (ହେ ବାର୍ତ୍ତାବହ!) ଏମାନଙ୍କୁ ପଚାର, "କ'ଣ ତୁମ ଈଶ୍ୱରଙ୍କ ଭାଗରେ କେବଳ କନ୍ୟା ସନ୍ତାନ ଆସିଲେ ଆଉ ତୁମମାନଙ୍କ ଭାଗରେ ପୁତ୍ର?" ୧୫୦. କିମ୍ବା କ'ଣ ଆମ୍ଭେ ଦେବଦୂତମାନଙ୍କୁ ନାରୀ ରୂପେ ଗଢ଼ିଛୁ? ଆମ୍ଭେ ଗଢ଼ିବା ବେଳେ କ'ଣ ଏମାନେ ଦେଖୁଥିଲେ? ୧୫୧. ସାବଧାନ! ଏମାନେ କେବଳ ନିଜ ମନରୁ ଗଢ଼ି ଏହା କହୁଛନ୍ତି, ୧୫୨. ଯେ ଅଲ୍ଲାହଙ୍କର ସନ୍ତାନ ଅଛନ୍ତି। ପ୍ରକୃତରେ ସେମାନେ ମିଛ କହୁଛନ୍ତି। ୧୫୩. (ସେମାନଙ୍କୁ ପଚାର) "କ'ଣ ସେ ଝିଅଙ୍କ ତୁଳନାରେ ପୁଅଙ୍କୁ ଅଧିକ ପସନ୍ଦ କରନ୍ତି? ୧୫୪. ତୁମମାନଙ୍କର କ'ଣ ହୋଇଛି? କିଭଳି ବିଚାର କରୁଛ? ୧୫୫. କ'ଣ ତୁମେମାନେ କିଛି ବୁଝି ପାରୁନାହଁ? ୧୫୬. କିମ୍ବା କ'ଣ ତୁମମାନଙ୍କ ପାଖରେ ଏହାର କୌଣସି ସ୍ପଷ୍ଟ ପ୍ରମାଣ ଅଛି? ୧୫୭. ଯଦି ତୁମେମାନେ ସତ୍ୟବାଦୀ, ତେବେ ତୁମର ଗ୍ରନ୍ଥ ଆଣି ଦେଖାଅ।"

୧୫୮. ଏମାନେ ଜିନ୍‌ମାନଙ୍କ ସହିତ ମଧ୍ୟ ଅଲ୍ଲାହଙ୍କର ଜ୍ଞାତି-କୁଟୁମ୍ବର ସମ୍ପର୍କ ଗଢ଼ିଦେଲେ। ଅଥଚ ଜିନ୍‌ମାନେ ଏହା ଜାଣନ୍ତି ଯେ ସେମାନଙ୍କୁ (ଅଲ୍ଲାହଙ୍କ ସମ୍ମୁଖରେ) ହାଜର କରାଯିବ। ୧୫୯. ସେମାନେ (ତାଙ୍କ ପ୍ରତି) ଯେଉଁ ଆରୋପ କରୁଛନ୍ତି ତାହା ସହିତ ଅଲ୍ଲାହଙ୍କର କୌଣସି ସମ୍ପର୍କ ନାହିଁ। ୧୬୦. ମାତ୍ର ଅଲ୍ଲାହଙ୍କର ନିଷ୍ଠାପର ସେବକମାନେ (ଏହି ପାପ କରନ୍ତିନାହିଁ)। ୧୬୧. ତୁମେ ବା ତୁମମାନଙ୍କର ଏହି ଆରାଧ୍ୟମାନେ, ୧୬୨. ଅଲ୍ଲାହଙ୍କ ବିଷୟରେ କାହାରିକୁ ବିଭ୍ରାନ୍ତ କରି ପାରିବନାହିଁ। ୧୬୩. ହଁ, କେବଳ ସେହି ଲୋକକୁ ବିଭ୍ରାନ୍ତ କରିପାରିବେ, ଯିଏ ନର୍କବାସୀ ହେବ।

୧୬୪. (ଦେବଦୂତମାନେ କହନ୍ତି) "ଆମମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କ ପାଇଁ ଜାଗା ସ୍ଥିର ହୋଇ ରହିଛି। ୧୬୫. ଆମେମାନେ (ସେଠାରେ) ଧାଡ଼ି ବାନ୍ଧି ଛିଡ଼ା ହୋଇଥାଉ। ୧୬୬. ଏବଂ ତାଙ୍କର ଗୁଣଗାନ କରୁଥାଉ।"

୧୬୭. (ନାସ୍ତିକମାନେ) ପୂର୍ବରୁ କହୁଥିଲେ, ୧୬୮. "ଯଦି ଆମ ପାଖରେ ଆମ ପୂର୍ବଜମାନଙ୍କର କୌଣସି ଗ୍ରନ୍ଥ ଥାଆନ୍ତା, ୧୬୯. ତେବେ ଆମେ ମଧ୍ୟ ଅଲ୍ଲାହଙ୍କର ନିଷ୍ଠାପର ଭକ୍ତ ହୋଇଥାଆନ୍ତୁ।" ୧୭୦. ଏବେ କିନ୍ତୁ ସେମାନେ

ଏହାକୁ ଅସ୍ୱୀକାର କରୁଛନ୍ତି । ଖୁବ୍ ଶୀଘ୍ର ସେମାନେ (ଏହାର ପରିଣାମ) ଜାଣିଯିବେ । ୧୭୧. ଆମ୍ଭର ବାର୍ତ୍ତା ଦେଉଥିବା ଭକ୍ତମାନଙ୍କ ବିଷୟରେ ଆମ୍ଭେ ପୂର୍ବରୁ ନିଷ୍ପତ୍ତି କରି ସାରିଛୁ – ୧୭୨. ଯେ ସେମାନଙ୍କୁ ନିଶ୍ଚୟ ସାହାଯ୍ୟ କରାଯିବ । ୧୭୩. ଏବଂ ଆମ୍ଭରି ସେନାହିଁ ବିଜୟୀ ହେବ । ୧୭୪. ତେଣୁ (ହେ ବାର୍ତ୍ତାବହ !) ସେମାନଙ୍କୁ କିଛି ସମୟ ପାଇଁ ଛାଡ଼ିଦିଅ । ୧୭୫. ଏବଂ (କ'ଣ ହେଉଛି) ଦେଖୁଥାଅ । ସେମାନେ ମଧ୍ୟ ଖୁବ୍ ଶୀଘ୍ର (ପରିଣାମ) ଦେଖିବେ ।

୧୭୬. କ'ଣ ଏମାନେ ଆମ୍ଭର ଶାସ୍ତି ଭୋଗିବାକୁ ଉଚ୍ଛନ୍ନ ହେଉଛନ୍ତି ? ୧୭୭. ଯେଉଁମାନଙ୍କୁ ସାବଧାନ କରା ଯାଇଥିଲା, ଯେତେବେଳେ ସେମାନଙ୍କ ଘରେ ଦୈବୀବିପତ୍ତି ପଡ଼ିବ ସେମାନଙ୍କ ପାଇଁ ଏହା ଏକ ଅଶୁଭ ଦିନ ହେବ । ୧୭୮. ସେମାନଙ୍କୁ କିଛି ସମୟ ପାଇଁ ଛାଡ଼ିଦିଅ । ୧୭୯. ଏବଂ (କ'ଣ ହେଉଛି) ଦେଖୁଥାଅ । ସେମାନେ ମଧ୍ୟ ଖୁବ୍ ଶୀଘ୍ର (ପରିଣାମ) ଦେଖିବେ ।

୧୮୦. ସକଳ ଗୌରବର ଅଧିକାରୀ ତୁମ ପାଳନକର୍ତ୍ତା ସେହି ଆରୋପରୁ ପବିତ୍ର ଯାହା ସେମାନେ ତାଙ୍କ ପ୍ରତି କରୁଛନ୍ତି । ୧୮୧. ବାର୍ତ୍ତାବହମାନଙ୍କର ମଙ୍ଗଳ ହେଉ । ୧୮୨. ସମସ୍ତ ପ୍ରଶଂସା ଅଲ୍ଲାହଙ୍କ ପାଇଁ ଯିଏ ସାରା ଜଗତର ପାଳନକର୍ତ୍ତା ।

## ଅଧ୍ୟାୟ ୩୮ , ଅସ୍ ସ୍ୱାଦ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ସ୍ୱା'ଦ୍ । ସଦୁପଦେଶରେ ପରିପୂର୍ଣ୍ଣ କୁରଆନ୍‌ର ରାଣ ! ୨. ଯେଉଁମାନେ ନାସ୍ତିକ ହେଲେ, ସେମାନେ କେବଳ ନିଜର ଜିଦ୍ ଓ ଅହଙ୍କାର ଯୋଗୁଁ ହେଲେ । ୩. ସେମାନଙ୍କ ପୂର୍ବରୁ ଆମ୍ଭେ ଅନେକ ସମାଜ ଧ୍ୱଂସ କରିଦେଇଛୁ । ସେମାନେ ଗୁହାରୀ କରିଥିଲେ କିନ୍ତୁ ସେହି ସମୟ ଛାଡ଼ିଦେବାର ନଥିଲା ।

୪. ଏମାନେ ଆଶ୍ଚର୍ଯ୍ୟ ହେଉଛନ୍ତି ଯେ ଏମାନଙ୍କ ସଂପ୍ରଦାୟରେ କିପରି ଜଣେ ମାର୍ଗଦର୍ଶକଙ୍କର ଆବିର୍ଭାବ ହେଲା । ତେଣୁ, ନାସ୍ତିକମାନେ କହିଲେ ଯେ ଏହି ବ୍ୟକ୍ତି ଜଣକ ମିଛୁଆ ଯାଦୁକର । ୫. ସେ ସବୁ ଈଶ୍ୱରମାନଙ୍କୁ ନେଇ ଜଣେ ଈଶ୍ୱର

କରିଦେଲା ! ଏହାତ ବଡ଼ ବିଚିତ୍ର କଥା ! ୬. ସେମାନଙ୍କ ସର୍ଦ୍ଦାରମାନେ ଏହା କହି ଯିବାପାଇଁ ଉଠିପଡ଼ିଲେ, "ଚାଲ ଯିବା । ତୁମେମାନେ ନିଜ ଦେବାଦେବୀଙ୍କ ସେବାରେ ଅଟଳ ରହିଥାଅ । ଏଥିରେ ନିଶ୍ଚୟ କିଛି ଅଭିସନ୍ଧି ଅଛି । ୭. ଏଭଳି କଥା ଆମ ପୂର୍ବଜଙ୍କ ଧର୍ମରେ ଥିବାର ଆମେମାନେ ଆଦୌ ଶୁଣିନାହୁଁ ? ଏହା କେବଳ ମନଗଢ଼ା କଥା । ୮. କ'ଣ ଆମେ ଏତେ ଲୋକ ଥାଉଥାଉ ଏହି ଲୋକ ପାଖକୁ ଦିବ୍ୟଗ୍ରନ୍ଥ ଆସିଲା ?" ପ୍ରକୃତରେ ଏମାନେ ମୋ' ଗ୍ରନ୍ଥ ବିଷୟରେ ସନ୍ଦେହରେ ପଡ଼ିଛନ୍ତି ଏବଂ ଏପର୍ଯ୍ୟନ୍ତ ମୋ' ଶାସ୍ତିର ମଜା ଚାଖିନାହାନ୍ତି । ୯. ପ୍ରବଳ ପରାକ୍ରମୀ ଏବଂ ମହାନ ଦାତା ତୁମ ପାଳନକର୍ତ୍ତାଙ୍କର କୃପାର ଭଣ୍ଡାର କ'ଣ ସେଇମାନଙ୍କ ଅଧୀନରେ ଅଛି ? ୧୦. ଅଥବା ପୃଥିବୀ ଓ ଆକାଶ ଏବଂ ସେଗୁଡ଼ିକରେ ଥିବା ଜୀବଜଡ଼ମାନଙ୍କ ଉପରେ କ'ଣ ସେଇମାନଙ୍କର ଶାସନ ଚାଲେ ? ତା'ହେଲେ ସେମାନେ କୌଣସି ପ୍ରକାରରେ ଆକାଶରେ ଚଢ଼ିଯାଆନ୍ତୁ ।

୧୧. ଏହା ଅନ୍ୟ ଦଳଗୁଡ଼ିକ ପରି ଏକ ଦଳ ଯାହା ଏହିଠାରେ ପରାଜିତ ହେବ । ୧୨. ଏମାନଙ୍କ ପୂର୍ବରୁ ନୁହଙ୍କ ସଂପ୍ରଦାୟ, ଆଦ୍ ସଂପ୍ରଦାୟ ଏବଂ (କିଲା ଦ୍ୱାରା ଦଣ୍ଡ ଦେଉଥିବା) ଦୁର୍ଦ୍ଦାନ୍ତ ଫିରଔନର ସଂପ୍ରଦାୟ ମଧ୍ୟ (ସେମାନଙ୍କ ବାର୍ତ୍ତାବହମାନଙ୍କୁ) ପ୍ରତ୍ୟାଖ୍ୟାନ କରିଥିଲେ, ୧୩. ଏବଂ ସମୁଦ୍ ସଂପ୍ରଦାୟ, ଲୁତ୍ଙ୍କ ସଂପ୍ରଦାୟ ଏବଂ ଐକାବାସୀମାନେ ମଧ୍ୟ । ଏହିମାନେ ସମସ୍ତେ ସେହି ଦଳ । ୧୪. ସେମାନେ ସମସ୍ତେ ମୋ' ବାର୍ତ୍ତାବହମାନଙ୍କୁ ମିଥ୍ୟାବାଦୀ କହିଥିଲେ । ତେଣୁ ସେମାନଙ୍କ ପ୍ରତି ମୋ'ର ଶାସ୍ତି ଯଥାର୍ଥ ଥିଲା । ୧୫. ଏମାନେ ମଧ୍ୟ ଏକ ପ୍ରଚଣ୍ଡ ଶବ୍ଦକୁ ଅପେକ୍ଷା କରିଛନ୍ତି ଯାହାପରେ (ପ୍ରଳୟରେ) କୌଣସି ବିଳମ୍ବ ହେବନାହିଁ । ୧୬.ଏମାନେ କହୁଛନ୍ତି ଯେ ହେ ପ୍ରଭୁ ! ବିଚାର ଦିନ ପୂର୍ବରୁ ଆମ ଭାଗର ଦଣ୍ଡ ଆମକୁ ଶୀଘ୍ର ଦେଇଦିଅ ।

୧୭. ସେମାନଙ୍କ କଥା ସହିଯାଅ ଏବଂ ସେମାନଙ୍କୁ ଆମ୍ଭ ଭକ୍ତ ଦାଉଦଙ୍କ (ଅର୍ଥାତ୍ ଡେଭିଡ୍ଙ୍କ) କଥା ଶୁଣାଅ ଯିଏ ଖୁବ୍ ବଳଶାଳୀ ଥିଲେ ଏବଂ ଆମ୍ଭଠାରେ ସର୍ବଦା ଲୟ ରଖୁଥିଲେ । ୧୮. ଆମ୍ଭେ ପାହାଡ଼ଗୁଡ଼ିକୁ ତାଙ୍କର ବଶବର୍ତ୍ତୀ କରିଥିଲୁ ଯାହାଫଳରେ ସେଗୁଡ଼ିକ ସକାଳେ ଏବଂ ସନ୍ଧ୍ୟାରେ ତାଙ୍କ ସହିତ ମିଶି ଆମ୍ଭର

ଗୁଣଗାନ କରୁଥିଲେ, ୧୯. ଏବଂ ପକ୍ଷୀମାନେ ମଧ୍ୟ ଏକାଠି ହେଉଥିଲେ ଏବଂ ସମସ୍ତେ ମିଶି (ଅଲ୍ଲାହଙ୍କର) ଗୁଣଗାନ କରିବାରେ ମଗ୍ନ ହୋଇ ଯାଉଥିଲେ । ୨୦. ଆମ୍ଭେ ତାଙ୍କ ସାମ୍ରାଜ୍ୟକୁ ସୁଦୃଢ଼ କରିଥିଲୁ, ତାଙ୍କୁ ବୁଦ୍ଧିମତା ପ୍ରଦାନ କରିଥିଲୁ ଏବଂ ନିଷ୍ପତ୍ତି କରିବାର କଳା ଶିଖାଇଥିଲୁ ।

୨୧. କ'ଣ ତୁମେ ସେହି କଳହ କରୁଥିବା ଲୋକମାନଙ୍କର ଖବର ଶୁଣିଛ ଯେଉଁମାନେ କାନ୍ଥ ଡେଇଁ (ଦାଉଦଙ୍କ) ପ୍ରାର୍ଥନା କକ୍ଷ ଭିତରକୁ ପଶି ଆସିଥିଲେ ? ୨୨. ଯେତେବେଳେ ସେମାନେ ଦାଉଦ୍‌ଙ୍କ ପାଖରେ ପହଁଚିଲେ, ସେ (ହଠାତ୍) ସେମାନଙ୍କୁ ଦେଖି ଡରିଗଲେ । ସେମାନେ ତାଙ୍କୁ କହିଲେ, "ଭୟ କରନ୍ତୁନାହିଁ । ଆମ ଦୁହିଁଙ୍କ ମଧ୍ୟରେ ଗୋଟିଏ ବିବାଦ ଅଛି । ଆମ ମଧ୍ୟରୁ ଜଣେ ଅନ୍ୟ ପ୍ରତି ଅନ୍ୟାୟ କରିଛି । ଆପଣ ଆମମାନଙ୍କ ମଧ୍ୟରେ ଉଚିତ ନିଷ୍ପତ୍ତି କରିଦିଅନ୍ତୁ ଏବଂ ଅବିଚାର କରନ୍ତୁ ନାହିଁ । ଆମକୁ ଠିକ୍ ବାଟ ଦେଖାଇଦିଅନ୍ତୁ । ୨୩. ଏହି ଲୋକଟି ହେଉଛି ମୋ' ଭାଇ ଯାହା ପାଖରେ ଅନେଶ୍ୱତଟି ମେଣ୍ଢା ଅଛନ୍ତି କିନ୍ତୁ ମୋ' ପାଖରେ କେବଳ ଗୋଟିଏ ମେଣ୍ଢା ଅଛି । ତଥାପି ସେ କହୁଛି ଯେ ସେଇଟିକୁ ମଧ୍ୟ ମୋତେ ଦେଇ ଦେ ଏବଂ କଥା କହିବାରେ ସେ ମୋତେ ବଳି ଯାଉଛି । ୨୪. ଦାଉଦ ଉତ୍ତର ଦେଲେ, "ସେ ତୁମ ମେଣ୍ଢାଟିକୁ ନେଇ ନିଜ ମେଣ୍ଢା ସହିତ ମିଶାଇବାକୁ କହି ତୁମ ପ୍ରତି ଅନ୍ୟାୟ କରୁଛି । ଅଧିକାଂଶ ଭାଗୀଦାର ପରସ୍ପର ପ୍ରତି ଅନ୍ୟାୟ କରିଥାଆନ୍ତି । ହଁ, ଯେଉଁମାନେ (ଅଲ୍ଲାହଙ୍କୁ) ବିଶ୍ୱାସ କରନ୍ତି ଏବଂ ଭଲ କର୍ମ କରନ୍ତି, କେବଳ ସେହିମାନେ (ଏଭଳି ପାପରୁ) ସୁରକ୍ଷିତ ରହନ୍ତି ମାତ୍ର ଏଭଳି ଲୋକ ବହୁତ କମ୍ ଥାଆନ୍ତି ।" ଦାଉଦ୍ ବୁଝିଗଲେ ଯେ ଆମ୍ଭେ ତାଙ୍କର ପରୀକ୍ଷା ନେଲୁ । ତେଣୁ ସେ ନିଜ ପ୍ରଭୁଙ୍କଠାରୁ କ୍ଷମା ମାଗିଲେ ଏବଂ ଅନୁତପ୍ତ ହୋଇ ଭୂମିଷ୍ଠ ପ୍ରଣାମ କଲେ ।[ପ୍ରଣାମ]

୨୫. ପୁଣି ଆମ୍ଭେ ତାଙ୍କର ସେହି ଦୋଷ କ୍ଷମା କରିଦେଲୁ । ସେ ଆମ୍ଭର ସାମିପ୍ୟ ଲାଭ କରିଛନ୍ତି ଏବଂ (ସ୍ୱର୍ଗରେ) ତାଙ୍କ ପାଇଁ ଖୁବ୍ ଭଲ ସ୍ଥାନ ଅଛି । ୨୬. (ଆମ୍ଭେ କହିଥିଲୁ) "ହେ ଦାଉଦ୍! ଆମ୍ଭେ ତୁମକୁ ଭୂପୃଷ୍ଠରେ ନିଜର ପ୍ରତିନିଧି ନିଯୁକ୍ତ କରିଛୁ । ତେଣୁ, ଲୋକଙ୍କ ମଧ୍ୟରେ ନ୍ୟାୟର ସହିତ ନିଷ୍ପତ୍ତି କର ଏବଂ

କାମନାର ବଶବର୍ତ୍ତୀ ହୁଅନାହିଁ । ଏହା ତୁମକୁ ଅଲ୍ଲାହଙ୍କ ମାର୍ଗରୁ ବିଚ୍ୟୁତ କରିଦେବ । ଯେଉଁମାନେ ଅଲ୍ଲାହଙ୍କ ମାର୍ଗରୁ ବିଚ୍ୟୁତ ହୁଅନ୍ତି, ସେମାନେ କଠୋର ଶାସ୍ତି ଭୋଗିବେ କାରଣ ସେମାନେ ବିଚାର ଦିନକୁ ଭୁଲିଗଲେ ।

୨୭. ପୃଥିବୀ ଓ ଆକାଶ ଏବଂ ସେଗୁଡ଼ିକ ମଧ୍ୟରେ ଯାହା ଅଛି, ଆମ୍ଭେ ସେଗୁଡ଼ିକୁ ଅଯଥାରେ ସୃଷ୍ଟି କରିନାହୁଁ । ଏହା କେବଳ ସେଇମାନଙ୍କର ଅନୁମାନ ଯେଉଁମାନେ ନାସ୍ତିକ । ନାସ୍ତିକମାନଙ୍କର ସର୍ବନାଶ ହେବ ଏବଂ ସେମାନେ ନର୍କଦଣ୍ଡ ଭୋଗିବେ । ୨୮. ଯେଉଁମାନେ (ଈଶ୍ୱର ଓ ଈଶ୍ୱରଦୂତଙ୍କୁ) ବିଶ୍ୱାସ କଲେ ଏବଂ ଭଲ କର୍ମ କଲେ, କ'ଣ ଆମ୍ଭେ ସେମାନଙ୍କୁ ଏଭଳି ଲୋକଙ୍କ ସହିତ ସମାନ କରିଦେବୁ ଯେଉଁମାନେ ଭୂପୃଷ୍ଠରେ ଅଶାନ୍ତି ସୃଷ୍ଟି କରନ୍ତି ? କିମ୍ବା କ'ଣ ଆମ୍ଭେ ସଦାଚାରୀମାନଙ୍କୁ ଦୁରାଚାରୀମାନଙ୍କ ସହ ସମାନ କରିଦେବୁ ? ୨୯. (ହେ ବାର୍ତ୍ତବହ !) ଏହି ଗ୍ରନ୍ଥଟି ଏକ ଶୁଭଗ୍ରନ୍ଥ ଯାହାକୁ ଆମ୍ଭେ ଏହି ଉଦ୍ଦେଶ୍ୟରେ ତୁମ ପାଖକୁ ପଠାଇଛୁ ଯେପରିକି ଲୋକମାନେ ଏହାର ବାଣୀଗୁଡ଼ିକ ଉପରେ ଭଲ ଭାବରେ ଚିନ୍ତା କରିବେ ଏବଂ ବୁଦ୍ଧିମାନ ଲୋକମାନେ ଏଥିରୁ ଶିକ୍ଷାଲାଭ କରିବେ ।

୩୦. ଆମ୍ଭେ ଦାଉଦଙ୍କୁ ସୁଲେମାନ (ନାମକ ପୁତ୍ର) ଦେଇଥିଲୁ ଯିଏ ଆମ୍ଭର ଜଣେ ଭଲ ଭକ୍ତ ଥିଲେ ଏବଂ ସର୍ବଦା ଆମ୍ଭଠାରେ ଲୟ ରଖୁଥିଲେ । ୩୧. ଦିନେ ଅପରାହ୍ନରେ ଯେତେବେଳେ ସୁଲେମାନଙ୍କ ପାଖକୁ କେତେକ ଉଚ୍ଚ ଜାତୀୟ ଦ୍ରୁତଗାମୀ ଅଶ୍ୱଙ୍କୁ ଅଣାଗଲା, ୩୨. ସେ କହିଲେ, "ମୁଁ ଏଭଳି ସମ୍ପଦକୁ ମୋ' ପ୍ରଭୁଙ୍କ ପ୍ରତି ଥିବା ମୋ'ର ପ୍ରେମ ଯୋଗୁଁ ଭଲପାଏ ।" ପୁଣି ସେମାନେ (ଅର୍ଥାତ୍ ଅଶ୍ୱମାନେ) ତାଙ୍କ ଦୃଷ୍ଟିରୁ ଅନ୍ତର୍ଦ୍ଧାନ ହୋଇଗଲେ । ୩୩. (ସେ ଆଦେଶ ଦେଲେ) "ସେମାନଙ୍କୁ ଆଉଥରେ ମୋ' ପାଖକୁ ଆଣ ।" ତା'ପରେ ସେ (ସ୍ନେହରେ) ସେମାନଙ୍କର ଗୋଡ଼ ଓ ବେକକୁ ଆଉଁସିବାକୁ ଲାଗିଲେ । ୩୪. ଆମ୍ଭେ ସୁଲେମାନଙ୍କର ମଧ୍ୟ ପରୀକ୍ଷା ନେଇଥିଲୁ ଏବଂ ତାଙ୍କ ସିଂହାସନ ଉପରେ ଏକ ନିର୍ଜୀବ ଶରୀର ପକାଇ ଦେଇଥିଲୁ । ତା'ପରେ ସେ ଅନୁତାପ କରିଥିଲେ । ୩୫. ଏବଂ ପ୍ରାର୍ଥନା କରିଥିଲେ, "ହେ ମୋ' ପାଳନକର୍ତ୍ତା ! ମୋତେ କ୍ଷମା କରିଦିଅ ଏବଂ ମୋତେ ଏଭଳି ସାମ୍ରାଜ୍ୟ ଦିଅ ଯାହା ମୋ' ପରେ ଅନ୍ୟ କାହାରିକୁ ନମିଳୁ । ତୁମେ ଅବଶ୍ୟ ପରମ ଦାତା ।

୩୬. ଆମ୍ଭେ ପବନକୁ ତାଙ୍କର ଅନୁଗତ କରି ଦେଇଥିଲୁ । ସେ ଯୁଆଡ଼େ ଇଚ୍ଛା କରୁଥିଲେ, ଏହା ତାଙ୍କ ନିର୍ଦ୍ଦେଶ ଅନୁଯାୟୀ ସେଇ ଆଡ଼କୁ ଧୀରେଧୀରେ ବହୁଥିଲା । ୩୭. ସେହିପରି ଆମ୍ଭେ ଜିନ୍‌ମାନଙ୍କୁ ମଧ୍ୟ ତାଙ୍କ ଅଧୀନରେ ରଖିଥିଲୁ, ଯେଉଁମାନଙ୍କ ମଧ୍ୟରେ ଅନେକ ସୁଦକ୍ଷ କାରିଗର ଏବଂ ବୁଡ଼ାଳି ଥିଲେ । ୩୮. କେତେକ ଜିନ୍‌ଙ୍କୁ ଜଂଜିରରେ ବାନ୍ଧି ରଖାଯାଉଥିଲା । ୩୯. (ଆମ୍ଭେ ତାଙ୍କୁ କହିଥିଲୁ) "ଏସବୁ ଆମ୍ଭର ଉପହାର । ତୁମେ ଏଥିରୁ କାହାକୁ ଦିଅ ବା ନଦିଅ, ତୁମକୁ ଏବିଷୟରେ କୌଣସି ପ୍ରଶ୍ନ କରାଯିବ ନାହିଁ ।" ୪୦. ସେ ଆମ୍ଭର ସାମିପ୍ୟ ଲାଭ କରିଛନ୍ତି ଏବଂ ତାଙ୍କର ରହିବା ଲାଗି (ସ୍ୱର୍ଗରେ) ସୁନ୍ଦର ବାସସ୍ଥାନ ଅଛି ।

୪୧. ଆମ୍ଭ ଭକ୍ତ ଅୟୁବଙ୍କ ବିଷୟରେ ଚର୍ଚ୍ଚା କର । ଥରେ ସେ ତାଙ୍କ ପ୍ରଭୁଙ୍କୁ (ଏହା କହି) ପ୍ରାର୍ଥନା କରିଥିଲେ ଯେ ଶଇତାନ ମୋତେ ବହୁତ ଦୁଃଖକଷ୍ଟ ଦେଉଛି । ୪୨. (ଆମ୍ଭେ ଉତ୍ତର ଦେଇଥିଲୁ) "ଭୂଇଁରେ ଗୋଇଠି ମାର । (ଝରଟିଏ ବାହାରିବ) । ଏହି ଥଣ୍ଡା ପାଣିକୁ ସ୍ନାନ କରିବା ଏବଂ ପିଇବା ପାଇଁ ବ୍ୟବହାର କର ।" ୪୩. ଆମ୍ଭେ ତାଙ୍କ ପରିଜନମାନଙ୍କୁ ତାଙ୍କ ପାଖକୁ ଫେରାଇ ଆଣିଲୁ ଏବଂ ନିଜ କୃପାରୁ ସେମାନଙ୍କର ସଂଖ୍ୟା ଦ୍ୱିଗୁଣ କରିଦେଲୁ, ଯେପରିକି ବୁଦ୍ଧିମାନମାନେ ଏଥିରୁ ଶିକ୍ଷାଲାଭ କରିବେ । ୪୪. (ଆମ୍ଭେ ତାଙ୍କୁ କହିଲୁ) "ହାତରେ ମୁଠାଏ ଖଡ଼ିକା ନେଇ ସେଥିରେ (ତୁମ ପତ୍ନୀଙ୍କୁ) ପ୍ରହାରଟିଏ କରିଦିଅ କିନ୍ତୁ ନିଜ ପ୍ରତିଜ୍ଞା ଭଙ୍ଗ କରନାହିଁ ।" ଆମ୍ଭେ ତାଙ୍କୁ ଭାରି ସହିଷ୍ଣୁ ଥିବାର ଦେଖିଲୁ । ସେ ଜଣେ ଭାରି ଭଲ ଭକ୍ତ ଥିଲେ ଏବଂ ଆମ୍ଭ ପ୍ରତି ସର୍ବଦା ଲୟ ରଖୁଥିଲେ ।

୪୫. ଆମ୍ଭର ଭକ୍ତ ଇବ୍ରାହିମ୍, ଇସହାକ୍ ଓ ୟାକୁବ୍‌ଙ୍କ ବିଷୟରେ ଚର୍ଚ୍ଚା କର । ସେମାନେ ସମସ୍ତେ କର୍ମନିଷ୍ଠ ଏବଂ ଦୂରଦର୍ଶୀ ଥିଲେ । ୪୬. ଆମ୍ଭେ ସେମାନଙ୍କୁ ଏହି ବିଶେଷ ଗୁଣ ଯୋଗୁଁ ପସନ୍ଦ କରିଥିଲୁ ଯେ ସେମାନେ ପରଲୋକ ବିଷୟରେ ସର୍ବଦା ସଚେତନ ରହୁଥିଲେ । ୪୭. ଏମାନେ ସମସ୍ତେ ଆମ୍ଭର ପସନ୍ଦଯୋଗ୍ୟ ଥିଲେ ଏବଂ ଉତ୍ତମ ପୁରୁଷ ଥିଲେ । ୪୮. ଇସମାଇଲ୍, ୟସଆ ଓ ଜୁଲ୍‌କିଫଲ୍‌ଙ୍କ ବିଷୟରେ ମଧ୍ୟ ବର୍ଣ୍ଣନା କର । ଏମାନେ ସମସ୍ତେ ଭାରି ଭଲ ଲୋକ ଥିଲେ ।

୪୯. ଏହା ଏକ ଉପଦେଶ । ସଦାଚାରୀ ଲୋକଙ୍କର ପରିଣାମ ନିଶ୍ଚୟ ଭଲ ହେବ । ୫୦. ସେମାନଙ୍କ ପାଇଁ ଶାଶ୍ୱତ ବୈକୁଣ୍ଠର ଦ୍ୱାର ଖୋଲି ଦିଆଯିବ,

୫୧. ଯେଉଁଠି ଆରାମଦାୟକ ଗଦିରେ ବସି ସେମାନେ ବିଭିନ୍ନ ପ୍ରକାରର ଫଳ ଓ ପାନୀୟ ମଗାଉଥିବେ। ୫୨. ସେମାନଙ୍କ ପାର୍ଶ୍ୱରେ ସମବୟସୀ ଲାଜକୁଳୀ ତରୁଣୀମାନେ ବସିଥିବେ। ୫୩. ତୁମମାନଙ୍କୁ କର୍ମଫଳ ପାଇବା ଦିନ ଏହିସବୁ ସୁଖସମ୍ଭୋଗ ମିଳିବ ବୋଲି ପ୍ରତିଶ୍ରୁତି ଦିଆଯାଉଛି। ୫୪. ଏହା ଆମ୍ଭର ଅନୁଗ୍ରହ ଯାହାର ଅନ୍ତ ନାହିଁ। ୫୫. ଏହା ସଦାଚରୀମାନଙ୍କ ପାଇଁ, କିନ୍ତୁ ଉଦ୍ଧତ ଲୋକମାନେ ନିଶ୍ଚୟ କୁପରିଣାମ ଭୋଗିବେ। ୫୬. ସେମାନେ ନର୍କକୁ ଯିବେ ଯାହା ଏକ କଦର୍ଯ୍ୟ ସ୍ଥାନ, ୫୭. ଯେଉଁଠି ସେମାନେ ଫୁଟନ୍ତା ପାଣି ଏବଂ ପୂଯର ସ୍ୱାଦ ଚାଖିବେ। ୫୮. ଏବଂ ଏହିଭଳି ଆହୁରି ଅନେକ ଶାସ୍ତି ଭୋଗିବେ।

୫୯. (ନର୍କବାସୀମାନେ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେବେ) "ତୁମମାନଙ୍କ ପାଖକୁ ଗୋଟିଏ ଭିଡ଼ ମାଡ଼ିଆସୁଛି। ଏହି ଲୋକମାନଙ୍କୁ ସ୍ୱାଗତ କରାଯିବ ନାହିଁ କାରଣ ଏମାନେ ନିଆଁରେ ଦଗ୍ଧ ହେବେ।" ୬୦. ସେମାନେ ଉତ୍ତର ଦେବେ, "ନା, ବରଂ ତୁମମାନଙ୍କୁ ସ୍ୱାଗତ କରାଯିବ ନାହିଁ। ତୁମମାନେ ତ ଆମର ଏଭଳି ଦୁର୍ଦ୍ଦଶା କରିଛ। ଏହା ଅତି କଦର୍ଯ୍ୟ ସ୍ଥାନ।" ୬୧. ପୁଣି ସେମାନେ ପ୍ରାର୍ଥନା କରିବେ, "ହେ ପ୍ରଭୁ! ଯିଏ ଆମମାନଙ୍କର ଏଭଳି ଦୁର୍ଦ୍ଦଶା କରିଛି, ତାକୁ ଦୁଇଗୁଣ ନର୍କଦଣ୍ଡ ଦିଅ।" ୬୨. ସେମାନେ କହିବେ, "କଥା କଣ? ଯେଉଁମାନଙ୍କୁ ଆମେ (ସଂସାରରେ) ଦୁଷ୍ଟ ଲୋକ ବୋଲି ଭାବୁଥିଲୁ, ସେମାନେ ତ ଏଠାରେ କାହିଁ ଦେଖା ଯାଉନାହାନ୍ତି? ୬୩. କ'ଣ ଆମେ ସେମାନଙ୍କୁ ବୃଥାରେ ବିଦ୍ରୂପ କରୁଥିଲୁ ଅଥବା ଆମ ଆଖି ସେମାନଙ୍କୁ ଦେଖି ପାରୁନାହିଁ?" ୬୪. ନର୍କବାସୀମାନଙ୍କ ମଧ୍ୟରେ ଏହି ବିବାଦ ହେବା ନିଶ୍ଚିତ।

୬୫. (ହେ ବାର୍ତ୍ତାବହ!) କହିଦିଅ, "ମୁଁ କେବଳ ସାବଧାନ କରିବାକୁ ଆସିଛି। ଅଲ୍ଲାହଙ୍କ ବ୍ୟତୀତ ଆଉ କେହି ଈଶ୍ୱର ନାହାନ୍ତି। ସେ ଅଦ୍ୱିତୀୟ ଓ ଅପ୍ରତିରୋଧ। ୬୬. ସେ ପୃଥିବୀ ଓ ଆକାଶ ଏବଂ ସେଗୁଡ଼ିକ ମଧ୍ୟରେ ଥିବା ସମସ୍ତ ସୃଷ୍ଟିର ମାଲିକ ଏବଂ ସେ ପ୍ରବଳ ପରାକ୍ରମୀ ଏବଂ ଅତ୍ୟନ୍ତ କ୍ଷମାଶୀଳ।" ୬୭. ସେମାନଙ୍କୁ କହିଦିଅ, "ଏହା ଅତି ମହତ୍ୱପୂର୍ଣ୍ଣ ବାର୍ତ୍ତା, ୬୮. ଯାହାକୁ ତୁମେମାନେ ଉପେକ୍ଷା କରୁଛ।"

୬୯. "ଦେବଲୋକରେ ହୋଇଥିବା ଯୁକ୍ତିତର୍କ ବିଷୟରେ ମୋତେ କିଛି ଜଣା ନଥିଲା । ୭୦. କେବଳ ଦୈବବାଣୀ ଦ୍ୱାରା ମୋତେ ଏହା ଜଣାଇ ଦିଆଯାଉଛି ଯେପରିକି ମୁଁ ପରିଷ୍କାର ଭାବରେ (ଲୋକଙ୍କୁ) ସାବଧାନ କରିବି । ୭୧. ଯେତେବେଳେ ତୁମ ପ୍ରଭୁ ଦେବଦୂତମାନଙ୍କୁ କହିଥିଲେ, "ମୁଁ ମାଟିରୁ ଏକ ମାନବ ସୃଷ୍ଟି କରିବାକୁ ଯାଉଛି । ୭୨. ଯେତେବେଳେ ମୁଁ ତାକୁ ସମ୍ପୂର୍ଣ୍ଣ ରୂପେ ଗଢ଼ିସାରି ତା'ମଧ୍ୟରେ ପ୍ରାଣ ସଂଚାର କରିବି, ତୁମେମାନେ ତାକୁ ଭୂମିଷ୍ଠ ପ୍ରାଣାମ କରିବ ।" ୭୩. ତେଣୁ, ସବୁ ଦେବଦୂତମାନେ ପ୍ରଣାମ କଲେ, ୭୪. କିନ୍ତୁ ଇବଲିସ୍ କଲାନାହିଁ । ସେ ନିଜକୁ ବଡ଼ ମନେ କଲା ଏବଂ ନାସ୍ତିକ ହୋଇଗଲା । ୭୫. (ଅଲ୍ଲାହ୍ କହିଲେ) "ହେ ଇବଲିସ୍ ! ଯାହାକୁ ମୁଁ ନିଜ ହାତରେ ଗଢ଼ିଲି ତାକୁ ପ୍ରଣାମ କରିବାରେ ତୋ'ର କି ଅସୁବିଧା ହେଲା ? କ'ଣ ତୁ ନିଜକୁ ବଡ଼ ମନେ କଲୁ ବା ଅତି ମହାନ ହୋଇଗଲୁ ?" ୭୬. ସେ ଉତ୍ତର ଦେଲା, "ମୁଁ ତା'ଠାରୁ ଶ୍ରେଷ୍ଠ । ତୁମେ ମୋତେ ନିଆଁରୁ ସୃଷ୍ଟି କରିଛ ମାତ୍ର ତାକୁ ମାଟିରୁ ।" ୭୭. (ଅଲ୍ଲାହ୍ କହିଲେ) "ତୁ ଏଠାରୁ ବାହାରି ଯା' । ତୋତେ ବହିଷ୍କାର କରାଗଲା । ୭୮. ବିଚାର ଦିନ ପର୍ଯ୍ୟନ୍ତ ତୋ' ଉପରେ ମୋ'ର ଅଭିଶାପ ରହିବ ।" ୭୯. ସେ କହିଲା, "ହେ ପ୍ରଭୁ ! ମୋତେ ପୁନର୍ଜୀବନ ପାଇବା ଦିନ ପର୍ଯ୍ୟନ୍ତ ସୁଯୋଗ ଦିଅ ।" ୮୦. ଅଲ୍ଲାହ୍ କହିଲେ, "ଅଚ୍ଛାହେଉ, ତୋତେ ସୁଯୋଗ ଦିଆଗଲା, ୮୧. ପ୍ରଳୟର ଦିନ ପର୍ଯ୍ୟନ୍ତ, ଯାହାର ସମୟ ସ୍ଥିର ହୋଇସାରିଛି ।" ୮୨. ସେ କହିଲା, "ତା'ହେଲେ, ତୁମ ପ୍ରତିଷ୍ଠାର ରାଣ ! ମୁଁ ସମସ୍ତଙ୍କୁ ବିଭ୍ରାନ୍ତ କରିବି, ୮୩. କେବଳ ତୁମର ନିଷ୍ଠାପର ଭକ୍ତମାନଙ୍କ ବ୍ୟତୀତ ।" ୮୪. ଅଲ୍ଲାହ୍ କହିଲେ, "ଏହା ସତ ଏବଂ ମୁଁ ମଧ୍ୟ ସତ କହୁଛି, ୮୫. ଯେ ମୁଁ ତୋତେ ଏବଂ ତୋ' ଅନୁଗାମୀଙ୍କୁ ନର୍କରେ ପୂରାଇ ଏହାକୁ ପୂର୍ଣ୍ଣ କରିବି ।"

୮୬. କହିଦିଅ, "ମୁଁ ଏଥିପାଇଁ ତୁମମାନଙ୍କଠାରୁ କୌଣସି ମୂଲ୍ୟ ମାଗୁନାହିଁ କିମ୍ବା ମୁଁ ଛଳନା କରୁନାହିଁ । ୮୭. ଏହା (ଅର୍ଥାତ୍ କୁରଆନ) ବିଶ୍ୱବାସୀଙ୍କ ପାଇଁ ଏକ ଉପଦେଶ । ୮୮. କିଛି ସମୟ ପରେ ତୁମେମାନେ ଏହାର ବାସ୍ତବିକତା ଜାଣିଯିବ ।"

## ଅଧ୍ୟାୟ ୩୯, ଅଜ୍ ଜୁମର୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଏହି ଗ୍ରନ୍ଥଟି ମହାଶକ୍ତିମାନ ଏବଂ ତତ୍ତ୍ୱଜ୍ଞାନୀ ଅଲ୍ଲାହ୍‌ଙ୍କ ଦ୍ୱାରା ପଠାଯାଇଛି । ୨. (ହେ ବାର୍ତ୍ତାବହ!) ଆମ୍ଭେ ଏହି ଗ୍ରନ୍ଥଟିକୁ ତୁମ ପାଖକୁ ଏକ ଉଚିତ ଲକ୍ଷ୍ୟରେ ପଠାଇଛୁ । ତେଣୁ, ଉପାସନାକୁ (ବହୁଈଶ୍ୱରବାଦରୁ) ସଂପୂର୍ଣ୍ଣ ରୂପେ ବିଶୁଦ୍ଧ କରି ଅଲ୍ଲାହ୍‌ଙ୍କର ଉପାସନା କର ।

୩. ସାବଧାନ! ବିଶୁଦ୍ଧ ଉପାସନା ହେଉଛି ଅଲ୍ଲାହ୍‌ଙ୍କର ଅଧିକାର । ଯେଉଁମାନେ ତାଙ୍କୁ ଛାଡ଼ି ଅନ୍ୟମାନଙ୍କୁ ଆଶ୍ରୟଦାତା ମାନିଛନ୍ତି, ସେମାନେ କହନ୍ତି, "ଆମେ ଏହି କାରଣରୁ ସେମାନଙ୍କର ପୂଜାଅର୍ଚ୍ଚନା କରୁ ଯେ ସେମାନେ ଆମକୁ ଅଲ୍ଲାହ୍‌ଙ୍କର ନିକଟତର କରିଦେବେ ।" ଯେଉଁ ବିଷୟରେ ଏମାନେ ମତଭେଦ କରୁଛନ୍ତି, ଅଲ୍ଲାହ୍ ନିଶ୍ଚୟ ତାହାର ନିଷ୍ପତ୍ତି କରିଦେବେ । ଅଲ୍ଲାହ୍ କୌଣସି ମିଥ୍ୟାବାଦୀ ଏବଂ କୃତଘ୍ନ ବ୍ୟକ୍ତିର ମାର୍ଗଦର୍ଶନ କରନ୍ତିନାହିଁ ।

୪. ଯଦି ଅଲ୍ଲାହ୍ ପୁତ୍ର ଲାଭ କରିବାକୁ ଚାହାନ୍ତେ, ତେବେ ନିଜ ସୃଷ୍ଟି ଭିତରୁ ଯାହାକୁ ଇଚ୍ଛା ବାଛି ନିଅନ୍ତେ । ଅଲ୍ଲାହ୍ ପରମ ପବିତ୍ର । ସେ ଅଦ୍ୱିତୀୟ ଓ ଅପ୍ରତିରୋଧ । ୫. ସେ ପୃଥିବୀ ଓ ଆକାଶକୁ ଏକ ଉଚିତ ଲକ୍ଷ୍ୟରେ ସୃଷ୍ଟି କରିଛନ୍ତି । ସେ ରାତିକୁ ଦିନ ଉପରେ ଏବଂ ଦିନକୁ ରାତି ଉପରେ ଗୁଡ଼ାଇ ଦିଅନ୍ତି ଏବଂ ସୂର୍ଯ୍ୟ ଓ ଚନ୍ଦ୍ରକୁ କାର୍ଯ୍ୟରେ ନିୟୋଜିତ କରିଛନ୍ତି । ପ୍ରତ୍ୟେକ (ଗ୍ରହ-ନକ୍ଷତ୍ର) ଏକ ନିର୍ଦ୍ଧାରିତ ସମୟ ପର୍ଯ୍ୟନ୍ତ (ନିଜନିଜ କକ୍ଷରେ) ବୁଲୁଛନ୍ତି । ଜାଣିରଖ, ସେ ପ୍ରବଳ କ୍ଷମତାଶାଳୀ ଏବଂ ଅତ୍ୟନ୍ତ କ୍ଷମାଶୀଳ । ୬. ସେ ତୁମମାନଙ୍କୁ ଜଣେ ମଣିଷରୁ ସୃଷ୍ଟି କଲେ ଏବଂ ତା'ରି ମଧ୍ୟରୁ ତା'ର ଯୋଡ଼ା ସୃଷ୍ଟି କଲେ । ସେ ତୁମମାନଙ୍କ ପାଇଁ ଅଣ୍ଡିରା ଓ ମାଈ ରୂପେ ଆଠଟି ଗୃହପାଳିତ ପଶୁ ସୃଷ୍ଟି କଲେ । ସେ ତୁମମାନଙ୍କୁ ମାତୃଗର୍ଭରେ ଗୋଟିକ ପରେ ଗୋଟିଏ କରି ତିନୋଟି ଅନ୍ଧକାର ଭିତରେ ଗଢ଼ନ୍ତି । ଏହି ହେଉଛନ୍ତି ତୁମମାନଙ୍କର ପାଳନକର୍ତ୍ତା ଅଲ୍ଲାହ୍ । (ସମଗ୍ର ବ୍ରହ୍ମାଣ୍ଡରେ) ତାଙ୍କରି ରାଜତ୍ୱ । ତାଙ୍କ ବ୍ୟତୀତ କେହି ଉପାସନାଯୋଗ୍ୟ ନୁହେଁ । ପୁଣି ତୁମେମାନେ (ବାଟବଣା ହୋଇ) କୁଆଡ଼େ ଚାଲିଯାଉଛ ?

୭. ଯଦି ତୁମେମାନେ କୃତଘ୍ନ ହେବ, ତେବେ (ଜାଣିରଖ ଯେ) ଅଲ୍ଲାହଙ୍କୁ ତୁମମାନଙ୍କର ଆବଶ୍ୟକତା ନାହିଁ । ସେ ନିଜ ଦାସମାନଙ୍କର କୃତଘ୍ନତା ପସନ୍ଦ କରନ୍ତିନାହିଁ କିନ୍ତୁ ତୁମେମାନେ ତାଙ୍କ ପ୍ରତି କୃତଜ୍ଞ ହେଲେ ସେ ପ୍ରସନ୍ନ ହୁଅନ୍ତି । (ଜାଣିରଖ) କେହି କାହାରି ବୋଝ ମୁଣ୍ଡାଇବେ ନାହିଁ । ଶେଷରେ ତୁମେ ସମସ୍ତେ ନିଜ ପ୍ରଭୁଙ୍କ ପାଖକୁ ଫେରିଯିବ ଏବଂ ତୁମେମାନେ ଯାହା କରୁଛ ସେ ତୁମମାନଙ୍କୁ ଜଣାଇଦେବେ । ସେ ମନର କଥା ଜାଣନ୍ତି ।

୮. ଯେତେବେଳେ ମଣିଷ ଉପରେ ବିପଦ ପଡ଼େ, ସେ ସଂପୂର୍ଣ୍ଣ ଏକ ଲୟରେ ନିଜ ପାଳନକର୍ତ୍ତାଙ୍କୁ ଡ଼ାକେ । ପୁଣି ଯଦି ସେ ତା' ପ୍ରତି କୃପା କରିଦିଅନ୍ତି, ସେ ସେହି ବିପଦ କଥା ଭୁଲିଯାଏ ଯେଉଁଥିପାଇଁ ଏଥିପୂର୍ବରୁ ତାଙ୍କୁ ଡାକୁଥିଲା । ପୁଣି ସେ ଅନ୍ୟକୁ ଅଲ୍ଲାହଙ୍କ ସହିତ ସମକକ୍ଷ କରେ ଯେପରିକି ଲୋକମାନଙ୍କୁ ମଧ୍ୟ ତାଙ୍କ ମାର୍ଗରୁ ବିଭ୍ରାନ୍ତ କରିବ । କହିଦିଅ, "କୃତଘ୍ନ ହୋଇ କିଛିଦିନ (ସଂସାର) ଭୋଗ କରିନେ । ଏହାପରେ ତୁ ନର୍କକୁ ଯିବୁ ।" ୯. (କ'ଣ ଏଭଳି ବ୍ୟକ୍ତି ସେହି ବ୍ୟକ୍ତି ସହିତ ସମାନ ହୋଇପାରେ) ଯିଏ ରାତି ବେଳେ ନମାଜରେ ଛିଡ଼ା ହୋଇ ଏବଂ ପ୍ରଣାମ କରି ଭକ୍ତି ପ୍ରଦର୍ଶନ କରେ, ବିଚାର ଦିନକୁ ଭୟ କରେ ଏବଂ ପ୍ରଭୁଙ୍କ କରୁଣାର ଆଶା ରଖିଥାଏ ? ସେମାନଙ୍କୁ ପଚାର ଯେ କ'ଣ ଜ୍ଞାନୀ ଓ ଜ୍ଞାନହୀନ ବ୍ୟକ୍ତି ପରସ୍ପର ସମାନ ହୋଇପାରନ୍ତି ? କେବଳ ବୁଦ୍ଧିମାନ ଲୋକମାନେ ଉପଦେଶ ଗ୍ରହଣ କରିଥାଆନ୍ତି ।

୧୦. (ହେ ବାର୍ତ୍ତାବହ !) କହିଦିଅ,"ହେ ମୋ'ର ସଦ୍‌ବିଶ୍ୱାସୀ ଭକ୍ତଗଣ ! ନିଜ ପାଳନକର୍ତ୍ତାଙ୍କୁ ଭୟ କରୁଥାଅ । ଯେଉଁମାନେ ସଂସାରରେ ଭଲ କର୍ମ କରୁଛନ୍ତି ସେମାନଙ୍କୁ ନିଶ୍ଚୟ ଭଲ ଫଳ ମିଳିବ । ଅଲ୍ଲାହଙ୍କର ଧରିତ୍ରୀ ଅତି ବିଶାଳ । ଯେଉଁମାନେ ଧୈର୍ଯ୍ୟ ଅବଲମ୍ବନ କରିବେ, ସେମାନଙ୍କୁ ଅସରନ୍ତି ପୁରସ୍କାର ମିଳିବ ।"

୧୧. କହିଦିଅ, "ମୋତେ ଆଜ୍ଞା ଦିଆଯାଇଛି ଯେ ମୁଁ ସଂପୂର୍ଣ୍ଣ ଏକନିଷ୍ଠ ହୋଇ କେବଳ ଅଲ୍ଲାହଙ୍କର ସେବା-ଉପାସନା କରିବି । ୧୨. ଏବଂ ଏହା ମଧ୍ୟ ନିର୍ଦ୍ଦେଶ ଦିଆଯାଇଛି ଯେ ପ୍ରଥମେ ମୁଁ ନିଜେ ତାଙ୍କର ଆଜ୍ଞାବହ ହେବି ।" ୧୩. କୁହ, "ଯଦି ମୁଁ ଅବଜ୍ଞା କରେ ତେବେ ମୋତେ ଏକ ଭୟଙ୍କର ଦିନରେ ଦଣ୍ଡିତ

ହେବାର ଭୟ ଅଛି । ୧୪. କୁହ, “ମୁଁ ସଂପୂର୍ଣ୍ଣ ନିଷ୍ଠାର ସହିତ କେବଳ ଅଲ୍ଲାହଙ୍କର ଉପାସନା କରେ ।” ୧୫. “ତୁମେମାନେ ତାଙ୍କ ପରିବର୍ତ୍ତେ ଯାହାର ଇଚ୍ଛା ତା’ର ଉପାସନା କରୁଥାଅ ।” କହିଦିଅ, “କ୍ଷତି ସେହିମାନଙ୍କର ହେବ ଯେଉଁମାନେ ବିଚାର ଦିନ ନିଜର ଓ ନିଜ ପରିଜନମାନଙ୍କର କ୍ଷତି କରିବେ । ମନେରଖ, ଏହାହିଁ ପ୍ରକୃତ କ୍ଷତି ।” ୧୬. ସେମାନଙ୍କୁ ଚଉରିଆଡୁ ନିଆଁର ଚଦର ଘୋଡ଼ାଇ ଦିଆଯିବ । ଏହା ସେହି ଦଣ୍ଡ ଯାହା ବିଷୟରେ ଅଲ୍ଲାହ୍ ତାଙ୍କ ଦାସମାନଙ୍କୁ ସାବଧାନ କରନ୍ତି । (ତେଣୁ) ହେ ମୋ’ ଦାସଗଣ! ମୋ’ ପ୍ରତି ଭୟ ରଖ । ୧୭. ଯେଉଁମାନେ ମନଗଢ଼ା ଈଶ୍ୱରମାନଙ୍କର ପୂଜାଅର୍ଚ୍ଚନା ଛାଡ଼ି ଅଲ୍ଲାହଙ୍କ ନିକଟରେ ଅନୁତାପ କଲେ, ସେମାନଙ୍କ ପାଇଁ ଶୁଭ ଖବର ଅଛି । ତେଣୁ, (ହେ ରସୁଲ!) ମୋ’ର ଏହି ଭକ୍ତମାନଙ୍କୁ (ସ୍ୱର୍ଗପ୍ରାପ୍ତିର) ଶୁଭ ଖବର ଦେଇଦିଅ, ୧୮. ଯେଉଁମାନେ ଧ୍ୟାନ ଦେଇ କଥା ଶୁଣନ୍ତି ଏବଂ ଏହାର ଭଲଭଲ କଥା ମାନି ଚଳନ୍ତି । ଅଲ୍ଲାହ୍ ଏହି ଲୋକମାନଙ୍କର ପଥପ୍ରଦର୍ଶନ କରିଛନ୍ତି ଏବଂ ଏହି ଲୋକମାନେ ବୁଦ୍ଧିମାନ ।

୧୯. ଯେଉଁ ବ୍ୟକ୍ତି ବିଷୟରେ ନର୍କଦଣ୍ଡ ନିଷ୍ପତ୍ତି ହୋଇସାରିଛି, କ’ଣ ଏଭଳି ଲୋକକୁ ତୁମେ ନର୍କରୁ ମୁକ୍ତି ଦେଇପାରିବ? ୨୦. ମାତ୍ର ଯେଉଁମାନେ ସେମାନଙ୍କର ପାଳନକର୍ତ୍ତାଙ୍କୁ ଭୟ କରନ୍ତି, ସେମାନଙ୍କ ରହିବା ପାଇଁ (ସ୍ୱର୍ଗରେ) ବହୁତଳ ବିଶିଷ୍ଟ ଉଚ୍ଚଉଚ୍ଚ ପ୍ରାସାଦ ଅଛି ଯାହା ତଳେ ଝରଣା ପ୍ରବାହିତ ହୁଏ । ଏହା ଅଲ୍ଲାହଙ୍କର ବଚନ ଏବଂ ଅଲ୍ଲାହ୍ ବଚନ ଭଙ୍ଗ କରନ୍ତିନାହିଁ ।

୨୧. କ’ଣ ତୁମେ ଦେଖୁନାହଁ ଯେ ଅଲ୍ଲାହ୍ କିପରି ଆକାଶରୁ ଜଳ ବର୍ଷା କରନ୍ତି, ପୁଣି ତାହାକୁ ଧରାପୃଷ୍ଠରେ (ନଦନଦୀ ଓ) ଝରଣା ରୂପେ ପ୍ରବାହିତ କରନ୍ତି ଏବଂ ସେଥିରୁ ବିଭିନ୍ନ ରଙ୍ଗର ଫସଲ ଉତ୍ପନ୍ନ କରନ୍ତି । ପୁଣି ସେଗୁଡ଼ିକ ପାଚି ହଳଦିଆ ପଡ଼ିଯିବାର ତୁମେ ଦେଖ । ତା’ପରେ ସେଗୁଡ଼ିକୁ ସେ ଘାସକୁଟାରେ ପରିଣତ କରିଦିଅନ୍ତି । ଏଥିରେ ବୁଦ୍ଧିମାନ ଲୋକଙ୍କ ପାଇଁ ଶିକ୍ଷା ରହିଛି ।

୨୨. ଅଲ୍ଲାହ୍ ଯାହାର ହୃଦୟକୁ ଇସଲାମ୍ ପାଇଁ ଖୋଲି ଦେଇଛନ୍ତି ଏବଂ ସେ ତା’ ପ୍ରଭୁଙ୍କ ଦ୍ୱାରା ପ୍ରଦାନ କରାଯାଇଥିବା ଆଲୋକର ଅନୁସରଣ କରେ, (କ’ଣ ସେ ପଥଭ୍ରଷ୍ଟ ହୋଇପାରେ?) ଯେଉଁମାନଙ୍କର ମନ ଅଲ୍ଲାହଙ୍କୁ ସ୍ମରଣ

କରିବାକୁ କୁଣ୍ଠିତ ହୁଏ, ସେମାନଙ୍କର ସର୍ବନାଶ ହେବ । ସେମାନେ ସମ୍ପୂର୍ଣ୍ଣ ରୂପେ ପଥଭ୍ରଷ୍ଟ ହୋଇ ଯାଇଛନ୍ତି ।

୨୩. ଅଲ୍ଲାହ୍ ଅତି ସୁନ୍ଦର ବାଣୀ ପଠାଇଛନ୍ତି । ଏହା ଏପରି ଏକ ଗ୍ରନ୍ଥ ଯାହାର ବାଣୀଗୁଡ଼ିକର ପରସ୍ପର ସହିତ ସାଦୃଶ୍ୟ ରହିଛି ଏବଂ ସେଗୁଡ଼ିକର ବାରମ୍ବାର ପୁନରାବୃତ୍ତି ହୋଇଛି । ଯେଉଁମାନେ ନିଜ ପାଳନକର୍ତ୍ତାଙ୍କୁ ଭୟ କରନ୍ତି, (ଏହା ଶୁଣି) ସେମାନଙ୍କର ଲୋମ ଟାଙ୍କୁରି ଉଠେ । ପୁଣି ଅଲ୍ଲାହଙ୍କ ସ୍ମରଣଚିନ୍ତନ କରିବା ପାଇଁ ସେମାନଙ୍କ ଶରୀର ଏବଂ ହୃଦୟ ନରମ ପଡ଼ିଯାଏ । ଏହା ଅଲ୍ଲାହଙ୍କର ମାର୍ଗଦର୍ଶନ ଏବଂ ଏହାଦ୍ୱାରା ସେ ଯାହାକୁ ଚାହାନ୍ତି ତାକୁ ଠିକ୍ ବାଟକୁ ଆଣନ୍ତି । ଯାହାକୁ ଅଲ୍ଲାହ୍ ପଥଭ୍ରଷ୍ଟ କରନ୍ତି, ତାକୁ କେହି ବାଟକୁ ଆଣି ପାରିବେନାହିଁ । ୨୪. (ସେହି ବ୍ୟକ୍ତିର ଅବସ୍ଥା କ'ଣ ହେବ) ଯିଏ ବିଚାର ଦିନ କଠୋର ଦଣ୍ଡରୁ ରକ୍ଷା ପାଇବା ପାଇଁ ନିଜ ମୁହଁକୁ (ଢ଼ାଲ ରୂପେ) ବ୍ୟବହାର କରିବ ? ଏଭଳି ପାପୀମାନଙ୍କୁ କୁହାଯିବ, "ଏବେ ନିଜ ଅର୍ଜିତ କର୍ମର ଫଳ ଚାଖ ।" ୨୫. ଏମାନଙ୍କ ପୂର୍ବଜମାନେ ମଧ୍ୟ ସତ୍ୟକୁ ମାନି ନଥିଲେ । ପୁଣି ସେମାନଙ୍କ ଉପରେ କୁଆଡୁ ବିପଦ ମାଡ଼ି ଆସିଲା ସେମାନେ ଭାବି ପାରିଲେନାହିଁ । ୨୬. ଏହିପରି, ଅଲ୍ଲାହ୍ ସେମାନଙ୍କୁ ଏହି ସଂସାରରେ ଲାଂଛିତ କଲେ ଏବଂ ପରଲୋକର ଦଣ୍ଡ ତ ଏହାଠାରୁ ଅଧିକ ଭୟଙ୍କର ହେବ । ଭଲ ହୁଅନ୍ତା ଯଦି ଏମାନେ ଏହା ବୁଝି ପାରନ୍ତେ ।

୨୭. ଆମ୍ଭେ ଏହି କୁରଆନରେ ଲୋକମାନଙ୍କ ବୁଝିବା ପାଇଁ ବିଭିନ୍ନ ପ୍ରକାରର ଉଦାହରଣ ଦେଇଛୁ ଯେପରିକି ସେମାନେ ଶିକ୍ଷାଲାଭ କରିବେ । ୨୮. ଏହା ଆରବୀ ଭାଷାର କୁରଆନ ଯେଉଁଥିରେ କୌଣସି ଦୋଷତ୍ରୁଟି ନାହିଁ । ସଂଭବତଃ ଏହାଦ୍ୱାରା ଲୋକମାନେ କୁକର୍ମରୁ ବିରତ ରହିବେ ।

୨୯. ଅଲ୍ଲାହ୍ ଉଦାହରଣ ଦେଉଛନ୍ତି ଯେ ଜଣେ ଦାସର ଅନେକ ମାଲିକ ଅଛନ୍ତି ଯେଉଁମାନଙ୍କର ବିଚାର ପରସ୍ପରଠାରୁ ଭିନ୍ନ ଏବଂ ଆଉ ଜଣେ କେବଳ ଜଣେ ମାଲିକର ଦାସ । କ'ଣ ଏହି ଦୁଇଜଣ ଦାସଙ୍କ ଅବସ୍ଥା ସମାନ ହୋଇପାରେ ? ଅଲ୍ଲାହ୍ ହିଁ ସ୍ତୁତିଯୋଗ୍ୟ, ମାତ୍ର ଅଧିକାଂଶ ଲୋକ ଏହା ଜାଣନ୍ତିନାହିଁ । ୩୦. (ହେ ବାର୍ତ୍ତାବହ !) ତୁମେ ମଧ୍ୟ ମୃତ୍ୟୁ ବରଣ କରିବ ଏବଂ ସେମାନେ ମଧ୍ୟ । ୩୧. ପୁଣି ବିଚାର ଦିନ ତୁମେମାନେ ଈଶ୍ୱରଙ୍କ ଦରବାରରେ ନିଜନିଜର ବିବାଦ ଉପସ୍ଥାପନ କରିବ ।

୩୨. ତା'ଠାରୁ ବଡ଼ ପାପୀ କିଏ ହେବ ଯିଏ ଅଲ୍ଲାହଙ୍କ ନାଁରେ ମିଥ୍ୟା କହେ ଏବଂ ତା' ପାଖରେ ସଦ୍‌ବାର୍ତ୍ତା ପହଁଚିବା ପରେ ତାକୁ ପ୍ରତ୍ୟାଖ୍ୟାନ କରିଦିଏ ? କ'ଣ ଏଭଳି ନାସ୍ତିକମାନଙ୍କର ନର୍କବାସ ହେବନାହିଁ ? ୩୩. ଯିଏ ସଦ୍‌ବାର୍ତ୍ତା ନେଇ ଆସିଲେ ଏବଂ ଯେଉଁମାନେ ଏହାକୁ ସତ ବୋଲି ମାନିଲେ, ସେହିମାନେ ଧର୍ମନିଷ୍ଠ । ୩୪. ସେମାନେ ଯାହା ଚାହିଁବେ, ସେମାନଙ୍କ ପ୍ରଭୁଙ୍କ ପାଖରେ ପାଇବେ । ଏହା ପୁଣ୍ୟବାନ ଲୋକମାନଙ୍କର ପୁରସ୍କାର । ୩୫. ଅଲ୍ଲାହ୍ ସେମାନଙ୍କର ପାପନାଶ କରିବେ ଏବଂ ଭଲ କର୍ମ କରିଥିବା ଯୋଗୁଁ ସେମାନଙ୍କୁ ପୁରସ୍କୃତ କରିବେ ।

୩୬. କ'ଣ ଅଲ୍ଲାହ୍ ତାଙ୍କ ଭକ୍ତମାନଙ୍କ ପାଇଁ ଯଥେଷ୍ଟ ନୁହନ୍ତି ? ମାତ୍ର ଏମାନେ ତୁମକୁ ଅଲ୍ଲାହଙ୍କ ପରିବର୍ତ୍ତେ ଅନ୍ୟମାନଙ୍କର ଭୟ ଦେଖାଉଛନ୍ତି । ଅଲ୍ଲାହ୍ ଯାହାକୁ ପଥଭ୍ରଷ୍ଟ ହେବାକୁ ଛାଡ଼ିଦିଅନ୍ତି, ତା'ର କେହି ପଥପ୍ରଦର୍ଶକ ନାହାନ୍ତି, ୩୭. ଏବଂ ଅଲ୍ଲାହ୍ ଯାହାର ପଥପ୍ରଦର୍ଶନ କରନ୍ତି ତାକୁ କେହି ପଥଭ୍ରଷ୍ଟ କରି ପାରିବେନାହିଁ । କ'ଣ ଅଲ୍ଲାହ୍ ପ୍ରବଳ ପରାକ୍ରମୀ ତଥା ପ୍ରତିଶୋଧ ନେବାକୁ ସକ୍ଷମ ନୁହନ୍ତି ?

୩୮. ଯଦି ତୁମେ ସେମାନଙ୍କୁ ପଚାରିବ ଯେ ଧରିତ୍ରୀ ଓ ଆକାଶକୁ କିଏ ଗଢ଼ିଛି, ସେମାନେ ନିଶ୍ଚୟ କହିବେ, "ଅଲ୍ଲାହ୍" । ସେମାନଙ୍କୁ କୁହ, "ଦେଖ, ଅଲ୍ଲାହଙ୍କୁ ଛାଡ଼ି ତୁମେମାନେ ଯେଉଁମାନଙ୍କୁ ଡାକୁଛ, କ'ଣ ଅଲ୍ଲାହ୍ ମୋ'ର କୌଣସି ଅନିଷ୍ଟ କରିବାକୁ ଚାହିଁଲେ ସେମାନେ ମୋତେ ସେଥିରୁ ରକ୍ଷା କରିପାରିବେ ? କିମ୍ବା ଯଦି ଅଲ୍ଲାହ୍ ମୋ'ପ୍ରତି କୃପା କରିବାକୁ ଚାହିଁବେ, କ'ଣ ସେମାନେ ତାଙ୍କ କୃପାକୁ ରୋକି ଦେଇପାରିବେ ?" କହିଦିଅ, "ମୋ'ପାଇଁ କେବଳ ଅଲ୍ଲାହ୍ ଯଥେଷ୍ଟ । ଭରସା ରଖୁଥିବା ଲୋକମାନେ ତାଙ୍କରି ଉପରେ ଭରସା ରଖନ୍ତି ।

୩୯. ସେମାନଙ୍କୁ କୁହ, "ହେ ଭାଇମାନେ ! ତୁମେମାନେ ନିଜ ବାଟରେ କର୍ମ କରୁଥାଅ ଏବଂ ମୁଁ ମଧ୍ୟ ମୋ'ବାଟରେ କରୁଛି । ଖୁବଶୀଘ୍ର ତୁମେମାନେ ଜାଣିଯିବ ଯେ ୪୦. କିଏ ଅପମାନଜନକ ଶାସ୍ତି ଭୋଗିବ ଏବଂ କାହାକୁ ଅନନ୍ତକାଳ ନର୍କଦଣ୍ଡ ହେବ । ୪୧. (ହେ ବାର୍ତ୍ତାବହ !) ଆମ୍ଭେ ଏହି ଗ୍ରନ୍ଥଟିକୁ ଏକ ଉଚିତ ଲକ୍ଷ୍ୟରେ ମାନବଜାତିର ମଙ୍ଗଳ ନିମନ୍ତେ ତୁମ ପାଖକୁ ପଠାଇଛୁ । ତେଣୁ, ଯିଏ ସତପଥ ଅବଲମ୍ବନ କରିବ, ସେ ନିଜର ମଂଗଳ ପାଇଁ କରିବ ଏବଂ ଯିଏ ପଥଭ୍ରଷ୍ଟ ହେବ, ସେ ନିଜର ହିଁ କ୍ଷତି କରିବ । ତୁମେ ସେମାନଙ୍କ ପାଇଁ ଦାୟୀ ହେବନାହିଁ ।

୪୨. ଅଲ୍ଲାହ୍ (ଲୋକମାନଙ୍କର) ଆତ୍ମାକୁ ସେମାନଙ୍କ ମୃତ୍ୟୁ ସମୟରେ ହରଣ କରନ୍ତି ଏବଂ ଯେଉଁମାନଙ୍କର ମୃତ୍ୟୁ (ସମୟ ଉପସ୍ଥିତ) ହୋଇନଥାଏ, ସେମାନଙ୍କର ଆତ୍ମାକୁ ମଧ୍ୟ ନିଦ୍ରାବସ୍ଥାରେ ହରଣ କରିଥାଆନ୍ତି । ପୁଣି ଯେଉଁମାନଙ୍କ ପାଇଁ ସେ ମୃତ୍ୟୁର ନିଷ୍ପତ୍ତି କରନ୍ତି, ସେମାନଙ୍କର ଆତ୍ମାକୁ ନିଜ ପାଖରେ ରଖିନିଅନ୍ତି ଏବଂ ଅବଶିଷ୍ଟ ଆତ୍ମାଗୁଡ଼ିକୁ ନିର୍ଦ୍ଦିଷ୍ଟ ସମୟ ପାଇଁ ଛାଡ଼ିଦିଅନ୍ତି । ଯେଉଁମାନେ ଏବିଷୟରେ ଚିନ୍ତା କରନ୍ତି, ସେମାନଙ୍କ ପାଇଁ ଏଥିରେ ଅନେକ ସଂକେତ ଅଛି ।

୪୩. କ'ଣ ସେମାନେ ଅଲ୍ଲାହଙ୍କୁ ଛାଡ଼ି ଅନ୍ୟମାନଙ୍କୁ ସୁପାରିଶକର୍ତ୍ତା ରୂପେ ଗ୍ରହଣ କରିଛନ୍ତି? ସେମାନଙ୍କୁ ପଚାର, "କ'ଣ ସେଇମାନେ ତୁମର ସୁପାରିଶ କରିବେ, ଯେଉଁମାନଙ୍କ ଆୟତ୍ତରେ କିଛି ନାହିଁ ଏବଂ ଯେଉଁମାନଙ୍କର ବୁଦ୍ଧିଶୁଦ୍ଧି ମଧ୍ୟ ନାହିଁ?" ୪୪. ସୁପାରିଶର ବିଷୟ ସଂପୂର୍ଣ୍ଣ ରୂପେ ଅଲ୍ଲାହଙ୍କ ଅଧୀନରେ ରହିଛି । ପୃଥିବୀ ଓ ଆକାଶରେ ତାଙ୍କରି ଶାସନ ଚାଲେ ଏବଂ ତୁମେମାନେ ତାଙ୍କରି ପାଖକୁ ଫେରିବ ।

୪୫. ଯେତେବେଳେ ଏକମାତ୍ର ଅଲ୍ଲାହ୍‌ଙ୍କ ବିଷୟରେ ଚର୍ଚ୍ଚା ହୁଏ, ପରଲୋକକୁ ମାନୁ ନଥିବା ଲୋକମାନଙ୍କ ମନରେ ବିରକ୍ତିଭାବ ଜାତ ହୁଏ  କିନ୍ତୁ ଯଦି ତାଙ୍କ ଛଡ଼ା ଅନ୍ୟମାନଙ୍କର ଚର୍ଚ୍ଚା ହୁଏ, ସେମାନେ ଭାରି ଖୁସି ହୋଇଯାଆନ୍ତି । ୪୬. ତୁମେ କୁହ, "ହେ ଅଲ୍ଲାହ୍! ପୃଥିବୀ ଓ ଆକାଶର ସ୍ରଷ୍ଟା ଏବଂ ଦୃଷ୍ଟ ଓ ଅଦୃଷ୍ଟର ଜ୍ଞାତା!  ତୁମ ଦାସମାନଙ୍କ ମଧ୍ୟରେ ଥିବା ମତଭେଦର ତୁମେ ହିଁ ନିଷ୍ପତ୍ତି କରିବ ।" ୪୭. ଯଦି ପାପୀ ଲୋକମାନଙ୍କ ପାଖରେ ପୃଥିବୀଯାକର ଧନ ଥାଏ ଏବଂ ସେମାନଙ୍କୁ ଆହୁରି ସେତିକି ମିଳିଯାଏ, ସେମାନେ ବିଚାର ଦିନ ଯନ୍ତ୍ରଣାଦାୟକ ଶାସ୍ତିରୁ ମୁକ୍ତି ପାଇବା ପାଇଁ ସବୁକିଛି ଦେଇଦେବେ । ସେଠାରେ ଅଲ୍ଲାହଙ୍କ ଦ୍ୱାରା ସେମାନଙ୍କ ପାଇଁ ଏଭଳି ଅବସ୍ଥା ସୃଷ୍ଟି ହେବ ଯାହା ସେମାନେ କଳ୍ପନା କରି ନଥିବେ । ୪୮. ସେମାନଙ୍କ ସାମନାରେ ସେମାନଙ୍କ କୁକର୍ମଗୁଡ଼ିକ ପ୍ରକାଶ ପାଇଯିବ ଏବଂ ଯେଉଁ ନର୍କଦଣ୍ଡକୁ ସେମାନେ ତାଚ୍ଛଲ୍ୟ କରୁଥିଲେ, ତାହା ସେମାନଙ୍କୁ ଘରିଆଡୁ ଘେରିନେବ ।

୪୯. ଯେତେବେଳେ ମଣିଷକୁ କୌଣସି କଷ୍ଟ ହୁଏ, ସେ ଆମ୍ଭଙ୍କୁ ଡ଼ାକେ । ପୁଣି ଯଦି ଆମ୍ଭେ ନିଜ କୃପାରୁ ତା' ଦୁଃଖ ଦୂର କରିଦେଉ, ସେ କହେ

ଯେ ଏହା ମୋ’ ବୁଦ୍ଧିବିଦ୍ୟା ବଳରେ ହେଲା । ନା ନା, ଏହା ଆମ୍ଭର ଏକ ପରୀକ୍ଷା ମାତ୍ର ଅଧିକାଂଶ ଲୋକ ଏକଥା ଜାଣନ୍ତିନାହିଁ । ୫୦. ଏହିକଥା ସେମାନଙ୍କ ପୂର୍ବପୁରୁଷମାନେ ମଧ କହିଥିଲେ । ତେଣୁ ସେମାନେ ଯାହା ଅର୍ଜନ କରିଥିଲେ ସେଗୁଡ଼ିକ ସେମାନଙ୍କର କୌଣସି କାମରେ ଆସିଲାନାହିଁ । ୫୧. ସେମାନେ ନିଜ ଅର୍ଜିତ କର୍ମର ଦୁଷ୍ପରିଣାମ ଭୋଗିଲେ । ଏମାନଙ୍କ ମଧରେ ଥିବା ପାପୀମାନେ ମଧ ନିଜନିଜ କର୍ମର ଦୁଷ୍ପରିଣାମ ଭୋଗିବେ । ଏମାନେ (ଅଲ୍ଲାହଙ୍କୁ) ନିରୂପାୟ କରି ପାରିବେ ନାହିଁ । ୫୨. କ’ଣ ସେମାନଙ୍କୁ ଜଣାନାହିଁ ଯେ ଅଲ୍ଲାହ ଯାହାକୁ ଚାହାନ୍ତି ଅମାପ ଦିଅନ୍ତି ଏବଂ ଯାହାକୁ ଚାହାନ୍ତି ମାପିଚୁପି ଦିଅନ୍ତି ? ଯେଉଁମାନେ ବିଶ୍ୱାସ କରନ୍ତି, ସେମାନଙ୍କ ପାଇଁ ଏଥିରେ ଅନେକ ନିଦର୍ଶନ ଅଛି ।

୫୩. (ମୋ’ତରଫରୁ) କହିଦିଅ, “ହେ ମୋ’ ଭକ୍ତଗଣ ! ଯେଉଁମାନେ (ପାପକରି) ନିଜ ଆତ୍ମା ପ୍ରତି ଅବିଚାର କରିଛ, ଅଲ୍ଲାହଙ୍କ କରୁଣାରୁ ନିରାଶ ହୁଅନାହିଁ । (ଭକ୍ତ ପଶ୍ଚାତାପ କଲେ) ଅଲ୍ଲାହ୍ ସବୁ ପାପ କ୍ଷମା କରିଦିଅନ୍ତି । ବାସ୍ତବରେ ସେ ଅତ୍ୟନ୍ତ କ୍ଷମାଶୀଳ ଏବଂ ପରମ ଦୟାଳୁ । ୫୪. ଦୈବୀବିପତ୍ତି ପଡ଼ିବା ପୂର୍ବରୁ ଈଶ୍ୱରଙ୍କ ନିକଟରେ ଅନୁତାପ କର ଏବଂ ତାଙ୍କର ଆଜ୍ଞାବହ ହୋଇଯାଅ ଅନ୍ୟଥା ତୁମମାନଙ୍କୁ କୌଣସି ସାହାଯ୍ୟ ମିଳିବନାହିଁ । ୫୫. ତୁମମାନଙ୍କ ଅଜାଣତରେ ହଠାତ୍ କୌଣସି ବିପଦ ଆସିବା ପୂର୍ବରୁ ତୁମ ପ୍ରଭୁ ପଠାଇଥିବା ଏହି ଗ୍ରନ୍ଥର ଭଲଭଲ ଉପଦେଶଗୁଡ଼ିକୁ ପାଳନ କର । ୫୬. ଏପରି ନହେଉ ଯେ ପରେ କେହି ଏହା କହୁ, “ହାୟ ମୋ’ ଦୁର୍ଭାଗ୍ୟ ! ମୁଁ ଅଲ୍ଲାହଙ୍କ ବିଷୟରେ ଘୋର ଅବହେଳା କଲି ଏବଂ (ତାଙ୍କ ବାଣୀ ସହିତ) ଥଟ୍ଟା-ପରିହାସ କଲି” ୫୭. କିମ୍ବା କେହି ଏହା ନକହୁ ଯେ ଯଦି ଅଲ୍ଲାହ୍ ମୋତେ ଠିକ୍ ବାଟ ଦେଖାଇ ଥାଆନ୍ତେ, ତେବେ ମୁଁ ମଧ ସଦାଚାରୀ ହୋଇଥାଆନ୍ତି, ୫୮. ଅଥବା ନର୍କଯନ୍ତ୍ରଣା ଦେଖିବା ପରେ ଏହା ନକହୁ ଯେ ଯଦି ମୋତେ ଥରେ (ସଂସାରକୁ ଫେରିବାର) ସୁଯୋଗ ମିଳନ୍ତା, ତେବେ ମୁଁ ନିଶ୍ଚୟ ଭଲ ମଣିଷ ହୋଇଯାଆନ୍ତି । ୫୯. (ତାକୁ ଉତ୍ତର ଦିଆଯିବ) “ନା, ତୋ’ ପାଖରେ ମୋ’ ବାଣୀ ପହଁଚି ସାରିଥିଲା । ତୁ ତାହାକୁ ମିଥ୍ୟା ବୋଲି କହିଥିଲୁ ଏବଂ ଅହଂକାର କରି ନାସ୍ତିକ ହୋଇ ଯାଇଥିଲୁ ।”

୬୦. ଯେଉଁମାନେ ଅଲ୍ଲାହଙ୍କ ବିଷୟରେ ମିଥ୍ୟା କହିଲେ, ପୁନର୍ଜୀବନ ପାଇବା ଦିନ ତୁମେ ଦେଖିବ ଯେ ସେମାନଙ୍କ ମୁହଁ କଳା ପଡ଼ିଯାଇଥିବ । କ’ଣ

ଅହଂକାରୀମାନଙ୍କର ନର୍କବାସ ହେବା ଉଚିତ ନୁହେଁ? ୬୧. ଯେଉଁମାନେ କୁକର୍ମରୁ ବିରତ ରହିଲେ, ଅଲ୍ଲାହ୍ ସେମାନଙ୍କୁ ମୁକ୍ତି ଦେଇ ସେମାନଙ୍କ ଲକ୍ଷ୍ୟ ସ୍ଥଳରେ ପହଁଚାଇ ଦେବେ। ଦୁଃଖକଷ୍ଟ ସେମାନଙ୍କୁ ସ୍ପର୍ଶ କରିବନାହିଁ କିମ୍ବା ସେମାନେ ବିଷାଦଗ୍ରସ୍ତ ହେବେ ନାହିଁ।

୬୨. ଅଲ୍ଲାହ୍ ହିଁ ସମସ୍ତଙ୍କର ସ୍ରଷ୍ଟା ଓ ସମସ୍ତଙ୍କର ତତ୍ତ୍ୱାବଧାରକ। ୬୩. ପୃଥିବୀ ଓ ଆକାଶର ଚାବିକାଠି ତାଙ୍କରି ପାଖରେ ଅଛି। ଯେଉଁମାନେ ଅଲ୍ଲାହଙ୍କ ବାଣୀକୁ ମାନୁନାହାନ୍ତି ସେମାନେ ଭାରି କ୍ଷତିଗ୍ରସ୍ତ ହେବେ। ୬୪. ସେମାନଙ୍କୁ କୁହ, "ହେ ନିର୍ବୋଧ ବ୍ୟକ୍ତିମାନେ! କ'ଣ ତୁମେମାନେ ମୋତେ ଅଲ୍ଲାହଙ୍କ ପରିବର୍ତ୍ତେ ଅନ୍ୟର ଉପାସନା କରିବାକୁ କହୁଛ?" ୬୫. (ହେ ବାର୍ତ୍ତାବହ!) ତୁମକୁ ଏବଂ ତୁମ ପୂର୍ବରୁ ଆସିଥିବା (ବିଶ୍ୱର) ସବୁ ଈଶ୍ୱରଦୂତଙ୍କୁ ଏହି ଦୈବବାଣୀ କରାଯାଇଛି ଯେ ଯଦି ତୁମେ ବହୁଈଶ୍ୱରବାଦୀ ହୁଅ ତେବେ ତୁମମାନଙ୍କର ସବୁ କର୍ମ ବୃଥା ହୋଇଯିବ ଏବଂ ତୁମେମାନେ କ୍ଷତିଗ୍ରସ୍ତ ହେବ। ୬୬. ତେଣୁ କେବଳ ଅଲ୍ଲାହଙ୍କର ସେବା-ଉପାସନା କର ଏବଂ ତାଙ୍କ ପ୍ରତି କୃତଜ୍ଞ ହୁଅ।

୬୭. ସେମାନେ ଅଲ୍ଲାହଙ୍କର ଉଚିତ ମୂଲ୍ୟାଙ୍କନ କଲେନାହିଁ। ପ୍ରଳୟ ଦିନ ସମଗ୍ର ଧରିତ୍ରୀ ତାଙ୍କ ହାତମୁଠାରେ ଥିବ ଏବଂ ଆକାଶମଣ୍ଡଳ ଗୁଡ଼ାଇ ହୋଇ ତାଙ୍କ ଡାହାଣ ହାତରେ ରହିଥିବ। ସେ ପରମ ପବିତ୍ର ଏବଂ ସେମାନଙ୍କ ବହୁଈଶ୍ୱରବାଦରୁ ବହୁ ଉର୍ଦ୍ଧ୍ୱରେ। ୬୮. ଯେତେବେଳେ ତୂରୀନାଦ ହେବ, ଯେଉଁମାନେ ଧରିତ୍ରୀ ଓ ଆକାଶରେ ଅଛନ୍ତି ସମସ୍ତେ ନିଃଷ୍ପ୍ରାଣ ହୋଇ ପଡ଼ିଯିବେ ମାତ୍ର ଅଲ୍ଲାହ୍ ଯାହାକୁ ରକ୍ଷା କରିବେ, ତା' କଥା ଭିନ୍ନ। ପୁଣି ଦ୍ୱିତୀୟଥର ତୂରୀନାଦ ହେବ ଏବଂ ତତକ୍ଷଣାତ୍ ସମସ୍ତେ ଉଠିପଡ଼ି ଚରିଆଡ଼କୁ ଚାହିଁବେ। ୬୯. ଧରିତ୍ରୀ ତା' ପ୍ରଭୁଙ୍କ ଜ୍ୟୋତିରେ ଝଲସି ଉଠିବ, କର୍ମପଞ୍ଜିକା ଉପସ୍ଥାପନ କରାଯିବ, ସବୁ ଈଶ୍ୱରଦୂତ ଓ ସାକ୍ଷୀମାନଙ୍କୁ ହାଜର କରାଯିବ ଏବଂ ଲୋକମାନଙ୍କ ମଧ୍ୟରେ ନ୍ୟାୟର ସହିତ ନିଷ୍ପତ୍ତି କରି ଦିଆଯିବ। ସେମାନଙ୍କ ପ୍ରତି କୌଣସି ଅନ୍ୟାୟ ହେବନାହିଁ। ୭୦. ଯିଏ ଯାହା କର୍ମ କରିଥିବ ତାକୁ ତା' କର୍ମର ସଂପୂର୍ଣ୍ଣ ଫଳ ମିଳିବ। ସେମାନେ ଯାହା କରୁଛନ୍ତି, ଈଶ୍ୱର ଭଲରୂପେ ଜାଣନ୍ତି।

୭୧. ମିଥ୍ୟାବିଶ୍ୱାସୀମାନଙ୍କୁ ଦଳଦଳ କରି ନର୍କ ଆଡ଼କୁ ଘଉଡ଼ାଇ ନିଆଯିବ । ଯେତେବେଳେ ସେମାନେ ସେଠାରେ ପହଁଚିବେ, ଏହାର ଦ୍ୱାରଗୁଡ଼ିକୁ ଖୋଲି ଦିଆଯିବ । ନର୍କର ପ୍ରହରୀମାନେ ସେମାନଙ୍କୁ ପଚାରିବେ, "କ'ଣ ତୁମ ସମାଜରୁ ତୁମମାନଙ୍କ ପାଖକୁ କୌଣସି ବାର୍ତ୍ତାବହ ଆସି ନଥିଲେ ଯେଉଁମାନେ ତୁମମାନଙ୍କୁ ଈଶ୍ୱରଙ୍କ ବାଣୀ ପଢ଼ି ଶୁଣାଉଥିଲେ ଏବଂ ତୁମେମାନେ ଏହି ଦିନ ଦେଖିବ ବୋଲି ସାବଧାନ ମଧ୍ୟ କରୁଥିଲେ ?" ସେମାନେ ଉତ୍ତର ଦେବେ, "ହଁ ଆସିଥିଲେ, ମାତ୍ର ନାସ୍ତିକମାନଙ୍କ ବିଷୟରେ (ଅଲ୍ଲାହ୍ କହିଥିବା) କଥା ସତ ପ୍ରମାଣିତ ହେଲା ।" ୭୨. ସେମାନଙ୍କୁ କୁହାଯିବ, "ନର୍କ ଦ୍ୱାର ଦେଇ ପ୍ରବେଶ କର । ଏବେ ତୁମେମାନେ ଚିରଦିନ ପାଇଁ ଏଇଠି ରହିବ । ଅହଙ୍କାରୀ ଲୋକମାନଙ୍କ ପାଇଁ ଏହା ଏକ କଦର୍ଯ୍ୟ ସ୍ଥାନ ।"

୭୩. ଯେଉଁମାନେ ଈଶ୍ୱରଙ୍କୁ ଭୟ କରୁଥିଲେ, ସେମାନଙ୍କୁ ଦଳଦଳ କରି ବୈକୁଣ୍ଠ ଆଡ଼କୁ ନିଆଯିବ । ଯେତେବେଳେ ସେମାନେ ସେଠାରେ ପହଁଚିବେ, ଏହାର ଦ୍ୱାରଗୁଡ଼ିକୁ ଖୋଲି ଦିଆଯିବ । ଏହାର ପ୍ରହରୀମାନେ ସେମାନଙ୍କୁ କହିବେ, "ତୁମମାନଙ୍କର ମଙ୍ଗଳ ହେଉ । ତୁମେମାନେ ଖୁବ୍ ଭଲ କର୍ମ କରୁଥିଲ । ଏବେ ଚିରଦିନ ବୈକୁଣ୍ଠରେ ରୁହ ।" ୭୪. ସେମାନେ ଉତ୍ତର ଦେବେ, "ଅଲ୍ଲାହଙ୍କୁ ଅଶେଷ ଧନ୍ୟବାଦ, ଯିଏ ଆମକୁ ଦେଇଥିବା ପ୍ରତିଶ୍ରୁତି ପୂରଣ କଲେ ଏବଂ ଆମମାନଙ୍କୁ ଏହି ସ୍ୱର୍ଗଭୁବନର ମାଲିକ କରିଦେଲେ । ଏବେ ଆମେ ଏଠାରେ ଯେଉଁଠି ଇଚ୍ଛା ସେଠି ରହିବୁ । ଭଲ କର୍ମ କରୁଥିବା ଲୋକମାନଙ୍କୁ କି ସୁନ୍ଦର ପୁରସ୍କାର ମିଳିଲା !"

୭୫. ତୁମେ ଦେଖିବ ଦେବଦୂତମାନେ ଅଲ୍ଲାହଙ୍କ ସିଂହାସନ ଚାରିପଟେ ବେଢ଼ି ରହି ସେମାନଙ୍କ ପ୍ରଭୁଙ୍କର ସ୍ତୁତି ଓ ଗୁଣଗାନ କରୁଥିବେ । (ସେଦିନ) ଲୋକମାନଙ୍କ ମଧ୍ୟରେ ନ୍ୟାୟର ସହିତ ନିଷ୍ପତ୍ତି କରାଯିବ ଏବଂ (ଚତୁର୍ଦ୍ଦିଗ) ଏହି ଧ୍ୱନିରେ ମୁଖରିତ ହୋଇ ଉଠିବ ଯେ ସର୍ବଲୋକଶ୍ୱର ଅଲ୍ଲାହ୍ ହିଁ ସକଳ ସ୍ତୁତିର ଯୋଗ୍ୟ ।

## ଅଧ୍ୟାୟ ୪୦, ଅଲ୍ ମୁ'ମିନ୍

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍ଙ୍କ ନାମରେ

୧. ହା – ମୀମ୍ । ୨. ଏହି ଗ୍ରନ୍ଥଟି ସର୍ବଜ୍ଞ ଏବଂ ସର୍ବଶକ୍ତିମାନ ଅଲ୍ଲାହ୍ଙ୍କ ଦ୍ୱାରା ପଠାଯାଇଛି, ୩. ଯିଏ ପଶ୍ଚାତାପ ଗ୍ରହଣ କରନ୍ତି, ପାପ କ୍ଷମା କରନ୍ତି ଏବଂ କଠୋର ଶାସ୍ତି ମଧ୍ୟ ଦିଅନ୍ତି ଏବଂ ସେ ସକଳ ପ୍ରାଚୁର୍ଯ୍ୟର ଅଧିକାରୀ । ତାଙ୍କ ବ୍ୟତୀତ କେହି ଉପାସ୍ୟ ନୁହେଁ । ତାଙ୍କରି ପାଖକୁ ସମସ୍ତଙ୍କୁ ଫେରିବାକୁ ହେବ ।

୪. ଅଲ୍ଲାହ୍ଙ୍କ ବାଣୀ ବିଷୟରେ କେବଳ ସେହି ଲୋକମାନେ ଝଗଡ଼ା କରନ୍ତି ଯେଉଁମାନେ ଅଧର୍ମୀ । ତେଣୁ, ସହରମାନଙ୍କରେ ସେମାନଙ୍କର ଥାଟବାଟ ଦେଖି ତୁମେ ଭ୍ରମରେ ପଡ଼ନାହିଁ । ୫. ଏମାନଙ୍କ ପୂର୍ବରୁ ନୁହ୍ଙ୍କ ସଂପ୍ରଦାୟ ଏବଂ ତାଙ୍କ ପରେ ମଧ୍ୟ ଅନେକ ସଂପ୍ରଦାୟ (ବାର୍ତ୍ତାବହମାନଙ୍କୁ) ପ୍ରତ୍ୟାଖ୍ୟାନ କରିଥିଲେ । ପ୍ରତ୍ୟେକ ସମାଜର ଲୋକେ ନିଜ ବାର୍ତ୍ତାବହମାନଙ୍କର ମୂଳୋତ୍ପାଟନ କରିବାପାଇଁ ଚକ୍ରାନ୍ତ କରିଛନ୍ତି ଏବଂ ସତ୍ୟକୁ ଖଣ୍ଡନ କରିବାପାଇଁ ମିଥ୍ୟା ଆଧାରରେ ବିବାଦ କରିଛନ୍ତି । ତେଣୁ, ମୁଁ ସେମାନଙ୍କୁ ଶାସ୍ତି ଦେଲି । କି ଭୟଙ୍କର ଥିଲା ମୋ' ଶାସ୍ତି ! ୬. ଏହିପରି ନାସ୍ତିକମାନଙ୍କ ବିଷୟରେ ତୁମ ପ୍ରଭୁଙ୍କର କଥା ସତ ହେଲା ଯେ ସେମାନେ ନର୍କବାସୀ ହେବେ ।

୭. ଯେଉଁ ଦେବଦୂତମାନେ ଅଲ୍ଲାହ୍ଙ୍କ ସିଂହାସନକୁ ଧରି ରଖିଛନ୍ତି ଏବଂ ଯେଉଁମାନେ ଏହାକୁ ଚାରିପଟେ ବେଢ଼ି ରହିଛନ୍ତି, ସେମାନେ ନିଜ ପ୍ରଭୁଙ୍କର ସ୍ତୁତି ଓ ମହିମାଗାନ କରନ୍ତି, ତାଙ୍କ ପ୍ରତି ବିଶ୍ୱାସ ରଖନ୍ତି ଏବଂ (ଅଲ୍ଲାହ୍ଙ୍କୁ) ବିଶ୍ୱାସ କରୁଥିବା ଲୋକମାନଙ୍କ ପାଇଁ କ୍ଷମାପ୍ରାର୍ଥନା କରି କହନ୍ତି, "ହେ ପ୍ରଭୁ ! ତୁମର ଜ୍ଞାନ ଓ କରୁଣା ସମସ୍ତଙ୍କୁ ଘେରି ରଖିଛି । ତେଣୁ, ଯେଉଁମାନେ ପଶ୍ଚାତାପ କରନ୍ତି ଏବଂ ତୁମ ପଥ ଅନୁସରଣ କରନ୍ତି, ସେମାନଙ୍କୁ କ୍ଷମା କର ଏବଂ ନର୍କଦଣ୍ଡରୁ ରକ୍ଷା କର । ୮. ହେ ପ୍ରଭୁ ! ସେମାନଙ୍କୁ ଶାଶ୍ୱତ ବୈକୁଣ୍ଠରେ ସ୍ଥାନ ଦିଅ ଯାହାର ପ୍ରତିଶ୍ରୁତି ତୁମେ ସେମାନଙ୍କୁ ଦେଇଛ । ଏହା ସହିତ ସେମାନଙ୍କ ପୂର୍ବପୁରୁଷ, ପତ୍ନୀ ଓ ସନ୍ତାନମାନଙ୍କ ମଧ୍ୟରୁ ଯେଉଁମାନେ ପୁଣ୍ୟବାନ, ସେମାନଙ୍କୁ ମଧ୍ୟ । ବାସ୍ତବରେ ତୁମେ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ । ୯. ସେମାନଙ୍କୁ ଶାସ୍ତିରୁ ରକ୍ଷା କର । ତୁମେ ଯାହାକୁ

ସେଦିନ ଶାସ୍ତିରୁ ରକ୍ଷା କରିବ, ତା'ପ୍ରତି ତୁମର ପରମ ଅନୁଗ୍ରହ ହେବ । ଏହା ଏକ ବଡ଼ ସଫଳତା ।"

୧୦. (ସେଦିନ) ନାସ୍ତିକମାନଙ୍କୁ ସମ୍ବୋଧନ କରି କୁହାଯିବ, "ଆଜି ତୁମମାନଙ୍କୁ ନିଜ ଉପରେ ଯେତେ କ୍ରୋଧ ଆସୁଛି, ଏହାଠୁ ଅଧିକ କ୍ରୋଧ ତୁମମାନଙ୍କ ଉପରେ ଅଲ୍ଲାହଙ୍କୁ ଆସୁଥିଲା ଯେତେବେଳେ ତୁମମାନଙ୍କୁ ମାନିନେବା ପାଇଁ କୁହା ଯାଉଥିଲା କିନ୍ତୁ ତୁମେମାନେ ମାନୁ ନଥିଲ ।" ୧୧. ସେମାନେ କହିବେ, "ହେ ପାଳନକର୍ତ୍ତା ! ତୁମେ ଆମମାନଙ୍କୁ ଦୁଇଥର ମୃତ୍ୟୁ ଦେଲ ଏବଂ ଦୁଇଥର ଜୀବିତ କଲ । ଏବେ ଆମେ ନିଜ ଦୋଷ ସ୍ୱୀକାର କରୁଛୁ । କ'ଣ ଏବେ ଏହି ନର୍କରୁ ବାହାରିବାର କୌଣସି ବାଟ ଅଛି ?" ୧୨. (ସେମାନଙ୍କୁ ଉତ୍ତର ଦିଆଯିବ) "ତୁମମାନଙ୍କର ଏହି ଦଶା ଏଇଥିପାଇଁ ହେଲା ଯେ ଯେତେବେଳେ ଏକ ଈଶ୍ୱରଙ୍କୁ ଡାକିବା ପାଇଁ କୁହା ଯାଉଥିଲା, ତୁମେମାନେ ମନା କରୁଥିଲ କିନ୍ତୁ ଯଦି ଅନ୍ୟ କାହାକୁ ତାଙ୍କର ସମକକ୍ଷ କରା ଯାଉଥିଲା, ତୁମେମାନେ ମାନି ଯାଉଥିଲ । ଏବେ ନିଷ୍ପତ୍ତି ଅଲ୍ଲାହଙ୍କ ହାତରେ ଯିଏ ସମସ୍ତଙ୍କଠାରୁ ଶ୍ରେଷ୍ଠ ଏବଂ ସମସ୍ତଙ୍କ ଅପେକ୍ଷା ମହାନ ।"

୧୩. ସେ ହିଁ ତୁମମାନଙ୍କୁ ନିଜର ନିଦର୍ଶନ ଦେଖାନ୍ତି ଏବଂ ତୁମମାନଙ୍କ ପାଇଁ ଆକାଶରୁ ଆହାର ପଠାନ୍ତି । ମାତ୍ର ଉପଦେଶ ସେହି ବ୍ୟକ୍ତି ଶୁଣେ ଯିଏ (ଅନୁତପ୍ତ ହୋଇ) ତାଙ୍କ ପାଖକୁ ଫେରିଆସେ । ୧୪. ନିଜର ସେବା-ଉପାସନାକୁ (ବହୁଈଶ୍ୱରବାଦରୁ) ବିଶୁଦ୍ଧ ରଖି ତାଙ୍କୁ ଡାକ ଯଦିଓ ନାସ୍ତିକମାନଙ୍କୁ ଏହା ଅପ୍ରିୟ ଲାଗୁ ।

୧୫. ମହାମହିମ୍ ଅଲ୍ଲାହ୍ ଦିବ୍ୟସିଂହାସନର ଅଧିକାରୀ । ସେ ନିଜ ଆଜ୍ଞା ବଳରେ ତାଙ୍କ ଭକ୍ତମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା କରନ୍ତି, ତାକୁ ଦୈବବାଣୀ କରନ୍ତି ଯେପରିକି ସେ ଲୋକମାନଙ୍କୁ ଅଲ୍ଲାହଙ୍କ ସହ ସାକ୍ଷାତର ଦିନ ବିଷୟରେ ସତର୍କ କରିବେ । ୧୬. ଯେଉଁଦିନ ସମସ୍ତେ (ନିଜନିଜ ସମାଧିରୁ) ବାହାରି ଆସିବେ, ସେଦିନ ସେମାନଙ୍କର କୌଣସି କଥା ଅଲ୍ଲାହଙ୍କ ପାଖରେ ଲୁଚି ରହି ନଥିବ । (ସେଦିନ କୁହାଯିବ) "ଆଜି କାହାର ଆଧିପତ୍ୟ ?" ଅଲ୍ଲାହଙ୍କର, ଯିଏ ଅଦ୍ୱିତୀୟ ଓ ଅପ୍ରତିରୋଧ । ୧୭. ଆଜି ପ୍ରତ୍ୟେକ ବ୍ୟକ୍ତିକୁ ତା' କର୍ମର ଫଳ ଦିଆଯିବ । ଆଜି

(କାହାରି ପ୍ରତି) ଅନ୍ୟାୟ ହେବନାହିଁ । ଅଲ୍ଲାହ୍ ଅବିଳମ୍ବେ ହିସାବ ନେବେ ।” ୧୮. (ହେ ବାର୍ତ୍ତାବହ !) ଲୋକମାନଙ୍କୁ ସେହି ପ୍ରଳୟ ଦିନ ବିଷୟରେ ସାବଧାନ କର । ସେହି ଦିନଟି ପାଖେଇ ଆସିଲାଣି ଯେଉଁଦିନ ହୃଦୟ କଣ୍ଠକୁ ଆସିଯିବ । (ସେଦିନ) ପାପୀମାନଙ୍କର ଏମିତି କେହି ବନ୍ଧୁ ବା ସୁପାରିଶକର୍ତ୍ତା ନଥିବେ ଯାହା କଥା ଶୁଣାଯିବ । ୧୯. ସେ ତୁମମାନଙ୍କ ଆଖିର ଚୋରି ବିଷୟରେ ଜାଣନ୍ତି ଏବଂ ମନର ଗୋପନ କଥାକୁ ମଧ୍ୟ । ୨୦. ଅଲ୍ଲାହ୍ ନ୍ୟାୟର ସହିତ ନିଷ୍ପତ୍ତି କରନ୍ତି । ତାଙ୍କୁ ଛାଡ଼ି ସେମାନେ ଯେଉଁମାନଙ୍କୁ ଡାକନ୍ତି, ସେମାନଙ୍କର ବିଚାର କରିବାର କ୍ଷମତା ନାହିଁ । ଏକମାତ୍ର ଅଲ୍ଲାହ୍ ହିଁ ସର୍ବଶ୍ରୋତା ଓ ସର୍ବଦ୍ରଷ୍ଟା ।

୨୧. କ'ଣ ସେମାନେ ଦେଶରେ ବୁଲାବୁଲି କରି ଦେଖିନାହାନ୍ତି ଯେ ସେମାନଙ୍କ ପୂର୍ବଜମାନଙ୍କର କିଭଳି ପରିଣାମ ହେଲା ? ସେମାନେ ଏମାନଙ୍କଠାରୁ ଅଧିକ ଶକ୍ତିଶାଳୀ ଥିଲେ ଏବଂ ଧରାପୃଷ୍ଠରେ ଏମାନଙ୍କଠାରୁ ଅଧିକ ସ୍ମୃତି ଛାଡ଼ି ଯାଇଥିଲେ ମାତ୍ର ସେମାନଙ୍କ ପାପ ଯୋଗୁଁ ଅଲ୍ଲାହ୍ ସେମାନଙ୍କୁ ଶାସ୍ତି ଦେଲେ । କେହି ସେମାନଙ୍କୁ ରକ୍ଷା କରି ପାରିଲେନାହିଁ । ୨୨. ଏହାର କାରଣ, ସେମାନଙ୍କ ପାଖକୁ ସେମାନଙ୍କ ଈଶ୍ୱରଦୂତମାନେ ସ୍ପଷ୍ଟ ପ୍ରମାଣ ନେଇ ଯାଉଥିଲେ କିନ୍ତୁ ସେମାନେ ତାକୁ ମାନୁ ନଥିଲେ । ତେଣୁ ଅଲ୍ଲାହ୍ ସେମାନଙ୍କୁ ଶାସ୍ତି ଦେଲେ । ଅଲ୍ଲାହ୍ ମହାଶକ୍ତିମାନ ଏବଂ ସେ କଠୋର ଶାସ୍ତି ଦିଅନ୍ତି ।

୨୩. ଆମ୍ଭେ ମୁ'ସାଙ୍କୁ ନିଜର ନିଦର୍ଶନ ସହିତ ସ୍ପଷ୍ଟ ପ୍ରମାଣ ଦେଇ ପଠାଇଥିଲୁ – ୨୪. ଫିରଔନ୍, ହାମାନ୍ ଓ କାରୁନ୍ ପାଖକୁ, କିନ୍ତୁ ସେମାନେ ତାଙ୍କୁ ମିଥ୍ୟାବାଦୀ ଓ ଯାଦୁକର ବୋଲି କହିଲେ । ୨୫. ଯେତେବେଳେ ସେ ଆମ୍ଭର ସଦ୍‌ବାର୍ତ୍ତା ନେଇ ସେମାନଙ୍କ ପାଖକୁ ଗଲେ, ସେମାନେ କହିଲେ, “ଯେଉଁମାନେ ତା'କଥାରେ ପଡ଼ି ବିଶ୍ୱାସ କଲେ ସେମାନଙ୍କ ପୁତ୍ରମାନଙ୍କୁ ହତ୍ୟା କର ଏବଂ କନ୍ୟାମାନଙ୍କୁ ଜୀବିତ ଛାଡ଼ିଦିଅ ।” ନାସ୍ତିକମାନଙ୍କର ଚକ୍ରାନ୍ତ ବିଫଳ ହୋଇଥାଏ ।

୨୬. ଫିରଔନ କହିଲା, “ମୋତେ ଛାଡ଼ିଦିଅ, ମୁଁ ମୁ'ସାକୁ ହତ୍ୟା କରିବି । ଏବେ ସେ ତା' ଈଶ୍ୱରକୁ ଡାକୁ । ମୋତେ ଆଶଙ୍କା ହେଉଛି ଯେ ହୁଏତ ସେ ତୁମମାନଙ୍କର ଧର୍ମ ପରିବର୍ତ୍ତନ କରିଦେବ କିମ୍ବା ଦେଶରେ ବିଶୃଂଖଳା ସୃଷ୍ଟି

କରିବ ।" ୨୭. ମୁ'ସା କହିଲେ, "ଯେଉଁ ଆତ୍ମଗର୍ବୀ ବ୍ୟକ୍ତି ବିଚାର ଦିନକୁ ବିଶ୍ୱାସ ନକରେ, ତା' କର୍ମର ପରିଣାମରୁ ମୁଁ ତାଙ୍କର ଆଶ୍ରୟ ମାଗୁଛି ଯିଏ ମୋ'ର ଏବଂ ତୁମମାନଙ୍କର ପାଳନକର୍ତ୍ତା ।"

୨୮. ଫିରଔନର କୁଟୁମ୍ବର ଜଣେ ସଦ୍‌ବିଶ୍ୱାସୀ ବ୍ୟକ୍ତି ଯିଏ ନିଜ ଧର୍ମବିଶ୍ୱାସକୁ ଗୋପନ ରଖିଥିଲା, କହିଲା, "କ'ଣ ତୁମେମାନେ ଜଣେ ଲୋକକୁ କେବଳ ଏଇଥିପାଇଁ ହତ୍ୟା କରିଦେବ ଯେ ସେ କହୁଛି ଯେ ଅଲ୍ଲାହ୍ ମୋ' ଈଶ୍ୱର ? ଅଥଚ ସେ ତୁମ ଈଶ୍ୱରଙ୍କଠାରୁ ସ୍ପଷ୍ଟ ପ୍ରମାଣ ନେଇ ଆସିଛି ? ଯଦି ସେ ମିଥ୍ୟାବାଦୀ ହୋଇଥାଏ ତେବେ ତା' ମିଥ୍ୟାର ପରିଣାମ ସେ ନିଜେ ଭୋଗିବ, ଆଉ ଯଦି ସେ ସତ କହୁଥାଏ ତେବେ ସେ ଯେଉଁ ବିପଦର ଚେତାବନୀ ଦେଉଛି, ସେଗୁଡ଼ିକ ମଧ୍ୟରୁ କିଛି ତୁମମାନଙ୍କ ଉପରେ ନିଶ୍ଚୟ ପଡ଼ିବ । ଅଲ୍ଲାହ୍ ଏଭଳି ବ୍ୟକ୍ତିର ମାର୍ଗଦର୍ଶନ କରନ୍ତିନାହିଁ ଯିଏ ସୀମା ଲଂଘନ କରେ ଏବଂ ମିଥ୍ୟା କହେ । ୨୯. ଭାଇମାନେ ! ଆଜି ତୁମମାନଙ୍କର ଶାସନ ଚାଲିଛି ଏବଂ ତୁମେମାନେ ଦେଶରେ କ୍ଷମତାରେ ରହିଛ କିନ୍ତୁ ଯଦି ଆମ ଉପରେ ଅଲ୍ଲାହଙ୍କଠାରୁ କୌଣସି ବିପଦ ଆସେ, ତେବେ କିଏ ଆମକୁ ସାହାଯ୍ୟ କରିବ ?" ଫିରଔନ୍ କହିଲା, "ମୁଁ ତୁମମାନଙ୍କୁ ସେହି କଥା କହୁଛି ଯାହା ମୋତେ ଉଚିତ ଲାଗୁଛି ଏବଂ ମୁଁ ତୁମମାନଙ୍କୁ ଠିକ୍ ବାଟ ଦେଖାଉଛି ।"

୩୦. ସଦ୍‌ବିଶ୍ୱାସୀ ବ୍ୟକ୍ତି ଜଣକ କହିଲା, "ଭାଇମାନେ! ମୋତେ ଭୟ ଲାଗୁଛି ଯେ ହୁଏତ ଦିନେ ତୁମମାନଙ୍କ ଉପରେ ମଧ୍ୟ ସେମିତି ବିପଦ ପଡ଼ିବ ଯେମିତି ପୂର୍ବ ସମାଜଗୁଡ଼ିକ ଉପରେ ପଡ଼ିଥିଲା । ୩୧. ଯେମିତି ନୁହଙ୍କ ସଂପ୍ରଦାୟ, ଆଦ୍ ଓ ସମୁଦ୍ ଏବଂ ସେମାନଙ୍କ ପରବର୍ତ୍ତୀ ସମାଜଗୁଡ଼ିକ ଉପରେ ପଡ଼ିଥିଲା । ଅଲ୍ଲାହ୍ ତାଙ୍କ ଦାସମାନଙ୍କ ପ୍ରତି ଆଦୌ ଅନ୍ୟାୟ କରିବାକୁ ଚାହାନ୍ତିନାହିଁ । ୩୨. ଭାଇମାନେ ! ମୋତେ ତୁମମାନଙ୍କ ବିଷୟରେ ସେଦିନର ମଧ୍ୟ ଭୟ ହେଉଛି ଯେଉଁଦିନ ଲୋକମାନେ ଚିତ୍କାର କରୁଥିବେ । ୩୩. ଯେଉଁଦିନ ତୁମେମାନେ (ଭୟରେ) ପଳାଇ ଯାଉଥିବ ଏବଂ ଅଲ୍ଲାହଙ୍କ ଶାସ୍ତିରୁ ତୁମମାନଙ୍କୁ ରକ୍ଷା କରିବାକୁ କେହି ନଥିବେ । ଅଲ୍ଲାହ୍ ଯାହାକୁ ପଥଭ୍ରଷ୍ଟ କରନ୍ତି, କେହି ତା'ର ପଥପ୍ରଦର୍ଶନ କରି ନପାରେ ।"

୩୪. ଏହା ପୂର୍ବରୁ ୟୁସୁଫ ମଧ୍ୟ ତୁମମାନଙ୍କ ପାଖକୁ ସ୍ପଷ୍ଟ ପ୍ରମାଣ ନେଇ ଯାଇଥିଲେ ଯାହାକୁ ତୁମେମାନେ ସନ୍ଦେହ କଲ । ଯେତେବେଳେ ତାଙ୍କର ମୃତ୍ୟୁ ହୋଇଗଲା, ତୁମେମାନେ କହିଲ ଯେ ତାଙ୍କ ପରେ ଅଲ୍ଲାହ୍ ଆଉ କୌଣସି ବାର୍ତ୍ତାବହଙ୍କୁ ପଠାଇବେ ନାହିଁ । ଯେଉଁମାନେ ସୀମାଲଂଘନ କରନ୍ତି ଏବଂ ସନ୍ଦେହ କରନ୍ତି, ଅଲ୍ଲାହ୍ ସେମାନଙ୍କୁ ଏହିପରି ପଥଭ୍ରଷ୍ଟ କରି ଦିଅନ୍ତି । ୩୫. ଯେଉଁମାନଙ୍କ ପାଖରେ ଅଲ୍ଲାହ୍‌ଙ୍କ ତରଫରୁ କୌଣସି ପ୍ରମାଣ ନଥାଇ ସୁଦ୍ଧା ସେମାନେ ତାଙ୍କ ବାଣୀ ବିଷୟରେ ଯୁକ୍ତିତର୍କ କରନ୍ତି, (ସେମାନଙ୍କର ଆଚରଣ) ଅଲ୍ଲାହଙ୍କ ଦୃଷ୍ଟିରେ ଏବଂ ସଦ୍‌ବିଶ୍ୱାସୀମାନଙ୍କ ଦୃଷ୍ଟିରେ ଅତ୍ୟନ୍ତ ନିନ୍ଦନୀୟ । ଏହିପରି ଅଲ୍ଲାହ୍ ଉଦ୍ଧତ ଓ ଅହଙ୍କାରୀମାନଙ୍କର ହୃଦୟର ଦ୍ୱାର ବନ୍ଦ କରିଦିଅନ୍ତି ।

୩୬. ଫିରଔନ (ତା' ମନ୍ତ୍ରୀ ହାମାନ୍‌କୁ) କହିଲା, "ହେ ହାମାନ ! ମୋ' ପାଇଁ ଗୋଟିଏ ଉଚ୍ଚ ମିନାର ତିଆରି କର ଯେଉଁଥିରେ ଚଢ଼ି ମୁଁ ଆକାଶର ଦ୍ୱାର ପର୍ଯ୍ୟନ୍ତ ପହଁଚି ପାରିବି, ୩୭. ସେଠାକୁ ଯାଇ ମୁଁ ମୁ'ସାର ଈଶ୍ୱରଙ୍କୁ ଦେଖିବି । ମୋ'ର ମନେହୁଏ ଯେ ସେ ଜଣେ ପକ୍କା ମିଥ୍ୟାବାଦୀ ।" ଫିରଔନ୍ ଦୃଷ୍ଟିରେ ତା' କୁକର୍ମଗୁଡ଼ିକୁ ଏହିପରି ସୁନ୍ଦର କରିଦିଆ ଯାଇଥିଲା ଏବଂ ତାକୁ ସତମାର୍ଗରୁ ରୋକି ଦିଆ ଯାଇଥିଲା । ଫିରଔନର ସବୁ ଛଳ୍ ବିଫଳ ହେଲା ।

୩୮. ସଦ୍‌ବିଶ୍ୱାସୀ ବ୍ୟକ୍ତି ଜଣକ କହିଲା, "ଭାଇମାନେ ! ମୋ' କଥା ମାନ, ମୁଁ ତୁମମାନଙ୍କୁ ଠିକ୍ ବାଟ ଦେଖାଇଦେବି । ୩୯. ଭାଇମାନେ ! ଏହି ପାର୍ଥିବ ଜୀବନର ସୁଖ କ୍ଷଣସ୍ଥାୟୀ ଏବଂ ପରଲୋକର ଘର ଚିରସ୍ଥାୟୀ । ୪୦. ଯିଏ କୁକର୍ମ କରିବ ତାକୁ ସେହିପରି ଫଳ ମିଳିବ କିନ୍ତୁ ପୁରୁଷ ହେଉ ବା ନାରୀ ହେଉ, ଯଦି କେହି ସଦ୍‌ବିଶ୍ୱାସୀ ହୋଇଥାଏ ଏବଂ ଭଲ କର୍ମ କରୁଥାଏ, ତେବେ ଏଭଳି ଲୋକମାନେ ବୈକୁଣ୍ଠ ଲାଭ କରିବେ ଏବଂ ସେଠାରେ ଅପର୍ଯ୍ୟାପ୍ତ ସୁଖ ଭୋଗ କରିବେ । ୪୧. ହେ ଭାଇମାନେ ! କଥା କ'ଣ ? ମୁଁ ତୁମମାନଙ୍କୁ ମୁକ୍ତିର ବାଟକୁ ଡାକୁଛି ଅଥଚ ତୁମେମାନେ ମୋତେ ନର୍କକୁ ଡାକୁଛ ? ୪୨. ତୁମେମାନେ ମୋତେ କହୁଛ ଯେ ମୁଁ ଅଲ୍ଲାହଙ୍କୁ ଅଗ୍ରାହ୍ୟ କରିଦେବି ଏବଂ ଯେଉଁମାନଙ୍କ ବିଷୟରେ ମୋ'ର (ପ୍ରାମାଣିକ) ଜ୍ଞାନ ନାହିଁ, ସେମାନଙ୍କୁ ଅଲ୍ଲାହଙ୍କ ସହିତ ସମାନ କରିଦେବି,

ମାତ୍ର ମୁଁ ତୁମମାନଙ୍କୁ ତାଙ୍କରି ବାଟକୁ ଡାକୁଛି ଯିଏ ମହାଶକ୍ତିମାନ ଏବଂ ଅତ୍ୟନ୍ତ କ୍ଷମାଶୀଳ । ୪୩. ଏଥିରେ ସନ୍ଦେହ ନାହିଁ ଯେ ତୁମେମାନେ ମୋତେ ଯେଉଁମାନଙ୍କ ବାଟକୁ ଡାକୁଛ ସେମାନେ ଇହଲୋକରେ ପ୍ରାର୍ଥନାଯୋଗ୍ୟ ନୁହନ୍ତି ବା ପରଲୋକରେ ମଧ୍ୟ (ପ୍ରାର୍ଥନାଯୋଗ୍ୟ) ନୁହନ୍ତି । ଆମ ସମସ୍ତଙ୍କୁ ଅଲ୍ଲାହଙ୍କ ପାଖକୁ ଫେରିବାକୁ ହେବ ଏବଂ ସୀମାଲଂଘନ କରୁଥିବା ଲୋକମାନେ ନର୍କବାସୀ ହେବେ । ୪୪. ତୁମେମାନେ ଭବିଷ୍ୟତରେ ମୋ' କଥା ସ୍ମରଣ କରିବ । ମୁଁ ମୋ' ନିଜ ବିଷୟ ଅଲ୍ଲାହଙ୍କ ଉପରେ ଛାଡ଼ି ଦେଉଛି । ଅଲ୍ଲାହ୍ ଅବଶ୍ୟ ତାଙ୍କ ଦାସମାନଙ୍କୁ ଦେଖୁଛନ୍ତି ।"

୪୫. ସୁତରାଂ, ଅଲ୍ଲାହ୍ ସେହି ବ୍ୟକ୍ତିକୁ ସେମାନଙ୍କ କୁଚକ୍ରାନ୍ତରୁ ରକ୍ଷା କଲେ ଏବଂ ଫିରଔନ୍‌ର ଅନୁଗତମାନେ ଏକ ଭୟଙ୍କର ବିପଦର ଶିକାର ହେଲେ । ୪୬. ସେମାନଙ୍କୁ ସକାଳେ ଓ ସନ୍ଧ୍ୟାରେ ନର୍କର ନିଆଁ ସାମନାରେ ହାଜର କରାଯାଉଛି । ଯେଉଁଦିନ ପ୍ରଳୟ ହେବ, (ଦେବଦୂତମାନଙ୍କୁ ଆଜ୍ଞା ଦିଆଯିବ) "ଫିରଔନର ଅନୁଗତମାନଙ୍କୁ କଠୋର ଶାସ୍ତି ଦିଅ ।" ୪୭. ଯେତେବେଳେ ସେମାନେ ନର୍କରେ ପରସ୍ପର ସହିତ ଝଗଡ଼ା କରିବେ, ସେତେବେଳେ ଦୁର୍ବଳ ଶ୍ରେଣୀର ଲୋକମାନେ ବଡ଼ ବୋଲାଉଥିବା ଲୋକମାନଙ୍କୁ କହିବେ, "ଆମେ ତ ତୁମମାନଙ୍କର ଅନୁଗତ ଥିଲୁ, କ'ଣ ଏବେ ତୁମେମାନେ ଆମ ନର୍କଦଣ୍ଡରୁ କିଛି ଲାଘବ କରିପାରିବ ?" ୪୮. ବଡ଼ବଡ଼ିଆମାନେ କହିବେ, "ଆମେ ସମସ୍ତେ ତ ନର୍କରେ ଅଛୁ । ଅଲ୍ଲାହ୍ ତାଙ୍କ ଦାସମାନଙ୍କର ବିଚାର କରି ସାରିଛନ୍ତି ।" ୪୯. ନର୍କରେ ଥିବା ଲୋକମାନେ ନର୍କର ପ୍ରହରୀମାନଙ୍କୁ କହିବେ, "ତୁମେମାନେ ତୁମ ପାଳନକର୍ତ୍ତାଙ୍କୁ ପ୍ରାର୍ଥନା କର ଯେ ସେ ଦିନକ ପାଇଁ ହେଲେ ଆମ ଦଣ୍ଡ କୋହଳ କରିଦିଅନ୍ତୁ ।" ୫୦. ସେମାନେ କହିବେ, "କ'ଣ ତୁମମାନଙ୍କ ପାଖକୁ ତୁମ ଈଶ୍ୱରଦୂତମାନେ ସ୍ପଷ୍ଟ ପ୍ରମାଣ ନେଇ ଯାଇ ନଥିଲେ ?" ଏମାନେ କହିବେ, "ହଁ, ଆସିଥିଲେ ।" ସେମାନେ ଉତ୍ତର ଦେବେ, "ତା'ହେଲେ ତୁମେମାନେ ନିଜେ ପ୍ରାର୍ଥନା କର ।" ନାସ୍ତିକମାନଙ୍କର ପ୍ରାର୍ଥନା ବୃଥା ହୋଇଥାଏ ।

୫୧. ଆମ୍ଭେ ଅବଶ୍ୟ ଆମ୍ଭର ବାର୍ତ୍ତାବହ ଓ ସଦ୍‌ବିଶ୍ୱାସୀ ଲୋକମାନଙ୍କୁ ସାଂସାରିକ ଜୀବନରେ ସାହାଯ୍ୟ କରୁ ଏବଂ ସେଦିନ ମଧ୍ୟ କରିବୁ ଯେଉଁଦିନ

ସାକ୍ଷୀମାନେ (ଆମ୍ଭ ସମ୍ମୁଖରେ) ହାଜର ହେବେ । ୫୨. ସେଦିନ ପାପୀମାନଙ୍କର ବାହାନା ସେମାନଙ୍କ କାମରେ ଆସିବନାହିଁ । ସେମାନଙ୍କୁ ଭର୍ତ୍ସନା କରାଯିବ ଏବଂ ସେମାନେ ଅତି କଦର୍ଯ୍ୟ ସ୍ଥାନରେ ରହିବେ । ୫୩. ଆମ୍ଭେ ମୁ'ସାଙ୍କୁ ମାର୍ଗଦର୍ଶନକାରୀ ଗ୍ରନ୍ଥ ପ୍ରଦାନ କଲୁ ଏବଂ ଇସ୍ରାଇଲଙ୍କ ବଂଶଧରମାନଙ୍କୁ ଏହାର ଉତ୍ତରାଧିକାରୀ କଲୁ । ୫୪. ସେଥିରେ ବୁଦ୍ଧିମାନ ଲୋକମାନଙ୍କ ମାର୍ଗଦର୍ଶନ ପାଇଁ ଉପଦେଶ ଥିଲା । ୫୫. ତେଣୁ ଧୈର୍ଯ୍ୟ ଧର । ଅଲ୍ଲାହଙ୍କ ବଚନ ଅବଶ୍ୟ ସତ୍ୟ । (ଅଲ୍ଲାହଙ୍କଠାରେ) ନିଜର ଦୋଷ ପାଇଁ କ୍ଷମାପ୍ରାର୍ଥନା କରୁଥାଅ ଏବଂ ସକାଳେ ଓ ସଂଧ୍ୟାରେ ତାଙ୍କର ନାମ ସ୍ମରଣ କର ଏବଂ ତାଙ୍କର ସ୍ତୁତିଗାନ କରୁଥାଅ । ୫୬. ଯେଉଁମାନେ କୌଣସି ପ୍ରମାଣ ନଥାଇ ଅଲ୍ଲାହଙ୍କ ବାଣୀ ବିଷୟରେ ଝଗଡ଼ା କରନ୍ତି, ସେମାନଙ୍କ ମନରେ କେବଳ ଆତ୍ମବଡ଼ିମା ବ୍ୟତୀତ ଆଉ କିଛି ନାହିଁ । ସେମାନଙ୍କର ଏହି ଅଭିଳାଷ କଦାପି ପୂରଣ ହେବନାହିଁ । ତେଣୁ ତୁମେ ଅଲ୍ଲାହଙ୍କର ଆଶ୍ରୟ ନିଅ । ସେ ସବୁ ଶୁଣନ୍ତି ଏବଂ ସବୁ ଦେଖନ୍ତି ।

୫୭. ପୃଥିବୀ ଓ ଆକାଶକୁ ସୃଷ୍ଟି କରିବା ମାନବକୁ ସୃଷ୍ଟି କରିବା ତୁଳନାରେ ନିଶ୍ଚୟ ଏକ ବଡ଼ କାର୍ଯ୍ୟ କିନ୍ତୁ ଅଧିକାଂଶ ଲୋକ ଏହା ଜାଣନ୍ତିନାହିଁ । ୫୮. ଆଖି ଥିବା ଏବଂ ଆଖି ନଥିବା ବ୍ୟକ୍ତି ପରସ୍ପର ସମାନ ନୁହନ୍ତି କିମ୍ବା ଦୁରାଚାରୀ ଲୋକମାନେ ସଦ୍‌ବିଶ୍ୱାସୀ ଓ ସଦାଚାରୀମାନଙ୍କ ସହିତ ସମାନ ହୋଇ ନପାରନ୍ତି କିନ୍ତୁ ତୁମେମାନେ ଏଥିପ୍ରତି କ୍ୱଚିତ୍ ଧ୍ୟାନ ଦିଅ । ୫୯. ପ୍ରଳୟ ସମୟ ପାଖେଇ ଆସୁଛି ଯେଉଁଥିରେ କୌଣସି ସନ୍ଦେହ ନାହିଁ ମାତ୍ର ଅଧିକାଂଶ ଲୋକ ଏହାକୁ ବିଶ୍ୱାସ କରନ୍ତି ନାହିଁ ।

୬୦. ତୁମମାନଙ୍କ ପ୍ରଭୁ କହୁଛନ୍ତି, "କେବଳ ମୋତେ ଡାକ । ମୁଁ ତୁମମାନଙ୍କର ପ୍ରାର୍ଥନା ଶୁଣିବି ।" ଯେଉଁମାନେ ଅହଂକାର ବଶତଃ ମୋ' ଉପାସନାରୁ ମୁହଁ ମୋଡ଼ନ୍ତି, ସେମାନେ ଲାଂଛିତ ହୋଇ ନର୍କକୁ ଯିବେ ।

୬୧. ସେ ହିଁ ଅଲ୍ଲାହ୍, ଯିଏ ତୁମମାନଙ୍କ ପାଇଁ ରାତି ସୃଷ୍ଟି କଲେ ଯେପରିକି ତୁମେମାନେ ବିଶ୍ରାମ କରିବ ଏବଂ ଦିନକୁ ପ୍ରକାଶମାନ କଲେ । ବାସ୍ତବରେ ଅଲ୍ଲାହ୍ ମନୁଷ୍ୟମାନଙ୍କ ପ୍ରତି ବହୁ ଅନୁଗ୍ରହ କରନ୍ତି କିନ୍ତୁ ଅଧିକାଂଶ

ଲୋକ ତାଙ୍କ ପ୍ରତି କୃତଜ୍ଞ ହୁଅନ୍ତିନାହିଁ । ୬୨. ସେହି ଅଲ୍ଲାହ୍ ହିଁ ତୁମମାନଙ୍କର ଈଶ୍ୱର ଯିଏ ସମସ୍ତଙ୍କର ସ୍ରଷ୍ଟା । ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନୁହେଁ । ପୁଣି ତୁମେମାନେ କିପରି ବାଟବଣା ହୋଇଯାଉଛ ? ୬୩. ଏହିପରି ସେମାନେ ବିଭ୍ରାନ୍ତ ହେଲେ ଯେଉଁମାନେ ଅଲ୍ଲାହଙ୍କ ନିଦର୍ଶନଗୁଡ଼ିକୁ ଅସ୍ୱୀକାର କଲେ ।

୬୪. ସେ ହିଁ ଅଲ୍ଲାହ୍ ଯିଏ ତୁମମାନଙ୍କ ପାଇଁ ଧରିତ୍ରୀକୁ ବାସୋପଯୋଗୀ କଲେ, ଆକାଶକୁ ଛାତ କଲେ, ତୁମମାନଙ୍କୁ ରୂପ ଦେଲେ ଏବଂ ଖୁବ ଭଲ ରୂପ ଦେଲେ ଏବଂ ତୁମମାନଙ୍କୁ ଭଲ ଆହାର ମଧ୍ୟ ଦେଲେ । ସେହି 'ଅଲ୍ଲାହ୍' ହେଉଛନ୍ତି ତୁମମାନଙ୍କର ଈଶ୍ୱର । ଅଲ୍ଲାହ୍ ମଙ୍ଗଳମୟ, ଯିଏ ସାରା ଜଗତର ପାଳନକର୍ତ୍ତା । ୬୫. ସେ ଅବିନାଶୀ । ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନୁହେଁ । ତେଣୁ, ନିଜ ଉପାସନାକୁ ତାଙ୍କରି ପାଇଁ ବିଶୁଦ୍ଧ ରଖି ତାଙ୍କୁ ପ୍ରାର୍ଥନା କର । ଜଗତପାଳକ ଅଲ୍ଲାହ୍ ହିଁ ସକଳ ସ୍ତୁତି ଓ ବନ୍ଦନାର ଯୋଗ୍ୟ । ୬୬. (ହେ ବାର୍ତ୍ତାବହ!) କହିଦିଅ, "ତୁମେମାନେ ଅଲ୍ଲାହଙ୍କୁ ଛାଡ଼ି ଯେଉଁମାନଙ୍କୁ ଡାକୁଛ, ମୋତେ ସେମାନଙ୍କର ଉପାସନା କରିବାକୁ ବାରଣ କରାଯାଇଛି । ମୋ' ପାଖକୁ ମୋ' ପ୍ରଭୁଙ୍କଠାରୁ ସ୍ପଷ୍ଟ ପ୍ରମାଣ ଆସିସାରିଛି ଏବଂ ମୋତେ ଜଗତପାଳକଙ୍କ ନିକଟରେ ନିଜକୁ ସମର୍ପଣ କରିବାର ଆଜ୍ଞା ଦିଆଯାଇଛି ।

୬୭. ସେ ହିଁ ତୁମମାନଙ୍କୁ (ପ୍ରଥମେ) ମାଟିରୁ ସୃଷ୍ଟି କଲେ ଏବଂ ପୁଣି ଏକ ଶୁକ୍ରବିନ୍ଦୁ କରିଦେଲେ । ପୁଣି ସେ ତୁମମାନଙ୍କୁ ଏକ ରକ୍ତପିଣ୍ଡରେ ପରିଣତ କରନ୍ତି ଏବଂ ଶିଶୁ ରୂପେ (ମାତୃଗର୍ଭରୁ) ବାହାର କରନ୍ତି । ତା'ପରେ ତୁମମାନଙ୍କୁ ଯୌବନ ଓ ବୃଦ୍ଧାବସ୍ଥାରେ ପହଁଚାଇ ଦିଅନ୍ତି । ତୁମମାନଙ୍କ ମଧ୍ୟରୁ କେତେକ ଏହା ପୂର୍ବରୁ ମଧ୍ୟ ମରିଯାଆନ୍ତି । ଏହା ଏଇଥିପାଇଁ ହୁଏ ଯେ ତୁମେମାନେ ଯେପରି (ସଂସାରରେ) ନିର୍ଦ୍ଧାରିତ ସମୟ ପୂରଣ କରିବ ଏବଂ ଏବିଷୟରେ ଚିନ୍ତା କରିବ । ୬୮. ସେ ହିଁ ଜୀବନ ଓ ମୃତ୍ୟୁ ଦିଅନ୍ତି । ଯେତେବେଳେ ସେ କୌଣସି କାର୍ଯ୍ୟ କରିବାକୁ ସ୍ଥିର କରନ୍ତି, ତା'ବିଷୟରେ କେବଳ ଏତିକି କହନ୍ତି ଯେ ହୋଇଯା' ଏବଂ ତାହା ହୋଇଯାଏ ।

୬୯. କ'ଣ ତୁମେ ଦେଖୁନାହଁ ଯେ ଯେଉଁମାନେ ଅଲ୍ଲାହଙ୍କ ବାଣୀ ବିଷୟରେ ଯୁକ୍ତିତର୍କ କରୁଛନ୍ତି, ସେମାନେ କିପରି ବାଟବଣା ହୋଇ ଯାଉଛନ୍ତି? ୭୦. ଯେଉଁମାନେ ଆମ୍ଭର ଗ୍ରନ୍ଥକୁ ଅସ୍ୱୀକାର କଲେ ଏବଂ ସେହି ଶିକ୍ଷାକୁ ମଧ୍ୟ, ଯାହା ଆମ୍ଭେ ନିଜ ବାର୍ତ୍ତାବହମାନଙ୍କ ଦ୍ୱାରା ପଠାଇଥିଲୁ, ସେମାନେ ଶୀଘ୍ର (ଏହାର ପରିଣାମ) ଜାଣିଯିବେ। ୭୧. ଯେତେବେଳେ ସେମାନଙ୍କ ବେକରେ ଗଳାବନ୍ଧ ପକାଇ ଦିଆଯିବ ଏବଂ ଜଂଜିର ବନ୍ଧା ହେବ ଏବଂ ସେମାନଙ୍କୁ ଘୋଷାରି ନିଆଯିବ, ୭୨. ଫୁଟନ୍ତା ପାଣିରେ ଏବଂ ତା'ପରେ ସେମାନଙ୍କୁ ନିଆଁରେ ଫିଙ୍ଗି ଦିଆଯିବ, ୭୩. ପୁଣି ସେମାନଙ୍କୁ ପ୍ରଶ୍ନ କରାଯିବ, "ତୁମମାନଙ୍କର ସେହି ଆରାଧ୍ୟମାନେ କାହାନ୍ତି ଯେଉଁମାନଙ୍କୁ ତୁମେମାନେ ଅଲ୍ଲାହଙ୍କ ସହିତ ସମାନ କରିଥିଲ, ୭୪. ଏବଂ ଅଲ୍ଲାହଙ୍କୁ ପରିତ୍ୟାଗ କରି ଦେଇଥିଲ?" ସେମାନେ ଉତ୍ତର ଦେବେ, "ସେମାନେ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ ବରଂ ଆମେ ତ ପୂର୍ବେ କାହାରିକୁ ଡାକୁ ନଥିଲୁ।" ଅଲ୍ଲାହ ମିଥ୍ୟାବିଶ୍ୱାସୀମାନଙ୍କୁ ଏହିପରି ବିଭ୍ରାନ୍ତ ହେବାକୁ ଛାଡ଼ିଦିଅନ୍ତି। ୭୫. (ସେମାନଙ୍କୁ କୁହାଯିବ) "ତୁମମାନଙ୍କର ଏଭଳି ପରିଣତିର କାରଣ ହେଉଛି ଯେ ତୁମେମାନେ ପୃଥିବୀରେ ଅନୁଚିତ ଆନନ୍ଦ କରୁଥିଲ ଏବଂ ଭାରି ଗର୍ବ କରୁଥିଲ। ୭୬. ଏବେ ନର୍କକୁ ଯାଅ ଯେଉଁଠି ତୁମେମାନେ ସର୍ବଦା ରହିବ।" ଆତ୍ମଗର୍ବୀମାନଙ୍କ ପାଇଁ ଏହା ଅତି କଦର୍ଯ୍ୟ ସ୍ଥାନ।

୭୭. (ହେ ବାର୍ତ୍ତାବହ!) ଧୈର୍ଯ୍ୟ ଧର। ଅଲ୍ଲାହଙ୍କ ବଚନ ଅଟଳ ସତ୍ୟ। ଯେଉଁ ଶାସ୍ତି ବିଷୟରେ ଆମ୍ଭେ ସେମାନଙ୍କୁ ସାବଧାନ କରୁଛୁ, ଆମ୍ଭେ ଚାହିଁଲେ ସେଥିରୁ କିଛି ତୁମକୁ (ତୁମ ଜୀବନକାଳରେ) ଦେଖାଇପାରୁ କିମ୍ବା ତା'ପୂର୍ବରୁ ତୁମକୁ ସଂସାରରୁ ନେଇଯାଇ ପାରୁ। ଯାହାହେଲେ ମଧ୍ୟ ସେମାନଙ୍କୁ ଆମ୍ଭ ପାଖକୁ ଫେରିବାକୁ ହେବ। ୭୮. ତୁମ ପୂର୍ବରୁ ଆମ୍ଭେ ଅନେକ ବାର୍ତ୍ତାବହଙ୍କୁ ପଠାଇଛୁ। ସେମାନଙ୍କ ମଧ୍ୟରୁ କେତେକଙ୍କ ବିଷୟରେ ଆମ୍ଭେ ତୁମକୁ କହିଛୁ ଏବଂ ଆଉ କେତେକଙ୍କ ବିଷୟରେ କହିନାହୁଁ। କୌଣସି ବାର୍ତ୍ତାବହଙ୍କର ସାଧ୍ୟ ନାହିଁ ଯେ ଅଲ୍ଲାହଙ୍କ ଆଜ୍ଞା ବିନା କୌଣସି ଚମତ୍କାରିତା ଦେଖାଇ ପାରିବେ। ପୁଣି ଯେତେବେଳେ ଅଲ୍ଲାହଙ୍କର ଆଜ୍ଞା ହେବ, ନ୍ୟାୟର ସହିତ ନିଷ୍ପତ୍ତି କରି ଦିଆଯିବ। ସେତେବେଳେ ଅସତ୍ୟକୁ ମାନୁଥିବା ଲୋକମାନେ କ୍ଷତିଗ୍ରସ୍ତ ହେବେ।

୭୯. ସେ ହିଁ ଅଲ୍ଲାହ୍, ଯିଏ ତୁମମାନଙ୍କ ପାଇଁ ଗୃହପାଳିତ ପଶୁ ସୃଷ୍ଟି କଲେ ଯେଉଁମାନଙ୍କ ମଧ୍ୟରୁ କେତେକଙ୍କୁ ତୁମେମାନେ ବାହନ ରୂପେ ବ୍ୟବହାର କର ଏବଂ ଆଉ କେତେକଙ୍କୁ ଖାଦ୍ୟ ରୂପେ । ୮୦. ସେମାନଙ୍କଠାରୁ ତୁମେମାନେ ଅନ୍ୟାନ୍ୟ ଉପକାର ମଧ୍ୟ ପାଇଥାଅ । ସେମାନଙ୍କ ସାହାଯ୍ୟରେ ତୁମମାନଙ୍କ ମନରେ ଥିବା ଅନେକ ଇଚ୍ଛା ପୂରଣ ହୋଇଥାଏ । ତୁମେମାନେ ସେମାନଙ୍କ ପିଠି ଉପରେ ବସ ଏବଂ ନୌକାରେ ମଧ୍ୟ ବସିଥାଅ । ୮୧. ସେ ତୁମମାନଙ୍କୁ ତାଙ୍କର ବିଭିନ୍ନ ନିଦର୍ଶନ ଦେଖାଇଥାଆନ୍ତି । ତୁମେମାନେ ତାଙ୍କର କେଉଁ ନିଦର୍ଶନକୁ ଅସ୍ୱୀକାର କରିବ ?

୮୨. କ'ଣ ଏମାନେ ଧରାପୃଷ୍ଠରେ ବୁଲାବୁଲି କରି ଦେଖୁନାହାନ୍ତି ଯେ ଏମାନଙ୍କ ପୂର୍ବ ଲୋକମାନଙ୍କର କିଭଳି ପରିଣାମ ହେଲା ? ଅଥଚ ସେମାନେ ଏମାନଙ୍କଠାରୁ ସଂଖ୍ୟାରେ ଅଧିକ ଥିଲେ, ଅଧିକ ଶକ୍ତିଶାଳୀ ଥିଲେ ଏବଂ ଏମାନଙ୍କ ଅପେକ୍ଷା ଧରାପୃଷ୍ଠରେ ଅଧିକ ସ୍ମୃତି ମଧ୍ୟ ଛାଡ଼ି ଯାଇଥିଲେ । ସେମାନେ ଯାହା ଅର୍ଜନ କରିଥିଲେ ତାହା ସେମାନଙ୍କର କୌଣସି କାମରେ ଆସିଲାନାହିଁ । ୮୩. ଯେତେବେଳେ ସେମାନଙ୍କ (ପାଇଁ ନିଯୁକ୍ତ) ବାର୍ତ୍ତାବହମାନେ ସେମାନଙ୍କ ପାଖକୁ ସ୍ପଷ୍ଟ ପ୍ରମାଣ ନେଇ ଯାଆନ୍ତି, ସେମାନେ ନିଜ ଜ୍ଞାନର ଅଭିମାନ କରନ୍ତି । ଯେଉଁ ବିପଦକୁ ସେମାନେ ବିଦ୍ରୂପ କରୁଥିଲେ, ତାହା ସେମାନଙ୍କ ଉପରେ ମାଡ଼ି ଆସିଥିଲା । ୮୪. ଯେତେବେଳେ ସେମାନେ ଆମ୍ଭର ଶାସ୍ତି ଦେଖିଲେ, କହିଲେ ଯେ ଆମ୍ଭେ ଏକ ଅଲ୍ଲାହଙ୍କୁ ମାନୁଛୁ ଏବଂ ଯେଉଁମାନଙ୍କୁ ତାଙ୍କ ସହିତ ସମାନ କରୁଥିଲୁ ସେମାନଙ୍କୁ ଅଗ୍ରାହ୍ୟ କରୁଛୁ ।" ୮୫. ଯେହେତୁ ସେମାନେ ଆମ୍ଭର ଶାସ୍ତି ଦେଖିନେଲେ, ତେଣୁ ସେମାନଙ୍କ ଧର୍ମବିଶ୍ୱାସ ସେମାନଙ୍କ ପାଇଁ ଲାଭପ୍ରଦ ହେଲାନାହିଁ । ନିଜ ଦାସମାନଙ୍କ ବିଷୟରେ (ଯୁଗେଯୁଗେ) ଅଲ୍ଲାହଙ୍କର ଏହି ନୀତି ରହିଆସିଛି । ଏଠାରେ ନାସ୍ତିକମାନେ କ୍ଷତିଗ୍ରସ୍ତ ହେଲେ ।

## ଅଧ୍ୟାୟ ୪୧, ହା ମୀମ୍ ସଜ୍‌ଦା

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ହା – ମୀମ୍। ୨. ଏହି ଗ୍ରନ୍ଥଟି ଅତ୍ୟନ୍ତ କୃପାଶୀଳ ଏବଂ ପରମ ଦୟାଳୁ ଅଲ୍ଲାହ୍‌ଙ୍କ ଦ୍ୱାରା ପଠାଯାଇଛି। ୩. ଏହା ଆରବୀ ଭାଷାର ଗ୍ରନ୍ଥ ଯାହାର ବାଣୀଗୁଡ଼ିକୁ ଜ୍ଞାନୀ ଲୋକମାନଙ୍କ ବୁଝିବା ଲାଗି ବିଶଦ ଭାବରେ ବର୍ଣ୍ଣନା କରାଯାଇଛି। ୪. ଏହା (ସଦାଚାରୀମାନଙ୍କୁ) ସୁସମାଚାର ଦିଏ ଏବଂ (ଦୁରାଚାରୀମାନଙ୍କୁ) ସତର୍କ କରେ। ତଥାପି ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଏହାକୁ ଉପେକ୍ଷା କରୁଛନ୍ତି ଏବଂ କିଛି ଶୁଣୁ ନାହାନ୍ତି। ୫. ସେମାନେ କହୁଛନ୍ତି, "ତୁମେ ଆମକୁ ଯେଉଁଥିପାଇଁ ଡାକୁଛ, ସେଥିପାଇଁ ଆମ ହୃଦୟର ଦ୍ୱାର ବନ୍ଦ ଅଛି। ଆମମାନଙ୍କର କାନ ମଧ୍ୟ ବଧିର ହୋଇଯାଇଛି ଏବଂ ଆମ ଓ ତୁମ ମଝିରେ ଏକ ପରଦା ପଡ଼ିଛି। ତେଣୁ ତୁମେ ତୁମ କାମ କର ଏବଂ ଆମେ ଆମ କାମ କରୁଛୁ।"

୬. କହିଦିଅ, "ମୁଁ ମଧ୍ୟ ତୁମମାନଙ୍କ ପରି ଜଣେ ମନୁଷ୍ୟ କିନ୍ତୁ ମୋତେ ଦୈବବାଣୀ ହୁଏ ଯେ ତୁମମାନଙ୍କର ଈଶ୍ୱର ଜଣେ ଈଶ୍ୱର। ତେଣୁ ତୁମେମାନେ ତାଙ୍କରିଠାରେ ଲକ୍ଷ୍ୟ ରଖ ଏବଂ ତାଙ୍କ ନିକଟରେ କ୍ଷମାଭିକ୍ଷା କର।" ଯେଉଁମାନେ ଅନ୍ୟମାନଙ୍କୁ ତାଙ୍କର ସମତୁଲ୍ୟ କରନ୍ତି, ସେମାନଙ୍କର ସର୍ବନାଶ ହେବ। ୭. ସେମାନେ ଜକାତ୍ ଦିଅନ୍ତି ନାହିଁ କିମ୍ବା ପରଲୋକରେ ବିଶ୍ୱାସ କରନ୍ତି ନାହିଁ। ୮. ଯେଉଁମାନେ ବିଶ୍ୱାସ କରନ୍ତି ଏବଂ ଭଲକର୍ମ କରନ୍ତି, ସେମାନଙ୍କୁ ଅସରନ୍ତି ପୁରସ୍କାର ମିଳିବ।

୯. ସେମାନଙ୍କୁ କୁହ, "କ'ଣ ତୁମେମାନେ ତାଙ୍କୁ ଅସ୍ୱୀକାର କରୁଛ ଯିଏ ପୃଥିବୀକୁ ଦୁଇ ଦିନରେ ସୃଷ୍ଟି କଲେ ଏବଂ ଅନ୍ୟମାନଙ୍କୁ ତାଙ୍କ ସହିତ ସମାନ କରୁଛ? (ସବଧାନ!) ସେ ବ୍ରହ୍ମାଣ୍ଡର ଅଧୀଶ୍ୱର। ୧୦. ସେ ଭୂପୃଷ୍ଠରେ ପାହାଡ଼ପର୍ବତ ସ୍ଥାପନ କଲେ ଏବଂ (ସମସ୍ତ ପ୍ରାଣୀଙ୍କ ପାଇଁ) ବିଭିନ୍ନ ଲାଭକାରୀ ବସ୍ତୁ ସୃଷ୍ଟି କଲେ ଏବଂ ଆବଶ୍ୟକତା ଅନୁଯାୟୀ ଉଚିତ ମାତ୍ରାରେ ଜୀବନଧାରଣର ସାଧନ ଖଂଜିଦେଲେ। ଏହି କାର୍ଯ୍ୟ ଚାରି ଦିନରେ ସଂପୂର୍ଣ୍ଣ ହେଲା। ୧୧. ତା'ପରେ ସେ ଆକାଶ ପ୍ରତି ଧ୍ୟାନ ଦେଲେ ଯାହା ସେତେବେଳେ ଧୂଆଁ ସଦୃଶ (ଅର୍ଥାତ୍ ଗ୍ୟାସୀୟ ଅବସ୍ଥାରେ) ଥିଲା। ସେ ପୃଥିବୀ ଓ ଆକାଶକୁ କହିଲେ, "ଆମ୍ଭର ଆଜ୍ଞା ପାଳନ

କର, ଇଚ୍ଛାରେ ହେଉ ବା ଅନିଚ୍ଛାରେ ।” ସେମାନେ ଉତ୍ତର ଦେଲେ, “ଆମେ ନିଜ ଇଚ୍ଛାରୁ ଆଜ୍ଞା ପାଳନ କରୁଛୁ ।” ୧୨ ପୁଣି ସେ ଦୁଇ ଦିନରେ ସାତୋଟି ଆକାଶ ସୃଷ୍ଟି କଲେ ଏବଂ ପ୍ରତ୍ୟେକ ଆକାଶ ପାଇଁ ଉପଯୁକ୍ତ ନିର୍ଦ୍ଦେଶ ଜାରି କଲେ । ଆମ୍ଭେ ପୃଥିବୀର ନିକଟତମ ଆକାଶକୁ ତାରକା ଦ୍ୱାରା ସଜାଇଲୁ ଏବଂ ଏହାକୁ ସୁରକ୍ଷିତ କଲୁ । ଏହା ମହାଶକ୍ତିମାନ ଓ ମହାଜ୍ଞାନୀ ଅଲ୍ଲାହଙ୍କର ବ୍ୟବସ୍ଥା ।

୧୩. ଯଦି ସେମାନେ ନମାନନ୍ତି, ତେବେ ସେମାନଙ୍କୁ କହିଦିଅ ଯେ ମୁଁ ତୁମମାନଙ୍କୁ ସେହିପରି ଭୟଙ୍କର ବଜ୍ରପାତରୁ ସତର୍କ କରୁଛି ଯେପରି ଆଦ୍ ଓ ସମୁଦ୍ ସଂପ୍ରଦାୟ ଉପରେ ହୋଇଥିଲା । ୧୪. ଯେତେବେଳେ ବିଭିନ୍ନ ସମୟରେ ବାର୍ତ୍ତାବହମାନେ ଆସି ସେମାନଙ୍କୁ ବୁଝାଉଥିଲେ ଯେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ପୂଜା କରନାହିଁ, ସେମାନେ ଉତ୍ତର ଦେଉଥିଲେ, “ଈଶ୍ୱର ଚାହିଁଥିଲେ, ଆମ ପାଖକୁ ଦେବଦୂତମାନଙ୍କୁ ପଠାଇ ପାରିଥାଆନ୍ତେ । ତେଣୁ ତୁମେ ଯାହା ନେଇ ଆସିଛ, ଆମେମାନେ ତାକୁ ମାନୁନାହୁଁ ।”

୧୫. ଆଦ୍ ସଂପ୍ରଦାୟର ଲୋକମାନେ ଧରାପୃଷ୍ଠରେ ମିଥ୍ୟା ଅହଙ୍କାର କଲେ ଏବଂ କହିଲେ ଯେ ଆମଠାରୁ ଅଧିକ ଶକ୍ତିଶାଳୀ ଆଉ କିଏ ଅଛି ? କ’ଣ ସେମାନେ ଏହା ଦେଖିପାରିଲେ ନାହିଁ ଯେ ଯେଉଁ ଅଲ୍ଲାହ୍ ସେମାନଙ୍କୁ ସୃଷ୍ଟି କରିଛନ୍ତି, ସେ ସେମାନଙ୍କଠାରୁ ଅଧିକ ଶକ୍ତିଶାଳୀ? ସେମାନେ ଆମ୍ଭର ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିଦେଲେ । ୧୬. ତେଣୁ କିଛି ଅଶୁଭ ଦିନରେ ଆମ୍ଭେ ସେମାନଙ୍କ ଉପରେ ବିନାଶକାରୀ ବାତ୍ୟା ପଠାଇଥିଲୁ ଯେପରିକି ସେମାନଙ୍କୁ ସଂସାରରେ ଅପମାନଜନକ ଶାସ୍ତିର ମଜା ଚଖାଇବୁ । ପରଲୋକରେ ଶାସ୍ତି ତ ଏହାଠାରୁ ଅଧିକ ଅପମାନଜନକ ହେବ ଏବଂ ସେମାନଙ୍କୁ କୌଣସି ସାହାଯ୍ୟ ମିଳିବନାହିଁ ।

୧୭. ସମୁଦ ସଂପ୍ରଦାୟକୁ ଆମ୍ଭେ ସତ୍‌ପଥ ଦେଖାଇଥିଲୁ ମାତ୍ର ସେମାନେ ସତ୍‌ପଥ ଛାଡ଼ି ଅନ୍ଧ ହୋଇ ରହିବାକୁ ଅଧିକ ପସନ୍ଦ କଲେ । ଶେଷରେ ସେମାନଙ୍କ ଅର୍ଜିତ କର୍ମ ଯୋଗୁଁ ସେମାନଙ୍କ ଉପରେ ବଜ୍ରପାତ ହେଲା । ଏହା ଏକ ଅପମାନଜନକ ଶାସ୍ତି ଥିଲା । ୧୮. ଏବଂ ଯେଉଁମାନେ ବିଶ୍ୱାସ କରିଥିଲେ ଏବଂ ସଦାଚାରୀ ଥିଲେ, ଆମ୍ଭେ ସେମାନଙ୍କୁ ରକ୍ଷା କରିଥିଲୁ ।

୧୯. ସେଦିନ ଅଲ୍ଲାହଙ୍କ ଶତ୍ରୁମାନଙ୍କୁ ଏକାଠି କରି ନର୍କ ଆଡ଼କୁ ନିଆଯିବ ଏବଂ ସେମାନଙ୍କୁ ବିଭିନ୍ନ ଶ୍ରେଣୀରେ ବାଣ୍ଟି ଦିଆଯିବ, ୨୦. ଯେତେବେଳେ ସେମାନେ ସେଠାରେ ପହଁଚିବେ, ସେମାନଙ୍କ ଆଖି, କାନ ଓ ଚର୍ମ ସେମାନଙ୍କ କର୍ମ ବିଷୟରେ ସାକ୍ଷ୍ୟ ଦେବ । ୨୧. ସେମାନେ ସେମାନଙ୍କ ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକୁ ପଚାରିବେ ଯେ ତୁମେମାନେ ଆମ ବିରୁଦ୍ଧରେ କିପରି ସାକ୍ଷ୍ୟ ଦେଲ ? ସେମାନେ ଉତ୍ତର ଦେବେ, "ଆମକୁ ସେହି ଅଲ୍ଲାହ୍ ବାକ୍‌ଶକ୍ତି ପ୍ରଦାନ କଲେ ଯିଏ ସମସ୍ତଙ୍କୁ ବାକ୍‌ଶକ୍ତି ପ୍ରଦାନ କରିଛନ୍ତି । ସେ ହିଁ ତୁମମାନଙ୍କୁ ପ୍ରଥମ ଥର ସୃଷ୍ଟି କରିଥିଲେ ଏବଂ ଏବେ ତୁମେମାନେ ତାଙ୍କରି ପାଖକୁ ଫେରି ଆସିଛ । ୨୨. ତୁମେମାନେ (ପାପ କଲାବେଳେ) ନିଜକୁ ଲୁଚାଇ ପାରିଲନାହିଁ ଯେ କାଳେ ତୁମମାନଙ୍କର ଆଖି, କାନ ବା ଚର୍ମ ତୁମମାନଙ୍କ ବିରୁଦ୍ଧରେ ସାକ୍ଷ୍ୟ ଦେବେ ମାତ୍ର ତୁମେମାନେ ଭାବିଥିଲ ଯେ ଅଲ୍ଲାହ୍ ତୁମମାନଙ୍କର ଅଧିକାଂଶ କର୍ମ ବିଷୟରେ ଜାଣି ପାରିବେନାହିଁ । ୨୩. ନିଜ ପାଳନକର୍ତ୍ତାଙ୍କ ବିଷୟରେ ତୁମମାନଙ୍କର ଏହି ଧାରଣା ହିଁ ତୁମମାନଙ୍କର ସର୍ବନାଶର କାରଣ ହେଲା ଏବଂ ତୁମେମାନେ ସର୍ବସ୍ୱାନ୍ତ ହେଲ ।" ୨୪. ବର୍ତ୍ତମାନ ସେମାନେ ଧୈର୍ଯ୍ୟ ଅବଲମ୍ବନ କଲେ ମଧ୍ୟ ନର୍କରେ ରହିବେ ଏବଂ କ୍ଷମା ମାଗିଲେ ମଧ୍ୟ ସେମାନଙ୍କୁ କ୍ଷମା ମିଳିବ ନାହିଁ । ୨୫. ଆମ୍ଭେ (ସଂସାରରେ) ସେମାନଙ୍କ ପାଇଁ କେତେକ ସହଚର ନିଯୁକ୍ତ କରିଥିଲୁ ଯେଉଁମାନେ ସେମାନଙ୍କୁ ସେମାନଙ୍କର ସବୁ କର୍ମଗୁଡ଼ିକୁ ସୁନ୍ଦର କରି ଦେଖାଉଥିଲେ । ଏମାନଙ୍କ ପାଇଁ ମଧ୍ୟ ସେହିପରି ଶାସ୍ତିର ଯଥାର୍ଥତା ସିଦ୍ଧ ହେଲା ଯେପରି ଏମାନଙ୍କ ପୂର୍ବବର୍ତ୍ତୀ ମାନବ ଓ ଜିନ୍ ସମୁଦାୟ ପାଇଁ ହୋଇଥିଲା । ଏମାନେ ସମସ୍ତେ କ୍ଷତିଗ୍ରସ୍ତ ହେଲେ ।

୨୬. ନାସ୍ତିକମାନେ (ପରସ୍ପରକୁ) କହୁଛନ୍ତି ଯେ ତୁମେମାନେ କୁରଆନ୍ ଶୁଣନାହିଁ ଏବଂ (କୁରଆନ୍‌ପାଠ ହେଲା ବେଳେ) ପାଟିତୁଣ୍ଡ କର । ତା'ହେଲେ ତୁମେମାନେ ସେମାନଙ୍କୁ ଜିତିବ । ୨୭. ଆମ୍ଭେ ନିଶ୍ଚୟ ଏହି ନାସ୍ତିକମାନଙ୍କୁ କଠୋର ଦଣ୍ଡର ମଜା ଚଖାଇବୁ ଏବଂ ଯେଉଁ ଅପକର୍ମଗୁଡ଼ିକ ସେମାନେ କରୁଛନ୍ତି, ସେଥିପାଇଁ ସେମାନଙ୍କୁ ଦଣ୍ଡ ଦେବୁ । ୨୮. ଅଲ୍ଲାହଙ୍କର ଏହି ଶତ୍ରୁମାନଙ୍କ ପାଇଁ ନର୍କଦଣ୍ଡ ହିଁ ଉପଯୁକ୍ତ ଶାସ୍ତି ଯେଉଁଠି ସେମାନେ ଚିରକାଳ ରହିବେ । ଏହା ଆମ୍ଭ ବାଣୀଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିବାର ଫଳ । ୨୯. ନାସ୍ତିକମାନେ (ସେଦିନ)

କହିବେ, "ହେ ପ୍ରଭୁ! ଆମକୁ ସେହି ମାନବ ଓ ଜିନ୍‌ମାନଙ୍କୁ ଦେଖାଇ ଦିଅ ଯେଉଁମାନେ ଆମକୁ ପଥଭ୍ରଷ୍ଟ କରିଥିଲେ । ଆମେ ସେମାନଙ୍କୁ ପାଦରେ ଦଳି ଦେବୁ ଯେପରିକି ସେମାନେ ଭଲରୂପେ ଅପମାନିତ ହେବେ ।"

୩୦. ଯେଉଁମାନେ କହିଲେ ଯେ ଆମମାନଙ୍କ ପାଳନକର୍ତ୍ତା ହେଉଛନ୍ତି ଅଲ୍ଲାହ୍ ଏବଂ ଏଥିରେ ଅଟଳ ରହିଲେ, (ମୃତ୍ୟୁ ସମୟରେ) ସେମାନଙ୍କ ପାଖକୁ ଦେବଦୂତମାନେ ଆସି କହିବେ, "ଭୟ କରନାହିଁ ବା ଦୁଃଖ କରନାହିଁ । ତୁମମାନଙ୍କପାଇଁ ସ୍ୱର୍ଗପ୍ରାପ୍ତିର ଶୁଭସମ୍ବାଦ ଅଛି ଯାହାର ପ୍ରତିଶ୍ରୁତି ତୁମକୁ ଦିଆଯାଇଥିଲା ।  ୩୧. ଆମେମାନେ ପାର୍ଥିବ ଜୀବନରେ ତୁମର ସାଥୀ ଥିଲୁ ଏବଂ ପରଲୋକରେ ମଧ୍ୟ ରହିବୁ । ସେଠାରେ ତୁମେମାନେ ଯାହା ଚାହିଁବ, ତାହା ତୁମକୁ ମିଳିବ ଏବଂ ଯାହା ମାଗିବ ତାହା ପାଇବ । ୩୨. ଏହା ତାଙ୍କ ତରଫରୁ ତୁମମାନଙ୍କର ଆତିଥ୍ୟ ହେବ ଯିଏ ଅତ୍ୟନ୍ତ କ୍ଷମାଶୀଳ ଓ ପରମ ଦୟାଳୁ ।"

୩୩. ସେହି ବ୍ୟକ୍ତିର କଥାଠାରୁ ଆଉ କାହା କଥା ଅଧିକ ଭଲ ହୋଇପାରେ, ଯିଏ ଲୋକମାନଙ୍କୁ ଅଲ୍ଲାହ୍‌ଙ୍କ ମାର୍ଗକୁ ଡାକେ, ଭଲ କର୍ମ କରେ ଏବଂ କହେ ଯେ ମୁଁ ଜଣେ ମୁସଲିମ୍ (ଅର୍ଥାତ୍ ଜଣେ ଆଜ୍ଞାଧୀନ ଭକ୍ତ) ?

୩୪. ଭଲ କର୍ମ ଓ ମନ୍ଦ କର୍ମ ସମାନ ନୁହେଁ । ଖରାପ ବ୍ୟବହାରର ଉତ୍ତର ଭଲ ବ୍ୟବହାର ଦ୍ୱାରା ଦିଅ । ପୁଣି ତୁମେ ଦେଖିବ, ଯାହା ସହିତ ତୁମର ଶତ୍ରୁତା ଥିଲା ସେ ତୁମର ଅନ୍ତରଂଗ ବନ୍ଧୁ ପାଲଟିଯିବ । ୩୫. ଏହାର ସୌଭାଗ୍ୟ କେବଳ ସେହିମାନଙ୍କୁ ମିଳେ ଯେଉଁମାନେ ସଂଯମୀ ଏବଂ ସେହିମାନଙ୍କୁ ମିଳେ ଯେଉଁମାନେ ବଡ଼ ଭାଗ୍ୟଶାଳୀ । ୩୬. ଯଦି ଶଇତାନ ତୁମ ମନରେ କୌଣସି ଦୁର୍ଭାବନା ଉତ୍ପନ୍ନ କରେ, ତେବେ ଅଲ୍ଲାହ୍‌ଙ୍କର ଆଶ୍ରୟ ନିଅ । ସେ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି ।

୩୭. ଦିନ, ରାତି, ସୂର୍ଯ୍ୟ ଓ ଚନ୍ଦ୍ର ତାଙ୍କର ନିଦର୍ଶନ । (ହେ ମନୁଷ୍ୟଗଣ !) ତୁମେମାନେ ସୂର୍ଯ୍ୟକୁ ପ୍ରଣାମ କରନାହିଁ କିମ୍ବା ଚନ୍ଦ୍ରକୁ କରନାହିଁ । କେବଳ ଅଲ୍ଲାହ୍‌ଙ୍କୁ ପ୍ରଣାମ କର ଯିଏ ଏଗୁଡ଼ିକୁ ସୃଷ୍ଟି କରିଛନ୍ତି, ଯଦି ପ୍ରକୃତରେ ତୁମେ ତାଙ୍କରି ଉପାସନା କରୁଥାଅ । ୩୮. ତଥାପି ଯଦି ସେମାନେ ଅହଂକାର

କରନ୍ତି ତେବେ (ଜାଣିରଖ ଯେ) ଯେଉଁମାନେ (ଅର୍ଥାତ ଦେବଦୂତମାନେ) ତୁମ ପାଳନକର୍ତ୍ତାଙ୍କ ନିକଟରେ ଅଛନ୍ତି ସେମାନେ ଦିନରାତି ତାଙ୍କର ଗୁଣଗାନ କରନ୍ତି କିନ୍ତୁ କେବେହେଲେ କ୍ଲାନ୍ତ ହୁଅନ୍ତିନାହିଁ । [ପ୍ରଣାମ]

୩୯. ଏହା ମଧ୍ୟ ତାଙ୍କର ଗୋଟିଏ ନିଦର୍ଶନ ଯେ ତୁମେମାନେ ଭୂଇଁକୁ ଶୁଖିଲା ପଡ଼ିଥିବାର ଦେଖ । ପୁଣି ଯେତେବେଳେ ଆମ୍ଭେ ତା' ଉପରେ ଜଳ ବର୍ଷା କରୁ, ଏହା ଜୀବନ୍ତ ହୋଇଉଠେ ଏବଂ (ବିଭିନ୍ନ ପ୍ରକାରର) ସବୁଜିମା ସୃଷ୍ଟି କରେ । ଯିଏ ଏହି (ନିର୍ଜୀବ) ଭୂମିକୁ ଜୀବଦାନ ଦିଅନ୍ତି ସେ ମୃତମାନଙ୍କୁ ନିଶ୍ଚୟ ଜୀବିତ କରିବେ । ସେ ସବୁକିଛି କରିବାକୁ ସକ୍ଷମ ।

୪୦. ଯେଉଁମାନେ ଆମ୍ଭର ବାଣୀକୁ କଦର୍ଥ କରନ୍ତି, ସେମାନେ ଆମ୍ଭଠାରୁ ଲୁଚି ରହିନାହାନ୍ତି । ଯେଉଁ ବ୍ୟକ୍ତିକୁ ନର୍କରେ ଫିଙ୍ଗି ଦିଆଯିବ ସେ ଭଲ ବା ଯିଏ ବିଚାରର ଦିନ ନିର୍ଭୟରେ ଉପସ୍ଥିତ ହେବ, ସେ ଭଲ ? ଯାହା ଇଚ୍ଛା କରୁଥାଅ । ତୁମେମାନେ ଯାହା କରୁଛ ସେ ସବୁ ଦେଖୁଛନ୍ତି । ୪୧. ଏମାନଙ୍କ ପାଖରେ କୁରଆନ ପହଁଚିବା ସତ୍ତ୍ୱେ ଏମାନେ ଏହାକୁ ପ୍ରତ୍ୟାଖ୍ୟାନ କରିଦେଲେ । ବାସ୍ତବରେ ଏହା ଏକ ମହାନ ଗ୍ରନ୍ଥ । ୪୨. ଅସତ୍ୟ ଏହାକୁ (କୌଣସି ଦିଗରୁ) ସ୍ପର୍ଶ କରି ପାରିବନାହିଁ – ନା ଆଗରୁ ନା ପଛରୁ । ଏହା ତତ୍ତ୍ୱଜ୍ଞ ଏବଂ ସ୍ତୁତିଯୋଗ୍ୟ ସତ୍ତାଙ୍କ ଦ୍ୱାରା ପଠାଯାଇଛି ।

୪୩. (ହେ ବାର୍ତ୍ତାବହ !) ତୁମକୁ ତାହାହିଁ କୁହାଯାଉଛି ଯାହା ତୁମ ପୂର୍ବ ଈଶ୍ୱରଦୂତମାନଙ୍କୁ କୁହା ଯାଇଥିଲା । ତୁମ ପ୍ରଭୁ ଅତ୍ୟନ୍ତ କ୍ଷମାଶୀଳ ଏବଂ ସେ କଠୋର ଦଣ୍ଡ ମଧ୍ୟ ଦିଅନ୍ତି । ୪୪. ଯଦି ଆମ୍ଭେ ଏହି କୁରଆନ ଗ୍ରନ୍ଥକୁ ଅଣଆରବୀ ଭାଷାରେ ପଠାଇଥାଆନ୍ତୁ ତା'ହେଲେ ଏମାନେ କହିଥାଆନ୍ତେ, "ଏହାର ବାଣୀଗୁଡ଼ିକୁ କାହିଁକି ପରିଷ୍କାର ଭାବରେ (ଆମ ଭାଷାରେ) ବର୍ଣ୍ଣନା କରା ନଗଲା ? କି ବିଚିତ୍ର କଥା ! କୁରଆନର ଭାଷା ତ ଆରବୀ ନୁହେଁ, ଅଥଚ ଏହାର ବାର୍ତ୍ତାବହ ଜଣେ ଆରବୀୟ !" କହିଦିଅ, "ଯେଉଁମାନେ ବିଶ୍ୱାସ କରନ୍ତି, ଏହା ସେମାନଙ୍କ ପାଇଁ ଏକ ମାର୍ଗଦର୍ଶନକାରୀ ଗ୍ରନ୍ଥ ଏବଂ ସେମାନଙ୍କ ଚିତ୍ତଶୁଦ୍ଧିର ଏକ ସାଧନ କିନ୍ତୁ ଯେଉଁମାନେ ବିଶ୍ୱାସ କରୁନାହାନ୍ତି, ସେମାନଙ୍କ କାନକୁ ଶୁଭେନାହିଁ କମ୍ବା ଆଖିକୁ ଦିଶେନାହିଁ, (ସତେଯେମିତି) ସେମାନଙ୍କୁ ବହୁ ଦୂରରୁ ଡକାଯାଉଛି ।

୪୫. ଆମ୍ଭେ ମୁ'ସାଙ୍କୁ ମଧ୍ୟ ଗ୍ରନ୍ଥ ଦେଇଥିଲୁ ଏବଂ ସେଥିରେ ମଧ୍ୟ ମତଭେଦ ହୋଇଥିଲା । ଯଦି ତୁମ ପ୍ରଭୁଙ୍କ ଦ୍ୱାରା ଗୋଟିଏ କଥା ପୂର୍ବରୁ ସ୍ଥିର ହୋଇ ନଥାଆନ୍ତା, ତେବେ ସେମାନଙ୍କର ନିଷ୍ପତ୍ତି ହୋଇସାରନ୍ତା । ପ୍ରକୃତରେ ଏମାନେ କୁରଆନ ବିଷୟରେ ଏଭଳି ସନ୍ଦେହରେ ପଡ଼ିଛନ୍ତି ଯାହା ସେମାନଙ୍କୁ ବିଚଳିତ କରୁଛି । ୪୬. ଯିଏ ଭଲ କର୍ମ କରିବ, ସେ ନିଜ ପାଇଁ କରିବ ଏବଂ ଯିଏ କୁକର୍ମ କରିବ, ତା' ଫଳ ସେ ନିଜେହିଁ ଭୋଗିବ । ତୁମ ପାଳନକର୍ତ୍ତା ତାଙ୍କର ଦାସମାନଙ୍କ ପ୍ରତି ଅନ୍ୟାୟ କରନ୍ତିନାହିଁ ।

୪୭. ପ୍ରଳୟ ବିଷୟ କେବଳ ତାଙ୍କୁହିଁ ଜଣା । ତାଙ୍କ ଅଜ୍ଞାତସାରରେ କୌଣସି ଫଳ ବୃନ୍ତରୁ ବାହାରେ ନାହିଁ କିମ୍ବା କୌଣସି ମାଇ ପ୍ରାଣୀ ଗର୍ଭବତୀ ହୁଏନାହିଁ ଅଥବା ସନ୍ତାନ ପ୍ରସବ କରେନାହିଁ । ଯେଉଁଦିନ ସେ ବହୁଈଶ୍ୱରବାଦୀମାନଙ୍କୁ ଡାକି ପଚାରିବେ, "ମୋର ଅଂଶୀଦାରମାନେ କାହାନ୍ତି ?" ସେମାନେ ଉତ୍ତର ଦେବେ, "ଆମେ ତୁମ ସମ୍ମୁଖରେ କହୁଛୁ ଯେ ଆମ ଭିତରୁ ଆଜି କେହି ଏହାର ସାକ୍ଷୀ ନାହାନ୍ତି ।" ୪୮. ଏହା ପୂର୍ବରୁ ଯେଉଁମାନଙ୍କୁ ଏମାନେ ଡାକୁଥିଲେ, ସମସ୍ତେ ଅନ୍ତର୍ଦ୍ଧାନ ହୋଇଯିବେ ଏବଂ ଏମାନେ ଜାଣିଯିବେ ଯେ ଆଉ ରକ୍ଷା ମିଳିବ ନାହିଁ ।

୪୯. ମଣିଷ ନିଜର ମଙ୍ଗଳ ପାଇଁ ପ୍ରାର୍ଥନା କଲାବେଳେ ଥକେନାହିଁ କିନ୍ତୁ ଯଦି କୌଣସି ଦୁଃଖକଷ୍ଟ ଆସେ, ତେବେ ହତାଶ ହୋଇ ଆଶା ଛାଡ଼ିଦିଏ । ୫୦. ଯଦି ଦୁଃଖ ପରେ ଆମ୍ଭେ ତାକୁ ନିଜ କୃପାର ସ୍ୱାଦ ଚଖାଇ ଦେଉ, ସେ କହେ, "ଏହାହିଁ ମୋ'ର ପ୍ରାପ୍ୟ । ମୁଁ ବିଶ୍ୱାସ କରେନା ଯେ ପ୍ରଳୟ ହେବ । ଯଦିବା ମୁଁ ଈଶ୍ୱରଙ୍କ ପାଖକୁ ଯାଏ, ତାଙ୍କ ପାଖରେ ମଧ୍ୟ ମୁଁ ସୁଖଭୋଗ କରିବି ।" ଆମ୍ଭେ ନାସ୍ତିକମାନଙ୍କୁ ସେମାନଙ୍କ କର୍ମ ବିଷୟରେ ଅବଶ୍ୟ ଜଣାଇବୁ ଏବଂ ସେମାନଙ୍କୁ କଠୋର ଶାସ୍ତିର ମଜା ଚଖାଇବୁ ।

୫୧. ଯେତେବେଳେ ଆମ୍ଭେ ମଣିଷକୁ ସୁଖ ଦେଉ, ସେ ଆମ୍ଭଠାରୁ ମୁହଁ ଫେରାଇ ଦୂରକୁ ଚାଲିଯାଏ ଏବଂ ଯଦି ତା' ଉପରେ କିଛି ବିପଦ ପଡ଼େ, ସେ ଲମ୍ବାଲମ୍ବା ପ୍ରାର୍ଥନା କରିଥାଏ ।

୫୨. ସେମାନଙ୍କୁ କୁହ, "କ'ଣ ତୁମେମାନେ ଏହା ଚିନ୍ତା କରିଛ ଯେ ଯଦି ଏହି କୁରଆନ ପ୍ରକୃତରେ ଅଲ୍ଲାହଙ୍କର ବାଣୀ ହୋଇଥାଏ ଏବଂ ତୁମେମାନେ ଏହାକୁ ପ୍ରତ୍ୟାଖ୍ୟାନ କରୁଥାଅ, ତେବେ ଏଭଳି ବ୍ୟକ୍ତିଠାରୁ ଅଧିକ ପଥଭ୍ରଷ୍ଟ ଆଉ କିଏ ହୋଇପାରେ ଯିଏ ଏହା ବିରୋଧରେ ଅଣ୍ଟା ଭିଡ଼ି ଠିଆ ହୁଏ ?"

୫୩. ଆମ୍ଭେ ସେମାନଙ୍କୁ ବ୍ରହ୍ମାଣ୍ଡରେ ଥିବା ନିଜ ମହିମାର ଅନେକ ନିଦର୍ଶନ ଦେଖାଇବୁ ଏବଂ ସେମାନଙ୍କ ଅସ୍ତିତ୍ୱରେ ଥିବା ନିଦର୍ଶନଗୁଡ଼ିକୁ ମଧ୍ୟ, ଯେପରିକି ସେମାନଙ୍କ ପାଖରେ ଏହା ସ୍ପଷ୍ଟ ହୋଇଯିବ ଯେ କୁରଆନ ପ୍ରକୃତରେ ସତ୍ୟ । କ'ଣ ଏହା ଯଥେଷ୍ଟ ନୁହେଁ ଯେ ତୁମ ଈଶ୍ୱର ସବୁ କଥାର ସାକ୍ଷୀ ଅଛନ୍ତି ? ୫୪. ଶୁଣ ! ଏମାନେ ଈଶ୍ୱରଙ୍କ ସହିତ ସାକ୍ଷାତ କରିବା ବିଷୟରେ ସନ୍ଦେହ କରୁଛନ୍ତି । ଜାଣିରଖ, ପ୍ରତ୍ୟେକ ସୃଷ୍ଟି ତାଙ୍କ ଆୟତ୍ତରେ ରହିଛି ।

## ଅଧ୍ୟାୟ ୪୨, ଅଶ୍ ଶୁରା

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ହା – ମୀମ୍ । ୨. ଆଇନ୍ – ସୀନ - କା'ଫ୍ । ୩. (ହେ ବାର୍ତ୍ତାବହ !) ମହାଶକ୍ତିମାନ ଓ ତତ୍ତ୍ୱଜ୍ଞାନୀ ଅଲ୍ଲାହ୍ ତୁମକୁ ସେହିପରି ଦୈବବାଣୀ କରୁଛନ୍ତି ଯେପରି ସେ ତୁମ ପୂର୍ବ ବାର୍ତ୍ତାବହମାନଙ୍କୁ କରି ଆସିଛନ୍ତି । ୪. ପୃଥିବୀ ଓ ଆକାଶରେ ଯାହା ଅଛି, ସବୁ ତାଙ୍କରି । ସେ ସମସ୍ତଙ୍କଠାରୁ ଶ୍ରେଷ୍ଠ ଓ ଅତି ମହାନ ।

୫. ଦେବଦୂତମାନେ (ନିରନ୍ତର) ନିଜ ପାଳନକର୍ତ୍ତାଙ୍କର ସ୍ତୁତି ଓ ଗୁଣଗାନ କରୁଥାଆନ୍ତି ଏବଂ ପୃଥିବୀବାସୀଙ୍କ ପାଇଁ କ୍ଷମାପ୍ରାର୍ଥନା କରୁଥାଆନ୍ତି ଏବଂ ଜଣାପଡୁଛି (ଏହି ବୋଝରେ) ଆକାଶ ଉପରୁ ଫାଟିପଡ଼ିବ । ମନେରଖ ! ଅଲ୍ଲାହ୍ କ୍ଷମାଶୀଳ ଏବଂ ପରମ ଦୟାଳୁ । ୬. ଯେଉଁମାନେ ଅଲ୍ଲାହଙ୍କୁ ଛାଡ଼ି ଅନ୍ୟମାନଙ୍କୁ ହର୍ତ୍ତାକର୍ତ୍ତା ମାନିଛନ୍ତି, ଅଲ୍ଲାହ୍ ସେମାନଙ୍କ ଉପରେ ନଜର ରଖିଛନ୍ତି । ତୁମ ଉପରେ ସେମାନଙ୍କର ଦାୟିତ୍ୱ ନାହିଁ ।

୭. ଏହିପରି କୁରଆନ ଗ୍ରନ୍ଥଟିକୁ ଆମ୍ଭେ ତୁମକୁ ଆରବୀ ଭାଷାରେ ଦୈବବାଣୀ କରିଛୁ ଯେପରିକି ତୁମେ ମୁଖ୍ୟ ସହର (ମକ୍କା) ଏବଂ ଏହାର

ଆଖପାଖ ଅଂଚଳର ବାସିନ୍ଦାମାନଙ୍କୁ ସେହି ଦିନ ବିଷୟରେ ସାବଧାନ କରିବ ଯେଉଁଦିନ ସମସ୍ତଙ୍କୁ (ପୁନର୍ଜୀବିତ କରି) ଏକାଠି କରାଯିବ, ଯାହାବିଷୟରେ ଆଦୌ ସନ୍ଦେହ ନାହିଁ । ସେମାନଙ୍କ ମଧ୍ୟରୁ କେତେକ ସ୍ୱର୍ଗକୁ ଯିବେ ଏବଂ ଆଉ କେତେକ ନର୍କକୁ ଯିବେ ।

୮. ଯଦି ଅଲ୍ଲାହ୍ ଇଚ୍ଛା କରିଥାଆନ୍ତେ, ତା'ହେଲେ ସେ ସେମାନଙ୍କୁ ଗୋଟିଏ ଧର୍ମ-ସଂପ୍ରଦାୟ କରି ପାରିଥାଆନ୍ତେ, ମାତ୍ର ସେ ଯାହାକୁ ଚାହାନ୍ତି ତାକୁ ନିଜ କରୁଣାର ପାତ୍ର କରନ୍ତି । ପାପୀମାନଙ୍କର କେହି ରକ୍ଷକ ବା ସହାୟକ ନାହାନ୍ତି । ୯ କ'ଣ ଏମାନେ ଅଲ୍ଲାହଙ୍କ ପରିବର୍ତ୍ତେ ଅନ୍ୟମାନଙ୍କୁ ହର୍ତ୍ତାକର୍ତ୍ତା ରୂପେ ଗ୍ରହଣ କରିଛନ୍ତି, ଅଥଚ ଅଲ୍ଲାହ୍ ହିଁ ସମସ୍ତଙ୍କର ହର୍ତ୍ତାକର୍ତ୍ତା । ସେ ମୃତମାନଙ୍କୁ ଜୀବିତ କରିବେ ଏବଂ ସେ ସବୁ କିଛି କରିପାରନ୍ତି । ୧୦. ଯେଉଁ ବିଷୟରେ ତୁମେମାନେ ମତଭେଦ କରୁଛ ସେବିଷୟରେ ନିଷ୍ପତ୍ତି କରିବା ଅଲ୍ଲାହଙ୍କର କାମ । (କହିଦିଅ) "ସେହି ଅଲ୍ଲାହ୍ ମୋ'ର ପାଳନକର୍ତ୍ତା । ତାଙ୍କରି ଉପରେ ମୁଁ ଭରସା କରେ ଏବଂ ମୁଁ ତାଙ୍କରି ଅନୁଗତ ।"

୧୧. ସେ ପୃଥିବୀ ଓ ଆକାଶମଣ୍ଡଳର ସ୍ରଷ୍ଟା । ସେ ତୁମମାନଙ୍କ ମଧ୍ୟରୁ ତୁମର ଯୋଡ଼ି ସୃଷ୍ଟି କରିଛନ୍ତି ଏବଂ ପଶୁମାନଙ୍କର ମଧ୍ୟ ଯୋଡ଼ି ସୃଷ୍ଟି କରିଛନ୍ତି । ଏହାଦ୍ୱାରା ସେ ତୁମମାନଙ୍କର ବଂଶ ବିସ୍ତାର କରନ୍ତି । (ବ୍ରହ୍ମାଣ୍ଡରେ) ତାଙ୍କର ଉପମା ନାହିଁ । ସେ ସର୍ବଶ୍ରୋତା ଓ ସର୍ବଦ୍ରଷ୍ଟା । ୧୨. ପୃଥିବୀ ଓ ଆକାଶମଣ୍ଡଳର ଚାବିକାଠି ତାଙ୍କରି ପାଖରେ ଅଛି । ସେ ଯାହାକୁ ଇଚ୍ଛା କରନ୍ତି ଅପର୍ଯ୍ୟାପ୍ତ ଦିଅନ୍ତି ଏବଂ ଯାହାକୁ ଚାହାନ୍ତି ମାପିଚୁପି ଦିଅନ୍ତି । ସେ ସବୁକିଛି ଜାଣନ୍ତି ।

୧୩. ସେ ତୁମମାନଙ୍କ ପାଇଁ ସେହି ଧର୍ମ ନିର୍ଦ୍ଧାରିତ କରିଛନ୍ତି ଯେଉଁ ଧର୍ମ ପ୍ରତିଷ୍ଠା କରିବାର ଆଜ୍ଞା ସେ ନୂହଙ୍କୁ ଦେଇଥିଲେ ଏବଂ ଯାହା ବିଷୟରେ ଆମ୍ଭେ ତୁମକୁ ଦୈବବାଣୀ କରିଛୁ ଏବଂ ଯାହାର ଆଦେଶ ଆମ୍ଭେ ଇବ୍ରାହିମ୍, ମୁ'ସା ଏବଂ ଇସାଙ୍କୁ ଦେଇ କହିଥିଲୁ ଯେ ଏହି ଧର୍ମ ପ୍ରତିଷ୍ଠା କର ଏବଂ ଏଥିରେ ବିଭାଜନ ସୃଷ୍ଟି କରନାହିଁ । ତୁମେ ବହୁଇଶ୍ୱରବାଦୀମାନଙ୍କୁ ଯେଉଁ ବାଟକୁ ଡାକୁଛ ତାହା ସେମାନଙ୍କୁ ଭାରି କଷ୍ଟକର ବୋଧ ହେଉଛି । ଅଲ୍ଲାହ୍ ଯାହାକୁ ଇଚ୍ଛା କରନ୍ତି ତାକୁ ନିଜର

ପ୍ରିୟପାତ୍ର କରିନିଅନ୍ତି ଏବଂ ସେ ତାଙ୍କ ମାର୍ଗରେ ତାକୁ ହିଁ ପରିଚାଳିତ କରନ୍ତି ଯିଏ ତାଙ୍କର ଅନୁଗତ ହୁଏ । ୧୪. ଲୋକମାନଙ୍କ ପାଖରେ ସଦ୍‌ଜ୍ଞାନ ପହଁଚି ସାରିବା ପରେ କେବଳ ପରସ୍ପର ସହିତ ଶତ୍ରୁତା ଯୋଗୁଁ ସେମାନେ ଧର୍ମରେ ବିଭାଜନ କରିଥିଲେ । ଯଦି ତୁମ ପ୍ରଭୁଙ୍କ ଦ୍ୱାରା ଏଥିପାଇଁ ଏକ ସମୟ ସ୍ଥିର ହୋଇ ନଥାଆନ୍ତା, ତେବେ ସେମାନଙ୍କ ମଧ୍ୟରେ ଏହାର ନିଷ୍ପତ୍ତି କରି ଦିଆଯାଇ ଥାଆନ୍ତା । ଯେଉଁମାନଙ୍କୁ ସେମାନଙ୍କ ପରେ ଗ୍ରନ୍ଥ ଦିଆଗଲା, ସେମାନେ ମଧ୍ୟ ତାହା ବିଷୟରେ ଭୀଷଣ ସନ୍ଦେହରେ ଅଛନ୍ତି ଯାହା ସେମାନଙ୍କୁ ଦ୍ୱନ୍ଦରେ ପକାଇ ଦେଇଛି ।

୧୫. (ହେ ବାର୍ତ୍ତାବହ!) ଲୋକମାନଙ୍କୁ ସେହି ଧର୍ମମାର୍ଗକୁ ଡାକୁଥାଅ ଏବଂ ତୁମକୁ ଯାହା ନିର୍ଦ୍ଦେଶ ଦିଆଯାଇଛି ସେଥିରେ ଅଟଳ ରହିଥାଅ । ଲୋକଙ୍କ ଇଚ୍ଛା ଅନୁସାରେ ଚାଲନାହିଁ । ସେମାନଙ୍କୁ କହିଦିଅ, "ଅଲ୍ଲାହ୍ ଯେଉଁ ଗ୍ରନ୍ଥ ପଠାଇଛନ୍ତି, ମୁଁ ତାହାକୁ ବିଶ୍ୱାସ କରେ ଏବଂ ମୋତେ ଆଜ୍ଞା ଦିଆଯାଇଛି ଯେ ମୁଁ ତୁମମାନଙ୍କ ମଧ୍ୟରେ ନ୍ୟାୟବିଚାର କରିବି । ଅଲ୍ଲାହ୍ ହିଁ ଆମମାନଙ୍କର ଈଶ୍ୱର ଏବଂ ତୁମମାନଙ୍କର ମଧ୍ୟ ଈଶ୍ୱର । ଆମ କର୍ମ ଆମମାନଙ୍କ ପାଇଁ ଏବଂ ତୁମମାନଙ୍କ କର୍ମ ତୁମମାନଙ୍କ ପାଇଁ ଏବଂ ଆମେ ପରସ୍ପର ମଧ୍ୟରେ ଯୁକ୍ତିତର୍କ କରିବାର ଆବଶ୍ୟକତା ନାହିଁ । ଅଲ୍ଲାହ୍ ଦିନେ ଆମ ସମସ୍ତଙ୍କୁ ଏକାଠି କରିବେ ଏବଂ ସମସ୍ତଙ୍କୁ ତାଙ୍କରି ପାଖକୁ ଫେରିବାକୁ ହେବ ।"

୧୬. ଅଲ୍ଲାହଙ୍କୁ ଲୋକମାନେ ଗ୍ରହଣ କରି ସାରିବା ପରେ ଯେଉଁମାନେ ତାଙ୍କ ବିଷୟରେ ବିବାଦ କରୁଛନ୍ତି, ଅଲ୍ଲାହଙ୍କ ଦୃଷ୍ଟିରେ ସେମାନଙ୍କର ଯୁକ୍ତି ମୂଲ୍ୟହୀନ । ସେମାନେ ଅଲ୍ଲାହଙ୍କ କୋପର ଶିକାର ହେବେ ଏବଂ ଭୟଙ୍କର ଶାସ୍ତି ଭୋଗିବେ ।

୧୭. ସେ ଅଲ୍ଲାହ, ଯିଏ ଯଥାର୍ଥ ଉଦ୍ଦେଶ୍ୟରେ ଏହି ଗ୍ରନ୍ଥଟିକୁ ପଠାଇଛନ୍ତି ଏବଂ (ନ୍ୟାୟର) ମାନଦଣ୍ଡ ମଧ୍ୟ । ତୁମକୁ କ'ଣ ଜଣା, ହୁଏତ ପ୍ରଳୟ ସମୟ ପାଖେଇ ଆସିଲାଣି । ୧୮. ଯେଉଁମାନେ ଏହାକୁ ବିଶ୍ୱାସ କରନ୍ତିନାହିଁ ସେଇମାନେ ଏଥିପାଇଁ ଉଚ୍ଛନ୍ନ ହେଉଛନ୍ତି କିନ୍ତୁ ଯେଉଁମାନେ ବିଶ୍ୱାସ କରନ୍ତି, ସେମାନେ ଏହାକୁ ଭୟ କରନ୍ତି, କାରଣ ସେମାନେ ଜାଣନ୍ତି ଯେ ଏହା ଅଟଳ ସତ୍ୟ । ଶୁଣ,

ଯେଉଁମାନେ ପ୍ରଳୟ ବିଷୟରେ ଯୁକ୍ତିତର୍କ କରୁଛନ୍ତି, ସେମାନେ ପଥଭ୍ରଷ୍ଟ ହୋଇ ବହୁ ଦୂରକୁ ଚାଲି ଯାଇଛନ୍ତି ।

୧୯. ଅଲ୍ଲାହ୍ ନିଜର ଦାସମାନଙ୍କ ପ୍ରତି ଭାରି ଦୟାଳୁ । ସେ ଯାହାକୁ ଚାହାନ୍ତି ଅପର୍ଯ୍ୟାପ୍ତ ଦିଅନ୍ତି । ସେ ମହାଶକ୍ତିମାନ ଓ ପ୍ରବଳ ପରାକ୍ରମୀ । ୨୦. ଯିଏ ପରଲୋକରେ ଫସଲ କାଟିବାକୁ ଚାହେଁ, ଆମ୍ଭେ ତା' ଫସଲରେ ବୃଦ୍ଧି କରିବୁ ମାତ୍ର ଯିଏ ସଂସାରରେ ଫସଲ ନେବାକୁ ଚାହେଁ, ଆମ୍ଭେ ତାକୁ ସେଥିରୁ କିଛି ଦେଇଦେବୁ କିନ୍ତୁ ପରଲୋକରେ ତା'ର କୌଣସି ଭାଗ ରହିବନାହିଁ ।

୨୧. କ'ଣ ଏମାନେ ଏଭଳି ମନଗଢ଼ା ଈଶ୍ୱରମାନଙ୍କୁ ମାନୁଛନ୍ତି ଯେଉଁମାନେ ଏମାନଙ୍କ ପାଇଁ ଏଭଳି ଏକ ଧର୍ମପନ୍ଥା ନିରୂପଣ କରିଛନ୍ତି ଯାହାର ଅନୁମତି ଅଲ୍ଲାହ୍ ଦେଇନାହାନ୍ତି ? ଯଦି ପୂର୍ବରୁ ବିଚାର ଦିନ ବିଷୟରେ ସ୍ଥିର ନହୋଇ ଥାଆନ୍ତା, ତେବେ ଏମାନଙ୍କର ନିଷ୍ପତ୍ତି ହୋଇ ସାରିଥାଆନ୍ତା । ଏହି ପାପୀମାନେ କଠୋର ଶାସ୍ତି ଭୋଗିବେ । ୨୨. (ସେଦିନ) ତୁମେ ଦେଖିବ ଯେ ଏହି ପାପିଷ୍ଠମାନେ ସେମାନଙ୍କ କର୍ମର ପରିଣାମ ବିଷୟରେ ଭୟଭୀତ ଥିବେ କିନ୍ତୁ ସେମାନଙ୍କୁ ଏହା ଭୋଗିବାକୁ ପଡ଼ିବ । ଯେଉଁମାନେ ବିଶ୍ୱାସ କରିଛନ୍ତି ଏବଂ ଭଲ କର୍ମ କରୁଛନ୍ତି, ସେମାନେ ବୈକୁଣ୍ଠ ଉଦ୍ୟାନରେ ରହିବେ ଏବଂ ଯାହା ଚାହିଁବେ, ପ୍ରଭୁଙ୍କଠାରୁ ତାହା ପାଇବେ । ଏହା ତାଙ୍କର ପରମ ଅନୁଗ୍ରହ । ୨୩. ଏହା ସେହି ପୁରସ୍କାର ଯାହାର ଶୁଭସୂଚନା ଅଲ୍ଲାହ୍ ତାଙ୍କର ସେହି ଭକ୍ତମାନଙ୍କୁ ଦେଉଛନ୍ତି ଯେଉଁମାନେ (ତାଙ୍କୁ) ବିଶ୍ୱାସ କରନ୍ତି ଏବଂ ଭଲ କର୍ମ କରନ୍ତି । ସେମାନଙ୍କୁ କୁହ, "ମୁଁ ତୁମମାନଙ୍କଠାରୁ ଏହି କାର୍ଯ୍ୟ ବଦଳରେ କିଛି ମୂଲ୍ୟ ମାଗୁନାହିଁ ମାତ୍ର ତୁମମାନଙ୍କର ଆତ୍ମୀୟ ହୋଇଥିବା ଯୋଗୁଁ ସ୍ନେହପୂର୍ଣ୍ଣ ବ୍ୟବହାର ଚାହୁଁଛି ।" ଯିଏ ଭଲ କର୍ମ କରିବ, ଆମ୍ଭେ ତା' ପୁଣ୍ୟକୁ ବହୁଗୁଣିତ କରିଦେବୁ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ ଗୁଣଗ୍ରାହୀ ।

୨୪. କ'ଣ ଏମାନେ କହୁଛନ୍ତି ଯେ ବାର୍ତ୍ତାବହ ଅଲ୍ଲାହଙ୍କ ବିଷୟରେ ମିଥ୍ୟା ଗଢ଼ିଛନ୍ତି ? (ହେ ବାର୍ତ୍ତାବହ !) ଯଦି ଅଲ୍ଲାହ୍ ଚାହିଁବେ, ତୁମ ହୃଦୟର ଦ୍ୱାର ବନ୍ଦ କରିଦେବେ । ଅଲ୍ଲାହ୍ ତାଙ୍କର ବାଣୀ ଦ୍ୱାରା ମିଥ୍ୟାର ମୂଳୋତ୍ପାଟନ କରି

ସତ୍ୟର ପ୍ରତିଷ୍ଠା କରନ୍ତି । ସେ ମନରେ ଥିବା ଗୋପନ କଥା ଜାଣନ୍ତି । ୨୫. ସେ ନିଜ ଭକ୍ତମାନଙ୍କର ପଶ୍ଚାତାପ ଗ୍ରହଣ କରନ୍ତି ଏବଂ ସେମାନଙ୍କ ଦୋଷ କ୍ଷମା କରନ୍ତି । ତୁମେମାନେ ଯାହା କର, ସେ ସବୁ ଜାଣନ୍ତି । ୨୬. ଯେଉଁମାନେ ବିଶ୍ୱାସ କରନ୍ତି ଏବଂ ଭଲ କର୍ମ କରନ୍ତି, ସେ ସେମାନନଙ୍କର ପ୍ରାର୍ଥନା ଶୁଣନ୍ତି ଏବଂ ନିଜ କୃପାରୁ ସେମାନଙ୍କୁ ଅଧିକ ଦିଅନ୍ତି । ନାସ୍ତିକମାନେ କଠୋର ଶାସ୍ତି ଭୋଗିବେ ।

୨୭. ଯଦି ଅଲ୍ଲାହ୍ ତାଙ୍କର ସମସ୍ତ ଦାସଙ୍କୁ ପ୍ରଚୁର ପରିମାଣରେ ସାଂସାରିକ ସାଧନ ଦିଅନ୍ତେ, ତା'ହେଲେ ସେମାନେ ଧରାପୃଷ୍ଠରେ ଉପଦ୍ରବ କରନ୍ତେ । ତେଣୁ, ସେ ନିଜ ଇଚ୍ଛା ଅନୁସାରେ ଏକ ନିର୍ଦ୍ଦିଷ୍ଟ ମାତ୍ରାରେ ଦିଅନ୍ତି । ସେ ତାଙ୍କ ଦାସମାନଙ୍କର ଖବର ରଖନ୍ତି ଏବଂ ସେମାନଙ୍କ ପ୍ରତି ନଜର ରଖିଥାଆନ୍ତି ।

୨୮. ଲୋକମାନେ (ବର୍ଷାରୁ) ନିରାଶ ହୋଇଯିବା ପରେ ସେ ହିଁ ମେଘ ବର୍ଷା କରନ୍ତି ଏବଂ (ସେମାନଙ୍କ ଉପରେ) ନିଜର କରୁଣା ବିଛାଇ ଦିଅନ୍ତି । ସେ (ସମସ୍ତଙ୍କର) ରକ୍ଷକ ଏବଂ ସ୍ତୁତିଯୋଗ୍ୟ । ୨୯. ତାଙ୍କ ସଂକେତଗୁଡ଼ିକ ମଧ୍ୟରେ ଅଛି ପୃଥିବୀ ଓ ଆକାଶର ଉତ୍ପତ୍ତି ଏବଂ ସେଥିରେ ବିଭିନ୍ନ ଜୀବମାନଙ୍କର ସୃଷ୍ଟି । ସେ ଯେତେବେଳେ ଚାହିଁବେ, ସେମାନଙ୍କୁ (ପୁନର୍ଜୀବିତ କରି) ଏକତ୍ରିତ କରିଦେବେ ।

୩୦. ତୁମମାନଙ୍କ ଉପରେ ଯେଉଁ ବିପଦ ଆସେ, ତାହା ତୁମମାନଙ୍କର ନିଜ ଅର୍ଜିତ କର୍ମ ଯୋଗୁଁ ଆସିଥାଏ ଏବଂ ଅଧିକାଂଶ ଦୋଷ ତ ସେ କ୍ଷମା କରିଦିଅନ୍ତି । ୩୧. ତୁମେମାନେ ତାଙ୍କୁ ଧରାପୃଷ୍ଠରେ ନିରୂପାୟ କରିପାରିବ ନାହିଁ । ଅଲ୍ଲାହଙ୍କ ବ୍ୟତୀତ ତୁମାନଙ୍କର କେହି ଆଶ୍ରୟଦାତା ବା ସାହାଯ୍ୟକାରୀ ନାହାନ୍ତି ।

୩୨. ସମୁଦ୍ରରେ ଯାତାୟାତ କରୁଥିବା ପର୍ବତ ସଦୃଶ ଜାହାଜଗୁଡ଼ିକ ମଧ୍ୟ ତାଙ୍କରି ନିଦର୍ଶନ । ୩୩. ସେ ଚହିଁଲେ ପବନକୁ ସ୍ଥିର କରିଦେବେ ଏବଂ ଜାହାଜଗୁଡ଼ିକ ସମୁଦ୍ର ବକ୍ଷରେ ଅଟକିଯିବ । ଏଥିରେ ସହିଷ୍ଣୁ ଓ କୃତଜ୍ଞ ବ୍ୟକ୍ତିମାନଙ୍କ ପାଇଁ ଅନେକ ସଂକେତ ଅଛି । ୩୪. ଅଥବା ସେ ସେମାନଙ୍କର କର୍ମ ଯୋଗୁଁ ସେଗୁଡ଼ିକୁ ଜଳମଗ୍ନ ମଧ୍ୟ କରିଦେବେ । ଅଧିକାଂଶ ଦୋଷ ସେ କ୍ଷମା କରିଦିଅନ୍ତି । ୩୫. ଆମ୍ଭ ବାଣୀ ବିଷୟରେ ବିବାଦ କରୁଥିବା ଲୋକମାନେ ଜାଣିନିଅନ୍ତୁ ଯେ ସେମାନଙ୍କର ନିସ୍ତାର ପାଇବାର କୌଣସି ବାଟ ନାହିଁ ।

୩୬. (ହେ ମନୁଷ୍ୟଗଣ !) ତୁମମାନଙ୍କୁ ଯାହା ଦିଆଯାଇଛି ସେଗୁଡ଼ିକ କେବଳ ଅନିତ୍ୟ ସଂସାରରେ ଜୀବନ ନିର୍ବାହ କରିବାଲାଗି ଉଦ୍ଦିଷ୍ଟ କିନ୍ତୁ ଯାହା ଅଲ୍ଲାହ୍ଙ୍କ ପାଖରେ ଅଛି, ସେଗୁଡ଼ିକ ଏହାଠାରୁ ଯଥେଷ୍ଟ ଭଲ ଏବଂ ଚିରସ୍ଥାୟୀ। ଏଗୁଡ଼ିକ ସେଇମାନଙ୍କ ପାଇଁ ରହିଛି ଯେଉଁମାନେ ବିଶ୍ୱାସ କରନ୍ତି ଏବଂ ନିଜ ପାଳନକର୍ତ୍ତାଙ୍କ ଉପରେ ଭରସା ରଖନ୍ତି, ୩୭. ଯେଉଁମାନେ ବଡ଼ବଡ଼ ପାପ ଏବଂ ଅଶ୍ଳୀଳ ଆଚରଣରୁ ବିରତ ରହନ୍ତି ଏବଂ ସେମାନଙ୍କୁ (କାହାରି ପ୍ରତି) କ୍ରୋଧ ଆସିଲେ କ୍ଷମା କରିଦିଅନ୍ତି, ୩୮. ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ କଥା ମାନନ୍ତି, ନିୟମିତ ନମାଜ ସଂପାଦନ କରନ୍ତି, ପରସ୍ପର ସହିତ ବିଚାରବିମର୍ଶ କରି ନିଜର କାର୍ଯ୍ୟ କରନ୍ତି ଏବଂ ଆମ୍ଭେ ସେମାନଙ୍କୁ ଯାହା ଦେଇଛୁ ସେଥିରୁ (ଆମ୍ଭ ପ୍ରସନ୍ନତା ପାଇଁ) ଖର୍ଚ୍ଚ କରନ୍ତି, ୩୯. ଏବଂ ଯଦି ସେମାନଙ୍କ ଉପରେ ଅତ୍ୟାଚାର ହୁଏ, ତେବେ ସେମାନେ ଏହାର ଜବାବ ଦିଅନ୍ତି। ୪୦. କୌଣସି ଅତ୍ୟାଚାରର ସମାନ ପ୍ରତିବଦଳ ନିଆ ଯାଇପାରେ, କିନ୍ତୁ ଯିଏ (ଅତ୍ୟାଚାରୀକୁ) ସୁଧାରିବା ଉଦ୍ଦେଶ୍ୟରେ କ୍ଷମା କରିଦିଏ ତେବେ ତାକୁ ପୁରସ୍କୃତ କରିବା ଅଲ୍ଲାହ୍ଙ୍କର ଦାୟିତ୍ୱ। ଅଲ୍ଲାହ୍ ଅତ୍ୟାଚାରୀମାନଙ୍କୁ ଆଦୌ ପସନ୍ଦ କରନ୍ତିନାହିଁ। ୪୧. ନିଜ ଉପରେ ଅତ୍ୟାଚାର ହେଲାପରେ ଯେଉଁମାନେ ଏହାର ସମାନ ପ୍ରତିଶୋଧ ନିଅନ୍ତି, ତେବେ ସେମାନଙ୍କର ଦୋଷ ନାହିଁ। ୪୨. ଦୋଷ ସେଇମାନଙ୍କର, ଯେଉଁମାନେ ଲୋକମାନଙ୍କ ଉପରେ ଅତ୍ୟାଚାର କରନ୍ତି ଏବଂ ଧରାପୃଷ୍ଠରେ ଅନୁଚିତ ଉପଦ୍ରବ କରନ୍ତି। ଏଭଳି ଲୋକମାନଙ୍କୁ କଠୋର ଶାସ୍ତି ମିଳିବ। ୪୩. ଯିଏ ସହିଯାଏ ଏବଂ କ୍ଷମା କରିଦିଏ, (ସେ ଜାଣିରଖୁ ଯେ) ଏଗୁଡ଼ିକ ଅତି ସାହସିକ କାର୍ଯ୍ୟ।

୪୪. ଯଦି ଅଲ୍ଲାହ୍ କୌଣସି ବ୍ୟକ୍ତିକୁ ପଥଭ୍ରଷ୍ଟ ହେବା ପାଇଁ ଛାଡ଼ିଦିଅନ୍ତି, ତେବେ ତାକୁ କେହି ରକ୍ଷା କରିପାରିବେ ନାହିଁ। ତୁମେ ଦେଖିବ ଯେ ପାପିଷ୍ଠମାନେ ନର୍କଦଣ୍ଡ ଦେଖି କହିବେ, "କ'ଣ ଏଠାରୁ ଫେରିବାର କୌଣସି ଉପାୟ ଅଛି ?" ୪୫. ସେମାନଙ୍କୁ ନର୍କ ପାଖରେ ଛିଡ଼ା କଲାବେଳେ ତୁମେ ଦେଖିବ ଯେ ସେମାନେ ଅପମାନ ଯୋଗୁଁ ମୁଣ୍ଡ ତଳକୁ କରିଥିବେ ଏବଂ କଣେଇ କଣେଇ ଚାହୁଁଥିବେ। ସଦ୍‌ବିଶ୍ୱାସୀ ଲୋକମାନେ କହୁଥିବେ, "ପ୍ରକୃତରେ ସେହିମାନେ ସର୍ବସ୍ୱାନ୍ତ ହେଲେ ଯେଉଁମାନେ ବିଚାର ଦିନ ନିଜ ସହ ନିଜ ପରିଜନମାନଙ୍କର ମଧ୍ୟ କ୍ଷତି କଲେ।"

ମନେରଖ, ଦୁରାଚାରୀମାନେ ଚିରକାଳ ଯନ୍ତ୍ରଣା ଭୋଗିବେ । ୪୬. ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଅଲ୍ଲାହଙ୍କ ବ୍ୟତୀତ କେହି ଆଶ୍ରୟଦାତା ମିଳିବେନାହିଁ । ଅଲ୍ଲାହ୍ ଯାହାକୁ ପଥଭ୍ରଷ୍ଟ କରନ୍ତି, ତା'ପାଇଁ ଆଉ କିଛି ବାଟ ନଥାଏ ।

୪୭. (ହେ ମନୁଷ୍ୟଗଣ!) ଯେଉଁ ଦିନଟି ଆଦୌ ସ୍ଥଗିତ ହେବନାହିଁ, ସେହି ଦିନଟି ଆସିବା ପୂର୍ବରୁ ନିଜ ପାଳନକର୍ତ୍ତାଙ୍କ କଥା ମାନିନିଅ । ସେଦିନ ତୁମମାନଙ୍କୁ କେଉଁଠି ଆଶ୍ରୟ ମିଳିବନାହିଁ କିମ୍ବା ତୁମେମାନେ (ନିଜ ପାପକୁ) ଅସ୍ୱୀକାର କରିପାରିବ ନାହିଁ । ୪୮. ଏହାପରେ ମଧ୍ୟ ଯଦି ସେମାନେ ନମାନନ୍ତି, ତେବେ (ହେ ବାର୍ତ୍ତାବହ!) ଆମ୍ଭେ ତୁମକୁ ସେମାନଙ୍କୁ ଜଗିବା ପାଇଁ ପଠାଇନାହୁଁ । କେବଳ ବାର୍ତ୍ତା ଦେଇଦେବା ତୁମର ଦାୟିତ୍ୱ । ଯଦି ମଣିଷ ପ୍ରତି ଆମ୍ଭେ କୌଣସି କୃପା କରୁ ତେବେ ସେ ଆନନ୍ଦରେ ବିଭୋର ହୋଇଯାଏ କିନ୍ତୁ ଯଦି ତା' କୃତକର୍ମ ଯୋଗୁଁ ତା' ଉପରେ କୌଣସି ବିପଦ ପଡ଼ିଯାଏ, ତେବେ ସେହି ମଣିଷ (ଆମ୍ଭର ସବୁ ଉପକାର ଭୁଲି) କୃତଘ୍ନ ପାଲଟିଯାଏ ।

୪୯. ପୃଥିବୀ ଓ ଆକାଶରେ ଅଲ୍ଲାହଙ୍କର ଶାସନ ଚାଲେ । ସେ ଯାହା ଇଚ୍ଛା କରନ୍ତି ତାହା ସୃଷ୍ଟି କରନ୍ତି, ଯାହାକୁ ଚାହାନ୍ତି କନ୍ୟା ଦିଅନ୍ତି ଏବଂ ଯାହାକୁ ଚାହାନ୍ତି ପୁତ୍ର ଦିଅନ୍ତି, ୫୦. କିମ୍ବା ଯାହାକୁ ଚାହାନ୍ତି ପୁତ୍ର ଓ କନ୍ୟା ଉଭୟ ଦିଅନ୍ତି ଏବଂ ଯାହାକୁ ଚାହାନ୍ତି ନିଃସନ୍ତାନ ରଖନ୍ତି । ସେ ସବୁ ଜାଣନ୍ତି ଏବଂ ସବୁକିଛି କରିପାରନ୍ତି ।

୫୧. କୌଣସି ମନୁଷ୍ୟ ପକ୍ଷରେ ସମ୍ଭବ ନୁହେଁ ଯେ ଅଲ୍ଲାହ୍ ତା' ସହିତ (ପ୍ରତ୍ୟକ୍ଷ ରୂପେ) କଥାବାର୍ତ୍ତା କରନ୍ତୁ । ସେ କେବଳ ଦୈବବାଣୀ ଅଥବା ଶୂନ୍ୟବାଣୀ ଦ୍ୱାରା (ସମ୍ବୋଧନ କରିଥାଆନ୍ତି) କିମ୍ବା କୌଣସି ଦେବଦୂତଙ୍କୁ ପଠାନ୍ତି ଯିଏ ଅଲ୍ଲାହଙ୍କ ଆଜ୍ଞାରୁ ତାଙ୍କରି ଇଚ୍ଛା ଅନୁସାରେ ଆଦିଷ୍ଟବାଣୀ କରିଥାଆନ୍ତି । ସେ ଅତ୍ୟନ୍ତ ମହାନ ଏବଂ ତତ୍ତ୍ୱଜ୍ଞ ।

୫୨. ଏହିପରି ଆମ୍ଭେ ନିଜ ଆଜ୍ଞା ବଳରେ ତୁମକୁ ଏହି କୁରଆନ୍ ଦୈବବାଣୀ କରିଛୁ । ତୁମେ ଜାଣି ନଥିଲ ଯେ ଗ୍ରନ୍ଥ କ'ଣ ବା ଧର୍ମବିଶ୍ୱାସ କ'ଣ । ମାତ୍ର ଆମ୍ଭେ ଏହାକୁ ଏକ ଆଲୋକ ସ୍ୱରୂପ ପଠାଇଛୁ ଯାହାଦ୍ୱାରା

ଆମ୍ଭେ ଆମ୍ଭର ଦାସମାନଙ୍କ ମଧ୍ୟରୁ ଯାହାକୁ ଚାହୁଁ, ଠିକ୍ ବାଟ ଦେଖାଇ ଦେଉ । (ହେ ମୁହମ୍ମଦ !) ନିଃସନ୍ଦେହ ତୁମେ (ଲୋକମାନଙ୍କୁ) ଠିକ୍ ବାଟରେ ନେଉଛ, ୫୩. ସେହି ଅଲ୍ଲାହଙ୍କର ବାଟରେ, ଯିଏ ପୃଥିବୀ ଓ ଆକାଶରେ ଥିବା ସକଳ ସୃଷ୍ଟିର ସ୍ୱାମୀ । ମନେରଖ, ପ୍ରତ୍ୟେକ ଘଟଣା (ବିଚାର ପାଇଁ) ଅଲ୍ଲାହଙ୍କ ପାଖରେ ଉପସ୍ଥାପିତ ହେବ ।

## ଅଧ୍ୟାୟ ୪୩, ଜୁଖ୍‌ରୁଫ୍
### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ହା – ମୀମ୍ । ୨. ପ୍ରାଂଜଳ ଭାବରେ ବର୍ଣ୍ଣନା କରା ଯାଇଥିବା ଗ୍ରନ୍ଥର ରାଣ ! ୩. ଆମ୍ଭେ କୁରଆନ୍‌କୁ ଆରବୀ ଭାଷାରେ ରଚନା କରିଛୁ ଯେପରିକି ତୁମେମାନେ ବୁଝିପାରିବ । ୪. ଏହା ଆମ୍ଭ ପାଖରେ ଥିବା ମୂଳଗ୍ରନ୍ଥରେ ରହିଛି । ଏହା ତତ୍ତ୍ୱଜ୍ଞାନରେ ପରିପୂର୍ଣ୍ଣ ଏକ ମହାନ ଗ୍ରନ୍ଥ ।

୫. କ'ଣ ତୁମେମାନେ ସୀମା ଅତିକ୍ରମ କରୁଛ ବୋଲି ଆମ୍ଭେ ବିରକ୍ତ ହୋଇ ତୁମମାନଙ୍କୁ ଉପଦେଶ ଦେବା ଛାଡ଼ିଦେବୁ ? ୬. ଆମ୍ଭେ ପୂର୍ବ ସମାଜଗୁଡ଼ିକ ପାଇଁ ମଧ୍ୟ ଅନେକ ବାର୍ତ୍ତାବହ ପଠାଇଥିଲୁ । ୭. ଏମିତି କେହି ବାର୍ତ୍ତାବହ ସେମାନଙ୍କ ପାଖକୁ ଯାଇନାହାନ୍ତି ଯାହାଙ୍କୁ ସେମାନେ ବିଦ୍ରୂପ କରିନାହାନ୍ତି । ୮. ଆମ୍ଭେ ଏମାନଙ୍କଠାରୁ ଢ଼େର ଶକ୍ତିଶାଳୀ ଲୋକଙ୍କୁ ଧ୍ୱଂସ କରିଦେଇଛୁ । ପୂର୍ବ ସମାଜଗୁଡ଼ିକର ଅନେକ ଉଦାହରଣ ରହିଛି ।

୯. ଯଦି ତୁମେ ସେମାନଙ୍କୁ ପଚାରିବ ଯେ ପୃଥିବୀ ଓ ଆକାଶକୁ କିଏ ସୃଷ୍ଟି କରିଛି, ସେମାନେ ନିଶ୍ଚୟ ଉତ୍ତର ଦେବେ ଯେ ସର୍ବଶକ୍ତିମାନ ଏବଂ ସର୍ବଜ୍ଞ ସତ୍ତା ହିଁ ଏଗୁଡ଼ିକୁ ସୃଷ୍ଟି କରିଛନ୍ତି । ୧୦. ସେ ହିଁ ଧରିତ୍ରୀକୁ ତୁମମାନଙ୍କ ପାଇଁ ଶଯ୍ୟା କରିଛନ୍ତି ଏବଂ ସେଥିରେ ତୁମମାନଙ୍କ ପାଇଁ ରାସ୍ତା କରିଛନ୍ତି ଯେପରିକି ତୁମେମାନେ ଲକ୍ଷ୍ୟସ୍ଥଳରେ ପହଁଚିପାରିବ । ୧୧. ସେ ହିଁ ଆକାଶରୁ ମାପିଚୁପି ଜଳ ବର୍ଷା କରନ୍ତି । ଏହାଦ୍ୱାରା ଆମ୍ଭେ ନିର୍ଜୀବ ଭୂମିରେ ପ୍ରାଣସଂଚାର କରିଦେଉ । ଏହିପରି ତୁମମାନଙ୍କୁ (ପୁନର୍ଜୀବିତ କରି ଧରିତ୍ରୀରୁ) ବାହାର କରାଯିବ ।

୧୨. ସେ ସମସ୍ତଙ୍କୁ ଯୋଡ଼ାଯୋଡ଼ା କରି ସୃଷ୍ଟି କଲେ ଏବଂ ତୁମମାନଙ୍କ ପାଇଁ ନୌକା ତିଆରି କଲେ ଏବଂ (ବିଭିନ୍ନ ପ୍ରକାରର) ପଶୁ ସୃଷ୍ଟି କଲେ ଯେଉଁମାନଙ୍କ ଉପରେ ତୁମେମାନେ ବସିଥାଅ । ୧୩. ସେମାନଙ୍କ ପିଠିରେ ଭଲ ଭାବରେ ବସ ଏବଂ ବସି ସାରିବା ପରେ ନିଜ ପାଳନକର୍ତ୍ତାଙ୍କର ଉପକାରଗୁଡ଼ିକୁ ମନେପକାଅ ଏବଂ କୁହ, "ପରମ ପବିତ୍ର ସେହି ସତ୍ତା, ଯିଏ ଏହି ବାହନକୁ ଆମର ଆୟତ୍ତାଧୀନ କରି ଦେଇଛନ୍ତି । ଏହାକୁ ଆୟତ୍ତ କରିବାର ଶକ୍ତି ଆମର ନଥିଲା । ୧୪. ଆମେ ନିଶ୍ଚୟ ଆମ ଈଶ୍ୱରଙ୍କ ପାଖକୁ ଫେରିବୁ ।"

୧୫. ଏମାନେ ଈଶ୍ୱରଙ୍କର କେତେକ ଦାସଙ୍କୁ ତାଙ୍କର ଏକ ଅଂଶ ମାନୁଛନ୍ତି । ବାସ୍ତବରେ ମଣିଷ ଭାରି କୃତଘ୍ନ ।

୧୬. କ'ଣ ସେ ନିଜ ସୃଷ୍ଟି ମଧ୍ୟରୁ ନିଜ ପାଇଁ କନ୍ୟା ସନ୍ତାନ ବାଛିନେଲେ ଏବଂ ତୁମମାନଙ୍କୁ ପୁତ୍ର ଦେଇଦେଲେ ? ୧୭. (ଅଥଚ) ଯଦି ଏମାନଙ୍କ ମଧ୍ୟରୁ କାହାରିକୁ ସେହି କନ୍ୟା ସନ୍ତାନର ଶୁଭଖବର ଦିଆଯାଏ ଯାହାର ସମ୍ବନ୍ଧ ଏମାନେ ଦୟାମୟଙ୍କ ସହିତ ଯୋଡୁଛନ୍ତି, ତା' ମୁହଁ କଳା ପଡ଼ିଯାଏ ଏବଂ ସେ ଦୁଃଖରେ ଘାରି ହୁଏ । ୧୮. କ'ଣ (ଅଲ୍ଲାହଙ୍କ ସନ୍ତାନ ପାଇଁ ତାକୁ ପସନ୍ଦ କରୁଛ) ଯିଏ ଆଭୂଷଣ ମଧ୍ୟରେ ବଢ଼ିଥାଏ ଏବଂ ତର୍କ ବେଳେ (ସ୍ୱଭାବଗତ ଲଜ୍ୟା ଯୋଗୁଁ) ନିଜ କଥାକୁ ସ୍ପଷ୍ଟ କରିପାରେ ନାହିଁ ?

୧୯. ଯେଉଁ ଦେବଦୂତମାନେ ଦୟାମୟଙ୍କର ସେବକ, ଏମାନେ ସେମାନଙ୍କୁ ନାରୀ (ଅର୍ଥାତ୍ ଦେବୀ) କରି ଦେଇଛନ୍ତି । କ'ଣ ସେମାନଙ୍କୁ ସୃଷ୍ଟି କଲାବେଳେ ଏମାନେ ଦେଖୁଥିଲେ ? ଏମାନଙ୍କର ଏହି ସ୍ୱୀକାରୋକ୍ତି ଲେଖି ରଖାଯିବ ଏବଂ ଏବିଷୟରେ ଏମାନଙ୍କୁ ପ୍ରଶ୍ନ କରାଯିବ । ୨୦. ଏବଂ ଏହା ମଧ୍ୟ କହୁଛନ୍ତି ଯେ ଯଦି ଦୟାମୟ ଇଚ୍ଛା କରି ଥାଆନ୍ତେ, ତା'ହେଲେ ଆମେ ଆଦୌ ସେମାନଙ୍କର ପୂଜା କରନ୍ତୁନାହିଁ । ଏବିଷୟରେ ଏମାନଙ୍କର କିଛି ଜ୍ଞାନ ନାହିଁ । ଏମାନେ କେବଳ ଅନୁମାନ କରୁଛନ୍ତି । ୨୧. କ'ଣ ପୂର୍ବରୁ ଆମ୍ଭେ ସେମାନଙ୍କୁ କୌଣସି ଗ୍ରନ୍ଥ ଦେଇଥିଲୁ ଯାହାର ପ୍ରମାଣକୁ ସେମାନେ ଏଥିପାଇଁ ଆଧାର କରିଛନ୍ତି ? ୨୨. ତାହା ନୁହେଁ, ବରଂ ସେମାନଙ୍କର କହିବା କଥା ଯେ ଆମେ ଆମ

ବାପଅଜାଙ୍କୁ ଗୋଟିଏ ପନ୍ଥା ଧରିଥିବାର ଦେଖିଆସିଛୁ, ତେଣୁ ଆମେ ସେମାନଙ୍କର ପଦାଙ୍କ ଅନୁସରଣ କରୁଛୁ ।

୨୩. ଏହିପରି, ଆମ୍ଭେ ତୁମ ପୂର୍ବରୁ ଯେଉଁ ଜନବସତିକୁ ବାର୍ତ୍ତାବହ ପଠାଇଥିଲୁ, ସେଠାର ଧନଶାଳୀ ବ୍ୟକ୍ତିମାନେ ଏହାହିଁ କହିଥିଲେ ଯେ ଆମେ ଆମ ପୂର୍ବପୁରୁଷମାନଙ୍କୁ ଗୋଟିଏ ପନ୍ଥା ଅନୁସରଣ କରୁଥିବାର ଦେଖିଛୁ । ତେଣୁ, ଆମେ ସେମାନଙ୍କର ବାଟ ଧରିଛୁ । ୨୪. ବାର୍ତ୍ତାବହ ସେମାନଙ୍କୁ ପଚାରୁଥିଲେ, "ତୁମ ପୂର୍ବପୁରୁଷମାନେ ଯେଉଁ ପନ୍ଥାରେ ଥିଲେ, ଯଦି ମୁଁ ତା'ଠାରୁ ଭଲ ଶିକ୍ଷା ଆଣିଥାଏ, ତଥାପି (ସେହି ପନ୍ଥା ଧରିବ) ?" ସେମାନେ ଉତ୍ତର ଦେଉଥିଲେ, "ତୁମେ ଯେଉଁ ବାର୍ତ୍ତା ନେଇ ଆସିଛ ଆମେ ତାକୁ ମାନୁନାହୁଁ ।" ୨୫. ତେଣୁ ଆମ୍ଭେ ସେମାନଙ୍କଠାରୁ ପ୍ରତିଶୋଧ ନେଲୁ । ଦେଖ, (ସତ୍ୟକୁ) ପ୍ରତ୍ୟାଖ୍ୟାନ କରିଥିବା ଲୋକମାନଙ୍କର କିଭଳି ପରିଣାମ ହେଲା ?

୨୬. (ସେମାନଙ୍କୁ ପଢ଼ି ଶୁଣାଅ) ଯେତେବେଳେ ଇବ୍ରାହିମ ତାଙ୍କ ପିତା ଓ ତାଙ୍କ ସମାଜର ଲୋକମାନଙ୍କୁ କହିଥିଲେ, "ତୁମେମାନେ ଯେଉଁମାନଙ୍କର ପୂଜାଅର୍ଚ୍ଚନା କରୁଛ, ମୋ'ର ସେମାନଙ୍କ ସହିତ କୌଣସି ସମ୍ପର୍କ ନାହିଁ । ୨୭. କେବଳ ତାଙ୍କରି ସହିତ (ସଂପର୍କ) ଅଛି ଯିଏ ମୋତେ ସୃଷ୍ଟି କରିଛନ୍ତି ଏବଂ ସେ ହିଁ ମୋତେ ବାଟ ଦେଖାଇବେ ।" ୨୮. ଇବ୍ରାହିମ ନିଜର ବଂଶଧରମାନଙ୍କ ପାଇଁ ଏହି ପରମ୍ପରା ଛାଡ଼ି ଯାଇଥିଲେ ଯେପରିକି ସେମାନେ (ଅଲ୍ଲାହଙ୍କର) ଶରଣାଗତ ହେବେ । ୨୯. ତଥାପି ସେମାନଙ୍କ ପାଖରେ ସଦ୍‌ଗ୍ରନ୍ଥ ଏବଂ ପରିଷ୍କାର ଭାବରେ ବୁଝାଇବା ପାଇଁ ଜଣେ ବାର୍ତ୍ତାବହ ପହଁଚିବା ପର୍ଯ୍ୟନ୍ତ ଆମ୍ଭେ ସେମାନଙ୍କୁ ଏବଂ ସେମାନଙ୍କ ପିତୃପିତାମହଙ୍କୁ ସଂସାର ଭୋଗ କରିବାର ସୁଯୋଗ ଦେଇଥିଲୁ । ୩୦. ପୁଣି ଯେତେବେଳେ ସେମାନଙ୍କ ପାଖରେ ସଦ୍‌ଗ୍ରନ୍ଥ ପହଁଚିଲା, ସେମାନେ କହିଲେ ଯେ ଏହା ଏକ କୁହୁକ ଏବଂ ଆମେମାନେ ଏହାକୁ ମାନୁନାହୁଁ ।

୩୧. ସେମାନେ ଏହା ମଧ୍ୟ କହିଲେ ଯେ ଏହି କୁରଆନ ଏଠାର ଦୁଇଟି ବଡ଼ ସହରର କୌଣସି ପ୍ରତିଷ୍ଠିତ ବ୍ୟକ୍ତି ପାଖକୁ କାହିଁକି ପଠାଗଲା ନାହିଁ ? ୩୨. କ'ଣ ଇଶ୍ୱରଙ୍କ କରୁଣାକୁ ସେହିମାନେ ବାଣ୍ଟିବେ ? ଆମ୍ଭେ ହିଁ ସଂସାରରେ

ସେମାନଙ୍କ ମଧ୍ୟରେ ଜୀବିକା ବଣ୍ଟନ କରିଛୁ ଏବଂ କେତେକଙ୍କୁ ଆଉ କେତେକଙ୍କ ତୁଳନାରେ ଶ୍ରେଷ୍ଠ କରିଛୁ ଯେପରିକି ଜଣେ ଅନ୍ୟ ଜଣକର ସେବା ନେଇପାରିବ । ସେମାନେ ଯାହା ସଂଚୟ କରି ରଖୁଛନ୍ତି, ତୁମ ପାଳନକର୍ତ୍ତାଙ୍କ କରୁଣା ତାହାଠାରୁ ଯଥେଷ୍ଟ ଭଲ । ୩୩. ଯଦି ଏପରି ସମ୍ଭାବନା ନଥାଆନ୍ତା ଯେ ସବୁ ଲୋକ ଗୋଟିଏ ପନ୍ଥା ଧରିନେବେ (ଅର୍ଥାତ୍ ନାସ୍ତିକ ହୋଇଯିବେ) ତା'ହେଲେ ଦୟାମୟଙ୍କୁ ମାନୁ ନଥିବା ଲୋକମାନଙ୍କ ଘରର ଛାତଗୁଡ଼ିକୁ ଆମ୍ଭେ ରୂପାର କରିଦିଅନ୍ତୁ ଏବଂ ଏହାର ପାହାଚଗୁଡ଼ିକୁ ମଧ୍ୟ, ଯାହା ଉପରେ ସେମାନେ ଚଢ଼ନ୍ତି, ୩୪. ଏବଂ ସେମାନଙ୍କ ଘରର କବାଟଗୁଡ଼ିକୁ ମଧ୍ୟ (ରୂପାର କରିଦିଅନ୍ତୁ) ଏବଂ ଚଉକିଗୁଡ଼ିକୁ ମଧ୍ୟ, ଯେଉଁଥିରେ ସେମାନେ ଆଉଜି ବସନ୍ତି । ୩୫. ବରଂ ସେଗୁଡ଼ିକୁ ସୁନାର କରିଦିଅନ୍ତୁ । ଏଗୁଡ଼ିକ ପାର୍ଥିବ ଜୀବନର ଭୋଗ୍ୟବସ୍ତୁ ଛଡ଼ା ଆଉ କିଛି ନୁହେଁ ମାତ୍ର ପରଲୋକର ସୁଖ ତୁମ ପ୍ରଭୁଙ୍କ ପାଖରେ କେବଳ ସଦାଚାରୀମାନଙ୍କ ପାଇଁ ରହିଛି ।

୩୬. ଯିଏ ଅଲ୍ଲାହଙ୍କର ସ୍ମରଣଚିନ୍ତନ ବିଷୟରେ ବେପରୁଆ ହୁଏ, ଆମ୍ଭେ ତା' ପାଇଁ ଜଣେ ଶଇତାନ ନିଯୁକ୍ତ କରିଦେଉ ଯିଏ ତା'ର ସହଚର ହୋଇଯାଏ । ୩୭. ଏହି ଶଇତାନମାନେ ଏମାନଙ୍କୁ ସତ୍‌ପଥରୁ ରୋକିଦିଅନ୍ତି, କିନ୍ତୁ ଏମାନେ ଭାବନ୍ତି ଯେ ଏମାନେ ଠିକ୍ ବାଟରେ ଅଛନ୍ତି । ୩୮. ଅବଶେଷରେ ଯେତେବେଳେ ଏଭଳି ବ୍ୟକ୍ତି ଆମ୍ଭ ପାଖକୁ ଆସିବ, (ତା'ଶଇତାନ ବନ୍ଧୁକୁ) କହିବ, "ହାୟ ! କେତେ ଭଲ ହୋଇଥାଆନ୍ତା ଯଦି ଆମ ଦୁହିଁଙ୍କ ମଧ୍ୟରେ ପୂର୍ବ ଓ ପଶ୍ଚିମର ବ୍ୟବଧାନ ରହି ଥାଆନ୍ତା ? ତୁ ଜଣେ ଦୁଷ୍ଟ ବନ୍ଧୁ ଥିଲୁ !"

୩୯. ଯେହେତୁ ତୁମେମାନେ ଭୁଲ୍ କରିଛ ଆଜି ତୁମେମାନେ ପରସ୍ପର ଦଣ୍ଡରେ ସହଭାଗୀ ହେଲେ ମଧ୍ୟ କାହାରି କିଛି ଲାଭ ହେବନାହିଁ । ୪୦. କ'ଣ ତୁମେ ଜଣେ ବଧିରକୁ ଶୁଣାଇ ପାରିବ କିମ୍ବା ଜଣେ ଅନ୍ଧ ବା ସେହି ଲୋକକୁ ବାଟକୁ ଆଣି ପାରିବ, ଯିଏ ପୂରାପୂରି ପଥଭ୍ରଷ୍ଟ ହୋଇଯାଇଛି ? ୪୧. ଆମ୍ଭେ ତୁମକୁ ସଂସାରରୁ ନେଇଗଲେ ମଧ୍ୟ ସେମାନଙ୍କଠାରୁ ନିଶ୍ଚୟ ପ୍ରତିଶୋଧ ନେବୁ । ୪୨. ଅଥବା (ତୁମ ଜୀବନକାଳରେ) ତୁମକୁ ତାହା ଦେଖାଇ ଦେବୁ ଯାହା ବିଷୟରେ ଆମ୍ଭେ ସେମାନଙ୍କୁ ସାବଧାନ କରିଥିଲୁ । ସେମାନଙ୍କ ଉପରେ ଆମ୍ଭର ସଂପୂର୍ଣ୍ଣ କର୍ତ୍ତୃତ୍ୱ ରହିଛି ।

୪୩. ତେଣୁ ତୁମକୁ ଯେଉଁ ଦୈବବାଣୀ କରାଯାଉଛି, ତାହାକୁ କଡ଼ାକଡ଼ି ଭାବରେ ପାଳନ କର। ତୁମେ ସଂପୂର୍ଣ୍ଣ ଠିକ୍ ବାଟରେ ରହିଛ। ୪୪. ଏହି କୁରଆନ ତୁମ ପାଇଁ ଓ ତୁମ ସମାଜର ଲୋକମାନଙ୍କ ପାଇଁ ଉପଦେଶ। ଏବିଷୟରେ ତୁମମାନଙ୍କୁ ଖୁବଶୀଘ୍ର ପ୍ରଶ୍ନ କରାଯିବ। ୪୫. ଯେଉଁ ବାର୍ତ୍ତାବହମାନଙ୍କୁ ଆମ୍ଭେ ତୁମ ପୂର୍ବରୁ ପଠାଇଥିଲୁ, ସେମାନଙ୍କୁ ପଚାର (ଅର୍ଥାତ୍ ସେମାନଙ୍କର ଗ୍ରନ୍ଥ ଦେଖ) ଯେ କ'ଣ ଆମ୍ଭେ ଦୟାମୟ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟମାନଙ୍କୁ ଈଶ୍ୱର ରୂପେ ଗ୍ରହଣ କରି ସେମାନଙ୍କର ପୂଜା କରିବାକୁ କହିଥିଲୁ ?

୪୬. ଆମ୍ଭେ ମୁ'ସାଙ୍କୁ ଆମ୍ଭର (ଅଲୌକିକ) ନିଦର୍ଶନ ଦେଇ ଫିରଔନ ଓ ତା' ପାରିଷଦବର୍ଗଙ୍କ ପାଖକୁ ପଠାଇଲୁ ଏବଂ ସେ (ସେମାନଙ୍କ ପାଖକୁ ଯାଇ) କହିଲେ ଯେ ମୁଁ ଜଗତପାଳକଙ୍କ ଜଣେ ବାର୍ତ୍ତାବହ। ୪୭. ଯେତେବେଳେ ସେ ସେମାନଙ୍କୁ ଆମ୍ଭର କେତେକ ଅଲୌକିକ ନିଦର୍ଶନ ଦେଖାଇଲେ, ସେମାନେ ସେଗୁଡ଼ିକୁ ହସରେ ଉଡ଼ାଇ ଦେଲେ। ୪୮. ଆମ୍ଭେ ସେମାନଙ୍କୁ ଗୋଟିକରୁ ବଳି ଗୋଟିଏ ଚମତ୍କାର ଦେଖାଇଲୁ ଏବଂ ସେମାନଙ୍କୁ ଏହି କାରଣରୁ ଦଣ୍ଡ ଦେଲୁ ଯେ ହୁଏତ ସେମାନେ (ସତ୍‌ପଥକୁ) ଫେରି ଆସିବେ। ୪୯. ସେମାନେ କହିଲେ, "ହେ ଯାଦୁକର! ତୁମ ଈଶ୍ୱର ତୁମକୁ ଯେଉଁ ବଚନ ଦେଇଛନ୍ତି ତାହାକୁ ଆଧାର କରି ଆମ ପାଇଁ ପ୍ରାର୍ଥନା କର। ଆମେ ନିଶ୍ଚୟ ଠିକ୍ ବାଟକୁ ଆସିଯିବୁ।" ୫୦. ମାତ୍ର ଯେତେବେଳେ ଆମ୍ଭେ ସେମାନଙ୍କର ବିପଦ ଦୂର କରିଦେଲୁ, ସେମାନେ ପୁଣି ନିଜ କଥାରୁ ଓହରି ଗଲେ।

୫୧. ଫିରଔନ୍ ତା'ସଂପ୍ରଦାୟର ଲୋକଙ୍କ ମଧ୍ୟରେ ଘୋଷଣା କଲା, "ହେ ଲୋକମାନେ! କ'ଣ ମିଶର ମୋ' ସାମ୍ରାଜ୍ୟ ନୁହେଁ ଏବଂ ଏହି ନଦୀଗୁଡ଼ିକ ମୋ' (ପ୍ରାସାଦ) ତଳେ ପ୍ରବାହିତ ହେଉନାହିଁ ? କ'ଣ ତୁମେମାନେ ଏହା ଦେଖୁନାହଁ ? ୫୨. କ'ଣ ମୁଁ ଏହି ତୁଚ୍ଛ ବ୍ୟକ୍ତିଠାରୁ ଶ୍ରେଷ୍ଠ ନୁହେଁ ଯିଏ ଭଲ ଭାବରେ କଥା ମଧ୍ୟ କହି ପାରୁନାହିଁ?" ୫୩. "(ଯଦି ସେ ଜଣେ ଈଶ୍ୱରଦୂତ) ତେବେ କାହିଁକି ସେ ସୁନାର କଙ୍କଣ ପିନ୍ଧିନାହିଁ କିମ୍ବା କାହିଁକି ତା' ସହିତ ଦେବଦୂତମାନେ ଆସିନାହାନ୍ତି ?"

୫୪. ସେ ତା' ଲୋକମାନଙ୍କୁ ଏହିପରି ପ୍ରବଂଚନା ଦେଲା ଏବଂ ସେମାନେ ମଧ୍ୟ ତା' କଥା ମାନିଗଲେ। ସେମାନେ ଭାରି ଦୁଷ୍ଟ ଥିଲେ। ୫୫. ଯେହେତୁ ସେମାନେ ଆମ୍ଭଙ୍କୁ ଅସନ୍ତୁଷ୍ଟ କଲେ, ଆମ୍ଭେ ସେମାନଙ୍କଠାରୁ ପ୍ରତିଶୋଧ ନେଲୁ ଏବଂ ସମସ୍ତଙ୍କୁ ଜଳମଗ୍ନ କରିଦେଲୁ। ୫୬. ଆମ୍ଭେ ସେମାନଙ୍କୁ କାହାଣୀରେ ପରିଣତ କରିଦେଲୁ ଏବଂ ଏହି ଘଟଣାକୁ ପରବର୍ତ୍ତୀ ଲୋକମାନଙ୍କ ପାଇଁ ଏକ ଦୃଷ୍ଟାନ୍ତ କରିଦେଲୁ।

୫୭. ଯେତେବେଳେ ମରିୟମଙ୍କ ପୁତ୍ର ଇସାଙ୍କ ଉଦାହରଣ ଦିଆଗଲା, ତୁମ ସଂପ୍ରଦାୟର ଲୋକମାନେ ପାଟିତୁଣ୍ଡ କରିବାକୁ ଲାଗିଲେ, ୫୮. ଏବଂ କହିଲେ, "ଆମ ଆରାଧ୍ୟମାନେ ଭଲ ବା ସେ ଭଲ ?" ଏକଥା ସେମାନେ କେବଳ ଝଗଡ଼ା କରିବା ଉଦ୍ଦେଶ୍ୟରେ କହିଥିଲେ। ବାସ୍ତବରେ ସେମାନେ ଭାରି କଳହପ୍ରିୟ ଥିଲେ। ୫୯. ଇସା (ଅର୍ଥାତ୍ ଯୀଶୁ) କେବଳ ଆମ୍ଭର ଜଣେ ଭକ୍ତ ଥିଲେ ଯାହାଙ୍କ ପ୍ରତି ଆମ୍ଭେ କୃପା କରିଥିଲୁ ଏବଂ ଇସ୍ରାଇଲ ବଂଶଜମାନଙ୍କ ପାଇଁ ତାଙ୍କୁ (ନିଜ ଶକ୍ତିର) ଏକ ନମୁନା କରିଥିଲୁ। ୬୦. ଆମ୍ଭେ ଚାହିଁଲେ ତୁମମାନଙ୍କ ଔରସରୁ ଦେବଦୂତମାନଙ୍କୁ ଜାତ କରିଦିଅନ୍ତୁ ଯେଉଁମାନେ ଭୂପୃଷ୍ଠରେ ତୁମମାନଙ୍କର ଉତ୍ତରାଧିକାରୀ ହୁଅନ୍ତେ। ୬୧. ବାସ୍ତବରେ ଇସା ପ୍ରଳୟ ଦିନର ଏକ ପ୍ରତୀକ। ତୁମେମାନେ ଏବିଷୟରେ ସନ୍ଦେହ କରନାହିଁ ଏବଂ ମୋ' କଥା ମାନ। ଏହାହିଁ ଠିକ୍ ବାଟ। ୬୨. ଶଇତାନ ତୁମମାନଙ୍କୁ ସତ୍ମାର୍ଗରୁ ରୋକି ନଦେଉ। ସେ ତୁମମାନଙ୍କର ପରମ ଶତ୍ରୁ।

୬୩. ଯେତେବେଳେ ଇସା (ଅଲୌକିକ) ନିଦର୍ଶନ ନେଇ ସେମାନଙ୍କ ପାଖକୁ ଗଲେ, ସେମାନଙ୍କୁ କହିଲେ, "ମୁଁ ତୁମମାନଙ୍କ ପାଖକୁ ସଦ୍ଜ୍ଞାନ ନେଇ ଆସିଛି ଯାହାଦ୍ୱାରା ତୁମମାନଙ୍କ ମଧ୍ୟରେ ମତଭେଦ ଥିବା କେତେକ ବିଷୟକୁ ସ୍ପଷ୍ଟ କରିବି। ତୁମେମାନେ ଅଲ୍ଲାହଙ୍କୁ ଭୟ କର ଏବଂ ମୋ' କଥା ମାନିନିଅ। ୬୪. ପ୍ରକୃତରେ ଅଲ୍ଲାହ୍ ହିଁ ମୋ'ର ଏବଂ ତୁମମାନଙ୍କର ଈଶ୍ୱର। ତେଣୁ ତାଙ୍କରି ଉପାସନା କର। ଏହାହିଁ ଠିକ୍ ବାଟ।" ୬୫. କିନ୍ତୁ (ଏହାସତ୍ତ୍ୱେ) ସେମାନଙ୍କ ମଧ୍ୟରୁ କେତେକ ଗୋଷ୍ଠୀ ପରସ୍ପର

ମଧ୍ୟରେ ମତଭେଦ କଲେ । ତେଣୁ, ଦୁରାଚାରୀମାନଙ୍କର ସର୍ବନାଶ ହେବ ଏବଂ ସେମାନେ ଏକ ଭୟଙ୍କର ବିପଦର ଦିନ ଦେଖିବେ ।

୬୬. ଏମାନେ କେବଳ ପ୍ରଳୟର ପ୍ରତୀକ୍ଷାରେ ଅଛନ୍ତି ଯାହା ହଠାତ୍ ଆସିଯିବ ଏବଂ ସେମାନେ କିଛି ବୁଝିପାରିବେ ନାହିଁ । ୬୭. ସେଦିନ ସଦାଚାରୀମାନଙ୍କୁ ଛାଡ଼ି ଅବଶିଷ୍ଟ ବନ୍ଧୁମାନେ ପରସ୍ପରର ଶତ୍ରୁ ପାଲଟିଯିବେ । ୬୮. ହେ ମୋ' ଭକ୍ତଗଣ ! ଆଜି ତୁମମାନଙ୍କର କୌଣସି ଭୟ ନାହିଁ ବା ତୁମେମାନେ ଦୁଃଖ ପାଇବନାହିଁ । ୬୯. ତୁମେମାନେ ଆମ୍ଭ ବାଣୀରେ ବିଶ୍ୱାସ କରିଥିଲ ଏବଂ ଆମ୍ଭର ଆଜ୍ଞାଧୀନ ଥିଲ । ୭୦. ଏବେ ଖୁସି ମନରେ ନିଜ ପତ୍ନୀମାନଙ୍କ ସହିତ ସ୍ୱର୍ଗକୁ ଯାଅ । ୭୧. ସେମାନଙ୍କୁ ସୁନା ଥାଳି ଏବଂ ସୁନା ପିଆଲାରେ (ଖାଦ୍ୟପେୟ) ପରିବେଷଣ କରାଯିବ ଏବଂ ସେମାନଙ୍କୁ ତାହା ମିଳିବ ଯାହା ସେମାନଙ୍କ ମନ ଚାହିଁବ ଏବଂ ଯାହାଦ୍ୱାରା ସେମାନଙ୍କ ଆଖି ତୃପ୍ତ ହେବ । (ସେମାନଙ୍କୁ କୁହାଯିବ) "ତୁମେମାନେ ଏଠାରେ ଚିରକାଳ ରହିବ ।" ୭୨. ତୁମେମାନେ ଯେଉଁ କର୍ମ କରିଛ, ତାହା ବିନିମୟରେ ତୁମମାନଙ୍କୁ ଏହି ବୈକୁଣ୍ଠର ଅଧିକାରୀ କରାଯାଇଛି । ୭୩. ଏଠାରେ ତୁମମାନଙ୍କୁ ପ୍ରଚୁର ପରିମାଣରେ ବିଭିନ୍ନ ପ୍ରକାରର ଫଳ ଖାଇବା ପାଇଁ ମିଳିବ ।

୭୪. ପାପୀମାନେ ଚିରକାଳ ନର୍କଦଣ୍ଡ ଭୋଗିବେ । ୭୫. ସେମାନଙ୍କର ଦଣ୍ଡ ଆଦୌ କୋହଳ କରାଯିବ ନାହିଁ ଏବଂ ସେମାନେ ନିରାଶ ହୋଇ ସେଥିରେ ପଡ଼ି ରହିବେ । ୭୬. ଆମ୍ଭେ ସେମାନଙ୍କ ପ୍ରତି ଅନ୍ୟାୟ କରିନାହୁଁ, ବରଂ ସେମାନେ ନିଜେ ଦୁରାଚାରୀ ଥିଲେ । ୭୭. ସେମାନେ ଚିତ୍କାର କରି (ନର୍କର ପ୍ରହରୀ ମାଲିକ୍‌କୁ) ଡାକିବେ, "ହେ ମାଲିକ୍ ! ତୁମ ପ୍ରଭୁ ଆମମାନଙ୍କୁ ଶେଷ କରିଦିଅନ୍ତୁ ।" ସେ ଉତ୍ତର ଦେବ, "ତୁମେମାନେ ଏହି ଅବସ୍ଥାରେ ହିଁ ରହିବ ।" ୭୮. ଆମ୍ଭେ ତୁମମାନଙ୍କ ପାଖକୁ ସତ୍ୟ ପଠାଇଥିଲୁ କିନ୍ତୁ ତୁମମାନଙ୍କ ମଧ୍ୟରୁ ଅଧିକାଂଶ ଲୋକଙ୍କୁ ସତ୍ୟ ଅପ୍ରିୟ ଲାଗୁଥିଲା ।

୭୯. କ'ଣ ସେମାନେ (ଆମ୍ଭ ରସୁଲଙ୍କ ବିରୁଦ୍ଧରେ) କୌଣସି ଚକ୍ରାନ୍ତ କରୁଛନ୍ତି ? ଆମ୍ଭେ ମଧ୍ୟ ଯୋଜନା କରୁଛୁ । ୮୦. କ'ଣ ସେମାନେ ଭାବୁଛନ୍ତି ଯେ

ଆମ୍ଭେ ସେମାନଙ୍କର ଗୁପ୍ତ କଥା ଓ ଗୁପ୍ତ ମନ୍ତ୍ରଣା ଶୁଣୁନାହୁଁ? ନିଶ୍ଚୟ ଶୁଣୁଛୁ । ଆମ୍ଭର ଦେବଦୂତମାନେ ସେମାନଙ୍କ ପାଖରେ ଥାଇ ସବୁକିଛି ଲେଖି ରଖୁଛନ୍ତି ।

୮୧. ସେମାନଙ୍କୁ କୁହ, "ଯଦି ପ୍ରକୃତରେ ଦୟାମୟଙ୍କ କୌଣସି ପୁତ୍ର ଥାଆନ୍ତା, ତେବେ ପ୍ରଥମେ ମୁଁ ତା'ର ଉପାସନା କରିଥାଆନ୍ତି । ୮୨. ପୃଥିବୀ ଓ ଆକାଶର ସ୍ୱାମୀ ଏବଂ ଦିବ୍ୟସିଂହାସନର ଅଧୀଶ୍ୱର ପରମ ପବିତ୍ର ଏବଂ ସେମାନେ କହୁଥିବା କଥାରୁ ବହୁ ଊର୍ଦ୍ଧ୍ୱରେ ।" ୮୩. ସେମାନଙ୍କୁ ବୃଥା ଗପଶପ ଓ ଖେଳତାମସାରେ ଲିପ୍ତ ରହିବାକୁ ଦିଅ, ଯେପରିକି ସେମାନେ ସେହି ଦିନ ଦେଖନ୍ତୁ ଯାହା ବିଷୟରେ ସେମାନଙ୍କୁ ସତର୍କ କରାଯାଇଛି ।

୮୪. ପୃଥିବୀ ଏବଂ ଆକାଶରେ ସେ ହିଁ ଏକମାତ୍ର ଉପାସ୍ୟ । ସେ ତତ୍ତ୍ୱଜ୍ଞାନୀ ଏବଂ ସର୍ବଜ୍ଞ । ୮୫. ସେ ଅତ୍ୟନ୍ତ ମଙ୍ଗଳମୟ, ଯାହାଙ୍କର ଅଧିପତ୍ୟ ପୃଥିବୀ ଓ ଆକାଶ ଏବଂ ସେଗୁଡ଼ିକରେ ମଧ୍ୟରେ ଥିବା ପ୍ରତ୍ୟେକ ଜୀବଜଡ଼ ଉପରେ ରହିଛି । ପ୍ରଳୟର ସମୟ କେବଳ ତାଙ୍କୁ ହିଁ ଜଣା ଏବଂ ତାଙ୍କରି ପାଖକୁ ତୁମେମାନେ ଫେରିଯିବ । ୮୬. ଏମାନେ ଅଲ୍ଲାହଙ୍କ ପରିବର୍ତ୍ତେ ଯେଉଁମାନଙ୍କୁ ଡାକନ୍ତି, ସେମାନଙ୍କର ସୁପାରିଶ କରିବାର କ୍ଷମତା ନାହିଁ । ଅବଶ୍ୟ (ସେହିମାନେ ସୁପାରିଶ କରିପାରିବେ) ଯେଉଁମାନେ ନିଜ ଜ୍ଞାନ ଭିତ୍ତିରେ ସତ୍ୟର ସାକ୍ଷ୍ୟ ଦେଇଥିବେ ।

୮୭. ଯଦି ତୁମେ ଏମାନଙ୍କୁ ପଚାରିବ ଯେ ସେମାନଙ୍କୁ କିଏ ସୃଷ୍ଟି କରିଛି, ଏମାନେ ନିଶ୍ଚୟ କହିବେ, 'ଅଲ୍ଲାହ୍' । ପୁଣି କେମିତି ବାଟବଣା ହୋଇ ଯାଉଛନ୍ତି ? ୮୮. ବାର୍ତ୍ତାବହ କହିଲେ, "ହେ ପ୍ରଭୁ! ପ୍ରକୃତରେ ଏମାନେ ଏଭଳି ଲୋକ, ଯେଉଁମାନେ ଆଦୌ ବିଶ୍ୱାସ କରୁନାହାନ୍ତି" ୮୯. ଠିକ୍ ଅଛି, ସେମାନଙ୍କୁ ସଲାମ୍ କହି ସେଠାରୁ ଚାଲିଯାଅ । ଅତିଶୀଘ୍ର ସେମାନେ (ପରିଣାମ) ଜାଣିଯିବେ ।

## ଅଧ୍ୟାୟ ୪୪, ଅଦ୍ ଦୁଖାନ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ହା – ମୀମ୍ । ୨. ପରିଷ୍କାର ଭାବରେ ବର୍ଣନା କରୁଥିବା ଏହି ଗ୍ରନ୍ଥର ରାଣ! ୩. ଆମ୍ଭେ ଏହାକୁ ଏକ ଶୁଭରାତ୍ରିରେ ପଠାଇଛୁ କାରଣ ଆମ୍ଭେ ଲୋକଙ୍କୁ ସଚେତନ କରିଥାଉ । ୪. ଏହି ରାତିରେ ପ୍ରତ୍ୟେକ ତାତ୍ତ୍ୱିକତାପୂର୍ଣ୍ଣ କାର୍ଯ୍ୟର ନିଷ୍ପତ୍ତି ନିଆଯାଏ - ୫. ଆମ୍ଭରି ଆଜ୍ଞାରୁ । ଆମ୍ଭେ ହିଁ (ଦେବଦୂତମାନଙ୍କୁ) ପଠାଇଥାଉ । ୬. ଏହା ତୁମ ପ୍ରଭୁଙ୍କର କରୁଣା । ସେ ସର୍ବଶ୍ରୋତା ଏବଂ ସର୍ବଜ୍ଞ ।

୭. ଯଦି ତୁମ୍ଭମାନେ ବିଶ୍ୱାସ କରୁଛ, ତେବେ (ଜାଣିରଖ ଯେ) ସେ ପୃଥିବୀ ଓ ଆକାଶ ଏବଂ ସେଗୁଡ଼ିକ ମଧ୍ୟରେ ଥିବା ସମସ୍ତ ସୃଷ୍ଟିର ମାଲିକ । ୮. ତାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନୁହେଁ । ସେ ଜୀବନ ଦିଅନ୍ତି ଏବଂ ମୃତ୍ୟୁ ଦିଅନ୍ତି । ସେ ହିଁ ତୁମ୍ଭମାନଙ୍କର ଈଶ୍ୱର ଏବଂ ତୁମ ପୂର୍ବଜମାନଙ୍କର ମଧ୍ୟ, ୯. କିନ୍ତୁ ଏମାନେ ସନ୍ଦେହ କରୁଛନ୍ତି ଏବଂ ଖେଳରେ ମାତି ରହିଛନ୍ତି । ୧୦. ତେଣୁ ସେହି ଦିନକୁ ଅପେକ୍ଷା କର ଯେଉଁଦିନ ଆକାଶରୁ ଧୂଆଁ ବାହାରୁଥିବାର ପରିଷ୍କାର ଦେଖାଯିବ । ୧୧. ଏହା ଲୋକମାନଙ୍କୁ ଢ଼ାଙ୍କିନେବ ଏବଂ ଏହି ଯାତନା ଭାରି କଷ୍ଟଦାୟକ ହେବ । ୧୨. (ସେତେବେଳେ ସେମାନେ କହିବେ) "ହେ ପ୍ରଭୁ! ଆମମାନଙ୍କଠାରୁ ଏହି ବିପଦ ଦୂର କରିଦିଅ, ଆମେ ମାନି ନେଉଛୁ ।" ୧୩. ଏବେ ସେମାନେ ସଚେତନ ହେଲେ କି ଲାଭ? ସେମାନଙ୍କ ପାଖକୁ ତ ପରିଷ୍କାର ଭାବରେ ବୁଝାଇବା ପାଇଁ ବାର୍ତ୍ତାବହ ଯାଇଥିଲେ । ୧୪. ସେମାନେ ତାଙ୍କଠାରୁ ଏହା କହି ମୁହଁ ବୁଲାଇ ନେଲେ ଯେ ଏହି ବ୍ୟକ୍ତିକୁ କେହି ପାଠ ପଢ଼ାଇଛି ଅଥବା ତା'ର ମତିଭ୍ରମ ଘଟିଛି । ୧୫. ଆମ୍ଭେ କିଛି ସମୟ ପାଇଁ ଦଣ୍ଡ ସ୍ଥଗିତ କରିଦେଉଛୁ ମାତ୍ର ତୁମେମାନେ ପୁଣି ପୂର୍ବାବସ୍ଥାକୁ ଫେରିଯିବ । ୧୬. ଯେଉଁଦିନ ଆମ୍ଭେ ତୁମ୍ଭମାନଙ୍କୁ କଠୋର ଶାସ୍ତି ଦେବୁ, ସେଦିନ (ତୁମ୍ଭମାନଙ୍କଠାରୁ) ପ୍ରତିଶୋଧ ନେବୁ ।

୧୭. ଏମାନଙ୍କ ପୂର୍ବରୁ ଆମ୍ଭେ ଫିରଔନ୍ ସଂପ୍ରଦାୟର ପରୀକ୍ଷା ନେଇଥିଲୁ ଏବଂ ସେମାନଙ୍କ ପାଖକୁ ଜଣେ ମର୍ଯ୍ୟାଦାସମ୍ପନ୍ନ ବାର୍ତ୍ତାବହ ଯାଇଥିଲେ । ୧୮. (ଯିଏ ସେମାନଙ୍କୁ କହିଥିଲେ) "ଅଲ୍ଲାହଙ୍କ ଦାସମାନଙ୍କୁ ମୋ' ହାତରେ ଅର୍ପଣ

କରିଦିଅ । ମୁଁ ତୁମମାନଙ୍କ ପାଖକୁ (ଈଶ୍ୱରଙ୍କର) ଜଣେ ବିଶ୍ୱସ୍ତ ବାର୍ତ୍ତାବହ ରୂପେ ଆସିଛି । ୧୯. ଅଲ୍ଲାହଙ୍କ ପାଖରେ ଧୃଷ୍ଟତା କରନାହିଁ । ମୁଁ ତୁମମାନଙ୍କ ପାଖକୁ ସ୍ୱଷ୍ଟ ପ୍ରମାଣ ନେଇ ଆସିଛି । ୨୦. ତୁମେମାନେ ଯେପରି ମୋତେ ପ୍ରସ୍ତରାଘାତ କରି ମାରି ନଦିଅ, ଏଥିପାଇଁ ମୁଁ ତାଙ୍କର ଆଶ୍ରୟ ମାଗୁଛି ଯିଏ ମୋ'ର ଓ ତୁମମାନଙ୍କର ପ୍ରଭୁ । ୨୧. ଯଦି ତୁମେମାନେ ମୋତେ ବିଶ୍ୱାସ ନକରୁଛ, ତେବେ ମୋ' ଠାରୁ ଦୂରେଇ ରୁହ ।" ୨୨. ପୁଣି ସେ ନିଜ ପ୍ରଭୁଙ୍କୁ ପ୍ରାର୍ଥନା କରି କହିଲେ ଯେ ଏହି ଲୋକମାନେ ଅତ୍ୟନ୍ତ ପାପୀ ।

୨୩. (ଆମ୍ଭେ ତାଙ୍କୁ କହିଲୁ) "ତୁମେ ଆମ୍ଭର ଦାସମାନଙ୍କୁ ନେଇ ରାତାରାତି ବାହାରି ଯାଅ । ତୁମମାନଙ୍କର ପିଛା କରାଯିବ, ୨୪. ଏବଂ ସମୁଦ୍ରକୁ ସେହିପରି (ବିଭାଜିତ) ଅବସ୍ଥାରେ ଛାଡ଼ି ଚାଲିଯାଅ । ସେମାନଙ୍କର ସେନା ଜଳମଗ୍ନ ହେବ ।" ୨୫. ସେମାନେ ଅନେକ ବଗିଚ଼ ଓ ଝରଣା ଆଦି ଛାଡ଼ିଗଲେ, ୨୬. ଏବଂ ବହୁ ଶସ୍ୟକ୍ଷେତ୍ର ଓ ସୁନ୍ଦରସୁନ୍ଦର ଘର ମଧ୍ୟ । ୨୭. ଏଥିସହିତ ଅନେକ ଭୋଗବିଳାସର ବସ୍ତୁ ଛାଡ଼ିଗଲେ ଯାହା ମଧ୍ୟରେ ରହି ସେମାନେ ଆନନ୍ଦ କରୁଥିଲେ । ୨୮. (ସେମାନଙ୍କର ପରିଣାମ) ଏହିପରି ହେଲା ଏବଂ ଆମ୍ଭେ ଅନ୍ୟମାନଙ୍କୁ ସେଗୁଡ଼ିକର ମାଲିକ କରିଦେଲୁ । ୨୯. ପୃଥିବୀ ବା ଆକାଶ ସେମାନଙ୍କ ପାଇଁ କାନ୍ଦିଲେ ନାହିଁ ଏବଂ ସେମାନଙ୍କୁ କୌଣସି ମହଲତ ଦିଆଗଲା ନାହିଁ ।

୩୦. ଆମ୍ଭେ ଇସ୍ରାଇଲଙ୍କ ବଂଶଧରମାନଙ୍କୁ ଅପମାନଜନକ ଯାତନାରୁ ରକ୍ଷା କଲୁ – ୩୧. ଯାହା ଫିରଔନ ସେମାନଙ୍କୁ ଦେଉଥିଲା । ସେ ଭାରି ଅହଂକାରୀ ଥିଲା ଏବଂ ସୀମା ଟପି ଯାଇଥିଲା । ୩୨. ଆମ୍ଭେ ଜାଣିଶୁଣି ସେମାନଙ୍କୁ ବିଶ୍ୱବାସୀଙ୍କ ମଧ୍ୟରେ ଶ୍ରେଷ୍ଠ କରିଥିଲୁ ୩୩. ଏବଂ ସେମାନଙ୍କୁ ଏଭଳି ନିଦର୍ଶନ ଦେଖାଇଥିଲୁ ଯେଉଁଥିରେ ସେମାନଙ୍କ ପାଇଁ ଆମ୍ଭର ସ୍ୱଷ୍ଟ ଅନୁଗ୍ରହ ଥିଲା ।

୩୪. ଏମାନେ କହୁଛନ୍ତି – ୩୫. "ଆମେମାନେ ଥରେ ମରିବୁ କିନ୍ତୁ ଆଉ ଜୀବିତ ହୋଇ ଉଠିବୁନାହିଁ । ୩୬. ଯଦି ତୁମେ ସତ କହୁଛ ତେବେ ଆମ ବାପଅଜାଙ୍କୁ ଜୀବିତ କରି ଆଣ ।" ୩୭. କ'ଣ (ସୁଖସମୃଦ୍ଧି ଦୃଷ୍ଟିରୁ) ଏମାନେ ତୁବ୍ବା ସଂପ୍ରଦାୟ ବା ସେମାନଙ୍କ ପୂର୍ବ ସମାଜଗୁଡ଼ିକଠାରୁ ଅଧିକ ଉନ୍ନତ ? ସେମାନେ ସମସ୍ତେ ପାପୀ ଥିଲେ, ତେଣୁ ଆମ୍ଭେ ସେମାନଙ୍କର ବିନାଶ କରିଦେଲୁ ।

୩୮. ପୃଥିବୀ ଓ ଆକାଶ ଏବଂ ଏଗୁଡ଼ିକ ମଧ୍ୟରେ ଥିବା ବିଭିନ୍ନ ସୃଷ୍ଟିକୁ ଆମ୍ଭେ ଖେଳ ପାଇଁ ଗଢ଼ିନାହୁଁ । ୩୯. ଆମ୍ଭେ ସେଗୁଡ଼ିକୁ ଏକ ଉଚିତ ଲକ୍ଷ୍ୟରେ ସୃଷ୍ଟି କରିଛୁ ମାତ୍ର ଅଧିକାଂଶ ଲୋକ ଏହା ଜାଣନ୍ତିନାହିଁ । ୪୦. ସମସ୍ତଙ୍କ ପାଇଁ ବିଚାରର ଦିନ ସ୍ଥିର ହୋଇ ସାରିଛି । ୪୧. ଯେଉଁଦିନ ଜଣେ ବନ୍ଧୁ ତା' ବନ୍ଧୁର କୌଣସି କାମରେ ଆସିବ ନାହିଁ କିମ୍ବା ସେମାନଙ୍କୁ କୌଣସି ପ୍ରକାରର ସାହାଯ୍ୟ ମିଳିବନାହିଁ । ୪୨. ହଁ, ଅଲ୍ଲାହ୍ ଯାହା ପ୍ରତି କରୁଣା କରିବେ ତା' କଥା ଭିନ୍ନ । ସେ ପ୍ରବଳ ପରାକ୍ରମୀ ଏବଂ ପରମ ଦୟାଳୁ ।

୪୩. ଜକ୍କୁମ୍ (ଅର୍ଥାତ୍ ନାଗଫେଣୀ) ଗଛ, ୪୪. ପାପିଷ୍ଠ ବ୍ୟକ୍ତିର ଭୋଜନ ହେବ । ୪୫. ଏହା ପେଟ ଭିତରେ ତେଲ ପରି ଏମିତି ଫୁଟିବ, ୪୬. ଯେମିତି ଗରମ ପାଣି ଫୁଟେ । ୪୭. (ଦେବଦୂତମାନଙ୍କୁ ଆଜ୍ଞା ହେବ) "ତାକୁ ଧରିନିଅ ଏବଂ ଘୋଷାରି ଆଣି ମଝି ନର୍କରେ ଛାଡ଼ିଦିଅ । ୪୮. ଏବଂ ତା' ମୁଣ୍ଡରେ ଫୁଟନ୍ତା ପାଣି ଢ଼ାଳିଦିଅ ।" ୪୯. ଏବେ ମଜା ଚାଖ୍ । ତୁ ତ ଭାରି କ୍ଷମତାଶାଳୀ ଓ ସମ୍ମାନିତ ବ୍ୟକ୍ତି ଥିଲୁ! ୫୦. ଏହା ସେହି ନର୍କ ଯାହା ବିଷୟରେ ତୁମେମାନେ ସନ୍ଦେହ କରୁଥିଲ ।

୫୧. ସଦାଚାରୀ ଲୋକମାନେ ଅବଶ୍ୟ ନିରାପଦ ସ୍ଥାନରେ ରହିବେ । ୫୨. ବୈକୁଣ୍ଠର ଉଦ୍ୟାନ ଓ ଝରଣା ମଧ୍ୟରେ । ୫୩. ସୂକ୍ଷ୍ମ ରେଶମ ବସ୍ତ୍ର ପିନ୍ଧି ପରସ୍ପର ସାମ୍ନାସାମନି ହୋଇ ବସିବେ । ୫୪. ଏହିପରି ହେବ ଏବଂ ଆମ୍ଭେ ସୁନ୍ଦର-ନୟନା ତରୁଣୀମାନଙ୍କ ସହ ସେମାନଙ୍କର ବିବାହ କରାଇଦେବୁ । ୫୫. ସେମାନେ ସେଠାରେ ନିଶ୍ଚିନ୍ତରେ ରହି ବିଭିନ୍ନ ପ୍ରକାରର ଫଳ ମଗାଉଥିବେ । ୫୬. ସେମାନେ ଆଉ ମୃତ୍ୟୁର ସ୍ୱାଦ ଚାଖିବେ ନାହିଁ କିନ୍ତୁ ଥରେ (ସଂସାରରେ) ଯାହା ଚାଖିଥିବେ । ଈଶ୍ୱର ସେମାନଙ୍କୁ ନର୍କଯନ୍ତ୍ରଣାରୁ ରକ୍ଷା କରିବେ । ୫୭. ଏଗୁଡ଼ିକ ତୁମ ପ୍ରଭୁଙ୍କର କରୁଣା । ଏହାହିଁ ସବୁଠାରୁ ବଡ଼ ସଫଳତା ।

୫୮. (ହେ ବାର୍ତ୍ତାବହ!) ଆମ୍ଭେ କୁରଆନ୍‌କୁ ତୁମରି ଭାଷାରେ ଅତି ସହଜ କରି ଦେଇଛୁ ଯେପରିକି ଲୋକମାନେ ଶିକ୍ଷାଲାଭ କରିବେ । ୫୯. ତେଣୁ ତୁମେ ଅପେକ୍ଷା କର । ସେମାନେ ମଧ୍ୟ ଅପେକ୍ଷା କରୁଛନ୍ତି ।

## ଅଧ୍ୟାୟ ୪୫, ଅଲ୍ ଜାସିୟାଃ

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍ଙ୍କ ନାମରେ

୧. ହା – ମୀମ୍ । ୨. ଏହି ଗ୍ରନ୍ଥଟି ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞାନୀ ଅଲ୍ଲାହ୍ଙ୍କ ଦ୍ୱାରା ପଠାଯାଇଛି ।

୩. ବାସ୍ତବରେ ଯେଉଁମାନେ ବିଶ୍ୱାସ କରନ୍ତି, ସେମାନଙ୍କ ପାଇଁ ପୃଥିବୀ ଓ ଆକାଶରେ (ତାଙ୍କ ମହିମାର) ଅନେକ ସଂକେତ ରହିଛି । ୪. ଯେଭଳି ଭାବରେ ସେ ତୁମମାନଙ୍କୁ ସୃଷ୍ଟି କରିଛନ୍ତି ଏବଂ ଜୀବଜନ୍ତୁମାନଙ୍କୁ ଚାରିଆଡ଼େ ଖେଳାଇ ଦେଇଛନ୍ତି, ସେଥିରେ ସେମାନଙ୍କ ପାଇଁ ଅନେକ ସଂକେତ ଅଛି ଯେଉଁମାନେ ବିଶ୍ୱାସ କରନ୍ତି । ୫. ଦିନ ଓ ରାତିରେ ଯେଉଁ ପରିବର୍ତ୍ତନ ହୁଏ, (ତୁମମାନଙ୍କର) ଆହାର ପାଇଁ ଅଲ୍ଲାହ୍ ଆକାଶରୁ ଯେଉଁ ବର୍ଷା କରନ୍ତି ଏବଂ ଏହାଦ୍ୱାରା ନିର୍ଜୀବ ଭୂମିକୁ ଯେପରି ଭାବରେ ଜୀବନ୍ତ କରନ୍ତି ତଥା ବାୟୁପ୍ରବାହରେ ଯେଉଁ ପରିବର୍ତ୍ତନ ଘଟିଥାଏ, ଏଗୁଡ଼ିକରେ ବୁଦ୍ଧିମାନ ଲୋକମାନଙ୍କ ପାଇଁ ଅନେକ ସଂକେତ ଅଛି । ୬. ଏଗୁଡ଼ିକ ଅଲ୍ଲାହଙ୍କର ବାଣୀ ଯାହାକୁ ଆମ୍ଭେ ତୁମକୁ ସଠିକ୍ ଭାବରେ ପଢ଼ି ଶୁଣାଉଛୁ । ଯଦି ଏମାନେ ଅଲ୍ଲାହଙ୍କୁ ଏବଂ ତାଙ୍କ ବାଣୀକୁ ଅସ୍ୱୀକାର କରୁଛନ୍ତି, ତେବେ ଆଉ କେଉଁ କଥାରେ ବିଶ୍ୱାସ କରିବେ ?

୭. ପ୍ରତ୍ୟେକ ମିଥ୍ୟାବାଦୀ ଓ ପାପିଷ୍ଠ ବ୍ୟକ୍ତିର ସର୍ବନାଶ ହେବ, ୮. ଯାହା ପାଖରେ ଅଲ୍ଲାହଙ୍କର ବାଣୀ ପାଠ କରାଯାଏ ଏବଂ ସେ ତାହାକୁ ଶୁଣେ କିନ୍ତୁ ଅହଙ୍କାରବଶତଃ ନିଜ ଜିଦ୍‌ରେ ଅଟଳ ରହେ ସତେଯେପରି ସେ କିଛି ଶୁଣିନାହିଁ । ଏଭଳି ବ୍ୟକ୍ତିକୁ କଠୋର ଶାସ୍ତି ମିଳିବ ବୋଲି ଜଣାଇଦିଅ । ୯. ଯେତେବେଳେ ସେ ଆମ୍ଭର କୌଣସି ବାଣୀ ବିଷୟରେ ଜାଣିବାକୁ ପାଏ, ଏହା ସହିତ ବିଦ୍ରୂପ କରେ । ଏଭଳି ଲୋକମାନେ ଅପମାନଜନକ ଶାସ୍ତି ଭୋଗିବେ । ୧୦. ସେମାନଙ୍କ ପାଇଁ ଆଗକୁ ନର୍କ ଅଛି । ଏମାନଙ୍କର ଅର୍ଜିତ କର୍ମ ଏମାନଙ୍କ କୌଣସି କାମରେ ଆସିବନାହିଁ କିମ୍ବା (ସେମାନେ ମଧ୍ୟ କାମରେ ଆସିବେନାହିଁ) ଯେଉଁମାନଙ୍କୁ ଏମାନେ ଅଲ୍ଲାହଙ୍କ ପରିବର୍ତ୍ତେ ନିଜର ହର୍ତ୍ତାକର୍ତ୍ତା ମାନିଛନ୍ତି । ଏମାନେ କଠୋର ଦଣ୍ଡ ଭୋଗିବେ ।

୧୧. ଏହି କୁରଆନ ଏକ ସଂପୂର୍ଣ୍ଣ ମାର୍ଗଦର୍ଶନକାରୀ ଗ୍ରନ୍ଥ । ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ବାଣୀକୁ ଅସ୍ୱୀକାର କରିଛନ୍ତି, ସେମାନେ ଯନ୍ତ୍ରଣାଦାୟକ ଶାସ୍ତି ଭୋଗିବେ ।

୧୨. ସେ ହିଁ ଅଲ୍ଲାହ୍, ଯିଏ ସମୁଦ୍ରକୁ ତୁମମାନଙ୍କ ସେବାରେ ଲଗାଇ ଦେଇଛନ୍ତି ଯେପରିକି ଜାହାଜଗୁଡ଼ିକ ତାଙ୍କ ଆଜ୍ଞାରୁ ସେଥିରେ ଚଳପ୍ରଚଳ କରିବ, ତୁମେମାନେ ତାଙ୍କର କୃପା (ଅର୍ଥାତ୍ ଜୀବିକା) ଅନ୍ୱେଷଣ କରିବ ଏବଂ (ତାଙ୍କ ପ୍ରତି) କୃତଜ୍ଞ ହେବ । ୧୩. ସେ ନିଜ ଆଜ୍ଞା ବଳରେ ପୃଥିବୀ ଓ ଆକାଶର ସମସ୍ତ ସୃଷ୍ଟିକୁ ତୁମମାନଙ୍କ ସେବାରେ ଲଗାଇ ଦେଇଛନ୍ତି । ଯେଉଁମାନେ ଏବିଷୟରେ ଚିନ୍ତା କରନ୍ତି, ସେମାନଙ୍କ ପାଇଁ ଏଥିରେ ଅନେକ ସଂକେତ ଅଛି ।

୧୪. ସଦ୍‌ବିଶ୍ୱାସୀମାନଙ୍କୁ କହିଦିଅ ଯେ ଯେଉଁମାନେ ଅଲ୍ଲାହଙ୍କଠାରୁ ଆସିବାକୁ ଥିବା ଦୁର୍ଦ୍ଦିନଗୁଡ଼ିକରେ ଆସ୍ଥା ରଖନ୍ତିନାହିଁ, ସେମାନଙ୍କ ପ୍ରତି କ୍ଷମା ଆଚରଣ କରନ୍ତୁ କାରଣ ସେ ସ୍ୱୟଂ ସେମାନଙ୍କୁ ସେମାନଙ୍କ କୃତକର୍ମର ଫଳ ଦେବେ । ୧୫. ଯିଏ ଭଲ କର୍ମ କରିବ, ସେ ନିଜ ପାଇଁ କରିବ ଏବଂ ଯିଏ ମନ୍ଦ କର୍ମ କରିବ, ତା'ର କୁପରିଣାମ ମଧ୍ୟ ସେ ନିଜେ ଭୋଗିବ ଏବଂ ତୁମମାନଙ୍କୁ ତୁମ ପାଳନକର୍ତ୍ତାଙ୍କ ପାଖକୁ ଫେରାଇ ନିଆଯିବ ।

୧୬. ଆମ୍ଭେ ଇସ୍ରାଇଲଙ୍କ ବଂଶଜମାନଙ୍କୁ ଦିବ୍ୟଗ୍ରନ୍ଥ ଏବଂ ଶାସନ କ୍ଷମତା ଦେଇଥିଲୁ ତଥା (ସେମାନଙ୍କୁ) ଆମ୍ଭର ପ୍ରତିନିଧିତ୍ୱ କରିବାର ସୌଭାଗ୍ୟ ପ୍ରଦାନ କରିଥିଲୁ । ଆମ୍ଭେ ସେମାନଙ୍କୁ ଭଲ ଆହାର ମଧ୍ୟ ଦେଇଥିଲୁ ଏବଂ ସେମାନଙ୍କୁ (ତତ୍କାଳୀନ) ବିଶ୍ୱବାସୀଙ୍କ ମଧ୍ୟରେ ଶ୍ରେଷ୍ଠତା ପ୍ରଦାନ କରିଥିଲୁ, ୧୭. ଏବଂ ସେମାନଙ୍କୁ ଧର୍ମ ସଂକ୍ରାନ୍ତରେ ପରିଷ୍କାର ଆଦେଶ ଦେଇଥିଲୁ । ସେମାନେ ଯେଉଁ ମତଭେଦ କଲେ, ତାହା ସେମାନଙ୍କ ପାଖରେ ସଦ୍‌ଜ୍ଞାନ ପହଁଚିଲା ପରେ କେବଳ ପରସ୍ପରର ଜିଦ୍ ଯୋଗୁଁ କଲେ । ସେମାନେ ଯେଉଁ ବିଷୟରେ ମତଭେଦ କଲେ, ତୁମ ପାଳନକର୍ତ୍ତା ବିଚାର ଦିନ ତାହାର ନିଷ୍ପତ୍ତି କରିଦେବେ । ୧୮. ପୁଣି ଆମ୍ଭେ ତୁମକୁ ସ୍ପଷ୍ଟ ଧର୍ମପନ୍ଥାରେ ପ୍ରତିଷ୍ଠିତ କଲୁ । ତେଣୁ, ତୁମେ ସେହି ମାର୍ଗ ଅନୁସରଣ କର ଏବଂ ଯେଉଁମାନଙ୍କର ଏବିଷୟରେ ଜ୍ଞାନ ନାହିଁ, ସେମାନଙ୍କ ଇଚ୍ଛା ଅନୁସାରେ ଚାଲନାହିଁ । ୧୯. ଅଲ୍ଲାହଙ୍କ ପାଖରେ ସେମାନେ ତୁମର କୌଣସି କାମରେ

ଆସିବେନାହିଁ । ଦୁରାଚାରୀ ଲୋକମାନେ ପରସ୍ପରର ବନ୍ଧୁ କିନ୍ତୁ ଅଲ୍ଲାହ୍ ସଦାଚାରୀମାନଙ୍କର ବନ୍ଧୁ । ୨୦. ଏହି କୁରଆନ୍ ହେଉଛି ମାନବଜାତି ପାଇଁ ଜ୍ଞାନର ଏକ ଆଲୋକ ଏବଂ ଏହାକୁ ବିଶ୍ୱାସ କରୁଥିବା ଲୋକମାନଙ୍କ ପାଇଁ ଏହା ଏକ ମାର୍ଗଦର୍ଶନକାରୀ ଗ୍ରନ୍ଥ ତଥା (ଅଲ୍ଲାହ୍‌ଙ୍କର) କରୁଣା ।

୨୧. ଯେଉଁମାନେ କୁକର୍ମ କରୁଛନ୍ତି, କ'ଣ ସେମାନେ ଭାବୁଛନ୍ତି ଯେ ଆମ୍ଭେ ସେମାନଙ୍କୁ ଏଭଳି ଲୋକଙ୍କ ସହିତ ସମାନ କରିଦେବୁ ଯେଉଁମାନେ ବିଶ୍ୱାସ କଲେ ଏବଂ ଭଲକର୍ମ କଲେ ଯେପରିକି ସମସ୍ତଙ୍କର ଜିଇଁବା ଓ ମରିବା ସମାନ ହୋଇଯାଉ ? ସେମାନଙ୍କର ବିଚାର ଅତି ହୀନ । ୨୨. ଅଲ୍ଲାହ୍ ପୃଥିବୀ ଓ ଅକାଶମଣ୍ଡଳକୁ ଏକ ଉଚିତ୍ ଲକ୍ଷ୍ୟରେ ସୃଷ୍ଟି କରିଛନ୍ତି ଯାହାଫଳରେ ପ୍ରତ୍ୟେକ ବ୍ୟକ୍ତିକୁ ତା' କର୍ମର ଫଳ ଦିଆଯାଇ ପାରିବ ଏବଂ କାହାରି ପ୍ରତି ଅନ୍ୟାୟ ହେବନାହିଁ ।

୨୩. କ'ଣ ତୁମେ ସେହି ଲୋକକୁ ଦେଖିଲ ଯିଏ ନିଜର ଇନ୍ଦ୍ରିୟ ଲାଳସାକୁ ଈଶ୍ୱର କରିଦେଇଛି ?  ତା'ର ଜ୍ଞାନ ଥିବା ସତ୍ତ୍ୱେ ଅଲ୍ଲାହ୍ ତାକୁ ପଥଭ୍ରଷ୍ଟ ହେବାକୁ ଛାଡ଼ିଦେଲେ । ତା' କାନ ଏବଂ ହୃଦୟର ଦ୍ୱାର ବନ୍ଦ କରିଦେଲେ ଏବଂ ତା' ଆଖିରେ ମଧ୍ୟ ପରଦା ପକାଇ ଦେଲେ । ଅଲ୍ଲାହ୍ ପଥଭ୍ରଷ୍ଟ କଲାପରେ ପୁଣି କିଏ ତାକୁ ବାଟକୁ ଆଣିପାରିବ ? ତୁମେମାନେ କାହିଁକି ଧ୍ୟାନ ଦେଉନାହଁ ?

୨୪. ସେମାନେ କହନ୍ତି, "ଜୀବନରେ ଯାହା କିଛି ହୁଏ, ଏହି ସଂସାରରେ ହୁଏ । ଆମେ ଏହିଠାରେ ଜିଇଁଥାଉ ଏବଂ ଏହିଠାରେ ମରିଥାଉ । କେବଳ କାଳ ହିଁ ଆମର ବିନାଶ କରେ ।" ସେମାନଙ୍କର ଏବିଷୟରେ କିଛି ଜ୍ଞାନ ନାହିଁ । ସେମାନେ କେବଳ ଅନୁମାନ କରୁଛନ୍ତି । ୨୫. ଯେତେବେଳେ ସେମାନଙ୍କ ପାଖରେ ଆମ୍ଭର ସ୍ପଷ୍ଟ ବାଣୀଗୁଡ଼ିକ ପାଠ କରାଯାଏ, ସେମାନେ କେବଳ ଗୋଟିଏ ଯୁକ୍ତି ବାଢ଼ନ୍ତି ଯେ ଯଦି ତୁମେ ସତ କହୁଛ ତେବେ ଆମ ବାପଅଜାଙ୍କୁ (ଜୀବିତ କରି) ଆଣିଦିଅ । ୨୬. ସେମାନଙ୍କୁ କୁହ, "ଅଲ୍ଲାହ୍ ତୁମମାନଙ୍କୁ ଜୀବନ ଦିଅନ୍ତି, ପୁଣି ମୃତ୍ୟୁ ଦିଅନ୍ତି ଏବଂ ବିଚାର ଦିନ ସେ ତୁମମାନଙ୍କୁ (ପୁନର୍ଜୀବିତ କରି) ଏକତ୍ରିତ କରିବେ ଯେଉଁଥିରେ ଆଦୌ ସନ୍ଦେହ ନାହିଁ, ମାତ୍ର ଅଧିକାଂଶ ଲୋକ ଏହା ଜାଣନ୍ତିନାହିଁ ।" ୨୭. ସମଗ୍ର ପୃଥିବୀ ଓ ଆକାଶରେ କେବଳ ତାଙ୍କରି ଆଧିପତ୍ୟ ।

ଯେଉଁଦିନ ସୃଷ୍ଟିର ପ୍ରଳୟ ହେବ, ସେଦିନ ମିଥ୍ୟାକୁ ମାନୁଥିବା ଲୋକମାନେ କ୍ଷତିଗ୍ରସ୍ତ ହେବେ ।

୨୮. ତୁମେ ପ୍ରତ୍ୟେକ ସମୁଦାୟକୁ ଆଣ୍ଠୁ ମାଡ଼ି ବସିଥିବାର ଦେଖିବ । ପ୍ରତ୍ୟେକ ସମୁଦାୟକୁ ସେମାନଙ୍କର କର୍ମପଞ୍ଜିକା ଦେଖିବା ପାଇଁ ଡକାଯିବ ଏବଂ କୁହାଯିବ, "ଆଜି ତୁମମାନଙ୍କୁ ସେହି କର୍ମଗୁଡ଼ିକର ଫଳ ଦିଆଯିବ ଯାହା ତୁମେମାନେ କରୁଥିଲ । ୨୯. ଆମ୍ଭ ପାଖରେ ଥିବା ଏହି କର୍ମପଞ୍ଜିକା ତୁମମାନଙ୍କ ବିଷୟରେ ପ୍ରତ୍ୟେକ ସତ୍ୟକୁ ପ୍ରକାଶ କରିଦେଇଛି । ତୁମେମାନେ ଯାହାକିଛି କରୁଥିଲ ଆମ୍ଭେ ତାହାକୁ ଲେଖାଇ ନେଉଥିଲୁ ।" ୩୦. କିନ୍ତୁ ଯେଉଁମାନେ ଆସ୍ଥା ରଖିଲେ ଏବଂ ଭଲ କର୍ମ କଲେ, ସେମାନଙ୍କ ପ୍ରଭୁ ସେମାନଙ୍କୁ ନିଜ କରୁଣାର ଛାୟାରେ ଆଶ୍ରୟ ଦେବେ । ଏହାହିଁ (ମଣିଷର) ପ୍ରକୃତ ସଫଳତା । ୩୧. ଏବଂ ଯେଉଁମାନେ ସତ୍ୟକୁ ଅସ୍ୱୀକାର କରିଦେଲେ, (ସେମାନଙ୍କୁ କୁହାଯିବ), "କ'ଣ ତୁମମାନଙ୍କୁ ଆମ୍ଭର ବାଣୀ ପାଠ କରି ଶୁଣାଇ ଦିଆଯାଉ ନଥିଲା ? କିନ୍ତୁ ତୁମେମାନେ ଅହଙ୍କାର କଲ ଏବଂ ଅପରାଧୀ ପାଲଟିଗଲ ।" ୩୨. ଯେତେବେଳେ ତୁମମାନଙ୍କୁ କୁହା ଯାଉଥିଲା ଯେ ଅଲ୍ଲାହଙ୍କ ବଚନ ସତ୍ୟ ଏବଂ ସୃଷ୍ଟିର ପ୍ରଳୟ ହେବାରେ ଆଦୌ ସନ୍ଦେହ ନାହିଁ, ତୁମେମାନେ କହୁଥିଲ, "କି ପ୍ରଳୟ ଆମେ ଜାଣୁନା । ଆମ ମନରେ କେବଳ ଏକ ଭାବନା ଆସେ କିନ୍ତୁ ସେଥିରେ ଆମର ବିଶ୍ୱାସ ନାହିଁ ।" ୩୩. ସେମାନଙ୍କ କର୍ମର ଦୁଷ୍ପରିଣାମ ସେମାନଙ୍କ ସାମନାରେ ପ୍ରକାଶ ପାଇଯିବ । ଯେଉଁ ବିପଦକୁ ସେମାନେ ଥଟ୍ଟା କରୁଥିଲେ, ତାହା ସେମାନଙ୍କୁ ଚାରିଆଡୁ ଘେରିନେବ । ୩୪. ସେମାନଙ୍କୁ କୁହାଯିବ,"ଯେପରି ତୁମେମାନେ ଆଜିର ଏହି ସାକ୍ଷାତର ଦିନକୁ ଭୁଲି ଯାଇଥିଲ, ସେହିପରି ଆମ୍ଭେ ମଧ୍ୟ ଆଜି ତୁମମାନଙ୍କୁ ଭୁଲିଯିବୁ । ତୁମେମାନେ ନର୍କରେ ରହିବ ଏବଂ କେହି ତୁମମାନଙ୍କୁ ସାହାଯ୍ୟ କରିବେ ନାହିଁ । ୩୫. ଏହାର କାରଣ ତୁମେମାନେ ଅଲ୍ଲାହଙ୍କ ବାଣୀ ସହିତ ଥଟ୍ଟା କରୁଥିଲ ଏବଂ ପାର୍ଥିବ ଜୀବନ ତୁମମାନଙ୍କୁ ମାୟାଗ୍ରସ୍ତ କରି ଦେଇଥିଲା ।" ତେଣୁ, ଆଜି ସେମାନଙ୍କୁ ନର୍କରୁ ମୁକ୍ତି ମିଳିବନାହିଁ କିମ୍ବା ସେମାନଙ୍କୁ କ୍ଷମାପ୍ରାର୍ଥନା କରିବାକୁ ମଧ୍ୟ ଦିଆଯିବ ନାହିଁ ।

୩୬. ସୁତରାଂ, ଅଲ୍ଲାହ ହିଁ ସକଳ ସ୍ତୁତିର ଯୋଗ୍ୟ ଯିଏ ପୃଥିବୀ ଓ ଆକାଶର ସ୍ୱାମୀ ଏବଂ ବ୍ରହ୍ମାଣ୍ଡର ଅଧୀଶ୍ୱର । ୩୭. ପୃଥିବୀ ଓ ଆକାଶରେ ତାଙ୍କରି ମହିମାମଣ୍ଡନ ହୁଏ । ସେ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ ।

## ଅଧ୍ୟାୟ ୪୬, ଅଲ୍ ଅହ୍‌କାଫ୍
## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ହା – ମୀମ୍ । ୨. ଏହି ଗ୍ରନ୍ଥଟି ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞାନୀ ଅଲ୍ଲାହ୍‌ଙ୍କ ଦ୍ୱାରା ପଠାଯାଇଛି ।

୩. ପୃଥିବୀ ଓ ଆକାଶ ଏବଂ ଏହା ମଧ୍ୟରେ ଯାହାକିଛି ଅଛି, ସେଗୁଡ଼ିକୁ ଆମ୍ଭେ ଉଚିତ ଲକ୍ଷ୍ୟରେ ଏକ ନିଶ୍ଚିତ ସମୟ ପାଇଁ ସୃଷ୍ଟି କରିଛୁ । ନାସ୍ତିକମାନଙ୍କୁ ଏବିଷୟରେ ସତର୍କ କରାଯାଉଛି ମାତ୍ର ସେମାନେ ଏହାକୁ ଉପେକ୍ଷା କରୁଛନ୍ତି ।

୪. ସେମାନଙ୍କୁ ପଚାର, "ତୁମେମାନେ ଅଲ୍ଲାହ୍‌ଙ୍କୁ ଛାଡ଼ି ଯେଉଁମାନଙ୍କୁ ଡାକୁଛ, କ'ଣ ସେମାନଙ୍କ ବିଷୟରେ କେବେ ବିଚାର କରିଛ ? ମୋତେ ଟିକିଏ ଦେଖାଇଦିଅ ଯେ ସେମାନେ ପୃଥିବୀରେ କ'ଣ ସୃଷ୍ଟି କରିଛନ୍ତି କିମ୍ବା ଆକାଶମଣ୍ଡଳର ନିର୍ମାଣରେ ସେମାନଙ୍କର କେତେ ଭାଗ ଅଛି ? ଯଦି ତୁମେମାନେ ସତ୍ୟବାଦୀ, ତେବେ (ଏହାର ସମର୍ଥନରେ) ପୂର୍ବରୁ ଆସିଥିବା କୌଣସି ଦିବ୍ୟଗ୍ରନ୍ଥ ବା ଦିବ୍ୟଜ୍ଞାନଭିତ୍ତିକ ଶିକ୍ଷା ମୋତେ ଦେଖାଅ ।" ୫. ତା'ଠାରୁ ଅଧିକ ପଥଭ୍ରଷ୍ଟ ଆଉ କିଏ ହୋଇପାରେ ଯିଏ ଅଲ୍ଲାହ୍‌ଙ୍କୁ ଛାଡ଼ି ସେମାନଙ୍କୁ ଡାକେ, ଯେଉଁମାନେ ପ୍ରଳୟ ପର୍ଯ୍ୟନ୍ତ ମଧ୍ୟ ତା' ଡାକର ଉତ୍ତର ଦେଇ ପାରିବେ ନାହିଁ, ବରଂ ସେମାନଙ୍କୁ ଏମାନଙ୍କ ପ୍ରାର୍ଥନା ବିଷୟରେ କିଛି ଜଣାନାହିଁ । ୬. ଯେତେବେଳେ ଲୋକମାନଙ୍କୁ (ଜୀବିତ କରି) ଏକାଠି କରାଯିବ, ସେମାନେ ଏମାନଙ୍କର ଶତ୍ରୁ ପାଲଟିଯିବେ ଏବଂ ଏମାନଙ୍କର ପୂଜା-ଅର୍ଚ୍ଚନାକୁ ଅସ୍ୱୀକାର କରିଦେବେ ।

୭. ଯେତେବେଳେ ସେମାନଙ୍କ ପାଖରେ ଆମ୍ଭର ସ୍ପଷ୍ଟ ବାଣୀଗୁଡ଼ିକ ପାଠ କରାଯାଏ, ନାସ୍ତିକମାନେ ସେମାନଙ୍କ ପାଖରେ ପହଁଚିଥିବା ସତ୍ୟ ବିଷୟରେ କହନ୍ତି ଯେ ଏହା ସଂପୂର୍ଣ୍ଣ ଯାଦୁବିଦ୍ୟା । ୮. କ'ଣ ସେମାନେ ଏହା କହୁଛନ୍ତି ଯେ ବାର୍ତ୍ତାବହ ନିଜେ କୁର୍‌ଆନ ରଚନା କରି ଦେଇଛନ୍ତି ? ତୁମେ ସେମାନଙ୍କୁ କୁହ, "ଯଦି ମୁଁ ନିଜେ ଏହାକୁ ରଚନା କରିଥାଏ, ତେବେ ତୁମେମାନେ ମୋତେ ଅଲ୍ଲାହ୍‌ଙ୍କ କୋପରୁ ଆଦୌ ରକ୍ଷା କରି ପାରିବନାହିଁ । ତୁମେମାନେ ଏବିଷୟରେ ଯାହା କହୁଛ, ଅଲ୍ଲାହ୍

ଜାଣନ୍ତି । ଅଲ୍ଲାହ୍ ମୋ'ର ଏବଂ ତୁମମାନଙ୍କର ସାକ୍ଷୀ ରୂପେ ଯଥେଷ୍ଟ । ସେ ଅତ୍ୟନ୍ତ କ୍ଷମାଶୀଳ ଏବଂ ପରମ ଦୟାଳୁ ।"

୯. ସେମାନଙ୍କୁ କୁହ ଯେ ମୁଁ କୌଣସି ନୂଆ ବାର୍ତ୍ତାବହ ନୁହେଁ । ମୁଁ ଏହା ମଧ୍ୟ ଜାଣେନା ଯେ ମୋ'ର ବା ତୁମମାନଙ୍କର କ'ଣ ହେବ । ମୁଁ ତାହାହିଁ କରେ ଯାହା ମୋତେ ଆଦିଷ୍ଟବାଣୀ ହୁଏ ଏବଂ ମୁଁ କେବଳ ପରିଷ୍କାର ଭାବରେ ସାବଧାନ କରିଦିଏ । ୧୦. ସେମାନଙ୍କୁ କୁହ, "କ'ଣ ତୁମେମାନେ ଏହା ଚିନ୍ତା କରିଛ ଯେ ଯଦି କୁରଆନ ଅଲ୍ଲାହଙ୍କର ଗ୍ରନ୍ଥ ହୋଇଥାଏ ଏବଂ ତୁମେମାନେ ଏହାକୁ ଅସ୍ୱୀକାର କରୁଥାଅ (ତେବେ ଏହାର ପରିଣାମ କ'ଣ ହେବ) ? ପୁଣି ଇସ୍ରାଇଲଙ୍କ ବଂଶଜଙ୍କ ମଧ୍ୟରୁ ଜଣେ ବ୍ୟକ୍ତି ଏହା ସ୍ୱୀକାର କରି ସାରିଛନ୍ତି ଯେ ଏହି ଗ୍ରନ୍ଥଟି ପୂର୍ବ ଦିବ୍ୟଗ୍ରନ୍ଥ (ତୌରାତ୍) ପରି ଏକ ଗ୍ରନ୍ଥ ଏବଂ ସେ ଆସ୍ଥା ମଧ୍ୟ ରଖି ସାରିଛନ୍ତି, ଅଥଚ ତୁମେମାନେ ଅହଂକାର କରୁଛ । ଅଲ୍ଲାହ୍ ଅନ୍ୟାୟ କରୁଥିବା ଲୋକମାନଙ୍କର ମାର୍ଗଦର୍ଶନ କରନ୍ତିନାହିଁ ।"

୧୧. ନାସ୍ତିକମାନେ ସଦ୍‌ବିଶ୍ୱାସୀମାନଙ୍କ ବିଷୟରେ କହୁଛନ୍ତି, "ଯଦି ପ୍ରକୃତରେ କୁରଆନ୍ କୌଣସି ଭଲ କଥା ହୋଇଥାଆନ୍ତା, ତେବେ ଏହି ଲୋକମାନେ ଆମକୁ ଟପି ଯାଇ ନଥାଆନ୍ତେ ।" ଯେହେତୁ ସେମାନଙ୍କୁ ଏଥିରୁ ମାର୍ଗଦର୍ଶନ ମିଳିଲାନାହିଁ, ସେମାନେ ଏହାହିଁ କହିବେ ଯେ ଏହା ପ୍ରାଚୀନ କାଳର ଏକ ମିଥ୍ୟା କାହାଣୀ । ୧୨. ଏହାପୂର୍ବରୁ ଲୋକମାନଙ୍କର ମାର୍ଗଦର୍ଶନ ପାଇଁ (ଅଲ୍ଲାହଙ୍କର) କରୁଣା ସ୍ୱରୂପ ମୁ'ସାଙ୍କ ଗ୍ରନ୍ଥ ଥିଲା । ଆରବୀ ଭାଷାର ଏହି ଗ୍ରନ୍ଥ ତାହାର ସମର୍ଥନ କରେ ଯେପରିକି ଏହା ପାପୀମାନଙ୍କୁ ସତର୍କ କରିବ ଏବଂ ପୁଣ୍ୟବାନ ଲୋକମାନଙ୍କୁ (ସ୍ୱର୍ଗସୁଖର) ଶୁଭବାର୍ତ୍ତା ଦେବ । ୧୩. ଯେଉଁମାନେ କହିଲେ ଯେ ଆମ ପାଳନକର୍ତ୍ତା ଅଲ୍ଲାହ୍ ଏବଂ ସେଥିରେ ଅଟଳ ରହିଲେ, ସେମାନଙ୍କ ପାଇଁ କିଛି ଭୟ ନାହିଁ କିମ୍ବା ସେମାନେ ଦୁଃଖ ପାଇବେ ନାହିଁ । ୧୪. ସେମାନେ ବୈକୁଣ୍ଠରେ ବାସ କରିବେ ଏବଂ ସେଠାରେ ଚିରକାଳ ରହିବେ । ଏହା ସେମାନଙ୍କ କର୍ମର ପୁରସ୍କାର ହେବ ।

୧୫. ଆମ୍ଭେ ମନୁଷ୍ୟକୁ ତା' ପିତାମାତାଙ୍କ ସହିତ ଭଲ ବ୍ୟବହାର କରିବାର ଆଜ୍ଞା ଦେଇଛୁ । ତା' ମାଆ କଷ୍ଟ ସହି ତାକୁ ଗର୍ଭରେ ଧାରଣ କଲା ଏବଂ କଷ୍ଟ ସହି ତାକୁ ଜନ୍ମ ଦେଲା । ତା'ର ଗର୍ଭରେ ରହିବା ଏବଂ କ୍ଷୀର ଛାଡ଼ିବାର ଅବଧି ତିରିଶ ମାସ । ପୁଣି (ଏଭଳି ଶିଶୁଟି) ଯେତେବେଳେ ଯୌବନରେ ପଦାର୍ପଣ କରେ ଏବଂ (କ୍ରମଶଃ) ଚାଳିଶ ବର୍ଷ ବୟସରେ ପହଁଚେ, (ଅଲ୍ଲାହଙ୍କୁ) ପ୍ରାର୍ଥନା କରେ, "ହେ ପ୍ରଭୁ ! ମୋତେ ଶକ୍ତି ଦିଅ ଯେ ତୁମେ ମୋ' ପ୍ରତି ଏବଂ ମୋ' ବାପାମାଆଙ୍କ ପ୍ରତି ଯେଉଁ କରୁଣା କରିଛ ତୁମର ସେହି ଉପକାର ପାଇଁ ମୁଁ ତୁମଠାରେ ସଦା କୃତଜ୍ଞ ରହିବି ଏବଂ ସେହି କର୍ମ କରିବି ଯାହାଦ୍ୱାରା ତୁମେ ପ୍ରସନ୍ନ ହେବ ଏବଂ (ହେ ପ୍ରଭୁ !) ମୋ' ସନ୍ତାନମାନଙ୍କୁ ମଧ୍ୟ ସଦାଚାରୀ କର । ମୁଁ ତୁମ ନିକଟରେ ଅନୁତାପ କରୁଛି ଏବଂ ମୁଁ ଜଣେ ଆଜ୍ଞାଧୀନ ଭକ୍ତ । ୧୬. ଏହି ଲୋକମାନଙ୍କର ଭଲ କର୍ମଗୁଡ଼ିକୁ ଆମ୍ଭେ ଗ୍ରହଣ କରୁ ଏବଂ ସେମାନଙ୍କ ଦୋଷତ୍ରୁଟି ମାର୍ଜନା କରିଦେଉ । ଏହିମାନେ ସ୍ୱର୍ଗବାସୀ ହେବେ । ଏହି ସତ୍ୟର ପ୍ରତିଶ୍ରୁତି ସେମାନଙ୍କୁ ଦିଆ ଯାଉଥିଲା ।

୧୭. (ଅନ୍ୟ ପକ୍ଷରେ) ଯିଏ ନିଜ ପିତାମାତାଙ୍କୁ ବିରକ୍ତ ହୋଇ କହେ, "ତୁମେମାନେ ମୋତେ ଡରାଉଛ ଯେ ମୁଁ ମରିଯିବା ପରେ ପୁନର୍ଜୀବନ ପାଇବି ଅଥଚ ମୋ' ପୂର୍ବରୁ ଅନେକ ସମାଜ ଲୋପ ପାଇଯାଇଛି (ଯେଉଁମାନେ ଆଉ ଜୀବିତ ହୋଇ ଫେରିନାହାନ୍ତି) ।" ତା' ପିତାମାତା ସାହାଯ୍ୟ ପାଇଁ ଅଲ୍ଲାହଙ୍କ ପାଖରେ ଗୁହାରୀ କରନ୍ତି ଏବଂ ତାକୁ କହନ୍ତି, "ହେ ଅଭାଗା ! ମାନି ଯା' । ଅଲ୍ଲାହଙ୍କ ବଚନ ଅଟଳ ସତ୍ୟ ।" କିନ୍ତୁ ସେ କହେ, "ଏସବୁ ପ୍ରାଚୀନ କାଳର କାହାଣୀ ।" ୧୮. ଏହି ଲୋକମାନଙ୍କୁ ମଧ୍ୟ ଏମାନଙ୍କ ପୂର୍ବର (ଅବାଧ୍ୟ) ମାନବ ଓ ଜିନ୍ ସମୁଦାୟ ସହିତ ଶାସ୍ତି ମିଳିବ ବୋଲି ସ୍ଥିର ହୋଇସାରିଛି । ଏମାନେ କ୍ଷତିଗ୍ରସ୍ତ ହେବେ । ୧୯. ସମସ୍ତଙ୍କ ପାଇଁ ସେମାନଙ୍କ କର୍ମ ଅନୁଯାୟୀ (ସ୍ୱର୍ଗ ବା ନର୍କରେ) ବିଭିନ୍ନ ଶ୍ରେଣୀ ଅଛି ଯେପରିକି ସେମାନଙ୍କୁ ନିଜନିଜ କର୍ମର ସଂପୂର୍ଣ୍ଣ ଫଳ ଦିଆଯିବ ଏବଂ ସେମାନଙ୍କ ପ୍ରତି ଅନ୍ୟାୟ ହେବନାହିଁ ।

୨୦. ଯେଉଁଦିନ ନାସ୍ତିକମାନଙ୍କୁ ନର୍କ ସାମନାରେ ଛିଡ଼ା କରାଯିବ, (ସେମାନଙ୍କୁ କୁହାଯିବ) "ତୁମେମାନେ ସଂସାରରେ ନିଜ ଭାଗର ସୁଖ ଶେଷ

କରିସାରିଛ ଏବଂ ଭଲରୂପେ ଭୋଗିସାରିଛ । ଆଜି ତୁମମାନେ ଅପମାନଜନକ ଶାସ୍ତି ଭୋଗିବ କାରଣ ତୁମେମାନେ ଭୂପୃଷ୍ଠରେ ମିଥ୍ୟା ଅହଂକାର କରୁଥିଲ ଏବଂ ଆଜ୍ଞା ଉଲ୍ଲଂଘନ କରୁଥିଲ ।”

୨୧. ସେମାନଙ୍କୁ ଆଦ୍ ସଂପ୍ରଦୟର ଜଣେ ଭାଇ ହୁଦଙ୍କ ଘଟଣା ଶୁଣାଅ ଯିଏ ଅହକାଫ୍ ଅଂଚଳରେ ତାଙ୍କ ସଂପ୍ରଦାୟକୁ ସାବଧାନ କରିଥିଲେ । ତାଙ୍କ ପୂର୍ବରୁ ଏବଂ ତାଙ୍କ ପରେ ମଧ୍ୟ ଅନେକ ବାର୍ତ୍ତାବହ (ନିଜନିଜ ସଂପ୍ରଦାୟକୁ) ସତର୍କ କରି ସାରିଛନ୍ତି (ଏବଂ ଏହା କହି ସାରିଛନ୍ତି) ଯେ ଅଲ୍ଲାହଙ୍କ ବ୍ୟତୀତ କାହାରି ସେବା-ଉପାସନା କରନାହିଁ । ମୋ’ର ଭୟ ହେଉଛି ଯେ ହୁଏତ ତୁମମାନଙ୍କ ଉପରେ ଏକ ବଡ଼ ବିପଦର ଦିନ ଆସିବ ।” ୨୨. ସେମାନେ କହିଲେ, “କ’ଣ ତୁମେ ଆମ ଆରାଧ୍ୟମାନଙ୍କ ପୂଜାରୁ ଆମମାନଙ୍କୁ ରୋକିବାକୁ ଆସିଛ ? ଯେଉଁ ଦୈବୀବିପତ୍ତିର ଧମକ ଆମକୁ ଦେଉଛ ତାହା ନେଇଆସ, ଯଦି ପ୍ରକୃତରେ ତୁମେ ସତ୍ୟବାଦୀ ।” ୨୩. ହୁଦ୍ କହିଲେ, “ଏ ବିଷୟରେ କେବଳ ଅଲ୍ଲାହଙ୍କୁ ଜଣା । ମୁଁ ତୁମମାନଙ୍କୁ କେବଳ ସେହି ବାର୍ତ୍ତା ଦେଉଛି ଯେଉଁ ବାର୍ତ୍ତା ଦେଇ ମୋତେ ପଠାଯାଇଛି, କିନ୍ତୁ ମୁଁ ଦେଖୁଛି ଯେ ତୁମେମାନେ ସଂପୂର୍ଣ୍ଣ ଅଜ୍ଞାନତା ମଧ୍ୟରେ ରହିଛ ।” ୨୪. ପୁଣି ଯେତେବେଳେ ସେମାନେ ସେହି ବିପଦକୁ ବାଦଲ ରୂପରେ ସେମାନଙ୍କ ଘାଟି ଆଡ଼କୁ ମାଡ଼ି ଆସୁଥିବାର ଦେଖିଲେ, କହିଲେ, “ଏହାତ ବାଦଲ, ଯାହା ଆମ ଉପରେ ବର୍ଷା କରିବ ।” ନା, ବରଂ ଏହା ସେହି ବିପତ୍ତି ଯେଉଁଥିପାଇଁ ତୁମେମାନେ ଅଥୟ ହେଉଥିଲ । ଏହା ଏକ ବାତ୍ୟା ଯାହା ଭୟଙ୍କର ବିପର୍ଯ୍ୟୟ ନେଇ ଆସୁଛି । ୨୫. ଏହା ତା’ ପ୍ରଭୁଙ୍କ ଆଜ୍ଞାରୁ ସବୁକିଛି ଧ୍ୱଂସ କରିଦେବ ।” ପୁଣି ଅବସ୍ଥା ଏପରି ହେଲା ଯେ କେବଳ ସେମାନଙ୍କର ଘର ବ୍ୟତୀତ ସେଠାରେ ଆଉ କିଛି ଦେଖାଯାଉ ନଥିଲା । ଆମ୍ଭେ ପାପୀମାନଙ୍କୁ ଏଇଭଳି ଦଣ୍ଡ ଦେଇଥାଉ । ୨୬. ଆମ୍ଭେ ସେମାନଙ୍କୁ ଏଭଳି କ୍ଷମତା ଓ ଐଶ୍ୱର୍ଯ୍ୟ ଦେଇଥିଲୁ ଯାହା ତୁମମାନଙ୍କୁ ଦେଇନାହୁଁ । ଆମ୍ଭେ ସେମାନଙ୍କୁ ଦେଖିବା, ଶୁଣିବା ଏବଂ ବୁଝିବାର ଶକ୍ତି ମଧ୍ୟ ଦେଇଥିଲୁ, ମାତ୍ର ଯେହେତୁ ସେମାନେ ଅଲ୍ଲାହଙ୍କ ନିଦର୍ଶନଗୁଡ଼ିକୁ ଅସ୍ୱୀକାର କରୁଥିଲେ, ସେମାନଙ୍କୁ ଆଖି, କାନ ବା ହୃଦୟ ଦ୍ୱାରା କିଛି ଲାଭ ହେଲାନାହିଁ । (ଶେଷରେ) ଯେଉଁ ବିପଦକୁ ସେମାନେ ବିଦ୍ରୂପ କରୁଥିଲେ, ତାହା ସେମାନଙ୍କୁ ଘେରି ନେଇଥିଲା ।

୨୭. ତୁମ ଆଖପାଖରେ ଥିବା ଅନେକ ଜନବସତି ଆମ୍ଭେ ଧ୍ୱଂସ କରିଦେଲୁ । ସେମାନେ ବାଟକୁ ଆସିବେ ବୋଲି ଆମ୍ଭେ ସେମାନଙ୍କୁ ବିଭିନ୍ନ ନିଦର୍ଶନ ଦେଖାଇଥିଲୁ । ୨୮ ଅଲ୍ଲାହଙ୍କୁ ଛାଡ଼ି ଯେଉଁମାନଙ୍କୁ ଏମାନେ ଆରାଧ୍ୟ ରୂପେ ଗ୍ରହଣ କରିଥିଲେ ଯେ ସେମାନେ ଏମାନଙ୍କୁ ତାଙ୍କର ନିକଟତର କରାଇ ଦେବେ, ସେହି ଆରାଧ୍ୟମାନେ କାହିଁକି ଏମାନଙ୍କୁ ସାହାଯ୍ୟ କଲେନାହିଁ? ସେମାନେ ତ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ! ପ୍ରକୃତରେ ଏହି ମିଥ୍ୟା ଉପାସ୍ୟମାନଙ୍କୁ ସେମାନେ ନିଜେ ଗଢ଼ିଥିଲେ ।

୨୯. ଯେତେବେଳେ ଜିନ୍‌ମାନଙ୍କର ଗୋଟିଏ ଗୋଷ୍ଠୀକୁ ଆମ୍ଭେ ତୁମ ପାଖକୁ କୁରଆନ ଶୁଣିବା ପାଇଁ ପଠାଇଲୁ, ସେମାନେ ସେଠାରେ ପହଁଚିବା ପରେ ପରସ୍ପରକୁ କହିଲେ, "ନୀରବ ରୁହ ।" ପୁଣି ଯେତେବେଳେ କୁରଆନ ପାଠ ଶେଷ ହେଲା, ସେମାନେ ନିଜ ସମାଜକୁ ସାବଧାନ କରିବା ପାଇଁ ବାହାରିଲେ । ୩୦. ସେମାନେ ଯାଇ ନିଜ ସଂପ୍ରଦାୟର ଲୋକଙ୍କୁ କହିଲେ, "ଭାଇମାନେ! ଆମେ ଏଭଳି ଏକ ଗ୍ରନ୍ଥ ପାଠ କରା ଯାଉଥିବାର ଶୁଣିଲୁ ଯାହା ମୁ'ସାଙ୍କ ପରେ ଆସିଛି । ଏହା ପୂର୍ବ ଦିବ୍ୟଗ୍ରନ୍ଥମାନଙ୍କର ସମର୍ଥନ କରେ, ସତ୍‌ଶିକ୍ଷା ଦିଏ ଏବଂ ଠିକ୍ ବାଟ ଦେଖାଏ । ୩୧. ଭାଇମାନେ! ଅଲ୍ଲାହଙ୍କ ବାଟକୁ ଡାକୁଥିବା ମାର୍ଗଦର୍ଶକଙ୍କ କଥା ଶୁଣ ଏବଂ ତାଙ୍କୁ ମାନିନିଅ । ଅଲ୍ଲାହ୍ ତୁମମାନଙ୍କର ଦୋଷ କ୍ଷମା କରିଦେବେ ଏବଂ ତୁମମାନଙ୍କୁ ଦୁଃଖଦ ଯାତନାରୁ ରକ୍ଷା କରିବେ ।" ୩୨. ଯିଏ ଅଲ୍ଲାହଙ୍କ ମାର୍ଗକୁ ଡାକୁଥିବା ମାର୍ଗଦର୍ଶକଙ୍କର କଥା ନମାନିବ, ସେ ପୃଥିବୀ ମଧ୍ୟରେ ଅଲ୍ଲାହଙ୍କୁ ନିରୂପାୟ କରିପାରିବ ନାହିଁ ଏବଂ ତାଙ୍କ ବ୍ୟତୀତ ତା'ର କେହି ଆଶ୍ରୟଦାତା ନାହାନ୍ତି । ଏଭଳି ଲୋକମାନେ ସଂପୂର୍ଣ୍ଣ ପଥଭ୍ରଷ୍ଟ ହୋଇ ଯାଇଛନ୍ତି ।

୩୩. ଯେଉଁ ଅଲ୍ଲାହ୍ ପୃଥିବୀ ଓ ଆକାଶ ସୃଷ୍ଟି କଲେ ଏବଂ ସେଗୁଡ଼ିକୁ ସୃଷ୍ଟି କଲା ପରେ ଟିକିଏ କ୍ଲାନ୍ତ ମଧ୍ୟ ହେଲେନାହିଁ, କ'ଣ ସେମାନେ ବୁଝି ପାରୁନାହାନ୍ତି ସେ ମୃତମାନଙ୍କୁ ଜୀବିତ କରିବାକୁ ସକ୍ଷମ ? କାହିଁକି ନୁହନ୍ତି ? ସେ ସବୁକିଛି କରିପାରନ୍ତି । ୩୪. ଯେଉଁଦିନ ଅଧର୍ମୀମାନଙ୍କୁ ନର୍କ ସାମନାରେ ହାଜର କରାଯିବ ଏବଂ ସେମାନଙ୍କୁ ପ୍ରଶ୍ନ କରାଯିବ ଯେ କ'ଣ ଏହା ସତ୍ୟ ନୁହେଁ?

ସେମାନେ ଉତ୍ତର ଦେବେ, "ଆମ ପ୍ରଭୁଙ୍କ ରାଣ, ଏହା ସମ୍ପୂର୍ଣ୍ଣ ସତ୍ୟ ।" (ସେ କହିବେ) "ତୁମେମାନେ ଏହାକୁ ମାନୁ ନଥିଲ, ତେଣୁ ଏବେ ଶାସ୍ତିର ମଜା ଚାଖ ।"

୩୫. ସୁତରାଂ, (ହେ ରସୁଲ!) ଯେପରି ତୁମ ପୂର୍ବରୁ ଦୃଢ଼ନିଷ୍ଠ ରସୁଲମାନେ ଧୈର୍ଯ୍ୟ ଅବଲମ୍ବନ କରିଥିଲେ, ତୁମେ ମଧ୍ୟ ସେହିପରି ଧୈର୍ଯ୍ୟ ଅବଲମ୍ବନ କର ଏବଂ ସେମାନଙ୍କ (ଦଣ୍ଡବିଧାନ) ବିଷୟରେ ଅଧୀର ହୁଅନାହିଁ । ଯେଉଁଦିନ ସେମାନେ ସେହି ବିପଦ ଦେଖିବେ ଯାହା ବିଷୟରେ ସେମାନଙ୍କୁ ସାବଧାନ କରାଯାଇଛି, ସେମାନଙ୍କୁ ଜଣାପଡ଼ିବ ସତେଯେପରି ସେମାନେ ସଂସାରରେ ଗୋଟିଏ ଦିନ ମଧ୍ୟରୁ ଘଡ଼ିଏ ମାତ୍ର ରହିଥିଲେ । ବାର୍ତ୍ତା ଦିଆଯାଇ ସାରିଛି । ଏବେ ସେମାନଙ୍କର ସର୍ବନାଶ ହେବ ଯେଉଁମାନେ ଅମାନ୍ୟ କଲେ ।

## ଅଧ୍ୟାୟ ୪୭, ମୁହମ୍ମଦ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଯେଉଁମାନେ (ସତ୍ୟକୁ) ପ୍ରତ୍ୟାଖ୍ୟାନ କଲେ ଏବଂ ଲୋକମାନଙ୍କୁ ଅଲ୍ଲାହଙ୍କ ମାର୍ଗରୁ ରୋକିଲେ, ଅଲ୍ଲାହ୍ ସେମାନଙ୍କର କର୍ମଗୁଡ଼ିକୁ ନିଷ୍ଫଳ କରିଦେଲେ, ୨. ଏବଂ ଯେଉଁମାନେ (ଅଲ୍ଲାହ୍‌ଙ୍କୁ) ବିଶ୍ୱାସ କଲେ, ଭଲ କର୍ମ କଲେ ଏବଂ ମୁହମ୍ମଦଙ୍କ ପ୍ରତି ଯେଉଁ ଆଦିଷ୍ଟବାଣୀ ହେଲା ତାହାକୁ ଈଶ୍ୱରଙ୍କଠାରୁ ଆସିଥିବା ସତ୍ୟ ବୋଲି ମାନିନେଲେ, ଅଲ୍ଲାହ୍ ସେମାନଙ୍କର ପାପ କ୍ଷମା କରିଦେଲେ ଏବଂ ସେମାନଙ୍କ ଅବସ୍ଥା ସୁଧାରି ଦେଲେ । ୩. କାରଣ ଯେଉଁମାନେ ପ୍ରତ୍ୟାଖ୍ୟାନ କଲେ, ସେମାନେ ଏକ ମିଥ୍ୟାକୁ ମାନି ଚଳିଲେ ଅଥଚ ଯେଉଁମାନେ ବିଶ୍ୱାସ କଲେ, ସେମାନେ ନିଜ ଈଶ୍ୱରଙ୍କଠାରୁ ଆସିଥିବା ସତ୍ୟକୁ ମାନି ଚଳିଲେ । ଏହିପରି ଅଲ୍ଲାହ୍ ଲୋକମାନଙ୍କୁ ସେମାନଙ୍କର ଅବସ୍ଥା ସଂପର୍କରେ ଅବଗତ କରନ୍ତି ।

୪. ଯଦି ତୁମେମାନେ (ରଣକ୍ଷେତ୍ରରେ) ନାସ୍ତିକମାନଙ୍କର ସମ୍ମୁଖୀନ ହୁଅ ତେବେ ସେମାନଙ୍କର ଶିରଚ୍ଛେଦ କର । ସେମାନଙ୍କୁ ଦୃଢ଼ ଭାବରେ ଦମନ କରି ସାରିବା ପରେ ଯୁଦ୍ଧର ଅନ୍ତ ହେବା ପର୍ଯ୍ୟନ୍ତ ଭଲ ଭାବରେ ବନ୍ଦୀ କରି ରଖ ଏବଂ ପରେ ଯଦି ଚାହଁ, ସେମାନଙ୍କ ପ୍ରତି ଉପକାର କରି ବା ମୁକ୍ତି ବିନିମୟରେ କିଛି

ମୂଲ୍ୟ ନେଇ ସେମାନଙ୍କୁ ଛାଡ଼ିଦିଅ । ତୁମମାନଙ୍କୁ ଏହି ଆଦେଶ ଦିଆଯାଉଛି । ଅଲ୍ଲାହ୍ ଚାହିଁଲେ ସେମାନଙ୍କଠାରୁ (ଅନ୍ୟ ଉପାୟରେ) ପ୍ରତିଶୋଧ ନେଇ ପାରନ୍ତେ କିନ୍ତୁ ସେ ତୁମମାନଙ୍କୁ ପରସ୍ପର ଦ୍ୱାରା ପରୀକ୍ଷା କରିବା ଉଦ୍ଦେଶ୍ୟରେ ଏହା କଲେ । ଯେଉଁମାନେ ଅଲ୍ଲାହଙ୍କ ମାର୍ଗରେ ଶହୀଦ ହୁଅନ୍ତି, ସେ ସେମାନଙ୍କର କର୍ମ କଦାପି ବୃଥା କରିଦେବେ ନାହିଁ । ୫. ସେ ସେମାନଙ୍କୁ ଠିକ୍ ବାଟରେ ନେବେ ଏବଂ ସେମାନଙ୍କର ଅବସ୍ଥା ସୁଧାରି ଦେବେ, ୬. ଏବଂ ସେମାନଙ୍କୁ ସେହି ବୈକୁଣ୍ଠରେ ରଖିବେ ଯାହା ବିଷୟରେ ସେ ସେମାନଙ୍କୁ ପରିଚିତ କରାଇ ସାରିଛନ୍ତି ।

୭. ହେ ସଦ୍‌ବିଶ୍ୱାସୀମାନେ ! ଯଦି ତୁମେମାନେ ଅଲ୍ଲାହଙ୍କୁ ସାହାଯ୍ୟ କରିବ, ସେ ମଧ୍ୟ ତୁମମାନଙ୍କୁ ସାହାଯ୍ୟ କରିବେ ଏବଂ ତୁମମାନଙ୍କର ପାଦ ସୁଦୃଢ଼ କରିଦେବେ । ୮. ଯେଉଁମାନେ (ସତ୍ୟକୁ) ଅସ୍ୱୀକାର କଲେ, ସେମାନଙ୍କର ସର୍ବନାଶ ହେଲା ଏବଂ ଅଲ୍ଲାହ୍ ସେମାନଙ୍କର କର୍ମଗୁଡ଼ିକୁ ନିଷ୍ଫଳ କରିଦେଲେ, ୯. କାରଣ ସେମାନେ ଅଲ୍ଲାହ୍ ପଠାଇଥିବା ଦୈବବାଣୀକୁ ଘୃଣା କଲେ । ତେଣୁ, ଅଲ୍ଲାହ୍ ସେମାନଙ୍କର କର୍ମଗୁଡ଼ିକୁ ବ୍ୟର୍ଥ କରିଦେଲେ । ୧୦. କ'ଣ ଏମାନେ ଧରାପୃଷ୍ଠରେ ବୁଲାବୁଲି କରି ଦେଖୁନାହାନ୍ତି ଯେ ଏମାନଙ୍କ ପୂର୍ବ ଲୋକମାନଙ୍କର କିଭଳି ପରିଣାମ ହେଲା ? ଅଲ୍ଲାହ୍ ସେମାନଙ୍କୁ ସମ୍ପୂର୍ଣ୍ଣ ରୂପେ ନିପାତ କରିଦେଲେ । ଏହି ନାସ୍ତିକମାନଙ୍କର ଏହିପରି ଅବସ୍ଥା ହେବ । ୧୧. କାରଣ ଅଲ୍ଲାହ୍ ସଦ୍‌ବିଶ୍ୱାସୀମାନକଙ୍କର ଆଶ୍ରୟଦାତା କିନ୍ତୁ ନାସ୍ତିକମାନଙ୍କର ଆଶ୍ରୟଦାତା କେହି ନାହାନ୍ତି ।

୧୨. ଯେଉଁମାନେ (ଅଲ୍ଲାହଙ୍କୁ) ବିଶ୍ୱାସ କରନ୍ତି ଏବଂ ଭଲ କର୍ମ କରନ୍ତି, ସେମାନଙ୍କୁ ଅଲ୍ଲାହ୍ ଏଭଳି ଉଦ୍ୟାନରେ ରଖିବେ ଯାହା ତଳେ ଝରଣା ପ୍ରବାହିତ ହୁଏ ଏବଂ ଯେଉଁମାନେ ଅବିଶ୍ୱାସ କରନ୍ତି, ସେମାନେ କେବଳ ଜୀବନକୁ ଉପଭୋଗ କରୁଛନ୍ତି ଏବଂ ପଶୁମାନଙ୍କ ପରି ଖାଇବା ପିଇବାରେ ଲାଗି ରହିଛନ୍ତି । ସେମାନଙ୍କର ନର୍କବାସ ହେବ ।

୧୩. (ହେ ବାର୍ତ୍ତାବହ !) ଯେଉଁ (ମକ୍କା) ସହରରୁ ତୁମକୁ ବାହାର କରି ଦିଆଗଲା, ତା'ଠାରୁ ଅଧିକ ଶକ୍ତିଶାଳୀ କେତେ ସହର ଆମ୍ଭେ ଧ୍ୱଂସ କରିଦେଇଛୁ । କେହି ସେମାନଙ୍କୁ ରକ୍ଷା କରି ପାରିଲେନାହିଁ । ୧୪. ଏବେ କୁହ, ଯାହା ପାଖରେ

ତା' ପ୍ରଭୁଙ୍କଠାରୁ ଆସିଥିବା ସ୍ପଷ୍ଟ ପ୍ରମାଣ ଅଛି, କ'ଣ ସେ ଏଭଳି ଲୋକଙ୍କ ସହିତ ସମାନ ହୋଇପାରେ ଯେଉଁମାନଙ୍କ ଦୃଷ୍ଟିରେ ସେମାନଙ୍କର କୁକର୍ମଗୁଡ଼ିକୁ ସୁନ୍ଦର କରି ଦିଆଯାଇଛି ଏବଂ ସେମାନେ ଇନ୍ଦ୍ରିୟ ବଶବର୍ତ୍ତୀ ହୋଇ ଯାଇଛନ୍ତି ?

୧୫. ସଦାଚାରୀ ଲୋକମାନଙ୍କୁ ଯେଉଁ ବୈକୁଣ୍ଠର ପ୍ରତିଶ୍ରୁତି ଦିଆଯାଇଛି ତାହାର ସ୍ୱଭାବ ଏମିତି ଯେ ସେଥିରେ ଏଭଳି ଶୁଦ୍ଧ ଜଳର ଝରଣା ରହିଛି ଯାହା ଦୂଷିତ ହୁଏନାହିଁ, ଏଭଳି କ୍ଷୀରର ଝରଣା ଅଛି ଯାହାର ସ୍ୱାଦ ବଦଳେନାହିଁ, ଏଭଳି ସୁରାର ଝରଣା ଅଛି ଯାହା ପିଇବା ପାଇଁ ଭାରି ସ୍ୱାଦିଷ୍ଟ ଏବଂ ଏଭଳି ମହୁର ଝରଣା ଅଛି ଯାହା ଅତି ସ୍ୱଚ୍ଛ। ସେଠାରେ ସେମାନଙ୍କୁ ସମସ୍ତ ପ୍ରକାରର ଫଳ ମିଳିବ ଏବଂ ସେମାନେ ପ୍ରଭୁଙ୍କର କ୍ଷମା ଲାଭ କରିବେ। କ'ଣ ଏଭଳି ଲୋକମାନେ ସେହି ଲୋକମାନଙ୍କ ସହିତ ସମାନ, ଯେଉଁମାନେ ସଦା ନର୍କରେ ରହିବେ ଏବଂ ଫୁଟନ୍ତା ପାଣି ପିଇବେ ଯାହା ସେମାନଙ୍କ ଅନ୍ତନାଳୀକୁ ଖଣ୍ଡଖଣ୍ଡ କରିଦେବ ?

୧୬. ଏହି ଲୋକମାନଙ୍କ ମଧ୍ୟରେ କେତେକ ଅଛନ୍ତି ଯେଉଁମାନେ ତୁମ କଥା କାନ ଦେଇ (ସବୁ ଶୁଣୁଥିବା ପରି) ଶୁଣନ୍ତି ମାତ୍ର ଯେତେବେଳେ ତୁମ ପାଖରୁ ଉଠି ଚାଲିଯାଆନ୍ତି, ସଦ୍‌ଜ୍ଞାନ ଲାଭ କରିଥିବା ଲୋକମାନଙ୍କୁ ପଚାରନ୍ତି, "ସେ ଏବେ କ'ଣ କହୁଥିଲେ ?" ଅଲ୍ଲାହ୍ ଏହି ଲୋକମାନଙ୍କର ହୃଦୟର ଦ୍ୱାର ବନ୍ଦ ଦେଇଛନ୍ତି ଏବଂ ଏମାନେ ଇନ୍ଦ୍ରିୟାଧୀନ ହୋଇ ଯାଇଛନ୍ତି। ୧୭. ଯେଉଁମାନେ ସତ୍‌ମାର୍ଗ ଅବଲମ୍ବନ କରନ୍ତି, ଅଲ୍ଲାହ୍ ସେମାନଙ୍କର ଭଲରୂପେ ମାର୍ଗଦର୍ଶନ କରନ୍ତି ଏବଂ ସେମାନଙ୍କୁ ଧର୍ମନିଷ୍ଠ କରନ୍ତି। ୧୮. କ'ଣ ଏମାନେ ପ୍ରଳୟର ଅପେକ୍ଷାରେ ଅଛନ୍ତି ଯେ ଏହା ଅତର୍କିତ ଭାବରେ ସେମାନଙ୍କ ସାମନାକୁ ଆସିଯାଉ ? ଏହାର କେତେକ ଲକ୍ଷଣ ତ ପ୍ରକାଶ ପାଇସାରିଛି। ଯେତେବେଳେ ପ୍ରଳୟ ଆସିଯିବ, ସେତେବେଳେ ଉପଦେଶ ଦ୍ୱାରା ସେମାନଙ୍କର କି ଲାଭ ହେବ ?

୧୯. ତେଣୁ (ହେ ବାର୍ତ୍ତାବହ !) ଜାଣିରଖ ଯେ ଅଲ୍ଲାହଙ୍କ ବ୍ୟତୀତ କେହି ସେବା-ଉପାସନାର ଅଧିକାରୀ ନୁହେଁ ଏବଂ ନିଜର ତଥା ମୁସଲିମ୍ ନରନାରୀମାନଙ୍କର ଦୋଷତ୍ରୁଟି ପାଇଁ କ୍ଷମାପ୍ରାର୍ଥନା କରୁଥାଅ। ତୁମେମାନେ ଯୁଆଡ଼େ ଯିବାଆସିବା କର ବା ଯେଉଁଠି ରୁହ, ଅଲ୍ଲାହ୍ ସବୁ ଜାଣନ୍ତି।

୨୦. ବିଶ୍ୱାସ ରଖିଥିବା ଲୋକମାନେ ପଚାରୁଛନ୍ତି ଯେ (ଯୁଦ୍ଧ ବିଷୟରେ) କାହିଁକି କୌଣସି ଅଧ୍ୟାୟ ଅବତୀର୍ଣ୍ଣ ହେଉନାହିଁ, କିନ୍ତୁ ଯେତେବେଳେ (ଏବିଷୟରେ କୁରଆନରେ) ଏକ ସ୍ପଷ୍ଟ ସ୍ୱଭାବର ଅଧ୍ୟାୟ ପ୍ରକଟ ହେଲା ଏବଂ ସେଥିରେ ଯୁଦ୍ଧ ବିଷୟରେ ବର୍ଣ୍ଣନା କରାଗଲା, ତୁମେ ଦେଖିଲ ଯେ ଯେଉଁମାନଙ୍କର ମନରେ (ଛଳକପଟ) ରୋଗ ଅଛି, ସେମାନେ ତୁମକୁ ଏମିତି (ବିକଳ ହୋଇ) ଦେଖୁଛନ୍ତି ଯେମିତି ମୃତ୍ୟୁଶଯ୍ୟାରେ ମୂର୍ଚ୍ଛା ହୋଇ ଯାଉଥିବା ବ୍ୟକ୍ତି ଦେଖେ। ସେମାନଙ୍କର ସର୍ବନାଶ ହେବ। ୨୧. ସେମାନେ ନିଜର ଆନୁଗତ୍ୟ ପ୍ରଦର୍ଶନ କରନ୍ତି ଏବଂ ଭଲଭଲ କଥା କହନ୍ତି କିନ୍ତୁ (ଯୁଦ୍ଧର) ନିଷ୍ପତ୍ତି ହେଲା ପରେ ଯଦି ସେମାନେ ଅଲ୍ଲାହଙ୍କର ବିଶ୍ୱସ୍ତ ହୋଇ ରହନ୍ତେ, ତେବେ ଭଲ ହୁଅନ୍ତା। ୨୨. (ହେ କପଟୀମାନେ!) ଯଦି ତୁମମାନଙ୍କୁ କ୍ଷମତା ମିଳିଯାଏ, ତେବେ ଏହା ବିଚିତ୍ର ନୁହେଁ ଯେ ତୁମେମାନେ ଦେଶରେ ଅଶାନ୍ତି ଓ ଅରାଜକତା ସୃଷ୍ଟି କରିବ କିମ୍ବା ଜ୍ଞାତିକୁଟୁମ୍ବମାନଙ୍କ ସହିତ ସଂପର୍କ ଛିନ୍ନ କରିବ। ୨୩. ଏହି ଲୋକମାନଙ୍କୁ ଅଲ୍ଲାହ୍ ଧିକ୍କାର କରିଛନ୍ତି ଏବଂ ସେମାନଙ୍କୁ ଅନ୍ଧ ଓ ମୁକ କରି ଦେଇଛନ୍ତି। ୨୪. କ'ଣ ଏମାନେ କୁରଆନ ପ୍ରତି ଧ୍ୟାନ ଦେଉନାହାନ୍ତି କିମ୍ବା ଏମାନଙ୍କର ହୃଦୟରେ ତାଲା ପଡ଼ିଯାଇଛି? ୨୫. ଯେଉଁମାନଙ୍କ ପାଖରେ ସତ୍‌ମାର୍ଗ ସ୍ପଷ୍ଟ ହୋଇଗଲା ପରେ ମଧ୍ୟ ସେମାନେ ପଛଘୁଂଚା ଦେଲେ, ଶଇତାନ ସେମାନଙ୍କୁ ପ୍ରଲୋଭିତ କରିଛି ଏବଂ (ଦୀର୍ଘାୟୁ ହେବାର) ମିଥ୍ୟା ଆଶ୍ୱାସନା ଦେଇଛି। ୨୬. ଏହାର କାରଣ, ସେମାନେ ଅଲ୍ଲାହଙ୍କର ଆଦିଷ୍ଟବାଣୀକୁ ଅପସନ୍ଦ କରୁଥିବା ଲୋକମାନଙ୍କୁ କହିଲେ ଯେ ଆମେ ତୁମମାନଙ୍କର କେତେକ କଥା ମାନିନେବୁ। ଅଲ୍ଲାହ୍ ସେମାନଙ୍କର ଗୁପ୍ତ ମନ୍ତ୍ରଣା ବିଷୟରେ ଭଲରୂପେ ଜାଣନ୍ତି। ୨୭. ସେତେବେଳେ ସେମାନଙ୍କର ଅବସ୍ଥା କଣ ହେବ ଯେତେବେଳେ ଦେବଦୂତମାନେ ସେମାନଙ୍କ ଆତ୍ମାକୁ ହରଣ କରିବେ ଏବଂ ସେମାନଙ୍କ ମୁହଁ ଓ ପିଠିରେ ପ୍ରହାର କରିବେ? ୨୮. ଏହା ଏହି କାରଣରୁ ହେବ ଯେ ସେମାନେ ଅଲ୍ଲାହଙ୍କୁ ଅସନ୍ତୁଷ୍ଟ କରିବାର ପନ୍ଥା ଧରିଲେ ଏବଂ ତାଙ୍କର ପ୍ରସନ୍ନତା ଲାଭ କରିବା ପସନ୍ଦ କଲେନାହିଁ। ତେଣୁ ଅଲ୍ଲାହ୍ ସେମାନଙ୍କର କର୍ମଗୁଡ଼ିକୁ ନିଷ୍ଫଳ କରିଦେଲେ।

୨୯. ଯେଉଁମାନଙ୍କ ମନରେ (ଛଳକପଟ) ରୋଗ ଅଛି, କ'ଣ ସେମାନେ ଭାବୁଛନ୍ତି ଯେ ଅଲ୍ଲାହ୍ ସେମାନଙ୍କ (ମନରେ ଥିବା) ବିଦ୍ୱେଷକୁ ପ୍ରକାଶ

କରିବେନାହିଁ? ୩୦. ଯଦି ଆମ୍ଭେ ଇଚ୍ଛା କରନ୍ତୁ, ତୁମକୁ ସେହି ଲୋକମାନଙ୍କୁ ଦେଖାଇ ଦିଅନ୍ତୁ ଏବଂ ତୁମେ ସେମାନଙ୍କୁ ସେମାନଙ୍କ ମୁହଁ ଦେଖି ଚିହ୍ନି ପାରନ୍ତ ମାତ୍ର ତୁମେ ସେମାନଙ୍କୁ ସେମାନଙ୍କର କଥାବାର୍ତ୍ତା ଶୈଳୀରୁ ନିଶ୍ଚୟ ଚିହ୍ନିପାରିବ। ଅଲ୍ଲାହ୍ ତୁମମାନଙ୍କର ପ୍ରତ୍ୟେକ କର୍ମ ବିଷୟରେ ଜାଣନ୍ତି। ୩୧. ଆମ୍ଭେ ଅବଶ୍ୟ ଏହା ପରୀକ୍ଷା କରି ଦେଖିବୁ ଯେ ତୁମମାନଙ୍କ ମଧ୍ୟରୁ କେଉଁମାନେ (ଆମ୍ଭ ମାର୍ଗରେ) ସଂଘର୍ଷ କରୁଛନ୍ତି ଏବଂ ଧୈର୍ଯ୍ୟ ଅବଲମ୍ବନ କରୁଛନ୍ତି ଏବଂ ଆମ୍ଭେ ତୁମମାନଙ୍କର ଅବସ୍ଥା ନିଶ୍ଚୟ ପରୀକ୍ଷା କରିବୁ।

୩୨. ଯେଉଁମାନଙ୍କ ନିକଟରେ ସତ୍‌ମାର୍ଗ ପରିଷ୍କାର ହୋଇଯିବା ସତ୍ତ୍ୱେ ସେମାନେ ମାନିଲେନାହିଁ ଏବଂ (ଲୋକମାନଙ୍କୁ) ଅଲ୍ଲାହଙ୍କ ମାର୍ଗରୁ ରୋକିଲେ ଏବଂ ତାଙ୍କ ରସୁଲଙ୍କର ବିରୋଧ କଲେ, ସେମାନେ ଅଲ୍ଲାହଙ୍କର କିଛି କ୍ଷତି କରି ପାରିବେନାହିଁ। ସେ ସେମାନଙ୍କର କର୍ମଗୁଡ଼ିକୁ ନଷ୍ଟ କରିଦେବେ।

୩୩. ହେ ସଦ୍‌ବିଶ୍ୱାସୀମାନେ! ଅଲ୍ଲାହଙ୍କ କଥା ମାନି ଚଳ ଏବଂ ରସୁଲଙ୍କ କଥା ମାନି ଚଳ ଏବଂ ନିଜ କର୍ମଗୁଡ଼ିକୁ ନଷ୍ଟ କରିଦିଅ ନାହିଁ। ୩୪. ଯେଉଁମାନେ (ସତ୍ୟକୁ) ଅସ୍ୱୀକାର କଲେ, ଲୋକମାନଙ୍କୁ ଅଲ୍ଲାହଙ୍କ ମାର୍ଗରୁ ରୋକିଲେ ଏବଂ ନାସ୍ତିକ ଥିବା ଅବସ୍ଥାରେ ମରିଗଲେ, ଅଲ୍ଲାହ୍ ସେମାନଙ୍କୁ ଆଦୌ କ୍ଷମା କରିବେନାହିଁ। ୩୫. ତେଣୁ, ତୁମେମାନେ ଦୁର୍ବଳତା ପ୍ରକାଶ କରି ସନ୍ଧି ପ୍ରସ୍ତାବ ଦିଅନାହିଁ କାରଣ ତୁମେମାନେ ହିଁ ବିଜୟୀ ହେବ। ଅଲ୍ଲାହ୍ ତୁମମାନଙ୍କ ସହିତ ଅଛନ୍ତି ଏବଂ ସେ ତୁମମାନଙ୍କ କର୍ମଗୁଡ଼ିକୁ କଦାପି ବୃଥା କରିଦେବେ ନାହିଁ।

୩୬. ପାର୍ଥିବ ଜୀବନ କେବଳ ଏକ ଖେଳତାମସା। ଯଦି ତୁମେମାନେ ବିଶ୍ୱାସ ରଖିବ ଏବଂ ସଦାଚାରୀ ହେବ ତେବେ ସେ ତୁମମାନଙ୍କୁ ଏହାର ପୁରସ୍କାର ଦେବେ ଏବଂ ସେ ତୁମମାନଙ୍କଠାରୁ ତୁମର ଧନ ମାଗିବେନାହିଁ। ୩୭. ଯଦି ସେ ତୁମମାନଙ୍କଠାରୁ ଧନ ମାଗିବେ ଏବଂ ଏଥିପାଇଁ ବାଧ୍ୟ କରିବେ, ତା'ହେଲେ ତୁମେମାନେ କୃପଣତା ପ୍ରକାଶ କରିବ ଏବଂ ସେ ତୁମମାନଙ୍କର ଅନିଚ୍ଛୁକତା (ସର୍ବସମ୍ମୁଖରେ) ପ୍ରକାଶ କରିଦେବେ।

୩୮. ଦେଖ, ତୁମ୍ଭମାନଙ୍କୁ ଅଲ୍ଲାହଙ୍କ ମାର୍ଗରେ ଧନ ଖର୍ଚ୍ଚ କରିବା ପାଇଁ କୁହାଯାଉଛି ମାତ୍ର ତୁମ୍ଭମାନଙ୍କ ମଧ୍ୟରୁ କିଛି ଲୋକ କୃପଣତା କରୁଛନ୍ତି । ଯିଏ କୃପଣତା କରେ, ସେ ନିଜ ପାଇଁ କରେ । ଅଲ୍ଲାହ୍ ଆବଶ୍ୟକତା-ରହିତ, କିନ୍ତୁ ତୁମ୍ଭମାନଙ୍କର ଅବଶ୍ୟକତା ଅଛି । ଯଦି ତୁମ୍ଭେମାନେ ପଛଘୁଂଚା ଦିଅ, ତେବେ ଅଲ୍ଲାହ୍ ତୁମ୍ଭମାନକଙ୍କ ସ୍ଥାନରେ ଅନ୍ୟ ଲୋକମାନଙ୍କୁ ଠିଆ କରିଦେବେ ଯେଉଁମାନେ ତୁମ୍ଭମାନଙ୍କ ପରି ହେବେନାହିଁ ।

## ଅଧ୍ୟାୟ ୪୮, ଅଲ୍ ଫତ୍ହ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଆମ୍ଭେ ତୁମ୍ଭକୁ ଏକ ସ୍ପଷ୍ଟ ବିଜୟ ପ୍ରଦାନ କଲୁ, ୨. ଯାହାଫଳରେ ଅଲ୍ଲାହ୍ ତୁମ୍ଭର ପୂର୍ବାପର ଦୋଷତ୍ରୁଟି କ୍ଷମା କରିବେ, ତୁମ୍ଭ ପ୍ରତି ତାଙ୍କର ଅନୁଗ୍ରହ ସଂପୂର୍ଣ୍ଣ କରିବେ ଏବଂ ତୁମ୍ଭକୁ ସତ୍‌ପଥରେ ପରିଚାଳିତ କରିବେ, ୩. ଏବଂ ଅଲ୍ଲାହ୍ ତୁମ୍ଭର ବିପୁଳ ସହାୟତା ମଧ୍ୟ କରିବେ । ୪. ସେ ହିଁ ମୁସଲମାନମାନଙ୍କ ହୃଦୟକୁ ଶାନ୍ତି ପ୍ରଦାନ କଲେ ଯେପରିକି ସେମାନଙ୍କର ଆସ୍ଥା ଅଧିକ ଦୃଢ଼ ହେଉ । ପୃଥିବୀ ଓ ଆକାଶର ସମସ୍ତ ସେନା ଅଲ୍ଲାହଙ୍କ ଅଧୀନରେ ରହିଛନ୍ତି ଏବଂ ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ । ୫. ଏହାଦ୍ୱାରା ସେ ସଦ୍‌ବିଶ୍ୱାସୀ ନରନାରୀମାନଙ୍କୁ ବୈକୁଣ୍ଠରେ ସ୍ଥାନ ଦେବେ ଯାହା ତଳେ ଝରଣା ପ୍ରବାହିତ ହୁଏ ଏବଂ ସେମାନେ ସେଠାରେ ସର୍ବଦା ରହିବେ । ସେ ସେମାନଙ୍କୁ ପାପମୁକ୍ତ କରିଦେବେ । ଅଲ୍ଲାହଙ୍କ ଦୃଷ୍ଟିରେ ଏହା ଏକ ବଡ଼ ସଫଳତା । ୬. ଯେଉଁ କପଟୀ ଓ ବହୁଈଶ୍ୱରବାଦୀ ନରନାରୀ ଅଲ୍ଲାହଙ୍କ ବିଷୟରେ କୁତ୍ସିତ ଧାରଣା ରଖିଛନ୍ତି, ସେମାନଙ୍କୁ ସେ ଦଣ୍ଡ ଦେବେ । ବିପତ୍ତି ସେମାନଙ୍କୁ ଚାରିଆଡ଼ୁ ଘେରି ରହିଛି । ଅଲ୍ଲାହ୍ ସେମାନଙ୍କ ଉପରେ କ୍ଷୁବ୍ଧ ହେଲେ ଏବଂ ସେମାନଙ୍କୁ ଧିକ୍କାର କଲେ । ସେ ସେମାନଙ୍କ ପାଇଁ ନର୍କ ପ୍ରସ୍ତୁତ କରି ରଖିଛନ୍ତି ଯାହା ଅତି କଦର୍ଯ୍ୟ ସ୍ଥାନ । ୭. ପୃଥିବୀ ଓ ଆକାଶର ସମସ୍ତ ସେନା ଅଲ୍ଲାହଙ୍କର ଏବଂ ଅଲ୍ଲାହ୍ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ ।

୮. (ହେ ବାର୍ତ୍ତାବହ!) ଆମ୍ଭେ ତୁମ୍ଭକୁ ସାକ୍ଷ୍ୟ ଦେବାପାଇଁ, ସୁସମାଚାର ଦେବାପାଇଁ ଏବଂ ସାବଧାନ କରିବା ପାଇଁ ପଠାଇଛୁ, ୯. ଯେପରିକି (ହେ ଭକ୍ତଗଣ!) ତୁମ୍ଭେମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ ପ୍ରତି ସଂପୂର୍ଣ୍ଣ ବିଶ୍ୱାସ ରଖିବ, ତାଙ୍କୁ ସହଯୋଗ କରିବ, ତାଙ୍କର ସମ୍ମାନ କରିବ ଏବଂ ସକାଳେ ଓ ସନ୍ଧ୍ୟାରେ ଅଲ୍ଲାହଙ୍କର ଗୁଣଗାନ କରିବ ।

୧୦. (ହେ ବାର୍ତ୍ତାବହ!) ଯେଉଁମାନେ ତୁମକୁ ଆନୁଗତ୍ୟର ବଚନ ଦେଉଛନ୍ତି, ସେମାନେ (ପ୍ରକୃତରେ) ଅଲ୍ଲାହଙ୍କୁ ବଚନ ଦେଉଛନ୍ତି। ସେମାନଙ୍କ ହାତ ଉପରେ ଅଲ୍ଲାହଙ୍କ ହାତ ରହିଛି। ଏହାପରେ ଯିଏ ବଚନଭଂଗ କରିବ, ସେ ଏହାର ଦୁଷ୍ପରିଣାମ ଭୋଗିବ ଏବଂ ଯିଏ ଅଲ୍ଲାହଙ୍କୁ ଦେଇଥିବା ବଚନ ରକ୍ଷା କରିବ, ସେ ତାକୁ ଖୁବ୍ ଭଲ ପୁରସ୍କାର ଦେବେ।

୧୧. ଯେଉଁ ବେଦୁଇନ୍‌ମାନେ (ଯୁଦ୍ଧଯାତ୍ରାରେ) ପଛରେ ରହି ଯାଇଥିଲେ, ସେମାନେ ଏବେ ତୁମକୁ କହିବେ ଯେ ଆମେ ଆମ ଧନସଂପତ୍ତି ଓ ପରିବାର ଯୋଗୁଁ ବ୍ୟସ୍ତ ରହିଗଲୁ। ତେଣୁ ଆପଣ ଆମ ପାଇଁ କ୍ଷମା ପ୍ରାର୍ଥନା କରନ୍ତୁ। ସେମାନେ ଯାହା ମୁହଁରେ କହୁଛନ୍ତି, ତାହା ସେମାନଙ୍କ ମନରେ ନାହିଁ। ସେମାନଙ୍କୁ କହିଦିଅ, "ଯଦି ଅଲ୍ଲାହ୍ ତୁମମାନଙ୍କର କିଛି ଭଲ ବା ମନ୍ଦ କରିବାକୁ ଚାହିଁବେ, ତେବେ କାହାର କ୍ଷମତା ଅଛି ଯେ ସେ ତାଙ୍କ ସାମନାରେ ତୁମମାନଙ୍କ ପକ୍ଷରୁ ହସ୍ତକ୍ଷେପ କରିବ? ବରଂ ତୁମେମାନେ ଯାହା କରୁଛ, ତାହା ଅଲ୍ଲାହ୍‌ଙ୍କୁ ଭଲରୂପେ ଜଣା ଅଛି। ୧୨. ବରଂ ତୁମେମାନେ ଏହା ଭାବିଥିଲ ଯେ ରସୁଲ ଓ ଅନ୍ୟ ମୁସଲିମ୍‌ମାନେ ଆଉ ସେମାନଙ୍କ ପରିବାରକୁ ଫେରିବେନାହିଁ ଏବଂ ଏକଥା ତୁମମାନଙ୍କ ମନକୁ ଭଲ ଲାଗିଲା। ତୁମେମାନେ ଅତି କୁତ୍ସିତ ଧାରଣା ପୋଷଣ କଲ ଏବଂ ନିଜର ସର୍ବନାଶ କଲ।"

୧୩. ଯେଉଁମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ ନମାନିବେ, ଆମ୍ଭେ ସେହି ନାସ୍ତିକମାନଙ୍କ ପାଇଁ ନର୍କର ଅଗ୍ନି ପ୍ରସ୍ତୁତ କରିରଖିଛୁ। ୧୪. ପୃଥିବୀ ଓ ଆକାଶମଣ୍ଡଳରେ କେବଳ ଅଲ୍ଲାହଙ୍କର ଶାସନ ଚଳେ। ସେ ଯାହାକୁ ଇଚ୍ଛା କ୍ଷମା କରିଦିଅନ୍ତି ଏବଂ ଯାହାକୁ ଇଚ୍ଛା ଦଣ୍ଡ ଦିଅନ୍ତି। ସେ ଅତ୍ୟନ୍ତ କ୍ଷମାଶୀଳ ଏବଂ ପରମ ଦୟାଳୁ।

୧୫. ଯେତେବେଳେ ତୁମେମାନେ ବିଜୟଲବ୍ଧ ଧନ ହାସଲ କରିବାପାଇଁ ଯିବ, ଯେଉଁମାନଙ୍କୁ (ଯୁଦ୍ଧରେ ଭାଗ ନେବାପାଇଁ) ମନା କରାଗଲା ସେମାନେ କହିବେ ଯେ ଆମମାନଙ୍କୁ ମଧ୍ୟ ସଙ୍ଗରେ ନିଅ। ସେମାନେ ଅଲ୍ଲାହଙ୍କ କଥାକୁ ବଦଳି ଦେବାକୁ ଚାହାନ୍ତି। ସେମାନଙ୍କୁ କହିଦିଅ, "ଅଲ୍ଲାହ୍ ପୂର୍ବରୁ ଏହା କହି ସାରିଛନ୍ତି ଯେ ତୁମେମାନେ ଆମ ସହିତ ଯିବନାହିଁ।" ସେମାନେ ପୁଣି କହିବେ, "ଏକଥା ନୁହେଁ ବରଂ ତୁମେମାନେ ଆମ ପ୍ରତି ଈର୍ଷା କରୁଛ।" ପ୍ରକୃତରେ ସେମାନେ ଅଳ୍ପ ବୁଝନ୍ତି। ୧୬. ଯେଉଁ ବେଦୁଇନମାନଙ୍କୁ ଅନୁମତି ଦିଆଗଲା ନାହିଁ, ସେମାନଙ୍କୁ କୁହ, "ନିକଟରେ ତୁମମାନଙ୍କୁ ଏଭଳି ଲୋକମାନଙ୍କ ସହ ଯୁଦ୍ଧ କରିବାକୁ ଡକାଯିବ ଯେଉଁମାନେ ନିପୁଣ

ଯୋଦ୍ଧା । ସେମାନେ ଆତ୍ମସମର୍ପଣ କରିବା ପର୍ଯ୍ୟନ୍ତ ତୁମମାନଙ୍କୁ ସେମାନଙ୍କ ସହିତ ଯୁଦ୍ଧ କରିବାକୁ ହେବ । ଯଦି ତୁମେମାନେ ଆଜ୍ଞା ପାଳନ କରିବ ତେବେ ଅଲ୍ଲାହ୍ ତୁମମାନଙ୍କୁ ଭଲ ପୁରସ୍କାର ଦେବେ ଏବଂ ଯଦି ପୂର୍ବ ପରି ପଛଘୁଂଚା ଦେବ, ତେବେ ଅଲ୍ଲାହ୍ ତୁମମାନଙ୍କୁ କଠୋର ଦଣ୍ଡରେ ଦଣ୍ଡିତ କରିବେ ।” ୧୭. ଅନ୍ଧ, ଛୋଟା ବା ଅସୁସ୍ଥ ବ୍ୟକ୍ତି ଯୁଦ୍ଧରେ ଭାଗ ନନେଲେ ଦୋଷ ନାହିଁ । ଯିଏ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ କଥା ମାନି ଚଳିବ, ଅଲ୍ଲାହ୍ ତାକୁ ବୈକୁଣ୍ଠ ଉଦ୍ୟାନରେ ରଖିବେ ଯାହା ତଳେ ଝରଣା ପ୍ରବାହିତ ହୁଏ ଏବଂ ଯିଏ ପଛଘୁଂଚା ଦେବ, ସେ ତାକୁ କଠୋର ଦଣ୍ଡ ଦେବେ ।

୧୮. ଯେତେବେଳେ ସଦ୍‌ବିଶ୍ୱାସୀମାନେ ଗଛ ତଳେ ଛିଡ଼ା ହୋଇ ତୁମ ଆନୁଗତ୍ୟର ଶପଥ ନେଉଥିଲେ, ଅଲ୍ଲାହ୍ ସେମାନଙ୍କ ପ୍ରତି ପ୍ରସନ୍ନ ହେଲେ । ସେମାନଙ୍କ ମନରେ ଯାହା ଥିଲା, ଅଲ୍ଲାହ୍ ଜାଣିଲେ । ତେଣୁ ସେ ସେମାନଙ୍କ ମନକୁ ଶାନ୍ତି ପ୍ରଦାନ କଲେ ଏବଂ ପୁରସ୍କାର ରୂପେ ସେମାନଙ୍କ ପାଇଁ ଏକ ତୁରନ୍ତ ବିଜୟ (ଅର୍ଥାତ୍ ଖୈବର ବିଜୟ) ସୁନିଶ୍ଚିତ କରିଦେଲେ, ୧୯. ଏବଂ ବିପୁଳ ବିଜୟଲବ୍ଧ ଧନ ମଧ୍ୟ, ଯାହା ସେମାନେ ଲାଭ କରିବେ । ଅଲ୍ଲାହ୍ ମହାଶକ୍ତିମାନ ଏବଂ ତତ୍ତ୍ୱଜ୍ଞ । ୨୦. ଅଲ୍ଲାହ୍ ତୁମମାନଙ୍କୁ ପ୍ରଚୁର ବିଜୟଲବ୍ଧ ଧନ ଦେବାର ପ୍ରତିଶ୍ରୁତି ଦେଇଛନ୍ତି ଯାହା ତୁମମାନଙ୍କୁ ମିଳିବ । ବର୍ତ୍ତମାନ ପାଇଁ ସେ ତୁମମାନଙ୍କୁ ଏହି ବିଜୟ ପ୍ରଦାନ କରିଛନ୍ତି ଏବଂ ତୁମମାନଙ୍କ ଉପରେ ଲୋକମାନଙ୍କର ଆକ୍ରମଣକୁ ରୋକି ଦେଇଛନ୍ତି ଯାହାଫଳରେ ଏହା ସଦ୍‌ବିଶ୍ୱାସୀମାନଙ୍କ ପାଇଁ ଏକ ନିଦର୍ଶନ ହେବ ଏବଂ ସେ ତୁମମାନଙ୍କୁ ଠିକ୍ ବାଟରେ ପରିଚାଳିତ କରିବେ । ୨୧. ଏହା ବ୍ୟତୀତ ଅନ୍ୟ ଏକ ବିଜୟ ମଧ୍ୟ, ଯାହା ବର୍ତ୍ତମାନ ତୁମମାନଙ୍କର ଆୟତ୍ତକୁ ଆସିନାହିଁ ମାତ୍ର ଅଲ୍ଲାହ୍ ଏହାକୁ ନିଜ ଆୟତ୍ତରେ ରଖିଛନ୍ତି । ଅଲ୍ଲାହ୍ ସବୁକିଛି କରିବାକୁ ସକ୍ଷମ ।

୨୨. ଯଦି ଏହି ନାସ୍ତିକମାନେ ତୁମମାନଙ୍କ ସହିତ ଯୁଦ୍ଧ କରନ୍ତେ ତେବେ ନିଶ୍ଚୟ ପୃଷ୍ଠଭଙ୍ଗ ଦେଇ ପଳାୟନ କରନ୍ତେ ଏବଂ କେହି ସେମାନଙ୍କୁ ରକ୍ଷା କରନ୍ତେନାହିଁ ବା ସାହାଯ୍ୟ କରନ୍ତେନାହିଁ । ୨୩. ଅଲ୍ଲାହ୍‌ଙ୍କର ଏହି ନୀତି ପୂର୍ବରୁ ମଧ୍ୟ ରହିଆସିଛି । ତୁମେ ଅଲ୍ଲାହଙ୍କ ନୀତିରେ ଆଦୌ ପରିବର୍ତ୍ତନ ହେବାର ଦେଖିବନାହିଁ । ୨୪. ସେ ହିଁ ମକ୍କାର ସୀମାନ୍ତରେ ତୁମମାନଙ୍କ ଉପରେ ସେମାନଙ୍କର ଆକ୍ରମଣକୁ ରୋକି ଦେଇଥିଲେ ଏବଂ ସେମାନଙ୍କ ଉପରେ ତୁମମାନଙ୍କର ଆକ୍ରମଣକୁ ମଧ୍ୟ ରୋକି ଦେଇଥିଲେ, ଅଥଚ

ସେ ତୁମମାନଙ୍କୁ ସେମାନଙ୍କ ଉପରେ ବିଜୟୀ କରି ସାରିଥିଲେ । ତୁମେମାନେ ଯାହା କର, ଅଲ୍ଲାହ୍ ସବୁ ଦେଖନ୍ତି । ୨୫. ଏମାନେ (ସତ୍ୟକୁ) ଅସ୍ୱୀକାର କଲେ, ତୁମମାନଙ୍କୁ ପବିତ୍ର (କାବା) ମସ୍‌ଜିଦରେ ପ୍ରବେଶ କରିବାରେ ବାଧା ଦେଲେ ଏବଂ ବଳି ପାଇଁ ଉଦ୍ଦିଷ୍ଟ ପଶୁଙ୍କୁ ମଧ୍ୟ ସେମାନଙ୍କ ଲକ୍ଷ୍ୟସ୍ଥଳରେ ପହଁଚିବାରେ ବାଧା ଦେଲେ । ଯଦି ଏହାର ସମ୍ଭାବନା ନଥାଆନ୍ତା ଯେ ମକ୍କାରେ ଏଭଳି କେତେକ ମୁସଲିମ୍ ନରନାରୀ ଅଛନ୍ତି ଯେଉଁମାନଙ୍କୁ ତୁମେମାନେ ଜାଣନାହିଁ ଏବଂ (ଆକ୍ରମଣ ହୋଇଥିଲେ) ସେମାନେ ମଧ୍ୟ ପେଷି ହୋଇଯାଆନ୍ତେ ଏବଂ ତୁମେମାନେ ଅଜାଣତରେ ସେମାନଙ୍କର କ୍ଷତି କରିଦିଅନ୍ତ, (ତେବେ ଅଲ୍ଲାହ୍ ଯୁଦ୍ଧର ଅନୁମତି ଦେଇଥାଆନ୍ତେ, ମାତ୍ର ସେ ଏହା କଲେନାହିଁ କାରଣ) ଅଲ୍ଲାହ୍ ଯାହାକୁ ଚାହିଁବେ ନିଜର କୃପାର ପାତ୍ର କରିବେ । ଯଦି ସେମାନେ (ଅର୍ଥାତ୍ ମୁସଲିମ ନରନାରୀ) ଏମାନଙ୍କଠାରୁ ଅଲଗା ଥାଆନ୍ତେ, ତା'ହେଲେ ଆମ୍ଭେ ମକ୍କାର ନାସ୍ତିକମାନଙ୍କୁ ନିଶ୍ଚୟ କଠୋର ଶାସ୍ତି ଦେଇ ଥାଆନ୍ତୁ । ୨୬. ଯେତେବେଳେ ସେହି ନାସ୍ତିକମାନେ ମିଥ୍ୟା ଅଭିମାନ ଯୋଗୁଁ ମୁର୍ଖତାପୂର୍ଣ୍ଣ ଜିଦ୍ କଲେ, ଅଲ୍ଲାହ୍ ତାଙ୍କ ରସୁଲ ଓ ସଦ୍‌ବିଶ୍ୱାସୀ ଭକ୍ତମାନଙ୍କୁ (ଧୀଶକ୍ତି ପ୍ରଦାନ କରି) ସେମାନଙ୍କ ମନକୁ ଶାନ୍ତ କଲେ ଏବଂ ସେମାନଙ୍କୁ ସଦାଚାରିତା ପଥରେ ଅଟଳ ରଖିଲେ । ସେମାନେ ଏଥିପାଇଁ ଉପଯୁକ୍ତ ଥିଲେ ଏବଂ ଯଥାର୍ଥରେ ଏହାର ଯୋଗ୍ୟ ଥିଲେ । ଅଲ୍ଲାହ୍ ସବୁକଥା ଜାଣନ୍ତି ।

୨୭. ଅଲ୍ଲାହ୍ ନିଜ ରସୁଲଙ୍କୁ ଯେଉଁ ସ୍ୱପ୍ନ କଲେ ତାହା ସଂପୂର୍ଣ୍ଣ ସତ୍ୟ ତଥା ଏକ ବାସ୍ତବତା ଥିଲା । ଅଲ୍ଲାହ୍ ଚାହିଁଲେ ତୁମେମାନେ ଅବଶ୍ୟ ନିର୍ଭୟରେ ପବିତ୍ର (ମକ୍କା) ମସଜିଦରେ ପ୍ରବେଶ କରିବ ଏବଂ ନିଜର ମସ୍ତକ ଲଣ୍ଡା କରିବ କିମ୍ବା କେଶ କାଟିବ । ତୁମମାନଙ୍କୁ କୌଣସି ପ୍ରକାରର ଭୟ ନଥିବ । ଯାହା ତୁମେମାନେ ଜାଣି ନଥିଲ, ତାହା ଅଲ୍ଲାହଙ୍କୁ ଜଣା ଥିଲା । ତେଣୁ, (ମକ୍କା ବିଜୟ) ପୂର୍ବରୁ ସେ ତୁମମାନଙ୍କ ପାଇଁ ଏକ ତୁରନ୍ତ ବିଜୟ ସୁନିଶ୍ଚିତ କରିଦେଲେ । ୨୮. ସେ ନିଜ ବାର୍ତ୍ତାବହଙ୍କୁ ସତ୍‌ପଥ ଓ ସତ୍‌ଧର୍ମର ବାର୍ତ୍ତା ଦେଇ ପଠାଇଛନ୍ତି ଯେପରିକି ଏହାକୁ ସକଳ ଧର୍ମ ଉପରେ ପ୍ରଭାବୀ କରିବେ । ଏହାର ସାକ୍ଷୀ ରୂପେ ସ୍ୱୟଂ ଅଲ୍ଲାହ୍ ଯଥେଷ୍ଟ ।

୨୯. ମୁହମ୍ମଦ୍ ହେଉଛନ୍ତି ଅଲ୍ଲାହଙ୍କର ବାର୍ତ୍ତାବହ । ଯେଉଁମାନେ ତାଙ୍କ ସହିତ ଅଛନ୍ତି, ସେମାନେ (ଶତ୍ରୁତା କରୁଥିବା) ନାସ୍ତିକମାନଙ୍କ ପ୍ରତି କଠୋର, କିନ୍ତୁ

ପରସ୍ପର ପ୍ରତି ଦୟାଳୁ । ତୁମେ ଦେଖିବ, ସେମାନେ (ନମାଜରେ) ମୁଣ୍ଡ ନୁଆଁଇ ଏବଂ ପ୍ରଣାମ କରି ଅଲ୍ଲାହଙ୍କର କରୁଣା ଓ ପ୍ରସନ୍ନତା ଭିକ୍ଷା କରିବାରେ ମଗ୍ନ ଥାଆନ୍ତି । ନିରନ୍ତର ପ୍ରଣାମ କରିବା ଦ୍ୱାରା ସେମାନଙ୍କ ମଥାରେ ଏହାର ଚିହ୍ନ ପଡ଼ିଯାଇଛି । ସେମାନଙ୍କର ଏହି ସ୍ୱଭାବ ବିଷୟରେ ତୌରାତ୍‌ରେ ବର୍ଣ୍ଣନା କରାଯାଇଛି ଏବଂ ଇଂଜିଲ୍‌ରେ ଉଦାହରଣ ଦିଆଯାଇଛି ଯେ ସେମାନେ ଏଭଳି ବୀଜ ପରି ଯାହା ପ୍ରଥମେ ଅଙ୍କୁର ଉତ୍ପନ୍ନ କରେ, ପୁଣି ଏହାକୁ ଶକ୍ତି ଦିଏ ଯାହାଫଳରେ ଏହା ଏକ କାଣ୍ଡ ହୋଇ ଦୃଢ଼ ଭାବରେ ଛିଡ଼ା ହୋଇଯାଏ । ଏହା ଚାଷୀମାନଙ୍କୁ ଆନନ୍ଦ ଦେଇଥାଏ । (ମୁସଲମାନମାନଙ୍କର ଏଭଳି ପ୍ରଗତି) ନାସ୍ତିକମାନଙ୍କୁ ଈର୍ଷାନ୍ୱିତ କରିଥାଏ । ଏମାନଙ୍କ ମଧ୍ୟରୁ ଯେଉଁମାନେ ବିଶ୍ୱାସ ରଖିଲେ ଏବଂ ଭଲକର୍ମ କଲେ, ଅଲ୍ଲାହ୍ ବଚନ ଦେଇଛନ୍ତି ଯେ ସେମାନଙ୍କର ଦୋଷ କ୍ଷମା କରିଦେବେ ଏବଂ ସେମାନଙ୍କୁ ଭଲ ପୁରସ୍କାର ଦେବେ ।

## ଅଧ୍ୟାୟ ୪୯, ଅଲ୍ ହୁଜୁରାତ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ହେ ସଦ୍‌ବିଶ୍ୱାସୀଗଣ! (କୌଣସି ବିଷୟରେ) ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କଠାରୁ ଆଗକୁ ବଢ଼ିଯାଅ ନାହିଁ ଏବଂ ଅଲ୍ଲାହଙ୍କୁ ଭୟ କର । ଅଲ୍ଲାହ୍ ସବୁ ଶୁଣନ୍ତି ଏବଂ ସବୁ ଜାଣନ୍ତି ।

୨. ହେ ସଦ୍‌ବିଶ୍ୱାସୀଗଣ! ନିଜ ସ୍ୱରକୁ ରସୁଲଙ୍କ ସ୍ୱରଠାରୁ ଉଚ୍ଚ କରନାହିଁ ଏବଂ ତାଙ୍କ ସହିତ ସେମିତି ଉଚ୍ଚ ସ୍ୱରରେ କଥାବାର୍ତ୍ତା କରନାହିଁ ଯେମିତି ତୁମେମାନେ ପରସ୍ପର ସହିତ କରିଥାଅ, ଅନ୍ୟଥା ତୁମମାନଙ୍କର କର୍ମଗୁଡ଼ିକ ନିଷ୍ଫଳ ହୋଇଯିବ ଏବଂ ତୁମମାନେ ଏହା ଜାଣି ପାରିବନାହିଁ । ୩. ଯେଉଁମାନେ ଅଲ୍ଲାହଙ୍କ ରସୁଲଙ୍କ ସମ୍ମୁଖରେ ଧୀର ସ୍ୱରରେ କଥା କହନ୍ତି, ସେମାନଙ୍କ ମନରେ ଥିବା ଧର୍ମପରାୟଣତାକୁ ଅଲ୍ଲାହ୍ ପରୀକ୍ଷା କରିସାରିଛନ୍ତି । ସେମାନଙ୍କ ଦୋଷ କ୍ଷମା କରି ଦିଆଯିବ ଏବଂ ସେମାନଙ୍କୁ ପ୍ରଚୁର ପୁରସ୍କାର ମିଳିବ । ୪. ଯେଉଁମାନେ ତୁମ ଘର ବାହାରେ ଥାଇ ତୁମକୁ ଡାକନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକଙ୍କର ବୁଦ୍ଧି ନାହିଁ । ୫. ଯଦି ତୁମେ ଘରୁ ବାହାରି ସେମାନଙ୍କ ପାଖକୁ ଆସିବା ପର୍ଯ୍ୟନ୍ତ

ସେମାନେ ଧୈର୍ଯ୍ୟ ଧରି ଅପେକ୍ଷା କରନ୍ତେ, ତେବେ ସେମାନଙ୍କ ପକ୍ଷରେ ଭଲ ହୋଇଥାଆନ୍ତା । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଏବଂ ପରମ ଦୟାଳୁ ।

୬. ହେ ସଦ୍‌ବିଶ୍ୱାସୀଗଣ ! ଯଦି କେହି ଭ୍ରଷ୍ଟାଚାରୀ ତୁମ ପାଖକୁ କୌଣସି ଖବର ଆଣେ, ତେବେ (ଏହାର ସତ୍ୟାସତ୍ୟ) ଭଲରୂପେ ଅନୁସନ୍ଧାନ କରିନିଅ, ଅନ୍ୟଥା ତୁମେମାନେ ନିଜ ଅଜାଣତରେ କୌଣସି ସଂପ୍ରଦାୟର ଅନିଷ୍ଟ କରିବସିବ ଏବଂ ପରେ ନିଜ କର୍ମ ପାଇଁ ଅନୁତାପ କରିବ । ୭. ଜାଣିଥାଅ ଯେ ତୁମମାନଙ୍କ ମଧ୍ୟରେ ଅଲ୍ଲାହଙ୍କ ରସୁଲ ଉପସ୍ଥିତ ଅଛନ୍ତି । ବହୁ କ୍ଷେତ୍ରରେ ଯଦି ସେ ତୁମମାନଙ୍କ କଥା ମାନିନିଅନ୍ତି, ତେବେ ତୁମେମାନେ ଅସୁବିଧାରେ ପଡ଼ିଯିବ ମାତ୍ର ଅଲ୍ଲାହ୍ ତୁମମାନଙ୍କ ମନରେ ଈଶ୍ୱରବିଶ୍ୱାସ ପ୍ରତି ଅନୁରାଗ ସୃଷ୍ଟି କଲେ । ସେ ଏହାଦ୍ୱାରା ତୁମମାନଙ୍କ ହୃଦୟକୁ ସୁଶୋଭିତ କଲେ ଏବଂ ତୁମମାନଙ୍କ ମନରେ ଅଧର୍ମ, ଅପକର୍ମ ଏବଂ ଅବଜ୍ଞା ପ୍ରତି ଘୃଣା ସୃଷ୍ଟି କରିଦେଲେ । ଏହି ଲୋକମାନେ ସତ୍‌ପଥରେ ଅଛନ୍ତି । ୮. ଏହା ଅଲ୍ଲାହଙ୍କର କୃପା ଏବଂ ତାଙ୍କର ଅନୁଗ୍ରହ । ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ ।

୯. ଯଦି ସଦ୍‌ବିଶ୍ୱାସୀମାନଙ୍କର ଦୁଇ ଗୋଷ୍ଠୀ ପରସ୍ପର ମଧ୍ୟରେ ଲଢ଼ନ୍ତି, ତେବେ ସେମାନଙ୍କ ମଧ୍ୟରେ ମିଳାମିଶା କରାଇଦିଅ । ପୁଣି ଯଦି କୌଣସି ଗୋଷ୍ଠୀ ଅନ୍ୟ ଗୋଷ୍ଠୀ ପ୍ରତି ଅତ୍ୟାଚାର କରେ, ତେବେ ଯେପର୍ଯ୍ୟନ୍ତ ଅତ୍ୟାଚାର କରୁଥିବା ଗୋଷ୍ଠୀ ଅଲ୍ଲାହଙ୍କର ଆଜ୍ଞା ନମାନିଛି ସେପର୍ଯ୍ୟନ୍ତ ତାହା ସହିତ ଯୁଦ୍ଧ କର । ଯଦି ସେମାନେ ମାନିଯାଆନ୍ତି, ତେବେ ଉଭୟ ଗୋଷ୍ଠୀ ମଧ୍ୟରେ ନ୍ୟାୟସଂଗତ ଭାବରେ ମିଳାମିଶା କରାଇଦିଅ ଏବଂ ଉଚିତ ନ୍ୟାୟ କର । ଅଲ୍ଲାହ୍ ନ୍ୟାୟ ବିଚାର କରୁଥିବା ଲୋକମାନଙ୍କୁ ଭଲ ପାଆନ୍ତି । ୧୦. ସଦ୍‌ବିଶ୍ୱାସୀମାନେ ପରସ୍ପର ଭାଇଭାଇ । ତେଣୁ ନିଜ ଭାଇମାନଙ୍କ ମଧ୍ୟରେ ମିଳାମିଶା କରାଇ ଦିଅ ଏବଂ ଅଲ୍ଲାହଙ୍କୁ ଭୟ କରୁଥାଅ ଯାହାଫଳରେ ତୁମମାନଙ୍କ ପ୍ରତି ତାଙ୍କର କରୁଣା ହେବ ।

୧୧. ହେ ସଦ୍‌ବିଶ୍ୱାସୀଗଣ ! ପୁରୁଷମାନେ ଅନ୍ୟ ପୁରୁଷମାନଙ୍କୁ (ହେୟ ମନେକରି) ବିଦ୍ରୂପ କରନ୍ତୁନାହିଁ, ହୁଏତ ସେମାନେ ଏମାନଙ୍କଠାରୁ ଅଧିକ ଭଲ ହୋଇଥିବେ । (ସେହିପରି) ନାରୀମାନେ ଅନ୍ୟ ନାରୀମାନଙ୍କୁ ବିଦ୍ରୂପ କରନ୍ତୁନାହିଁ,

ହୁଏତ ସେମାନେ ଏମାନଙ୍କ ଅପେକ୍ଷା ଅଧିକ ଭଲ ହୋଇଥିବେ । ପରସ୍ପରକୁ ତାଚ୍ଛିଲ୍ୟ କରନାହିଁ କିମ୍ବା ପରସ୍ପରକୁ ବ୍ୟଙ୍ଗାତ୍ମକ ନାମରେ ଡାକନାହିଁ । ଆସ୍ଥା ରଖିବା ପରେ ଏଭଳି ପାପାଚାର ଅତ୍ୟନ୍ତ ନିନ୍ଦନୀୟ । ଯେଉଁମାନେ ଅନୁତାପ କରୁନାହାନ୍ତି, ସେମାନେ ପ୍ରକୃତରେ ଦୁରାଚାରୀ । ୧୨. ହେ ସଦ୍‌ବିଶ୍ୱାସୀଗଣ ! ମାତ୍ରାଧିକ ସନ୍ଦେହ କରିବାରୁ ବିରତ ରୁହ କାରଣ ଅନେକ କ୍ଷେତ୍ରରେ ସନ୍ଦେହ ପାପ ହୋଇଥାଏ । ପରଛିଦ୍ର ଖୋଜନାହିଁ କିମ୍ବା ପରନିନ୍ଦା କରନାହିଁ । କ'ଣ ତୁମମାନଙ୍କ ମଧ୍ୟରୁ କେହି ତା' ମୃତ ଭାଇର ମାଂସ ଖାଇବା ପସନ୍ଦ କରିବ ? ତୁମେମାନେ ନିଶ୍ଚୟ ଏହାକୁ ଘୃଣା କରିବ । ଅଲ୍ଲାହଙ୍କୁ ଭୟ କରୁଥାଅ । ଅଲ୍ଲାହ୍ (ଭକ୍ତମାନଙ୍କର) ପଶ୍ଚାତାପ ଗ୍ରହଣ କରନ୍ତି ଏବଂ ସେ ପରମ ଦୟାଳୁ ।

୧୩. ହେ ମନୁଷ୍ୟଗଣ ! ଆମ୍ଭେ ତୁମମାନଙ୍କୁ ଜଣେ ପୁରୁଷ ଓ ଜଣେ ନାରୀରୁ ସୃଷ୍ଟି କରିଛୁ ଏବଂ ପରସ୍ପରକୁ ଚହ୍ନିବା ପାଇଁ ତୁମମାନଙ୍କୁ ବିଭିନ୍ନ ସଂପ୍ରଦାୟ ଓ ବିଭିନ୍ନ ବଂଶରେ ବିଭକ୍ତ କରିଛୁ । ବାସ୍ତବରେ ଅଲ୍ଲାହଙ୍କ ଦୃଷ୍ଟିରେ ତୁମମାନଙ୍କ ମଧ୍ୟରେ ସେ ହିଁ ସର୍ବାଧିକ ସମ୍ମାନିତ ବ୍ୟକ୍ତି, ଯିଏ ଅଧିକ ସଦାଚାରୀ । ଅଲ୍ଲାହ୍ ସବୁ ଜାଣନ୍ତି ଏବଂ ସବୁ ଖବର ରଖନ୍ତି ।

୧୪. ଗାଉଁଲି ଲୋକମାନେ କହୁଛନ୍ତି ଯେ ଆମେମାନେ (ଅଲ୍ଲାହ ଓ ତାଙ୍କ ରସୁଲଙ୍କୁ) ବିଶ୍ୱାସ କଲୁ । ସେମାନଙ୍କୁ କୁହ, "ପ୍ରକୃତରେ ତୁମେମାନେ ବିଶ୍ୱାସ କରିନାହଁ ବରଂ ଏହା କୁହ ଯେ ଆମେ ଆନୁଗତ୍ୟ ସ୍ୱୀକାର କଲୁ । ବର୍ତ୍ତମାନ ପର୍ଯ୍ୟନ୍ତ ଧର୍ମବିଶ୍ୱାସ ତୁମମାନଙ୍କ ଅନ୍ତର ମଧ୍ୟରେ ପ୍ରବେଶ କରିନାହିଁ । ଯଦି ତୁମେମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ କଥା ମାନି ଚଳିବ, ତେବେ ସେ ତୁମମାନଙ୍କ କର୍ମଫଳ ଆଦୌ ଊଣା କରିବେନାହିଁ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଏବଂ ପରମ ଦୟାଳୁ ।" ୧୫. ସେହି ଲୋକମାନେ ସଦ୍‌ବିଶ୍ୱାସୀ ଯେଉଁମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ ବିଶ୍ୱାସ କରନ୍ତି ଏବଂ କୌଣସି ପ୍ରକାର ସନ୍ଦେହ କରନ୍ତିନାହିଁ ଏବଂ ନିଜର ଧନ ଓ ଜୀବନ ଦେଇ ଅଲ୍ଲାହଙ୍କ ମାର୍ଗରେ ସଂଘର୍ଷ କରନ୍ତି । ଏହି ବ୍ୟକ୍ତିମାନେ ସତ୍ୟନିଷ୍ଠ ।

୧୬. ସେମାନଙ୍କୁ ପଚାର, "କ'ଣ ତୁମେମାନେ ଅଲ୍ଲାହଙ୍କୁ ନିଜର ଧାର୍ମିକତା ବିଷୟରେ ସୂଚନା ଦେଉଛ ? ପୃଥିବୀ ଓ ଆକାଶରେ ଯାହାସବୁ ଅଛି,

ଅଲ୍ଲାହ୍ ଜାଣନ୍ତି । ଅଲ୍ଲାହ୍ ପ୍ରତ୍ୟେକ କଥା ଜାଣନ୍ତି ।" ୧୭. ସେମାନେ ଭାବୁଛନ୍ତି ଯେ ଇସଲାମ ଗ୍ରହଣ କରି ତୁମ ପ୍ରତି ଉପକାର କରିଛନ୍ତି । ସେମାନଙ୍କୁ କୁହ, "ଇସଲାମ ଗ୍ରହଣ କରି ତୁମେମାନେ ମୋ'ର ଉପକାର କରିଛ ବୋଲି ମନେ କରନାହିଁ ବରଂ ଯଦି ତୁମେମାନେ ପ୍ରକୃତରେ ମୁସଲିମ୍ ହୋଇଥାଅ ତେବେ (ଜାଣିରଖ ଯେ) ଅଲ୍ଲାହ୍ ତୁମମାନଙ୍କୁ ସଦ୍‌ବିଶ୍ୱାସର ବାଟ ଦେଖାଇ ତୁମମାନଙ୍କର ଉପକାର କରିଛନ୍ତି ।" ୧୮. ପୃଥିବୀ ଓ ଆକାଶରେ ଥିବା ସମସ୍ତ ଗୋପନ କଥା ଅଲ୍ଲାହ୍ ଜାଣନ୍ତି ଏବଂ ତୁମେମାନେ ଯାହା କର, ସେ ସବୁ ଦେଖନ୍ତି ।

## ଅଧ୍ୟାୟ ୫୦, କାଫ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. କା'ଫ୍ । ଗୌରବମୟ କୁର୍‌ଆନ୍‌ର ରାଣ ! ୨. ସେମାନଙ୍କ ନିଜ ସଂପ୍ରଦାୟ ଭିତରେ ଜଣେ ସଚେତକଙ୍କର ଆବିର୍ଭାବ ସେମାନଙ୍କୁ ବିସ୍ମିତ କରିଛି । ତେଣୁ ମିଥ୍ୟାବିଶ୍ୱାସୀମାନେ କହିଲେ, "ଏହା ଏକ ଅଦ୍ଭୁତ କଥା ! ୩. କ'ଣ ଆମେ ମରିସାରି ମାଟି ହୋଇଗଲା ପରେ ମଧ୍ୟ ଆଉଥରେ ପୁନର୍ଜୀବନ ପାଇବୁ ? ଏଭଳି ପୁନର୍ଜୀବନ କଥା ଆମ ବୁଦ୍ଧି ବାହାରେ ।" ୪. ମାଟି ସେମାନଙ୍କ ମରଶରୀରକୁ କେତେ କ୍ଷୟ କରେ ତାହା ଆମ୍ଭଙ୍କୁ ଜଣା ଏବଂ ଆମ୍ଭ ପାଖରେ ଥିବା ଏକ ଗ୍ରନ୍ଥରେ ସବୁକିଛି (ଲିଖିତ ରୂପେ) ସୁରକ୍ଷିତ ହୋଇ ରହିଛି ।

୫. ପ୍ରକୃତରେ ସେମାନେ ସତ୍ୟକୁ ସେହି ସମୟରେ ପ୍ରତ୍ୟାଖ୍ୟାନ କରି ଦେଇଥିଲେ ଯେତେବେଳେ ଏହା ସେମାନଙ୍କ ପାଖରେ ପହଁଚିଥିଲା । ସେମାନେ ଦୋଦୁଲ୍ୟମାନ ଅବସ୍ଥାରେ ରହିଛନ୍ତି ।

୬. କ'ଣ ସେମାନଙ୍କ ଉପରେ ଥିବା ଆକାଶକୁ ସେମାନେ ଦେଖୁନାହାନ୍ତି ଯେ ଆମ୍ଭେ ତାକୁ କିପରି ଗଢ଼ିଛୁ ଏବଂ କି ସୁନ୍ଦର ଭାବରେ ସଜାଇଛୁ ? ସେଥିରେ ଟିକିଏ ହେଲେ ଫାଟ ନାହିଁ । ୭. ଆମ୍ଭେ ଧରିତ୍ରୀକୁ ବିସ୍ତାରିତ କଲୁ ଏବଂ ଏହା ଉପରେ ପାହାଡ଼ଗୁଡ଼ିକୁ ଦୃଢ଼ ଭାବରେ ପୋତିଦେଲୁ ଏବଂ ବିଭିନ୍ନ ପ୍ରକାରର ସୁନ୍ଦର ଉଦ୍ଭିଦମାନ ଉତ୍ପନ୍ନ କଲୁ, ୮. ଯେପରିକି ଶରଣ ନେଉଥିବା ଭକ୍ତମାନଙ୍କର ଆଖି ଖୋଲିବ ଏବଂ ସେମାନେ ଏଥିରୁ ଶିକ୍ଷାଲାଭ କରିବେ । ୯. ଆମ୍ଭେ ଆକାଶରୁ ଜଳ

ବୃଷ୍ଟି କରୁ ଯାହା ତୁମମାନଙ୍କ ପାଇଁ ମଙ୍ଗଳଦାୟକ ଏବଂ ଏହାଦ୍ୱାରା ବିଭିନ୍ନ ପ୍ରକାରର ବଗିଚା ସୃଷ୍ଟି କରୁ ଓ ଅମଳକ୍ଷମ ଫସଲ ଉତ୍ପନ୍ନ କରୁ, ୧୦. ଏବଂ ଉଚ୍ଚଉଚ୍ଚ ଖଜୁରୀଗଛ (ସୃଷ୍ଟି କରୁ) ଯାହାର ପେନ୍ଥାଗୁଡ଼ିକ ସ୍ତରସ୍ତର ହୋଇ (ପରସ୍ପର ଉପରେ) ରହିଥାଏ । ୧୧. ଏଗୁଡ଼ିକୁ ଆମ୍ଭେ ନିଜ ଦାସମାନଙ୍କ ଆହାର ପାଇଁ ସୃଷ୍ଟି କରିଛୁ । ଏହି ଜଳ ଦ୍ୱାରା ଆମ୍ଭେ ନିର୍ଜୀବ ଭୂମିରେ ପ୍ରାଣ ସଂଚାର କରିଦେଉ । ଏହିପରି (ମୃତମାନଙ୍କୁ ଧରିତ୍ରୀରୁ) ବାହାର କରାଯିବ ।

୧୨. ଏମାନଙ୍କ ପୂର୍ବରୁ ନୂହଙ୍କ ସଂପ୍ରଦାୟ, ରାସ୍ ଅଂଚଳର ବାସିନ୍ଦା ଏବଂ ସମୁଦ୍ ସଂପ୍ରଦାୟ ମଧ୍ୟ ପ୍ରତ୍ୟାଖ୍ୟାନ କରିଥିଲେ । ୧୩. ଆଦ୍, ଫିରଔନ୍ ଏବଂ ଲୁତଙ୍କ ଭାଇମାନେ ମଧ୍ୟ, ୧୪. ଏବଂ ଐକାବାସୀ ଓ ତୁବ୍ବା ସଂପ୍ରଦାୟ ମଧ୍ୟ । ଏମାନେ ସମସ୍ତେ ବାର୍ତ୍ତାବହମାନଙ୍କୁ ଅସ୍ୱୀକାର କଲେ । ସୁତରାଂ, ମୋ’ ଚେତାବନୀ ସତ୍ୟରେ ପରିଣତ ହେଲା ।

୧୫. କ’ଣ ଆମ୍ଭେ ପ୍ରଥମ ଥର ସୃଷ୍ଟି କରି ଥକିଯାଇଛୁ? ଆଦୌ ନୁହେଁ, ବରଂ ସେମାନେ ନୂତନ ସୃଷ୍ଟି (ଅର୍ଥାତ୍ ପୁନର୍ଜୀବନ) ବିଷୟରେ ସନ୍ଦେହରେ ପଡ଼ିଛନ୍ତି ।

୧୬. ଆମ୍ଭେ ମନୁଷ୍ୟକୁ ସୃଷ୍ଟି କରିଛୁ ଏବଂ ତା’ମନରେ ଯେଉଁ ଭାବନା ଜାତ ହୁଏ ତାହା ଆମ୍ଭେ ଭଲରୂପେ ଜାଣୁ । ଆମ୍ଭେ ତା’ କଣ୍ଠର ଶିରା ଠାରୁ ତା’ର ଅଧିକ ନିକଟରେ ଅଛୁ । ୧୭. ସେତେବେଳେ ମଧ୍ୟ ଥାଉ ଯେତେବେଳେ ଦୁଇଜଣ ଦେବଦୂତ ତା’ ଡାହାଣ ଓ ବାମ ପାର୍ଶ୍ୱରେ ବସି (ତା’ କର୍ମଗୁଡ଼ିକୁ) ଲେଖୁଥାଆନ୍ତି । ୧୮. ତା’ ପାଟିରୁ କଥାଟିଏ ବାହାରିବା ମାତ୍ରେ ତାହାକୁ ଲେଖିବା ପାଇଁ ଜଣେ ପର୍ଯ୍ୟବେକ୍ଷକ ପ୍ରସ୍ତୁତ ରହିଥାଏ । ୧୯. (ହେ ମନୁଷ୍ୟ!) ମୃତ୍ୟୁଯନ୍ତ୍ରଣା (ପରଲୋକର) ସତ୍ୟ ଉନ୍ମୋଚନ କରିଦେବ । ଏହି ସତ୍ୟରୁ ତୁ ଖସିଯିବାକୁ ଚାହୁଁଥିଲୁ ।

୨୦. ଏହାପରେ ତୂରୀନାଦ ହେବ । ଏହି ଦିନ ବିଷୟରେ ତୋତେ ସାବଧାନ କରା ଯାଉଥିଲା । ୨୧. ପ୍ରତ୍ୟେକ ବ୍ୟକ୍ତି (ଆମ୍ଭ ସମ୍ମୁଖରେ) ଏଭଳି ଅବସ୍ଥାରେ ଉପସ୍ଥିତ ହେବ ଯେ ଜଣେ (ଦେବଦୂତ) ତାକୁ ଧରି ଆଣିବ ଏବଂ ଆଉ ଜଣେ ଥିବ ଯିଏ ତା’ କର୍ମର ସାକ୍ଷୀ ଦେବ । ୨୨. “ତୁ ଏବିଷୟରେ ଘୋର

ଅବହେଳା କରୁଥିଲୁ । ବର୍ତ୍ତମାନ ଆମ୍ଭେ ତୋ' ସାମନାରୁ ପରଦା ଉଠାଇ ଦେଇଛୁ ଏବଂ ଆଜି ତୋ' ଦୃଷ୍ଟିଶକ୍ତି ଅତି ପ୍ରଖର ହୋଇଯାଇଛି ।" ୨୩. ତା' ସହିତ ଥିବା ଦେବଦୂତ କହିବ, "ମୋ' ପାଖରେ ତା' କର୍ମପଞ୍ଜିକା ପ୍ରସ୍ତୁତ ହୋଇ ରହିଛି ।" ୨୪. (ଆଜ୍ଞା ହେବ) "ପ୍ରତ୍ୟେକ ଈଶ୍ୱରଦ୍ରୋହୀ ଏବଂ କୃତଘ୍ନ ବ୍ୟକ୍ତିକୁ ନର୍କରେ ଫିଙ୍ଗିଦିଅ, ୨୫. ଯିଏ ଶୁଭକାର୍ଯ୍ୟରେ ବାଧା ଦେଉଥିଲା, ସୀମା ଅତିକ୍ରମ କରୁଥିଲା ଏବଂ (ଲୋକଙ୍କ ମନରେ) ସନ୍ଦେହ ସୃଷ୍ଟି କରୁଥିଲା । ୨୬. ସେ ଅଲ୍ଲାହଙ୍କ ସହିତ ଅନ୍ୟକୁ ମଧ୍ୟ ଈଶ୍ୱର ମାନୁଥିଲା । ତେଣୁ, ତାକୁ କଠୋର ଦଣ୍ଡ ଦିଅ ।" ୨୭. ତା' ସହଚର (ଶଇତାନ) କହିବ, "ହେ ପ୍ରଭୁ! ମୁଁ ତାକୁ ପଥଭ୍ରଷ୍ଟ କରିନାହିଁ ବରଂ ସେ ନିଜେ ସଂପୂର୍ଣ୍ଣ ପଥଭ୍ରଷ୍ଟ ଥିଲା ।" ୨୮. (ଅଲ୍ଲାହ୍ କହିବେ) "ମୋ' ସାମନାରେ ଝଗଡ଼ା କରନାହିଁ । ମୁଁ ତୁମମାନଙ୍କୁ (ଦୁଃଷ୍ପରିଣାମ ବିଷୟରେ) ପୂର୍ବରୁ ସତର୍କ କରିସାରିଛି । ୨୯. ମୋ' ପାଖରେ କଥା ବଦଳେ ନାହିଁ କିମ୍ବା ମୁଁ ନିଜ ଦାସମାନଙ୍କ ପ୍ରତି ଅନ୍ୟାୟ କରେନାହିଁ ।"

୩୦. ସେଦିନ ଆମ୍ଭେ ନର୍କକୁ ପଚାରିବୁ, "କ,ଣ ତୁ ପୂର୍ଣ୍ଣ ହେଲୁ ?" ସେ ଉତ୍ତର ଦେବ, "କ'ଣ ଆହୁରି କିଛି ଅଛି ?" ୩୧. ବୈକୁଣ୍ଠକୁ ସଦାଚାରୀମାନଙ୍କ ପାଖକୁ ଅଣାଯିବ । ଏହା (ସେମାନଙ୍କଠାରୁ) ଆଦୌ ଦୂରରେ ନଥିବ । ୩୨. ଏହାରି ପ୍ରତିଶ୍ରୁତି ତୁମମାନଙ୍କୁ ଦିଆ ଯାଉଥିଲା ଯେ ଏହି ବୈକୁଣ୍ଠ ସେହି ବ୍ୟକ୍ତି ଲାଭ କରିବ ଯିଏ (ଈଶ୍ୱରଙ୍କଠାରେ) ଲୟ ରଖିଥିବ ଏବଂ (ତାଙ୍କ ଆଜ୍ଞା ବିଷୟରେ) ଯତ୍ନବାନ ଥିବ । ୩୩. ଯିଏ କରୁଣାମୟଙ୍କୁ ନଦେଖି ମଧ୍ୟ ଭୟ କରୁଥିବ ଏବଂ ଅନୁତପ୍ତ ମନରେ ତାଙ୍କ ପାଖକୁ ଆସିବ । ୩୪. (ତାକୁ କୁହାଯିବ) "ନିରାପଦରେ (ବୈକୁଣ୍ଠରେ) ପ୍ରବେଶ କର । ଏହା ଅମରତ୍ୱ ଲାଭ କରିବାର ଦିନ ।" ୩୫. ସେଠାରେ ସେମାନେ ଯାହା ଚାହିଁବେ ତାହା ପାଇବେ ଏବଂ ଆମ୍ଭ ପାଖରେ ସେମାନଙ୍କ ପାଇଁ ଆହୁରି ଅନେକ କିଛି ଅଛି ।

୩୬. ଏମାନଙ୍କ ପୂର୍ବରୁ ଆମ୍ଭେ ଅନେକ ବଂଶ ଧ୍ୱଂସ କରି ଦେଇଛୁ ଯେଉଁମାନେ ଏମାନଙ୍କ ଅପେକ୍ଷା ଯଥେଷ୍ଟ ଶକ୍ତିଶାଳୀ ଥିଲେ ଏବଂ ବିଭିନ୍ନ ସ୍ଥାନ ବୁଲିଥିଲେ । କ'ଣ କୌଣସି ଜାଗାରେ ସେମାନଙ୍କୁ ଆଶ୍ରୟ ମିଳିଲା ? ୩୭. ଏଥିରେ

ଏଭଳି ବ୍ୟକ୍ତି ପାଇଁ ଉପଦେଶ ଅଛି ଯାହାର (ପ୍ରକୃତରେ) ହୃଦୟ ଅଛି ଏବଂ ଯିଏ ଧ୍ୟାନ ଦେଇ କଥା ଶୁଣେ ।

୩୮. ପୃଥିବୀ ଓ ଆକାଶ ଏବଂ ସେଗୁଡ଼ିକ ମଧ୍ୟରେ ଯାହାକିଛି ଅଛି, ଆମ୍ଭେ ସେଗୁଡ଼ିକୁ ଛଅ ଦିନରେ ସୃଷ୍ଟି କରିଛୁ କିନ୍ତୁ କ୍ଲାନ୍ତି ଆମ୍ଭକୁ ସ୍ପର୍ଶ କରିନାହିଁ । ୩୯. (ହେ ବାର୍ତ୍ତାବହ!) ଧୈର୍ଯ୍ୟ ଧରି ସେମାନଙ୍କ କଥା ସହିଯାଅ ଏବଂ ସୂର୍ଯ୍ୟୋଦୟ ପୂର୍ବରୁ ଓ ସୂର୍ଯ୍ୟାସ୍ତ ପୂର୍ବରୁ ନିଜ ପ୍ରଭୁଙ୍କ ସ୍ତୁତି ଓ ଗୁଣଗାନ କର (ଅର୍ଥାତ୍ ନମାଜ ସଂପାଦନ କର), ୪୦. ରାତିର ବିଭିନ୍ନ ଭାଗରେ ମଧ୍ୟ ଏବଂ ନମାଜ ସଂପାଦନ କରି ସାରିବା ପରେ ମଧ୍ୟ ତାଙ୍କର ନାମ ଜପ କର ।

୪୧. ଶୁଣ! ଦିନେ ଜଣେ (ଦେବଦୂତ) ଅତି ନିକଟରୁ ଡାକିବ । ୪୨. ସେଦିନ ସମସ୍ତେ ସେହି ଭୟଙ୍କର ଶବ୍ଦ ନିଶ୍ଚୟ ଶୁଣିବେ । ସେହି ଦିନଟି ହେଉଛି (ମୃତମାନଙ୍କର ଧରିତ୍ରୀ ମଧ୍ୟରୁ) ବାହାରିବାର ଦିନ । ୪୩. ଆମ୍ଭେ ହିଁ ଜୀବନ ଦେଉ ଏବଂ ଆମ୍ଭେ ହିଁ ମୃତ୍ୟୁ ଦେଉ ଏବଂ ଶେଷରେ ଆମ୍ଭରି ପାଖକୁ (ସମସ୍ତଙ୍କୁ) ଫେରିବାକୁ ହେବ । ୪୪. ସେଦିନ ଧରିତ୍ରୀ ଫାଟିଯିବ ଏବଂ ସେମାନେ ତୁରନ୍ତ (ଭୂଗର୍ଭରୁ) ବାହାରି ପଡ଼ିବେ । ସେମାନଙ୍କୁ ଏହିପରି ଏକାଠି କରିବା ଆମ୍ଭ ପକ୍ଷରେ ଏକ ସାଧାରଣ କଥା ।

୪୫. ଏମାନେ ଯାହା କହୁଛନ୍ତି, ଆମ୍ଭେ ଭଲରୂପେ ଜାଣୁ । ସେମାନଙ୍କୁ ବାଧ୍ୟ କରି ମନାଇବା ତୁମ୍ଭର କାର୍ଯ୍ୟ ନୁହେଁ । ସୁତରାଂ ଯିଏ ମୋ'ଚେତାବନୀକୁ ଭୟ କରେ, ତୁମେ ତାକୁ ଏହି କୁରଆନ ଦ୍ୱାରା ଉପଦେଶ ଦେଉଥାଅ ।

## ଅଧ୍ୟାୟ ୫୧, ଅଜ୍ ଜାରିୟାତ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ପବନର ରାଣ, ଯାହା ଧୂଳି ଉଡ଼ାଏ, ୨. ଏବଂ ବାଦଲର ବୋଝ ବହନ କରେ, ୩. ପୁଣି ଧୀରେଧୀରେ ପ୍ରବାହିତ ହୁଏ, ୪. ପୁଣି ଆଜ୍ଞା ଅନୁସାରେ ବିତରଣ କରେ । ୫. ତୁମ୍ଭମାନଙ୍କୁ ଯେଉଁ ବଚନ ଦିଆଯାଉଛି ତାହା ଅବଶ୍ୟ ସତ୍ୟ । ୬. ବିଚାର ନିଶ୍ଚୟ ହେବ ।

୭. ଆକାଶର ରାଣ, ଯେଉଁଥିରେ ଅସଂଖ୍ୟ ପଥ ରହିଛି। ୮. ତୁମମାନଙ୍କର କଥାଗୁଡ଼ିକ ପରସ୍ପର ବିରୋଧୀ। ୯. ଏହି ସତ୍ୟକୁ ସେହି ବ୍ୟକ୍ତି ଅସ୍ୱୀକାର କରେ ଯିଏ ବିଭ୍ରାନ୍ତ ହୋଇଯାଇଛି।

୧୦. ସେମାନଙ୍କର ସର୍ବନାଶ ହେଉ ଯେଉଁମାନେ (ଧର୍ମବିଶ୍ୱାସ ବିଷୟରେ) ଅନୁମାନ କରନ୍ତି। ୧୧. ସେମାନେ ଅଜ୍ଞାନତା ମଧ୍ୟରେ ବୁଡ଼ିରହି (ପରଲୋକକୁ) ଭୁଲି ଯାଇଛନ୍ତି। ୧୨. ସେମାନେ ପଚାରୁଛନ୍ତି ଯେ ବିଚାର ଦିନ କେବେ ଆସିବ? ୧୩. ସେହିଦିନ ଆସିବ, ଯେଉଁଦିନ ସେମାନଙ୍କୁ ନିଆଁରେ ଦଗ୍ଧ କରାଯିବ। ୧୪. (ସେମାନଙ୍କୁ କୁହାଯିବ) ଏବେ ନିଜ ଦୁଷ୍କର୍ମର ଫଳ ଚାଖ। ଏହାରି ପାଇଁ ତ ତୁମେମାନେ ଉଚ୍ଛନ୍ନ ହେଉଥିଲ!

୧୫. ସେଦିନ ସଦାଚାରୀ ଲୋକମାନେ (ସ୍ୱର୍ଗର) ଉଦ୍ୟାନ ଓ ଝରଣାର ଆନନ୍ଦ ଉପଭୋଗ କରିବେ। ୧୬. ପ୍ରଭୁ ଯାହା ଦେବେ, ସେମାନେ ଆନନ୍ଦରେ ଗ୍ରହଣ କରିବେ। ଏଥିପୂର୍ବରୁ ସେମାନେ (ସଂସାରରେ) ଭଲ କର୍ମ କରୁଥିଲେ, ୧୭. ରାତିରେ ଅଳ୍ପ ସମୟ ଶୋଉଥିଲେ, ୧୮. ଏବଂ ବ୍ରାହ୍ମମୂହୁର୍ତ୍ତରେ ଉଠି କ୍ଷମାପ୍ରାର୍ଥନା କରୁଥିଲେ। ୧୯. ସେମାନଙ୍କ ଧନରେ (ଭିକ୍ଷା କରୁଥିବା) ଭିକ୍ଷୁକମାନଙ୍କର ଏବଂ (ଭିକ୍ଷା କରୁ ନଥିବା) ଦରିଦ୍ରମାନଙ୍କର ଭାଗ ରହୁଥିଲା।

୨୦. ବିଶ୍ୱାସ କରୁଥିବା ଲୋକମାନଙ୍କ ପାଇଁ ପୃଥିବୀରେ (ଈଶ୍ୱରଙ୍କ ମହିମାର) ଅନେକ ସଂକେତ ରହିଛି, ୨୧. ଏବଂ ତୁମମାନଙ୍କର ନିଜ ଭିତରେ ମଧ୍ୟ। କ'ଣ ତୁମେମାନେ ଏହା ଲକ୍ଷ୍ୟ କରି ପାରୁନାହଁ? ୨୨. ଆକାଶରେ ତୁମମାନଙ୍କର ଆହାର ଅଛି ଏବଂ ତାହା ମଧ୍ୟ ଅଛି ଯାହାର ପ୍ରତିଶ୍ରୁତି ତୁମମାନଙ୍କୁ ଦିଆଯାଉଛି। ୨୩. ପୃଥିବୀ ଓ ଆକାଶର ସ୍ୱାମୀଙ୍କ ରାଣ! ଏହା ସେହିପରି ଏକ ସତ୍ୟ ଯେପରି ତୁମମାନଙ୍କର କଥାବାର୍ତ୍ତା କରିବା (ଏକ ସତ୍ୟ)।

୨୪. (ହେ ବାର୍ତ୍ତାବହ!) କ'ଣ ତୁମକୁ ଇବ୍ରାହିମଙ୍କ ସମ୍ମାନିତ ଅତିଥିମାନଙ୍କର ଖବର ମିଳିଛି? ୨୫. ଯେତେବେଳେ ସେମାନେ (ଅର୍ଥାତ୍ ଦେବଦୂତମାନେ) ତାଙ୍କ ପାଖରେ ପହଁଚିଲେ, ତାଙ୍କୁ କହିଲେ, "ତୁମର ମଙ୍ଗଳ ହେଉ"। ସେ ଉତ୍ତର ଦେଲେ, "ତୁମମାନଙ୍କର ମଧ୍ୟ ମଙ୍ଗଳ ହେଉ"। ସେ

(ମନେମନେ କହିଲେ) "ଏମାନେ ଅପରିଚିତ ଲୋକ ଜଣା ପଡୁଛନ୍ତି ।" ୨୬. ତା'ପରେ ସେ ନିଜ ପରିବାର ପାଖକୁ ଯାଇ ପୋଡ଼ା ଯାଇଥିବା ଗୋଟିଏ ମୋଟା-ତାଗଡ଼ା ବାଛୁରୀ ନେଇ ଆସିଲେ, ୨୭. ଏବଂ ସେମାନଙ୍କୁ ପରଷି ଦେଲେ । ପୁଣି ପଚାରିଲେ, "ଆପଣମାନେ ଭୋଜନ କରୁନାହାନ୍ତି କାହିଁକି ?" ୨୮. (ସେମାନେ ଭୋଜନ ନକରିବାରୁ) ସେ ମନେମନେ ଭୟ କଲେ । (ଏହା ବୁଝିପାରି) ସେମାନେ ତାଙ୍କୁ କହିଲେ, "ଭୟ କରନ୍ତୁ ନାହିଁ" । ପୁଣି ସେମାନେ ତାଙ୍କୁ ଶୁଭସୂଚନା ଦେଲେ ଯେ ସେ ଜଣେ ଜ୍ଞାନୀ ପୁତ୍ରସନ୍ତାନ ଲାଭ କରିବେ । ୨୯. ଏହା ଶୁଣି ତାଙ୍କ ପତ୍ନୀ ପାଟି କରି ବାହାରି ଆସିଲେ ଏବଂ ମଥାରେ ହାତ ଦେଇ କହିଲେ, "ମୁଁ ଜଣେ ବୃଦ୍ଧା ନାରୀ ଏବଂ ବନ୍ଧ୍ୟା ମଧ୍ୟ ।" ୩୦. ସେମାନେ କହିଲେ, "ତୁମ ଈଶ୍ୱର ଏହାହିଁ କହିଛନ୍ତି । ସେ ତତ୍ତ୍ୱଜ୍ଞାନୀ ଏବଂ ସର୍ବଜ୍ଞ ।"

୩୧. ଇବ୍ରାହିମ ପଚାରିଲେ, "ହେ ଦେବଦୂତଗଣ ! ଆପଣମାନଙ୍କର (ଆସିବାର) ଉଦ୍ଦେଶ୍ୟ କଣ ?" ୩୨. ସେମାନେ ଉତ୍ତର ଦେଲେ, "ଆମମାନଙ୍କୁ କେତେକ ପାପୀ ଲୋକଙ୍କ ପାଖକୁ (ଏଇଥିପାଇଁ) ପଠାଯାଇଛି ୩୩. ଯେ ଆମ୍ଭେ ସେମାନଙ୍କ ଉପରେ ଗୋଡ଼ି-ପଥର ବର୍ଷା କରିବୁ । ୩୪. ଯେଉଁମାନେ ସୀମା ଟପି ଯାଇଛନ୍ତି, ସେମାନଙ୍କ ପାଇଁ ସେହି ପଥରଗୁଡ଼ିକରେ ତୁମ ପ୍ରଭୁଙ୍କ ଦ୍ୱାରା ଚିହ୍ନ ଦିଆଯାଇଛି ।"

୩୫. ପୁଣି ସେଠାରେ ରହୁଥିବା ସଦବିଶ୍ୱାସୀମାନଙ୍କୁ ଆମ୍ଭେ ଉଦ୍ଧାର କରିନେଲୁ । ୩୬. ଆମ୍ଭେ ସେଠାରେ କେବଳ ଗୋଟିଏ ଘର ବ୍ୟତୀତ ଅନ୍ୟ କୌଣସି ମୁସଲିମ୍ ଘର ପାଇଲୁନାହିଁ । ୩୭. ଯେଉଁମାନେ (ଈଶ୍ୱରଙ୍କର) କଠୋର ଶାସ୍ତିକୁ ଭୟ କରନ୍ତି, ସେମାନଙ୍କ ପାଇଁ ଆମ୍ଭେ ସେଠାରେ ଏକ ନିଦର୍ଶନ ଛାଡ଼ିଦେଇଛୁ ।

୩୮. ମୁ'ସାଙ୍କ ଘଟଣାରେ ମଧ୍ୟ (ଏହିଭଳି ନିଦର୍ଶନ ଥିଲା) । ଆମ୍ଭେ ତାଙ୍କୁ ସ୍ପଷ୍ଟ ପ୍ରମାଣ ଦେଇ ଫିରଔନ୍ ପାଖକୁ ପଠାଇଥିଲୁ, ୩୯. କିନ୍ତୁ ସେ ନିଜର ଶକ୍ତିର ଅଭିମାନ ଯୋଗୁଁ ଅସ୍ୱୀକାର କଲା ଏବଂ କହିଲା ଯେ ଏହି ବ୍ୟକ୍ତି ଜଣକ ଜଣେ ଯାଦୁକର ଅଥବା ପାଗଳ । ୪୦. ତେଣୁ, ଆମ୍ଭେ ତାକୁ ଏବଂ ତା'

ସୈନ୍ୟସାମନ୍ତମାନଙ୍କୁ ଦଣ୍ଡ ଦେଲୁ ଏବଂ ସମସ୍ତଙ୍କୁ ସମୁଦ୍ରରେ ଫିଙ୍ଗିଦେଲୁ । ସେ ଧିକ୍କାରଯୋଗ୍ୟ ଥିଲା ।

୪୧. ଆଦ୍ ସଂପ୍ରଦାୟ ସହିତ ଘଟିଥିବା ଘଟଣାରେ ମଧ୍ୟ (ତୁମମାନଙ୍କ ପାଇଁ ଶିକ୍ଷା ରହିଛି) । ଆମ୍ଭେ ସେମାନଙ୍କ ଉଦ୍ଦେଶ୍ୟରେ ଏକ ବିଧ୍ୱଂସକାରୀ ବାତ୍ୟା ପଠାଇଥିଲୁ । ୪୨. ଏହା ଯାହା ଉପରେ ପ୍ରବାହିତ ହେଉଥିଲା ତାକୁ ଧ୍ୱସ୍ତ-ବିଧ୍ୱସ୍ତ କରି ଦେଉଥିଲା ।

୪୩. ସମୁଦ୍ ସମ୍ପ୍ରଦାୟ ସହିତ ଘଟିଥିବା ଘଟଣାରେ ମଧ୍ୟ (ତୁମମାନଙ୍କ ପାଇଁ ଶିକ୍ଷା ରହିଛି) । ସେମାନଙ୍କୁ କୁହା ଯାଇଥିଲା ଯେ ସେମାନେ କିଛି ସମୟ ସୁଖ ଭୋଗ କରିନିଅନ୍ତୁ । ୪୪. ସେମାନେ ନିଜ ପାଳନକର୍ତ୍ତାଙ୍କର ଆଜ୍ଞାର ଅବମାନନା କଲେ । ତେଣୁ, ଚାହୁଁଚାହୁଁ ସେମାନେ ଏକ ଭୟଙ୍କର ଶବ୍ଦର ଶିକାର ହୋଇଗଲେ । ୪୫. ତା'ପରେ ସେମାନଙ୍କର ଆଉ ଉଠିବାର ଶକ୍ତି ନଥିଲା ଏବଂ ସେମାନେ ନିଜକୁ ବଂଚାଇ ପାରି ନଥିଲେ । ୪୬. ଏହାପୂର୍ବରୁ ଆମ୍ଭେ ନୂହ୍‌ଙ୍କ ସଂପ୍ରଦାୟକୁ ମଧ୍ୟ ଧ୍ୱଂସ କରି ଦେଇଥିଲୁ କାରଣ ସେମାନେ ମଧ୍ୟ ଭାରି ଅବାଧ୍ୟ ଥିଲେ ।

୪୭. ଆମ୍ଭେ ନିଜ ଶକ୍ତି ବଳରେ ଆକାଶ ନିର୍ମାଣ କରିଛୁ ଏବଂ ଆମ୍ଭେ ହିଁ ଏହାର ବିସ୍ତାର କରିଛୁ । ୪୮. ଆମ୍ଭେ ଧରିତ୍ରୀକୁ ବିଛାଇଛୁ ଏବଂ (ଦେଖ) କି ସୁନ୍ଦର ବିଛାଇଛୁ ! ୪୯. ଆମ୍ଭେ ପ୍ରତ୍ୟେକ ଜୀବଜଡ଼କୁ ଯୋଡ଼ାଯୋଡ଼ା କରି ସୃଷ୍ଟି କରିଛୁ ଯେପରିକି ତୁମେମାନେ ଏଥିପ୍ରତି ଧ୍ୟାନ ଦେବ ।

୫୦. "ତେଣୁ ଅଲ୍ଲାହଙ୍କ ମାର୍ଗକୁ ଧାଇଁଆସ । ମୁଁ (ଅର୍ଥାତ୍ ମୁହମ୍ମଦ) ତାଙ୍କ ତରଫରୁ ତୁମମାନଙ୍କୁ ପରିଷ୍କାର ଭାବରେ ସାବଧାନ କରୁଛି । ୫୧. ଏବଂ ଅଲ୍ଲାହଙ୍କ ସହିତ ଅନ୍ୟ କାହାରିକୁ ଉପାସ୍ୟ ରୂପେ ଗ୍ରହଣ କରନାହିଁ । ମୁଁ ତାଙ୍କ ତରଫରୁ ତୁମମାନଙ୍କୁ ସ୍ପଷ୍ଟ ରୂପେ ସାବଧାନ କରୁଛି ।"

୫୨. ଏହିପରି, ଏମାନଙ୍କ ପୂର୍ବଜମାନଙ୍କ ପାଖକୁ ମଧ୍ୟ ଯେଉଁ ଈଶ୍ୱରଦୂତ ଗଲେ, ଏମାନେ ତାଙ୍କୁ ଯାଦୁକର ବା ପାଗଳ କହିଲେ । ୫୩. କ'ଣ ଏମାନେ ପରସ୍ପରକୁ ଏହି ଶିକ୍ଷା ଦେଇ ଆସୁଛନ୍ତି ? ବରଂ ଏମାନେ ଭାରି ଉଦ୍ଧତ ହୋଇ ଯାଇଛନ୍ତି । ୫୪. ତେଣୁ ସେମାନଙ୍କୁ ଉପେକ୍ଷା କର । ଏଥିରେ ତୁମର ଦୋଷ

ହେବନାହିଁ । ୫୫. (ଲୋକମାନଙ୍କୁ) ଉପଦେଶ ଦେଉଥାଅ କାରଣ ବିଶ୍ୱାସ କରୁଥିବା ଲୋକଙ୍କ ପାଇଁ ଉପଦେଶ ଲାଭକାରୀ ହୋଇଥାଏ ।

୫୬. ମୁଁ ଜିନ୍ ଓ ମାନବ ସମୁଦାୟକୁ କେବଳ ଏଇଥିପାଇଁ ସୃଷ୍ଟି କରିଛି ଯେ ସେମାନେ ମୋ'ର ସେବା-ଉପାସନା କରିବେ । ୫୭. ମୁଁ ସେମାନଙ୍କଠାରୁ ଆହାର ମାଗୁନାହିଁ ବା ଏହା ଚାହୁଁନାହିଁ ଯେ ସେମାନେ ମୋତେ ଖାଇବାକୁ ଦିଅନ୍ତୁ । ୫୮. ଅଲ୍ଲାହ୍ ହିଁ ସମସ୍ତଙ୍କର ଆହାରଦାତା । ସେ ମହା କ୍ଷମତାଶାଳୀ ଏବଂ ସର୍ବଶକ୍ତିମାନ । ୫୯. ଯେଉଁମାନେ କୁକର୍ମ କରିଛନ୍ତି, ସେମାନେ ମଧ୍ୟ ସେହିପରି ପରିଣାମ ଭୋଗିବେ ଯେପରି ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନେ ଭୋଗିଛନ୍ତି । ତେଣୁ ଏଥିପାଇଁ ଅଥୟ ହୁଅନ୍ତୁନାହିଁ । ୬୦. ଯେଉଁଦିନ ବିଷୟରେ ନାସ୍ତିକମାନଙ୍କୁ ସାବଧାନ କରାଯାଉଛି, ସେଦିନ ସେମାନଙ୍କର ସର୍ବନାଶ ହେବ ।

## ଅଧ୍ୟାୟ ୫୨, ଅତ୍ ତୂର୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ତୂର ପର୍ବତର ରାଣ! ୨. ଏବଂ ସେହି ଲିଖିତ ଗ୍ରନ୍ଥର ରାଣ, ୩. ଯାହା ଖୋଲା ପୃଷ୍ଠାମାନଙ୍କରେ ଲେଖା ହୋଇ ରହିଛି । ୪. ଏବଂ ସଦାବ୍ୟସ୍ତ ଉପାସନା ଗୃହର ରାଣ! ୫. ଏବଂ ଉଚ୍ଚ ଆକାଶର ରାଣ! ୬. ଏବଂ ଫୁଲି ଉଠୁଥିବା ସମୁଦ୍ରର ରାଣ! ୭. ତୁମ ପ୍ରଭୁ ନିଶ୍ଚୟ ଶାସ୍ତିବିଧାନ କରିବେ । ୮. ଯାହାକୁ କେହି ଅଟକାଇ ପାରିବେ ନାହିଁ ।

୯. ଯେଉଁଦିନ ଆକାଶ ଥରିବାକୁ ଲାଗିବ, ୧୦. ଏବଂ ପାହାଡ଼ପର୍ବତ ଗତିଶୀଳ ହୋଇଯିବେ, ୧୧. ସେଦିନ (ସତ୍ୟକୁ) ପ୍ରତ୍ୟାଖ୍ୟାନ କରିଥିବା ଲୋକମାନଙ୍କର ସର୍ବନାଶ ହେବ, ୧୨. ଯେଉଁମାନେ ଅଯଥା ଯୁକ୍ତିତର୍କରେ ମାତି ରହିଛନ୍ତି ଏବଂ ଖେଳତାମସା କରୁଛନ୍ତି । ୧୩. ସେଦିନ ସେମାନଙ୍କୁ ଧକ୍କା ଦେଇ ନର୍କର ନିଆଁରେ ଫିଙ୍ଗି ଦିଆଯିବ । ୧୪. (କୁହାଯିବ) "ଏହାହିଁ ସେହି ନର୍କ, ଯାହାକୁ ତୁମେମାନେ ମିଛ ବୋଲି କହୁଥିଲ । ୧୫. କ'ଣ ଏହା ଯାଦୁଖେଳ ବା ତୁମମାନଙ୍କୁ ଏବେ ମଧ୍ୟ କିଛି ଦେଖା ଯାଉନାହିଁ? ୧୬. ଏବେ ଏଥିରେ ପ୍ରବେଶ କର ।

ଏହାପରେ ତୁମେମାନେ (ଯନ୍ତ୍ରଣା) ସହ୍ୟ କର ବା ନକର, ଏକା କଥା । ତୁମମାନଙ୍କୁ ସେହି କର୍ମର ଫଳ ଦିଆଯାଉଛି ଯାହା ତୁମେମାନେ କରୁଥିଲ ।”

୧୭. ସଦାଚାରୀ ଲୋକମାନେ ବୈକୁଣ୍ଠ ଉଦ୍ୟାନରେ ସୁଖ ଭୋଗ କରିବେ । ୧୮. ପ୍ରଭୁ ଯାହା ଦେଇଥିବେ, ସେଥିରେ ସେମାନେ ଭାରି ଖୁସି ଥିବେ । ସେମାନଙ୍କ ପ୍ରଭୁ ସେମାନଙ୍କୁ ନର୍କଦଣ୍ଡରୁ ରକ୍ଷା କଲେ । ୧୯. (ସେମାନଙ୍କୁ କୁହାଯିବ) ତୁମେମାନେ ଯାହା କର୍ମ କରିଥିଲ, ତାହାର ଫଳ ସ୍ୱରୂପ ଏଠାରେ ଆନନ୍ଦରେ ଖିଆପିଆ କର । ୨୦. ସେମାନେ ଧାଡ଼ି ହୋଇ ପଡ଼ିଥିବା ଆସନ ଉପରେ ଗଦିରେ ଆଉଜି ବସିଥିବେ । ସୁନ୍ଦରନୟନା ଅପସରାମାନଙ୍କ ସହିତ ଆମ୍ଭେ ସେମାନଙ୍କର ବିବାହ କରାଇଦେବୁ । ୨୧. ଯେଉଁମାନେ (ସତ୍ୟରେ) ବିଶ୍ୱାସ କଲେ ଏବଂ ସେମାନଙ୍କର ସନ୍ତାନମାନେ ସେମାନଙ୍କର ଧର୍ମପଥ ଅନୁସରଣ କଲେ ଆମ୍ଭେ ସେହି ସନ୍ତାନମାନଙ୍କୁ ସେମାନଙ୍କର ପାଖରେ ପହଁଚାଇ ଦେବୁ ଏବଂ ଏମାନଙ୍କ କର୍ମଫଳରୁ କିଛି ଊଣା କରିବୁନାହିଁ । ପ୍ରତ୍ୟେକ ବ୍ୟକ୍ତି ନିଜର କର୍ମ ବଦଳରେ ବନ୍ଧକ ପଡ଼ିଛି । ୨୨. ଆମ୍ଭେ ସେମାନଙ୍କୁ ସେମାନଙ୍କ ମନପସନ୍ଦର ଫଳ ଓ ମାଂସ ଯୋଗାଇ ଦେବୁ । ୨୩. ସେମାନେ ପରସ୍ପର ମଧ୍ୟରେ ସୁରାପାତ୍ର ଆଦାନ-ପ୍ରଦାନ କରିବେ ଯାହା ପାନ କରି ସେମାନେ କୌଣସି ଅଭଦ୍ର କଥା କହିବେନାହିଁ କିମ୍ବା ପାପାଚରଣ କରିବେ ନାହିଁ । ୨୪. ଏଭଳି କିଶୋର ସେବକ ସେମାନଙ୍କ ସେବାରେ ଲାଗିଥିବେ ସତେଯେପରି ସେମାନେ ଯତ୍ନରେ ରଖା ଯାଇଥିବା ମୁକ୍ତା । ୨୫. ସେମାନେ ପାଖାପାଖି ବସି ପରସ୍ପର ସହିତ କଥାବାର୍ତ୍ତା ହେବେ । ୨୬. ସେମାନେ କହିବେ ଯେ ଆମେମାନେ ଏହାପୂର୍ବରୁ ପରିବାର ମଧ୍ୟରେ (ଅଲ୍ଲାହଙ୍କୁ) ଡରିଡରି ଚଳୁଥିଲୁ । ୨୭. ପୁଣି ଅଲ୍ଲାହ୍ ଆମମାନଙ୍କ ପ୍ରତି କୃପା କଲେ ଏବଂ ନର୍କର ବିଦଗ୍ଧକାରୀ ଅଗ୍ନିରୁ ରକ୍ଷା କଲେ । ୨୮. ଏହା ପୂର୍ବରୁ ଆମେମାନେ ତାଙ୍କୁ ପ୍ରାର୍ଥନା କରୁଥିଲୁ । ବାସ୍ତବରେ ସେ ଭାରି ଅନୁଗ୍ରହଶୀଳ ଏବଂ ପରମ ଦୟାଳୁ । ୨୯. ତେଣୁ (ହେ ବାର୍ତ୍ତାବହ!) ଲୋକମାନଙ୍କୁ ଉପଦେଶ ଦେଉଥାଅ । ତୁମ ପ୍ରଭୁଙ୍କ କୃପାରୁ ତୁମେ ତାନ୍ତ୍ରିକ ବା ପାଗଳ ନୁହଁ ।

୩୦. କ'ଣ ଏମାନେ ତୁମକୁ କହୁଛନ୍ତି ଯେ ତୁମେ ଜଣେ କବି ଏବଂ ସେମାନେ ତୁମପାଇଁ କାଳଚକ୍ରର ଅପେକ୍ଷାରେ ଅଛନ୍ତି ? ୩୧. ସେମାନଙ୍କୁ କହିଦିଅ,

"ଅପେକ୍ଷା କର । ତୁମମାନଙ୍କ ସହିତ ମୁଁ ମଧ୍ୟ ଅପେକ୍ଷା କରୁଛି ।" ୩୨. କ'ଣ ଏମାନଙ୍କର ବୁଦ୍ଧି ଏମାନଙ୍କୁ ଏହି ଶିକ୍ଷା ଦେଉଛି କିମ୍ବା ଏମାନେ ଔଦ୍ଧତ୍ୟର ସବୁ ସୀମା ଟପି ଯାଇଛନ୍ତି ?

୩୩. କ'ଣ ଏମାନେ କହୁଛନ୍ତି ଯେ ବାର୍ତ୍ତାବହ ନିଜେ କୁରଆନ ରଚନା କରିଛନ୍ତି ? ନା, ବରଂ ସେମାନେ ମାନିବା ଲୋକ ନୁହନ୍ତି । ୩୪. ଯଦି ଏମାନେ ସତ କହୁଛନ୍ତି ତେବେ ଏହାରିପରି କୌଣସି ବାଣୀ ରଚନା କରି ଆଣନ୍ତୁ ।

୩୫. କ'ଣ ଏମାନେ କୌଣସି ସ୍ରଷ୍ଟା ବିନା ଆପେଆପେ ସୃଷ୍ଟି ହୋଇଗଲେ ? ଅଥବା ସେମାନେ ନିଜେ ନିଜକୁ ସୃଷ୍ଟି କରିଛନ୍ତି ? ୩୬. ବା ଧରିତ୍ରୀ ଓ ଆକାଶମଣ୍ଡଳକୁ ସେଇମାନେ ସୃଷ୍ଟି କରିଛନ୍ତି ? ନା, ପ୍ରକୃତରେ ସେମାନେ ମାନିବା ଲୋକ ନୁହନ୍ତି । ୩୭. କ'ଣ ତୁମ ପ୍ରଭୁଙ୍କର ଭଣ୍ଡାର ସେଇମାନଙ୍କ ଅଧୀନରେ ଅଛି ଅଥବା ସେଇମାନେ ଏହାକୁ ନିୟନ୍ତ୍ରଣ କରୁଛନ୍ତି ? ୩୮. କିମ୍ବା ସେମାନଙ୍କ ପାଖରେ କୌଣସି ନିଶୁଣି ଅଛି ଯାହା ଉପରେ ଚଢ଼ି ସେମାନେ (ଦେବଲୋକର) କଥା ଶୁଣିନିଅନ୍ତି ? ଯିଏ ଶୁଣିଛି ସେ ଏହାର ସ୍ୱଷ୍ଟ ପ୍ରମାଣ ଦେଉ । ୩୯. କ'ଣ ଅଲ୍ଲାହ୍‌ଙ୍କ ଭାଗରେ ଝିଅ ଆସିଲେ ଏବଂ ତୁମମାନଙ୍କ ଭାଗରେ ପୁଅ ? ୪୦. ଅଥବା ତୁମେ ସେମାନଙ୍କଠାରୁ କିଛି ମୂଲ୍ୟ ମାଗୁଛ ଯାହାର ଦେୟ ଭାରରେ ସେମାନେ ଭାରାକ୍ରାନ୍ତ ହୋଇ ପଡ଼ୁଛନ୍ତି ? ୪୧. କିମ୍ବା ସେମାନଙ୍କର ଅଦୃଷ୍ଟ ବିଷୟରେ ଜ୍ଞାନ ଅଛି ଯାହାକୁ ସେମାନେ ଲେଖୁଛନ୍ତି ?

୪୨. କ'ଣ ସେମାନେ କୌଣସି ଚକ୍ରାନ୍ତ କରିବାକୁ ମନସ୍ଥ କରିଛନ୍ତି ? ନାସ୍ତିକମାନେ ନିଜ ଚକ୍ରାନ୍ତର ନିଜେ ଶିକାର ହେବେ ।

୪୩. କ'ଣ ଅଲ୍ଲାହ୍‌ଙ୍କ ବ୍ୟତୀତ ଏମାନଙ୍କର ଅନ୍ୟ କେହି ଈଶ୍ୱର ଅଛନ୍ତି ? ସେମାନଙ୍କର ବହୁଈଶ୍ୱରବାଦର ଆରୋପ ସହିତ ଅଲ୍ଲାହ୍‌ଙ୍କର କିଛି ସଂପର୍କ ନାହିଁ । ୪୪. ଯଦି ସେମାନେ ଆକାଶଖଣ୍ଡ ଖସୁଥିବାର ମଧ୍ୟ ଦେଖିବେ, ତଥାପି କହିବେ ଯେ ଏଗୁଡ଼ିକ ଘନ ବାଦଲ । ୪୫. ତେଣୁ, ସେମାନଙ୍କୁ ଛାଡ଼ିଦିଅ ଯେପରିକି ସେମାନେ ସେହି ଦିନଟିକୁ ଦେଖନ୍ତୁ ଯେଉଁଦିନ ସେମାନଙ୍କର ଚେତା ବୁଡ଼ିଯିବ । ୪୬. ସେଦିନ ସେମାନଙ୍କର ଛଲ୍ ସେମାନଙ୍କର କାମରେ ଆସିବନାହିଁ

କିମ୍ବା କେହି ସେମାନଙ୍କୁ ସାହାଯ୍ୟ କରିବେନାହିଁ । ୪୭. ଏହାପୂର୍ବରୁ ମଧ୍ୟ ଦୁରାଚାରୀମାନଙ୍କୁ ଅନ୍ୟ ଦଣ୍ଡ ମିଳିବ, ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ ଏହା ଜାଣନ୍ତିନାହିଁ ।

୪୮. (ହେ ବାର୍ତ୍ତାବହ!) ଧୈର୍ଯ୍ୟ ଧରି ନିଜ ପାଳନକର୍ତ୍ତାଙ୍କ ଆଜ୍ଞାର ପ୍ରତୀକ୍ଷା କର । ତୁମେ ଆମ୍ଭର ଆଖି ସାମନାରେ ଅଛ । ଯେତେବେଳେ ନିଦରୁ ଉଠ, ନିଜ ପାଳନକର୍ତ୍ତାଙ୍କର ସ୍ତୁତି ଓ ଗୁଣଗାନ କର, ୪୯. ଏବଂ ରାତି ବେଳେ ଏବଂ ନକ୍ଷତ୍ରମାନେ ଅସ୍ତ ହେବା ସମୟରେ ମଧ୍ୟ ତାଙ୍କର ଗୁଣଗାନ କର ।

## ଅଧ୍ୟାୟ ୫୩, ଅନ୍ ନଜ୍ମ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅସ୍ତଗାମୀ ନକ୍ଷତ୍ରର ରାଣ! ୨. (ହେ ମକ୍କାବାସୀ!) ତୁମମାନଙ୍କର ସାଥୀ (ମୁହମ୍ମଦ) ପଥଭ୍ରଷ୍ଟ ହୋଇନାହାନ୍ତି କି ବିଭ୍ରାନ୍ତ ହୋଇନାହାନ୍ତି । ୩. ସେ ତାଙ୍କ ମନରୁ କହୁ ନାହାନ୍ତି । ୪. ତାଙ୍କୁ ଦୈବବାଣୀ କରାଯାଉଛି । ୫. ଜଣେ ମହାଶକ୍ତିଶାଳୀ ଦେବଦୂତ ତାଙ୍କୁ ଶିକ୍ଷା ଦେଇଛନ୍ତି । ୬. ସେ ମହାଜ୍ଞାନୀ । ପୁଣି ସେ ଉଭା ହେଲେ । ୭. (ସେତେବେଳେ) ସେ ସୁଦୂର ଦିଗବଳୟରେ ଥିଲେ । ୮. ପୁଣି ସେ ପାଖକୁ ଆସିଲେ ଏବଂ (ମୁହମ୍ମଦଙ୍କ) ନିକଟତର ହୋଇଗଲେ । ୯. ଏପରିକି (ଦୁହିଁଙ୍କ ମଧ୍ୟରେ) ଦୁଇଟି ଧନୁର ବ୍ୟବଧାନ ରହିଗଲା ବା ତା'ଠାରୁ କିଛି କମ୍ । ୧୦. ପୁଣି ଅଲ୍ଲାହ୍ ତାଙ୍କ ଭକ୍ତଙ୍କୁ ଯାହା ଆଦିଷ୍ଟବାଣୀ କରିବାର ଥିଲା, କଲେ । ୧୧. ସେ ଯାହା ଦେଖିଲେ ତାଙ୍କ ମନ ତାହାକୁ ମିଥ୍ୟା ମନେ କରିନାହିଁ । ୧୨. କ'ଣ ତାଙ୍କ ଦେଖିବା ବିଷୟରେ ତୁମେମାନେ ଝଗଡ଼ା କରୁଛ ?

୧୩. ସେ ସେହି ଦେବଦୂତଙ୍କୁ ଆଉଥରେ ମଧ୍ୟ ଦେଖିଥିଲେ । ୧୪. 'ସିଦ୍‌ରତୁଲ୍ ମୁନ୍‌ତହା' ନାମକ ବୃକ୍ଷ ନିକଟରେ । ୧୫. ବୈକୁଣ୍ଠ ନିବାସ ଏହାରି ପାଖରେ ଅବସ୍ଥିତ । ୧୬. ସେତେବେଳେ ଏହି ବୃକ୍ଷ ଏକ ଅପୂର୍ବ ଜ୍ୟୋତିରେ ଆଚ୍ଛାଦିତ ଥିଲା । ୧୭. ତାଙ୍କ ଦୃଷ୍ଟି ଇତସ୍ତତଃ ହୋଇ ନଥିଲା ବା ସୀମାଲଂଘନ କରି ନଥିଲା । ୧୮. ସେ ଅବଶ୍ୟ ନିଜ ପ୍ରଭୁଙ୍କର ଅନେକ ବଡ଼ବଡ଼ ନିଦର୍ଶନ ଦେଖିଥିଲେ ।

୧୯. କ'ଣ ତୁମେମାନେ ଲାତ୍ ଓ ଉଜ୍ଜା (ଆରବରେ ପୂଜିତ ହେଉଥିବା ଦୁଇ ଠାକୁର)ଙ୍କ ବିଷୟରେ ବିଚାର କରିଛ? ୨୦. ଆଉ ସେ ତୃତୀୟଜଣକ ବିଷୟରେ ଯାହାକୁ ମନାତ୍ କୁହାଯାଏ? ୨୧. କ'ଣ ତୁମମାନଙ୍କ ଭାଗରେ ପୁତ୍ର ଆସିଲେ ଆଉ ଅଲ୍ଲାହଙ୍କ ଭାଗରେ କନ୍ୟା? ୨୨. ଏହା ତ ଏକ ଅନୁଚିତ ବଣ୍ଟନ ହେଲା? ୨୩. ପ୍ରକୃତରେ ଏଗୁଡ଼ିକ କେତୋଟି (କାଳ୍ପନିକ) ନାମ ଯାହା ତୁମେ ଆଉ ତୁମ ବାପଅଜା ରଖି ଦେଇଛ। ଅଲ୍ଲାହ୍ ସେମାନଙ୍କ ସପକ୍ଷରେ କୌଣସି ପ୍ରମାଣ ପଠାଇନାହାନ୍ତି। ଏମାନେ ଇନ୍ଦ୍ରିୟ ବଶବର୍ତ୍ତୀ ହୋଇ କେବଳ ଅନୁମାନରେ ଏହା କରୁଛନ୍ତି। ଏମାନଙ୍କୁ ଈଶ୍ୱରଙ୍କ ଦ୍ୱାରା ମାର୍ଗଦର୍ଶନ କରା ଯାଇସାରିଛି। ୨୪. କ'ଣ ମଣିଷ ଯାହା କାମନା କରେ ତାହା ପାଇଯାଏ? ୨୫. ଉଭୟ ଇହଲୋକ ଓ ପରଲୋକର ଅଲ୍ଲାହ୍ ହିଁ ମାଲିକ।

୨୬. ସ୍ୱର୍ଗରେ ଅସଂଖ୍ୟ ଦେବଦୂତ ଅଛନ୍ତି, କିନ୍ତୁ ସେମାନଙ୍କର ସୁପାରିଶ କାହାରି ପାଇଁ କାମ ଦେବନାହିଁ। ହଁ, ଅଲ୍ଲାହ୍ ଯାହାକୁ ପସନ୍ଦ କରିବେ ଏବଂ ଯାହା ପାଇଁ ଚାହିଁବେ ତା' ପାଇଁ ଏହି ଅନୁମତି ଦେବେ। ୨୭. ଯେଉଁମାନଙ୍କର ପରଲୋକରେ ବିଶ୍ୱାସ ନାହିଁ, ସେମାନେ ଦେବଦୂତମାନଙ୍କୁ ନାରୀମାନଙ୍କର ନାମରେ ନାମକରଣ କରନ୍ତି (ଅର୍ଥାତ୍ ଦେବୀ ଆଖ୍ୟା ଦିଅନ୍ତି)। ୨୮. ଅଥଚ ଏ ବିଷୟରେ ସେମାନଙ୍କର କୌଣସି ଜ୍ଞାନ ନାହିଁ। ସେମାନେ କେବଳ ଅନୁମାନ କରୁଛନ୍ତି। ବାସ୍ତବତା ତୁଳନାରେ ଅନୁମାନ କିଛି କାମ ଦିଏନାହିଁ।

୨୯. (ହେ ବାର୍ତ୍ତାବହ!) ଯିଏ ଆମ୍ଭ ଉପଦେଶକୁ ଉପେକ୍ଷା କରେ ଏବଂ କେବଳ ସାଂସାରିକ ଜୀବନର ସୁଖ ଚାହେଁ, ତୁମେ ତାକୁ ତା' ଅବସ୍ଥାରେ ଛାଡ଼ିଦିଅ। ୩୦. ସେମାନଙ୍କର ଜ୍ଞାନର ସୀମା ଏତିକି। ତୁମ ଈଶ୍ୱର ଭଲରୂପେ ଜାଣନ୍ତି ଯେ କିଏ ତାଙ୍କ ମାର୍ଗରୁ ବିଚ୍ୟୁତ ହେଲା ଏବଂ ଏହା ମଧ୍ୟ ଜାଣନ୍ତି ଯେ କିଏ ସତ୍‌ମାର୍ଗରେ ଅଛି। ୩୧. ପୃଥିବୀ ଓ ଆକାଶରେ ଯାହା ଅଛି, ସବୁ ଅଲ୍ଲାହଙ୍କର। ସେ ଏହି ଉଦ୍ଦେଶ୍ୟରେ (ସୃଷ୍ଟିର ରଚନା) କରିଛନ୍ତି ଯେ କୁକର୍ମ କରୁଥିବା ଲୋକମାନଙ୍କୁ ସେମାନଙ୍କ କର୍ମର ଫଳ ଦେବେ ଏବଂ ଭଲ କର୍ମ କରୁଥିବା ଲୋକମାନଙ୍କୁ ଭଲ ପୁରସ୍କାର ଦେବେ।

୩୨. ଯେଉଁମାନେ ସାମାନ୍ୟ ଦୋଷତ୍ରୁଟି ବ୍ୟତୀତ ବଡ଼ବଡ଼ ପାପ ଓ ଅଶ୍ଳୀଳ ଆଚରଣରୁ ବିରତ ରହନ୍ତି, (ସେମାନେ ଜାଣି ରଖନ୍ତୁ ଯେ) ଈଶ୍ୱର ଅତ୍ୟନ୍ତ କ୍ଷମାଶୀଳ । ସେ ତୁମମାନଙ୍କୁ ସେହି ସମୟରୁ ଭଲଭାବରେ ଜାଣନ୍ତି ଯେତେବେଳେ ସେ ତୁମମାନଙ୍କୁ ମାଟିରୁ ସୃଷ୍ଟି କରିଥିଲେ ଏବଂ ଯେତେବେଳେ ତୁମେମାନେ ମାତୃଗର୍ଭରେ ଭୃଣ ଅବସ୍ଥାରେ ଥିଲ । ତେଣୁ ନିଜକୁ ପବିତ୍ର ମନେ କରନାହିଁ । ସଦାଚାରୀ କିଏ, ଏହା ତାଙ୍କୁ ଭଲରୂପେ ଜଣା ।

୩୩. କ'ଣ ତୁମେ ସେହି ଲୋକକୁ ଦେଖିଲ ଯିଏ ଅସ୍ୱୀକାର କଲା ? ୩୪. ଏବଂ ଅଳ୍ପ ଦେଇ ରହିଗଲା ? ୩୫. କ'ଣ ଅଦୃଷ୍ଟ ବିଷୟରେ ତା'ର ଜ୍ଞାନ ଅଛି ଯାହାଫଳରେ ସେ (ବାସ୍ତବିକତା) ଦେଖିପାରୁଛି ?

୩୬. କ'ଣ ତାକୁ ଏହାର ସୂଚନା ମିଳିନାହିଁ ଯାହା ମୁ'ସାଙ୍କ ଗ୍ରନ୍ଥରେ ଲେଖା ଅଛି ? ୩୭.ଏବଂ ଇବ୍ରାହିମଙ୍କ ଗ୍ରନ୍ଥରେ ମଧ୍ୟ, ଯିଏ ନିଜର କର୍ତ୍ତବ୍ୟ ପାଳନ କରିଥିଲେ ? ୩୮. ଯେ କେହି କାହାରି (ପାପର) ବୋଝ ମୁଣ୍ଡାଇବ ନାହିଁ, ୩୯. ଏବଂ ମଣିଷକୁ କେବଳ ତାହାରି ଫଳ ମିଳେ, ଯାହାପାଇଁ ସେ ନିଜେ ଚେଷ୍ଟା କରିଥାଏ, ୪୦. ଏବଂ ଏକଥା ମଧ୍ୟ ଲେଖା ଅଛି ଯେ ତା' ଚେଷ୍ଟାର ପରିଣାମ ଶୀଘ୍ର ପ୍ରକାଶ ପାଇବ । ୪୧. ପୁଣି ତାକୁ ତା' କର୍ମର ସଂପୂର୍ଣ୍ଣ ଫଳ ମିଳିବ । ୪୨. ଏବଂ ସମସ୍ତଙ୍କୁ ତୁମ ପ୍ରଭୁଙ୍କ ପାଖକୁ ଯିବାକୁ ହେବ, ୪୩. ଏବଂ ସେ ହିଁ ହସାଇ ଥାଆନ୍ତି ଏବଂ କନ୍ଦାଇ ଥାଆନ୍ତି, ୪୪. ଏବଂ ସେ ହିଁ ମୃତ୍ୟୁ ଦିଅନ୍ତି ଏବଂ ଜୀବନ ଦିଅନ୍ତି । ୪୫. ଏବଂ ଏକଥା ମଧ୍ୟ (ଲେଖା ଅଛି) ଯେ ସେ ହିଁ ଅଣ୍ଡିରା ଓ ମାଇର ଯୋଡ଼ି ସୃଷ୍ଟି କରିଛନ୍ତି, ୪୬. (ଗର୍ଭାଶୟରେ) ପଡୁଥିବା ଏକ ଶୁକ୍ରବିନ୍ଦୁରୁ, ୪୭. ଏବଂ ପୁନର୍ବାର ଜୀବିତ କରିବା ତାଙ୍କରି ଦାୟିତ୍ୱ । ୪୮. ଏହା ମଧ୍ୟ ଲେଖା ଅଛି ଯେ ସେ ହିଁ ଧନୀ କରନ୍ତି ଏବଂ ସେ ହିଁ ଦରିଦ୍ର କରନ୍ତି, ୪୯. ଏବଂ ସେ ହିଁ 'ଶୋରା' (ଅର୍ଥାତ୍ ଲୁବ୍ଧକ) ନାମକ ନକ୍ଷତ୍ରର ପ୍ରଭୁ, ୫୦. ଏକଥା ମଧ୍ୟ ଯେ ସେ ପ୍ରାଚୀନ ଆଦ୍ ସଂପ୍ରଦାୟର ବିନାଶ କରିଥିଲେ, ୫୧. ଆଉ ସମୁଦ୍ ସଂପ୍ରଦାୟର ମଧ୍ୟ ବିନାଶ କରିଥିଲେ ଏବଂ କାହାରିକୁ ଛାଡ଼ି ନଥିଲେ । ୫୨. ଏମାନଙ୍କ ପୂର୍ବରୁ ସେ ନୁହଙ୍କ ସଂପ୍ରଦାୟକୁ ଧ୍ୱଂସ କରିଥିଲେ । ସେମାନେ ଭାରି ଅହଙ୍କାରୀ ଓ ଦୁରାଚାରୀ ଥିଲେ ।

୫୩. (ଲୁତ୍‌ଙ୍କ) ବିଧ୍ୱସ୍ତ ସହରକୁ ସେ ହିଁ ତଳଉପର କରି ଦେଇଥିଲେ । ୫୪. ପୁଣି ସେମାନଙ୍କ ଉପରେ ଯାହା ବର୍ଷିବାର ଥିଲା, ବର୍ଷିଗଲା । ୫୫. ତେଣୁ, (ହେ ମାନବ !) ତୋ' ପାଳନକର୍ତ୍ତାଙ୍କର କେଉଁ ଉପକାର ବିଷୟରେ ତୁ ସନ୍ଦେହ କରୁଛୁ ?

୫୬. ଏହି ବାର୍ତ୍ତାବହ ମଧ୍ୟ ପୂର୍ବ ବାର୍ତ୍ତାବହମାନଙ୍କ ପରି ଜଣେ ବାର୍ତ୍ତାବହ ଯିଏ ତୁମମାନଙ୍କୁ ସାବଧାନ କରିବା ପାଇଁ ଆସିଛନ୍ତି । ୫୭. ପ୍ରଳୟର ସମୟ ପାଖେଇ ଆସିଲାଣି । ୫୮. ଅଲ୍ଲାହଙ୍କ ବ୍ୟତୀତ କେହି ଏହାକୁ ରୋକି ପାରିବେନାହିଁ । ୫୯. କ'ଣ ତୁମେମାନେ ଏହି କଥା ଶୁଣି ଆଶ୍ଚର୍ଯ୍ୟ ହେଉଛ ? ୬୦. ତୁମମାନଙ୍କୁ ହସ ଲାଗୁଛି ଅଥଚ କାନ୍ଦ ଲାଗୁନାହିଁ ? ୬୧. ତୁମେମାନେ ଖେଳତାମସାରେ ମାତିଛ ? ୬୨. ଅଲ୍ଲାହଙ୍କୁ ପ୍ରଣିପାତ କର ଏବଂ ତାଙ୍କରି ସେବା-ଉପାସନା କର । [ପ୍ରଣାମ]

## ଅଧ୍ୟାୟ ୫୪, ଅଲ୍ କମର୍

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ପ୍ରଳୟ ସମୟ ପାଖେଇ ଆସିଲା ଏବଂ ଚନ୍ଦ୍ର ଦୁଇଭାଗ ହୋଇଗଲା । ୨. ଏମାନେ ଯେକୌଣସି ନିଦର୍ଶନ ଦେଖିଲେ ମଧ୍ୟ ତାହାକୁ ଅସ୍ୱୀକାର କରିଦିଅନ୍ତି ଏବଂ କହନ୍ତି ଯେ ଏହା ପୂର୍ବକାଳରୁ ହୋଇ ଆସୁଥିବା ଯାଦୁଖେଳ । ୩. ସେମାନେ ସତ୍ୟକୁ ପ୍ରତ୍ୟାଖ୍ୟାନ କରିଦେଲେ ଏବଂ ଇନ୍ଦ୍ରିୟ ବଶବର୍ତ୍ତୀ ହୋଇଗଲେ । ପ୍ରତ୍ୟେକ କାର୍ଯ୍ୟର କିଛି ନା କିଛି ପରିଣାମ ହୁଏ ।

୪. ଏମାନଙ୍କୁ (ଅତୀତରେ ଘଟିଥିବା) ଘଟଣାଗୁଡ଼ିକର ଖବର ମିଳିସାରିଛି ଯାହା ସେମାନଙ୍କୁ ସତର୍କ କରିବା ପାଇଁ ଯଥେଷ୍ଟ ଥିଲା । ୫. ସେଥିରେ ବିଜ୍ଞତାପୂର୍ଣ୍ଣ ଉପଦେଶ ମଧ୍ୟ ଥିଲା, ମାତ୍ର ଚେତାବନୀ ସେମାନଙ୍କ ପାଇଁ ଲାଭକାରୀ ହେଉନାହିଁ । ୬. ତେଣୁ ସେମାନଙ୍କୁ ଉପେକ୍ଷା କର । ଯେଉଁଦିନ ଜଣେ ଦେବଦୂତ ଏକ ଭୟଙ୍କର ବିପଦ ଆଡ଼କୁ ଡାକିବେ, ୭. ସେଦିନ ସେମାନେ ଦୃଷ୍ଟି ତଳକୁ କରି ନିଜନିଜର କବର ମଧ୍ୟରୁ ଏମିତି ବାହାରିବେ ଯେମିତି ବିକ୍ଷିପ୍ତ ପଙ୍ଗପାଳ, ୮. ଏବଂ ଡାକୁଥିବା ଦେବଦୂତଙ୍କ ପାଖକୁ ଧାଇଁବେ । ଯେଉଁମାନେ (ପ୍ରଳୟ ଦିନକୁ) ଅସ୍ୱୀକାର କରୁଥିଲେ ସେମାନେ କହିବେ, "ଏହି ଦିନଟି ଭାରି କଷ୍ଟଦାୟକ ।"

୯. ଏମାନଙ୍କ ପୂର୍ବରୁ ନୁହ୍‌ଙ୍କ ସଂପ୍ରଦାୟ ମଧ୍ୟ (ଈଶ୍ୱରଦୂତଙ୍କୁ) ମିଥ୍ୟାବାଦୀ କହିଥିଲା। ସେମାନେ ଆମ୍ଭ ଭକ୍ତଙ୍କୁ ପାଗଳ କହିଲେ ଏବଂ ତାଙ୍କୁ ଧମକ ଦେଲେ। ୧୦. ତେଣୁ ନୁହ୍ ତାଙ୍କ ପ୍ରଭୁଙ୍କୁ ପ୍ରାର୍ଥନା କଲେ, "(ହେ ପ୍ରଭୁ!) ମୁଁ ଅସହାୟ ହୋଇ ପଡ଼ିଛି, ମୋତେ ସାହାଯ୍ୟ କର! ୧୧. ତେଣୁ ଆମ୍ଭେ ଆକାଶର ଦ୍ୱାର ଖୋଲି ଦେଇଥିଲୁ ଆଉ ପ୍ରବଳ ବର୍ଷା କରିଥିଲୁ, ୧୨. ଏବଂ ଭୂପୃଷ୍ଠରେ ଅନେକ ଝର ସୃଷ୍ଟି କରି ଦେଇଥିଲୁ ଯାହାଫଳରେ ଉଭୟ ଜଳ ନିର୍ଦ୍ଧାରିତ ଲକ୍ଷ୍ୟ ହାସଲ କରିବା ପାଇଁ ଏକାଠି ଜମା ହୋଇ ଯାଇଥିଲା। ୧୩. ଆମ୍ଭେ ନୁହଙ୍କୁ ଏକ ନୌକାରେ ବସାଇ ଦେଇଥିଲୁ ଯାହାକୁ ପଟା ଓ କଣ୍ଟାରେ ଗଢ଼ା ଯାଇଥିଲା। ୧୪. ଏହା ଆମ୍ଭ ଆଖି ସାମନାରେ ଚାଲୁଥିଲା। ଏହା ତାଙ୍କ ପକ୍ଷରୁ ପ୍ରତିଶୋଧ ଥିଲା ଯାହାଙ୍କୁ ପ୍ରତ୍ୟାଖ୍ୟାନ କରିଦିଆ ଯାଇଥିଲା। ୧୫. ଏହି ଘଟଣାକୁ ଆମ୍ଭେ ଏକ ନିଦର୍ଶନ କରିଦେଲୁ। କ'ଣ କେହି ଅଛି, ଯିଏ ଏଥିରୁ ଶିକ୍ଷାଲାଭ କରିବ? ୧୬. ଦେଖ, ମୁଁ କିଭଳି ଡରାଏ ଏବଂ କିଭଳି ଶାସ୍ତି ଦିଏ। ୧୭. ଆମ୍ଭେ କୁରଆନକୁ ସହଜ କରିଦେଇଛୁ ଯେପରିକି ଲୋକେ ଏଥିରୁ ଶିକ୍ଷାଲାଭ କରିବେ। କ'ଣ କେହି ଅଛି, ଯିଏ ଏହାର ଶିକ୍ଷା ଗ୍ରହଣ କରିବ?

୧୮. ଆଦ୍ ସଂପ୍ରଦାୟ ମଧ୍ୟ (ଈଶ୍ୱରଦୂତଙ୍କୁ) ପ୍ରତ୍ୟାଖ୍ୟାନ କରିଥିଲା। ଦେଖ, ମୁଁ କିଭଳି ଡରାଏ ଏବଂ କିଭଳି ଶାସ୍ତି ଦିଏ। ୧୯. ଆମ୍ଭେ ସେମାନଙ୍କ ଉଦ୍ଦେଶ୍ୟରେ ଏକ ଭୟଙ୍କର ବାତ୍ୟା ପଠାଇଥିଲୁ ଯାହା ନିରନ୍ତର ଲାଗି ରହିଥିଲା। ଏହା (ସେମାନଙ୍କ ପାଇଁ) ଏକ ଅଶୁଭ ଦିନ ଥିଲା। ୨୦. ଏହା ଲୋକମାନଙ୍କୁ ଏମିତି କଚାଡ଼ି ପକାଇ ଦେଉଥିଲା ସତେଯେମିତି ସେମାନେ ଉପୁଡ଼ି ପଡିଥିବା ଖଜୁରୀ ଗଛର ଗଣ୍ଡି। ୨୧. ଦେଖ, ମୁଁ କିଭଳି ଡରାଏ ଏବଂ କିଭଳି ଶାସ୍ତି ଦିଏ। ୨୨. ଆମ୍ଭେ କୁରଆନକୁ ସହଜ କରିଦେଇଛୁ ଯେପରିକି ଲୋକେ ଏଥିରୁ ଶିକ୍ଷାଲାଭ କରିବେ। କ'ଣ କେହି ଅଛି, ଯିଏ ଏହାର ଶିକ୍ଷା ଗ୍ରହଣ କରିବ?

୨୩. ସମୁଦ୍ ସଂପ୍ରଦାୟର ଲୋକମାନେ ମଧ୍ୟ (ଆମ୍ଭ ବାର୍ତ୍ତାବହଙ୍କ) ଚେତାବନୀକୁ ମିଥ୍ୟା ବୋଲି କହିଲେ। ୨୪. ସେମାନେ କହିଲେ, "କ'ଣ ଆମରି ଲୋକଙ୍କ ଭିତରୁ ଜଣେ ଲୋକର କଥାରେ ଆମେ ଚଳିବୁ? ତା'ହେଲେ ଆମେ

ପଥଭ୍ରଷ୍ଟ ହୋଇଯିବୁ ଏବଂ ଏହା ଆମର ପାଗଳାମି ହେବ । ୨୫. କ'ଣ ଆମେ ଏତେ ଲୋକ ଥାଉଥାଉ ତାଙ୍କରି ପ୍ରତି ଦୈବବାଣୀ ହେଲା ? ବରଂ, ସେ ଜଣେ ମିଥ୍ୟାବାଦୀ ଏବଂ ଆତ୍ମାଭିମାନୀ ବ୍ୟକ୍ତି ।" ୨୬. ଆଗାମୀ ଦିନରେ ସେମାନେ ଜାଣିଯିବେ ଯେ କିଏ ମିଥ୍ୟାବାଦୀ ବା ଆତ୍ମଗର୍ବୀ ଥିଲା । ୨୭. (ଆମ୍ଭେ ବାର୍ତ୍ତାବହ ସ୍ୱାଲେହଙ୍କୁ କହିଲୁ) "ସେମାନଙ୍କର ପରୀକ୍ଷା ନେବା ପାଇଁ ଆମ୍ଭେ ଏକ ମାଈ ଓଟ ପଠାଉଛୁ । ତୁମେ ଧୈର୍ଯ୍ୟ ଧରି (ସେମାନଙ୍କ କାର୍ଯ୍ୟକଳାପ) ଦେଖୁଥାଅ, ୨୮. ଏବଂ ସେମାନଙ୍କୁ ଜଣାଇ ଦିଅ ଯେ ସେମାନଙ୍କ ମଧ୍ୟରେ (କୂଅ) ପାଣିର ବଣ୍ଟନ କରି ଦିଆଯାଇଛି । ସେମାନେ ନିଜ ପାଳି ଦିନ ହିଁ (ପାଣି ପାଇଁ) ଆସିବେ ।" ୨୯. କିନ୍ତୁ ସେମାନେ ନିଜର ଜଣେ ଲୋକକୁ ଡାକିଲେ ଯିଏ (ଓଟଟିକୁ) ଆକ୍ରମଣ କରି ତାକୁ ମାରିଦେଲା । ୩୦. ଦେଖ, ମୁଁ କିଭଳି ଡରାଏ ଏବଂ କିଭଳି ଶାସ୍ତି ଦିଏ । ୩୧. ଆମ୍ଭେ ଏକ ଭୟଙ୍କର ଶବ୍ଦ ସୃଷ୍ଟି କଲୁ ଯାହାଫଳରେ ସେମାନଙ୍କ ଅବସ୍ଥା ବାଡ଼ ଦେଉଥିବା ଲୋକ ଦଳିଚକଟି ଦେଇଥିବା ଶୁଖିଲା ଡାଳପତ୍ର ସଦୃଶ ହୋଇଗଲା । ୩୨. ଆମ୍ଭେ କୁରଆନକୁ ସହଜ କରିଦେଇଛୁ ଯେପରିକି ଲୋକେ ଏଥିରୁ ଶିକ୍ଷାଲାଭ କରିବେ । କ'ଣ କେହି ଅଛି, ଯିଏ ଏହାର ଶିକ୍ଷା ଗ୍ରହଣ କରିବ ?

୩୩. ଲୁତ୍‌ଙ୍କ ସଂପ୍ରଦାୟର ଲୋକମାନେ ମଧ୍ୟ ଆମ୍ଭ (ବାର୍ତ୍ତାବହଙ୍କ) ଚେତାବନୀକୁ ମିଥ୍ୟା ବୋଲି କହିଲେ । ୩୪. ତେଣୁ ଆମ୍ଭେ ସେମାନଙ୍କ (ବିନାଶ) ପାଇଁ ପଥର ବୃଷ୍ଟିକାରୀ ଏକ ବାତ୍ୟା ପଠାଇଲୁ । କେବଳ ଲୁତ୍‌ଙ୍କ ପରିବାରକୁ ରକ୍ଷା କରିଥିଲୁ, ଯେଉଁମାନଙ୍କୁ ଆମ୍ଭେ ରାତିର ଶେଷ ପ୍ରହରରେ ଉଦ୍ଧାର କରି ନେଇଥିଲୁ । ୩୫. ଏହା ଆମ୍ଭର ଅନୁଗ୍ରହ ଥିଲା । ଯିଏ (ଆମ୍ଭ ପ୍ରତି) କୃତଜ୍ଞ ହୁଏ, ଆମ୍ଭେ ତାକୁ ଏଇଭଳି ପୁରସ୍କାର ଦେଇଥାଉ । ୩୬. ଲୁତ୍ ଆମ୍ଭର ଶାସ୍ତି ବିଷୟରେ ସେମାନଙ୍କୁ ସତର୍କ କରିଥିଲେ କିନ୍ତୁ ସେମାନେ ଏହି ଚେତାବନୀ ପ୍ରତି ସନ୍ଦେହ କଲେ । ୩୭. ସେମାନେ (ମନ୍ଦ ଉଦ୍ଦେଶ୍ୟରେ) ତାଙ୍କ ଅତିଥିମାନଙ୍କୁ ନେଇଯିବାକୁ ଚାହିଁଲେ । ତେଣୁ ଆମ୍ଭେ ସେମାନଙ୍କ ଆଖିକୁ ନଷ୍ଟ କରିଦେଲୁ । ଦେଖ, ମୁଁ କିଭଳି ଡରାଏ । ଏବେ ମୋ' ଶାସ୍ତିର ମଜା ଚଖ । ୩୮. ସକାଳୁସକାଳୁ ସେମାନଙ୍କ ଉପରେ ସେହି ବିପଦ ମାଡ଼ି ଆସିଲା ଯାହା (ସେମାନଙ୍କ ପାଇଁ) ସ୍ଥିର ହୋଇଥିଲା । ୩୯. ଦେଖ, ମୁଁ କିଭଳି ଡରାଏ । ଏବେ ମୋ' ଶାସ୍ତିର ମଜା ଚାଖ । ୪୦. ଆମ୍ଭେ କୁରଆନକୁ

ସହଜ କରିଦେଇଛୁ ଯେପରିକି ଲୋକେ ଏଥିରୁ ଶିକ୍ଷାଲାଭ କରିବେ । କ'ଣ କେହି ଅଛି, ଯିଏ ଏହାର ଶିକ୍ଷା ଗ୍ରହଣ କରିବ ?

୪୧. ଫିରଔନର ଲୋକମାନଙ୍କ ପାଖକୁ ମଧ୍ୟ ସାବଧାନ କରିବା ପାଇଁ ବାର୍ତ୍ତାବହ ଆସିଥିଲେ । ୪୨.ସେମାନେ ଆମ୍ଭର ସବୁ ନିଦର୍ଶନକୁ ମିଥ୍ୟା ବୋଲି କହିଲେ । ତେଣୁ, ଆମ୍ଭେ ସେମାନଙ୍କୁ ସେହିପରି ଦଣ୍ଡ ଦେଲୁ ଯେପରି ଜଣେ ପରାକ୍ରମୀ ବୀର ଦେଇଥାଏ ।

୪୩. (ହେ ମକ୍କାବାସୀ!) କ'ଣ ତୁମମାନଙ୍କ ମଧ୍ୟରେ ଥିବା ନାସ୍ତିକମାନେ ପୂର୍ବର ନାସ୍ତିକମାନଙ୍କଠାରୁ ଅଧିକ ସମୃଦ୍ଧ ବା ପୂର୍ବ ଗ୍ରନ୍ଥମାନଙ୍କରେ ତୁମମାନଙ୍କ ମୁକ୍ତିର କୌଣସି ବଚନ ଦିଆଯାଇଛି ? ୪୪. ଅଥବା ଏମାନେ କହୁଛନ୍ତି ଯେ ଏମାନଙ୍କ ଦଳ ବିଜୟୀ ହେବ? ୪୫. ଖୁବ୍ ନିକଟରେ ସେମାନଙ୍କ ଦଳ ପରାଜିତ ହେବ ଏବଂ ସେମାନେ ପୃଷ୍ଠଭଙ୍ଗ ଦେଇ ପଳାୟନ କରିବେ । ୪୬. ସେମାନଙ୍କ (ଶାସ୍ତି ପାଇଁ) ବିଚାରର ସମୟ ସ୍ଥିର ହୋଇ ସାରିଛି ଯାହା ଭାରି ଦୁଃଖଦ ଏବଂ ପୀଡ଼ାଦାୟକ ଦିନ ହେବ । ୪୭. ଏହି ପାପିଷ୍ଠମାନେ ବିଭ୍ରାନ୍ତ ହୋଇ ଯାଇଛନ୍ତି ଏବଂ ସେମାନଙ୍କର ବୁଦ୍ଧିଭ୍ରଷ୍ଟ ହୋଇ ଯାଇଛି । ୪୮. ସେଦିନ ସେମାନଙ୍କୁ ତଳମୁହାଁ କରି ନିଆଁ ଭିତରକୁ ଘୋଷାରି ନିଆଯିବ (ଏବଂ କୁହାଯିବ) "ଏବେ ନିଆଁରେ ପୋଡ଼ା ହେବାର ମଜା ଚାଖ ।"

୪୯. ଆମ୍ଭେ ପ୍ରତ୍ୟେକ ବସ୍ତୁକୁ ସଠିକ୍ ମାତ୍ରାରେ ସୃଷ୍ଟି କରିଛୁ । ୫୦. ଆମ୍ଭର ଆଜ୍ଞା ଆଖିର ପଲକ ପଡ଼ିବା ପରି (ତୁରନ୍ତ) ପାଳନ କରାଯାଏ । ୫୧. (ଅତୀତରେ) ଆମ୍ଭେ ତୁମମାନଙ୍କ ପରି ଅସଂଖ୍ୟ ଲୋକଙ୍କର ବିନାଶ କରିସାରିଛୁ । କ'ଣ କେହି ଅଛି, ଯିଏ ଉପଦେଶ ଗ୍ରହଣ କରିବ ? ୫୨. ସେମାନେ ଯେଉଁ କର୍ମ କରିଛନ୍ତି, ସେଗୁଡ଼ିକ ସେମାନଙ୍କ କର୍ମ ପଞ୍ଜିକାରେ ଲେଖା ହୋଇ ରହିଛି । ୫୩. ପ୍ରତ୍ୟେକ ଛୋଟ ଓ ବଡ଼ କର୍ମ ଲେଖା ହୋଇ ରହେ ।

୫୪. ସଦାଚାରୀମାନେ (ବୈକୁଣ୍ଠରେ) ଉଦ୍ୟାନ ଓ ଝରଣାର ଆନନ୍ଦ ନେବେ, ୫୫. ଏକ ଗୌରବମୟ ଧାମରେ ଏବଂ ସର୍ବଶକ୍ତିମାନ ଜଗଦୀଶ୍ୱରଙ୍କ ନିକଟରେ ।

## ଅଧ୍ୟାୟ ୫୫, ଅର୍ ରହ୍‌ମାନ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଦୟାମୟ ୨. କୁରଆନର ଶିକ୍ଷା ଦେଲେ, ୩. ମାନବ ସୃଷ୍ଟି କଲେ, ୪. (ଏବଂ) ତାକୁ କଥା କହିବା ଶିଖାଇଲେ ।

୫. ସୂର୍ଯ୍ୟ ଓ ଚନ୍ଦ୍ର ଏକ ନିର୍ଦ୍ଦିଷ୍ଟ ନିୟମରେ ବନ୍ଧା ହୋଇଛନ୍ତି, ୬. ଏବଂ ବୃକ୍ଷଲତା ପ୍ରଣାମରତ ଅଛନ୍ତି । ୭. ସେ ଆକାଶକୁ ଉଚ୍ଚ କଲେ ଏବଂ (ନ୍ୟାୟର) ନିକିତି ସ୍ଥାପନ କଲେ, ୮. ଯେପରିକି ତୁମେମାନେ ମାପ-ଓଜନରେ ସୀମାଲଂଘନ ନକର । ୯. ନ୍ୟାୟସଂଗତ ଭାବରେ ଓଜନ କର ଏବଂ ଓଜନରେ ଠକନାହିଁ ।

୧୦. ସେ ହିଁ ପ୍ରାଣୀମାନଙ୍କ ପାଇଁ ଧରିତ୍ରୀ ସୃଷ୍ଟି କଲେ । ୧୧. ସେଥିରେ ବିଭିନ୍ନ ପ୍ରକାରର ଫଳମୂଳ ଏବଂ ଖଜୁରୀ ଗଛ ଅଛି ଯାହାର ଫଳ ଉପରେ ଆବରଣ ଥାଏ । ୧୨. ଏବଂ ଭୁଶି ଥିବା ଶସ୍ୟ ଓ ସୁବାସିତ ଫୁଲ ମଧ୍ୟ । ୧୩. (ହେ ମାନବ ଓ ଜିନ୍ ସମାଜ) ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ? ୧୪. ସେ ମାନବକୁ ଶୁଷ୍କ ଚିକିଟା ମାଟିରୁ ସୃଷ୍ଟି କଲେ । ୧୫. ଏବଂ ଜିନ୍‌ମାନଙ୍କୁ ଅଗ୍ନିଶିଖାରୁ ସୃଷ୍ଟି କଲେ । ୧୬. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ? ୧୭. ସେ ଦୁଇ ପୂର୍ବ ଓ ଦୁଇ ପଶ୍ଚିମର ଅଧୀଶ୍ୱର । ୧୮. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ?

୧୯. ସେ ଦୁଇଟି ସମୁଦ୍ରକୁ ଏଭଳି ଭାବରେ ପ୍ରବାହିତ କରିଛନ୍ତି ଯେ ଉଭୟ ପରସ୍ପର ସହିତ ମିଶିଯାଆନ୍ତି, ୨୦. କିନ୍ତୁ ସେମାନଙ୍କ ମଝିରେ ଏକ (ଅଦୃଶ୍ୟ) ପ୍ରତିବନ୍ଧକ ଅଛି, ଯାହାକୁ ସେମାନେ ଅତିକ୍ରମ କରନ୍ତି ନାହିଁ । ୨୧. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ? ୨୨. ଉଭୟ ସମୁଦ୍ରରୁ ମୁକ୍ତା ଓ ପ୍ରବାଳ ବାହାରେ । ୨୩. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ? ୨୪. ସମୁଦ୍ର ବକ୍ଷରେ ଚାଲୁଥିବା ପାହାଡ଼ ସଦୃଶ ଜାହାଜଗୁଡ଼ିକ ତାଙ୍କରି ନିୟନ୍ତ୍ରଣରେ ଥାଏ । ୨୫. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ?

୨୬. ପୃଥିବୀରେ ଯାହାକିଛି ଅଛି ସବୁ ଲୋପ ପାଇଯିବ । ୨୭. କେବଳ ତୁମର ପ୍ରଭୁଙ୍କ ସତ୍ତା ହିଁ ଅବିନାଶୀ ଯିଏ ସକଳ ଗୌରବ ଓ ସମ୍ମାନର ଅଧିକାରୀ । ୨୮. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ? ୨୯. ପୃଥିବୀ ଓ ଆକାଶରେ ଯେଉଁମାନେ ଅଛନ୍ତି, ସମସ୍ତେ ତାଙ୍କୁ ମାଗନ୍ତି । ସେ ପ୍ରତିଦିନ ଏକ ନୂତନ ମହିମାରେ ମଣ୍ଡିତ ଥାଆନ୍ତି । ୩୦. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ?

୩୧. ହେ ମାନବ ଓ ଜିନ୍ ସମୁଦାୟ ! ଆମ୍ଭେ ଶୀଘ୍ର ତୁମମାନଙ୍କର ବିଚାର କରିବୁ । ୩୨. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ? ୩୩. ହେ ମାନବ ଓ ଜିନ୍ ସମାଜ ! ଯଦି ପୃଥିବୀ ଓ ଆକାଶର ସୀମାରୁ ବାହାରି ଯିବାର କ୍ଷମତା ତୁମମାନଙ୍କର ଅଛି, ତେବେ ବାହାରିଯାଅ । ଏହି କ୍ଷମତା ବିନା ତୁମେମାନେ ବାହାରି ପାରିବନାହିଁ । ୩୪. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ? ୩୫. ତୁମମାନଙ୍କ ଉପରେ ଅଗ୍ନିବୃଷ୍ଟି କରାଯିବ ଓ ଧୂଆଁ ଛାଡ଼ି ଦିଆଯିବ ଯାହାର ତୁମେମାନେ ସାମନା କରି ପାରିବନାହିଁ । ୩୬. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ?

୩୭. ଯେତେବେଳେ ଆକାଶ ଫାଟିବ ଏବଂ ନାଲି ଚମଡ଼ା ପରି ଲାଲ୍ ବର୍ଣ୍ଣ ଧାରଣ କରିବ, ୩୮. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ? ୩୯. ସେଦିନ କୌଣସି ମାନବ ବା ଜିନ୍‌କୁ ତା' ପାପ ବିଷୟରେ ପ୍ରଶ୍ନ କରାଯିବ ନାହିଁ (ଯେ ସେ ଏହା କରିଛି ନା ନାହିଁ) । ୪୦. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ? ୪୧. ଅପରାଧୀମାନେ ସେମାନଙ୍କ ମୁହଁରୁ ଚିହ୍ନା ପଡ଼ିଯିବେ ଏବଂ ସେମାନଙ୍କର ଚୁଟି ଓ ପାଦକୁ ଧରି ଘୋଷାରି ନିଆଯିବ । ୪୨. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ? ୪୩. ଏହା ସେହି ନର୍କ ଯାହାକୁ ଅପରାଧୀମାନେ ମିଛ ବୋଲି କହୁଥିଲେ । ୪୪. ସେମାନେ ନର୍କର ନିଆଁ ଓ ଏହାର ଫୁଟନ୍ତା ପାଣି ମଧ୍ୟରେ ଘୁରି ବୁଲୁଥିବେ । ୪୫. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ?

୪୬. ଯିଏ ନିଜ ପାଳନକର୍ତ୍ତାଙ୍କ ସମ୍ମୁଖରେ ଛିଡ଼ା ହେବ ବୋଲି ଭୟ କରୁଥିବ, ତା'ପାଇଁ (ସ୍ୱର୍ଗରେ) ଦୁଇଟି ଉଦ୍ୟାନ ଅଛି । ୪୭. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ? ୪୮. ବହୁଶାଖା ବିଶିଷ୍ଟ ଘନ ବୃକ୍ଷ ମଧ୍ୟ ଅଛି । ୪୯. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ? ୫୦. ଉଭୟ ଉଦ୍ୟାନରେ ଦୁଇଟି ଲେଖାଏଁ ଝରଣା ପ୍ରବାହିତ ହେଉଛି । ୫୧. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ? ୫୨. ଉଭୟ ଉଦ୍ୟାନରେ ପ୍ରତ୍ୟେକ ଫଳର ଦୁଇଟି କିସମ ଅଛି । ୫୩. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ? ୫୪. ବୈକୁଣ୍ଠ ନିବାସୀମାନେ ଏଭଳି ଶେଯ ଉପରେ ତକିଆରେ ଆଉଜି ବସିବେ ଯେଉଁଥିରେ ଗାଢ଼ ରେଶମୀ କପଡ଼ାର ଆସ୍ତରଣ ଥିବ । ଉଭୟ ଉଦ୍ୟାନର ଫଳଗୁଡ଼ିକ (ହାତ ପାଖକୁ) ନଇଁ ଆସୁଥିବ । ୫୫. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ? ୫୬. ସେଠାରେ ଦୃଷ୍ଟି ସଂଯତ ରଖୁଥିବା (ଲାଜକୁଳୀ) ଅପସରାମାନେ ଅଛନ୍ତି ଯେଉଁମାନଙ୍କୁ ସେମାନଙ୍କ ପୂର୍ବରୁ କୌଣସି ମାନବ ବା ଜିନ୍ ସ୍ପର୍ଶ କରିନାହାନ୍ତି । ୫୭. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ? ୫୮. ସତେଯେପରି ସେମାନେ ମୋତି ଓ ମାଣିକ । ୫୯. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ?

୬୦. ଭଲ କର୍ମର ଫଳ ଭଲ ଛଡ଼ା ଆଉ କ'ଣ ହୋଇପାରେ? ୬୧. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ? ୬୨. ଏହି ଦୁଇ ଉଦ୍ୟାନ ବ୍ୟତୀତ ସେଠାରେ ଆଉ ଦୁଇଟି (ବିଶେଷ) ଉଦ୍ୟାନ ମଧ୍ୟ ଅଛି । ୬୩. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ? ୬୪. ଏହା ଘନ ସବୁଜ ବର୍ଣ୍ଣର । ୬୫. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ? ୬୬. ଉଭୟ ଉଦ୍ୟାନରେ ଦୁଇଟି ଲେଖାଏଁ ଝରଣା ପ୍ରବାହିତ ହେଉଛି । ୬୭. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ? ୬୮. ଉଭୟ ଉଦ୍ୟାନରେ ଖଜୁରୀ ଓ ଡାଳିମ୍ବ ଆଦି ବିଭିନ୍ନ ଫଳ ଅଛି । ୬୯. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ? ୭୦. ସେଠାରେ ଗୁଣବତୀ ଓ ରୂପସୀ ତରୁଣୀମାନେ

ଅଛନ୍ତି । ୭୧. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ? ୭୨. ଏହି ଅପସରାଗଣ ବିଳାସପୂର୍ଣ୍ଣ ଶିବିରରେ ରହନ୍ତି । ୭୩. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ? ୭୪. ସେମାନଙ୍କୁ ପୂର୍ବରୁ କୌଣସି ମାନବ ବା ଜିନ୍ ସ୍ପର୍ଶ କରିନାହାନ୍ତି । ୭୫. ତୁମେମାନେ ତୁମ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ? ୭୬. ଏମାନେ ସୁନ୍ଦର ସବୁଜ ଗାଲିଚା ଉପରେ ତକିଆ ଆଉଜି ବସିଥିବେ । ୭୭. ତୁମେମାନେ ନିଜ ପ୍ରଭୁଙ୍କର କେଉଁ ଉପକାରକୁ ଅସ୍ୱୀକାର କରିବ ?

୭୮. ତୁମ ପାଳନକର୍ତ୍ତାଙ୍କ ନାମ ସ୍ମରଣ ଅତ୍ୟନ୍ତ ଶୁଭକର, ଯିଏ ସକଳ ଗୌରବ ଓ ସମ୍ମାନର ଅଧିକାରୀ ।

## ଅଧ୍ୟାୟ ୫୬, ଅଲ୍ ୱାକିଆ

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍ଙ୍କ ନାମରେ

୧. ଯେତେବେଳେ ପ୍ରଳୟ ଘଟିବ, ୨. ଯାହା ଘଟିବା କିଛି ମିଥ୍ୟା ନୁହେଁ । ୩. ଏହାଦ୍ୱାରା (କିଛି ଲୋକଙ୍କର) ଉତ୍ଥାନ ହେବ ଏବଂ (କିଛି ଲୋକଙ୍କର) ପତନ ହେବ ।

୪. ସେତେବେଳେ ଧରିତ୍ରୀକୁ ଭୀଷଣ ଭାବରେ ଦୋହଲାଇ ଦିଆଯିବ, ୫. ଏବଂ ପାହାଡ଼-ପର୍ବତଗୁଡ଼ିକୁ ଚୁନାଚୁନା କରି ଦିଆଯିବ ୬. ଏବଂ ସେଗୁଡ଼ିକ ଧୂଳି ହୋଇ ଉଡ଼ିବାକୁ ଲାଗିବେ, ୭. ସେଦିନ ତୁମେମାନେ ତିନୋଟି ଶ୍ରେଣୀରେ ବିଭକ୍ତ ହୋଇଯିବ ।

୮. ଯେଉଁମାନଙ୍କୁ ଡାହାଣ ହାତରେ କର୍ମପଞ୍ଜିକା ଦିଆଯିବ, ସେମାନେ କେଡେ ଭାଗ୍ୟଶାଳୀ ! ୯. ଏବଂ ଯେଉଁମାନଙ୍କୁ ବାମ ହାତରେ କର୍ମପଞ୍ଜିକା ଦିଆଯିବ, ସେମାନେ କେଡେ ହତଭାଗା ! ୧୦. ଏବଂ ଯେଉଁମାନେ (ଭଲ କାର୍ଯ୍ୟରେ) ସର୍ବଦା ଆଗୁଆ ରହୁଥିଲେ, ସେମାନେ ଆଗରେ ହିଁ ରହିବେ । ୧୧. ଏମାନେ (ଅଲ୍ଲାହଙ୍କର) ପାଖ ଲୋକ ହେବେ । ୧୨. ବିଳାସପୂର୍ଣ୍ଣ ବୈକୁଣ୍ଠରେ ବାସ କରିବେ । ୧୩. ଏମାନଙ୍କର ସଂଖ୍ୟା ପୂର୍ବବର୍ତ୍ତୀ ଲୋକମାନଙ୍କ ମଧ୍ୟରେ ଅଧିକ

ହେବ । ୧୪. ଏବଂ ପରବର୍ତ୍ତୀ ଲୋକମାନଙ୍କ ମଧ୍ୟରେ ଅଳ୍ପ ହେବ । ୧୫. ସେମାନେ ରତ୍ନଖଚିତ ଆସନରେ, ୧୬. ପରସ୍ପର ସାମନାସାମନି ହୋଇ ଗଦିରେ ଆଉଜି ବସିବେ । ୧୭. ଚିରକିଶୋର ସେବକମାନେ ସେମାନଙ୍କ ସେବାରେ ଲାଗିଥିବେ - ୧୮. ସୁରାଭରା ପାତ୍ର, ଗିଲାସ ଓ ପିଆଲା ଧରି । ୧୯. ଯାହାକୁ ପାନ କଲେ ସେମାନଙ୍କର ମୁଣ୍ଡବ୍ୟଥା ହେବନାହିଁ କିମ୍ବା ବୁଦ୍ଧିଭ୍ରଷ୍ଟ ହେବନାହିଁ । ୨୦. ସେମାନଙ୍କୁ ମନ ପସନ୍ଦର ଫଳମୂଳ ମିଳିବ, ୨୧. ଏବଂ ଯେଉଁ ପକ୍ଷୀର ମାଂସ ଖାଇବାକୁ ସେମାନଙ୍କ ମନ ଚାହିଁବ, ତାହା ମିଳିବ । ୨୨. ଏବଂ ସୁନ୍ଦରନୟନା ଅପସରା ମିଳିବେ, ୨୩. ଯେଉଁମାନେ ଯତ୍ନରେ ରଖା ଯାଇଥିବା ମୁକ୍ତା ସଦୃଶ । ୨୪. ଏଗୁଡ଼ିକ ସେମାନଙ୍କ କର୍ମର ପୁରସ୍କାର ରୂପେ ମିଳିବ । ୨୫. ସେଠାରେ ସେମାନେ କୌଣସି ଅଭଦ୍ର କଥା ବା ପାପକଥା ଶୁଣିବେନାହିଁ । ୨୬. କେବଳ ଭଲଭଲ କଥା ଶୁଣିବେ ।

୨୭. ଯେଉଁମାନଙ୍କୁ ଡାହାଣ ହାତରେ କର୍ମପଞ୍ଜିକା ଦିଆଯିବ, ସେମାନେ କେଡେ ଭାଗ୍ୟଶାଳୀ! ୨୮. (ସେମାନଙ୍କ ପାଇଁ ଅଛି) କଣ୍ଟାବିହୀନ କୋଳିଗଛ, ୨୯. ଫେଣା ଉପରେ ଫେଣା ଥିବା କଦଳୀ ଗଛ, ୩୦. ସୁଦୂରବ୍ୟାପୀ ଘନ ଛାୟା, ୩୧. ନିରନ୍ତର ବୋହୁଥିବା ଝରଣାର ଜଳ, ୩୨. ଅପର୍ଯ୍ୟାପ୍ତ ଫଳମୂଳ, ୩୩. ଯାହା କେବେ ସରିବନାହିଁ କିମ୍ବା ସେଗୁଡ଼ିକରେ କୌଣସି କଟକଣା ରହିବନାହିଁ । ୩୪. ସେମାନେ ଉଚ୍ଚଉଚ୍ଚ ଆସନରେ ବସିବେ । ୩୫. ଆମ୍ଭେ ଏହି ଅପସରାମାନଙ୍କୁ ବିଶେଷ ଭାବରେ ଗଢ଼ିଛୁ । ୩୬. ସେମାନଙ୍କୁ କୁମାରୀ କରିଛୁ । ୩୭. ସେମାନେ ପତିଅନୁରକ୍ତା ଏବଂ ଏମାନଙ୍କର ସମବୟସ୍କା । ୩୮. ଏଗୁଡ଼ିକ ଭାଗ୍ୟଶାଳୀ ଲୋକମାନଙ୍କ ପାଇଁ । ୩୯. ଏମାନଙ୍କର ଏକ ବଡ଼ ସଂଖ୍ୟା ପୂର୍ବବର୍ତ୍ତୀ ଲୋକମାନଙ୍କ ମଧ୍ୟରୁ ହେବ, ୪୦. ଏବଂ ଏକ ବଡ଼ ସଂଖ୍ୟା ପରବର୍ତ୍ତୀ ଲୋକମାନଙ୍କ ମଧ୍ୟରୁ ହେବ ।

୪୧. ଯେଉଁମାନଙ୍କୁ ବାମ ହାତରେ କର୍ମପଞ୍ଜିକା ଦିଆଯିବ, ସେମାନେ କେଡେ ହତଭାଗା! ୪୨. ସେମାନେ ଜଳନ୍ତା ନିଆଁ ଭିତରେ ଏବଂ ଫୁଟନ୍ତା ପାଣି ମଧ୍ୟରେ ରହିବେ, ୪୩. କଳା ଧୂଆଁର ଛାଇ ତଳେ, ୪୪. ଯାହା ଆଦୌ ଶୀତଳ ବା ସୁଖକର ନଥିବ । ୪୫. ଏଥିପୂର୍ବରୁ ଏମାନେ ଭୋଗବିଳାସରେ ବୁଡ଼ି

ରହୁଥିଲେ । ୪୬. ଏବଂ ନିରନ୍ତର ମହାପାପରେ ଲିପ୍ତ ରହୁଥିଲେ, ୪୭. ଏବଂ କହୁଥିଲେ ଯେ ଆମେ ହାଡ଼ ଓ ମାଟି ହୋଇଗଲା ପରେ କ'ଣ ପୁଣି ଆମକୁ ପୁନର୍ଜୀବିତ କରାଯିବ? ୪୮. ଏବଂ ଆମ ବାପଅଜାମାନଙ୍କୁ ମଧ୍ୟ? ୪୯. ସେମାନଙ୍କୁ କହିଦିଅ, "ତୁମମାନଙ୍କର ପୂର୍ବବର୍ତ୍ତୀ ଏବଂ ପରବର୍ତ୍ତୀ ଲୋକମାନଙ୍କୁ ନିଶ୍ଚୟ ପୁନର୍ଜୀବିତ କରାଯିବ । ୫୦. ସମସ୍ତଙ୍କୁ ଏକ ନିର୍ଦ୍ଦିଷ୍ଟ ଦିନ ଏକାଠି କରାଯିବ ଯାହାର ସମୟ ସ୍ଥିର ହୋଇ ସାରିଛି । ୫୧. ତେଣୁ, ହେ ପ୍ରତ୍ୟଖ୍ୟାନ କରୁଥିବା ପଥଭ୍ରଷ୍ଟ ଲୋକମାନେ! ୫୨. ତୁମେମାନେ ନାଗଫେଣୀ ଗଛର ଫଳ ଖାଇବ, ୫୩. ଏବଂ ତାହାରି ଦ୍ୱାରା ଉଦର ପୂର୍ଣ୍ଣ କରିବ । ୫୪. ପୁଣି ତା'ଉପରେ ଫୁଟନ୍ତା ପାଣି ପିଇବ । ୫୫. ଏବଂ ଏମିତି  ପିଇବ ଯେମିତି ତୃଷାର୍ତ୍ତ ଓଟ ପିଅନ୍ତି ।" ୫୬. ବିଚାର ଦିନ ସେମାନଙ୍କର ଏହିପରି ସତ୍କାର ହେବ ।

୫୭. ଆମ୍ଭେ ତୁମମାନଙ୍କୁ (ପ୍ରଥମ ଥର) ତ ସୃଷ୍ଟି କରି ସାରିଛୁ? ପୁଣି (ପୁନର୍ଜୀବନକୁ) କାହିଁକି ସତ ମାନୁନାହଁ? ୫୮. ଆଚ୍ଛା କହିଲ, ଯେଉଁ ଶୁକ୍ର ତୁମେ (ନାରୀ ଗର୍ଭରେ) ଛାଡ଼ିଥାଅ, ୫୯. ସେଥିରୁ ତୁମେମାନେ (ମଣିଷ) ସୃଷ୍ଟି କର ବା ଆମ୍ଭେ ସୃଷ୍ଟି କରୁ? ୬୦. ଆମ୍ଭେ ତୁମମାନଙ୍କ ପାଇଁ ମରିବା ସୁନିଶ୍ଚିତ କରି ଦେଇଛୁ । ଆମ୍ଭେ ଏଥିପାଇଁ ଅକ୍ଷମ ନୋହୁଁ, ୬୧. ଯେ ତୁମମାନଙ୍କ ସ୍ଥାନରେ ତୁମରି ଭଳି ଅନ୍ୟ ଲୋକମାନଙ୍କୁ ସୃଷ୍ଟି କରିଦେବୁ ଏବଂ ତୁମମାନଙ୍କୁ ଏଭଳି ଏକ ଲୋକରେ ସୃଷ୍ଟି କରିଦେବୁ ଯାହା ବିଷୟରେ ତୁମମାନଙ୍କୁ ଜଣାନାହିଁ । ୬୨. ନିଜର ପ୍ରଥମ ସୃଷ୍ଟି ବିଷୟରେ ତ ତୁମେମାନେ ଜାଣି ସାରିଛ, ପୁଣି କାହିଁକି ଏଥିପ୍ରତି ଧ୍ୟାନ ଦେଉନାହଁ?

୬୩. କହିଲ ଭଲା! ଯେଉଁ ବୀଜକୁ ତୁମେମାନେ କ୍ଷେତରେ ବୁଣିଥାଅ? ୬୪. ସେଥିରୁ ତୁମେମାନେ ଫସଲ ଉତ୍ପନ୍ନ କର, ନା ଆମ୍ଭେ ଉତ୍ପନ୍ନ କରୁ? ୬୫. ଆମ୍ଭେ ଚାହିଁଲେ ଏହାକୁ ଅଗାଡ଼ି କରିଦେବୁ ଏବଂ ତୁମେମାନେ ଚକିତ ହୋଇ ରହିଯିବ । ୬୬.  (ଆଉ କହିବ) "ଆମେ ତ ଋଣରେ ବୁଡ଼ିଗଲୁ, ୬୭. ବରଂ ଆମେ ସର୍ବସ୍ୱାନ୍ତ ହୋଇଗଲୁ ।"

୬୮. ଟିକିଏ କୁହତ, ଯେଉଁ ପାଣି ତୁମେମାନେ ପିଇଥାଅ, ୬୯. ତାହାକୁ ବାଦଲରୁ ତୁମେମାନେ ବର୍ଷା କର ବା ଆମ୍ଭେ ବର୍ଷା କରୁ ? ୭୦. ଆମ୍ଭେ ଚାହିଁଲେ ଏହାକୁ ତିକ୍ତ କରିଦେବୁ । ତା'ହେଲେ କାହିଁକି ତୁମେମାନେ କୃତଜ୍ଞ ହେଉନାହଁ?

୭୧. କହିଲ ଭଲା! ତୁମେମାନେ ଯେଉଁ ନିଆଁ ଜାଳ, ୭୨. ଏହାର ବୃକ୍ଷକୁ ତୁମେମାନେ ସୃଷ୍ଟି କରିଛ, ନା ଆମ୍ଭେ ସୃଷ୍ଟି କରିଛୁ? ୭୩. ଆମ୍ଭେ ଏହାକୁ ତୁମମାନଙ୍କର ଆତ୍ମଚିନ୍ତନ ତଥା ପଥିକମାନଙ୍କର ଉପକାର ପାଇଁ ସୃଷ୍ଟି କରିଛୁ। ୭୪. ତେଣୁ ନିଜର ମହାନ ପ୍ରଭୁଙ୍କର ନାମ ସ୍ମରଣ କରୁଥାଅ।

୭୫. ମୋତେ ଅସ୍ତଗାମୀ ନକ୍ଷତ୍ରମାନଙ୍କର ରାଣ! ୭୬. ଯଦି ତୁମେମାନେ ବୁଝିପାରୁଛ ତେବେ ଏହା ଏକ ବଡ଼ ରାଣ। ୭୭. ଏହା ଅତ୍ୟନ୍ତ ଗୌରବମୟ କୁରଆନ। ୭୮. ଯାହା ଏକ ସୁରକ୍ଷିତ ଗ୍ରନ୍ଥରେ (ଲିପିବଦ୍ଧ ହୋଇ) ରହିଛି। ୭୯. ଏହାକୁ କେବଳ ସେହି (ଦେବଦୂତ)ମାନେ ସ୍ପର୍ଶ କରନ୍ତି ଯେଉଁମାନେ ଅତ୍ୟନ୍ତ ପବିତ୍ର। ୮୦. ଏହାକୁ ତାଙ୍କ ଦ୍ୱାରା ପଠାଯାଇଛି ଯିଏ ସାରା ଜଗତର ପାଳନକର୍ତ୍ତା। ୮୧. କ'ଣ ତୁମେମାନେ ଏହି ବାଣୀକୁ ହାଲୁକା ମନେ କରୁଛ? ୮୨. ଏବଂ ଏହାକୁ ମିଛ ବୋଲି କହିବାକୁ ନିଜର ପେଷା କରିନେଇଛ?

୮୩. ଯେତେବେଳେ ମଣିଷର ପ୍ରାଣ ଆସି କଣ୍ଠରେ ଲାଗିଯାଏ, ୮୪. ଏବଂ ତୁମେମାନେ (ଅସହାୟ ହୋଇ) ଦେଖୁଥାଅ, ୮୫. ସେତେବେଳେ ଆମ୍ଭେ ତୁମମାନଙ୍କ ଅପେକ୍ଷା ସେହି ବ୍ୟକ୍ତିର ଅଧିକ ନିକଟରେ ଥାଉ, ମାତ୍ର ତୁମେମାନେ ଏହା ଦେଖିପାର ନାହିଁ। ୮୬. ଆଚ୍ଛା, ଯଦି ତୁମେମାନେ କାହା ଅଧୀନରେ ନାହଁ, ୮୭. (ଏବଂ) ତୁମେମାନେ ସତ୍ୟବାଦୀ, ତେବେ ତା' ଆତ୍ମାକୁ କାହିଁକି ଫେରାଇ ଆଣୁନାହଁ? ୮୮. ଯଦି ସେ ବ୍ୟକ୍ତି ଅଲ୍ଲାହଙ୍କର ପାଖ ଲୋକ ହୋଇଥାଏ, ୮୯. ତେବେ ସେ ସୁଗନ୍ଧମୟ ଏବଂ ଐଶ୍ୱର୍ଯ୍ୟପୂର୍ଣ୍ଣ ବୈକୁଣ୍ଠର ସୁଖ ଭୋଗ କରିବ। ୯୦. ଯାହାକୁ ଡାହାଣ ହାତରେ କର୍ମପଞ୍ଜିକା ଦିଆଯିବ, ୯୧. (ତାକୁ କୁହାଯିବ) "ତୁମର ମଙ୍ଗଳ ହେଉ କାରଣ ତୁମେ ଭାଗ୍ୟଶାଳୀ।" ୯୨. ମାତ୍ର ଯଦି ସେ (ସତ୍ୟକୁ) ଅସ୍ୱୀକାର କରିଥିବା ଜଣେ ପଥଭ୍ରଷ୍ଟ ବ୍ୟକ୍ତି ହୋଇଥାଏ, ୯୩. ତେବେ ତା'ର ସତ୍କାର ଫୁଟନ୍ତା ପାଣି ଦ୍ୱାରା କରାଯିବ, ୯୪. ଏବଂ ସେ ନିଆଁରେ ଦଗ୍ଧ ହେବ।

୯୫. ବାସ୍ତବରେ ଏହା ନିରାଟ ସତ୍ୟ। ୯୬. ତେଣୁ ତୁମେ ନିଜର ମହାନ ପ୍ରଭୁଙ୍କ ନାମ ସ୍ମରଣ କରୁଥାଅ।

## ଅଧ୍ୟାୟ ୫୭, ଅଲ୍ ହଦିଦ୍
## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍ଙ୍କ ନାମରେ

୧. ପୃଥିବୀ ଓ ଆକାଶରେ ଯେଉଁମାନେ ଅଛନ୍ତି ସେମାନେ ଅଲ୍ଲାହଙ୍କର ଗୁଣଗାନ କରନ୍ତି । ସେ ସର୍ବଶକ୍ତିମାନ ଓ ତତ୍ତ୍ୱଜ୍ଞାନୀ । ୨. ପୃଥିବୀ ଓ ଆକାଶରେ ତାଙ୍କରି ଆଧିପତ୍ୟ । ସେ ହିଁ ଜୀବନ ଦିଅନ୍ତି, ମୃତ୍ୟୁ ଦିଅନ୍ତି ଏବଂ ସେ ସବୁ କିଛି କରିପାରନ୍ତି । ୩. ସେ ହିଁ ଆଦି ଏବଂ ସେ ହିଁ ଅନ୍ତ, ସେ (ନିଜର କୃତି ଦ୍ୱାରା) ପ୍ରକାଶମାନ ଏବଂ ସେ ହିଁ ଗୁପ୍ତ ଏବଂ ସେ ସବୁକଥା ଜାଣନ୍ତି । ୪. ସେ ପୃଥିବୀ ଓ ଆକାଶକୁ ଛଅ ଦିନରେ ସୃଷ୍ଟି କଲେ ଏବଂ ତା'ପରେ ଦିବ୍ୟସିଂହାସନରେ ଅଧିଷ୍ଠିତ ହେଲେ । ଯାହା ପୃଥିବୀରେ ପ୍ରବେଶ କରେ ଏବଂ ଯାହା ଏଥିରୁ ବାହାରେ, ଯାହା ଆକାଶରୁ ତଳକୁ ଆସେ ଏବଂ ଯାହା ଆକାଶ ଉପରକୁ ଉଠିଥାଏ, ସବୁ ତାଙ୍କୁ ଜଣା । ତୁମେମାନେ ଯେଉଁଠି ଥାଅନା କାହିଁକି, ସେ ତୁମମାନଙ୍କ ସହିତ ଥାଆନ୍ତି ଏବଂ ତୁମେମାନେ ଯାହାକିଛି କର ସେ ସବୁ ଦେଖନ୍ତି । ୫. ପୃଥିବୀ ଓ ଆକାଶରେ ତାଙ୍କରି ଶାସନ ଚାଲେ ଏବଂ ପ୍ରତ୍ୟେକ ବିଷୟ (ନିଷ୍ପତ୍ତି ପାଇଁ) ତାଙ୍କରି ପାଖକୁ ଯାଏ । ୬. ସେ ରାତିକୁ ଦିନ ମଧ୍ୟରେ ଏବଂ ଦିନକୁ ରାତି ମଧ୍ୟରେ ବିଲୀନ କରିଦିଅନ୍ତି । ସେ (ସମସ୍ତଙ୍କ) ମନର କଥା ଜାଣନ୍ତି ।

୭. ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ ମାନିନିଅ ଏବଂ ସେ ତୁମମାନଙ୍କୁ ଯେଉଁ ଧନସଂପତ୍ତିର ତତ୍ତ୍ୱାବଧାରକ କରିଛନ୍ତି, ସେଥିରୁ (ତାଙ୍କ ମାର୍ଗରେ) ଖର୍ଚ୍ଚ କର । ତୁମମାନଙ୍କ ମଧ୍ୟରୁ ଯେଉଁମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ ବିଶ୍ୱାସ କରନ୍ତି ଏବଂ (ତାଙ୍କ ମାର୍ଗରେ) ଖର୍ଚ୍ଚ କରନ୍ତି, ସେମାନଙ୍କୁ ଖୁବ୍ ଭଲ ପୁରସ୍କାର ମିଳିବ । ୮. ତୁମମାନଙ୍କର କ'ଣ ହୋଇଛି ଯେ ଅଲ୍ଲାହଙ୍କୁ ମାନୁନାହଁ ଅଥଚ ପ୍ରଭୁଙ୍କୁ ମାନିନେବା ପାଇଁ ତାଙ୍କର ରସୁଲ ତୁମମାନଙ୍କ ନିକଟରେ ଆଗ୍ରହ କରୁଛନ୍ତି ? ଯଦି ତୁମେମାନେ ପ୍ରକୃତରେ ସଦ୍‌ବିଶ୍ୱାସୀ, ତେବେ (ଜାଣିରଖ) ସେ ତୁମମାନଙ୍କଠାରୁ ଏହାର ବଚନ ମଧ୍ୟ ନେଇ ସାରିଛନ୍ତି । ୯. ସେ ତୁମମାନଙ୍କୁ ଅନ୍ଧକାରରୁ ଅଲୋକକୁ ଆଣିବା ପାଇଁ ତାଙ୍କ ଭକ୍ତଙ୍କ ପ୍ରତି ସ୍ୱଷ୍ଟ ବାଣୀ ପ୍ରକଟ କରୁଛନ୍ତି । ବାସ୍ତବରେ ଅଲ୍ଲାହ୍ ତୁମମାନଙ୍କ ପ୍ରତି ଭାରି ଦୟାଳୁ ଏବଂ କୃପାଶୀଳ । ୧୦. ତୁମମାନଙ୍କର କ'ଣ ହୋଇଛି ଯେ ତୁମେମାନେ ଅଲ୍ଲାହଙ୍କ ମାର୍ଗରେ ଧନ ଖର୍ଚ୍ଚ କରୁନାହଁ ଅଥଚ ଅଲ୍ଲାହ୍ ହିଁ ଧରିତ୍ରୀ ଓ

ଆକାଶର ପ୍ରକୃତ ଉତ୍ତରାଧିକାରୀ । ତୁମମାନଙ୍କ ମଧ୍ୟରୁ ଯେଉଁମାନେ ମକ୍କା ବିଜୟ ପୂର୍ବରୁ (ଅଲ୍ଲାହଙ୍କ ମାର୍ଗରେ) ଧନ ଖର୍ଚ୍ଚ କଲେ ଏବଂ ଯୁଦ୍ଧ କଲେ, ସେମାନେ (ମକ୍କା ବିଜୟ ପରେ ଏହା କରିଥିବା) ଲୋକଙ୍କ ସହିତ ସମାନ ନୁହନ୍ତି । (ମକ୍କା) ବିଜୟ ପୂର୍ବରୁ ଧନ ଖର୍ଚ୍ଚ କରିଥିବା ଏବଂ ଯୁଦ୍ଧ କରିଥିବା ଲୋକମାନେ ମର୍ଯ୍ୟାଦା ଦୃଷ୍ଟିରୁ ସେମାନଙ୍କଠାରୁ ଶ୍ରେଷ୍ଠ । ଅବଶ୍ୟ ଅଲ୍ଲାହ୍ ସମସ୍ତଙ୍କୁ ଭଲ (ପୁରସ୍କାର ଦେବାର) ପ୍ରତିଶ୍ରୁତି ଦେଇଛନ୍ତି । ତୁମେମାନେ ଯାହା କରୁଛ, ଅଲ୍ଲାହଙ୍କୁ ସବୁ ଜଣା ।

୧୧. କିଏ ଅଛି, ଯିଏ ଅଲ୍ଲାହଙ୍କୁ ଭଲ ମନରେ ଋଣ ଦେବ? ତା' ହେଲେ ସେ ତାହାକୁ ବହୁଗୁଣିତ କରି ପରିଶୋଧ କରିବେ ଏବଂ ସେହି ବ୍ୟକ୍ତିକୁ ସମ୍ମାନଜନକ ପୁରସ୍କାର ମଧ୍ୟ ଦେବେ । ୧୨. ସେଦିନ ତୁମେ ସଦ୍‌ବିଶ୍ୱାସୀ ନରନାରୀମାନଙ୍କୁ ଦେଖିବ ଯେ ସେମାନଙ୍କର ଜ୍ୟୋତି ସେମାନଙ୍କ ସମ୍ମୁଖରେ ଡାହାଣ ପାଖ ଦେଇ ଯାଉଥିବ । ସେମାନଙ୍କୁ କୁହାଯିବ, "ଆଜି ତୁମମାନଙ୍କ ପାଇଁ ଖୁସିର ଖବର ଅଛି ଯେ ତୁମେମାନେ ଏଭଳି ଉଦ୍ୟାନମାନଙ୍କରେ ପ୍ରବେଶ କରିବ ଯାହା ତଳେ ଝରଣା ପ୍ରବାହିତ ହୁଏ । ତୁମେମାନେ ସେଠାରେ ଚିରକାଳ ରହିବ । ଏହାହିଁ ସବୁଠାରୁ ବଡ଼ ସଫଳତା ।"

୧୩. ସେଦିନ କପଟୀ ନରନାରୀମାନେ ସଦ୍‌ବିଶ୍ୱାସୀମାନଙ୍କୁ ଅନୁରୋଧ କରିବେ ଯେ ଆମ ଆଡ଼କୁ ଟିକିଏ ଚାହଁ । ତା'ହେଲେ ଆମେ ମଧ୍ୟ ତୁମମାନଙ୍କ ଜ୍ୟୋତିରୁ ଲାଭବାନ ହେବୁ । ସେତେବେଳେ ସେମାନଙ୍କୁ କୁହାଯିବ, "ଫେରିଯାଇ ନିଜର ଜ୍ୟୋତି ଖୋଜ ।" ଏହାପରେ ସେମାନଙ୍କ ମଝିରେ ଏକ ପାଚେରୀ ଉଠାଇ ଦିଆଯିବ ଯେଉଁଥିରେ ଗୋଟିଏ ଦ୍ୱାର ଥିବ । ଏହାର ଭିତର ପଟେ (ଈଶ୍ୱରଙ୍କ) କରୁଣା (ଅର୍ଥାତ୍ ସ୍ୱର୍ଗ) ଏବଂ ବାହାର ପଟେ (ନର୍କର) ଯନ୍ତ୍ରଣା ଥିବ । ୧୪. ସେମାନେ ସଦ୍‌ବିଶ୍ୱାସୀମାନଙ୍କୁ ଡାକ ପକାଇ କହିବେ, "କ'ଣ ଆମେ (ସଂସାରରେ) ତୁମମାନଙ୍କ ସହିତ ନଥିଲୁ?" ଏମାନେ ଉତ୍ତର ଦେବେ, "ଅବଶ୍ୟ ଥିଲ କିନ୍ତୁ ତୁମେମାନେ ଲୋଭର ବଶବର୍ତ୍ତୀ ହୋଇ ଯାଇଥିଲ । ତୁମେମାନେ (ଆମ ବିନାଶର) ପ୍ରତୀକ୍ଷା କରୁଥିଲ ଏବଂ ସନ୍ଦେହ କରୁଥିଲ । ତୁମମାନଙ୍କର (ମିଥ୍ୟା) ଲାଳସା ତୁମମାନଙ୍କୁ ମାୟାଗ୍ରସ୍ତ କଲା ଏବଂ ଶେଷରେ ଅଲ୍ଲାହଙ୍କ ନିଷ୍ପତ୍ତି ହୋଇଗଲା । ମାୟାବୀ (ଶଇତାନ) ଅଲ୍ଲାହଙ୍କ ବିଷୟରେ ତୁମମାନଙ୍କୁ ପ୍ରତାରଣା

ଦେଲା ।” ୧୫. ସୁତରାଂ, ଆଜି ଦିନରେ ତୁମମାନଙ୍କଠାରୁ ବା ନାସ୍ତିକମାନଙ୍କଠାରୁ (ମୁକ୍ତି ବଦଳରେ) କୌଣସି ମୂଲ୍ୟ ସ୍ୱୀକାର କରାଯିବ ନାହିଁ । ନର୍କ ହିଁ ତୁମମାନଙ୍କର ଘର ହେବ ଯାହା ତୁମମାନଙ୍କୁ ଆଶ୍ରୟ ଦେବ ଏବଂ ଏହା ଅତି କଦର୍ଯ୍ୟ ସ୍ଥାନ ।

୧୬. ବିଶ୍ୱାସ ରଖିଥିବା ଲୋକମାନଙ୍କ ପାଇଁ କ'ଣ ଏହାର ସମୟ ଆସି ନାହିଁ ଯେ ଅଲ୍ଲାହଙ୍କ ସ୍ମରଣଚିନ୍ତନ ପାଇଁ ଏବଂ ସେମାନଙ୍କ ପାଖକୁ ଆସିଥିବା ସତ୍ୟ (ଅର୍ଥାତ୍ କୁରଆନ୍) ପାଇଁ ସେମାନଙ୍କ ହୃଦୟ ତରଳିଯାଉ ? ଏମାନେ ସେମାନଙ୍କ ପରି ନହୁଅନ୍ତୁ ଯେଉଁମାନଙ୍କୁ ଏମାନଙ୍କ ପୂର୍ବରୁ ଗ୍ରନ୍ଥ ଦିଆ ଯାଇଥିଲା । ପୁଣି ଏକ ଦୀର୍ଘ ସମୟ ବିତିଗଲା ପରେ ସେମାନଙ୍କ ହୃଦୟ କଠୋର ହୋଇଗଲା ଏବଂ (ଆଜି) ସେମାନଙ୍କ ମଧ୍ୟରୁ ଅଧିକାଂଶ ଅବାଧ ହୋଇ ଯାଇଛନ୍ତି । ୧୭. ଜାଣିନିଅ ଯେ ଅଲ୍ଲାହ ମୃତ ଭୂମିକୁ (ବର୍ଷାଜଳ ଦ୍ୱାରା) ଜୀବନ୍ତ କରିଦିଅନ୍ତି । ଆମ୍ଭେ ତୁମମାନଙ୍କ ପାଇଁ ସଂକେତଗୁଡ଼ିକୁ ପରିଷ୍କାର ଭାବରେ ବର୍ଣ୍ଣନା କରିଦେଇଛୁ ଯେପରିକି ତୁମେମାନେ ବୁଝିପାରିବ ।

୧୮. ଯେଉଁ ନରନାରୀମାନେ ଦାନ କରି ଅଲ୍ଲାହଙ୍କୁ ଏକ ଭଲ ଋଣ ଦିଅନ୍ତି, ସେମାନଙ୍କୁ (ଏହି ଋଣ) ବହୁଗୁଣିତ କରି ପରିଶୋଧ କରାଯିବ ଏବଂ ସେମାନଙ୍କୁ ସମ୍ମାନଜନକ ପୁରସ୍କାର ଦିଆଯିବ । ୧୯. ଯେଉଁମାନେ ଅଲ୍ଲାହ୍ ଓ ତାଙ୍କର ରସୁଲମାନଙ୍କୁ ବିଶ୍ୱାସ କରିଛନ୍ତି, ସେମାନେ ନିଜ ପ୍ରଭୁଙ୍କ ଦୃଷ୍ଟିରେ ସାଧୁ ଓ ଶହୀଦ୍‌ର ମର୍ଯ୍ୟାଦା ଲାଭ କରିଛନ୍ତି । ସେମାନେ ନିଜ ପୁରସ୍କାର ସହିତ ସେମାନଙ୍କର (ବିଶେଷ) ଜ୍ୟୋତି ମଧ ଲାଭ କରିବେ । (ଅନ୍ୟ ପକ୍ଷରେ) ଯେଉଁମାନେ ଅସ୍ୱୀକାର କରିଛନ୍ତି ଏବଂ ଆମ୍ଭ ବାଣୀକୁ ମିଥ୍ୟା ବୋଲି କହିଛନ୍ତି, ସେମାନେ ନର୍କବାସୀ ହେବେ ।

୨୦. ଜାଣିନିଅ ଯେ ପାର୍ଥିବ ଜୀବନ ହେଉଛି କେବଳ ଏକ ଖେଳତାମସା, ଏକ ଆଡ଼ମ୍ବର, ପରସ୍ପର ମଧ୍ୟରେ ତୁମମାନଙ୍କର ବଡ଼ିମା ପ୍ରଦର୍ଶନ ଏବଂ ଧନସଂପତ୍ତି ଓ ସନ୍ତାନସନ୍ତତି ବିଷୟରେ ପରସ୍ପରକୁ ଟପି ଯିବାର ଏକ ପ୍ରତିଦ୍ୱନ୍ଦିତା । ଏହା ସେହିପରି, ଯେପରି ବର୍ଷା ହେଲେ (କ୍ଷେତରେ ଲହଲହ ହେଉଥିବା) ଫସଲ ଚାଷୀର ମନ ମୁଗ୍ଧ କରିଦିଏ ଏବଂ ପୁଣି ତୁମେ ଦେଖିବ ଯେ ଏହା ଶୁଖି ହଳଦିଆ ହୋଇଯାଏ ଏବଂ ଅଗାଡ଼ି ପାଲଟିଯାଏ । ପରଲୋକରେ

(ଦୁରାଚାରୀମାନଙ୍କୁ) କଠୋର ଶାସ୍ତି ମିଳିବ ଏବଂ (ସଦାଚାରୀମାନେ) ଅଲ୍ଲାହଙ୍କର କ୍ଷମା ଓ ପ୍ରସନ୍ନତା ଲାଭ କରିବେ। ସାଂସାରିକ ଜୀବନର ସୁଖ କେବଳ ଏକ ମାୟାପୂର୍ଣ୍ଣ ଉପଲବ୍ଧି। ୨୧. (ହେ ମନୁଷ୍ୟଗଣ!) ପ୍ରଭୁଙ୍କର କ୍ଷମା ଏବଂ ସେହି ବୈକୁଣ୍ଠ ଲାଭ କରିବାର ପ୍ରୟାସରେ ପରସ୍ପରକୁ ଟପି ଯିବାକୁ ଚେଷ୍ଟା କର ଯାହା ପୃଥିବୀ ଓ ଆକାଶ ପରି ବିଶାଳ। ଏହା ସେହିମାନଙ୍କ ପାଇଁ ପ୍ରସ୍ତୁତ କରାଯାଇଛି ଯେଉଁମାନେ ଅଲ୍ଲାହ୍ ଓ ତାଙ୍କ ବାର୍ତ୍ତାବହମାନଙ୍କୁ ବିଶ୍ୱାସ କରନ୍ତି। ଏହା ଅଲ୍ଲାହଙ୍କର କୃପା। ସେ ଯାହାକୁ ଚାହାନ୍ତି ତା' ପ୍ରତି କୃପା କରନ୍ତି। ଅଲ୍ଲାହ୍ ପରମ କୃପାଳୁ।

୨୨. ପୃଥିବୀରେ ଯେଉଁ ବିପତ୍ତି ଆସେ ବା ଯେଉଁ ବିପଦ ତୁମମାନଙ୍କ ଉପରେ ପଡ଼େ, ତାହା ଘଟିବା ପୂର୍ବରୁ ଏକ ଗ୍ରନ୍ଥରେ ଲେଖା ହୋଇ ରହିଥାଏ। ଅଲ୍ଲାହଙ୍କ ପାଇଁ ଏହା କରିବା ଅତି ସହଜ। ୨୩. (ଏହା ଏଇଥିପାଇଁ କୁହାଗଲା) ଯେପରିକି ତୁମେମାନେ କିଛି ହରାଇଲେ ତା'ପାଇଁ ଦୁଃଖ କରିବନାହିଁ କିମ୍ବା ତୁମମାନଙ୍କୁ କିଛି ମିଳିଲେ, ତାହା ଯୋଗୁଁ ଗର୍ବ କରିବନାହିଁ। ଅଲ୍ଲାହ୍ କୌଣସି ଅହଂକାରୀ ଓ ଆତ୍ମଗର୍ବୀକୁ ପସନ୍ଦ କରନ୍ତିନାହିଁ, ୨୪. ଯେଉଁମାନେ ନିଜେ କୃପଣତା କରନ୍ତି ଏବଂ ଅନ୍ୟମାନଙ୍କୁ ମଧ୍ୟ କୃପଣତାର ଶିକ୍ଷା ଦିଅନ୍ତି। ଯିଏ ନମାନିବ, (ସେ ଜାଣିରଖୁ ଯେ) ଅଲ୍ଲାହ୍ ଆବଶ୍ୟକତା-ରହିତ ଏବଂ ସ୍ତୁତିଯୋଗ୍ୟ।

୨୫. ଆମ୍ଭେ ଆମ୍ଭର ବାର୍ତ୍ତାବହମାନଙ୍କୁ ସ୍ପଷ୍ଟ ନିଦର୍ଶନ ସହିତ ଗ୍ରନ୍ଥ ଏବଂ ନ୍ୟାୟର ମାନଦଣ୍ଡ ଦେଇ ପଠାଇଲୁ ଯେପରିକି ଲୋକମାନେ ନ୍ୟାୟର ପଥ ଅବଲମ୍ବନ କରିବେ। ଆମ୍ଭେ ଲୁହା ସୃଷ୍ଟି କଲୁ ଯେଉଁଥିରେ ପ୍ରଚୁର ଶକ୍ତି ଅଛି ଏବଂ ଏଥିରୁ ଲୋକମାନଙ୍କୁ ଅନେକ ଉପକାର ମିଳେ। ଏହାର ଉଦ୍ଦେଶ୍ୟ ହେଉଛି ଯେ ଅଲ୍ଲାହ୍ ଏହା ପରୀକ୍ଷା କରି ଦେଖିବେ ଯେ କିଏ (ଅଲ୍ଲାହଙ୍କୁ) ଦେଖି ନଥିବା ସତ୍ତ୍ୱେ ତାଙ୍କୁ ଓ ତାଙ୍କ ବାର୍ତ୍ତାବହମାନଙ୍କୁ ସାହାଯ୍ୟ କରୁଛି। ଅଲ୍ଲାହ୍ ମହାଶକ୍ତିଶାଳୀ ଏବଂ ପ୍ରବଳ ପରାକ୍ରମୀ।

୨୬. ଆମ୍ଭେ ନୂହ ଓ ଇବ୍ରାହିମଙ୍କୁ ପଠାଇଲୁ ଏବଂ ସେମାନଙ୍କର ସନ୍ତାନମାନଙ୍କୁ ଈଶ୍ୱରଦୂତ ପଦବୀ ତଥା ଈଶ୍ୱରୀୟ ଗ୍ରନ୍ଥ ପ୍ରଦାନ କଲୁ। ସେମାନଙ୍କ ମଧ୍ୟରୁ କେତେକ ଲୋକ ଠିକ୍ ବାଟରେ ରହିଲେ, ମାତ୍ର ଅଧିକାଂଶ ଲୋକ ଭ୍ରଷ୍ଟାଚାରୀ ହୋଇଗଲେ। ୨୭. ସେମାନଙ୍କ ପରେ ଆମ୍ଭେ ଅନ୍ୟ ବାର୍ତ୍ତାବହମାନଙ୍କୁ

ପଠାଇଲୁ ଯେଉଁମାନେ ସେମାନଙ୍କ ପଦାଙ୍କ ଅନୁସରଣ କଲେ ଏବଂ ଆମ୍ଭେ ମରୟମଙ୍କ ପୁତ୍ର ଇସାଙ୍କୁ ମଧ୍ୟ ପଠାଇଲୁ । ତାଙ୍କୁ ଇଂଜିଲ ଗ୍ରନ୍ଥ ପ୍ରଦାନ କଲୁ ଏବଂ ଯେଉଁମାନେ ତାଙ୍କର ଅନୁଗତ ହେଲେ, ଆମ୍ଭେ ସେମାନଙ୍କ ମନରେ ଦୟା ଓ କରୁଣା ଜାତ କରିଦେଲୁ । ସୈନ୍ୟାସର ପନ୍ଥା ସେମାନେ ଅଲ୍ଲାହଙ୍କର ପ୍ରସନ୍ନତା ଲାଭ କରିବା ଉଦ୍ଦେଶ୍ୟରେ ନିଜେ ଗଢ଼ିଥିଲେ ଯାହାର ଆଦେଶ ଆମ୍ଭେ ଦେଇ ନଥିଲୁ, ମାତ୍ର ସେମାନେ ଏହାକୁ ଉଚିତ୍ ରୂପେ ପାଳନ କଲେନାହିଁ । ସେମାନଙ୍କ ମଧ୍ୟରୁ ଯେଉଁମାନଙ୍କର ବିଶ୍ୱାସ ଥିଲା ଆମ୍ଭେ ସେମାନଙ୍କୁ ପୁରସ୍କାର ଦେଲୁ ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ଭ୍ରଷ୍ଟାଚାରୀ ଥିଲେ ।

୨୮. ହେ ବିଶ୍ୱାସ କରୁଥିବା ବ୍ୟକ୍ତିଗଣ! ଅଲ୍ଲାହଙ୍କୁ ଭୟ କର ଏବଂ ତାଙ୍କ ରସୁଲଙ୍କୁ ମାନିନିଅ । ସେ ନିଜ କୃପାରୁ ତୁମମାନଙ୍କୁ ଦୁଇଗୁଣ ପୁରସ୍କାର ଦେବେ ଏବଂ ତୁମମାନଙ୍କୁ ଏଭଳି ଜ୍ୟୋତି ପ୍ରଦାନ କରିବେ ଯାହାର ଆଲୋକରେ ତୁମେମାନେ (ଠିକ୍ ବାଟରେ) ଜୀବନଯାପନ କରିବ । ସେ ତୁମମାନଙ୍କର ସବୁ ଦୋଷ କ୍ଷମା କରିଦେବେ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ ଦୟାଳୁ । ୨୯. ଗ୍ରନ୍ଥବିଶ୍ୱାସୀମାନେ ଜାଣିନିଅନ୍ତୁ ଯେ ଅଲ୍ଲାହଙ୍କର କୃପା ଉପରେ ସେମାନଙ୍କର ଅଧିକାର ନାହିଁ । ଅଲ୍ଲାହଙ୍କ କୃପା କେବଳ ତାଙ୍କରି ହାତରେ ଅଛି । ସେ ଯାହାକୁ ଚାହାନ୍ତି ତା' ପ୍ରତି କୃପା କରନ୍ତି । ସେ ଅତ୍ୟନ୍ତ କୃପାଶୀଳ ।

## ଅଧ୍ୟାୟ ୫୮, ଅଲ ମୁଜାଦଲାଃ

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍ଙ୍କ ନାମରେ

୧. (ହେ ରସୁଲ!) ଅଲ୍ଲାହ୍ ସେହି ମହିଳାର କଥା ଶୁଣିଲେ ଯିଏ ନିଜ ସ୍ୱାମୀ ବିଷୟରେ ତୁମ ସହିତ ଯୁକ୍ତି କରୁଥିଲା ଏବଂ ଅଲ୍ଲାହଙ୍କ ପାଖରେ ଅଭିଯୋଗ କରୁଥିଲା । ଅଲ୍ଲାହ୍ ତୁମ ଦୁହିଁଙ୍କର କଥାବାର୍ତ୍ତା ଶୁଣୁଥିଲେ । ସେ ସର୍ବଶ୍ରୋତା ଏବଂ ସର୍ବଦ୍ରଷ୍ଟା । ୨. ତୁମମାନଙ୍କ ମଧ୍ୟରୁ ଯେଉଁମାନେ ନିଜ ପତ୍ନୀମାନଙ୍କୁ ମାଆ ବୋଲି କହି ତ୍ୟାଗ କରିଦିଅନ୍ତି, ସେମାନଙ୍କର ଏପରି କହିବା ଦ୍ୱାରା ସେହି ପତ୍ନୀମାନେ ସେମାନଙ୍କର ମାଆ ହୋଇ ଯାଆନ୍ତିନାହିଁ । ସେମାନଙ୍କ ମାଆ ସେଇମାନେ, ଯେଉଁମାନେ ସେମାନଙ୍କୁ ଜନ୍ମ ଦେଇଛନ୍ତି । ସେମାନେ ଏକ ଅନୁଚିତ ଏବଂ ମିଥ୍ୟା

କଥା କହୁଛନ୍ତି । ଅଲ୍ଲାହ୍ ଅବଶ୍ୟ ଦୋଷ ମାର୍ଜନାକାରୀ ଏବଂ କ୍ଷମାଶୀଳ । ୩. ଯେଉଁମାନେ ନିଜ ପତ୍ନୀମାନଙ୍କୁ ମାଆ ବୋଲି କହିଦିଅନ୍ତି ଏବଂ ପୁଣି ନିଜ କଥାକୁ ଫେରାଇ ନିଅନ୍ତି, ତେବେ ପତିପତ୍ନୀ ପରସ୍ପରକୁ ସ୍ପର୍ଶ କରିବା ପୂର୍ବରୁ (ପ୍ରାୟଶ୍ଚିତ ସ୍ୱରୂପ) ଜଣେ ଦାସକୁ ମୁକ୍ତ କରିବାକୁ ହେବ । ଏହାଦ୍ୱାରା ତୁମମାନଙ୍କୁ ସାବଧାନ କରାଯାଉଛି । ତୁମେମାନେ ଯାହା କରୁଛ ଅଲ୍ଲାହଙ୍କୁ ସବୁ ଜଣା ଅଛି । ୪. ଯାହା ପାଖରେ ଦାସ ନାହିଁ, ତେବେ ପତିପତ୍ନୀ ପରସ୍ପରକୁ ସ୍ପର୍ଶ କରିବା ପୂର୍ବରୁ ସେ କ୍ରମାଗତ ଭାବରେ ଦୁଇମାସ ଉପବାସ ପାଳନ କରୁ । ଯିଏ ଏଥିପାଇଁ ମଧ୍ୟ ଅସମର୍ଥ, ସେ ଷାଠିଏ ଜଣ ଦରିଦ୍ର ଲୋକଙ୍କୁ ଭୋଜନ ଦେଉ । ଏହା ଏଇଥିପାଇଁ ଯେ ତୁମେମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ ପ୍ରତି ସଂପୂର୍ଣ୍ଣ ବିଶ୍ୱାସ ରଖିବ । ଏହା ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ସୀମା ଏବଂ ଯେଉଁମାନେ ଅବଜ୍ଞା କରିବେ ସେମାନେ କଠୋର ଦଣ୍ଡ ଭୋଗିବେ । ୫. ଯେଉଁମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କର ବିରୋଧ କରୁଛନ୍ତି, ସେମାନେ ସେହିପରି ଲାଂଛିତ ହେବେ ଯେପରି ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନେ ହୋଇଥିଲେ । ଆମ୍ଭେ ଖୁବ୍ ସ୍ପଷ୍ଟ ବାଣୀ ପଠାଇଛୁ । ଯେଉଁମାନେ ନମାନିବେ, ସେମାନେ ଅପମାନଜନକ ଶାସ୍ତି ଭୋଗିବେ । ୬. (ସେହିଦିନ ଭୋଗିବେ) ଯେଉଁଦିନ ଅଲ୍ଲାହ୍ ସେମାନଙ୍କୁ ଜୀବିତ କରିବେ ଏବଂ ସେମାନଙ୍କୁ ସେମାନଙ୍କର କାର୍ଯ୍ୟକଳାପ ବିଷୟରେ ଜଣାଇବେ । ଅଲ୍ଲାହ୍ ସବୁକଥା ଗୋଟିଗୋଟି କରି ଲେଖି ରଖିଛନ୍ତି କିନ୍ତୁ ସେମାନେ ଭୁଲି ଯାଇଛନ୍ତି । ଅଲ୍ଲାହ୍ ପ୍ରତ୍ୟେକ କଥାର ସାକ୍ଷୀ ଅଛନ୍ତି ।

୭. କ'ଣ ତୁମମାନଙ୍କୁ ଏହା ଜଣା ନାହିଁ ଯେ ଅଲ୍ଲାହ୍ ପୃଥିବୀ ଓ ଆକାଶର ପ୍ରତ୍ୟେକ କଥା ଜାଣନ୍ତି ? ତିନିଜଣ ବ୍ୟକ୍ତିଙ୍କ ମଧ୍ୟରେ ଏପରି କୌଣସି ଗୁପ୍ତ ମନ୍ତ୍ରଣା ହୁଏନାହିଁ ଯେଉଁଠି ଚତୁର୍ଥ ଜଣକ ରୂପେ ଅଲ୍ଲାହ୍ ଉପସ୍ଥିତ ନଥାଆନ୍ତି କିମ୍ବା ପାଞ୍ଚଜଣଙ୍କ ମଧ୍ୟରେ ଏଭଳି କୌଣସି ଗୁପ୍ତ ମନ୍ତ୍ରଣା ହୁଏନାହିଁ ଯେଉଁଠି ଷଷ୍ଠ ଜଣକ ରୂପେ ସେ ଉପସ୍ଥିତ ନଥାଆନ୍ତି । ଅଳ୍ପ ଲୋକ ହୁଅନ୍ତୁ ବା ବେଶୀ, ସେମାନେ ଯେଉଁଠି ଥିଲେ ମଧ୍ୟ ଅଲ୍ଲାହ୍ ସେମାନଙ୍କ ସହିତ ଥାଆନ୍ତି । ପୁଣି ବିଚାର ଦିନ ସେ ସେମାନଙ୍କୁ ସେମାନଙ୍କ କର୍ମ ବିଷୟରେ ଜଣାଇଦେବେ । ଅଲ୍ଲାହ୍ ସବୁକିଛି ଜାଣନ୍ତି । ୮. କ'ଣ ତୁମେ ସେମାନଙ୍କୁ ଦେଖିଲନାହିଁ ଯେଉଁମାନଙ୍କୁ ଗୁପ୍ତ ମନ୍ତ୍ରଣା କରିବାକୁ

ମନା କରା ଯାଇଥିଲା ? ସେମାନଙ୍କୁ ଯାହା କରିବାକୁ ମନା କରା ଯାଇଥିଲା ସେମାନେ ପୁଣି ସେହି କାମ କରୁଛନ୍ତି ଏବଂ ପାପକର୍ମ କରିବା, ଅତ୍ୟାଚାର କରିବା ଏବଂ ରସୁଲଙ୍କର ଅବଜ୍ଞା କରିବା ବିଷୟରେ ନିଜନିଜ ଭିତରେ ମନ୍ତ୍ରଣା କରୁଛନ୍ତି । ଯେତେବେଳେ ସେମାନେ ତୁମ ପାଖକୁ ଆସନ୍ତି, ତୁମକୁ ଏମିତି ଭାଷାରେ ଶୁଭେଚ୍ଛା ଜଣାନ୍ତି ଯେମିତି ଭାଷାରେ ଅଲ୍ଲାହ୍ ତୁମକୁ ଶୁଭେଚ୍ଛା ଜଣାଇ ନାହାନ୍ତି ଏବଂ ମନେମନେ କହନ୍ତି ଯେ ଆମର ଏଭଳି କଥା ପାଇଁ ଅଲ୍ଲାହ୍ ଆମକୁ କାହିଁକି ଦଣ୍ଡ ଦେଉନାହାନ୍ତି ? ନର୍କ ସେମାନଙ୍କ ପାଇଁ ଯଥେଷ୍ଟ ହେବ । ସେମାନେ ସେଥିରେ ଦଗ୍ଧ ହେବେ, ଯାହା ଏକ କଦର୍ଯ୍ୟ ସ୍ଥାନ ।

୯. ହେ ସଦ୍‌ବିଶ୍ୱାସୀଗଣ ! ଯଦି ତୁମେମାନେ ପରସ୍ପର ମଧ୍ୟରେ ଗୁପ୍ତ ମନ୍ତ୍ରଣା କର, ତେବେ ପାପ କରିବା, ଅତ୍ୟାଚାର କରିବା ବା ଈଶ୍ୱରଦୂତଙ୍କୁ ଅବଜ୍ଞା କରିବା ବିଷୟରେ ମନ୍ତ୍ରଣା କରନାହିଁ ବରଂ ଧର୍ମପରାୟଣତା ଓ ସଦାଚାରିତା ବିଷୟରେ ବିଚାରବିମର୍ଷ କର । ଅଲ୍ଲାହଙ୍କୁ ଭୟ କରୁଥାଅ ଯାହାଙ୍କ ସମ୍ମୁଖରେ (ବିଚାର ଦିନ) ତୁମେମାନେ ଉପସ୍ଥିତ ହେବ । ୧୦. (ସେମାନଙ୍କର) ଗୁପ୍ତ ମନ୍ତ୍ରଣା ଏକ ଶଇତାନୀ କାର୍ଯ୍ୟ ଏବଂ ସଦ୍‌ବିଶ୍ୱାସୀମାନଙ୍କୁ ବିଶାଦଗ୍ରସ୍ତ କରିବା ଏହାର ଲକ୍ଷ୍ୟ, କିନ୍ତୁ ଅଲ୍ଲାହଙ୍କ ଆଜ୍ଞା ବିନା ଏହା ସେମାନଙ୍କର କୌଣସି କ୍ଷତି କରି ପାରିବନାହିଁ । ସଦବିଶ୍ୱାସୀମାନେ ଅଲ୍ଲାହଙ୍କ ଉପରେ ଭରସା ରଖିବା ଉଚିତ ।

୧୧. ହେ ସଦ୍‌ବିଶ୍ୱାସୀଗଣ ! ଯଦି କୌଣସି ସଭାରେ ତୁମମାନଙ୍କୁ (ଅନ୍ୟମାନଙ୍କ ବସିବା ପାଇଁ) ଜାଗା ଦେବାକୁ କୁହାଯାଏ, ତେବେ ଜାଗା ଦେଇଦିଅ । ଅଲ୍ଲାହ୍ ତୁମମାନଙ୍କୁ (ସ୍ୱର୍ଗରେ) ଜାଗା ଦେବେ । ଯଦି ତୁମମାନଙ୍କୁ ଉଠିଯିବା ପାଇଁ କୁହାଯାଏ ତେବେ ଉଠିଯାଅ । ତୁମମାନଙ୍କ ମଧ୍ୟରୁ ଯେଉଁମାନେ ଆସ୍ଥା ରଖିଛନ୍ତି ଏବଂ ଜ୍ଞାନପ୍ରାପ୍ତ କରିଛନ୍ତି, ଅଲ୍ଲାହ୍ ସେମାନଙ୍କର ମର୍ଯ୍ୟାଦା ବୃଦ୍ଧି କରିବେ । ତୁମେମାନେ ଯାହା କରୁଛ ଅଲ୍ଲାହ୍ ସବୁ ଜାଣନ୍ତି ।

୧୨. ହେ ସଦ୍‌ବିଶ୍ୱାସୀଗଣ ! ଯଦି ରସୁଲଙ୍କ ସହିତ ଏକାନ୍ତରେ କଥାବାର୍ତ୍ତା କର, ତେବେ କଥାବାର୍ତ୍ତା କରିବା ପୂର୍ବରୁ କିଛି ଦାନ କର । ଏହା ତୁମମାନଙ୍କ ପକ୍ଷରେ ଖୁବ୍ ଭଲ ହେବ ଏବଂ ଏହା ତୁମମାନଙ୍କୁ ଶୁଦ୍ଧ କରିବ । ଯଦି

ତୁମମାନଙ୍କ ପାଖରେ ଦାନ କରିବାକୁ କିଛି ନାହିଁ, ତେବେ ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ ପରମ ଦୟାଳୁ । ୧୩. କ'ଣ ତୁମେମାନେ ଏକାନ୍ତରେ କଥା ହେବା ପୂର୍ବରୁ ଦାନ କରିବାକୁ ଡରିଗଲ ? ଯେହେତୁ ତୁମେମାନେ ଏହା କରି ପାରିଲନାହିଁ ଏବଂ ଅଲ୍ଲାହ୍ ମଧ୍ୟ ତୁମମାନଙ୍କୁ କ୍ଷମା କରିଦେଲେ, ଏବେ (ଅନ୍ତତଃ) ନମାଜ ସଂପାଦନ କର, ଜକାତ୍ ଦିଅ ଏବଂ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କ କଥା ମାନି ଚଳ । ତୁମେମାନେ ଯାହା କରୁଛ, ଅଲ୍ଲାହ୍ ସବୁ ଜାଣନ୍ତି ।

୧୪. କ'ଣ ତୁମେ ସେହି (କପଟୀ) ଲୋକମାନଙ୍କୁ ଦେଖିନାହଁ ଯେଉଁମାନେ ଏଭଳି ଲୋକମାନଙ୍କ ସହ ବନ୍ଧୁତା କରୁଛନ୍ତି ଯେଉଁମାନଙ୍କ ଉପରେ ଅଲ୍ଲାହ୍ କ୍ଷୁବ୍ଧ ହୋଇଛନ୍ତି ? ଏମାନେ ତୁମର ନୁହନ୍ତି କି ସେମାନଙ୍କର ନୁହନ୍ତି । ଏମାନେ ଜାଣିଶୁଣି ମିଛ କଥାରେ ରାଣ ଖାଆନ୍ତି । ୧୫. ଅଲ୍ଲାହ୍ ଏମାନଙ୍କ ପାଇଁ କଠୋର ଶାସ୍ତି ପ୍ରସ୍ତୁତ କରି ରଖିଛନ୍ତି । ପ୍ରକୃତରେ ସେମାନେ ଅତି ହୀନ କର୍ମ କରୁଛନ୍ତି । ୧୬. ସେମାନେ ନିଜର ମିଥ୍ୟା ରାଣକୁ ଢ଼ାଲ କରି ନେଇଛନ୍ତି ଏବଂ (ମିଥ୍ୟା ରାଣ ଖାଇ) ଲୋକମାନଙ୍କୁ ଅଲ୍ଲାହଙ୍କ ମାର୍ଗରୁ ରୋକୁଛନ୍ତି । ତେଣୁ ସେମାନେ ଲାଂଛନାଦାୟକ ଶାସ୍ତି ଭୋଗିବେ । ୧୭. ସେମାନଙ୍କର ଧନସଂପତ୍ତି ବା ସନ୍ତାନସଂତତି ସେମାନଙ୍କୁ ଅଲ୍ଲାହଙ୍କଠାରୁ ଆଦୌ ରକ୍ଷା କରିପାରିବ ନାହିଁ । ସେମାନେ ନର୍କବାସୀ ହେବେ ଏବଂ ସେଥିରେ ଚିରଦିନ ରହିବେ । ୧୮. ଯେଉଁଦିନ ଅଲ୍ଲାହ୍ ସେମାନଙ୍କୁ ପୁନର୍ଜୀବିତ କରିବେ, ସେମାନେ ତାଙ୍କ ପାଖରେ ମଧ୍ୟ ସେହିପରି ରାଣ ଖାଇବେ ଯେପରି ତୁମ ପାଖରେ ରାଣ ଖାଉଛନ୍ତି ଏବଂ ମନେମନେ ଭାବିବେ ଯେ ଏହାଦ୍ୱାରା ସେମାନଙ୍କର ଲକ୍ଷ୍ୟ ହାସଲ ହୋଇଯିବ । ଜାଣିଥାଅ ଯେ ସେମାନେ ମିଥ୍ୟାବାଦୀ । ୧୯. ଶଇତାନ ସେମାନଙ୍କୁ ବଶୀଭୂତ କରିନେଇଛି ଏବଂ ସେମାନଙ୍କ ମନରୁ ଅଲ୍ଲାହଙ୍କ ସ୍ମରଣଚିନ୍ତନ ଭୁଲାଇ ଦେଇଛି । ସେମାନେ ଶଇତାନର ଗୋଷ୍ଠୀ । ମନେରଖ, ଶଇତାନର ଗୋଷ୍ଠୀ କ୍ଷତିଗ୍ରସ୍ତ ହେବ । ୨୦. ଯେଉଁମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କର ବିରୋଧ କରୁଛନ୍ତି, ସେମାନେ ଲାଂଛିତ ହେବେ । ୨୧. ଅଲ୍ଲାହ୍ ଏହା ଲେଖି ଦେଇଛନ୍ତି ଯେ ମୁଁ ଏବଂ ମୋ' ରସୁଲମାନେ ନିଶ୍ଚୟ ବିଜୟୀ ହେବେ । ଅଲ୍ଲାହ୍ ମହାଶକ୍ତିଶାଳୀ ଓ ପ୍ରବଳ ପରାକ୍ରମୀ ।

୨୨. ଯେଉଁମାନେ ଅଲ୍ଲାହଙ୍କୁ ଓ ପରଲୋକକୁ ବିଶ୍ୱାସ କରନ୍ତି, ତୁମେ ଦେଖିବନାହିଁ ଯେ ସେମାନେ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ ବିରୋଧ କରୁଥିବା ଲୋକଙ୍କ ସହିତ ବନ୍ଧୁତା କରୁଛନ୍ତି, ଯଦିଓ ସେମାନେ ଏମାନଙ୍କ ପିତା, ପୁତ୍ର, ଭାଇ ବା କୁଟୁମ୍ବ ହୋଇଥାଆନ୍ତୁ । ଏହି ଲୋକମାନଙ୍କ ହୃଦୟରେ ଅଲ୍ଲାହ ଈଶ୍ୱରବିଶ୍ୱାସ ଲେଖି ଦେଇଛନ୍ତି ଏବଂ ନିଜର ବିଶେଷ କୃପାରୁ ସେମାନଙ୍କୁ ଶକ୍ତି ପ୍ରଦାନ କରିଛନ୍ତି । ସେ ସେମାନଙ୍କୁ ଏଭଳି ଉଦ୍ୟାନରେ ରଖିବେ ଯାହା ତଳେ ଝରଣା ପ୍ରବାହିତ ହୁଏ, ଯେଉଁଠି ଏମାନେ ସର୍ବଦା ରହିବେ । ଅଲ୍ଲାହ୍ ଏମାନଙ୍କ ଉପରେ ସନ୍ତୁଷ୍ଟ ଏବଂ ଏମାନେ ମଧ୍ୟ ତାଙ୍କ ଉପରେ ସନ୍ତୁଷ୍ଟ । ଏହିମାନେ ଅଲ୍ଲାହଙ୍କ ପକ୍ଷ ଏବଂ ଜାଣିରଖ ଯେ ଅଲ୍ଲାହଙ୍କ ପକ୍ଷ ହିଁ ସଫଳ ହେବ ।

## ଅଧ୍ୟାୟ ୫୯, ଅଲ୍ ହଶ୍ର

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍ଙ୍କ ନାମରେ

୧. ପୃଥିବୀ ଓ ଆକାଶର ପ୍ରତ୍ୟେକ ସୃଷ୍ଟି ଅଲ୍ଲାହଙ୍କ ଗୁଣଗାନ କରେ । ସେ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ । ୨. ସେ ହିଁ ପ୍ରଥମ ସୈନ୍ୟସମାବେଶ ବେଳେ ଗ୍ରନ୍ଥବିଶ୍ୱାସୀମାନଙ୍କ ମଧ୍ୟରେ ଥିବା ନାସ୍ତିକମାନଙ୍କୁ ସେମାନଙ୍କ ଘରୁ ବାହାର କରି ଦେଇଥିଲେ । ତୁମେମାନେ ଚିନ୍ତା କରି ନଥିଲ ଯେ ସେମାନେ ବାହାରିଯିବେ ଏବଂ ସେମାନେ ଭାବିଥିଲେ ଯେ ଦୁର୍ଗ ଭିତରେ ରହି ଅଲ୍ଲାହଙ୍କ ଶାସ୍ତିରୁ ରକ୍ଷା ପାଇଯିବେ । କିନ୍ତୁ ଅଲ୍ଲାହ୍ ସେମାନଙ୍କ ପାଖରେ ଏଭଳି ବାଟ ଦେଇ ପହଁଚିଲେ ଯାହା ବିଷୟରେ ସେମାନେ କଳ୍ପନା କରି ନଥିଲେ । ସେ ସେମାନଙ୍କ ମନରେ ଭୟ ସଂଚାର କରିଥିଲେ ଯାହାଫଳରେ ସେମାନେ ନିଜ ଘରକୁ ନିଜ ହାତରେ ନଷ୍ଟ କଲେ ଏବଂ ମୁସଲମାନମାନଙ୍କ ହାତରେ ମଧ୍ୟ । ତେଣୁ ହେ ବୁଦ୍ଧିମାନ ଲୋକମାନେ ! ଏଥିରୁ ଶିକ୍ଷା ଲାଭ କର ।

୩. ଯଦି ଅଲ୍ଲାହ୍ ସେମାନଙ୍କ ଭାଗ୍ୟରେ ନିର୍ବାସନ ଲେଖି ନଥାଆନ୍ତେ, ତେବେ ସେମାନଙ୍କୁ ଏହି ସଂସାରରେ ଦଣ୍ଡ ଦେଇ ଥାଆନ୍ତେ । ପରଲୋକରେ ତ ସେମାନଙ୍କ ପାଇଁ ନର୍କଦଣ୍ଡ ଅଛି । ୪. ଏହା ଏହି କାରଣରୁ ହେଲା ଯେ, ସେମାନେ

ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କର ବିରୋଧ କଲେ । ଯିଏ ଅଲ୍ଲାହଙ୍କର ବିରୋଧ କରିବ (ସେ ଜାଣିରଖୁ ଯେ) ଅଲ୍ଲାହ୍ କଠୋର ଦଣ୍ଡ ଦିଅନ୍ତି ।

୫. ତୁମେମାନେ ଯେଉଁ ଖଜୁରୀ ଗଛଗୁଡ଼ିକୁ କାଟିଲ ବା ଯେଉଁ ଗଛଗୁଡ଼ିକୁ ଛାଡ଼ିଦେଲ, ସବୁକିଛି ଅଲ୍ଲାହଙ୍କ ଆଜ୍ଞାନୁଯାୟୀ ହେଲା । ଭ୍ରଷ୍ଟାଚାରୀମାନଙ୍କୁ ଅପମାନିତ କରିବା ଏହାର ଉଦ୍ଦେଶ୍ୟ ଥିଲା ।

୬. ସେମାନଙ୍କର ଯେଉଁ ଧନ ଅଲ୍ଲାହ୍ ତାଙ୍କ ରସୁଲଙ୍କୁ ଦେଲେ, ସେଥିପାଇଁ ତୁମେମାନେ ନିଜର ଘୋଡ଼ା ବା ଓଟ ଦଉଡ଼ାଇ ନଥିଲ ମାତ୍ର ଅଲ୍ଲାହ୍ ଯାହା ବିରୁଦ୍ଧରେ ଚାହାନ୍ତି, ତା' ବିରୁଦ୍ଧରେ ନିଜର ରସୁଲମାନଙ୍କୁ ବିଜୟୀ କରନ୍ତି । ଅଲ୍ଲାହ୍ ସବୁକିଛି କରିପାରନ୍ତି । ୭. ଗ୍ରାମବାସୀମାନଙ୍କର ଯେଉଁ ଧନ ଅଲ୍ଲାହ୍ ତାଙ୍କ ରସୁଲଙ୍କୁ ଦେଇଛନ୍ତି, ତାହା ଅଲ୍ଲାହଙ୍କର, ରସୁଲଙ୍କର, ତାଙ୍କ ଆତ୍ମୀୟମାନଙ୍କର ଏବଂ ଏହା ଅନାଥ, ଦରିଦ୍ର ଏବଂ ପଥିକମାନଙ୍କ ପାଇଁ ଉଦ୍ଦିଷ୍ଟ ଯେପରିକି ସେହି ଧନ କେବଳ ତୁମମାନଙ୍କ ମଧ୍ୟରେ ଥିବା ଧନଶାଳୀ ଲୋକଙ୍କ ମଧ୍ୟରେ ସୀମିତ ହୋଇ ରହି ନଯାଉ । ରସୁଲ୍ ତୁମମାନଙ୍କୁ ଯାହା ଦିଅନ୍ତି ତାହା ଗ୍ରହଣ କରିନିଅ ଏବଂ ଯେଉଁଥିରୁ ବାରଣ କରନ୍ତି, ସେଥିରୁ ନିବୃତ୍ତ ରୁହ । ଅଲ୍ଲାହଙ୍କୁ ଭୟ କରୁଥାଅ । ଅଲ୍ଲାହ୍ ଅତି କଠୋର ଶାସ୍ତି ଦିଅନ୍ତି । ୮. (ଏହି ସଂପତ୍ତିରେ) ସେହି ନିର୍ବାସିତ ହୋଇଥିବା ଗରିବ ଲୋକମାନଙ୍କର ମଧ୍ୟ ଅଧିକାର ଅଛି ଯେଉଁମାନଙ୍କୁ ସେମାନଙ୍କ ଘରୁ ଓ ଧନସଂପତ୍ତିରୁ ବେଦଖଲ କରି ଦିଆଯାଇଛି ଏବଂ ସେମାନେ ଅଲ୍ଲାହଙ୍କର କୃପା ଓ ପ୍ରସନ୍ନତା ଚାହାନ୍ତି ଏବଂ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ ସାହାଯ୍ୟ କରନ୍ତି । ଏମାନେ ପ୍ରକୃତରେ ସତ୍ୟନିଷ୍ଠ । ୯. ଏବଂ (ସେମାନଙ୍କର ମଧ୍ୟ ଅଧିକାର ଅଛି) ଯେଉଁମାନେ ପୂର୍ବରୁ ଆସ୍ଥା ରଖି ମଦିନାରେ ରହୁଛନ୍ତି । ଦେଶତ୍ୟାଗ କରି ଏମାନଙ୍କ ପାଖକୁ ଆସୁଥିବା ଲୋକମାନଙ୍କୁ ଏମାନେ ପ୍ରେମ କରନ୍ତି ଏବଂ ସେମାନଙ୍କୁ ଯାହା ଦିଆଯାଏ, ତାହାପ୍ରତି ଏମାନଙ୍କ ମନରେ କୌଣସି ଲୋଭ ନଥାଏ, ବରଂ ଏମାନେ ଅଭାବରେ ଥିବା ସତ୍ତ୍ୱେ ନିଜ ଉପରେ ସେମାନଙ୍କୁ ପ୍ରାଥମିକତା ଦିଅନ୍ତି । ଯେଉଁମାନେ ଇନ୍ଦ୍ରିୟ ପ୍ରଲୋଭନରୁ ବର୍ତ୍ତିଗଲେ ସେହିମାନେ ସଫଳ ହେବେ । ୧୦. ଏବଂ ସେମାନଙ୍କର ମଧ୍ୟ (ଅଧିକାର

ଅଛି), ଯେଉଁମାନେ ଏମାନଙ୍କ ପରେ ଆସିଲେ ଏବଂ କହିଲେ, "ହେ ଈଶ୍ୱର ! ଆମର ଏବଂ ଆମ ପୂର୍ବରୁ ବିଶ୍ୱାସ କରିଥିବା ଭାଇମାନଙ୍କର ଦୋଷ କ୍ଷମା କରିଦିଅ । ଆମ ମନରେ ସଦ୍‌ବିଶ୍ୱାସୀମାନଙ୍କ ପ୍ରତି ବିଦ୍ୱେଷଭାବ ସୃଷ୍ଟି କରନାହିଁ । ହେ ପ୍ରଭୁ ! ତୁମେ ଅତ୍ୟନ୍ତ କରୁଣାମୟ ଏବଂ ପରମ ଦୟାଳୁ ।"

୧୧. କ'ଣ ତୁମେ ସେହି କପଟୀମାନଙ୍କୁ ଦେଖିଲନାହିଁ ଯେଉଁମାନେ ଗ୍ରନ୍ଥବିଶ୍ୱାସୀମାନଙ୍କ ମଧ୍ୟରେ ଥିବା ନାସ୍ତିକ ଭାଇବନ୍ଧୁଙ୍କୁ କହୁଛନ୍ତି ଯେ ଯଦି ତୁମମାନଙ୍କୁ ଦେଶାନ୍ତର କରି ଦିଆଯାଏ ତେବେ ଆମେ ମଧ୍ୟ ତୁମମାନଙ୍କ ସହିତ ବହାରି ଯିବୁ ? ତୁମମାନଙ୍କ ବିଷୟରେ ଆମେ କାହାରି କଥା ମାନିବୁନାହିଁ ଏବଂ ଯଦି ତୁମମାନଙ୍କ ସହିତ ଯୁଦ୍ଧ ହୁଏ ତେବେ ଆମେ ନିଶ୍ଚୟ ତୁମମାନଙ୍କୁ ସାହାଯ୍ୟ କରିବୁ, ମାତ୍ର ଅଲ୍ଲାହ୍ ସ୍ୱୟଂ ସାକ୍ଷୀ ଅଛନ୍ତି ଯେ ଏମାନେ ପକ୍କା ମିଥ୍ୟାବାଦୀ । ୧୨. ଯଦି ସେମାନଙ୍କୁ ବାହାର କରିଦିଆଯାଏ, ଏମାନେ (ଅର୍ଥାତ୍ କପଟୀମାନେ) ସେମାନଙ୍କ ସହିତ କଦାପି ଯିବେନାହିଁ ବା ଯଦି ସେମାନଙ୍କ ଉପରେ ଆକ୍ରମଣ ହୁଏ, ତେବେ ଏମାନେ ସେମାନଙ୍କୁ ସାହାଯ୍ୟ ମଧ୍ୟ କରିବେନାହିଁ ଏବଂ ଯଦି ସାହାଯ୍ୟ କରନ୍ତି, ତେବେ ପଛଘୁଂଚା ଦେଇ ପଳାୟନ କରିବେ । ପୁଣି ସେମାନଙ୍କୁ କୌଣସି ସାହାଯ୍ୟ ମିଳିବନାହିଁ । ୧୩. (ହେ ମୁସଲମାନଗଣ !) ସେମାନଙ୍କ ମନରେ ଅଲ୍ଲାହଙ୍କ ଅପେକ୍ଷା ତୁମମାନଙ୍କର ଭୟ ବେଶୀ କାରଣ ଏହି ଲୋକମାନେ କିଛି ବୁଝି ପାରନ୍ତିନାହିଁ । ୧୪. ଏମାନେ ସମସ୍ତେ ଏକାଠି ମିଶି ମଧ୍ୟ ତୁମମାନଙ୍କ ସହ ଯୁଦ୍ଧ କରିବେନାହିଁ । ଯଦି କରିବେ, କେବଳ ଦୁର୍ଗ ଭିତରୁ ସୁରକ୍ଷିତ ସ୍ଥାନରେ ରହି କରିବେ କିମ୍ବା କାନ୍ଥ ଆଢୁଆଳରେ (ଲୁଚିରହି) କରିବେ । ଏମାନଙ୍କର ପରସ୍ପର ମଧ୍ୟରେ ଭୟଙ୍କର ଶତ୍ରୁତା ଅଛି । ତୁମର ଧାରଣା ଯେ ସେମାନଙ୍କ ମଧ୍ୟରେ ଏକତା ଅଛି, କିନ୍ତୁ ପ୍ରକୃତରେ ସେମାନଙ୍କର ମନ ଭାଗଭାଗ ହୋଇଯାଇଛି । ଏହାର କାରଣ ଏମାନେ ଏଭଳି ଲୋକ ଯେଉଁମାନଙ୍କର ବୁଦ୍ଧି ନାହିଁ । ୧୫. ଏମାନେ ସେହି ଲୋକମାନଙ୍କ ପରି, ଯେଉଁମାନେ କିଛି ସମୟ ପୂର୍ବରୁ ସେମାନଙ୍କ କର୍ମର ଫଳ ଭୋଗିଛନ୍ତି । (ପରଲୋକରେ) ସେମାନଙ୍କୁ କଠୋର ଦଣ୍ଡ ଭାଗିବାକୁ ହେବ । ୧୬. ସେମାନେ ଶଇତାନ ପରି, ଯିଏ ମଣିଷକୁ ନାସ୍ତିକ ହେବାପାଇଁ କହେ ମାତ୍ର ଯେତେବେଳେ ସେ ନାସ୍ତିକ ହୋଇଯାଏ, ଶଇତାନ ତାକୁ କହେ, "ମୁଁ ତୋ' ପାଇଁ

ଦାୟୀ ନୁହେଁ । ମୁଁ ଅଲ୍ଲାହଙ୍କୁ ଭୟ କରେ ଯିଏ ସମଗ୍ର ଜଗତର ପାଳନକର୍ତ୍ତା ।" ୧୭. ତେଣୁ, ଉଭୟଙ୍କର ପରିଣାମ ନର୍କବାସ ହେବ ଯେଉଁଠି ସେମାନେ ସର୍ବଦା ରହିବେ । ଦୁରାଚାରୀମାନଙ୍କ ପାଇଁ ଏହାହିଁ ଉପଯୁକ୍ତ ଶାସ୍ତି ।

୧୮. ହେ ସଦ୍‌ବିଶ୍ୱାସୀମାନେ ! ଅଲ୍ଲାହଙ୍କୁ ଭୟ କର ଏବଂ ପ୍ରତ୍ୟେକ ବ୍ୟକ୍ତି ଏହା ଦେଖିବା ଉଚିତ ଯେ ସେ ଭବିଷ୍ୟତ (ଅର୍ଥାତ୍ ପରଲୋକ) ପାଇଁ କି ପୁଣ୍ୟ ଅର୍ଜନ କରି ପଠାଇଛି । ଅଲ୍ଲାହଙ୍କୁ ଭୟ କରୁଥାଅ । ତୁମେମାନେ ଯାହା କରୁଛ ଅଲ୍ଲାହ୍ ସବୁ ଖବର ରଖୁଛନ୍ତି । ୧୯. ସେହି ଲୋକମାନଙ୍କ ପରି ହୁଅନାହିଁ ଯେଉଁମାନେ ଅଲ୍ଲାହଙ୍କୁ ଭୁଲିଗଲେ ଯାହାର ପରିଣାମ ସ୍ୱରୂପ ଅଲ୍ଲାହ୍ ଏମିତି କଲେ ଯେ ସେମାନେ ନିଜକୁ ଭୁଲିଗଲେ । ଏହିମାନେ ଭ୍ରଷ୍ଟାଚାରୀ । ୨୦. ସ୍ୱର୍ଗବାସୀ ଓ ନର୍କବାସୀ ଉଭୟ ସମାନ ହୋଇ ନପାରନ୍ତି । ବାସ୍ତବରେ ସଫଳ ସେହିମାନେ ହେବେ, ଯେଉଁମାନେ ସ୍ୱର୍ଗଲାଭ କରିବେ ।

୨୧. ଯଦି ଆମ୍ଭେ ଏହି କୁରଆନକୁ କୌଣସି ପାହାଡ଼ ଉପରେ ଅବତୀର୍ଣ୍ଣ କରିଥାଆନ୍ତୁ, ତୁମେ ଦେଖନ୍ତ ଯେ ତାହା ଅଲ୍ଲାହଙ୍କ ଭୟରେ ଦବିଯାଇ ଖଣ୍ଡଖଣ୍ଡ ଯାଇଥାଆନ୍ତା । ଆମ୍ଭେ ଲୋକମାନଙ୍କ ପାଇଁ ଏହିଭଳି ଦୃଷ୍ଟାନ୍ତ ଦେଉ ଯେପରିକି ସେମାନେ ବିଚାର କରିବେ ।

୨୨. ସେ ଅଲ୍ଲାହ୍, ଯାହାଙ୍କ ବ୍ୟତୀତ କେହି ଉପାସନାଯୋଗ୍ୟ ନୁହେଁ । ସେ ଦୃଷ୍ଟ ଓ ଅଦୃଷ୍ଟର ଜ୍ଞାତା, ଅତ୍ୟନ୍ତ କୃପାଶୀଳ ଏବଂ ପରମ ଦୟାଳୁ । ୨୩. ସେ ଅଲ୍ଲାହ୍, ଯାହାଙ୍କ ବ୍ୟତୀତ କେହି ଉପାସନାଯୋଗ୍ୟ ନୁହେଁ । ସମଗ୍ର ଜଗତର ଅଧୀଶ୍ୱର, ପରମ ପବିତ୍ର, ମଂଗଳମୟ, ଅଭୟଦାତା, ପରିତ୍ରାଣକର୍ତ୍ତା, ମହାଶକ୍ତିଶାଳୀ, ଅପ୍ରତିରୋଧ ଏବଂ ମହାପ୍ରତାପଶାଳୀ । ଲୋକମାନଙ୍କର ବହୁଈଶ୍ୱରବାଦ ସହିତ ଅଲ୍ଲାହଙ୍କର କିଛି ସଂପର୍କ ନାହିଁ । ୨୪. ସେ ଅଲ୍ଲାହ୍, ଯିଏ (ସମସ୍ତଙ୍କର) ସ୍ରଷ୍ଟା, ଅସ୍ତିତ୍ୱଦାତା ଏବଂ ରୂପଦାତା । ତାଙ୍କର ଭଲ ଭଲ ନାମ ଅଛି । ପୃଥିବୀ ଓ ଆକାଶରେ ଥିବା ପ୍ରତ୍ୟେକ ସୃଷ୍ଟି ତାଙ୍କର ଗୁଣଗାନ କରେ । ସେ ସର୍ବଶକ୍ତିମାନ ଏବଂ ତତ୍ତ୍ୱଜ୍ଞାନୀ ।

## ଅଧ୍ୟାୟ ୬୦, ଅଲ୍ ମୁମ୍ତହିନଃ
### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ହେ ସଦ୍‌ବିଶ୍ୱାସୀଗଣ ! ଯଦି ତୁମେମାନେ ମୋ' ମାର୍ଗରେ ସଂଘର୍ଷ କରିବା ଏବଂ ମୋ'ର ପ୍ରସନ୍ନତା ଲାଭ କରିବା ଉଦ୍ଦେଶ୍ୟରେ (ଘରୁ) ବାହାରିଛ ତେବେ ଯେଉଁମାନେ ମୋ'ର ଓ ତୁମମାନଙ୍କ ଶତ୍ରୁ, ସେମାନଙ୍କ ସହିତ ବନ୍ଧୁତା କରନାହିଁ । ତୁମେମାନେ ସେମାନଙ୍କ ପାଖକୁ ବନ୍ଧୁତାର ବାର୍ତ୍ତା ପଠାଉଛ, ଅଥଚ ସେମାନେ ତୁମମାନଙ୍କ ପାଖକୁ ଆସିଥିବା ସତ୍ୟକୁ ପ୍ରତ୍ୟାଖ୍ୟାନ କରୁଛନ୍ତି । ସେମାନେ ତୁମମାନଙ୍କୁ ଏବଂ ରସୁଲଙ୍କୁ କେବଳ ଏହି କାରଣରୁ (ମକ୍କାରୁ) ବାହାର କରି ଦେଇଛନ୍ତି ଯେ ତୁମେମାନେ ତୁମ ପାଳନକର୍ତ୍ତା ଅଲ୍ଲାହ୍‌ଙ୍କୁ ବିଶ୍ୱାସ କଲ । ତୁମେମାନେ ଗୋପନରେ ସେମାନଙ୍କ ପାଖକୁ ବନ୍ଧୁତାର ବାର୍ତ୍ତା ପଠାଉଛ । ତୁମେମାନେ ଯାହା ଗୋପନରେ କର ଏବଂ ଯାହା ପ୍ରକାଶ କର, ମୋତେ ଭଲରୂପେ ଜଣା । ତୁମମାନଙ୍କ ମଧ୍ୟରୁ ଯିଏ ଏଭଳି କାର୍ଯ୍ୟ କରେ, ସେ ଅବଶ୍ୟ ସତ୍‌ପଥରୁ ଦୂରେଇ ଯାଇଛି । ୨. ଯଦି ସେମାନେ ତୁମମାନଙ୍କୁ ଆୟତ୍ତ କରିନିଅନ୍ତି ତେବେ ତୁମମାନଙ୍କ ସହିତ ଶତ୍ରୁତା କରିବେ ଏବଂ ଗାଳିମାଡ଼ ଦେଇ ତୁମମାନଙ୍କୁ କଷ୍ଟ ଦେବେ । ସେମାନେ ଚାହୁଁଛନ୍ତି ଯେ ତୁମେମାନେ ନାସ୍ତିକ ହୋଇଯାଅ । ୩. ବିଚାର ଦିନ ତୁମମାନଙ୍କ ଜ୍ଞାତିକୁଟୁମ୍ବ କିମ୍ବା ସନ୍ତାନସନ୍ତତି ତୁମମାନଙ୍କର କୌଣସି କାମରେ ଆସିବେନାହିଁ । (ସେଦିନ) ସେ ତୁମମାନଙ୍କର ବିଚାର କରିବେ । ତୁମେମାନେ ଯାହା କରୁଛ, ଅଲ୍ଲାହ୍ ସବୁ ଦେଖୁଛନ୍ତି ।

୪. ତୁମମାନଙ୍କ ପାଇଁ ଇବ୍ରାହିମ୍ ଓ ତାଙ୍କ ସାଥୀମାନଙ୍କ ଜୀବନଶୈଳୀରେ ଖୁବ୍ ଭଲ ଚରିତ୍ରର ଉଦାହରଣ ରହିଛି । ଥରେ ସେ ନିଜ ସଂପ୍ରଦାୟର ଲୋକଙ୍କୁ କହିଥିଲେ, "ଆମର ତୁମମାନଙ୍କ ସହିତ କୌଣସି ସଂପର୍କ ନାହିଁ ଏବଂ ସେମାନଙ୍କ ସହିତ ମଧ୍ୟ, ଯେଉଁମାନଙ୍କର ତୁମେମାନେ ଅଲ୍ଲାଙ୍କୁ ଛାଡ଼ି ପୂଜା କରୁଛ । ଆମେ ତୁମମାନଙ୍କର ବିଚାରଧାରାକୁ ସ୍ୱୀକାର କରୁନାହୁଁ ଏବଂ ତୁମେମାନେ ଏକ ଅଲ୍ଲାହ୍‌ଙ୍କୁ ନମାନିବା ପର୍ଯ୍ୟନ୍ତ ତୁମ ଓ ଆମ ଭିତରେ ସର୍ବଦା ବିଦ୍ୱେଷ ଓ ବୈରଭାବ ରହିବ । ହଁ, ଇବ୍ରାହିମ୍ ନିଜ ପିତାଙ୍କୁ ଏହା ଅବଶ୍ୟ କହିଥିଲେ ଯେ ମୁଁ ଆପଣଙ୍କ ପାଇଁ କ୍ଷମାପ୍ରାର୍ଥନା କରିବି କିନ୍ତୁ

ଅଲ୍ଲାହଙ୍କ ସାମନାରେ ଆପଣଙ୍କ ପାଇଁ କିଛି କରିବାର କ୍ଷମତା ମୋ’ର ନାହିଁ । (ଏବଂ ପ୍ରାର୍ଥନା କରିଥିଲେ) “ହେ ପାଳନକର୍ତ୍ତା ! ତୁମେହିଁ ଆମର ସାହାଭରସା । ତୁମରି ନିକଟରେ ଆମେ ଅନୁତାପ କରୁଛୁ ଏବଂ ଶେଷରେ ତୁମରି ପାଖକୁ ଫେରିଯିବୁ । ୫. ହେ ପ୍ରଭୁ ! ଆମମାନଙ୍କୁ ନାସ୍ତିକମାନଙ୍କ ହାତରେ ଦଣ୍ଡ ଦିଅନାହିଁ । ଆମକୁ କ୍ଷମା କରିଦିଅ । ହେ ଈଶ୍ୱର ! ତୁମେ ମହାପ୍ରତାପଶାଳୀ ଓ ତତ୍ତ୍ୱଜ୍ଞାନୀ ।”

୬. ନିଃସନ୍ଦେହରେ ସେମାନଙ୍କ ଜୀବନଶୈଳୀରେ ତୁମମାନଙ୍କ ପାଇଁ ତଥା ଅଲ୍ଲାହଙ୍କଠାରେ ଓ ପରଲୋକରେ ଆଶା ରଖିଥିବା ପ୍ରତ୍ୟେକ ବ୍ୟକ୍ତି ପାଇଁ ସୁନ୍ଦର ଚରିତ୍ରର ଦୃଷ୍ଟାନ୍ତ ରହିଛି । ଯଦି କେହି ନମାନେ, (ସେ ଜାଣିରଖୁ ଯେ) ଅଲ୍ଲାହ୍ ଆବଶ୍ୟକତା ରହିତ ଏବଂ ସ୍ତୁତିଯୋଗ୍ୟ ।

୭. ସମ୍ଭବତଃ ଖୁବ୍ ଶୀଘ୍ର ଅଲ୍ଲାହ୍ ତୁମ ଶତ୍ରୁମାନଙ୍କ ସହିତ ତୁମମାନଙ୍କର ବନ୍ଧୁତା କରାଇଦେବେ । ଅଲ୍ଲାହ୍ ଏହା କରିବାକୁ ସକ୍ଷମ ଏବଂ ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ ପରମ ଦୟାଳୁ ।

୮. ଯେଉଁମାନେ ଧର୍ମ ବିଷୟରେ ତୁମମାନଙ୍କ ସହିତ ଯୁଦ୍ଧ କରିନାହାନ୍ତି କିମ୍ବା ତୁମମାନଙ୍କୁ ତୁମ ଘରୁ ବାହାର କରି ଦେଇନାହାନ୍ତି ସେମାନଙ୍କ ସହିତ ଭଲ ଓ ନ୍ୟାୟପୂର୍ଣ୍ଣ ବ୍ୟବହାର କରିବାକୁ ଅଲ୍ଲାହ୍ ତୁମମାନଙ୍କୁ ମନା କରୁନାହାନ୍ତି । ଅଲ୍ଲାହ୍ ନ୍ୟାୟପରାୟଣ ଲୋକମାନଙ୍କୁ ଭଲ ପାଆନ୍ତି । ୯. ଅଲ୍ଲାହ୍ ତ କେବଳ ସେହି ଲୋକମାନଙ୍କ ସହିତ ବନ୍ଧୁତା କରିବାକୁ ତୁମମାନଙ୍କୁ ବାରଣ କରୁଛନ୍ତି ଯେଉଁମାନେ ଧର୍ମ ବିଷୟରେ ତୁମମାନଙ୍କ ସହିତ ଯୁଦ୍ଧ କରିଛନ୍ତି ଏବଂ ତୁମମାନଙ୍କୁ ତୁମ ଘରୁ ବାହାର କରି ଦେଇଛନ୍ତି କିମ୍ବା ବାହାର କରିବାରେ ଅନ୍ୟମାନଙ୍କୁ ସାହାଯ୍ୟ କରିଛନ୍ତି । ଯେଉଁମାନେ ଏଭଳି ଲୋକଙ୍କ ସହିତ ମିତ୍ରତା କରିବେ, ସେମାନେ ଦୁରାଚାରୀ ।

୧୦. ହେ ମୁସଲମାନଗଣ ! ଯଦି ତୁମମାନଙ୍କ ପାଖକୁ ଦେଶ ତ୍ୟାଗ କରି ମୁସଲିମ୍ ମହିଳାମାନେ ଆସନ୍ତି, ତେବେ ସେମାନଙ୍କ ବିଷୟରେ ଅନୁସନ୍ଧାନ କର । ଅଲ୍ଲାହ୍ ସେମାନଙ୍କ ଧର୍ମବିଶ୍ୱାସ ବିଷୟରେ ଭଲ ଭାବରେ ଜାଣନ୍ତି । ଯଦି ଜଣାପଡ଼େ ଯେ ସେହି ମହିଳାମାନେ ସଦ୍‌ବିଶ୍ୱାସୀ, ତେବେ ସେମାନଙ୍କୁ ପୁଣି ଅଣମୁସଲିମମାନଙ୍କ ପାଖକୁ ପଠାଅନାହିଁ । ଏହି ମହିଳାମାନେ ସେମାନଙ୍କ ପାଇଁ

ବୈଧ ନୁହନ୍ତି ବା ସେମାନେ ଏମାନଙ୍କ ପାଇଁ ବୈଧ ନୁହନ୍ତି । ଅଣମୁସଲିମ୍ ପତିମାନେ ଏମାନଙ୍କ (ମେହେର) ପାଇଁ ଯାହା ଖର୍ଚ୍ଚ କରିଛନ୍ତି, ତାହା ସେମାନଙ୍କୁ ଦେଇଦିଅ ଏବଂ ଏହି ମହିଳାମାନଙ୍କୁ ସେମାନଙ୍କ ମେହର ଦେଇ ବିବାହ କରିବା ତୁମମାନଙ୍କ ପକ୍ଷରେ ଦୋଷାବହ ନୁହେଁ । ତୁମେମାନେ ମଧ୍ୟ ଅଣମୁସଲିମ୍ ମହିଳାମାନଙ୍କୁ ନିଜର ବିବାହ ବନ୍ଧନରେ ରଖନାହିଁ । ଯାହା ତୁମେମାନେ ସେମାନଙ୍କ (ମେହେର) ପାଇଁ ଖର୍ଚ୍ଚ କରିଛ, ତାହା ସେମାନଙ୍କଠାରୁ ମାଗିନିଅ ଏବଂ ଯାହା ଅଣମୁସଲିମ ପତିମାନେ ଖର୍ଚ୍ଚ କରିଛନ୍ତି, ତାହା ସେମାନେ ମାଗି ନିଅନ୍ତୁ । ଏହା ଅଲ୍ଲାହଙ୍କର ଆଦେଶ । ସେ ତୁମମାନଙ୍କ ମଧ୍ୟରେ (ନ୍ୟାୟର ସହିତ) ନିଷ୍ପତ୍ତି କରନ୍ତି । ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ । ୧୧. ଯଦି ତୁମମାନଙ୍କ ପତ୍ନୀଙ୍କ ମଧ୍ୟରୁ କେହି ଅଣମୁସଲିମମାନଙ୍କ ପାଖକୁ ଚାଲି ଯାଇଥାଏ ଏବଂ ପରେ ତୁମମାନଙ୍କୁ ଏହିଭଳି ସୁଯୋଗ ମିଳେ, ତେବେ ଯେଉଁମାନଙ୍କର ପତ୍ନୀମାନେ ଯାଇଛନ୍ତି ସେମାନଙ୍କୁ ସେତିକି ଧନ ଦେଇଦିଅ ଯେତିକି ଧନ ସେମାନେ (ମେହେର ରୂପେ) ଦେଇଥିଲେ ଏବଂ ଅଲ୍ଲାହଙ୍କୁ ଭୟ କରୁଥାଅ ଯାହାଙ୍କ ଉପରେ ତୁମେମାନେ ଆସ୍ଥା ରଖିଛ ।

୧୨. ହେ ବାର୍ତ୍ତାବହ! ଯଦି ମୁସଲିମ ମହିଳାମାନେ ତୁମ ପାଖକୁ ଏବିଷୟରେ ଦୀକ୍ଷା ଗ୍ରହଣ କରିବା ପାଇଁ ଆସନ୍ତି ଯେ ସେମାନେ କାହାରିକୁ ଅଲ୍ଲାହଙ୍କର ସମକକ୍ଷ କରିବେ ନାହିଁ, ଚୋରି କରିବେ ନାହିଁ, ବ୍ୟଭିଚାର କରିବେ ନାହିଁ, ନିଜ ସନ୍ତାନଙ୍କୁ ହତ୍ୟା କରିବେ ନାହିଁ, ଜାଣିଶୁଣି ନିଜ (ଅବୈଧ ସନ୍ତାନର) ପାପ ଅନ୍ୟ ମୁଣ୍ଡରେ ଲଦିବେ ନାହିଁ କିମ୍ବା ତୁମେ କୌଣସି ଭଲ କଥା କହିଲେ ଅମାନ୍ୟ କରିବେ ନାହିଁ, ତେବେ ସେମାନଙ୍କୁ ଦୀକ୍ଷିତ କରିନିଅ ଏବଂ ସେମାନଙ୍କ ପାଇଁ କ୍ଷମାପ୍ରାର୍ଥନା କର । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଓ ପରମ ଦୟାଳୁ ।

୧୩. ହେ ସଦବିଶ୍ୱାସୀମାନେ! ଏଭଳି ଲୋକଙ୍କ ସହିତ ବନ୍ଧୁତା କରନାହିଁ ଯେଉଁମାନଙ୍କ ଉପରେ ଅଲ୍ଲାହ୍ କ୍ଷୁବ୍ଧ ହୋଇଛନ୍ତି । ଯେମିତି ନାସ୍ତିକମାନେ କବରରେ ଥିବା ଲୋକଙ୍କ ବିଷୟରେ (ଜୀବିତ ହେବାର) ଆଶା ରଖିନାହାନ୍ତି, ସେହିପରି ଏମାନେ ପରଲୋକର ଆଶା ରଖିନାହାନ୍ତି ।

## ଅଧ୍ୟାୟ ୬୧, ଅସ୍ ସଫ୍

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ପୃଥିବୀ ଓ ଆକାଶରେ ଥିବା ପ୍ରତ୍ୟେକ ସୃଷ୍ଟି ଅଲ୍ଲାହଙ୍କର ଗୁଣଗାନ କରେ । ସେ ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞ ।

୨. ହେ ସଦ୍‌ବିଶ୍ୱାସୀଗଣ ! ତୁମେମାନେ ଏଭଳି କଥା କାହିଁକି କହୁଛ ଯାହା କରୁନାହଁ ? ୩. ଅଲ୍ଲାହଙ୍କ ଦୃଷ୍ଟିରେ ଏହା ଅତି ନିନ୍ଦନୀୟ ଯେ ତୁମେମାନେ ଏଭଳି କଥା କୁହ ଅଥଚ ନିଜେ ତାହା କରନାହିଁ ।

୪. ଅଲ୍ଲାହ୍ ସେହି ଲୋକମାନଙ୍କୁ ଭଲ ପାଆନ୍ତି ଯେଉଁମାନେ ଅଲ୍ଲାହଙ୍କ ମାର୍ଗରେ ଏପରି ଧାଡ଼ି ବାନ୍ଧି ଯୁଦ୍ଧ କରନ୍ତି, ଯେପରି (ସେମାନେ) ଲୌହ ନିର୍ମିତ ଅଭେଦ୍ୟ ପ୍ରାଚୀର ।

୫. (ସେହି ସମୟକୁ ସ୍ମରଣ କର) ଯେତେବେଳେ ମୁସା ତାଙ୍କ ସଂପ୍ରଦାୟର ଲୋକମାନଙ୍କୁ କହିଥିଲେ, "ଭାଇମାନେ ! କାହିଁକି ମୋତେ କଷ୍ଟ ଦେଉଛ ? ତୁମେମାନେ ଭଲରୂପେ ଜାଣ ଯେ ମୋତେ ତୁମମାନଙ୍କ ପାଖକୁ ଅଲ୍ଲାହଙ୍କର ବାର୍ତ୍ତାବହ ରୂପେ ପଠାଯାଇଛି ।" ଯେହେତୁ ସେମାନେ ନିଜେ ବଙ୍କା ବାଟ ଧରିଲେ ଅଲ୍ଲାହ୍ ସେମାନଙ୍କ ମନକୁ ବଙ୍କା କରିଦେଲେ । ଅଲ୍ଲାହ୍ ଅବାଧ ଲୋକମାନଙ୍କର ମାର୍ଗଦର୍ଶନ କରନ୍ତିନାହିଁ ।

୬. ଏବଂ (ସେହି ଘଟଣା ମଧ୍ୟ ସ୍ମରଣ କର) ଯେତେବେଳେ ମରିୟମଙ୍କ ପୁତ୍ର ଇସା କହିଥିଲେ, "ହେ ଇସ୍ରାଇଲଙ୍କ ବଂଶଧର ! ମୁଁ ତୁମମାନଙ୍କ ପାଖକୁ ପଠାଯାଇ ଥିବା ଅଲ୍ଲାହଙ୍କର ଜଣେ ବାର୍ତ୍ତାବହ ଏବଂ ମୁଁ ମୋ' ପୂର୍ବରୁ ଆସିଥିବା ତୌରତ୍ ଗ୍ରନ୍ଥର ସମର୍ଥନ କରୁଛି ଏବଂ ମୋ' ପରେ ଆସିବାକୁ ଥିବା ଜଣେ ବାର୍ତ୍ତାବହଙ୍କ ବିଷୟରେ ଶୁଭ ସମାଚାର ମଧ୍ୟ ଦେଉଛି ଯାହାଙ୍କର ନାମ 'ଅହମଦ୍' ହେବ" କିନ୍ତୁ ଯେତେବେଳେ ସେ ସେମାନଙ୍କ ପାଖକୁ ସ୍ପଷ୍ଟ ପ୍ରମାଣ ନେଇ ଗଲେ ସେମାନେ କହିଲେ ଯେ ଏହା ପରିଷ୍କାର ଯାଦୁବିଦ୍ୟା ।

୭. ସେହି ବ୍ୟକ୍ତି ଅପେକ୍ଷା ଅଧିକ ଦୁରାଚାରୀ ଆଉ କିଏ ହୋଇପାରେ, ଯାହାକୁ ଇସଲାମର ମାର୍ଗକୁ ଡକାଯାଏ କିନ୍ତୁ ସେ ଅଲ୍ଲାହଙ୍କ ପ୍ରତି ମିଥ୍ୟାରୋପ

କରେ ? ଅଲ୍ଲାହ୍ ଦୁରାଚାରୀମାନଙ୍କର ମାର୍ଗଦର୍ଶନ କରନ୍ତିନାହିଁ । ୮. ସେମାନେ ଚାହୁଁଛନ୍ତି ଯେ ଅଲ୍ଲାହଙ୍କ ପ୍ରକାଶକୁ ମୁହଁରେ (ଫୁଙ୍କି ଦେଇ) ଲିଭାଇ ଦେବେ କିନ୍ତୁ ନାସ୍ତିକମାନଙ୍କୁ ଅପ୍ରିୟ ଲାଗିଲେ ସୁଦ୍ଧା ଅଲ୍ଲାହ୍ ତାଙ୍କ ପ୍ରକାଶକୁ ନିଶ୍ଚୟ ପୂର୍ଣ୍ଣତା ପ୍ରଦାନ କରିବେ । ୯. ସେ ନିଜ ବାର୍ତ୍ତାବହଙ୍କୁ ସତ୍‌ମାର୍ଗ ଓ ସତ୍‌ଧର୍ମର ବାର୍ତ୍ତା ଦେଇ ପଠାଇଛନ୍ତି ଯେପରିକି ଏହାକୁ ସକଳ ଧର୍ମ ଉପରେ ପ୍ରଭାବୀ କରିବେ ଯଦିଓ ଏହା ବହୁଈଶ୍ୱରବାଦୀମାନଙ୍କୁ ଅପ୍ରିୟ ଲାଗୁ ।

୧୦. ହେ ସଦ୍‌ବିଶ୍ୱାସୀମାନେ ! କ'ଣ ମୁଁ ତୁମମାନଙ୍କୁ ଏଭଳି ଏକ ବ୍ୟବସାୟ ବିଷୟରେ କହିବି ଯାହା ତୁମମାନଙ୍କୁ କଠୋର ଯାତନାରୁ ମୁକ୍ତି ଦେବ ? ୧୧. (ଶୁଣ !) ଅଲ୍ଲାହଙ୍କ ପ୍ରତି ଏବଂ ତାଙ୍କ ବାର୍ତ୍ତାବହଙ୍କ ପ୍ରତି ବିଶ୍ୱାସ ରଖ ଏବଂ ଅଲ୍ଲାହଙ୍କ ମାର୍ଗରେ ନିଜର ଧନଜୀବନ ଅର୍ପଣ କରି ସଂଘର୍ଷ କରୁଥାଅ । ଯଦି ତୁମେମାନେ ବୁଝିପାରିବ, ତେବେ ତୁମମାନଙ୍କ ପକ୍ଷରେ ଖୁବ୍ ଭଲ ହେବ । ୧୨. ସେ ତୁମମାନଙ୍କର ପାପ କ୍ଷମା କରିଦେବେ ଏବଂ ତୁମମାନଙ୍କୁ ଏଭଳି ଉଦ୍ୟାନମାନଙ୍କରେ ରଖିବେ ଯାହା ତଳେ ଝରଣା ବହୁଥାଏ ଏବଂ ତୁମମାନଙ୍କୁ ଶାଶ୍ୱତ ବୈକୁଣ୍ଠରେ ଥିବା ସୁନ୍ଦର ଭବନମାନଙ୍କରେ ସ୍ଥାନ ଦେବେ । ଏହା ଏକ ବଡ଼ ସଫଳତା । ୧୩. ସେ ଆଉ ଏକ ଅନୁଗ୍ରହ ମଧ୍ୟ କରିବେ ଯାହା ତୁମେମାନେ ଚାହଁ । ଏହା ହେଉଛି (ଶତ୍ରୁ ବିରୁଦ୍ଧରେ) ଅଲ୍ଲାହଙ୍କର ସାହାଯ୍ୟ ଏବଂ ଏକ ଆସନ୍ନ ବିଜୟ । (ହେ ରସୁଲ୍ !) ସଦବିଶ୍ୱାସୀମାନଙ୍କୁ ଶୁଭବାର୍ତ୍ତା ଦେଇଦିଅ ।

୧୪. ହେ ସଦ୍‌ବିଶ୍ୱାସୀମାନେ ! ଅଲ୍ଲାହଙ୍କୁ ସେହିପରି ସାହାଯ୍ୟ କର, ଯେପରି (ଯୀଶୁଙ୍କ ଶିଷ୍ୟଗଣ କରିଥିଲେ) । ମରୟମଙ୍କ ପୁତ୍ର ଇସା ତାଙ୍କ ଶିଷ୍ୟମାନଙ୍କୁ ପଚାରିଥିଲେ, "କିଏ ମୋତେ ଅଲ୍ଲାହଙ୍କ ପାଇଁ ସାହାଯ୍ୟ କରିବ ?" ଶିଷ୍ୟମାନେ ଉତ୍ତର ଦେଇଥିଲେ, "ଆମେ ଆପଣଙ୍କୁ ଅଲ୍ଲାହଙ୍କ କାର୍ଯ୍ୟରେ ସାହାଯ୍ୟ କରିବୁ ।" ପୁଣି ଇସ୍ରାଇଲଙ୍କ ବଂଶଜଙ୍କ ମଧ୍ୟରୁ କେତେକ ବିଶ୍ୱାସ କଲେ ଏବଂ ଆଉ କେତେକ ପ୍ରତ୍ୟାଖ୍ୟାନ କରିଦେଲେ । ଯେଉଁମାନେ ବିଶ୍ୱାସ କଲେ, ଆମ୍ଭେ ସେମାନଙ୍କୁ ସେମାନଙ୍କ ଶତ୍ରୁଙ୍କ ବିରୁଦ୍ଧରେ ସାହାଯ୍ୟ କଲୁ ଏବଂ ସେମାନେ ବିଜୟୀ ହେଲେ ।

## ଅଧ୍ୟାୟ ୬୨, ଅଲ୍ ଜୁମୁଆ
## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ପୃଥିବୀ ଓ ଆକାଶରେ ଥିବା ପ୍ରତ୍ୟେକ ସୃଷ୍ଟି ଅଲ୍ଲାହ୍‌ଙ୍କର ଗୁଣଗାନ କରେ ଯିଏ ବ୍ରହ୍ମାଣ୍ଡର ଅଧୀଶ୍ୱର, ପରମ ପବିତ୍ର, ମହାଶକ୍ତିମାନ ଏବଂ ତତ୍ତ୍ୱଜ୍ଞାନୀ ।

୨. ସେ ହିଁ ସେମାନଙ୍କ ସଂପ୍ରଦାୟ ଭିତରୁ ଜଣେ ନିରକ୍ଷର ବ୍ୟକ୍ତିଙ୍କୁ ବାର୍ତ୍ତାବହ କରି ପଠାଇଛନ୍ତି ଯିଏ ସେମାନଙ୍କୁ ତାଙ୍କ ବାଣୀ ପାଠ କରି ଶୁଣାନ୍ତି, ସେମାନଙ୍କର ଚିତ୍ତଶୁଦ୍ଧି କରନ୍ତି ଏବଂ ସେମାନଙ୍କୁ ଗ୍ରନ୍ଥ ଓ ତତ୍ତ୍ୱର ଶିକ୍ଷା ଦିଅନ୍ତି । ଏହାପୂର୍ବରୁ ଏମାନେ ସଂପୂର୍ଣ୍ଣ ପଥଭ୍ରଷ୍ଟ ଥିଲେ । ୩. ଏବଂ ତାଙ୍କୁ ସେମାନଙ୍କ ପାଖକୁ ମଧ୍ୟ ପଠାଯାଇଛି, ଯେଉଁମାନେ ଏପର୍ଯ୍ୟନ୍ତ ଏମାନଙ୍କ ସହିତ ଆସି ମିଶିନାହାନ୍ତି । ସେ ମହାଶକ୍ତିମାନ ଏବଂ ତତ୍ତ୍ୱଜ୍ଞ । ୪. ଏହା ଅଲ୍ଲାହ୍‌ଙ୍କର କୃପା ଏବଂ ସେ ଯାହା ପ୍ରତି ଚାହାନ୍ତି କୃପା କରନ୍ତି । ଅଲ୍ଲାହ୍ ପରମ କୃପାଳୁ । ୫. ଯେଉଁମାନଙ୍କୁ ତୌରାତ୍ ଗ୍ରନ୍ଥ ଦିଆ ଯାଇଥିଲା କିନ୍ତୁ ସେମାନେ ତାହାର ନିର୍ଦ୍ଦେଶ ପାଳନ କଲେନାହିଁ, ସେମାନଙ୍କର ଦୃଷ୍ଟାନ୍ତ ଏଭଳି ଏକ ଗଧ ପରି, ଯିଏ ନିଜ ପିଠିରେ କେବଳ ଗୁଡ଼ାଏ ବହି ଲଦିଥାଏ (କିନ୍ତୁ ସେଥିରୁ କିଛି ବୁଝେନାହିଁ) । ସେମାନଙ୍କର ଅବସ୍ଥା ଆହୁରି ଶୋଚନୀୟ, ଯେଉଁମାନେ ଅଲ୍ଲାହ୍‌ଙ୍କ ବାଣୀକୁ (ଜାଣିଶୁଣି) ପ୍ରତ୍ୟାଖ୍ୟାନ କରିଦେଲେ । ଅଲ୍ଲାହ୍ ଏଭଳି ଭ୍ରଷ୍ଟାଚାରୀମାନଙ୍କର ମାର୍ଗଦର୍ଶନ କରନ୍ତିନାହିଁ ।

୬. (ହେ ବାର୍ତ୍ତାବହ!) ସେମାନଙ୍କୁ କୁହ, "ହେ ୟହୁଦୀମାନେ! ଯଦି ତୁମମାନେ ମନେ କର ଯେ ଲୋକଙ୍କ ମଧ୍ୟରେ କେବଳ ତୁମେମାନେ ହିଁ ଅଲ୍ଲାହ୍‌ଙ୍କର ମିତ୍ର ତେବେ ଟିକିଏ ମୃତ୍ୟୁର କାମନା କର, ଯଦି ତୁମେମାନେ ପ୍ରକୃତରେ ସତ୍ୟବାଦୀ ।" ୭. କିନ୍ତୁ ସେମାନେ ଯେଉଁ କର୍ମଗୁଡ଼ିକ କରିଛନ୍ତି, ସେଥିପାଇଁ ଆଦୌ ମୃତ୍ୟୁର କାମନା କରିବେନାହିଁ । ଅଲ୍ଲାହ୍ ଦୁରାଚାରୀମାନଙ୍କୁ ଭଲରୂପେ ଜାଣନ୍ତି । ୮. ସେମାନଙ୍କୁ କହିଦିଅ, "ଯେଉଁ ମୃତ୍ୟୁଠାରୁ ତୁମେମାନେ ପଳାୟନ କରୁଛ, ତାହା ସହିତ ତୁମମାନଙ୍କର ନିଶ୍ଚୟ ଭେଟ ହେବ । ତା'ପରେ ତୁମମାନଙ୍କୁ ତାଙ୍କରି ପାଖକୁ ଫେରାଇ ନିଆଯିବ, ଯିଏ ଦୃଷ୍ଟ ଓ ଅଦୃଷ୍ଟର ଜ୍ଞାତା । ପୁଣି ତୁମେମାନେ ଯାହାସବୁ କରୁଥିଲ, ସେ ତୁମମାନଙ୍କୁ ଜଣାଇଦେବେ ।"

୯. ହେ ସଦ୍‌ବିଶ୍ୱାସୀଗଣ ! ଶୁକ୍ରବାର ଦିନ ଯେତେବେଳେ ନମାଜପାଠ କରିବା ପାଇଁ ଡକାଯାଏ, ଅଲ୍ଲାହ୍‌ଙ୍କ ସ୍ମରଣଚିନ୍ତନ କରିବା ପାଇଁ ତତ୍ପର ହୋଇଉଠ ଏବଂ କିଣାବିକା ବନ୍ଦ କରିଦିଅ । ଯଦି ତୁମେମାନେ ବୁଝିପାରୁଛ, ତେବେ ଏହା ତୁମମାନଙ୍କ ପାଇଁ ଖୁବ୍ ଭଲ । ୧୦. ପୁଣି ନମାଜପାଠ ଶେଷ ହେଲା ପରେ ନିଜନିଜ କାର୍ଯ୍ୟରେ ବାହାରିପଡ଼ ଏବଂ ଅଲ୍ଲାହ୍‌ଙ୍କ କୃପା (ଅର୍ଥାତ୍ ଜୀବିକା) ଅନ୍ୱେଷଣ କର ଏବଂ ଅଲ୍ଲାହ୍‌ଙ୍କୁ ନିରନ୍ତର ସ୍ମରଣ କରୁଥାଅ, ତା'ହେଲେ ତୁମେମାନେ ସଫଳ ହେବ ।

୧୧. ଯେତେବେଳେ ଏମାନେ କିଛି କିଣାବିକା ବା ଖେଳତାମସା ହେଉଥିବାର ଦେଖନ୍ତି, ସେହିଆଡ଼କୁ ଧାଆଁନ୍ତି ଏବଂ ତୁମକୁ (ପ୍ରବଚନ ଦେଉଥିବା ଅବସ୍ଥାରେ) ଛିଡ଼ା କରି ଚାଲିଯାଆନ୍ତି । ସେମାନଙ୍କୁ କହିଦିଅ, "ଅଲ୍ଲାହ୍‌ଙ୍କ ପାଖରେ ଯାହା ଅଛି ତାହା ଖେଳତାମସା ଏବଂ କିଣାବିକାଠାରୁ ଯଥେଷ୍ଟ ଭଲ । ଅଲ୍ଲାହ୍ ସର୍ବୋତ୍ତମ ଆହାରଦାତା ।"

## ଅଧ୍ୟାୟ ୬୩, ଅଲ୍ ମୁନାଫିକୁନ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. (ହେ ବାର୍ତ୍ତାବହ !) ଯେତେବେଳେ କପଟୀମାନେ ତୁମ ପାଖକୁ ଆସନ୍ତି, ତୁମକୁ କହନ୍ତି, "ଆପଣ ଅଲ୍ଲାହ୍‌ଙ୍କର ବାର୍ତ୍ତାବହ ବୋଲି ଆମେ ସ୍ୱୀକାର କରୁଛୁ ।" ଅଲ୍ଲାହ୍ ଜାଣନ୍ତି ଯେ ତୁମେ ପ୍ରକୃତରେ ତାଙ୍କର ବାର୍ତ୍ତାବହ ଏବଂ ଅଲ୍ଲାହ୍ ଏହାର ସାକ୍ଷୀ ଅଛନ୍ତି ଯେ ଏହି କପଟୀମାନେ ପକ୍କା ମିଥ୍ୟାବାଦୀ । ୨. ସେମାନେ ନିଜର ଶପଥକୁ ଢାଲ ରୂପେ ବ୍ୟବହାର କରୁଛନ୍ତି ଏବଂ ଏହାଦ୍ୱାରା ଲୋକମାନଙ୍କୁ ଅଲ୍ଲାହ୍‌ଙ୍କ ମାର୍ଗରୁ ରୋକୁଛନ୍ତି । ସେମାନେ ଅତି ହୀନ କାର୍ଯ୍ୟ କରୁଛନ୍ତି । ୩. ଏହାର କାରଣ, ସେମାନେ ବିଶ୍ୱାସ କଲାପରେ ପୁଣି ନାସ୍ତିକ ହୋଇଗଲେ । ତେଣୁ, ସେମାନଙ୍କ ହୃଦୟର ଦ୍ୱାର ବନ୍ଦ କରି ଦିଆଯାଇଛି ଯାହାଫଳରେ ସେମାନେ କିଛି ବୁଝିପାରୁ ନାହାନ୍ତି ।

୪. ଯଦି ତୁମେ ସେମାନଙ୍କୁ ଦେଖିବ, ସେମାନଙ୍କର ରୂପକାନ୍ତି ତୁମକୁ ଖୁବ୍ ଭଲ ଲାଗିବ ଏବଂ ସେମାନେ କଥା କହିଲେ ସେଥିରେ ତୁମର ମନ ଲାଖିଯିବ । ସେମାନେ ସଭାରେ କାନ୍ଥକୁ ଆଉଜି ଏପରି ବସିଥାଆନ୍ତି ସତେଯେପରି

କାଠଗଣ୍ଡି। କିଛି ପାଟିତୁଣ୍ଡ ହେଲେ ସେମାନେ ଏହାକୁ ନିଜ ବିରୁଦ୍ଧରେ ମନେ କରନ୍ତି। ଏମାନେ ତୁମର ପରମ ଶତ୍ରୁ। ଏମାନଙ୍କଠାରୁ ସାବଧାନ ରୁହ। ଅଲ୍ଲାହ୍ ଏମାନଙ୍କର ସର୍ବନାଶ କରନ୍ତୁ! ଏମାନେ କୁଆଡ଼େ ବାଟବଣା ହୋଇ ଯାଉଛନ୍ତି ?

୫. ଯଦି ସେମାନଙ୍କୁ ଡକାଯାଏ ଯେ ଆସ, ରସୁଲ୍ ତୁମମାନଙ୍କ ପାଇଁ କ୍ଷମାପ୍ରାର୍ଥନା କରିବେ, ସେମାନେ ମୁଣ୍ଡ ହଲାଇ (ମନା କରି) ଦିଅନ୍ତି ଏବଂ ତୁମେ ଦେଖିବ ଯେ ସେମାନେ ଅହଙ୍କାର କରି ମୁହଁ ବୁଲାଇ ନେଉଛନ୍ତି। ୬. (ହେ ରସୁଲ!) ତୁମେ ସେମାନଙ୍କ ପାଇଁ କ୍ଷମାପ୍ରାର୍ଥନା କର ବା ନକର ଏକା କଥା। ଅଲ୍ଲାହ୍ ସେମାନଙ୍କୁ କଦାପି କ୍ଷମା କରିବେନାହିଁ। ଅଲ୍ଲାହ୍ ଏଭଳି ଅବାଧ ଲୋକମାନଙ୍କର ମାର୍ଗଦର୍ଶନ କରନ୍ତିନାହିଁ।

୭. ଏମାନେ ସେହି ଲୋକ ଯେଉଁମାନେ କହୁଛନ୍ତି ଯେ ରସୁଲଙ୍କ ସାଥୀମାନଙ୍କୁ କିଛି (ଟଙ୍କାପଇସା) ଦିଅନାହିଁ, ଯେପରିକି ସେମାନେ (ତାଙ୍କୁ ଛାଡ଼ି) ଚାଲିଯିବେ, ଅଥଚ ଅଲ୍ଲାହ୍ ହିଁ ପୃଥିବୀ ଓ ଆକାଶର ସକଳ ଭଣ୍ଡାରର ମାଲିକ, ମାତ୍ର କପଟୀମାନେ ଏହା ବୁଝି ପାରୁନାହାନ୍ତି। ୮. ଏମାନେ କହୁଛନ୍ତି ଯେ ଯଦି ଆମେ ମଦିନା ଫେରୁ, ତେବେ ମଦିନାର ସମ୍ମାନିତ ବ୍ୟକ୍ତି ଜଣକ ସେଠାରେ ଥିବା ନୀଚ ବ୍ୟକ୍ତିକୁ ସେଠାରୁ ତଡ଼ିଦେବ। ସମ୍ମାନର ଅଧିକାରୀ ତ କେବଳ ଅଲ୍ଲାହ୍, ତାଙ୍କ ରସୁଲ ଏବଂ ସଦବିଶ୍ୱାସୀ ଭକ୍ତଗଣ, ମାତ୍ର କପଟୀ ବ୍ୟକ୍ତିମାନେ ଏହା ଜାଣନ୍ତିନାହିଁ। ୯. ହେ ସଦ୍‌ବିଶ୍ୱାସୀଗଣ! ତୁମମାନଙ୍କର ଧନସଂପତ୍ତି ବା ସନ୍ତାନସନ୍ତତି ତୁମମାନଙ୍କୁ ଅଲ୍ଲାହଙ୍କ ସ୍ମରଣଚିନ୍ତନରୁ ଭୁଲାଇ ନଦେଉ । ଯେଉଁମାନେ ଏଭଳି କରିବେ ସେମାନେ ନିଶ୍ଚୟ କ୍ଷତିଗ୍ରସ୍ତ ହେବେ।

୧୦. ତୁମମାନଙ୍କ ମଧ୍ୟରୁ କାହାରି ମୃତ୍ୟୁ ଆସିବା ପୂର୍ବରୁ ଆମ୍ଭେ ତାକୁ ଯାହା ଦେଇଛୁ, ସେଥିରୁ ସେ (ସତ୍‌କର୍ମରେ) ଖର୍ଚ୍ଚ କରୁ। ଏହାପରେ କେହି ଏହା ନକହୁ ଯେ "ହେ ପ୍ରଭୁ! ମୋତେ ଆଉ ଟିକିଏ ସମୟ କାହିଁକି ଦେଲନାହିଁ ଯାହାଫଳରେ ମୁଁ ଦାନ କରିଥାଆନ୍ତି ଏବଂ ପୁଣ୍ୟବାନ ହୋଇଥାଆନ୍ତି।" ୧୧. ଯେତେବେଳେ କାହାରି ମୃତ୍ୟୁର ସମୟ ଆସିଯାଏ, ସେତେବେଳେ ଅଲ୍ଲାହ୍ ଆଦୌ ସମୟ ଦିଅନ୍ତିନାହିଁ। ତୁମେମାନେ ଯାହାକିଛି କର, ଅଲ୍ଲାହ୍ ଜାଣନ୍ତି।

## ଅଧ୍ୟାୟ ୬୪, ଅତ୍ ତଗାବୁନ୍
## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ପୃଥିବୀ ଓ ଆକାଶରେ ଥିବା ପ୍ରତ୍ୟେକ ସୃଷ୍ଟି ଅଲ୍ଲାହ୍‌ଙ୍କର ଗୁଣଗାନ କରେ । (ସାରା ଜଗତରେ) ତାଙ୍କରି ଆଧିପତ୍ୟ ଏବଂ ସେ ହିଁ ସ୍ତୁତିଯୋଗ୍ୟ ଏବଂ ସେ ସବୁକିଛି କରିପାରନ୍ତି । ୨. ସେ ତୁମମାନଙ୍କୁ ସୃଷ୍ଟି କଲେ କିନ୍ତୁ ତୁମମାନଙ୍କ ମଧ୍ୟରୁ କେହି ଆସ୍ତିକ ଅଛି ତ କେହି ନାସ୍ତିକ । ତୁମେମାନେ ଯାହା କରୁଛ, ଅଲ୍ଲାହ୍ ଦେଖୁଛନ୍ତି ।

୩. ପୃଥିବୀ ଓ ଆକାଶକୁ ସେ ଏକ ଉଚିତ ଲକ୍ଷ୍ୟରେ ସୃଷ୍ଟି କରିଛନ୍ତି । ସେ ତୁମମାନଙ୍କୁ ରୂପ ଦେଲେ ଏବଂ ସୁନ୍ଦର ରୂପ ଦେଲେ । ଶେଷରେ ତାଙ୍କରି ପାଖକୁ ତୁମେମାନେ ଫେରିଯିବ । ୪. ପୃଥିବୀ ଓ ଆକାଶରେ ଯାହା ଅଛି, ସେ ଜାଣନ୍ତି ଏବଂ ତୁମେମାନେ ଯାହା ପ୍ରକାଶ୍ୟ ରୂପେ କର ବା ଯାହା ଗୋପନରେ କର, ତାହା ଜାଣନ୍ତି । ସେ ମନର କଥା ମଧ୍ୟ ଜାଣନ୍ତି ।

୫. କ'ଣ ତୁମମାନଙ୍କୁ ସେମାନଙ୍କର ଖବର ମିଳିନାହିଁ, ଯେଉଁମାନେ ଏହାପୂର୍ବରୁ ସତ୍ୟକୁ ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ନିଜ କର୍ମର ପରିଣାମ ଭୋଗିଥିଲେ ? ସେମାନେ ଆହୁରି ଭୟଙ୍କର ଶାସ୍ତି ଭୋଗିବେ । ୬. ଏହାର କାରଣ, ସେମାନଙ୍କ ପାଖକୁ ସେମାନଙ୍କ (ସମୟର) ଈଶ୍ୱରଦୂତମାନେ ସ୍ପଷ୍ଟ ପ୍ରମାଣ ନେଇ ଯାଇଥିଲେ, କିନ୍ତୁ ଏମାନେ କହିଲେ ଯେ କ'ଣ (ଆମ ଭଳି) ମଣିଷମାନେ ଆମର ମାର୍ଗଦର୍ଶନ କରିବେ ? ସେମାନେ ମାନିଲେନାହିଁ ଏବଂ ମୁହଁ ବୁଲାଇ ଚାଲିଗଲେ । ଅଲ୍ଲାହ୍‌ଙ୍କୁ ମଧ୍ୟ ସେମାନଙ୍କର ଆବଶ୍ୟକତା ନଥିଲା । ଅଲ୍ଲାହ୍ ଆବଶ୍ୟକତା-ରହିତ ଏବଂ ସ୍ତୁତିଯୋଗ୍ୟ ।

୭. ଯେଉଁ ନାସ୍ତିକମାନେ ବିଶ୍ୱାସ କରନ୍ତି ଯେ ସେମାନଙ୍କୁ (ମୃତ୍ୟୁ ପରେ) ଜୀବିତ କରାଯିବ ନାହିଁ, ସେମାନଙ୍କୁ କହିଦିଅ, "କାହିଁକି କରାଯିବ ନାହିଁ ? ମୋ' ଈଶ୍ୱରଙ୍କ ରାଣ ! ତୁମମାନଙ୍କୁ ନିଶ୍ଚୟ ଜୀବିତ କରାଯିବ ଏବଂ ତୁମେମାନେ (ସଂସାରରେ) ଯାହାସବୁ କରୁଥିଲ ତାହା ଜଣାଇ ଦିଆଯିବ । ଏହା କରିବା ଅଲ୍ଲାହ୍‌ଙ୍କ ପକ୍ଷରେ ଏକ ମାମୁଲି କାର୍ଯ୍ୟ । ୮. ତେଣୁ ଅଲ୍ଲାହ୍‌ଙ୍କୁ, ତାଙ୍କ ରସୁଲଙ୍କୁ ଏବଂ ଆମ୍ଭେ ପଠାଇଥିବା ଜ୍ୟୋତିକୁ ମାନିନିଅ । ତୁମେମାନେ ଯାହା କର, ଅଲ୍ଲାହ୍‌ଙ୍କୁ ସବୁ ଜଣା ।

୯. ଯେଉଁଦିନ ସେ ତୁମ ସମସ୍ତଙ୍କୁ (ପୁନର୍ଜୀବିତ କରି) ଏକାଠି କରିବେ, ସେଦିନ ହାରିବା-ଜିତିବାର ଦିନ ହେବ । ଯିଏ ଅଲ୍ଲାହଙ୍କୁ ବିଶ୍ୱାସ କରିଥିବ ଏବଂ ଭଲ କର୍ମ କରିଥିବ, ଅଲ୍ଲାହ୍ ତା'ର ପାପ କ୍ଷମା କରିଦେବେ ଏବଂ ତାକୁ ଏଭଳି ଉଦ୍ୟାନମାନଙ୍କରେ ରଖିବେ ଯାହା ତଳେ ଝରଣା ପ୍ରବାହିତ ହୁଏ । ଏଭଳି ଲୋକମାନେ ସର୍ବଦା ସେଠାରେ ରହିବେ । ଏହା ହେଉଛି (ମଣିଷର) ସବୁଠାରୁ ବଡ଼ ସଫଳତା । ୧୦. ଯେଉଁମାନେ ଅସ୍ୱୀକାର କଲେ ଏବଂ ଆମ୍ଭ ବାଣୀକୁ ମିଥ୍ୟା ବୋଲି କହିଲେ, ସେମାନେ ନର୍କବାସୀ ହେବେ ଏବଂ ସେଠାରେ ଚିରଦିନ ରହିବେ । ଏହା ଏକ କଦର୍ଯ୍ୟ ସ୍ଥାନ ।

୧୧. କୌଣସି ବିପଦ ଅଲ୍ଲାହଙ୍କ ଆଜ୍ଞା ବିନା ଆସେନାହିଁ ଏବଂ ଯିଏ ଅଲ୍ଲାହଙ୍କୁ ବିଶ୍ୱାସ କରେ, ସେ ତା' ଅନ୍ତରକୁ ବାଟ ଦେଖାଇ ଦିଅନ୍ତି । ଅଲ୍ଲାହ୍‌ଙ୍କୁ ସବୁ ବିଷୟ ଜଣା । ୧୨. ଅଲ୍ଲାହଙ୍କର ଆଜ୍ଞା ପାଳନ କର ଏବଂ ରସୁଲଙ୍କର ଆଜ୍ଞା ପାଳନ କର । ଯଦି ଏହା ନକରିବ, ତେବେ (ଜାଣିରଖ ଯେ) କେବଳ ପରିଷ୍କାର ଭାବରେ ବାର୍ତ୍ତା ଦେଇଦେବା ହେଉଛି ଆମ୍ଭ ରସୁଲଙ୍କର ଦାୟିତ୍ୱ । ୧୩. ସେ ଅଲ୍ଲାହ୍, ଯାହାଙ୍କ ବ୍ୟତୀତ କେହି ଉପାସନାଯୋଗ୍ୟ ନୁହେଁ । ସଦ୍‌ବିଶ୍ୱାସୀମାନେ ତାଙ୍କରି ଉପରେ ଭରସା ରଖିବା ଉଚିତ ।

୧୪. ହେ ସଦ୍‌ବିଶ୍ୱାସୀମାନେ ! ତୁମ ପତ୍ନୀ ଓ ସନ୍ତାନମାନଙ୍କ ମଧ୍ୟରୁ କେତେକ ତୁମର ଶତ୍ରୁ । ତେଣୁ, ସେମାନଙ୍କ ପ୍ରତି ସାବଧାନ ରୁହ । ଯଦି ତୁମେମାନେ ସେମାନଙ୍କୁ କ୍ଷମା କରିଦିଅ ଏବଂ ସେମାନଙ୍କ ଦୋଷ ପ୍ରତି ଗୁରୁତ୍ୱ ନଦେଇ ଦୋଷ ମାର୍ଜନା କରିଦିଅ, ତେବେ ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଏବଂ ପରମ ଦୟାଳୁ । ୧୫. ତୁମ ଧନସମ୍ପତ୍ତି ଓ ସନ୍ତାନସନ୍ତତି ତୁମମାନଙ୍କ ପରୀକ୍ଷା ପାଇଁ ଉଦ୍ଦିଷ୍ଟ । ଅଲ୍ଲାହଙ୍କ ପାଖରେ (ଭଲ ଲୋକମାନଙ୍କ ପାଇଁ) ସୁନ୍ଦର ପୁରସ୍କାର ଅଛି ।

୧୬. ତେଣୁ ସାଧ୍ୟମତେ ଅଲ୍ଲାହଙ୍କୁ ଭୟ କର, ତାଙ୍କ ଆଜ୍ଞା ଶୁଣ ଏବଂ ପାଳନ କର ଏବଂ ତାଙ୍କ ମାର୍ଗରେ ଧନ ଖର୍ଚ୍ଚ କରୁଥାଅ । ଏହା ତୁମମାନଙ୍କ ପକ୍ଷରେ ଖୁବ୍ ଭଲ । ଯେଉଁମାନେ ଇନ୍ଦ୍ରିୟ ପ୍ରଲୋଭନରୁ ବର୍ତ୍ତିଗଲେ, ସେହିମାନେ ସଫଳ ହେବେ । ୧୭. ଯଦି ତୁମେମାନେ ଅଲ୍ଲାହ୍‌ଙ୍କୁ ଭଲ (ମନରେ) ଋଣ ଦିଅ ତେବେ,

ସେ ତାହାକୁ ବହୁଗୁଣିତ କରି ପରିଶୋଧ କରିବେ ଏବଂ ତୁମମାନଙ୍କର ପାପ କ୍ଷମା କରିଦେବେ। ଅଲ୍ଲାହ୍ ଗୁଣଗ୍ରାହୀ ଏବଂ ଅତ୍ୟନ୍ତ ଉଦାର। ୧୮. ସେ ଦୃଷ୍ଟ ଓ ଅଦୃଷ୍ଟର ଜ୍ଞାତା, ପ୍ରବଳ ପରାକ୍ରମୀ ଏବଂ ତତ୍ତ୍ୱଜ୍ଞାନୀ।

## ଅଧ୍ୟାୟ ୬୫, ଅତ୍ ତଲାକ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ହେ ବାର୍ତ୍ତାବହ! ଯଦି ତୁମେମାନେ ପତ୍ନୀମାନଙ୍କୁ ତଲାକ୍ ଦିଅ, ତେବେ ସେମାନଙ୍କ ପ୍ରତୀକ୍ଷାକାଳର ଆରମ୍ଭରେ ଦିଅ ଏବଂ ପ୍ରତୀକ୍ଷାକାଳର ହିସାବ ରଖ। ଅଲ୍ଲାହଙ୍କୁ ଭୟ କର, ଯିଏ ତୁମମାନଙ୍କର ପ୍ରଭୁ। (ଏହି ଅବଧି ମଧ୍ୟରେ) ସେମାନଙ୍କୁ ଘରୁ ବାହାର କରନାହିଁ କିମ୍ବା ସେମାନେ ନିଜେ ମଧ୍ୟ ଘରୁ ଚାଲି ନଯାଆନ୍ତୁ। ହଁ, ଯଦି ସେମାନେ କୌଣସି ସ୍ୱଷ୍ଟ ଅଶ୍ଳୀଳ ଆଚରଣ କରନ୍ତି ତେବେ ଭିନ୍ନ କଥା। ଏହା ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ସୀମା। ଯିଏ ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ସୀମା ଅତିକ୍ରମ କରେ, ସେ ନିଜର ଅନିଷ୍ଟ କରେ। ତୁମକୁ ଜଣାନାହିଁ, ଏହାପରେ ହୁଏତ ଅଲ୍ଲାହ୍ (ମିଳାମିଶାର) କୌଣସି ବାଟ ବାହାର କରିଦେବେ।

୨. ଯଦି ସେମାନଙ୍କର ଇଦ୍ଦତ୍ (ଅର୍ଥାତ୍ ପ୍ରତୀକ୍ଷାକାଳ) ସରିଆସେ ତେବେ ସେମାନଙ୍କୁ ଉଚିତ ପନ୍ଥା ଅନୁଯାୟୀ (ବିବାହ ବନ୍ଧନରେ) ରହିବାକୁ ଦିଅ କିମ୍ବା ଉଚିତ ପନ୍ଥା ଅନୁଯାୟୀ ପୃଥକ କରିଦିଅ ଏବଂ ନିଜ ଭିତରୁ ଦୁଇଜଣ ନ୍ୟାୟପରାୟଣ ଲୋକଙ୍କୁ ଏହାର ସାକ୍ଷୀ ରଖ। (ହେ ସାକ୍ଷୀମାନେ!) ଅଲ୍ଲାହଙ୍କ ପାଇଁ ସଠିକ୍ ସାକ୍ଷ୍ୟ ଦିଅ। ଏହି ଉପଦେଶ ସେହି ବ୍ୟକ୍ତିକୁ ଦିଆଯାଉଛି ଯିଏ ଅଲ୍ଲାହଙ୍କୁ ଓ ପରଲୋକକୁ ବିଶ୍ୱାସ କରେ। ଯିଏ ଅଲ୍ଲାହଙ୍କୁ ଭୟ କରିବ, ଅଲ୍ଲାହ୍ ତା' ପାଇଁ (ସଂକଟରୁ) ମୁକ୍ତି ପାଇବାର ବାଟ ବାହାର କରିଦେବେ, ୩. ଏବଂ ତାକୁ ଏଭଳି ଜାଗାରୁ ଆହାର ଯୋଗାଇ ଦେବେ ଯାହା ବିଷୟରେ ସେ କଳ୍ପନା କରି ନଥିବ। ଯିଏ ଅଲ୍ଲାହଙ୍କ ଉପରେ ଭରସା କରିବ, ତା' ପାଇଁ ସେ ଯଥେଷ୍ଟ ହେବେ। ଅଲ୍ଲାହ୍ ନିଜର ଉଦ୍ଦେଶ୍ୟସାଧନ ଅବଶ୍ୟ କରନ୍ତି। ଅଲ୍ଲାହ୍ ହିଁ ସମସ୍ତଙ୍କର ଭାଗ୍ୟ ନିର୍ଦ୍ଧାରଣ କରିଛନ୍ତି।

୪. ଯେଉଁ ମହିଳାମାନଙ୍କର ଋତୁସ୍ରାବ ହେବାର ଆଶା ନାହିଁ, ଯଦି ସେମାନଙ୍କ ପ୍ରତୀକ୍ଷାକାଳ ବିଷୟରେ ତୁମମାନଙ୍କର ସନ୍ଦେହ ଥାଏ, ତେବେ (ମନେରଖ ଯେ) ଏମାନଙ୍କର ପ୍ରତୀକ୍ଷାକାଳ ତିନିମାସ ଏବଂ ଏହାହିଁ ସେମାନଙ୍କର ମଧ୍ୟ ପ୍ରତୀକ୍ଷାକାଳ ଯେଉଁମାନଙ୍କର ଋତୁସ୍ରାବ ଆରମ୍ଭ ହୋଇନାହିଁ । ଗର୍ଭବତୀ ମହିଳାମାନଙ୍କର ପ୍ରତୀକ୍ଷାକାଳ ସେମାନଙ୍କର ସନ୍ତାନ ପ୍ରସବ ହେବା ପର୍ଯ୍ୟନ୍ତ । ଯିଏ ଅଲ୍ଲାହଙ୍କୁ ଭୟ କରିବ, ଅଲ୍ଲାହ୍ ତା' କାର୍ଯ୍ୟକୁ ସହଜ କରିଦେବେ । ୫. ଏହା ଅଲ୍ଲାହଙ୍କର ଆଦେଶ, ଯାହା ସେ ତୁମମାନଙ୍କ ପାଖକୁ ପଠାଇଛନ୍ତି । ଯିଏ ଅଲ୍ଲାହଙ୍କୁ ଭୟ କରିବ, ସେ ତା' ପାପ କ୍ଷମା କରିଦେବେ ଏବଂ ତାକୁ ପ୍ରଚୁର ପୁରସ୍କାର ଦେବେ ।

୬. ମହିଳାମାନଙ୍କୁ ସେମାନଙ୍କ ପ୍ରତୀକ୍ଷାକାଳରେ ନିଜର ସାମର୍ଥ୍ୟ ଅନୁସାରେ ସେଇଠାରେ ରଖ ଯେଉଁଠି ତୁମେମାନେ ନିଜେ ରହୁଛ । ସେମାନଙ୍କୁ କଷ୍ଟ ଦେବା ଉଦ୍ଦେଶ୍ୟରେ ହଇରାଣ କରନାହିଁ । ଯଦି ସେମାନେ ଗର୍ଭବତୀ ଥାଆନ୍ତି, ତେବେ ସନ୍ତାନ ପ୍ରସବ ପର୍ଯ୍ୟନ୍ତ ସେମାନଙ୍କର ଖର୍ଚ୍ଚ ବହନ କର । ଯଦି ସେମାନେ ତୁମ କଥା ଅନୁସାରେ ଶିଶୁକୁ ଦୁଗ୍ଧପାନ କରାନ୍ତି, ତେବେ ସେମାନଙ୍କୁ ସେମାନଙ୍କର ପ୍ରାପ୍ୟ ଦେଇଦିଅ ଏବଂ (ଏବିଷୟରେ) ଭଲ ଭାବରେ ପରସ୍ପର ମଧ୍ୟରେ ଆଲୋଚନା କରି ନିଷ୍ପତ୍ତି କର । ଯଦି ତୁମେମାନେ ଏବିଷୟରେ ପରସ୍ପରକୁ ହଇରାଣ କର, ତେବେ ଅନ୍ୟ କେହି ମହିଳା ତାକୁ ଦୁଗ୍ଧପାନ କରାଇବ । ୭. ଯାହାର ଆର୍ଥିକ ଅବସ୍ଥା ଭଲ, ସେ ନିଜର ସାମର୍ଥ୍ୟ ଅନୁଯାୟୀ ଖର୍ଚ୍ଚ କରିବା ଉଚିତ ଏବଂ ଯାହାର ଆର୍ଥିକ ଅବସ୍ଥା ଭଲ ନୁହେଁ, ଅଲ୍ଲାହ୍ ତାକୁ ଯାହା ଦେଇଛନ୍ତି ସେ ସେହି ଅନୁସାରେ ଖର୍ଚ୍ଚ କରୁ । ଅଲ୍ଲାହ୍ ଯାହାକୁ ଯେତିକି ଦେଇଛନ୍ତି, ତା'ଠାରୁ ଅଧିକ ବୋଝ ସେ କାହାରି ଉପରେ ଲଦି ଦିଅନ୍ତିନାହିଁ । ଅଭାବ ଅନାଟନ ପରେ ଅଲ୍ଲାହ୍ ପୁଣି ସ୍ୱଚ୍ଛଳ ଅବସ୍ଥାକୁ ମଧ୍ୟ ଫେରାଇ ଆଣିବେ ।

୮. ଅନେକ ବସ୍ତିର ବାସିନ୍ଦାମାନେ ଈଶ୍ୱର ଓ ତାଙ୍କ ବାର୍ତ୍ତାବହମାନଙ୍କ ଆଜ୍ଞାର ବିରୋଧ କଲେ । ଆମ୍ଭେ ସେମାନଙ୍କଠାରୁ କଡ଼ାକଡ଼ି ଭାବରେ ହିସାବ ନେଲୁ ଏବଂ ସେମାନଙ୍କୁ ଏଭଳି ଶାସ୍ତି ଦେଲୁ ଯାହା ପୂର୍ବରୁ କେହି ଦେଖି ନଥିଲେ । ୯. ସେମାନେ ନିଜ ଅର୍ଜିତ କର୍ମର ମଜା ଚାଖିଲେ ଏବଂ ଏହାର ପରିଣାମ କ୍ଷତିକାରକ

ହିଁ ହେଲା । ୧୦. ଅଲ୍ଲାହ୍ ସେମାନଙ୍କ ପାଇଁ (ପରଲୋକରେ ମଧ୍ୟ) କଠୋର ଦଣ୍ଡର ବ୍ୟବସ୍ଥା କରିଛନ୍ତି । ତେଣୁ ହେ ବିଶ୍ୱାସ ରଖିଥିବା ବୁଦ୍ଧିମାନ ଲୋକମାନେ ! ଅଲ୍ଲାହ୍‌ଙ୍କୁ ଭୟ କର । ଅଲ୍ଲାହ୍ ତୁମମାନଙ୍କ ପାଇଁ ଏକ ଉପଦେଶପୂର୍ଣ୍ଣ ଗ୍ରନ୍ଥ ପଠାଇଛନ୍ତି । ୧୧. ସେ ଜଣେ ବାର୍ତ୍ତାବହଙ୍କୁ ମଧ୍ୟ ପଠାଇଛନ୍ତି ଯିଏ ତୁମମାନଙ୍କୁ ଅଲ୍ଲାହ୍‌ଙ୍କର ସ୍ପଷ୍ଟ ବାଣୀଗୁଡ଼ିକୁ ପଢ଼ି ଶୁଣାନ୍ତି, ଯେପରିକି ସେ (ଅଲ୍ଲାହଙ୍କୁ) ବିଶ୍ୱାସ କରୁଥିବା ଏବଂ ଭଲ କର୍ମ କରୁଥିବା ଲୋକମାନଙ୍କୁ ଅନ୍ଧକାର ମଧ୍ୟରୁ ବାହାର କରି ଆଲୋକକୁ ଆଣିବେ । ଯିଏ ଅଲ୍ଲାହଙ୍କୁ ବିଶ୍ୱାସ କରିବ ଏବଂ ଭଲ କର୍ମ କରିବ, ସେ ତାକୁ ବୈକୁଣ୍ଠର ଏଭଳି ଉଦ୍ୟାନରେ ରଖିବେ, ଯାହା ତଳେ ଝରଣା ବହେ । ସେ ସେଠାରେ ଚିରକାଳ ରହିବ । ଅଲ୍ଲାହ୍ ଏଭଳି ବ୍ୟକ୍ତି ପାଇଁ ଖୁବ୍ ଭଲ ସୁଖସମ୍ଭୋଗର ବ୍ୟବସ୍ଥା କରିଛନ୍ତି ।

୧୨. ସେ ହିଁ ଅଲ୍ଲାହ୍, ଯିଏ ସାତଗୋଟି ଆକାଶ ସୃଷ୍ଟି କରିଛନ୍ତି ଏବଂ ସେହି ସଂଖ୍ୟାର ଧରିତ୍ରୀ ମଧ୍ୟ । ସେଗୁଡ଼ିକରେ (ନିରନ୍ତର) ତାଙ୍କର ଆଦେଶ ଅବତୀର୍ଣ୍ଣ ହେଉଥାଏ । ଏହାଦ୍ୱାରା ତୁମେମାନେ ଜାଣିବ ଯେ ଅଲ୍ଲାହ୍ ସବୁକିଛି କରିବାକୁ ସକ୍ଷମ ଏବଂ ଅଲ୍ଲାହ୍ ପ୍ରତ୍ୟେକ ସୃଷ୍ଟିକୁ ନିଜ ଜ୍ଞାନ ଦ୍ୱାରା ଘେରି ରଖିଛନ୍ତି ।

## ଅଧ୍ୟାୟ ୬୬, ଅତ୍ ତହ୍‌ରୀମ୍

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ହେ ବାର୍ତ୍ତାବହ ! ଯେଉଁ ବସ୍ତୁକୁ ତୁମ ପାଇଁ ଅଲ୍ଲାହ୍ ବୈଧ କରିଛନ୍ତି ତୁମେ କାହିଁକି ତାକୁ ଅବୈଧ କରୁଛ ? କ’ଣ ଏହାଦ୍ୱାରା ନିଜ ପତ୍ନୀମାନଙ୍କୁ ଖୁସି କରିବାକୁ ଚାହୁଁଛ ? ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଏବଂ ପରମ ଦୟାଳୁ । ୨. (ପ୍ରାୟଶ୍ଚିତ କରି) ଏଭଳି ପ୍ରତିଜ୍ଞାରୁ ମୁକ୍ତ ହେବାର ନିର୍ଦ୍ଦେଶ ଅଲ୍ଲାହ୍ ତୁମମାନଙ୍କୁ ଦେଇ ସାରିଛନ୍ତି । ଅଲ୍ଲାହ୍ ହିଁ ତୁମମାନଙ୍କର କାର୍ଯ୍ୟସିଦ୍ଧି କରନ୍ତି । ସେ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ ।

୩. ଯେତେବେଳେ ବାର୍ତ୍ତାବହ ତାଙ୍କର ଜଣେ ପତ୍ନୀଙ୍କୁ ଗୋପନରେ ଗୋଟିଏ କଥା କହିଲେ ଏବଂ ସେହି ପତ୍ନୀ ଜଣକ କଥାଟିକୁ ତାଙ୍କର ଅନ୍ୟ

ଜଣେ ପତ୍ନୀଙ୍କ ନିକଟରେ ପ୍ରକାଶ କରିଦେଲେ, ଅଲ୍ଲାହ୍ ନିଜ ବାର୍ତ୍ତାବହଙ୍କୁ ଏବିଷୟରେ ଜଣାଇଦେଲେ । ତେଣୁ, ବାର୍ତ୍ତାବହ ସେହି ପତ୍ନୀଙ୍କୁ ଏବିଷୟରେ କିଛି କହିଲେ କିନ୍ତୁ ସଂପୂର୍ଣ୍ଣ କଥା କହିଲେନାହିଁ । ଯେତେବେଳେ ସେ ତାଙ୍କୁ ଏବିଷୟରେ ଆକଟ କଲେ, ତାଙ୍କ ପତ୍ନୀ ତାଙ୍କୁ ପଚାରିଲେ, "ଆପଣଙ୍କୁ ଏକଥା କିଏ କହିଲା ?" ସେ ଉତ୍ତର ଦେଲେ, "ମୋତେ ସେ ଜଣାଇଲେ, ଯିଏ ସବୁ ଜାଣନ୍ତି ଏବଂ ସବୁ ଖବର ରଖନ୍ତି ।"

୪. (ହେ ବାର୍ତ୍ତାବହଙ୍କ ପତ୍ନୀମାନେ!) ଯଦି ତୁମେ ଦୁହେଁ ଅଲ୍ଲାହଙ୍କ ନିକଟରେ ଅନୁତାପ କରିବ, (ତେବେ ଭଲ ହେବ) କାରଣ ତୁମମାନଙ୍କର ମନ ବାଟବଣା ହୋଇଯାଇଛି । ଯଦି ତୁମେମାନେ ତାଙ୍କ ବିରୁଦ୍ଧରେ ପରସ୍ପରକୁ ସମର୍ଥନ କରିବ, ତେବେ (ଜାଣିରଖ ଯେ) ଅଲ୍ଲାହ୍ ତାଙ୍କର ମିତ୍ର ଏବଂ ଦେବଦୂତ ଜିବ୍ରାଇଲ୍, ଧର୍ମପ୍ରାଣ ମୁସଲିମ୍‌ଗଣ ତଥା ଅନ୍ୟ ଦେବଦୂତମାନେ ମଧ୍ୟ ତାଙ୍କର ସହାୟକ । ୫. ଯଦି ସେ ତୁମମାନଙ୍କୁ ତଲାକ୍ ଦେଇଦିଅନ୍ତି, ତେବେ ତାଙ୍କ ପ୍ରଭୁ ତୁମମାନଙ୍କ ସ୍ଥାନରେ ତାଙ୍କୁ ତୁମମାନଙ୍କଠାରୁ ଭଲ ପତ୍ନୀ ପ୍ରଦାନ କରିଦେବା କିଛି ବିଚିତ୍ର ନୁହେଁ, ଯେଉଁମାନେ ମୁସଲିମ୍ ଥିବେ, ସଦ୍‌ବିଶ୍ୱାସିନୀ ତଥା ଆଜ୍ଞାକାରିଣୀ ହୋଇଥିବେ ଏବଂ ସେମାନେ କ୍ଷମାପ୍ରାର୍ଥନା କରୁଥିବେ, (ନିୟମିତ) ଉପାସନା କରୁଥିବେ ଏବଂ ଉପବାସ ପାଳନ କରୁଥିବେ – ବିବାହିତା ମଧ୍ୟ ଏବଂ ଅବିବାହିତା ମଧ୍ୟ ।

୬. ହେ ମୁସଲମାନଗଣ! ନିଜକୁ ଓ ନିଜ ପରିଜନମାନଙ୍କୁ ସେହି ନର୍କର ନିଆଁରୁ ରକ୍ଷାକର ଯାହାର ଇନ୍ଧନ ହେବେ ମଣିଷ ଓ ପଥର, ଯେଉଁଠି କଠୋର ସ୍ୱଭାବର ଶକ୍ତିଶାଳୀ ଦେବଦୂତମାନେ ନିଯୁକ୍ତ ହୋଇଥିବେ ଯେଉଁମାନେ ଆଦୌ ଅଲ୍ଲାହଙ୍କର ଆଦେଶ ଅମାନ୍ୟ କରନ୍ତିନାହିଁ ଏବଂ ତାହାହିଁ କରନ୍ତି ଯାହାର ନିର୍ଦ୍ଦେଶ ସେମାନଙ୍କୁ ଦିଆଯାଏ । ୭. (ସେତେବେଳେ କୁହାଯିବ) "ହେ ନାସ୍ତିକମାନେ! ଆଜି କୌଣସି ବାହାନା କରନାହିଁ । ତୁମମାନଙ୍କୁ ତାହାରି ଫଳ ମିଳୁଛି, ଯାହା ତୁମେମାନେ କରୁଥିଲ ।"

୮. ହେ ସଦ୍‌ବିଶ୍ୱାସୀଗଣ! ଅଲ୍ଲାହଙ୍କ ନିକଟରେ ଶୁଦ୍ଧ ମନରେ ପଶ୍ଚାତାପ କର । ସମ୍ଭବତଃ ସେ ତୁମମାନଙ୍କର ପାପ କ୍ଷମା କରିଦେବେ ଏବଂ ତୁମମାନଙ୍କୁ

ବୈକୁଣ୍ଠର ଏଭଳି ଉଦ୍ୟାନରେ ରଖିବେ ଯାହା ତଳେ ଝରଣା ବହେ । ସେଦିନ ସେ ନିଜ ବାର୍ତ୍ତାବହଙ୍କୁ ଏବଂ ତାଙ୍କ ସହିତ ଥିବା ସଦ୍‌ବିଶ୍ୱାସୀ ବ୍ୟକ୍ତିମାନଙ୍କୁ ହତାଦର କରିବେ ନାହିଁ । (ସେଦିନ) ସେମାନଙ୍କର ଜ୍ୟୋତି ସେମାନଙ୍କ ଆଗରେ ଡାହାଣ ପାଖ ଦେଇ ଯାଉଥିବ । ସେମାନେ ପ୍ରାର୍ଥନା କରୁଥିବେ, "ହେ ପ୍ରଭୁ! ଆମ ପାଇଁ ଆମ ଜ୍ୟୋତିକୁ ପୂର୍ଣ୍ଣତା ପ୍ରଦାନ କର ଏବଂ ଆମମାନଙ୍କୁ କ୍ଷମା କରିଦିଅ । ତୁମେ ସବୁକିଛି କରିବାକୁ ସକ୍ଷମ ।"

୯. ହେ ବାର୍ତ୍ତାବହ! ନାସ୍ତିକ ଓ କପଟୀମାନଙ୍କ ବିରୁଦ୍ଧରେ ସଂଘର୍ଷ କର ଏବଂ ସେମାନଙ୍କ ପ୍ରତି କଠୋର ହୁଅ । ନର୍କ ସେମାନଙ୍କର ବାସଘର ହେବ, ଯାହା ଅତି କଦର୍ଯ୍ୟ ସ୍ଥାନ ।

୧୦. ନାସ୍ତିକମାନଙ୍କ ପାଇଁ ଅଲ୍ଲାହ୍ (ଈଶ୍ୱରଦୂତ) ନୂହ୍ ଓ ଲୁତ୍‌ଙ୍କ ପତ୍ନୀମାନଙ୍କର ଉଦାହରଣ ଦେଉଛନ୍ତି । ସେ ଦୁହେଁ ଆମ୍ଭର ଦୁଇଜଣ ଧର୍ମପ୍ରାଣ ଭକ୍ତଙ୍କ ଘରେ ଥିଲେ, କିନ୍ତୁ ସେମାନେ ସେମାନଙ୍କ ପତିଙ୍କ ସହିତ ବିଶ୍ୱାସଘାତକତା କଲେ । ତେଣୁ, ସେ ଦୁହେଁ ଏମାନଙ୍କୁ ଅଲ୍ଲାହଙ୍କ ଶାସ୍ତିରୁ ରକ୍ଷା କରିପାରିଲେ ନାହିଁ । ଆଜ୍ଞା ହେଲା, "ଅନ୍ୟ ନର୍କବାସୀମାନଙ୍କ ସହିତ ତୁମେ ଦୁହେଁ ମଧ୍ୟ ନର୍କକୁ ଯାଅ ।" ୧୧. ସଦ୍‌ବିଶ୍ୱାସୀମାନଙ୍କ ପାଇଁ ଅଲ୍ଲାହ୍ ଫିରଔନର ପତ୍ନୀଙ୍କ ଉଦାହରଣ ଦେଉଛନ୍ତି, ଯିଏ ପ୍ରାର୍ଥନା କରିଥିଲେ, "ହେ ପାଳନକର୍ତ୍ତା! ମୋ' ପାଇଁ ନିଜ ପାଖରେ ବୈକୁଣ୍ଠରେ ଗୋଟିଏ ଘର ତିଆରି କର ଏବଂ ମୋତେ ଫିରଔନ ଏବଂ ତା' ଅପକର୍ମରୁ ରକ୍ଷା କର ଏବଂ ଅତ୍ୟାଚାରୀମାନଙ୍କ କବଳରୁ ମୁକ୍ତି ଦିଅ ।" ୧୨. ଏବଂ ଅନ୍ୟ ଏକ ଉଦାହରଣ ଇମ୍ରାନଙ୍କ କନ୍ୟା ମରୟମଙ୍କର, ଯିଏ ତାଙ୍କର ସତୀତ୍ୱ ରକ୍ଷା କରିଥିଲେ । ଆମ୍ଭେ ନିଜ ଆଜ୍ଞା ବଳରେ ତାଙ୍କ ଗର୍ଭରେ ପ୍ରାଣ ସଂଚାର କରିଥିଲୁ । ମରୟମ ନିଜ ଈଶ୍ୱରଙ୍କର କଥାକୁ ଏବଂ ତାଙ୍କ ଗ୍ରନ୍ଥଗୁଡ଼ିକୁ ସତ୍ୟ ବୋଲି ମାନୁଥିଲେ ଏବଂ ତାଙ୍କର ଆଜ୍ଞାକାରିଣୀ ଥିଲେ ।

## ଅଧ୍ୟାୟ ୬୭, ଅଲ୍ ମୁଲ୍କ
## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ମଙ୍ଗଳମୟ ସେହି ସତ୍ତା ଯାହାଙ୍କ ହାତରେ ରହିଛି ସାରା ଜଗତର ଆଧିପତ୍ୟ। ସେ ସବୁକିଛି କରିବାକୁ ସକ୍ଷମ। ୨. ସେ ଜୀବନ ଓ ମୃତ୍ୟୁକୁ ଏଇଥିପାଇଁ ସୃଷ୍ଟି କରିଛନ୍ତି ଯେ ଏହାଦ୍ୱାରା ତୁମମାନଙ୍କୁ ପରୀକ୍ଷା କରି ଦେଖିବେ ଯେ ତୁମମାନଙ୍କ ମଧ୍ୟରୁ କିଏ ଭଲ କର୍ମ କରୁଛି। ସେ ପ୍ରବଳ ପରାକ୍ରମୀ ଏବଂ ଅତ୍ୟନ୍ତ କ୍ଷମାଶୀଳ। ୩. ସେ ସ୍ତରସ୍ତର କରି ସାତୋଟି ଆକାଶ ସୃଷ୍ଟି କରିଛନ୍ତି। ତୁମେ ଦୟାମୟଙ୍କ ରଚନାରେ କୌଣସି ତ୍ରୁଟି ଦେଖିବାକୁ ପାଇବନାହିଁ। ପୁଣି ଦେଖ। କ'ଣ ତୁମେ ସେଥିରେ କୌଣସି ଦୋଷତ୍ରୁଟି ଦେଖୁଛ ? ୪. ପୁନର୍ବାର ଦେଖ। ତୁମ ଦୃଷ୍ଟି ଅସଫଳ ଓ କ୍ଳାନ୍ତ ହୋଇ ଲେଉଟି ଆସିବ।

୫. ଆମ୍ଭେ ପୃଥିବୀର ନିକଟତ୍ତମ ଆକାଶକୁ ନକ୍ଷତ୍ରମାନଙ୍କ ଦ୍ୱାରା ସୁଶୋଭିତ କରିଛୁ ଏବଂ ସେଗୁଡ଼ିକୁ ଶଇତାନମାନଙ୍କୁ ତଡ଼ିବାର ଅସ୍ତ୍ର କରିଛୁ। ଆମ୍ଭେ ସେମାନଙ୍କ ପାଇଁ ଜ୍ୱଳନ୍ତ ଅଗ୍ନିର ଯାତନା ପ୍ରସ୍ତୁତ କରି ରଖିଛୁ।

୬. ଯେଉଁମାନେ ସେମାନଙ୍କ ପାଳନକର୍ତ୍ତାଙ୍କୁ ମାନିଲେନାହିଁ, ସେମାନେ ନର୍କ ଯନ୍ତ୍ରଣା ଭୋଗିବେ ଏବଂ ଏହା ଏକ କଦର୍ଯ୍ୟ ସ୍ଥାନ। ୭. ଯେତେବେଳେ ସେମାନଙ୍କୁ ସେଥିରେ ନିକ୍ଷେପ କରାଯିବ, ସେମାନେ ଏହାର ଭୀଷଣ ଗର୍ଜନ ଶୁଣିବେ ଏବଂ ଏହା ଦାଉଦାଉ ହୋଇ ଜଳୁଥିବ। ୮. ସତେଯେପରି ଏବେ କ୍ରୋଧରେ ଫାଟିପଡ଼ିବ। ଯେତେବେଳେ କୌଣସି ସମୁଦାୟକୁ ନର୍କରେ ନିକ୍ଷେପ କରାଯିବ, ଏହାର ପ୍ରହରୀମାନେ ସେମାନଙ୍କୁ ପ୍ରଶ୍ନ କରିବେ, "କ'ଣ ତୁମମାନଙ୍କ ପାଖକୁ ସାବଧାନ କରିବା ପାଇଁ କେହି ଆସି ନଥିଲେ ?" ୯. ସେମାନେ ଉତ୍ତର ଦେବେ, "ଅବଶ୍ୟ ଆସିଥିଲେ, କିନ୍ତୁ ଆମେ ତାଙ୍କୁ ଅସ୍ୱୀକାର କରିଥିଲୁ ଏବଂ କହିଥିଲୁ ଯେ ଅଲ୍ଲାହ୍ କୌଣସି ବାର୍ତ୍ତା ପଠାଇନାହାନ୍ତି। ଏହା ତୁମର ଏକ ବିରାଟ ଭ୍ରମ।" ୧୦. ଏବଂ କହିବେ, "ଯଦି ଆମେମାନେ (ତାଙ୍କ କଥା) ଶୁଣିଥାଆନ୍ତୁ ବା ବୁଝିଥାଆନ୍ତୁ, ତା'ହେଲେ ଆଜି ନର୍କବାସୀମାନଙ୍କ ସହିତ ରହି ନଥାଆନ୍ତୁ।" ୧୧. ସୁତରାଂ ସେମାନେ ନିଜ ଦୋଷ ସ୍ୱୀକାର କରିନେବେ। ଦୂର ହୁଅନ୍ତୁ ନର୍କବାସୀ !

୧୨. ଯେଉଁମାନେ ଈଶ୍ୱରଙ୍କୁ ନଦେଖି ମଧ୍ୟ ଭୟ କରନ୍ତି, ସେମାନେ (ପ୍ରଭୁଙ୍କର) କ୍ଷମା ଲାଭ କରିବେ ଏବଂ ପ୍ରଚୁର ପୁରସ୍କାର ମଧ୍ୟ । ୧୩. ତୁମେମାନେ ନିଜ କଥାକୁ ଗୋପନ ରଖ ବା ପ୍ରକାଶ କର, ସେ ଅନ୍ତର କଥା ଜାଣନ୍ତି । ୧୪. କ'ଣ ସେ ଜାଣିପାରିବେ ନାହିଁ ଯିଏ ସୃଷ୍ଟି କରିଛନ୍ତି ? ସେ ଅତ୍ୟନ୍ତ ସୂକ୍ଷ୍ମଦର୍ଶୀ ଏବଂ ସର୍ବଜ୍ଞ । ୧୫. ସେ ହିଁ ଧରିତ୍ରୀକୁ ତୁମମାନଙ୍କ ଅଧୀନରେ କରି ଦେଇଛନ୍ତି । ତେଣୁ, ଧରାପୃଷ୍ଠରେ ଚଲାବୁଲା କର ଏବଂ ସେ ଯାହା ଆହାର ଦେଇଛନ୍ତି, ତାହା ଭୋଗ କର । ତୁମେମାନେ ପୁନର୍ଜୀବନ ପାଇ ତାଙ୍କରି ପାଖକୁ ଫେରିବ ।

୧୬. କ'ଣ ତୁମମାନଙ୍କୁ ତାଙ୍କର ଟିକିଏ ଭୟ ନାହିଁ, ଯିଏ ଆକାଶରେ ଅଛନ୍ତି ? ସେ ଚାହିଁଲେ ଭୂମିକମ୍ପ ବେଳେ ତୁମମାନଙ୍କୁ ଭୂଗର୍ଭରେ ଲୀନ କରିଦେବେ । ୧୭. କ'ଣ ତୁମମାନଙ୍କୁ ତାଙ୍କର ଭୟ ନାହିଁ, ଯିଏ ଆକାଶରେ ଅଛନ୍ତି ? ସେ ଚାହିଁଲେ ଘୂର୍ଣିବାତ୍ୟା ସୃଷ୍ଟି କରି ତୁମମାନଙ୍କ ଉପରେ ଗୋଡ଼ିପଥର ବୃଷ୍ଟି କରିବେ । ପୁଣି ତୁମେମାନେ ଜାଣିଯିବ ଯେ ମୁଁ କିପରି ଡରାଏ । ୧୮. ଯେଉଁମାନେ ଏମାନଙ୍କ ପୂର୍ବରୁ ଥିଲେ, ସେମାନେ ମଧ୍ୟ ଅସ୍ୱୀକାର କରିଥିଲେ । କେମିତି ଥିଲା ମୋ' ଶାସ୍ତି ? ୧୯. କ'ଣ ସେମାନେ ସେମାନଙ୍କ ମୁଣ୍ଡ ଉପରେ ଉଡୁଥିବା ପକ୍ଷୀମାନଙ୍କୁ ଦେଖୁନାହାନ୍ତି ଯେଉଁମାନେ ଡେଣା ମେଲାଇ ଦିଅନ୍ତି ଏବଂ ଏହାକୁ ଜାକି ମଧ୍ୟ ଦିଅନ୍ତି । ସେମାନଙ୍କୁ ଶୂନ୍ୟରେ କେବଳ ଦୟାମୟ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଧରି ରଖେନାହିଁ । ପ୍ରତ୍ୟେକ ବସ୍ତୁ ଉପରେ ତାଙ୍କର ନଜର ରହିଛି । ୨୦. ସେହି ଦୟାମୟଙ୍କ ବ୍ୟତୀତ ଭଲା ଆଉ କିଏ ଅଛି, ଯିଏ ତୁମମାନଙ୍କର ସେନା ସାଜି ତୁମମାନଙ୍କୁ ସାହାଯ୍ୟ କରିପାରିବ ? ନାସ୍ତିକମାନେ କେବଳ ଭ୍ରମରେ ପଡ଼ିଛନ୍ତି । ୨୧. କିମ୍ବା ଯଦି ସେ ତୁମମାନଙ୍କୁ ଆହାର ଦେବା ବନ୍ଦ କରିଦିଅନ୍ତି ତେବେ କିଏ ଅଛି, ଯିଏ ତୁମମାନଙ୍କୁ ଆହାର ଦେବ ? କିନ୍ତୁ ଏମାନେ ଅହଙ୍କାର ଯୋଗୁଁ ଜିଦ୍ କରୁଛନ୍ତି ।

୨୨. ଯିଏ ମୁହଁ ତଳକୁ କରି ଚାଲେ, ସେ ଠିକ୍ ବାଟ ପାଏ ବା ସେହି ବ୍ୟକ୍ତି ଯିଏ ମୁହଁ ସଳଖ ରଖି ଠିକ୍ ବାଟରେ ଚାଲେ ? ୨୩. ସେମାନଙ୍କୁ କୁହ, "ସେ ତୁମମାନଙ୍କୁ ସୃଷ୍ଟି କଲେ ଏବଂ ତୁମମାନଙ୍କୁ ଦେଖିବା, ଶୁଣିବା ଓ ବିଚାର

କରିବାର ଶକ୍ତି ଦେଲେ ଅଥଚ ତୁମେମାନେ କ୍ୱଚିତ୍ ଉପକାର ମାନିଥାଅ।” ୨୪. କୁହ, “ସେ ହିଁ ତୁମମାନଙ୍କୁ ଧରାପୃଷ୍ଠରେ ଚାରିଆଡେ ଖେଳାଇ ଦେଇଛନ୍ତି ଏବଂ ତୁମେମାନେ ତାଙ୍କରି ସମ୍ମୁଖରେ (ପୁନର୍ଜୀବିତ ହୋଇ) ଏକାଠି ହେବ।” ୨୫. ସେମାନେ ପଚାରୁଛନ୍ତି, “ଯଦି ତୁମେ ସତ୍ୟବାଦୀ ତେବେ କୁହ ଯେ ଏହା କେବେ ସତ ହେବ?” ୨୬. କହିଦିଅ, “ଏହା କେବଳ ଅଲ୍ଲାହ୍ ହିଁ ଜାଣନ୍ତି। ମୁଁ ତ କେବଳ ପରିଷ୍କାର ଭାବରେ ସାବଧାନ କରିଦେବାକୁ ଆସିଛି।” ୨୭. ଯେତେବେଳେ ସେମାନେ ଏହାକୁ ନିକଟରୁ ଦେଖିବେ, ସେମାନଙ୍କର ମୁହଁ ଶୁଖିଯିବ। (ସେତେବେଳେ) ସେମାନଙ୍କୁ କୁହାଯିବ, “ଏହା ସେହି ପ୍ରଳୟ ଯେଉଁଥିପାଇଁ ତୁମେମାନେ ଉଚ୍ଛନ ହେଉଥିଲ।”

୨୮. ସେମାନଙ୍କୁ କୁହ, “ଆଚ୍ଛା କହିଲ, ଅଲ୍ଲାହ୍ ମୋ’ର ବା ମୋ’ ସାଥୀମାନଙ୍କର ବିନାଶ କରନ୍ତୁ ବା ଆମ ପ୍ରତି କୃପା କରନ୍ତୁ, ନାସ୍ତିକମାନଙ୍କୁ ତାଙ୍କ ଶାସ୍ତିରୁ କିଏ ରକ୍ଷା କରିବ?” ୨୯. କହିଦିଅ, “ସେ ସେହି ଦୟାମୟ, ଯାହାଙ୍କୁ ଆମେ ବିଶ୍ୱାସ କରୁ ଏବଂ ତାଙ୍କରି ଉପରେ ଭରସା କରୁ। ତୁମେମାନେ ଶୀଘ୍ର ଜାଣିଯିବ ଯେ ପ୍ରକୃତରେ କିଏ ପଥଭ୍ରଷ୍ଟ ହୋଇଛି। ୩୦. ସେମାନଙ୍କୁ କୁହ, “ଟିକିଏ କୁହ, ଯଦି ତୁମମାନଙ୍କର (କୂଅର) ଜଳସ୍ତର ଭୂତଳକୁ ଖସିଯାଏ, ତେବେ କିଏ ତୁମମାନଙ୍କୁ ଝରୁଥିବା ପାଣି ଯୋଗାଇଦେବ?”

## ଅଧ୍ୟାୟ ୬୮, ଅଲ୍ କଲମ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ନୂନ୍ । ଲେଖନୀର ରାଣ ଏବଂ ସେହି ଲେଖାର ରାଣ ଯାହା ସେମାନେ ଲେଖନ୍ତି। ୨. (ହେ ମୁହମ୍ମଦ!) ଈଶ୍ୱରଙ୍କ କୃପାରୁ ତୁମେ ପାଗଳ ନୁହଁ। ୩. ତୁମ ପାଇଁ ତ ଅସରନ୍ତି ପୁରସ୍କାର ରହିଛି। ୪. ତୁମେ ଅବଶ୍ୟ ନୈତିକତାର ଶିଖରରେ ରହିଛ। ୫. ଅତିଶୀଘ୍ର ତୁମେ ଏହା ଦେଖିବ ଏବଂ ସେମାନେ ମଧ୍ୟ ଦେଖିବେ – ୬. ଯେ ତୁମମାନଙ୍କ ମଧ୍ୟରୁ (ପ୍ରକୃତରେ) କିଏ ପାଗଳ। ୭. ତୁମ ପ୍ରଭୁ ଭଲରୂପେ ଜାଣନ୍ତି ଯେ କେଉଁମାନେ ପଥଭ୍ରଷ୍ଟ ହୋଇଛନ୍ତି ଏବଂ ସେ ଏହା ମଧ୍ୟ ଜାଣନ୍ତି ଯେ କେଉଁମାନେ ଠିକ୍ ବାଟରେ ଅଛନ୍ତି। ୮. ତେଣୁ ତୁମେ ସେହି

ଲୋକମାନଙ୍କ କଥାରେ ପଡ଼ନାହିଁ ଯେଉଁମାନେ (ସତ୍ୟକୁ) ପ୍ରତ୍ୟାଖ୍ୟାନ କରୁଛନ୍ତି । ୯. ସେମାନେ ଚାହାନ୍ତି ଯେ (ଧର୍ମ ସଂକ୍ରାନ୍ତରେ) ତୁମେ ଟିକିଏ ନରମି ଗଲେ ସେମାନେ ମଧ୍ୟ ନରମି ଯିବେ ।

୧୦. ଏଭଳି କୌଣସି ନୀଚ ଲୋକର କଥା ଶୁଣନାହିଁ ଯିଏ ବାରମ୍ବାର ରାଣ ଖାଏ, ୧୧. ତାଚ୍ଛଲ୍ୟ ଓ ଚୁଗୁଲି କରିବାରେ ଅଭ୍ୟସ୍ତ, ୧୨. ଶୁଭକାର୍ଯ୍ୟରେ ବାଧା ଦେଉଥିବା ଜଣେ ପାପିଷ୍ଠ ହୋଇଥାଏ ଯିଏ (ଅତ୍ୟାଚାର କରିବାରେ) ସୀମାଲଂଘନ କରେ, ୧୩. କିମ୍ବା କଟୁଭାଷୀ ବା କୁଳହୀନ ହୋଇଥାଏ, ୧୪. ଏଇଥିଯୋଗୁଁ ଯେ ସେ ଜଣେ ଧନଶାଳୀ ଏବଂ ପୁତ୍ରବାନ ବ୍ୟକ୍ତି । ୧୫. ଯେତେବେଳେ ତା'ପାଖରେ ଆମ୍ଭର ବାଣୀ ପାଠ କରାଯାଏ, ସେ କହେ ଯେ ଏହା ପ୍ରାଚୀନ କାଳର ଲୋକକଥା । ୧୬. ଆମ୍ଭେ ଖୁବ୍‌ଶୀଘ୍ର ତା' ନାକରେ ଚେଙ୍କ ଦେବୁ ।

୧୭. ଆମ୍ଭେ ଏମାନଙ୍କୁ ସେମିତି ପରୀକ୍ଷା କରିଛୁ ଯେମିତି ଗୋଟିଏ ବଗିଚାର ମାଲିକମାନଙ୍କୁ ପରୀକ୍ଷା କରିଥିଲୁ ଯେଉଁମାନେ ରାଣ ଖାଇ କହିଥିଲେ ଯେ ସକାଳୁସକାଳୁ ସେମାନେ ସେହି ବଗିଚାର ଫଳ ତୋଳିନେବେ । ୧୮. କିନ୍ତୁ ସେମାନେ ଏହା କହିଲେନାହିଁ ଯେ "ଅଲ୍ଲାହ୍ ଚାହିଁଲେ ତୋଳିବୁ ।" ୧୯. ପୁଣି ସେମାନେ ଶୋଇଥିବା ବେଳେ ତୁମ ଈଶ୍ୱରଙ୍କ ତରଫରୁ ସେମାନଙ୍କ ବଗିଚାକୁ ଏକ ବିପଦ ମାଡ଼ି ଆସିଲା ୨୦. ଏବଂ ସେହି ବଗିଚାଟି ଅମଳ ସରିଥିବା ଏକ କ୍ଷେତ ପରି (ଧ୍ୱସ୍ତବିଧ୍ୱସ୍ତ) ହୋଇଗଲା । ୨୧. ସକାଳ ହେଲାମାତ୍ରେ ସେମାନେ ପରସ୍ପରକୁ ଡ଼ାକିଲେ । ୨୨. ଏବଂ କହିଲେ ଯେ ଯଦି ଫଳ ତୋଳିବାର ଅଛି, ତେବେ ସକାଳୁ ସକାଳୁ ବାହାରି ପଡ଼ । ୨୩. ସୁତରାଂ ସେମାନେ ବାହାରି ପଡ଼ିଲେ ଏବଂ ପରସ୍ପର ମଧ୍ୟରେ ଧୀରେଧୀରେ କୁହାକୁହି ହେଲେ - ୨୪. "ଆଜି କୌଣସି ଗରିବ ଲୋକକୁ ବଗିଚା ଭିତରକୁ ଆସିବାକୁ ଦିଅନାହିଁ ।" ୨୫. ସେମାନେ ନିଜକୁ ସକ୍ଷମ ଭାବି ସକାଳୁ ସକାଳୁ ବାହାରିଗଲେ । ୨୬. କିନ୍ତୁ ଯେତେବେଳେ ନିଜର (ଧ୍ୱସ୍ତ-ବିଧ୍ୱସ୍ତ) ବଗିଚାକୁ ଦେଖିଲେ, (ପ୍ରଥମେ) କହିଲେ, "ଆମେ ନିଶ୍ଚୟ ରାସ୍ତା ଭୁଲିଯାଇଛୁ ।" ୨୭. ତା'ପରେ କହିଲେ, "ନା ନା, ଆମର ତ ସର୍ବନାଶ ହୋଇଗଲା !" ୨୮. ସେମାନଙ୍କ ମଧ୍ୟରୁ ଯେଉଁ ଲୋକଟି ଭଲ ଥିଲା, ସେ ସେମାନଙ୍କୁ କହିଲା, "କ'ଣ

ମୁଁ ତୁମମାନଙ୍କୁ ଅଲ୍ଲାହଙ୍କ ନାମ ନେବାକୁ କହି ନଥିଲି?" ୨୯. (ଏଥର) ସେମାନେ କହି ଉଠିଲେ, "ଆମ ପାଳନକର୍ତ୍ତା ପରମ ପବିତ୍ର । ଆମେମାନେ ଅବଶ୍ୟ ଦୋଷ କରିଛୁ ।" ୩୦. ପୁଣି ସେମାନେ ପରସ୍ପରକୁ ଦୋଷ ଦେବାକୁ ଲାଗିଲେ । ୩୧. କହିଲେ, "ଆମକୁ ଧିକ୍ । ଆମେ ସୀମା ଅତିକ୍ରମ କରିଗଲୁ । ୩୨. ଆମ ପ୍ରଭୁ ଆମମାନଙ୍କୁ ଏହାଠାରୁ ଅଧିକ ଭଲ ବଗିଚା ଦେବା କିଛି ବିଚିତ୍ର ନୁହେଁ । ଆମେ ଆମ ପ୍ରଭୁଙ୍କଠାରେ କ୍ଷମାପ୍ରାର୍ଥନା କରୁଛୁ ।" ୩୩. ଶାସ୍ତି ଏମିତି ମିଳେ । ପରଲୋକର ଶାସ୍ତି ତ ଏହାଠାରୁ ଆହୁରି ଭୟଙ୍କର । ଭଲ ହୁଅନ୍ତା ଯଦି ଏମାନେ ଏହା ଜାଣିନିଅନ୍ତେ !

୩୪. ସଦାଚାରୀ ଲୋକମାନଙ୍କ ପାଇଁ ସେମାନଙ୍କ ଈଶ୍ୱରଙ୍କ ପାଖରେ (ସ୍ୱର୍ଗର) ବିଳାସପୂର୍ଣ୍ଣ ଉଦ୍ୟାନ ଅଛି । ୩୫. କ'ଣ ଆମ୍ଭେ ନିଜର ଆଜ୍ଞାବହ ସେବକମାନଙ୍କୁ ପାପୀମାନଙ୍କ ସହିତ ସମାନ କରିଦେବୁ? ୩୬. ତୁମମାନଙ୍କର କ'ଣ ହୋଇଛି ? ତୁମେମାନେ କିଭଳି ବିଚାର କରୁଛ ?

୩୭. କ'ଣ ତୁମମାନଙ୍କ ପାଖରେ ଏପରି କୌଣସି ଗ୍ରନ୍ଥ ଅଛି ଯେଉଁଥିରେ ଏହା ପଢୁଛ – ୩୮. ଯେ ଯାହା ତୁମେମାନେ ଚାହିଁବ, ତାହାହିଁ ତୁମମାନଙ୍କୁ ମିଳିବ? ୩୯. କିମ୍ବା କ'ଣ ତୁମେମାନେ ଆମ୍ଭଠାରୁ ପ୍ରଳୟ ପର୍ଯ୍ୟନ୍ତ ବଳବତ୍ତର ଥିବା କୌଣସି ପ୍ରତିଶ୍ରୁତି ନେଇଛ ଯେ ତୁମେମାନେ ନିଜେ ଯାହା ସ୍ଥିର କରିବ, ତାହାହିଁ ତୁମମାନଙ୍କୁ ମିଳିବ? ୪୦. ସେମାନଙ୍କୁ ପଚାର ଯେ ତୁମମାନଙ୍କ ମଧ୍ୟରୁ କିଏ ଏହି ଦାୟିତ୍ୱ ନେଇଛି ?

୪୧. ଅଥବା ସେମାନେ ଅନ୍ୟମାନଙ୍କୁ ଆମ୍ଭର ସମକକ୍ଷ କରିଛନ୍ତି ? ଯଦି ସେମାନେ ସତ୍‌ପୁରୁଷ, ତେବେ ନିଜର ଆରାଧ୍ୟମାନଙ୍କୁ ଡାକିଆଣନ୍ତୁ । ୪୨. ଯେଉଁଦିନ ସେହି ଭୟଙ୍କର ବିପତ୍ତି ପଡ଼ିବ ଏବଂ ସେମାନଙ୍କୁ (ଅଲ୍ଲାହଙ୍କୁ) ପ୍ରଣାମ କରିବା ପାଇଁ କୁହାଯିବ, ସେତେବେଳେ ସେମାନେ ପ୍ରଣାମ କରି ପାରିବେନାହିଁ । ୪୩. ସେମାନଙ୍କର ଦୃଷ୍ଟି (ଲଜ୍ୟାରେ) ନଇଁ ଯାଇଥିବ ଏବଂ ସେମାନେ ଅପମାନିତ ବୋଧ କରୁଥିବେ, ଅଥଚ ଯେତେବେଳେ ସେମାନେ ସୁସ୍ଥସବଳ ଥିଲେ ସେମାନଙ୍କୁ ପ୍ରଣାମ କରିବା (ଅର୍ଥାତ୍ ନମାଜପାଠ କରିବା) ପାଇଁ ଡକା ଯାଉଥିଲା ।

୪୪. ତେଣୁ, ଯେଉଁମାନେ ଏହି ବାଣୀକୁ ମିଥ୍ୟା ବୋଲି କହୁଛନ୍ତି, ସେମାନଙ୍କ ବିଷୟ ମୋ' ଉପରେ ଛାଡ଼ିଦିଅ । ଆମ୍ଭେ ସେମାନଙ୍କୁ ଏମିତି ଧୀରେଧୀରେ ବିନାଶ ଆଡ଼କୁ ନେଇଯିବୁ ଯେ ସେମାନେ କିଛି ଜାଣିପାରିବେ ନାହିଁ । ୪୫. ବର୍ତ୍ତମାନ ମୁଁ ସେମାନଙ୍କୁ ଢ଼ିଲା ଛାଡ଼ିଦେଇଛି । ମୁଁ ଖୁବ୍ ଦୃଢ଼ ଯୋଜନା କରେ ।

୪୬. ତୁମେ କ'ଣ ଏମାନଙ୍କୁ କିଛି ମୂଲ୍ୟ ମାଗୁଛ ଯେ ଏମାନେ ଋଣ ଭାରରେ ବୁଡ଼ି ଯାଉଛନ୍ତି ? ୪୭. ଅଥବା ଏମାନଙ୍କ ପାଖରେ ଅଦୃଷ୍ଟର ଜ୍ଞାନ ଅଛି ଯାହାକୁ ଏମାନେ ଲେଖି ରଖୁଛନ୍ତି ? ୪୮. ତେଣୁ, ଧୈର୍ଯ୍ୟ ଧରି ନିଜ ପ୍ରଭୁଙ୍କର ନିଷ୍ପତ୍ତିକୁ ଅପେକ୍ଷା କର ଏବଂ ମତ୍ସ୍ୟପୁରୁଷ ୟୁନୁସ୍‌ଙ୍କ ପରି ହୁଅନାହିଁ, ଯିଏ ଅତିଶୟ ଦୁଃଖରେ ଭାଂଗିପଡ଼ି ଆମ୍ଭଙ୍କୁ ଡାକିଥିଲେ । ୪୯. ଯଦି ତାଙ୍କ ପ୍ରତି ଈଶ୍ୱରଙ୍କର କୃପା ହୋଇ ନଥାଆନ୍ତା, ତା'ହେଲେ ତାଙ୍କୁ ଲାଂଛିତ ଅବସ୍ଥାରେ କୌଣସି ପଥୁରିଆ ବେଳାଭୂମୀରେ ପକାଇ ଦିଆ ଯାଇଥାଆନ୍ତା । ୫୦. ପୁଣି ତାଙ୍କ ପ୍ରଭୁ ତାଙ୍କୁ ମନୋନୀତ କରି ପୁଣ୍ୟବାନ ଲୋକଙ୍କ ମଧ୍ୟରେ ସ୍ଥାନ ଦେଲେ ।

୫୧. ନାସ୍ତିକମାନେ ଯେତେବେଳେ (କୁରଆନର) ଉପଦେଶ ଶୁଣନ୍ତି, ତୁମକୁ ରାଗରେ ଏମିତି ଦେଖନ୍ତି ଯେମିତି ତୁମର ପାଦ ଖସାଇ ଦେବେ ଏବଂ କହନ୍ତି ଯେ ଏହି ବ୍ୟକ୍ତି ଜଣକ ପାଗଳ । ୫୨. ପ୍ରକୃତରେ ଏହି କୁରଆନ ସାରା ବିଶ୍ୱ ପାଇଁ ଏକ ଉପଦେଶପୂର୍ଣ୍ଣ ଗ୍ରନ୍ଥ ।

## ଅଧ୍ୟାୟ ୬୯, ଅଲ୍ ହାକ୍କା

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ସତ୍ୟ । ୨. କ'ଣ ଏହି ସତ୍ୟ ? ୩. ତୁମେ କ'ଣ ଜାଣ ଯେ ଏହି ସତ୍ୟ କ'ଣ ?

୪. ଏହା ପ୍ରଳୟର ମହାବିପଦ ଯାହାକୁ ଆଦ୍ ଓ ସମୁଦ୍ ସଂପ୍ରଦାୟ ମିଥ୍ୟା ବୋଲି କହିଥିଲେ । ୫. ପୁଣି ସମୁଦ୍ ସଂପ୍ରଦାୟ ଏକ ପ୍ରଚଣ୍ଡ ଶବ୍ଦର ଶିକାର ହେଲେ, ୬. ଏବଂ ଆଦ୍ ସଂପ୍ରଦାୟକୁ ଏକ ଭୟଙ୍କର ବାତ୍ୟାରେ ଧ୍ୱଂସ କରି ଦିଆଗଲା । ୭. ଅଲ୍ଲାହଙ୍କ ଆଜ୍ଞାରୁ ଏହା ସେମାନଙ୍କୁ କ୍ରମାଗତ ଭାବରେ ସାତ ରାତି

ଏବଂ ଆଠ ଦିନ ଘେରି ରହିଥିଲା । ତୁମେ (ସେତେବେଳେ) ଦେଖିଥାଆନ୍ତ ଯେ ଲୋକମାନେ ଏମିତି (ମରି) ପଡ଼ିଥିଲେ ଯେମିତି ଫମ୍ପା ଖଜୁରୀଗଛଗୁଡ଼ିକ ଉପୁଡ଼ି ପଡ଼ିଛି । ୮. କ'ଣ ତୁମେ ସେମାନଙ୍କ ମଧ୍ୟରୁ କାହାରି ଅସ୍ତିତ୍ୱ ଥିବାର ଦେଖୁଛ ?

୯. ଫିରଔନ, ତା' ପୂର୍ବବର୍ତ୍ତୀ ସମାଜ ଏବଂ ସେହି ସହରବାସୀ ମଧ୍ୟ ପାପ କରୁଥିଲେ ଯେଉଁ ସହରଗୁଡ଼ିକୁ ଓଲଟାଇ ଦିଆଗଲା । ୧୦. ସେମାନେ ଈଶ୍ୱରଙ୍କ ବାର୍ତ୍ତାବହଙ୍କୁ ଅମାନ୍ୟ କଲେ । ତେଣୁ, ସେ ସେମାନଙ୍କୁ କଠୋର ଦଣ୍ଡ ଦେଲେ ।

୧୧. ଯେତେବେଳେ (ଜଳପ୍ରଳୟରେ) ବନ୍ୟାଜଳ ଉଚ୍ଛୁଳିଥିଲା, ଆମ୍ଭେ ତୁମମାନଙ୍କୁ ଏକ ନୌକାରେ ବସାଇ ଦେଇଥିଲୁ । ୧୨. ଯେପରିକି ଆମ୍ଭେ ଏହି ଘଟଣାକୁ ତୁମମାନଙ୍କ ପାଇଁ ଏକ ସ୍ମରଣୀୟ ଘଟଣା କରିବୁ ଏବଂ ଏହାକୁ ଶୁଣୁଥିବା ଲୋକମାନେ ଏହା ମନେରଖିବେ ।

୧୩. ଯେତେବେଳେ ପ୍ରଥମ ଥର ତୂରୀ ଫୁଙ୍କା ଯିବ, ୧୪. ଏବଂ ଧରିତ୍ରୀକୁ ପାହାଡ଼ପର୍ବତ ସହିତ ଭାଙ୍ଗି ଚୂନାଚୁନା କରି ଦିଆଯିବ । ୧୫. ସେଦିନ (ସୃଷ୍ଟିର) ପ୍ରଳୟ ହେବ, ୧୬. ଏବଂ ସେଦିନ ଆକାଶ ଫାଟିଯାଇ ଦୁର୍ବଳ ହୋଇପଡ଼ିବ । ୧୭. ଏହା କଡ଼ରେ ସ୍ୱର୍ଗଦୂତମାନେ ଥିବେ ଏବଂ ସେଦିନ ଆଠଜଣ ସ୍ୱର୍ଗଦୂତ ତୁମ ପାଳନକର୍ତ୍ତାଙ୍କ ସିଂହାସନକୁ ଟେକି ଧରିଥିବେ । ୧୮. ସେଦିନ ତୁମମାନଙ୍କୁ (ବିଚାର ପାଇଁ) ହାଜର କରାଯିବ ଏବଂ ତୁମମାନଙ୍କର କୌଣସି ଗୋପନ କଥା ଲୁଚି ରହିବନାହିଁ ।

୧୯. ଯାହାକୁ ତା' କର୍ମପଞ୍ଜିକା ଡାହାଣ ହାତରେ ଦିଆଯିବ ସେ (ଅନ୍ୟମାନଙ୍କୁ) କହିବ, "ନିଅ, ମୋ' କର୍ମପଞ୍ଜିକା ପଢ଼ । ୨୦. ମୁଁ ଭଲରୂପେ ଜାଣିଥିଲି ଯେ ମୋତେ ମୋ' କର୍ମର ହିସାବ ଦେବାକୁ ହେବ ।" ୨୧. ସେ ନିଜ ଇଚ୍ଛା ଅନୁଯାୟୀ ସୁଖ ଭୋଗ କରିବ । ୨୨. ଏବଂ ଉଚ୍ଚ ଶ୍ରେଣୀର ବୈକୁଣ୍ଠରେ ରହିବ, ୨୩. ଯାହାର ଫଳଗୁଡ଼ିକ ତଳକୁ ଓହଳି ପଡ଼ିଥିବ । ୨୪. (ସେମାନଙ୍କୁ କୁହାଯିବ) "ଆନନ୍ଦରେ ଖିଆପିଆ କର । ବିଗତ ଦିନଗୁଡ଼ିକରେ ତୁମେମାନେ ଯେଉଁ କର୍ମ କରିଥିଲ, ଏହା ତାହାର ପୁରସ୍କାର ।"

୨୫. କିନ୍ତୁ ଯାହାକୁ ବାମ ହାତରେ ତା' କର୍ମପଞ୍ଜିକା ଦିଆଯିବ, ସେ କହିବ, "ଓଃ! ଭଲ ହୋଇଥାଆନ୍ତା ଯଦି ମୋତେ ମୋ' କର୍ମପଞ୍ଜିକା ଦିଆଯାଇ ନଥାଆନ୍ତା ୨୬. ଏବଂ (କର୍ମର) ହିସାବ-କିତାବ ବିଷୟରେ ମୋତେ ଜଣା ନ ପଡ଼ନ୍ତା! ୨୭. ଭଲ ହୋଇଥାଆନ୍ତା ଯଦି ମୃତ୍ୟୁ ମୋତେ ଶେଷ କରି ଦେଇଥାଆନ୍ତା। ୨୮. (ଆଜି) ମୋ' ଧନ ମୋ' କାମରେ ଆସିଲାନାହିଁ। ୨୯. ମୋ'ର ସବୁ କ୍ଷମତା ଲୋପ ପାଇଗଲା।" ୩୦. (ଅଲ୍ଲାହ୍ କହିବେ) "ତାକୁ ଧରି ତା'ବେକରେ ଜଞ୍ଜିର ପକାଅ। ୩୧. ପୁଣି ତାକୁ ଜଳନ୍ତା ନିଆଁରେ ଫିଙ୍ଗିଦିଅ। ୩୨. ଏବଂ ତାକୁ ସତୁରୀ ହାତର ଜଞ୍ଜିରରେ ବାନ୍ଧ। ୩୩. ଏହି ବ୍ୟକ୍ତି ମହାମହିମ ଅଲ୍ଲାହଙ୍କୁ ବିଶ୍ୱାସ କରୁ ନଥିଲା, ୩୪. କିମ୍ବା ଲୋକଙ୍କୁ ଗରିବମାନଙ୍କୁ ଭୋଜନ ଦେବାଲାଗି ପ୍ରେରଣା ଦେଉ ନଥିଲା। ୩୫. ତେଣୁ ଆଜି ଏଠାରେ ତା'ର କେହି ମିତ୍ର ନାହାନ୍ତି। ୩୬. ତାକୁ ପୂଜ ବ୍ୟତୀତ ଅନ୍ୟ ଖାଦ୍ୟ ମିଳିବନାହିଁ, ୩୭. ଯାହାକୁ କେବଳ ପାପୀମାନେ ଖାଇବେ।

୩୮. ତେଣୁ, ମୁଁ ସେଗୁଡ଼ିକର ରାଣ ଖାଉଛି ଯାହା ତୁମମାନଙ୍କୁ ଦେଖାଯାଏ, ୩୯. ଏବଂ ସେଗୁଡ଼ିକର ରାଣ ମଧ୍ୟ, ଯାହା ତୁମମାନଙ୍କୁ ଦେଖାଯାଏ ନାହିଁ। ୪୦. ପ୍ରକୃତରେ ଏହି କୁରଆନ ଜଣେ ସମ୍ମାନିତ ରସୁଲଙ୍କ ମୁଖନିସୃତ ବାଣୀ। ୪୧. ଏହା କୌଣସି କବିର କାବ୍ୟ ନୁହେଁ। ତୁମେମାନେ ବହୁତ କମ୍ ବିଶ୍ୱାସ କର। ୪୨. ଏହା କୌଣସି ଜ୍ୟୋତିଷବାଣୀ ମଧ୍ୟ ନୁହଁ। ତୁମେମାନେ ଏଥିପ୍ରତି କ୍ୱଚିତ୍ ଧ୍ୟାନ ଦେଇଥାଅ। ୪୩. ଏହାକୁ ଜଗତସ୍ୱାମୀଙ୍କ ଦ୍ୱାରା ପଠାଯାଇଛି। ୪୪. ଯଦି ସେ (ଅର୍ଥାତ୍ ମୁହମ୍ମଦ) ଆମ୍ଭ ନାଁରେ କୌଣସି (ମିଥ୍ୟା) କଥା ଗଢ଼ି କହିଥାଆନ୍ତେ, ୪୫. ଆମ୍ଭେ ତାଙ୍କର ଡାହାଣ ହାତ ଧରି ପକାନ୍ତୁ, ୪୬. ଏବଂ ତାଙ୍କ ବେକନଳୀ କାଟି ଦିଅନ୍ତୁ। ୪୭. ତୁମମାନଙ୍କ ମଧ୍ୟରୁ କେହି ଏହାକୁ ରୋକି ପାରନ୍ତାନାହିଁ। ୪୮. ଏହି କୁରଆନ୍ (ଈଶ୍ୱରଙ୍କୁ) ଭୟ କରୁଥିବା ଲୋକମାନଙ୍କ ପାଇଁ ଏକ ଉପଦେଶ। ୪୯. ଆମ୍ଭେ ଜାଣୁ ଯେ ତୁମମାନଙ୍କ ମଧ୍ୟରୁ କେତେକ ଲୋକ ଏହାକୁ ମିଥ୍ୟା ବୋଲି କହନ୍ତି। ୫୦. ଅବିଶ୍ୱାସ କରୁଥିବା ଲୋକମାନଙ୍କ ପାଇଁ (ଦିନେ) ଏହା ମନସ୍ତାପର କାରଣ ହେବ। ୫୧. ବାସ୍ତବରେ ଏହା ଅଟଳ ସତ୍ୟ। ୫୨. ତେଣୁ, ତୁମେ ନିଜର ମହାମହିମ ଈଶ୍ୱରଙ୍କର ନାମ ସ୍ମରଣ କରୁଥାଅ।

## ଅଧ୍ୟାୟ ୭୦, ଅଲ୍ ମଆରିଜ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଜଣେ ପ୍ରଶ୍ନକର୍ତ୍ତା ପ୍ରଶ୍ନ କଲା, "ଆମ ଉପରେ କାହିଁକି ବିପଦ ପଡୁନାହିଁ ?" (କୁହ) ନିଶ୍ଚୟ ପଡ଼ିବ । ୨. ଏହା ନାସ୍ତିକମାନଙ୍କ ଉପରେ ପଡ଼ିବ ଏବଂ କେହି ତାକୁ ରୋକି ପାରିବେ ନାହିଁ । ୩. ଅଲ୍ଲାହ୍ ଏହାକୁ ପଠାଇବେ, ଯିଏ ପାହାଚମାର୍ଗର ଅଧିକାରୀ । ୪. ଦେବଦୂତ ଜିବ୍ରାଇଲ୍ ଏବଂ ଅନ୍ୟ ଦେବଦୂତମାନେ ଏଥିରେ ଚଢ଼ି ଏମିତି ଏକ ଦିନରେ ତାଙ୍କ ପାଖକୁ ଯଆନ୍ତି ଯାହାର ଅବଧି ପଚାଶ ହଜାର ବର୍ଷ ସହ ସମାନ । ୫. ତେଣୁ ତୁମେ ଭଲ ଭାବରେ ଧୈର୍ଯ୍ୟ ଅବଲମ୍ବନ କର ।

୬. ଏମାନଙ୍କ ଧାରଣା ଯେ ପ୍ରଳୟ ବହୁତ ଦୂରରେ ରହିଛି । ୭. ଆମ୍ଭେ ଦେଖୁଛୁ ଯେ ଏହା ପାଖେଇ ଆସିଲାଣି । ୮. ସେଦିନ ଆକାଶ ତରଳ ତମ୍ବା ପରି ହୋଇଯିବ, ୯. ଏବଂ ପାହାଡ଼ଗୁଡ଼ିକ ରଙ୍ଗବେରଙ୍ଗର ତୁଳା ପରି ହୋଇଯିବ । ୧୦. ଏବଂ କୌଣସି ବନ୍ଧୁ ତା' ବନ୍ଧୁକୁ ପଚାରିବ ନାହିଁ, ୧୧. ଯଦିଓ ସେମାନଙ୍କୁ ପରସ୍ପରକୁ ଦେଖାଇ ଦିଆଯିବ । ସେଦିନ ନର୍କଦଣ୍ଡରୁ ରକ୍ଷା ପାଇବା ସକାଶେ ପ୍ରତ୍ୟେକ ଅପରାଧୀ ଚାହିଁବ ଯେ ନିଜର ସନ୍ତାନ, ୧୨. ଏବଂ ନିଜର ପତ୍ନୀ ଓ ଭାଇ, ୧୩. ଏବଂ ତାକୁ ଆଶ୍ରୟ ଦେଇଥିବା କୁଟୁମ୍ବ, ୧୪. ଏବଂ ସାରା ବିଶ୍ୱର ଲୋକଙ୍କ ବଦଳରେ ତାକୁ ମୁକ୍ତି ମିଳିଯାଉ । ୧୫. କଦାପି ନୁହେଁ । ଏହା ନର୍କର ଲେଲିହାନ ଅଗ୍ନିଶିଖା । ୧୬. ଯାହା ତା' ଚମଡ଼ାକୁ ଭସ୍ମ କରିଦେବ । ୧୭. ଏହା ସେଇମାନଙ୍କୁ ଡାକିବ, ଯେଉଁମାନେ (ସତ୍ୟକୁ) ଅସ୍ୱୀକାର କରୁଥିଲେ । ୧୮. ଏବଂ ଧନସଂପତ୍ତି ଜମା କରି ସାଇତି ରଖୁଥିଲେ ।

୧୯. ବାସ୍ତବରେ ମଣିଷ ଜନ୍ମରୁ ଅଧୀର । ୨୦. ଯେତେବେଳେ ଦୁଃଖ ଆସେ, ସେ ବ୍ୟସ୍ତ ହୋଇପଡ଼େ, ୨୧. ଏବଂ ଯେତେବେଳେ ସୁଖ ଆସେ, ସେ କୃପଣ ହୋଇଯାଏ । ୨୨. କିନ୍ତୁ ନମାଜପାଠ କରୁଥିବା ଲୋକମାନେ ଏପରି ନୁହନ୍ତି, ୨୩. ଯେଉଁମାନେ ନିୟମିତ ଭାବରେ ସେମାନଙ୍କର ନମାଜ ସଂପାଦନ କରନ୍ତି, ୨୪. ଯେଉଁମାନଙ୍କ ଧନରେ ଏକ ନିର୍ଦ୍ଦିଷ୍ଟ ଭାଗ ଥାଏ – ୨୫. ଭିକ୍ଷା କରୁଥିବା ଏବଂ ଭିକ୍ଷା କରୁ ନଥିବା ଦରିଦ୍ରମାନଙ୍କର, ୨୬. ଏବଂ ଯେଉଁମାନେ

ବିଚାର ଦିନକୁ ସତ୍ୟ ବୋଲି ବିଶ୍ୱାସ କରନ୍ତି ୨୭. ଏବଂ ଈଶ୍ୱରଙ୍କ ଶାସ୍ତିକୁ ଭୟ କରନ୍ତି । ୨୮. ଈଶ୍ୱରଙ୍କ ଶାସ୍ତି ବିଷୟରେ ନିଶ୍ଚିନ୍ତ ରହିବା ଉଚିତ ନୁହେଁ । ୨୯. ଯେଉଁମାନେ ସେମାନଙ୍କର ଗୁପ୍ତାଂଗକୁ (ଅବୈଧ ଯୌନକ୍ରିୟାରୁ) ନିବୃତ୍ତ ରଖନ୍ତି, ୩୦. କିନ୍ତୁ ପତ୍ନୀ ବା ସେମାନଙ୍କ ଅଧୀନକୁ ଆସିଥିବା ଦାସୀମାନଙ୍କ ପାଖକୁ ଯିବା ସେମାନଙ୍କ ପାଇଁ ଦୋଷାବହ ନୁହେଁ । ୩୧. ମାତ୍ର ଯେଉଁମାନେ ଏହା ବ୍ୟତୀତ ଅନ୍ୟ ବାଟ ଖୋଜନ୍ତି, ସେମାନେ ସୀମା ଅତିକ୍ରମ କରୁଛନ୍ତି । ୩୨. ଯେଉଁମାନେ (ଭରସାରେ ରଖା ଯାଇଥିବା) ଅନ୍ୟର ଅମାନତ ଏବଂ ନିଜର ବଚନ ବିଷୟରେ ସଚେତନ ଥାଆନ୍ତି, ୩୩. ନିଜ ସାକ୍ଷ୍ୟରେ ସର୍ବଦା ଅଟଳ ରହିଥାଆନ୍ତି, ୩୪. ଏବଂ ନିଜର ନମାଜ ପ୍ରତି ଯତ୍ନବାନ ଥାଆନ୍ତି, ୩୫. ଏହିମାନେ ବୈକୁଣ୍ଠଉଦ୍ୟାନରେ ସମ୍ମାନର ସହିତ ରହିବେ ।

୩୬. ନାସ୍ତିକମାନଙ୍କର କ'ଣ ହୋଇଛି ଯେ ସେମାନେ ତୁମ ପାଖକୁ ଦଉଡୁଛନ୍ତି ? ୩୭. ଡାହାଣ ଓ ବାମ ପଟରୁ ଦଳଦଳ ହୋଇ ଆସୁଛନ୍ତି ? ୩୮. କ'ଣ ଏମାନଙ୍କ ମଧ୍ୟରୁ ପ୍ରତ୍ୟେକ ବ୍ୟକ୍ତି କାମନା କରୁଛି ଯେ ସେ ସ୍ୱର୍ଗସୁଖ ଭୋଗ କରିବ ? ୩୯. ଏହା ଆଦୌ ହେବନାହିଁ । ଆମ୍ଭେ ଯେଉଁ ପଦାର୍ଥରୁ ସେମାନଙ୍କୁ ସୃଷ୍ଟି କରିଛୁ ତାହା ସେମାନଙ୍କୁ ଭଲରୂପେ ଜଣା ।

୪୦. ସମସ୍ତ ପୂର୍ବ ଓ ପଶ୍ଚିମର ଅଧୀଶ୍ୱରଙ୍କ ରାଣ (ଅର୍ଥାତ୍ ସ୍ୱଂୟ ଆମ୍ଭର ରାଣ) ! ଆମ୍ଭର ଅବଶ୍ୟ ଏହି କ୍ଷମତା ଅଛି – ୪୧. ଯେ ସେମାନଙ୍କ ଜାଗାରେ ସେମାନଙ୍କଠାରୁ ଭଲ ଲୋକଙ୍କୁ ସୃଷ୍ଟି କରିଦେବୁ ଏବଂ ସେମାନେ ଆମ୍ଭ ନିୟନ୍ତ୍ରଣରୁ ବାହାରିଯିବେ ନାହିଁ । ୪୨. ତେଣୁ, ଯେଉଁଦିନ ବିଷୟରେ ସେମାନଙ୍କୁ ସାବଧାନ କରାଯାଉଛି, ସେଦିନ ଦେଖିବା ପର୍ଯ୍ୟନ୍ତ ସେମାନଙ୍କୁ ଖେଳତାମସାରେ ମାତି ରହିବାକୁ ଦିଅ । ୪୩. ସେଦିନ ସେମାନେ ସମାଧିରୁ ବାହାରି ଏମିତି ଦଉଡ଼ିବେ, ଯେମିତକି ନିଜର ଆରାଧ୍ୟମାନଙ୍କ ପାଖକୁ ଯାଉଛନ୍ତି । ୪୪. ସେମାନଙ୍କର ଦୃଷ୍ଟି (ଲାଜରେ) ତଳକୁ ନଇଁ ଯାଇଥିବ ଏବଂ ସେମାନେ ଅପମାନିତ ବୋଧ କରୁଥିବେ । ଏହା ସେହି ଦିନ, ଯାହା ବିଷୟରେ ସେମାନଙ୍କୁ ସାବଧାନ କରା ଯାଇଥିଲା ।

## ଅଧ୍ୟାୟ ୭୧, ନୁହ୍

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଆମ୍ଭେ ନୁହ୍‌ଙ୍କୁ (ଏହା କହି) ତାଙ୍କ ସମାଜ ପାଖକୁ ପଠାଇଲୁ ଯେ ଏକ ଭୟଙ୍କର ବିପଦ ଆସିବା ପୂର୍ବରୁ ନିଜ ସମାଜକୁ ସାବଧାନ କରିଦିଅ । ୨. ସେ ସେମାନଙ୍କୁ କହିଲେ, "ଭାଇମାନେ ! ମୁଁ ତୁମମାନଙ୍କୁ ସ୍ୱଷ୍ଟ ଭାବରେ ସାବଧାନ କରିବାକୁ ଆସିଛି । ୩. ତେଣୁ, ତୁମେମାନେ (କେବଳ) ଅଲ୍ଲାହ୍‌ଙ୍କର ଉପାସନା କର, ତାଙ୍କ ପ୍ରତି ଭୟ ରଖ ଏବଂ ମୋ' କଥା ମାନ । ୪. ସେ ତୁମମାନଙ୍କର ପାପ କ୍ଷମା କରିଦେବେ ଏବଂ ତୁମମାନଙ୍କୁ ଏକ ନିଶ୍ଚିତ ସମୟ ପର୍ଯ୍ୟନ୍ତ (ସଂସାରରେ) ରହିବାର ସୁଯୋଗ ଦେବେ । ଯେତେବେଳେ ଅଲ୍ଲାହ୍‌ଙ୍କ ଦ୍ୱାରା ନିର୍ଦ୍ଧାରିତ ସମୟ ଆସି ପହଁଚିଯାଏ, ସେତେବେଳେ ଆଉ ବିଳମ୍ବ ହୁଏନାହିଁ । ଭଲ ହୁଅନ୍ତା ଯଦି ତୁମେମାନେ ଏହା ବୁଝିପାରନ୍ତ ?"

୫. ପୁଣି ନୁହ୍ (ଆମ୍ଭଙ୍କୁ) କହିଲେ, "ହେ ପ୍ରଭୁ! ମୁଁ ମୋ' ସମାଜର ଲୋକମାନଙ୍କୁ ଦିନରାତି ବୁଝାଇଲି । ୬. ମାତ୍ର ମୁଁ ସେମାନଙ୍କୁ ଯେତେ ବୁଝାଇଲି, ସେମାନେ ସେତେ ବେଶୀ ଦୂରେଇ ଗଲେ । ୭. ତୁମେ ସେମାନଙ୍କୁ କ୍ଷମା କରିଦେବ ବୋଲି ମୁଁ ଯେତେଥର ସେମାନଙ୍କୁ ବୁଝାଇଲି, ସେମାନେ ସେଥିପ୍ରତି କର୍ଣ୍ଣପାତ କଲେନାହିଁ ବରଂ ଚଦର ଘୋଡ଼ି ହୋଇପଡ଼ିଲେ ଏବଂ ଅହଙ୍କାର କରି ନିଜ ଜିଦ୍‌ରେ ଅଡ଼ି ରହିଲେ । ୮. ମୁଁ ସେମାନଙ୍କୁ ଖୋଲାଖୋଲି ଭାବରେ କହିଲି, ୯. ସମସ୍ତଙ୍କ ସାମନାରେ (ପ୍ରବଚନରେ) କହିଲି ଏବଂ ଏକାନ୍ତରେ ମଧ୍ୟ ବୁଝାଇଲି । ୧୦. ଏବଂ କହିଲି ଯେ ଈଶ୍ୱରଙ୍କଠାରୁ କ୍ଷମା ମାଗିନିଅ । ସେ ଅତ୍ୟନ୍ତ କ୍ଷମାଶୀଳ । ୧୧. ସେ ତୁମମାନଙ୍କ ପାଇଁ ଆକାଶରୁ ପ୍ରଚୁର ବର୍ଷା କରିବେ । ୧୨. ତୁମମାନଙ୍କର ଧନଜନ ବୃଦ୍ଧି କରିବେ ଏବଂ ତୁମମାନଙ୍କ ପାଇଁ ବଗିଚା ଓ ନଦୀନାଳ ସୃଷ୍ଟି କରିଦେବେ । ୧୩. ତୁମମାନଙ୍କର କ'ଣ ହୋଇଛି ଯେ ତୁମେମାନେ ତାଙ୍କ ମହାନତାକୁ ସ୍ୱୀକାର କରୁନାହଁ ? ୧୪. ଅଥଚ ସେ ତୁମମାନଙ୍କୁ ବିଭିନ୍ନ ଅବସ୍ଥାରେ ରଖି ଗଢ଼ିଛନ୍ତି ।

୧୫. କ'ଣ ତୁମେମାନେ ଦେଖୁନାହଁ ଯେ ଅଲ୍ଲାହ୍ କିପରି ସ୍ତରସ୍ତର କରି ସପ୍ତଆକାଶ ସୃଷ୍ଟି କରିଛନ୍ତି ? ୧୬. ଏବଂ ସୂର୍ଯ୍ୟକୁ ଏକ ପ୍ରଦୀପ ଏବଂ ଚନ୍ଦ୍ରକୁ ଏକ

ପ୍ରକାଶ ରୂପେ ଗଢ଼ିଛନ୍ତି? ୧୭. ଅଲ୍ଲାହ୍ ତୁମମାନଙ୍କୁ ଧରିତ୍ରୀରୁ ଉତ୍ପନ୍ନ କରି ତୁମମାନଙ୍କର ବିକାଶ କରିଛନ୍ତି । ୧୮. ପୁଣି ସେ ତୁମମାନଙ୍କୁ ତାହାରି ଗର୍ଭକୁ ଫେରାଇ ନେବେ ଏବଂ ପୁଣି ତାହାରି ମଧ୍ୟରୁ (ଜୀବିତ କରି) ବାହାର କରିବେ । ୧୯. ଅଲ୍ଲାହ୍ ତୁମମାନଙ୍କ ପାଇଁ ଧରିତ୍ରୀକୁ ବିଛାଇ ଦେଇଛନ୍ତି, ୨୦. ଯେପରିକି ତୁମେମାନେ ଏହାର ପ୍ରଶସ୍ତ ରାସ୍ତାରେ ଯାତାୟାତ କରିବ ।"

୨୧. ପୁଣି ନୁହ୍ କହିଲେ, "ହେ ପାଳନକର୍ତ୍ତା! ଏମାନେ ମୋ' କଥା ମାନିଲେନାହିଁ କିନ୍ତୁ ସେହି (ପ୍ରତିଷ୍ଠିତ) ଲୋକମାନଙ୍କ କଥାରେ ଚଳିଲେ ଯେଉଁମାନଙ୍କର ସଂପତ୍ତି ଓ ସନ୍ତାନ ସେମାନଙ୍କର କେବଳ କ୍ଷତି ହିଁ କରିଛି । ୨୨. ସେମାନେ ଏକ ଭୀଷଣ ଚକ୍ରାନ୍ତ ମଧ୍ୟ କଲେ, ୨୩. ସେମାନେ ଲୋକମାନଙ୍କୁ କହିଲେ ଯେ ନିଜ ଆରାଧ୍ୟମାନଙ୍କୁ ଆଦୌ ପରିତ୍ୟାଗ କରନାହିଁ । 'ୱଦ୍ଦା', 'ସୁୱା', 'ୟଗୁସ୍', 'ୟଉକ୍' କିମ୍ବା ନସର୍‌ଙ୍କୁ ତ୍ୟାଗ କରନାହିଁ । ୨୪. (ପ୍ରଭୁ!) ସେମାନେ ବହୁସଂଖ୍ୟକ ଲୋକଙ୍କୁ ପଥଭ୍ରଷ୍ଟ କରିଛନ୍ତି । ତେଣୁ, ତୁମେ ଦୁଷ୍ଟମାନଙ୍କୁ ଆହୁରି ପଥଭ୍ରଷ୍ଟ କରିଦିଅ ।"

୨୫. (ଶେଷରେ) ସେମାନଙ୍କ ପାପ ଯୋଗୁଁ ସେମାନଙ୍କୁ ଜଳମଗ୍ନ କରି ଦିଆଗଲା ଏବଂ ନର୍କରେ ପହଁଚାଇ ଦିଆଗଲା । ସେମାନେ ଦେଖିନେଲେ ଯେ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଅଲ୍ଲାହ୍‌ଙ୍କ ବ୍ୟତୀତ ଆଉ କେହି ନଥିଲେ । ୨୬. ନୁହ ପ୍ରାର୍ଥନା କଲେ, "ହେ ପ୍ରଭୁ! ନାସ୍ତିକମାନଙ୍କ ମଧ୍ୟରୁ କାହାରିକୁ ଧରାପୃଷ୍ଠରେ (ଜୀବିତ) ଛାଡ଼ନାହିଁ । ୨୭. ଯଦି ତୁମେ ସେମାନଙ୍କୁ ଛାଡ଼ିଦେବ, ତେବେ ସେମାନେ ତୁମର ଭକ୍ତମାନଙ୍କୁ ପଥଭ୍ରଷ୍ଟ କରିବେ ଏବଂ ସେମାନଙ୍କର ଯେଉଁ ସନ୍ତାନ ହେବେ, ସେମାନେ ମଧ୍ୟ ଭ୍ରଷ୍ଟାଚାରୀ ଓ ନାସ୍ତିକ ହେବେ । ୨୮. ହେ ପାଳନକର୍ତ୍ତା! ମୋତେ ଏବଂ ମୋ' ପିତାମାତାଙ୍କୁ କ୍ଷମା କରିଦିଅ ଏବଂ ଯିଏ (ତୁମ ପ୍ରତି) ବିଶ୍ୱାସ ରଖି ମୋ' ଘରକୁ ଆସେ ତାକୁ ତଥା ସମସ୍ତ ସଦ୍‌ବିଶ୍ୱାସୀ ନରନାରୀଙ୍କୁ ମଧ୍ୟ କ୍ଷମା କରିଦିଅ ଏବଂ ଦୁରାଚାରୀମାନଙ୍କର ସର୍ବନାଶ କର ।"

## ଅଧ୍ୟାୟ ୭୨, ଅଲ୍ ଜିନ୍
## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. କହିଦିଅ, "ମୋତେ ଦୈବବାଣୀ ହୋଇଛି ଯେ କେତେକ ଜିନ୍ କୁରଆନ୍ ଶୁଣିଲେ ଏବଂ (ନିଜ ସମାଜକୁ) ଯାଇ କହିଲେ, "ଆମେମାନେ ଅତି ବିଚିତ୍ର ଆବୃତ୍ତି ଶୁଣିଲୁ, ୨. ଯାହା ଉଚିତ୍ ମାର୍ଗଦର୍ଶନ କରେ । ତେଣୁ, ଆମେମାନେ ଏହାକୁ ମାନିନେଇଛୁ ଏବଂ ଆମେ କାହାରିକୁ ଆମ ପାଳନକର୍ତ୍ତାଙ୍କର ସମକକ୍ଷ କରିବୁନାହିଁ । ୩. ଆମ ପାଳନକର୍ତ୍ତାଙ୍କର ଅପାର ମହିମା । ସେ କାହାରିକୁ ତାଙ୍କର ପତ୍ନୀ ବା ପୁତ୍ର କରିନାହାନ୍ତି । ୪. ଆମ ମଧ୍ୟରେ ଥିବା କେତେକ ନିର୍ବୋଧ ଅଲ୍ଲାହ୍‌ଙ୍କ ବିଷୟରେ ଅଯଥା କଥା କହୁଥିଲେ । ୫. ଆମର ଧାରଣା ଥିଲା ଯେ ମାନବ ଓ ଜିନ୍ ଅଲ୍ଲାହ୍‌ଙ୍କ ବିଷୟରେ ମିଛ କହିବେନାହିଁ । ୬. ପ୍ରକୃତରେ କେତେକ ମନୁଷ୍ୟ ଜିନ୍‌ମାନଙ୍କର ଆଶ୍ରୟ ଭିକ୍ଷା କଲେ ଯାହାଫଳରେ ସେମାନଙ୍କର ଅହଂକାର ବଢ଼ିଗଲା । ୭. ତୁମମାନଙ୍କ ପରି ସେମାନଙ୍କର (ଅର୍ଥାତ୍ ମନୁଷ୍ୟମାନଙ୍କର) ମଧ୍ୟ ଏହି ଧାରଣା ଥିଲା ଯେ ଅଲ୍ଲାହ୍ କାହାରିକୁ (ମୃତ୍ୟୁ ପରେ) ଜୀବିତ କରିବେନାହିଁ ।"

୮. "ଆମେ ଆକାଶର ରହସ୍ୟଭେଦ କରିବାକୁ ଚେଷ୍ଟା କଲୁ କିନ୍ତୁ ଦେଖିଲୁ ଯେ ସେଠାରେ (ଦେବଦୂତମାନଙ୍କର) କଡ଼ା ପହରା ଥିଲା ଏବଂ ଏହା ଅସଂଖ୍ୟ ଅଗ୍ନିପିଣ୍ଡ ଦ୍ୱାରା ପୂର୍ଣ୍ଣ ଥିଲା । ୯. ପୂର୍ବେ ଆମେ ଆକାଶର କେତେକ ସ୍ଥାନରେ ଖବର ଶୁଣିବା ପାଇଁ ବସୁଥିଲୁ ମାତ୍ର ଏବେ ଯଦି କେହି କିଛି ଶୁଣିବାକୁ ଚେଷ୍ଟା କରେ, ତେବେ ଏକ ଉଲ୍‌କାପିଣ୍ଡ ତାକୁ ଛକି ବସିଥିବାର ଦେଖେ । ୧୦. ଆମେ ଜାଣୁନା ଯେ ଏହା ପୃଥିବୀବାସୀଙ୍କର କୌଣସି ଅମଙ୍ଗଳ ପାଇଁ ଉଦ୍ଦିଷ୍ଟ ଅଥବା ଏହାଦ୍ୱାରା ସେମାନଙ୍କ ପ୍ରଭୁ ସେମାନଙ୍କର କୌଣସି ମଙ୍ଗଳ କରିବାକୁ ଚାହାନ୍ତି । ୧୧. ଆମମାନଙ୍କ ମଧ୍ୟରୁ କେତେକ ପୁଣ୍ୟବାନ ଏବଂ କେତେକ ଏହାର ବିପରୀତ । ଆମେ ବିଭିନ୍ନ ପନ୍ଥା ଅନୁସରଣ କରୁ । ୧୨. ଆମେ ଏହା ବୁଝିସାରିଛୁ ଯେ ଆମେ ପୃଥିବୀରେ ଅଲ୍ଲାହ୍‌ଙ୍କୁ ହରାଇ ପାରିବୁ ନାହିଁ କିମ୍ବା ତାଙ୍କୁ ନିରୂପାୟ କରି ତାଙ୍କଠାରୁ ଖସି ଯାଇ ପାରିବୁନାହିଁ । ୧୩. ଯେତେବେଳେ ଆମେ (କୁରଆନ୍‌ର) ଉପଦେଶ ଶୁଣିଲୁ, ଏହାକୁ ମାନିନେଲୁ । ଯିଏ ତା' ପାଳନକର୍ତ୍ତାଙ୍କୁ ବିଶ୍ୱାସ କରିବ,

ତାକୁ କୌଣସି କ୍ଷତିର ଆଶଙ୍କା ନଥିବ କିମ୍ବା ଅନ୍ୟାୟର ମଧ୍ୟ ଭୟ ନଥିବ । ୧୪. ଆମମାନଙ୍କ ମଧ୍ୟରେ କେତେକ ମୁସଲିମ୍ (ଅର୍ଥାତ୍ ଆଜ୍ଞାବହ) ଅଛନ୍ତି ଏବଂ ଆଉ କେତେକ ଦୁରାଚାରୀ ମଧ୍ୟ ଅଛନ୍ତି । ଯେଉଁମାନେ ମୁସଲିମ୍ ହୋଇଗଲେ, ସେମାନେ ଠିକ୍ ବାଟ ପାଇଗଲେ । ୧୫. କିନ୍ତୁ ଯେଉଁମାନେ ଦୁରାଚାରୀ, ସେମାନେ ନର୍କର ଇନ୍ଧନ ହେବେ ।”

୧୬. (ହେ ବାର୍ତ୍ତାବହ!) ସେମାନଙ୍କୁ (ଅର୍ଥାତ୍ ମକ୍କାବାସୀଙ୍କୁ) କୁହ ଯେ ଯଦି ସେମାନେ ଠିକ୍ ବାଟରେ ରହନ୍ତି, ତେବେ ଆମ୍ଭେ ସେମାନଙ୍କ ପାଇଁ ପ୍ରଚୁର ବର୍ଷା କରିବୁ, ୧୭. ଯାହାଦ୍ୱାରା ସେମାନଙ୍କୁ ପରୀକ୍ଷା କରିବୁ । ଯିଏ ନିଜ ପାଳନକର୍ତ୍ତାଙ୍କ ସ୍ମରଣଚିନ୍ତନରୁ ମୁହଁ ମୋଡ଼ିବ ସେ ତାକୁ କଠୋର ଦଣ୍ଡ ଦେବେ ।”

୧୮. ମସଜିଦ୍ କେବଳ ଅଲ୍ଲାହ୍‌ଙ୍କ (ଉପାସନା) ପାଇଁ ଉଦ୍ଦିଷ୍ଟ । ତେଣୁ, ଅଲ୍ଲାହଙ୍କ ସହିତ ଅନ୍ୟ କାହାରିକୁ ଡାକନାହିଁ । ୧୯. ଯେତେବେଳେ ଅଲ୍ଲାହଙ୍କର ଭକ୍ତ (ଅର୍ଥାତ୍ ମହାମାନ୍ୟ ମୁହମ୍ମଦ) ତାଙ୍କର ଉପାସନା କରିବା ପାଇଁ  ଛିଡ଼ାହେଲେ, ସେମାନେ ଦଳବାନ୍ଧି ତାଙ୍କୁ ଘେରିଗଲେ । ୨୦. ସେମାନଙ୍କୁ କୁହ, “ମୁଁ କେବଳ ମୋ’ ପାଳନକର୍ତ୍ତାଙ୍କୁ ଡାକେ ଏବଂ ତାଙ୍କ ସହିତ କାହାରିକୁ ସମକକ୍ଷ କରେନାହିଁ ।” ୨୧. କୁହ ଯେ ତୁମମାନଙ୍କର ଭଲ ବା ମନ୍ଦ କରିବାର କ୍ଷମତା ମୋ’ର ନାହିଁ । ୨୨. ଏହା ମଧ୍ୟ କୁହ, “(ଯଦି ମୁଁ ତାଙ୍କୁ ଅବଜ୍ଞା କରେ) ମୋତେ ଅଲ୍ଲାହଙ୍କଠାରୁ କେହି ରକ୍ଷା କରି ପାରିବେନାହିଁ କିମ୍ବା ତାଙ୍କ ବ୍ୟତୀତ ଅନ୍ୟ କେଉଁଠି ମୋତେ ଆଶ୍ରୟ ମିଳିବନାହିଁ । ୨୩. କେବଳ (ଲୋକମାନଙ୍କୁ) ଅଲ୍ଲାହଙ୍କର ଆଦେଶ ପହଁଚାଇ ଦେବା ଏବଂ ତାଙ୍କର ବାର୍ତ୍ତା ଦେଇଦେବା ମୋ’ର ଦାୟିତ୍ୱ ।” ଯିଏ ଅଲ୍ଲାହ୍ ଓ ତାଙ୍କ ରସୁଲଙ୍କୁ ଅବଜ୍ଞା କରିବ, (ସେ ଜାଣିରଖୁ ଯେ) ଏଭଳି ଲୋକମାନେ ନର୍କଯନ୍ତ୍ରଣା ଭୋଗିବେ ଏବଂ ଚିରକାଳ ସେଠାରେ ରହିବେ ।

୨୪. ଯେତେବେଳେ ସେମାନେ ତାହା ଦେଖିବେ ଯାହା ବିଷୟରେ ସେମାନଙ୍କୁ ସାବଧାନ କରା ଯାଉଥିଲା,  ସେତେବେଳେ ଜାଣିଯିବେ ଯେ  କାହାର ସହଯୋଗୀ ଦୁର୍ବଳ ଏବଂ କେଉଁମାନଙ୍କର ସଂଖ୍ୟା ଅଳ୍ପ । ୨୫. କୁହ, “ମୁଁ ଜାଣେନା ଯେ ଯାହା ବିଷୟରେ ତୁମମାନଙ୍କୁ ସାବଧାନ କରାଯାଉଛି ତାହା ପାଖେଇ ଆସିଲାଣି

କିମ୍ବା ମୋ' ପ୍ରଭୁ ଏଥିପାଇଁ ଏକ ଦୀର୍ଘ ସମୟ ସ୍ଥିର କରିଛନ୍ତି।" ୨୬. ସେ ହିଁ ଅଦୃଷ୍ଟର ଜ୍ଞାତା ଏବଂ ସେ ନିଜର ରହସ୍ୟ କାହାରି ପାଖରେ ପ୍ରକାଶ କରନ୍ତିନାହିଁ। ୨୭. ମାତ୍ର ସେହି ବାର୍ତ୍ତାବହଙ୍କ ପାଖରେ ପ୍ରକାଶ କରନ୍ତି ଯାହାଙ୍କୁ ସେ ମନୋନୀତ କରନ୍ତି ଏବଂ ତାଙ୍କ ଆଗ ଓ ପଛରେ (ଦେବଦୂତମାନଙ୍କର) ପହରା ଲଗାଇ ଦିଅନ୍ତି - ୨୮. ଏହା ଜାଣିବା ପାଇଁ ଯେ ସେମାନେ (ପ୍ରକୃତରେ) ପ୍ରଭୁଙ୍କର ବାର୍ତ୍ତା ଦେଇଦେଲେ। ସେ ସେମାନଙ୍କ ପାଖରେ ଥିବା ପ୍ରତ୍ୟେକ କଥାକୁ ନିୟନ୍ତ୍ରଣରେ ରଖିଥାଆନ୍ତି ଏବଂ ପ୍ରତିଟି ଅକ୍ଷରର ହିସାବ ରଖନ୍ତି।

## ଅଧ୍ୟାୟ ୭୩, ଅଲ୍ ମୁଜ୍ଜମ୍ମିଲ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ହେ ଚଦ୍ଦର ଘୋଡ଼ି ହୋଇଥିବା ମୋ' ଭକ୍ତ! ୨. ରାତିରେ କିଛି ସମୟ ନମାଜରେ ଠିଆ ହୁଅ। ୩. ଅଧ ରାତି ପାଇଁ ହେଉ ବା ଏହାଠାରୁ କିଛି ସମୟ କମ୍ କରିଦିଅ, ୪. କିମ୍ବା କିଛି ସମୟ ବଢ଼ାଇ ଦିଅ ଏବଂ କୁରଆନର ଆବୃତ୍ତି ରହିରହି କର। ୫. ଆମ୍ଭେ ତୁମ ପାଖକୁ ଏକ ଗୁରୁବାର୍ତ୍ତା ପଠାଇବାକୁ ଯାଉଛୁ। ୬. ରାତିରେ ନିଦରୁ ଉଠିବା ଇନ୍ଦ୍ରିୟଦମନ କରିବାରେ ସହାୟକ ହୁଏ ଏବଂ ଏହି ସମୟରେ ସ୍ମରଣଚିନ୍ତନ ମଧ୍ୟ ଖୁବ୍ ଭଲ ହୋଇଥାଏ। ୭. ଦିନ ବେଳେ ତ ତୁମର ଅନେକ କାମ ଥାଏ। ୮. ନିଜ ପାଳନକର୍ତ୍ତାଙ୍କ ନାମ ସ୍ମରଣ କର ଏବଂ ମନପ୍ରାଣ ଦେଇ ତାଙ୍କୁ ଭକ୍ତି କର।

୯. ସେ ପୂର୍ବ ଓ ପଶ୍ଚିମର ଅଧୀଶ୍ୱର। ତାଙ୍କ ବ୍ୟତୀତ କେହି ଉପାସନାଯୋଗ୍ୟ ନୁହେଁ। ତେଣୁ ନିଜର କାର୍ଯ୍ୟସିଦ୍ଧି ପାଇଁ ତାଙ୍କରିଠାରେ ଆଶ୍ରୟ ନିଅ। ୧୦. ସେମାନଙ୍କ କଥାକୁ ଧୈର୍ଯ୍ୟ ଧରି ସହିଯାଅ ଏବଂ ସେମାନଙ୍କଠାରୁ ଭଦ୍ର ଭାବରେ ଦୂରେଇଯାଅ। ୧୧. ଏବଂ ଯେଉଁମାନେ ଭୋଗବିଳାସରେ ବୁଡ଼ିରହି ତୁମକୁ ପ୍ରତ୍ୟାଖ୍ୟାନ କରୁଛନ୍ତି, ସେମାନଙ୍କର ଦାୟିତ୍ୱ ମୋ' ଉପରେ ଛାଡ଼ିଦିଅ ଏବଂ ସେମାନଙ୍କୁ କିଛି ସମୟ ଦିଅ। ୧୨. ଆମ୍ଭ ପାଖରେ ସେମାନଙ୍କ ପାଇଁ ବେଡ଼ି ଅଛି ଏବଂ ଜଳନ୍ତା ନିଆଁ ଅଛି। ୧୩. ତଣ୍ଟିକୁ ଯାଉ ନଥିବା ଖାଦ୍ୟ ଅଛି ଏବଂ କଠୋର ଦଣ୍ଡର ବ୍ୟବସ୍ଥା ମଧ୍ୟ ଅଛି।

୧୪. ସେଦିନ ଧରିତ୍ରୀ ଓ ପାହାଡ଼ପର୍ବତ ଥରିବାକୁ ଲାଗିବେ ଏବଂ ପାହାଡ଼ଗୁଡ଼ିକର ଅବସ୍ଥା ଭୁସୁଡ଼ି ପଡୁଥିବା ବାଲୁକା ସ୍ତୁପ ପରି ହୋଇଯିବ ।

୧୫. ଯେପରି ଫିରଔନ ପାଖକୁ ଆମ୍ଭେ ଜଣେ ବାର୍ତ୍ତାବହଙ୍କୁ ପଠାଇଥିଲୁ, ସେହିପରି ତୁମମାନଙ୍କ ପାଖକୁ ମଧ୍ୟ ଜଣେ ବାର୍ତ୍ତାବହଙ୍କୁ ପଠାଇଛୁ ଯିଏ ତୁମମାନଙ୍କର ସାକ୍ଷୀ ରହିବେ । ୧୬. ଫିରଔନ (ଆମ୍ଭର) ବାର୍ତ୍ତାବହଙ୍କ କଥା ମାନିଲାନାହିଁ । ତେଣୁ, ଆମ୍ଭେ ତାକୁ କଠୋର ଦଣ୍ଡରେ ଦଣ୍ଡିତ କଲୁ । ୧୭. ଯଦି ତୁମେମାନେ ମଧ୍ୟ ନମାନିବ, ତେବେ ସେଦିନ କିପରି ରକ୍ଷା ପାଇବ ଯେଉଁଦିନଟି ପିଲାଙ୍କୁ ବୁଢ଼ା କରିଦେବ ? ୧୮. ସେଦିନ ଆକାଶ ଫାଟିଯିବ ଏବଂ ଅଲ୍ଲାହଙ୍କ କଥା ନିଶ୍ଚୟ ସତ ହେବ । ୧୯. ଏହା ଏକ ଚେତାବନୀ । ଯାହାର ଇଚ୍ଛା ସେ ନିଜ ପ୍ରଭୁଙ୍କ ବାଟ ଧରି ନେଉ ।

୨୦. ତୁମ ଈଶ୍ୱର ଜାଣନ୍ତି ଯେ ତୁମେ (କେତେବେଳେ) ରାତିର ଏକ ତୃତୀୟାଂଶ, (କେତେବେଳେ) ଦୁଇ ତୃତୀୟାଂଶ କିମ୍ବା ଅଧା ରାତି (ଉଜାଗର ରହି) ନମାଜପାଠ କରିବା ପାଇଁ ଠିଆ ହୁଅ ଏବଂ ତୁମର କେତେକ ସାଥୀ ମଧ୍ୟ ଏହା କରନ୍ତି । ଅଲ୍ଲାହ୍ ଦିନ ଓ ରାତିର ପରିମାଣ ନିରୂପଣ କରିଥାଆନ୍ତି । ସେ ଦେଖିଲେ ଯେ ତୁମେମାନେ ସମୟର ସଠିକ୍ ଗଣନା କରିପାରିବ ନାହିଁ । ତେଣୁ, ସେ ତୁମମାନଙ୍କ ପ୍ରତି ଦୟା କଲେ । ସୁତରାଂ ଯେତିକି କୁରଆନ ସହଜରେ ପାଠ କରିପାରୁଛ, ସେତିକି ପାଠ କର । ସେ ଜାଣନ୍ତି ଯେ ତୁମମାନଙ୍କ ମଧ୍ୟରୁ କିଛି ଲୋକ ଅସୁସ୍ଥ ଥାଆନ୍ତି, କିଛି ଲୋକ ଜୀବିକା ଅନ୍ୱେଷଣ କରିବା ପାଇଁ (ବିଭିନ୍ନ ସ୍ଥାନକୁ) ଯାତ୍ରା କରନ୍ତି ଏବଂ କିଛି ଲୋକ ଅଲ୍ଲାହଙ୍କ ମାର୍ଗରେ ଯୁଦ୍ଧ କରନ୍ତି । ତେଣୁ, ଯେତିକି କୁରଆନ ସହଜରେ ପଢ଼ି ପାରୁଛ ପଢ, ଆଉ ନିୟମିତ ନମାଜ ସଂପାଦନ କର, ଜକାତ୍ ଦିଅ ଏବଂ ଅଲ୍ଲାହଙ୍କୁ ଭଲ ମନରେ ଋଣ ଦେଉଥାଅ । ତୁମେମାନେ ନିଜ ପାଇଁ ଯେଉଁ ପୁଣ୍ୟ ଅର୍ଜନ କରି ପଠାଇବ, ଅଲ୍ଲାହଙ୍କ ନିକଟରୁ ତାହାର ଖୁବ ଭଲ ଫଳ ବହୁଗୁଣରେ ପାଇବ । ଅଲ୍ଲାହଙ୍କଠାରେ କ୍ଷମା ପ୍ରାର୍ଥନା କରୁଥାଅ । ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ ଏବଂ ପରମ ଦୟାଳୁ ।

## ଅଧ୍ୟାୟ ୭୪, ଅଲ ମୁଦ୍ଦସ୍‌ସିର୍

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ହେ ଚଦରର ଘୋଡ଼ି ହୋଇଥିବା ମୋ' ଭକ୍ତ! ୨. ଉଠ ଏବଂ ଲୋକମାନଙ୍କୁ ସାବଧାନ କର । ୩. ଏବଂ ନିଜ ପାଳନକର୍ତ୍ତାଙ୍କର ମହିମାଗାନ କର, ୪. ନିଜ ବସ୍ତ୍ରକୁ ଶୁଦ୍ଧ ରଖ, ୫. ଏବଂ ଅପବିତ୍ରତାରୁ ଦୂରେଇ ରୁହ । ୬. ଅଧିକ ପାଇବାର ଆଶା ରଖି ଉପକାର କରନାହିଁ, ୭. ଏବଂ ନିଜ ପ୍ରଭୁଙ୍କ ମାର୍ଗରେ ଧୈର୍ଯ୍ୟ ଅବଲମ୍ବନ କର ।

୮. ଯେଉଁଦିନ ତୂରୀ ଫୁଙ୍କି ଦିଆଯିବ, ୯. ସେଦିନ ଏକ କଠିନ ଦିନ ହେବ । ୧୦. ନାସ୍ତିକମାନଙ୍କ ପାଇଁ ଏହା ସହଜ ହେବନାହିଁ । ୧୧. ସେହି ବ୍ୟକ୍ତି କଥା ମୋ' ଉପରେ ଛାଡ଼ିଦିଅ ଯାହାକୁ ମୁଁ ଏକା ସୃଷ୍ଟି କରିଛି । ୧୨. ତାକୁ ପ୍ରଚୁର ଧନସମ୍ପତ୍ତି ଦେଇଛି । ୧୩. ପାଖରେ ରହୁଥିବା ପୁତ୍ରସନ୍ତାନ ଦେଇଛି । ୧୪. ଏବଂ ତାକୁ ବିଭିନ୍ନ ସୁଖର ସାଧନ ଦେଇଛି । ୧୫. ତଥାପି ତା'ର ଲୋଭ ଯେ ମୁଁ ତାକୁ ଆହୁରି ଦେବି । ୧୬. କଦାପି ନୁହେଁ । ସେ ମୋ' ବାଣୀକୁ ବିରୋଧ କରୁଛି ।

୧୭. ମୁଁ ତାକୁ ଭୟଙ୍କର ବିପଦରେ ପକାଇବି । ୧୮. ସେ ଭାବିଚିନ୍ତି ଗୋଟିଏ ଚାଲ୍ କଲା । ୧୯. ତା'ର ସର୍ବନାଶ ହେଉ! ସେ କିଭଳି ଚାଲ୍ କଲା! ୨୦. ତା'ର ସର୍ବନାଶ ହେଉ! ସେ କିଭଳି ଚାଲ୍ କଲା! ୨୧. ପୁଣି ସେ (ଚାରିଆଡ଼େ) ଦେଖିଲା । ୨୨. ଭ୍ରୂକୁଂଚନ କଲା ଏବଂ ମୁହଁ ବିକୃତ କଲା । ୨୩. ପୁଣି ଅହଂକାର କରି ମୁହଁ ଫେରାଇ ନେଲା । ୨୪. ଏବଂ କହିଲା, "ଏହା ପ୍ରାଚୀନ କାଳର ଯାଦୁବିଦ୍ୟା ।" ୨୫. (ପୁଣି କହିଲା), "ଏହା କେବଳ ମନୁଷ୍ୟର କହିଥିବା କଥା ବ୍ୟତୀତ ଅନ୍ୟ କିଛି ନୁହେଁ ।" ୨୬. ମୁଁ ତାକୁ ନର୍କର ନିଆଁରେ ନିକ୍ଷେପ କରିବି । ୨୭. ତୁମକୁ କ'ଣ ଜଣା ଯେ ନର୍କର ନିଆଁ କ'ଣ । ୨୮. ଏହା (ମଣିଷର) କିଛି ବାକି ରଖିବନାହିଁ କିମ୍ବା କାହାରିକୁ ଛାଡ଼ିଦେବ ନାହିଁ । ୨୯. ଏହା ଚମଡ଼ାକୁ ଭସ୍ମ କରିଦେବ । ୩୦. ଏହାକୁ ଉଣେଇଶ ଜଣ ଦେବଦୂତ ପହରା ଦେଉଛନ୍ତି ।

୩୧. ଆମ୍ଭେ କେବଳ ଦେବଦୂତମାନଙ୍କୁ ନର୍କର ପ୍ରହରୀ ନିଯୁକ୍ତ କରିଛୁ । ଆମ୍ଭେ ନାସ୍ତିକମାନଙ୍କୁ ପରୀକ୍ଷା କରିବା ପାଇଁ ସେମାନଙ୍କର ସଂଖ୍ୟା ନିରୂପଣ କରିଛୁ

ଯେପରିକି (କୁରଆନର ସତ୍ୟତା ସଂପର୍କରେ) ଗ୍ରନ୍ଥବିଶ୍ୱାସୀମାନଙ୍କର ହୃଦ୍‌ବୋଧ ହେଉ, ଆସ୍ଥା ରଖିଥିବା ଲୋକଙ୍କର ଆସ୍ଥା ଦୃଢ଼ ହେଉ ଏବଂ ଗ୍ରନ୍ଥବିଶ୍ୱାସୀ ଓ ସଦ୍‌ବିଶ୍ୱାସୀମାନେ (କୁରଆନ ପ୍ରତି) ସନ୍ଦେହ ନକରନ୍ତୁ । ଯେଉଁମାନଙ୍କର ମନ ବ୍ୟାଧିଗ୍ରସ୍ତ ଏବଂ ଯେଉଁମାନେ ଅବିଶ୍ୱାସ କରୁଛନ୍ତି, ସେମାନେ ଏହା କୁହନ୍ତୁ ଯେ ଏଭଳି (ବିଚିତ୍ର) ଦୃଷ୍ଟାନ୍ତ ଦ୍ୱାରା ଅଲ୍ଲାହ୍ କ'ଣ ଚାହାନ୍ତି ? ଅଲ୍ଲାହ୍ ଯାହାକୁ ଚାହାନ୍ତି ଏହିପରି ପଥଭ୍ରଷ୍ଟ କରନ୍ତି ଏବଂ ଯାହାକୁ ଚାହାନ୍ତି ପଥ ଦେଖାଇ ଦିଅନ୍ତି । ତୁମ ଈଶ୍ୱରଙ୍କ ସେନା ବିଷୟରେ କେବଳ ତାଙ୍କରି ବ୍ୟତୀତ ଆଉ କେହି ଜାଣନ୍ତିନାହିଁ । ନର୍କର ଆଲୋଚନା ମାନବଜାତିକୁ ଚେତାବନୀ ଦେବା ପାଇଁ ଉଦ୍ଦିଷ୍ଟ ।

୩୨. ନା ନା, ମୋତେ ଚନ୍ଦ୍ରର ରାଣ ! ୩୩. ଏବଂ ଧୀରେଧୀରେ ଅପସରି ଯାଉଥିବା ରାତ୍ରୀର ରାଣ ! ୩୪. ଏବଂ ଆଲୋକ ବିଛାଇ ଦେଉଥିବା ପ୍ରଭାତର ରାଣ ! ୩୫. ଏହା (ଅର୍ଥାତ୍ ନର୍କ) ଭାରି ଭୟଙ୍କର, ୩୬. ଯାହା ମାନବଜାତି ପାଇଁ ଏକ ସତର୍କସୂଚନା । ୩୭. ତୁମମାନଙ୍କ ମଧ୍ୟରୁ ଯାହାର ଇଚ୍ଛା ସେ ଆଗେଇ ଚାଲୁ ବା ପଛେଇ ରହୁ ।

୩୮. ପ୍ରତ୍ୟେକ ବ୍ୟକ୍ତି ନିଜର କର୍ମ ବଦଳରେ ବନ୍ଧକ ପଡ଼ିଛି । ୩୯. ମାତ୍ର ପୁଣ୍ୟବାନ ଲୋକମାନେ ୪୦. ବୈକୁଣ୍ଠ ଉଦ୍ୟାନରେ ରହିବେ ଏବଂ ପ୍ରଶ୍ନ କରିବେ ୪୧. ଅପରାଧୀମାନଙ୍କୁ, ୪୨. "ତୁମେମାନେ କିପରି ନର୍କକୁ ଆସିଲ ?" ୪୩. ସେମାନେ ଉତ୍ତର ଦେବେ, "ଆମେ ନମାଜପାଠ କରୁ ନଥିଲୁ, ୪୪. କିମ୍ବା ଗରିବମାନଙ୍କୁ ଭୋଜନ ଦେଉ ନଥିଲୁ, ୪୫. ଏବଂ ଯେଉଁମାନେ ଅଯଥା ଯୁକ୍ତିତର୍କରେ ମାତି ରହୁଥିଲେ ଆମେ ସେମାନଙ୍କ ସହିତ ମିଶି ଯାଉଥିଲୁ । ୪୬. ଆମେ ବିଚାର ଦିନକୁ ମିଛ ବୋଲି କହୁଥିଲୁ । ୪୭. ଏହି ଅବସ୍ଥାରେ ଆମର ମୃତ୍ୟୁ ହୋଇଗଲା ।" ୪୮. ଏମାନଙ୍କ ପାଇଁ କାହାରି ସୁପାରିଶ ଲାଭ ଦେବନାହିଁ ।

୪୯. ଏମାନଙ୍କର କ'ଣ ହେଲା ଯେ ଉପଦେଶ ଶୁଣିବା ମାତ୍ରେ ପଳାଇ ଯାଉଛନ୍ତି ? ୫୦. ଯେମିତି ଗଧମାନେ ଛାନିଆଁରେ ୫୧. ସିଂହକୁ ଡରି ପଳାଇ ଯାଆନ୍ତି । ୫୨. ବରଂ ଏମାନଙ୍କ ମଧ୍ୟରୁ ପ୍ରତ୍ୟେକ ବ୍ୟକ୍ତି ଚାହୁଁଛି ଯେ ତା' ପାଖକୁ ମଧ୍ୟ ଗୋଟିଏ ଦିବ୍ୟଗ୍ରନ୍ଥ ଆସୁ । ୫୩. ନା ନା, ପ୍ରକୃତରେ ଏମାନଙ୍କୁ ପରଲୋକର

ଭୟ ନାହିଁ । ୫୪. ନା ନା, ଏହି କୁରଆନ ତୁମମାନଙ୍କ ପାଇଁ ଉପଦେଶ । ୫୫. ତେଣୁ, ଯାହାର ଇଚ୍ଛା ସେ ଏହାର ଉପଦେଶ ଗ୍ରହଣ କରୁ । ୫୬. ମାତ୍ର ଅଲ୍ଲାହ୍ ନଚାହିଁଲେ ସେମାନେ ଉପଦେଶ ଗ୍ରହଣ କରିବେନାହିଁ ।  ତାଙ୍କୁ ହିଁ ଡରିବା ଉଚିତ ଏବଂ ତାଙ୍କରି ପାଖରେ କ୍ଷମା ମାଗିବା ଉଚିତ ।

## ଅଧ୍ୟାୟ ୭୫, ଅଲ କିୟାମଃ

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ମୋତେ ପ୍ରଳୟ ଦିନର ରାଣ! ୨. ଏବଂ ଚେତାଇ ଦେଉଥିବା ଅନ୍ତରାତ୍ମାର ରାଣ! ୩. କ'ଣ ମନୁଷ୍ୟ ଭାବିଛି ଯେ ଆମ୍ଭେ ତା' ହାଡ଼ଗୁଡ଼ିକୁ ଯୋଡ଼ି ପାରିବୁନାହିଁ ? ୪. ନିଶ୍ଚୟ ପାରିବୁ । ଆମ୍ଭେ ତା' ଆଙ୍ଗୁଠିର ଟିପଗୁଡ଼ିକୁ ମଧ୍ୟ ଅବିକଳ ଭାବରେ ପୁନରୁଦ୍ଧାର କରିପାରିବୁ । ୫. କିନ୍ତୁ ମଣିଷ ଚାହେଁ ଯେ ଆଗକୁ ମଧ୍ୟ ପାପ କରି ଚାଲିବ । ୬. ସେ ପଚାରୁଛି ଯେ ପ୍ରଳୟ ଦିନ କେବେ ଆସିବ ?

୭. ଯେତେବେଳେ ଆଖି ବିସ୍ଫାରିତ ହୋଇଯିବ, ୮. ଚନ୍ଦ୍ର ପ୍ରକାଶହୀନ ହୋଇଯିବ, ୯. ଏବଂ ସୂର୍ଯ୍ୟ ଓ ଚନ୍ଦ୍ରକୁ ଏକାଠି କରି ଦିଆଯିବ । ୧୦. ସେଦିନ ମଣିଷ କହିବ ଯେ ମୁଁ  କୁଆଡ଼େ ଯିବି ? ୧୧. ନା ନା, କେଉଁଠି ଆଶ୍ରୟ ମିଳିବନାହିଁ । ୧୨. ସେଦିନ ତୁ କେବଳ ତୋ' ପାଳନକର୍ତ୍ତାଙ୍କ ପାଖକୁ ଯିବୁ । ୧୩. ସେଦିନ ମଣିଷକୁ ଜଣାଇ ଦିଆଯିବ ଯେ ସେ (ସଂସାରରେ) କ'ଣ କରି ଆସିଛି ଏବଂ କ'ଣ ପଛରେ ଛାଡ଼ିଆସିଛି । ୧୪. ବରଂ ମଣିଷ ନିଜେ ନିଜକୁ ଭଲ ଭାବରେ ଜାଣେ, ୧୫. ସେ ଯେତେ ବାହାନା କରୁନା କାହିଁକି ।

୧୬. କୁରଆନକୁ ଶୀଘ୍ରଶୀଘ୍ର ମନେ ରଖିବା ଲାଗି ପାଟି ହଲାଅନାହିଁ । ୧୭. ଏହାକୁ ମୁଖସ୍ଥ କରାଇବା ଏବଂ ପାଠ କରାଇବା ଆମ୍ଭର ଦାୟିତ୍ୱ । ୧୮. ତେଣୁ ଆମ୍ଭେ ଏହାକୁ ପାଠ କଲାପରେ ତୁମେ ସେହିପରି ପାଠ କର । ୧୯. ପୁଣି ଏହାର ଅର୍ଥ ବୁଝାଇଦେବା ମଧ୍ୟ ଆମ୍ଭର ଦାୟିତ୍ୱ ।

୨୦. ନା ନା, ତୁମେମାନେ ସଂସାରକୁ ଭଲ ପାଅ । ୨୧. ଏବଂ ପରଲୋକକୁ ଉପେକ୍ଷା କରିଦିଅ । ୨୨. ସେଦିନ କେତେକ ଲୋକଙ୍କ ମୁହଁରୁ ତେଜ

ବାହାରୁଥିବ । ୨୩. ଏବଂ ସେମାନେ ନିଜ ପ୍ରଭୁଙ୍କର ଦର୍ଶନ କରୁଥିବେ । ୨୪. କେତେକଙ୍କର ମୁହଁ ସେଦିନ ମଳିନ ପଡ଼ି ଯାଇଥିବ । ୨୫. ସେମାନେ ଭାବୁଥିବେ ଯେ ସେମାନଙ୍କ ଉପରେ ସାଂଘାତିକ ବିପଦ ପଡ଼ିବ ।

୨୬. ନା ନା, ଯେତେବେଳେ ପ୍ରାଣବାୟୁ କଣ୍ଠ ପର୍ଯ୍ୟନ୍ତ ଆସିଯିବ, ୨୭. ଏବଂ ଲୋକେ କୁହାକୁହି ହେବେ ଯେ କ'ଣ କେହି ଝଡ଼ାଫୁଙ୍କା କରିବାକୁ ଅଛି ? ୨୮. ଏବଂ ମଣିଷ ଜାଣିଯିବ ଯେ ବିଦାୟର ବେଳ ଆସିଗଲା । ୨୯. (ସେତେବେଳେ) ଗୋଡ଼କୁ ଗୋଡ଼ ଛନ୍ଦି ହୋଇ ଯାଉଥିବ । ୩୦. ସେଦିନ ତୋତେ ତୋ ପ୍ରଭୁଙ୍କ ପାଖକୁ ଯିବାକୁ ହେବ । ୩୧. ସେ ସତ୍ୟକୁ ମାନିଲା ନାହିଁ ଏବଂ ନମାଜପାଠ କଲାନାହିଁ । ୩୨. ବରଂ ମିଥ୍ୟା ବୋଲି କହି ମୁହଁ ବୁଲାଇ ନେଲା । ୩୩. ପୁଣି ଭାରି ଦମ୍ଭରେ ନିଜ ପରିବାର ପାଖକୁ ଚାଲିଗଲା । ୩୪. ତୋ' ଅବସ୍ଥା ଦୁଃଖଦାୟକ । ୩୫. ପ୍ରକୃତରେ ତୋ' ଅବସ୍ଥା ଭାରି ଦୁଃଖଦାୟକ ।

୩୬. କ'ଣ ମଣିଷ ଭାବିଛି ଯେ ତାକୁ ସହଜରେ ଛାଡ଼ି ଦିଆଯିବ? ୩୭. କ'ଣ ସେ (ଗର୍ଭାଶୟ ମଧ୍ୟରେ) ନିକ୍ଷିପ୍ତ ହୋଇଥିବା ଏକ ଶୁକ୍ରବିନ୍ଦୁ ନଥିଲା ? ୩୮. ପୁଣି ସେ ଏକ ମାଂସପିଣ୍ଡୁଳା ହେଲା । ତା'ପରେ ଅଲ୍ଲାହ୍ ତା' ଶରୀର ଗଢ଼ିଲେ ଏବଂ ତାକୁ ରୂପ ଦେଲେ । ୩୯. ଏବଂ ସେଥିରୁ ସେ ନାରୀ ଓ ପୁରୁଷର ଦୁଇଟି ଜାତି ସୃଷ୍ଟି କଲେ । ୪୦. କ'ଣ ସେ ମୃତମାନଙ୍କୁ ପୁଣି ଥରେ ଜୀବିତ କରିବାକୁ ସକ୍ଷମ ନୁହନ୍ତି ?

## ଅଧ୍ୟାୟ ୭୬, ଅଲ୍ ଇନ୍‌ସାନ

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. କ'ଣ ମଣିଷ ଉପରେ ଏଭଳି ଏକ ସମୟ ବିତି ଯାଇନାହିଁ ଯେତେବେଳେ ସେ ଚର୍ଚ୍ଚାଯୋଗ୍ୟ ନଥିଲା ? ୨. ଆମ୍ଭେ ମଣିଷକୁ ଶୁକ୍ରର ଏକ ମିଶ୍ରଣରୁ ସୃଷ୍ଟି କରିଛୁ ଯେପରିକି ତା'ର ପରୀକ୍ଷା ନେବୁ । ତେଣୁ, ଆମ୍ଭେ ତାକୁ ଶୁଣିବା ଓ ଦେଖିବାର ଶକ୍ତି ପ୍ରଦାନ କରିଛୁ । ୩. ଆମ୍ଭେ ତାକୁ ବାଟ ମଧ୍ୟ ଦେଖାଇ ଦେଇଛୁ । ଏବେ ସେ କୃତଜ୍ଞ ହେଉ ବା କୃତଘ୍ନ । ୪. ନାସ୍ତିକମାନଙ୍କ ପାଇଁ ଆମ୍ଭେ ଜଂଜିର ଓ ଯୁଆଳି ସହିତ ଜଳନ୍ତା ନିଆଁର ବ୍ୟବସ୍ଥା କରିଛୁ ।

୫. ପୁଣ୍ୟବାନ ବ୍ୟକ୍ତିମାନେ 'କାଫୁର୍' ମିଶ୍ରିତ ସୁରା ପାନ କରିବେ । ୬. ଏହା ଏକ ଝରଣା, ଯେଉଁ ଝରଣାରୁ ଅଲ୍ଲାହଙ୍କର ଭକ୍ତମାନେ ପାନ କରିବେ ଏବଂ ଯେଉଁଠାରୁ ଚାହିଁବେ ଏହାର ସ୍ରୋତ ବାହାର କରି ପାରିବେ ।୭. ଏହି ଲୋକମାନେ ସେମାନଙ୍କର ମାନସିକ ପୂରଣ କରନ୍ତି ଏବଂ ସେହି ଦିନକୁ ଭୟ କରନ୍ତି ଯାହାର ଭୟାବହତା ଅତି ବ୍ୟାପକ ହେବ, ୮. ଏବଂ ସେମାନେ ଅଲ୍ଲାହଙ୍କ ପ୍ରେମରେ ଦରିଦ୍ର, ଅନାଥ ଓ କଏଦୀମାନଙ୍କୁ ଭୋଜନ ଦିଅନ୍ତି । ୯. (ମାତ୍ର କହନ୍ତି) "ଆମେ ତୁମମାନଙ୍କୁ କେବଳ ଅଲ୍ଲାହଙ୍କର ପ୍ରସନ୍ନତା ଲାଭ କରିବା ପାଇଁ ଭୋଜନ ଦେଉଛୁ ଏବଂ ଆମେ ତୁମମାନଙ୍କଠାରୁ କୌଣସି ପ୍ରତ୍ୟୁପକାର ବା ଧନ୍ୟବାଦ ଚାହୁଁନା ।" ୧୦. "ଆମକୁ ଈଶ୍ୱରଙ୍କର ସେହି ଦିନର ଭୟ ଲାଗିରହିଛି ଯାହା ଅତି କଠିନ ଓ ଦୁଃଖଦ ହେବ ।" ୧୧. ସୁତରାଂ, ଅଲ୍ଲାହ ସେମାନଙ୍କୁ ସେହି ଦିନର ବିପଦରୁ ରକ୍ଷା କରିବେ ଏବଂ ସେମାନଙ୍କୁ ଦୀପ୍ତିମନ୍ତ କରି ପରମ ଆନନ୍ଦ ପ୍ରଦାନ କରିବେ । ୧୨. ଏବଂ ସେମାନଙ୍କର ସହିଷ୍ଣୁତା ବିନିମୟରେ ସେମାନଙ୍କୁ (ରହିବା ପାଇଁ) ବୈକୁଣ୍ଠର ଉଦ୍ୟାନ ଓ (ପିନ୍ଧିବା ପାଇଁ) ରେଶମ ବସ୍ତ୍ର ଦେବେ । ୧୩. ସେମାନେ ଉଚ୍ଚଉଚ୍ଚ ଆସନରେ ତକିଆରେ ଆଉଜି ବସିବେ, ଯେଉଁଠି ଖରା ବା ଶୀତର ପ୍ରକୋପ ଅନୁଭବ କରିବେନାହିଁ । ୧୪. ଉଦ୍ୟାନର ଛାୟା ସେମାନଙ୍କ ଉପରେ ନଇଁ ପଡ଼ିଥିବ ଏବଂ ଫଳର ପେନ୍ଥାଗୁଡ଼ିକ ସେମାନଙ୍କ ହାତ ପାଆନ୍ତାରେ ଥିବ । ୧୫. ସେମାନଙ୍କ ଚାରିପଟେ ସେବକମାନେ ରୂପା ନିର୍ମିତ ପାତ୍ର ଓ କାଚ ନିର୍ମିତ ଗିଲାସ ଧରି ବୁଲୁଥିବେ । ୧୬. ସେହି କାଚ ମଧ୍ୟ ରୂପାରେ ନିର୍ମିତ ଯେଉଁଥିରେ ଠିକ୍ ମାତ୍ରାରେ ପାନୀୟ ଭରା ଯାଇଥିବ । ୧୭. ଏବଂ ସେମାନଙ୍କୁ ଅଦା ମିଶ୍ରିତ ପାନୀୟ ପରିବେଷଣ କରାଯିବ, ୧୮. ବୈକୁଣ୍ଠରେ ଥିବା "ସଲ୍‌ସବିଲ୍" ନାମକ ଏକ ଝରଣାରୁ । ୧୯. ଚିରକିଶୋର ସେବକମାନେ ସେମାନଙ୍କ ସେବାରେ ଲାଗିଥିବେ ଯେଉଁମାନଙ୍କୁ ଦେଖିଲେ ତୁମର ମନେହେବ ସତେଯେପରି ସେମାନେ ବିକ୍ଷିପ୍ତ ଭାବରେ ପଡ଼ିଥିବା ମୁକ୍ତା । ୨୦. ସେଠାରେ ତୁମେ ଯେଉଁଆଡ଼େ ଦେଖିବ ତୁମକୁ ସୁଖସମ୍ପଦରେ ପରିପୂର୍ଣ୍ଣ ଏକ ବିଶାଳ ସାମ୍ରାଜ୍ୟ ଦେଖାଯିବ । ୨୧. ସେମାନେ ସବୁଜ ରଙ୍ଗର ସୂକ୍ଷ୍ମ ରେଶମ ବସ୍ତ୍ର ପିନ୍ଧିବେ ଯେଉଁଥିରେ ବିଭିନ୍ନ ସୂଚୀକାର୍ଯ୍ୟ ହୋଇଥିବ ଏବଂ ସେମାନଙ୍କୁ ରୂପାର କଙ୍କଣ ପିନ୍ଧାଯିବ । ସେମାନଙ୍କ ପାଳନକର୍ତ୍ତା ସେମାନଙ୍କୁ ବିଶୁଦ୍ଧ ସୁରା ପାନ କରାଇବେ । ୨୨. (ସେମାନଙ୍କୁ କୁହାଯିବ) "ଏହା ତୁମମାନଙ୍କ କର୍ମର ପୁରସ୍କାର । ତୁମମାନଙ୍କର ପରିଶ୍ରମ ଅବଶ୍ୟ ଗ୍ରହଣଯୋଗ୍ୟ ।"

୨୩. (ହେ ବାର୍ତ୍ତାବହ!) ଆମ୍ଭେ ତୁମ ପାଖକୁ ଅଳ୍ପଅଳ୍ପ କରି କୁରଆନ୍ ପଠାଇଛୁ । ୨୪. ଏଣୁ, ଧୈର୍ଯ୍ୟ ଧରି ନିଜ ପ୍ରଭୁଙ୍କର ଆଦେଶ ପାଳନ କର ଏବଂ ସେମାନଙ୍କ ମଧ୍ୟରେ ଥିବା କୌଣସି ପାପୀ ବା କୃତଘ୍ନର କଥା ଶୁଣନାହିଁ । ୨୫. ସକାଳେ ଓ ସନ୍ଧ୍ୟାରେ ନିଜ ପ୍ରଭୁଙ୍କର ନାମ ସ୍ମରଣ କର । ୨୬. ଏବଂ ରାତିରେ ମଧ୍ୟ ତାଙ୍କୁ ପ୍ରଣାମ କର ଏବଂ ରାତିରେ ଦୀର୍ଘ ସମୟ ପାଇଁ ତାଙ୍କର ଗୁଣଗାନ କର ।

୨୭. ଏମାନେ ସଂସାରକୁ ଭଲ ପାଉଛନ୍ତି ଏବଂ ଆଗକୁ ଆସୁଥିବା ଏକ ଭୟଙ୍କର ଦିନକୁ ଉପେକ୍ଷା କରୁଛନ୍ତି । ୨୮. ଆମ୍ଭେ ସେମାନଙ୍କୁ ସୃଷ୍ଟି କରିଛୁ ଏବଂ ସେମାନଙ୍କ ଶରୀରଗଠନକୁ ମଜବୁତ କରିଛୁ । ଆମ୍ଭେ ଯେତେବେଳେ ଇଚ୍ଛା କରିବୁ ସେମାନଙ୍କ ସ୍ଥାନରେ ସେମାନଙ୍କ ପରି ଅନ୍ୟ ଲୋକମାନଙ୍କୁ ସୃଷ୍ଟି କରିଦେବୁ ।

୨୯. ଏହା ଏକ ଉପଦେଶ । ତେଣୁ, ଯାହାର ଇଚ୍ଛା ସେ ନିଜ ପାଳନକର୍ତ୍ତାଙ୍କ ପାଖକୁ ଯିବାର ବାଟ ଧରି ନେଉ । ୩୦. ମାତ୍ର ଅଲ୍ଲାହ୍ ନଚାହିଁଲେ ତୁମେ ମଧ୍ୟ କୌଣସି ଇଚ୍ଛା କରିପାରିବ ନାହିଁ । ଅଲ୍ଲାହ୍ ସର୍ବଜ୍ଞ ଏବଂ ତତ୍ତ୍ୱଜ୍ଞ । ୩୧. ସେ ଯାହାକୁ ଚାହାନ୍ତି, ନିଜ କୃପାର ଛାୟାରେ ଆଶ୍ରୟ ଦିଅନ୍ତି ଏବଂ ସେ ଦୁରାଚାରୀମାନଙ୍କ ପାଇଁ କଠୋର ଦଣ୍ଡର ବ୍ୟବସ୍ଥା କରିଛନ୍ତି ।

## ଅଧ୍ୟାୟ ୭୭, ଅଲ୍ ମୁର୍ସଲାତ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ପବନର ରାଣ ଯାହା ମନ୍ଥର ଗତିରେ ବହେ, ୨. ପୁଣି ତୀବ୍ର ବେଗ ଧାରଣ କରେ, ୩. ପୁଣି ବାଦଲଗୁଡ଼ିକୁ ଖେଳାଇ ଦିଏ । ୪. ଏବଂ ସେଗୁଡ଼ିକୁ ପୃଥକ-ପୃଥକ କରିଦିଏ । ୫. ଦେବଦୂତମାନଙ୍କର ରାଣ, ଯେଉଁମାନେ ଦୈବବାଣୀ ନେଇ ଆସନ୍ତି । ୬. ଦାୟିତ୍ୱମୁକ୍ତ ହେବା ପାଇଁ ବା ସାବଧାନ କରିବା ପାଇଁ । ୭. ଯାହା ବିଷୟରେ ତୁମମାନଙ୍କୁ ସାବଧାନ କରାଯାଉଛି ତାହା ନିଶ୍ଚୟ ଘଟିବ ।

୮. ଯେତେବେଳେ ନକ୍ଷତ୍ରଗୁଡ଼ିକ ପ୍ରକାଶହୀନ ହୋଇଯିବେ, ୯. ଏବଂ ଆକାଶ ଫାଟିଯିବ, ୧୦. ଏବଂ ପାହାଡ଼ପର୍ବତଗୁଡ଼ିକୁ ଚୂନାଚୂନା କରି ଉଡ଼ାଇ ଦିଆଯିବ, ୧୧. ଏବଂ ବାର୍ତ୍ତାବହମାନଙ୍କୁ ଉପସ୍ଥିତ କରାଯିବ । ୧୨. କେଉଁଦିନ ପାଇଁ ଏଗୁଡ଼ିକ ସ୍ଥଗିତ ଥିଲା ? ୧୩. ବିଚାର ଦିନ ପାଇଁ । ୧୪. ତୁମକୁ କ'ଣ ଜଣା

ଯେ ବିଚାର ଦିନ କ'ଣ? ୧୫. ସେଦିନ ସତ୍ୟକୁ ଅସ୍ୱୀକାର କରୁଥିବା ଲୋକମାନଙ୍କର ସର୍ବନାଶ ହେବ ।

୧୬. କ'ଣ ଆମ୍ଭେ ପୂର୍ବ ସମାଜଗୁଡ଼ିକୁ ଧ୍ୱଂସ କରି ଦେଇନାହୁଁ? ୧୭. ପୁଣି ପରବର୍ତ୍ତୀ ସମାଜ ଗୁଡ଼ିକର ମଧ୍ୟ ସେହି ଦଶା କରିବୁ । ୧୮. ଅପରାଧୀମାନଙ୍କ ସହିତ ଆମ୍ଭେ ଏହିଭଳି ବ୍ୟବହାର କରିଥାଉ । ୧୯. ସେଦିନ ସତ୍ୟକୁ ଅସ୍ୱୀକାର କରୁଥିବା ଲୋକମାନଙ୍କର ସର୍ବନାଶ ହେବ ।

୨୦. କ'ଣ ଆମ୍ଭେ ତୁମମାନଙ୍କୁ ଟୋପାଏ ତୁଚ୍ଛ ପାଣିରୁ ସୃଷ୍ଟି କରିନାହୁଁ? ୨୧. ପୁଣି ଆମ୍ଭେ ତାହାକୁ ଏକ ସୁରକ୍ଷିତ ଜାଗାରେ (ଅର୍ଥାତ୍ ଗର୍ଭାଶୟରେ) ରଖିଲୁ, ୨୨. ଏକ ନିଶ୍ଚିତ ସମୟ ପର୍ଯ୍ୟନ୍ତ । ୨୩. ପୁଣି ଆମ୍ଭେ ସୁନିୟନ୍ତ୍ରିତ ଭାବରେ ତା'ର କ୍ରମବିକାଶ କଲୁ ଏବଂ ଚମତ୍କାର ଭାବରେ କଲୁ । ୨୪. ସେଦିନ ସତ୍ୟକୁ ଅସ୍ୱୀକାର କରୁଥିବା ଲୋକମାନଙ୍କର ସର୍ବନାଶ ହେବ ।

୨୫. କ'ଣ ଆମ୍ଭେ ଧରିତ୍ରୀକୁ ଧାରଣ କରିବାର ଶକ୍ତି ଦେଇନାହୁଁ? ୨୬. ଉଭୟ ଜୀବିତ ଓ ମୃତମାନଙ୍କୁ? ୨୭. ଆମ୍ଭେ ଏହା ଉପରେ ବିଶାଳକାୟ ପାହାଡ଼ପର୍ବତର ବୋଝ ରଖିଦେଲୁ ଏବଂ ଆମ୍ଭେ ତୁମମାନଙ୍କୁ ମଧୁର ଜଳ ପିଇବାକୁ ଦେଲୁ । ୨୮. ସେଦିନ ସତ୍ୟକୁ ଅସ୍ୱୀକାର କରୁଥିବା ଲୋକମାନଙ୍କର ସର୍ବନାଶ ହେବ ।

୨୯. (ସେମାନଙ୍କୁ କୁହାଯିବ) ଯାହାକୁ ତୁମେମାନେ ମିଛ ବୋଲି କହୁଥିଲ, ଏବେ ସେହି ନର୍କକୁ ଚାଲ । ୩୦. ତିନି ସ୍ତମ୍ଭ ବିଶିଷ୍ଟ ସେହି (ଧୂଆଁର) ଛାୟା ମଧ୍ୟକୁ, ୩୧. ଯାହା ଛାଇ କରେନାହିଁ ବା ନିଆଁରୁ ରକ୍ଷା କରେନାହିଁ । ୩୨. ଯେଉଁଥିରୁ ଅଟ୍ଟାଳିକା ଉଚ୍ଚରେ ନିଆଁ ଉଠେ । ୩୩. (ଦେଖିବାକୁ) ପିତ ବର୍ଣ୍ଣର ଓଟମାନଙ୍କର ଗୋଠ ପରି । ୩୪. ସେଦିନ ସତ୍ୟକୁ ଅସ୍ୱୀକାର କରୁଥିବା ଲୋକମାନଙ୍କର ସର୍ବନାଶ ହେବ ।

୩୫. ସେଦିନ କାହାରି ପାଟିରୁ କଥା ବାହାରିବ ନାହିଁ । ୩୬. କିମ୍ବା ସେମାନଙ୍କୁ କିଛି ବାହାନା କରିବାକୁ ଦିଆଯିବ ନାହିଁ । ୩୭. ସେଦିନ ସତ୍ୟକୁ ଅସ୍ୱୀକାର କରୁଥିବା ଲୋକମାନଙ୍କର ସର୍ବନାଶ ହେବ ।

୩୮. (କୁହାଯିବ) ଏହା ବିଚାର ଦିନ ଏବଂ (ଆଜି) ଆମ୍ଭେ ତୁମମାନଙ୍କ ସହିତ ତୁମ ପୂର୍ବଜମାନଙ୍କୁ ମଧ୍ୟ ଏକତ୍ର କରିଦେଇଛୁ । ୩୯. ଯଦି ମୋ' ସହିତ କୌଣସି ଚଲାକି କରିବାକୁ ଚାହଁ, ତେବେ କରିନିଅ । ୪୦. ସେଦିନ ସତ୍ୟକୁ ଅସ୍ୱୀକାର କରୁଥିବା ଲୋକମାନଙ୍କର ସର୍ବନାଶ ହେବ ।

୪୧. ସଦାଚାରୀ ଲୋକମାନେ ଅବଶ୍ୟ ଶୀତଳ ଛାୟା ଓ ଝରଣା ମଧ୍ୟରେ ରହିବେ । ୪୨. ଏବଂ ସେମାନେ ଯେଉଁ ଫଳ ଚାହିଁବେ (ତାହା ପାଇବେ) । ୪୩. (ସେମାନଙ୍କୁ କୁହାଯିବ) ଆନନ୍ଦରେ ଖିଆପିଆ କର । ଏହା ତୁମେମାନେ କରିଥିବା କର୍ମର ଫଳ । ୪୪. ଭଲ କର୍ମ କରୁଥିବା ଲୋକମାନଙ୍କୁ ଆମ୍ଭେ ଏଇଭଳି ପୁରସ୍କାର ଦେଉ । ୪୫. ସେଦିନ ସତ୍ୟକୁ ଅସ୍ୱୀକାର କରୁଥିବା ଲୋକମାନଙ୍କର ସର୍ବନାଶ ହେବ ।

୪୬. (ହେ ଅସ୍ୱୀକାର କରୁଥିବା ଲୋକମାନେ!) କିଛିଦିନ ଖିଆପିଆ କରି ମଉଜ କରିନିଅ । ତୁମେମାନେ ଅବଶ୍ୟ ପାପୀ । ୪୭. ସେଦିନ ସତ୍ୟକୁ ଅସ୍ୱୀକାର କରୁଥିବା ଲୋକମାନଙ୍କର ସର୍ବନାଶ ହେବ । ୪୮. ଯେତେବେଳେ ସେମାନଙ୍କୁ କୁହାଯାଏ ଯେ (ଅଲ୍ଲାହଙ୍କ ସମ୍ମୁଖରେ) ନଇଁ ଯାଅ, ସେମାନେ ମୁଣ୍ଡ ନୁଆନ୍ତି ନାହିଁ । ୪୯. ସେଦିନ ସତ୍ୟକୁ ଅସ୍ୱୀକାର କରୁଥିବା ଲୋକମାନଙ୍କର ସର୍ବନାଶ ହେବ ।

୫୦. ଭଲା କୁରଆନଠାରୁ ଭଲ କଥା ଆଉ କ'ଣ ଅଛି ଯାହାକୁ ସେମାନେ ବିଶ୍ୱାସ କରିବେ ?

## ଅଧ୍ୟାୟ ୭୮, ଅନ୍ ନବା

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଏମାନେ କେଉଁ ବିଷୟରେ (ପରସ୍ପରକୁ) ପଚାରୁଛନ୍ତି ? ୨. ସେହି ଗୁରୁତ୍ୱପୂର୍ଣ୍ଣ ଖବର ବିଷୟରେ, ୩. ଯେଉଁଥିରେ ସେମାନଙ୍କ ମଧ୍ୟରେ ମତଭେଦ ଅଛି ? ୪. ସେମାନେ ଶୀଘ୍ର ଏହା ଜାଣିଯିବେ । ୫. ଖୁବ୍ ଶୀଘ୍ର ଏହା ଜାଣିଯିବେ ।

୬. କ'ଣ ଆମ୍ଭେ ଧରିତ୍ରୀକୁ ଏକ ଶଯ୍ୟା ରୂପେ ଗଢ଼ିନାହୁଁ? ୭.ଏବଂ ସେଥିରେ ପାହାଡ଼ଗୁଡ଼ିକୁ କିଲା ରୂପେ ପୋତିନାହୁଁ? ୮. ଆମ୍ଭେ ତୁମମାନଙ୍କୁ

ଯୋଡ଼ାଯୋଡ଼ା କରି ସୃଷ୍ଟି କଲୁ । ୯. ତୁମମାନଙ୍କର ବିଶ୍ରାମ ପାଇଁ ନିଦ୍ରା ସୃଷ୍ଟି କଲୁ । ୧୦. ତୁମମାନଙ୍କର ପରଦା ପାଇଁ ରାତି ସୃଷ୍ଟି କଲୁ । ୧୧. ଏବଂ ଜୀବିକାର୍ଜନ କରିବା ପାଇଁ ଦିନ ସୃଷ୍ଟି କଲୁ । ୧୨. ତୁମମାନଙ୍କ ଉପରେ ସାତ ଗୋଟି ସୁଦୃଢ଼ ଆକାଶ ନିର୍ମାଣ କଲୁ । ୧୩. ଏବଂ ଏକ ଉଜ୍ଜ୍ୱଳ ପ୍ରଦୀପ ସୃଷ୍ଟି କଲୁ । ୧୪. ଆମ୍ଭେ ମେଘଭରା ବାଦଲଗୁଡ଼ିକରୁ ମୂଷଳ ଧାରାରେ ଜଳବର୍ଷା କରୁ, ୧୫. ଯାହାଦ୍ୱାରା ଆମ୍ଭେ ଉଭିଦ ଓ ଶସ୍ୟ ଆଦି ଉତ୍ପନ୍ନ କରୁ, ୧୬. ଏବଂ (ବିଭିନ୍ନ ପ୍ରକାରର) ଘଂଚ ଉଦ୍ୟାନ ମଧ୍ୟ ।

୧୭. ବିଚାର ଦିନ ପାଇଁ ସମୟ ସ୍ଥିର ହୋଇସାରିଛି । ୧୮. ଯେଉଁଦିନ ତୂରୀ ଫୁଙ୍କାଯିବ, ତୁମେମାନେ ଦଳଦଳ ହୋଇ ଚାଲିଆସିବ । ୧୯. ଆକାଶକୁ ଅନାବୃତ କରି ଦିଆଯିବ ଏବଂ ସେଥିରେ ଚାରିଆଡ଼େ ଦ୍ୱାର ଖୋଲିଯିବ । ୨୦. ଏବଂ ପାହାଡ଼ପର୍ବତଗୁଡ଼ିକ ମରୀଚିକା ସଦୃଶ ହୋଇଯିବେ ।

୨୧. ପ୍ରକୃତରେ ନର୍କ ଛକି ରହିଛି । ୨୨. ଏହା ଉଦ୍ଧତମାନଙ୍କର ବାସଘର, ୨୩. ଯେଉଁଠି ସେମାନେ ଯୁଗଯୁଗ ଧରି ପଡ଼ି ରହିବେ । ୨୪. ସେଠାରେ ସେମାନେ କୌଣସି ଥଣ୍ଡା ବା ପାନୀୟର ସ୍ୱାଦ ଚାଖିବେ ନାହିଁ । ୨୫. କେବଳ ଫୁଟନ୍ତା ପାଣି ଆଉ ପୁଯ ପିଇବେ । ୨୬. ଏହାହିଁ (ସେମାନଙ୍କ କର୍ମର) ସମୁଚିତ ଫଳ । ୨୭. କର୍ମଫଳ ମିଳିବ ବୋଲି ଏମାନଙ୍କର ଧାରଣା ନଥିଲା । ୨୮. ଏମାନେ ଆମ୍ଭର ବାଣୀକୁ ମିଛ ବୋଲି କହି ଅସ୍ୱୀକାର କରୁଥିଲେ । ୨୯. ଆମ୍ଭେ ପ୍ରତ୍ୟେକ କଥାକୁ ଗୋଟିଗୋଟି କରି ଲେଖିରଖିଛୁ । ୩୦. ଏବେ (ନିଜ କୃତକର୍ମର) ମଜା ଚାଖ । ଆମ୍ଭେ ତୁମମାନଙ୍କୁ ଦଣ୍ଡ ଉପରେ ଦଣ୍ଡ ଦେଇଚାଲିବୁ ।

୩୧. ସଦାଚାରୀ ବ୍ୟକ୍ତିମାନଙ୍କୁ ନିଶ୍ଚୟ ସଫଳତା ମିଳିବ । ୩୨. ସ୍ୱର୍ଗର ଉଦ୍ୟାନ ଏବଂ (ଏହାର) ଅଙ୍ଗୁର, ୩୩. ନବଯୌବନା ଓ ସମବୟସୀ ତରୁଣୀ ୩୪. ଏବଂ ଭରପୂର ସୁରାପାତ୍ର । ୩୫. ସେଠାରେ ସେମାନେ କୌଣସି ମିଛ ବା ଅଭଦ୍ର କଥା ଶୁଣିବାକୁ ପାଇବେନାହିଁ । ୩୬. ଏହା ସେମାନଙ୍କ କର୍ମ ଅନୁସାରେ ତୁମ ପ୍ରଭୁଙ୍କ ଦ୍ୱାରା ପୁରସ୍କାର ରୂପେ ଦିଆଯିବ । ୩୭. ପରମ ଦୟାଳୁ, (ଅଲ୍ଲାହଙ୍କ ଦ୍ୱାରା) ଯିଏ ପୃଥିବୀ ଓ ଆକାଶ ଏବଂ ସେଥିରେ ଥିବା ପ୍ରତ୍ୟେକ ସୃଷ୍ଟିର ମାଲିକ । ତାଙ୍କ ସାମନାରେ ମୁହଁ ଖୋଲିବାର କ୍ଷମତା କାହାରି ନାହିଁ ।

୩୮. ସେଦିନ ସ୍ୱର୍ଗଦୂତ ଜିବ୍ରାଇଲଙ୍କ ସହିତ ସବୁ ଦେବଦୂତମାନେ ଧାଡ଼ି ବାନ୍ଧି ଛିଡ଼ା ହେବେ । କେବଳ ଯାହାକୁ ଦୟାମୟ ଅନୁମତି ଦେବେ ଏବଂ ସେ ଠିକ୍ କଥା କହୁଥିବ, ତା' ବ୍ୟତୀତ ଆଉ କେହି ମୁହଁ ଖୋଲି ପାରିବନାହିଁ । ୩୯. ସେହି ଦିନଟି ଆସିବା ଏକ ସତ୍ୟ । ତେଣୁ ଯାହାର ଇଚ୍ଛା, ସେ  ଈଶ୍ୱରଙ୍କର ବାଟ ଧରିନେଉ । ୪୦. ଆମ୍ଭେ ତୁମମାନଙ୍କୁ ଆସନ୍ନ ବିପଦରୁ ସାବଧାନ କରିଦେଇଛୁ । ସେଦିନ ମଣିଷ ଯାହା କର୍ମ କରିଥିବ, ଦେଖିନେବ ଏବଂ ଅଧର୍ମୀ ବ୍ୟକ୍ତି କହିବ, "ମୁଁ ମାଟି ହୋଇଯାଆନ୍ତି କି !"

## ଅଧ୍ୟାୟ ୭୯, ଅନ୍ ନାଜିଆତ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଦେବଦୂତମାନଙ୍କର ରାଣ, ଯେଉଁମାନେ (ପାପୀମାନଙ୍କର) ଆତ୍ମାକୁ କଠୋରତାର ସହ କାଢ଼ନ୍ତି, ୨. ଏବଂ (ପୁଣ୍ୟାତ୍ମାମାନଙ୍କର) ଆତ୍ମାକୁ ଅତି ଯତ୍ନରେ କାଢ଼ନ୍ତି । ୩. ଯେଉଁମାନେ (ଶୁନ୍ୟରେ) ଭାସି ବୁଲୁଥାଆନ୍ତି, ୪. ଏବଂ ତତ୍ପରତାର ସହିତ ଆଗେଇ ଯାଆନ୍ତି । ୫. ଏବଂ (ଆଦେଶ ଅନୁଯାୟୀ) କାର୍ଯ୍ୟ ବ୍ୟବସ୍ଥା କରନ୍ତି । ୬. ଯେଉଁଦିନ ଏକ ପ୍ରଚଣ୍ଡ ଭୂକମ୍ପ ପୃଥିବୀକୁ ଦୋହଲାଇ ଦେବ । ୭. ପୁଣି ତା'ପରେ ଆଉଥରେ ହେବ । ୮. ସେଦିନ ଭୟରେ ଲୋକମାନଙ୍କର ହୃଦ୍‌କମ୍ପନ ହେବ । ୯. ସେମାନଙ୍କ ଆଖି ତଳକୁ ହୋଇଯିବ ।

୧୦. ସେମାନେ କହୁଛନ୍ତି, "କ'ଣ ସତରେ ଆମମାନଙ୍କୁ ଆମର ପୂର୍ବ ଅବସ୍ଥାକୁ ଫେରାଇ ନିଆଯିବ ? ୧୧. ପଚିସଡ଼ି ହାଡ଼ ହୋଇ ଯାଇଥିଲେ ମଧ୍ୟ ?" ୧୨. କହୁଛନ୍ତି ଯେ ଯଦି ଏହା ହୁଏ ତେବେ ତ ଅସୁବିଧା ହେବ ! ୧୩. ଗୋଟିଏ ପ୍ରଚଣ୍ଡ ଶବ୍ଦ ହେବ । ୧୪. ପୁଣି ସଙ୍ଗେସଙ୍ଗେ ସେମାନେ ଏକ ପଡ଼ିଆରେ ଜମା ହୋଇଯିବେ ।

୧୫. କ'ଣ ତୁମେ ମୁସାଙ୍କ ଘଟଣା ଶୁଣିଛ ? ୧୬. ଯେତେବେଳେ ଈଶ୍ୱର ତାଙ୍କୁ ପବିତ୍ର 'ତୁଓ୍ୱା' ଉପତ୍ୟକାରେ ସଂବୋଧନ କରିଥିଲେ । ୧୭. (ଏବଂ କହିଥିଲେ) "ତୁମେ ଫିରଔନ୍ ପାଖକୁ ଯାଅ । ସେ ସୀମା ଅତିକ୍ରମ କରିଯାଇଛି ।" ୧୮. ତାକୁ କୁହ, "ତୁମେ ନିଜର ଆତ୍ମଶୁଦ୍ଧି କରିବାକୁ ଚାହୁଁଛ

କି ? ୧୯. ମୁଁ ତୁମକୁ ତୁମ ଈଶ୍ୱରଙ୍କର ବାଟ ଦେଖାଇଦେବି ଯାହାଫଳରେ ତୁମ ମନରେ ଭୟ ଜାତ ହେବ ।”

୨୦. ପୁଣି ମୁସା ତାକୁ କେତେକ ବଡ଼ବଡ଼ ଚମତ୍କାର ଦେଖାଇଲେ । ୨୧. କିନ୍ତୁ ସେ ସେଗୁଡ଼ିକୁ ମିଛ ବୋଲି କହି ଅସ୍ୱୀକାର କଲା । ୨୨. ପୁଣି ସେ ଯାଇ ନିଜ ଯୋଜନାରେ ଲାଗିପଡ଼ିଲା, ୨୩. ଏବଂ ଲୋକଙ୍କୁ ଏକାଠି କରି ସଂବୋଧନ କଲା ୨୪. ଏବଂ କହିଲା, “ମୁଁ ହେଉଛି ତୁମମାନଙ୍କର ସର୍ବଶ୍ରେଷ୍ଠ ପ୍ରଭୁ ।” ୨୫. ପରିଣାମ ସ୍ୱରୂପ ଅଲ୍ଲାହ୍ ତାକୁ ଇହଲୋକରେ ଏବଂ ପରଲୋକରେ ଦଣ୍ଡିତ କଲେ । ୨୬. ଅଲ୍ଲାହଙ୍କୁ ଭୟ କରୁଥିବା ବ୍ୟକ୍ତି ପାଇଁ ଏହି ଘଟଣାରେ ଏକ ଶିକ୍ଷା ଅଛି ।

୨୭. କ’ଣ ତୁମମାନଙ୍କୁ ସୃଷ୍ଟି କରିବା ଅଧିକ କଷ୍ଟକର କାର୍ଯ୍ୟ ବା ଆକାଶକୁ ସୃଷ୍ଟି କରିବା ? ଅଲ୍ଲାହ୍ ହିଁ ଏହାକୁ ସୃଷ୍ଟି କରିଛନ୍ତି । ୨୮. ସେ ଏହାକୁ ଉଚ୍ଚ କଲେ ଏବଂ ନିଖୁଣ ଭାବରେ ଗଢ଼ିଲେ । ୨୯. ସେ ରାତିକୁ ଅନ୍ଧାର କଲେ ଏବଂ ସେଥିରୁ ଦିନର ଆଲୋକ ବାହାର କଲେ । ୩୦. ତା’ପରେ ଧରିତ୍ରୀକୁ ବିଛାଇ ଦେଲେ । ୩୧. ତା’ ଭିତରୁ ଜଳ ଏବଂ (ଜୀବଜନ୍ତୁଙ୍କ ପାଇଁ) ଚରା ଉତ୍ପନ୍ନ କଲେ । ୩୨. ଏବଂ ତା’ଉପରେ ପାହାଡ଼ଗୁଡ଼ିକୁ ପୋତିଦେଲେ । ୩୩. ଏସବୁ ତୁମର ଓ ତୁମ ପଶୁମାନଙ୍କର ହିତ ପାଇଁ କଲେ ।

୩୪. ପୁଣି ଯେତେବେଳେ ସେହି ମହାବିପଦ ଆସିବ, ୩୫. ସେଦିନ ମଣିଷ ସ୍ମରଣ କରିବ ଯେ ସେ କେଉଁଥିପାଇଁ ପରିଶ୍ରମ କରିଥିଲା । ୩୬. ନର୍କକୁ ଲୋକମାନଙ୍କ ଦେଖିବା ପାଇଁ ପ୍ରକଟ କରି ଦିଆଯିବ । ୩୭. ଯିଏ ଅହଙ୍କାର କରିଥିବ, ୩୮. ଏବଂ ପାର୍ଥିବ ଜୀବନକୁ ପ୍ରାଥମିକତା ଦେଇଥିବ, ୩୯. ନର୍କ ତା’ର ଘର ହେବ, ୪୦. ଏବଂ ଯିଏ ତା’ ଈଶ୍ୱରଙ୍କ ସମ୍ମୁଖରେ ଉପସ୍ଥିତ ହେବ ବୋଲି ଭୟ କରିଥିବ ଏବଂ ଇନ୍ଦ୍ରିୟ ଦମନ କରିଥିବ, ୪୧. ବୈକୁଣ୍ଠ ଅବଶ୍ୟ ତା’ର ନିବାସ ହେବ ।

୪୨. ଲୋକେ ତୁମକୁ ପ୍ରଳୟ ବିଷୟରେ ପଚାରୁଛନ୍ତି ଯେ ଏହା କେବେ ହେବ । ୪୩. ଏବିଷୟରେ ତୁମର କହିବାର କ’ଣ ଅଛି ? ୪୪. ଏହା କେବେ ହେବ ତାହା କେବଳ ତୁମ ଈଶ୍ୱର ଜାଣନ୍ତି । ୪୫. ତୁମେ ତ କେବଳ ସେମାନଙ୍କୁ

ସାବଧାନ କର ଯେଉଁମାନେ ଏହାକୁ ଭୟ କରନ୍ତି । ୪୬. ଯେଉଁଦିନ ସେମାନେ ଏହା ଦେଖିବେ, ମନେ କରିବେ ସତେଯେମିତି ସେମାନେ (ସଂସାରରେ) ସଂଧ୍ୟା ଓଳିଟିଏ ବା ସକାଳ ଓଳିଟିଏ ଥିଲେ ।

## ଅଧ୍ୟାୟ ୮୦, ଅବସ

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ସେ ଭ୍ରୂକୁଂଚନ କଲେ ଏବଂ ମୁହଁ ବୁଲାଇ ନେଲେ, ୨. କାରଣ ତାଙ୍କ ପାଖକୁ ଜଣେ ଅନ୍ଧ ଆସିଗଲା । ୩. (ହେ ବାର୍ତ୍ତାବହ!) ତୁମେ କ'ଣ ଜାଣ, ହୁଏତ ସେ ସୁଧୁରି ଯାଆନ୍ତା, ୪. କିମ୍ବା ଉପଦେଶ ଶୁଣନ୍ତା ଏବଂ ଉପଦେଶ ତା'ପାଇଁ ଲାଭକାରୀ ହୁଅନ୍ତା ? ୫. ଯିଏ (ତୁମ କଥାକୁ) ଭ୍ରୂକ୍ଷେପ କରେନାହିଁ, ୬. ତୁମେ ତା' ପଛରେ ପଡ଼ିଛ, ୭. ଅଥଚ ସେ ନ ସୁଧୁରିଲେ ତୁମର ଦୋଷ ନାହିଁ । ୮. କିନ୍ତୁ ଯିଏ (ଆଗ୍ରହରେ) ତୁମ ପାଖକୁ ଦଉଡ଼ିଆସେ, ୯. ଏବଂ (ଅଲ୍ଲାହ୍‌ଙ୍କୁ) ଭୟ କରେ, ୧୦. ତା' ପ୍ରତି ତୁମେ ଅବହେଳା କରୁଛ ।

୧୧. ନା ନା, କୁର୍‌ଆନ ଏକ ଉପଦେଶପୂର୍ଣ୍ଣ ଗ୍ରନ୍ଥ । ୧୨. ଯାହାର ଇଚ୍ଛା, ସେ ଏହାର ଉପଦେଶ ଗ୍ରହଣ କରୁ । ୧୩. ଏହା ଗୌରବମୟ ପୃଷ୍ଠାମାନଙ୍କରେ ରହିଛି । ୧୪. ଅତି ମହାନ ଓ ପବିତ୍ର ଗ୍ରନ୍ଥ, ୧୫. ଏବଂ ଏହା ଏଭଳି ଲିପିକାରମାନଙ୍କ ହାତରେ ରହିଛି, ୧୬. ଯେଉଁମାନେ ସମ୍ମାନନୀୟ ଏବଂ ସଦ୍‌ଗୁଣସମ୍ପନ୍ନ ।

୧୭. ମଣିଷର ସର୍ବନାଶ ହେଉ ! ସେ କେଡ଼େ କୃତଘ୍ନ ? ୧୮. ଅଲ୍ଲାହ୍ ତାକୁ କିଭଳି ପଦାର୍ଥରୁ ସୃଷ୍ଟି କଲେ ? ୧୯. ଟୋପାଏ ଶୁକ୍ରରୁ । ପୁଣି ସେ ତାକୁ ଉଚିତ ଅନୁପାତରେ ଗଢ଼ିଲେ । ୨୦. ପୁଣି ତା' ବାଟ ସହଜ କରିଦେଲେ । ୨୧. ପୁଣି ସେ ତାକୁ ମୃତ୍ୟୁ ଦିଅନ୍ତି ଏବଂ କବର ମଧ୍ୟରେ ପହଁଚାଇ ଦିଅନ୍ତି । ୨୨. ଏହାପରେ ସେ ଯେତେବେଳେ ଇଚ୍ଛା କରିବେ, ତାକୁ ପୁନର୍ବାର ଜୀବିତ କରିବେ । ୨୩. ନା ନା, ତାକୁ ଯେଉଁ ଆଦେଶ ଦିଆ ଯାଇଥିଲା, ସେ ତାହା ପାଳନ କଲାନାହିଁ ।

୨୪. ମଣିଷ ନିଜ ଖାଦ୍ୟକୁ ଲକ୍ଷ୍ୟ କରୁ (ଯେ କିପରି ପ୍ରସ୍ତୁତ ହୁଏ) । ୨୫. ଆମ୍ଭେ ପ୍ରଚୁର ମାତ୍ରାରେ ବର୍ଷା କରୁ । ୨୬. ପୁଣି ଧରିତ୍ରୀକୁ ବିଦୀର୍ଣ୍ଣ କରୁ,

୨୭. ଏବଂ ସେଥିରୁ (ବିଭିନ୍ନ ପ୍ରକାର) ଶସ୍ୟ ଉତ୍ପନ୍ନ କରୁ। ୨୮. ଅଙ୍ଗୁର ଓ ସବୁଜ ପନିପରିବା, ୨୯. ଅଲିଭ୍ ଓ ଖଜୁରୀ, ୩୦. ଘଂଚ ଉଦ୍ୟାନ, ୩୧. ଏବଂ ବିଭିନ୍ନ ପ୍ରକାରର ଫଳମୂଳ ଓ ଘାସ। ୩୨. ତୁମମାନଙ୍କ ପାଇଁ ଏବଂ ତୁମ ପଶୁମାନଙ୍କ ପାଇଁ।

୩୩. ପୁଣି ଯେତେବେଳେ (ପ୍ରଳୟର) କାନଫଟା ଶବ୍ଦ ହେବ, ୩୪. ସେଦିନ ମଣିଷ ନିଜ ଭାଇକୁ ଛାଡ଼ି ପଳାଇବ। ୩୫. ନିଜ ପିତାମାତାଙ୍କୁ, ୩୬. ଏବଂ ନିଜ ସ୍ତ୍ରୀ ଓ ପିଲାଙ୍କୁ ମଧ୍ୟ। ୩୭. (କାରଣ) ମଣିଷକୁ ନିଜର ଚିନ୍ତା ଏମିତି ଘାରିଥିବ ଯେ ସେ ଅନ୍ୟର ଚିନ୍ତା କରିପାରିବ ନାହିଁ। ୩୮. ସେଦିନ କିଛି ଲୋକଙ୍କ ମୁହଁରେ ଚମକ ଥିବ। ୩୯. ସେମାନେ ହର୍ଷ ଓ ଉଲ୍ଲାସରେ ମାତିଥିବେ। ୪୦. ଆଉ କେତେକଙ୍କର ମୁହଁ ମଳିନ ଥିବ, ୪୧. ଏବଂ କଳା ପଡ଼ିଯାଇଥିବ। ୪୨. ଏମାନେ ନାସ୍ତିକ ଏବଂ ଦୁରାଚାରୀ।

## ଅଧ୍ୟାୟ ୮୧, ଅତ୍ ତକ୍ୱିର

**ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ**

୧. ଯେତେବେଳେ ସୂର୍ଯ୍ୟକୁ ଗୁଡ଼ାଇ ନିଆଯିବ, ୨. ଯେତେବେଳେ ନକ୍ଷତ୍ରଗୁଡ଼ିକ ପ୍ରକାଶହୀନ ହୋଇଯିବେ, ୩. ଯେତେବେଳେ ପାହାଡ଼ପର୍ବତଗୁଡ଼ିକ ଚଳିବାକୁ ଲାଗିବେ, ୪. ଯେତେବେଳେ ଦଶମାସର ଗର୍ଭିଣୀ ଓଟ ମୂଲ୍ୟହୀନ ହୋଇ ପଡ଼ିବେ, ୫. ଯେତେବେଳେ ବନ୍ୟଜନ୍ତୁମାନେ ଏକାଠି ଜମା ହୋଇଯିବେ, ୬. ଯେତେବେଳେ ସମୁଦ୍ରଗୁଡ଼ିକରେ ନିଆଁ ଲାଗିଯିବ, ୭. ଯେତେବେଳେ ଆତ୍ମାଗୁଡ଼ିକୁ (ଶରୀର ସହ) ସଂଯୁକ୍ତ କରିଦିଆଯିବ, ୮. ଯେତେବେଳେ ଜିଅନ୍ତା ପୋତିଦିଆ ଯାଇଥିବା ଶିଶୁକନ୍ୟାକୁ ପଚରା ଯିବ, ୯. ଯେ କେଉଁ ଦୋଷ ପାଇଁ ତାକୁ ମାରି ଦିଆଗଲା, ୧୦. ଯେତେବେଳେ (ଲୋକଙ୍କର) କର୍ମପଞ୍ଜିକା ଖୋଲାଯିବ ୧୧. ଯେତେବେଳେ ଆକାଶକୁ ଅନାବୃତ କରାଯିବ, ୧୨. ଯେତେବେଳେ ନର୍କର ନିଆଁ ଦାଉଦାଉ ହୋଇ ଜଳିବ, ୧୩. ଏବଂ ଯେତେବେଳେ ବୈକୁଣ୍ଠକୁ ନିକଟତର କରି ଦିଆଯିବ, ୧୪. ସେତେବେଳେ ମଣିଷ ଯାହା କର୍ମ କରିଥିବ ତାହା ଜାଣିଯିବ।

୧୫. ନକ୍ଷତ୍ରମାନଙ୍କର ରାଣ, ଯେଉଁମାନେ ପଛେଇ ଯାଆନ୍ତି । ୧୬. ଯେଉଁମାନେ ଆଗେଇ ଯାଇ ଅଦୃଶ୍ୟ ହୋଇ ଯାଆନ୍ତି । ୧୭. ରାତ୍ରିର ରାଣ, ଯେତେବେଳେ ଏହା ବିଦାୟ ନିଏ । ୧୮. ସକାଳର ରାଣ, ଯେତେବେଳେ ଏହାର ଆଗମନ ହୁଏ । ୧୯. ଏହା ବାସ୍ତବରେ ଜଣେ ମହାନ ବାର୍ତ୍ତାବହଙ୍କ (ଅର୍ଥାତ୍ ସ୍ୱର୍ଗଦୂତଙ୍କ ଜିବ୍ରାଇଲଙ୍କ) ମୁଖନିସୃତ ବାଣୀ । ୨୦. ଯିଏ ମହାଶକ୍ତିଶାଳୀ ଏବଂ ଅଲ୍ଲାହଙ୍କ ଦରବାରରେ ତାଙ୍କର ଏକ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ଅଛି । ୨୧. (ସ୍ୱର୍ଗରେ) ତାଙ୍କର ଆଜ୍ଞା ପାଳନ କରାଯାଏ ଏବଂ ସେ ଅତି ବିଶ୍ୱସନୀୟ । ୨୨. (ହେ ମକ୍କାବାସୀ!) ତୁମମାନଙ୍କର ସାଥୀ (ଅର୍ଥାତ୍ ମହାମାନ୍ୟ ମୁହମ୍ମଦ) ପାଗଳ ନୁହନ୍ତି । ୨୩. ସେ ଦିଗବଳୟରେ ସେହି ଦେବଦୂତଙ୍କୁ ପରିଷ୍କାର ଭାବରେ ଦେଖିଛନ୍ତି । ୨୪. ସେ ଅଦୃଶ୍ୟଜଗତର ବାର୍ତ୍ତା ଦେବା ବିଷୟରେ କୃପଣ ନୁହନ୍ତି । ୨୫. ଏବଂ କୁରଆନ୍ କୌଣସି ଶାପିତ ଶଇତାନର ବାଣୀ ନୁହେଁ । ୨୬. ପୁଣି ତୁମେମାନେ (ବାଟବଣା ହୋଇ) କୁଆଡ଼େ ଚାଲିଯାଉଛ ? ୨୭. ଏହା ବିଶ୍ୱବାସୀଙ୍କ ପାଇଁ ଏକ ଉପଦେଶପୂର୍ଣ୍ଣ ଗ୍ରନ୍ଥ । ୨୮. ତୁମମାନଙ୍କ ମଧ୍ୟରୁ ଏଭଳି ପ୍ରତ୍ୟେକ ବ୍ୟକ୍ତି ପାଇଁ ଯିଏ ସତ୍‌ପଥରେ ଯିବା ପାଇଁ ଇଚ୍ଛୁକ । ୨୯. ମାତ୍ର ଜଗତପାଳକ ଅଲ୍ଲାହଙ୍କର ଇଚ୍ଛା ନହେଲେ, ତୁମେମାନେ ମଧ୍ୟ ଇଚ୍ଛା କରି ପାରିବନାହିଁ ।

## ଅଧ୍ୟାୟ ୮୨, ଅଲ୍ ଇନ୍‌ଫିତାର୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଯେତେବେଳେ ଆକାଶ ଫାଟିଯିବ, ୨. ଯେତେବେଳେ ନକ୍ଷତ୍ରଗୁଡ଼ିକ ଖସି ପଡ଼ିବେ, ୩. ଯେତେବେଳେ ସମୁଦ୍ରଗୁଡ଼ିକରେ ଅଗ୍ନି ଉଦ୍‌ଗୀରଣ ହେବ, ୪. ଏବଂ ଯେତେବେଳେ କବରଗୁଡ଼ିକୁ ଖୋଲି ଦିଆଯିବ, ୫. ସେତେବେଳେ ମଣିଷ ଜାଣିବ ଯେ ସେ କ'ଣ କରିଆସିଛି ଏବଂ କ'ଣ ଛାଡ଼ିଆସିଛି ।

୬. ହେ ମନୁଷ୍ୟ! ତୋତେ ତୋ' ମହାନୁଭବ ପାଳନକର୍ତ୍ତାଙ୍କ ବିଷୟରେ କିଏ ପ୍ରତାରିତ କରିଦେଲା ? ୭. ଯିଏ ତୋତେ ସୃଷ୍ଟି କଲେ, ଆକାର ଦେଲେ ଏବଂ ନିଖୁଣ ଭାବରେ ଗଢ଼ିଲେ । ୮. ସେ ଯେଉଁ ରୂପରେ ଇଚ୍ଛା କଲେ, ତୋତେ ଗଢ଼ିଦେଲେ । ୯. ନା ନା, ତୁମେମାନେ କର୍ମଫଳକୁ ଅସ୍ୱୀକାର କରୁଛ, ୧୦.

ଅଥଚ (ଦେବଦୂତମାନେ) ତୁମମାନଙ୍କ ଉପରେ ନଜର ରଖିବା ପାଇଁ ପ୍ରହରୀ ନିଯୁକ୍ତ ହୋଇଛନ୍ତି । ୧୧. ଯେଉଁମାନେ ସମ୍ମାନନୀୟ ଲିପିକାର । ୧୨. ତୁମେମାନେ ଯାହା କର ସେମାନେ ଜାଣନ୍ତି ।

୧୩. ପୁଣ୍ୟବାନ ଲୋକମାନେ ଅବଶ୍ୟ ସୁଖ ଭୋଗ କରିବେ, ୧୪. ଏବଂ ଭ୍ରଷ୍ଟାଚାରୀମାନେ ନର୍କରେ ରହିବେ । ୧୫. ସେମାନେ ସେଥିରେ ବିଚାର ଦିନ ପ୍ରବେଶ କରିବେ, ୧୬. ଏବଂ ସେଠାରୁ ଖସି ଯାଇପାରିବେ ନାହିଁ । ୧୭. ତୁମକୁ କ'ଣ ଜଣା ଯେ ବିଚାର ଦିନଟି କଣ ? ୧୮. ପ୍ରକୃତରେ ତୁମକୁ କ'ଣ ଜଣା ଯେ ବିଚାର ଦିନଟି କଣ ? ୧୯. ସେଦିନ କେହି କାହାରି ପାଇଁ କିଛି କରିବାକୁ ସମର୍ଥ ନଥିବ ଏବଂ ସେଦିନ ସବୁ ନିଷ୍ପତ୍ତି ଅଲ୍ଲାହଙ୍କ ହାତରେ ଥିବ ।

## ଅଧ୍ୟାୟ ୮୩, ଅଲ ମୁତଫ୍-ଫିଫିନ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ମାପ-ଓଜନରେ ଠକୁଥିବା ଲୋକମାନଙ୍କର ସର୍ବନାଶ ହେବ, ୨. ଯେଉଁମାନେ ଲୋକଙ୍କଠାରୁ ନିଜେ ନେଲାବେଳେ ପୂରା ମାତ୍ରାରେ ମାପ କରି ନିଅନ୍ତି, ୩. କିନ୍ତୁ ଲୋକଙ୍କୁ ଦେଲାବେଳେ ମାପ ବା ଓଜନରେ କମ୍ କରି ଦିଅନ୍ତି । ୪. କ'ଣ ସେମାନେ ଏହା ଜାଣିନାହାନ୍ତି ଯେ ସେମାନଙ୍କୁ ପୁନର୍ଜୀବିତ କରାଯିବ ? ୫. ଏଭଳି ଏକ ଭୟଙ୍କର ଦିନ, ୬. ଯେଉଁଦିନ ସମୁଦାୟ ମାନବଜାତି ଜଗତପାଳକଙ୍କ ସମ୍ମୁଖରେ ଉପସ୍ଥିତ ହେବ ?

୭. ଦୁରାଚାରୀମାନଙ୍କର କର୍ମପଞ୍ଜିକା ସିଜ୍ଜୀନ୍‌ରେ ରହେ । ୮. ତୁମକୁ କ'ଣ ଜଣା ଯେ ଏହି ସିଜ୍ଜୀନ୍ କ'ଣ ?

୯. ଏହା ଏକ କାର୍ଯ୍ୟାଳୟ । ୧୦. ସେଦିନ ସତ୍ୟକୁ ପ୍ରତ୍ୟାଖ୍ୟାନ କରିଥିବା ଲୋକମାନଙ୍କର ସର୍ବନାଶ ହେବ, ୧୧. ଯେଉଁମାନେ ବିଚାର ଦିନକୁ ମିଥ୍ୟା ବୋଲି କହନ୍ତି । ୧୨. କେବଳ ସୀମାଲଂଘନ କରୁଥିବା କୌଣସି ପାପୀ ହିଁ ଏହାକୁ ଅସ୍ୱୀକାର କରେ । ୧୩. ଯେତେବେଳେ ତା' ପାଖରେ ଆମ୍ଭର ବାଣୀ ପାଠ କରାଯାଏ, ସେ କହେ ଯେ ଏଗୁଡ଼ିକ ପ୍ରାଚୀନ କାଳର କାହାଣୀ । ୧୪. ନା ନା,

ସେମାନଙ୍କ ହୃଦୟରେ ସେମାନଙ୍କ କୁକର୍ମର କଳଙ୍କି ବସିଯାଇଛି । ୧୫. ନା ନା, ସେଦିନ ସେମାନେ ଈଶ୍ୱରଙ୍କ ଦର୍ଶନରୁ ନିଶ୍ଚୟ ବଂଚିତ ହେବେ । ୧୬. ପୁଣି ନର୍କରେ ଦଗ୍ଧ ହେବେ । ୧୭. ତା'ପରେ ସେମାନଙ୍କୁ କୁହାଯିବ ଯେ ଏହା ସେହି ନର୍କ ଯାହାକୁ ତୁମେମାନେ ମିଥ୍ୟା ବୋଲି କହୁଥିଲ ।

୧୮. ପୁଣ୍ୟବାନ ଲୋକମାନଙ୍କର କର୍ମପଞ୍ଜିକା ଇଲ୍ଲୀୟୁନ୍‌ରେ ରହେ । ୧୯. ତୁମକୁ କ'ଣ ଜଣା ଯେ ଇଲ୍ଲୀୟୁନ୍ କ'ଣ ? ୨୦. ଏହା ଏକ କାର୍ଯ୍ୟାଳୟ, ୨୧. ଯାହା ନିକଟରେ ଅଲ୍ଲାହଙ୍କର ପ୍ରିୟ ଦେବଦୂତମାନେ ଉପସ୍ଥିତ ଥାଆନ୍ତି । ୨୨. ସଦାଚାରୀ ଲୋକମାନେ ନିଶ୍ଚୟ ସ୍ୱର୍ଗସୁଖ ଭୋଗ କରିବେ । ୨୩. ଆରାମଦାୟକ ଆସନରେ ବସି ଦୃଶ୍ୟ ଉପଭୋଗ କରିବେ । ୨୪. ସେମାନେ କେତେ ଆନନ୍ଦିତ, ଏହା ତୁମେ ସେମାନଙ୍କ ମୁହଁର ଚମକରୁ ଜାଣିଯିବ । ୨୫. ସେମାନଙ୍କୁ ମୁଦ ଦିଆ ବିଶୁଦ୍ଧ ସୁରା ପାନ କରିବାକୁ ଦିଆଯିବ । ୨୬. ଯେଉଁଥିରେ କସ୍ତୁରୀର ମୁଦ ଦିଆ ଯାଇଥିବ । ଏହିପରି ସୁଖ ଭୋଗିବା ପାଇଁ ଲୋକମାନେ ପ୍ରତିଯୋଗିତା କରିବା ଉଚିତ । ୨୭. ସେହି ସୁରାରେ 'ତସ୍‌ନୀମ୍'ର ଜଳ ମିଶିଥିବ । ୨୮. ଏହା ଏକ ଝରଣା । ଏହି ଝରଣାରୁ ଅଲ୍ଲାହଙ୍କର ପ୍ରିୟ ଭକ୍ତମାନେ ଜଳପାନ କରିବେ ।

୨୯. ପାପୀ ଲୋକମାନେ (ସଂସାରରେ) ସଦ୍‌ବିଶ୍ୱାସୀମାନଙ୍କୁ ବିଦ୍ରୂପ କରୁଥିଲେ । ୩୦. ଯେତେବେଳେ ସେମାନଙ୍କ ପାଖ ଦେଇ ଯାଉଥିଲେ, ପରସ୍ପର ମଧ୍ୟରେ ଆଖି ଠରାଠରି ହେଉଥିଲେ, ୩୧. ଏବଂ ଘରକୁ ଫେରିବା ବେଳେ ଟାହିଟାପରା କରି ଯାଉଥିଲେ । ୩୨. ଯେତେବେଳେ ସେମାନେ ସଦ୍‌ବିଶ୍ୱାସୀମାନଙ୍କୁ ଦେଖୁଥିଲେ, କହୁଥିଲେ ଯେ ଏମାନେ ପଥଭ୍ରଷ୍ଟ ହୋଇ ଯାଇଛନ୍ତି, ୩୩. ଅଥଚ ଏମାନଙ୍କୁ ସେମାନଙ୍କର ତତ୍ତ୍ୱାବଧାରକ ରୂପେ ପଠାଯାଇ ନଥିଲା । ୩୪. ଆଜି ସଦ୍‌ବିଶ୍ୱାସୀମାନେ ନାସ୍ତିକମାନଙ୍କୁ ଉପହାସ କରିବେ । ୩୫. ସେମାନେ ଆରାମଦାୟକ ଆସନରେ ବସି (ସେଠାର) ଦୃଶ୍ୟ ଉପଭୋଗ କରିବେ । ୩୬. ଏବେ ନାସ୍ତିକମାନଙ୍କୁ ସେମାନେ କରିଥିବା କର୍ମର ଫଳ ମିଳିଗଲା ।

## ଅଧ୍ୟାୟ ୮୪, ଅଲ ଇନ୍‌ଶିକାକ୍
## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଯେତେବେଳେ ଆକାଶ ଫାଟିବ, ୨. ଏବଂ ପ୍ରଭୁଙ୍କ ଆଜ୍ଞା ପାଳନ କରିବ ଯାହା ତା'ର କର୍ତ୍ତବ୍ୟ, ୩. ଯେତେବେଳେ ଧରିତ୍ରୀକୁ ବିସ୍ତାରିତ କରାଯିବ, ୪. ଏବଂ ଧରିତ୍ରୀ ତା' ଗର୍ଭରୁ ସବୁକିଛି ବାହାରକୁ ଫିଙ୍ଗିଦେଇ ଶୂନ୍ୟ ହୋଇଯିବ । ୫. ଏବଂ ପ୍ରଭୁଙ୍କର ଆଜ୍ଞା ପାଳନ କରିବ ଯାହା ତା'ର କର୍ତ୍ତବ୍ୟ । ୬. ହେ ମନୁଷ୍ୟ ! ତୁ ତୋ' ପ୍ରଭୁଙ୍କ ସହିତ ଯାଇ ସାକ୍ଷାତ କରିବା ପର୍ଯ୍ୟନ୍ତ ପରିଶ୍ରମ କରି ଚାଲିଥିବୁ ।

୭. ଯାହାକୁ ତା' କର୍ମପଞ୍ଜିକା ଡାହାଣ ହାତରେ ଦିଆଯିବ, ୮. ତା'ଠାରୁ ସହଜ ହିସାବ ନିଆଯିବ । ୯. ସେ ଖୁସିରେ ନିଜ ପରିଜନଙ୍କ ପାଖକୁ ଯିବ । ୧୦. ଏବଂ ଯାହାକୁ କର୍ମପଞ୍ଜିକା ପଛ ପଟରୁ ଦିଆଯିବ, ୧୧. ସେ ନିଜ ମୃତ୍ୟୁକୁ ଡାକିବ, ୧୨. ଏବଂ ଜଳନ୍ତା ନିଆଁରେ ଦଗ୍ଧ ହେବ । ୧୩. ଏହି ବ୍ୟକ୍ତି ନିଜ ପରିବାରରେ ଅତି ଆନନ୍ଦରେ ରହୁଥିଲା । ୧୪. ସେ ଭାବିଥିଲା ଯେ ଆଉ ଫେରିବନାହିଁ । ୧୫. ନା ନା, ତା' ପାଳନକର୍ତ୍ତା ତାକୁ ଦେଖୁଥିଲେ ।

୧୬. ମୋତେ ଗୋଧୂଳି ବେଳର ଲାଲିମାର ରାଣ ! ୧୭. ରାତିର ତଥା ରାତି ଘୋଡ଼ାଇ ନେଉଥିବା ବସ୍ତୁଗୁଡ଼ିକର ରାଣ ! ୧୮. ପୂର୍ଣ୍ଣଚନ୍ଦ୍ର ପାଲଟି ଯାଉଥିବା ଚନ୍ଦ୍ରର ରାଣ ! ୧୯. ତୁମେମାନେ ନିଶ୍ଚୟ ଗୋଟିକ ପରେ ଗୋଟିଏ ଅବସ୍ଥା ଦେଇ ଗତି କରିବ । ୨୦. ସେମାନଙ୍କର କ'ଣ ହେଲା ଯେ ବିଶ୍ୱାସ କରୁନାହାନ୍ତି ? ୨୧. ଏବଂ ସେମାନଙ୍କ ପାଖରେ କୁରଆନ ପାଠ ହେଲା ବେଳେ କାହିଁକି (ଅଲ୍ଲାହଙ୍କୁ) ପ୍ରଣିପାତ କରୁନାହାନ୍ତି ? [ପ୍ରଣାମ]

୨୨. ବରଂ ଏହି ନାସ୍ତିକମାନେ ଅସ୍ୱୀକାର କରୁଛନ୍ତି । ୨୩. ଏମାନେ (ମନ ଭିତରେ) ଯାହା ଲୁଚାଇ ରଖନ୍ତି, ଅଲ୍ଲାହ୍ ଭଲରୂପେ ଜାଣନ୍ତି । ୨୪. ସେମାନେ କଠୋର ଦଣ୍ଡ ଭୋଗିବେ ବୋଲି ଜଣାଇ ଦିଅ । ୨୫. ମାତ୍ର ଯେଉଁମାନେ ବିଶ୍ୱାସ କରନ୍ତି ଏବଂ ଭଲକର୍ମ କରନ୍ତି, ସେମାନଙ୍କୁ ଅସରନ୍ତି ପୁରସ୍କାର ମିଳିବ ।

## ଅଧ୍ୟାୟ ୮୫, ଅଲ ବୁରୁଜ୍
## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ନକ୍ଷତ୍ରମଣ୍ଡଳକୁ ଧାରଣ କରିଥିବା ଆକାଶର ରାଣ! ୨. ସେହି ଦିନର
ରାଣ ଯାହାର ବଚନ ଦିଆଯାଇଛି, ୩. ଏବଂ ତା'ର ରାଣ, ଯିଏ ଦେଖେ ଏବଂ ଯାହା
ଦେଖେ। ୪. ସେମାନଙ୍କର ସର୍ବନାଶ ହେଲା ଯେଉଁମାନେ ଖାଇ ଖୋଳିଥିଲେ, ୫.
ଯେଉଁଥିରେ ନିଆଁ ଜାଳିବା ଲାଗି ପ୍ରଚୁର ଜାଳେଣି ଥିଲା। ୬. ସେମାନେ ତାହାରି କଡ଼ରେ
ବସିଥିଲେ। ୭. ଏବଂ ସଦ୍‌ବିଶ୍ୱାସୀମାନଙ୍କୁ ଦେଉଥିବା ଦଣ୍ଡର ଦୃଶ୍ୟ ଉପଭୋଗ
କରୁଥିଲେ। ୮. ସେମାନେ ସଦ୍‌ବିଶ୍ୱାସୀମାନଙ୍କୁ କେବଳ ଏଇଥିପାଇଁ ଦଣ୍ଡ ଦେଉଥିଲେ
ଯେ ଏମାନେ ମହାଶକ୍ତିମାନ ଓ ସ୍ତୁତିଯୋଗ୍ୟ ଅଲ୍ଲାହଙ୍କୁ ବିଶ୍ୱାସ କଲେ, ୯. ଯିଏ ପୃଥିବୀ
ଓ ଆକାଶର ମାଲିକ। ଅଲ୍ଲାହ୍ ସବୁକିଛି ଦେଖୁଛନ୍ତି।

୧୦. ଯେଉଁମାନେ ସଦ୍‌ବିଶ୍ୱାସୀ ନରନାରୀଙ୍କୁ ନିର୍ଯାତନା ଦେଲେ ମାତ୍ର
ପଶ୍ଚାତାପ କଲେନାହିଁ, ସେମାନଙ୍କୁ ନର୍କଦଣ୍ଡ ହେବ ଏବଂ ସେମାନେ ନିଆଁରେ ଦଗ୍ଧ
ହେବେ। ୧୧. ଯେଉଁମାନେ ଅଲ୍ଲାହଙ୍କୁ ବିଶ୍ୱାସ କଲେ ଏବଂ ଭଲ କର୍ମ କଲେ,
ସେମାନଙ୍କର ଭୋଗ କରିବା ପାଇଁ ବୈକୁଣ୍ଠରେ (ଅନେକ) ଉଦ୍ୟାନ ଅଛି, ଯାହା
ତଳେ ଝରଣା ପ୍ରବାହିତ ହୁଏ। ଏହା ଏକ ବଡ଼ ସଫଳତା।

୧୨. ତୁମ୍ଭ ଈଶ୍ୱର ଅତି କଠୋର ଦଣ୍ଡ ଦିଅନ୍ତି। ୧୩. ସେ ହିଁ ସୃଷ୍ଟିର
ପ୍ରାରମ୍ଭ କରନ୍ତି ଏବଂ ଏହାର ପୁନରାବୃତ୍ତି ମଧ୍ୟ କରିବେ। ୧୪. ସେ ଅତ୍ୟନ୍ତ
କ୍ଷମାଶୀଳ ଏବଂ ସ୍ନେହଶୀଳ। ୧୫. ଏବଂ ଗୌରବମୟ ସିଂହାସନର ଅଧିକାରୀ।
୧୬. ସେ ଯାହା ଇଚ୍ଛା କରନ୍ତି, ଅବଶ୍ୟ କରନ୍ତି।

୧୭. କ'ଣ ତୁମ୍ଭକୁ ସେହି ସୈନ୍ୟମାନଙ୍କର ଖବର ମିଳିନାହିଁ? ୧୮.
ଫିରଔନ ଓ ସମୁଦଙ୍କ ସୈନ୍ୟମାନଙ୍କର? ୧୯. ତଥାପି ନାସ୍ତିକମାନେ ଅସ୍ୱୀକାର
କରୁଛନ୍ତି। ୨୦. ଅଲ୍ଲାହ୍ ସେମାନଙ୍କୁ ଚାରିଆଡୁ ଘେରି ସାରିଛନ୍ତି। ୨୧. ଏହି
କୁରଆନ ଏକ ଗୌରବମୟ ଗ୍ରନ୍ଥ, ୨୨. ଯାହା ଏକ ସଂରକ୍ଷିତ ଫଳକରେ
ଲିପିବଦ୍ଧ ହୋଇ ରହିଛି।

## ଅଧ୍ୟାୟ ୮୬. ଅତ୍ ତାରିକ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଆକାଶର ରାଣ ଏବଂ ତାହାର ରାଣ ଯାହା ରାତିରେ ପ୍ରକଟ ହୁଏ । ୨. ତୁମେ କ'ଣ ଜାଣ ଯେ ରାତିରେ କ'ଣ ପ୍ରକଟ ହୁଏ ? ୩. ଝଲମଲ କରୁଥିବା ତାରା । ୪. ଏମିତି କେହି ବ୍ୟକ୍ତି ନାହିଁ ଯାହାକୁ ଜଗିବା ପାଇଁ ଦେବଦୂତ ନିଯୁକ୍ତ ହୋଇନାହାନ୍ତି ।

୫. ମଣିଷ ଲକ୍ଷ୍ୟ କରୁ ଯେ ତାକୁ କିଭଳି ପଦାର୍ଥରୁ ସୃଷ୍ଟି କରଯାଇଛି । ୬. ଉଛୁଳି ପଡୁଥିବା ଟୋପାଏ ପାଣିରୁ ସୃଷ୍ଟି କରାଯାଇଛି, ୭. ଯାହା ମେରୁଦଣ୍ଡ ଓ ପଞ୍ଜରା ମଝିରୁ ବାହାରିଥାଏ । ୮. ନିଃସନ୍ଦେହରେ ସେ ତାକୁ ପୁନର୍ବାର ଜୀବିତ କରିବାକୁ ସକ୍ଷମ । ୯. ଯେଉଁଦିନ ପ୍ରତ୍ୟେକ ଗୁପ୍ତ ବିଷୟରେ ଅନୁସନ୍ଧାନ କରାଯିବ, ୧୦. ସେଦିନ ମଣିଷର କିଛି କରିବାର ବଳ ନଥିବ କିମ୍ବା କେହି ତାକୁ ସାହାଯ୍ୟ କରିବାକୁ ନଥିବେ ।

୧୧. ଆକାଶର ରାଣ ଯାହା ଜଳ ବର୍ଷା କରେ, ୧୨. ଏବଂ ଧରିତ୍ରୀର ରାଣ ଯାହା ଫାଟିଯାଏ, ୧୩. କୁରଆନର ବାଣୀ ନିର୍ଣ୍ଣାୟକ । ୧୪. ଏହା କୌଣସି ଥଟ୍ଟା-ପରିହାସ ନୁହେଁ । ୧୫. ଏମାନେ ଚକ୍ରାନ୍ତ କରୁଛନ୍ତି । ୧୬. ମୁଁ ମଧ୍ୟ ମୋ' ଯୋଜନା କରୁଛି । ୧୭. ତେଣୁ ନାସ୍ତିକମାନଙ୍କୁ କିଛିଦିନ ଛାଡ଼ିଦିଅ ଏବଂ ସେମାନଙ୍କୁ କିଛି ସମୟ ଦିଅ ।

## ଅଧ୍ୟାୟ ୮୭, ଅଲ୍ ଆ'ଲା

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ତୁମେ ନିଜର ମହାନ ପ୍ରଭୁଙ୍କର ନାମ ଜପ କର, ୨. ଯିଏ ସୃଷ୍ଟି କଲେ ଏବଂ ନିଖୁଣ ଭାବରେ ଗଢ଼ିଲେ । ୩. ଭାଗ୍ୟ ନିରୂପଣ କଲେ ଏବଂ ବାଟ ଦେଖାଇଲେ, ୪. ଯିଏ ସବୁଜ ଘାସ ଉତ୍ପନ୍ନ କଲେ, ୫. ପୁଣି ତାକୁ ଶୁଖିଲା କୁଟାରେ ପରିଣତ କରିଦେଲେ ।

୬. (ହେ ବାର୍ତ୍ତାବହ !) ଆମ୍ଭେ ତୁମକୁ ପଢ଼ାଇଦେବୁ ଯାହାଫଳରେ ତୁମେ ଆଉ ଭୁଲିବନାହିଁ, ୭. ମାତ୍ର ଯେତିକି ଅଲ୍ଲାହ୍ ଚାହିଁବେ । ସେ ଦୃଷ୍ଟ ଓ ଅଦୃଷ୍ଟ ବିଷୟରେ ଜାଣନ୍ତି । ୮. ଆମ୍ଭେ ତୁମର ବାଟ ସହଜ କରିଦେବୁ । ୯. ତେଣୁ ଯଦି ବୁଝାଇଲେ ଲାଭ ହେଉଛି, ତେବେ ବୁଝାଅ । ୧୦. ଯିଏ ଅଲ୍ଲାହ୍‌ଙ୍କୁ ଭୟ କରେ, ସେ ଧ୍ୟାନ ଦେବ, ୧୧. ଏବଂ ଯିଏ ହତଭାଗା ହୋଇଥିବ, ସେ ଉପେକ୍ଷା କରିବ । ୧୨. ସେ ଭୟଙ୍କର ନିଆଁରେ ଦଗ୍ଧ ହେବ । ୧୩. ପୁଣି ସେ ସେଠାରେ, ନା ମରିପାରିବ ନା ଜିଇଁ ପାରିବ ।

୧୪. ସେହି ବ୍ୟକ୍ତି ସଫଳ ହୁଏ ଯିଏ ଆତ୍ମଶୁଦ୍ଧି କରେ । ୧୫. ନିଜ ପ୍ରଭୁଙ୍କ ନାମ ନିଏ ଏବଂ ନମାଜପାଠ କରେ । ୧୬. କିନ୍ତୁ ତୁମେମାନେ ପାର୍ଥିବ ଜୀବନକୁ ପ୍ରାଥମିକତା ଦିଅ, ୧୭. ଅଥଚ ପରଲୋକର ସୁଖ ଏହାଠାରୁ ଢେର ଭଲ ଏବଂ ଚିରସ୍ଥାୟୀ । ୧୮. ଏକଥା ପୂର୍ବ ଗ୍ରନ୍ଥମାନଙ୍କରେ ମଧ୍ୟ କୁହା ଯାଇଥିଲା – ୧୯. ଇବ୍ରାହିମ୍ ଓ ମୁ'ସାଙ୍କ ଗ୍ରନ୍ଥରେ ।

## ଅଧ୍ୟାୟ ୮୮, ଅଲ୍ ଗାଶିୟଃ

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. କ'ଣ ତୁମକୁ ସେହି (ପ୍ରଳୟର) ଖବର ମିଳିଛି ଯାହାର ଭୟାବହତା (ସମଗ୍ର ସୃଷ୍ଟିକୁ) ଆଚ୍ଛନ୍ନ କରିନେବ ?

୨. ସେଦିନ ଅନେକ ଲୋକଙ୍କର ମୁହଁ ତଳକୁ ନଇଁ ଯିବ, । ୩. ଯେଉଁମାନେ ବହୁ ପରିଶ୍ରମ କରି ଥକି ଯାଇଥିବେ । ୪. ସେମାନେ ଜ୍ୱଳନ୍ତ ନିଆଁରେ ଦଗ୍ଧ ହେବେ । ୫. ସେମାନଙ୍କୁ ଉତ୍ତପ୍ତ ଝରଣାର ପାଣି ପିଇବାକୁ ଦିଆଯିବ । ୬. କଣ୍ଟାଯୁକ୍ତ ଉଦ୍ଭିଦ ଛଡ଼ା ଆଉ କିଛି ଖାଇବାକୁ ମିଳିବନାହିଁ । ୭. ଏହାଦ୍ୱାରା ଓଜନ ବୃଦ୍ଧି ହେବନାହିଁ କି ଭୋକ ମେଣ୍ଟିବ ନାହିଁ । ୮. ସେଦିନ ଅନେକଙ୍କର ମୁହଁରେ ହସ ଫୁଟୁଥିବ । ୯. ସେମାନେ ନିଜର ପରିଶ୍ରମ ଯୋଗୁଁ ଖୁସି ଥିବେ । ୧୦. ସେମାନେ ଉଚ୍ଚ ଶ୍ରେଣୀୟ ବୈକୁଣ୍ଠରେ ରହିବେ, ୧୧. ଯେଉଁଠି କୌଣସି ଅଭଦ୍ର କଥା ଶୁଣିବେ ନାହିଁ । ୧୨. ସେଠାରେ ଝରଣାମାନ ବହି ଯାଉଥିବ, ୧୩. ଉଚ୍ଚଉଚ୍ଚ ଆସନ

ପଡ଼ିଥିବ, ୧୪. ପାଖରେ ପାନୀୟ ପାତ୍ର ଥୁଆ ହୋଇଥିବ, ୧୫. ଧାଡ଼ିଧାଡ଼ି ହୋଇ ତକିଆ ପଡ଼ିଥିବ, ୧୬. ଏବଂ ସୁନ୍ଦର ଗାଲିଚା ପଡ଼ିଥିବ ।

୧୭. କ'ଣ ଏମାନେ ଓଟମାନଙ୍କୁ ଦେଖୁ ନାହାନ୍ତି ଯେ କିପରି ସେମାନଙ୍କୁ ଗଢ଼ା ଯାଇଛି ? ୧୮. ଆକାଶକୁ ଦେଖୁ ନାହାନ୍ତି ଯେ କିପରି ଉଚ୍ଚ କରାଯାଇଛି ? ୧୯. ପାହାଡ଼ଗୁଡ଼ିକୁ ଦେଖୁ ନାହାନ୍ତି ଯେ କିଭଳି ପୋତା ଯାଇଛି ? ୨୦. ଏବଂ ଧରିତ୍ରୀକୁ ଦେଖୁ ନାହାନ୍ତି କିପରି ବିଛାଇ ଦିଆଯାଇଛି ?

୨୧. (ହେ ବାର୍ତ୍ତାବହ !) ଉପଦେଶ ଦେଉଥାଅ । କେବଳ ଉପଦେଶ ଦେବା ତୁମର କାମ । ୨୨. ତୁମେ ସେମାନଙ୍କୁ ଜଗିବା ପାଇଁ ନିଯୁକ୍ତ ହୋଇନାହଁ । ୨୩. ହଁ, ଯିଏ ନମାନିବ କିମ୍ବା ପ୍ରତ୍ୟାଖ୍ୟାନ କରିବ, ୨୪. ଅଲ୍ଲାହ୍ ତାକୁ କଠୋର ଦଣ୍ଡରେ ଦଣ୍ଡିତ କରିବେ । ୨୫. ସେମାନଙ୍କୁ ଆମ୍ଭରି ପାଖକୁ ଫେରିବାକୁ ହେବ । ୨୬. ପୁଣି ସେମାନଙ୍କଠାରୁ ହିସାବ ନେବା ଆମ୍ଭର ଦାୟିତ୍ୱ ।

## ଅଧ୍ୟାୟ ୮୯, ଅଲ୍ ଫଜ୍ର୍

**ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍ଙ୍କ ନାମରେ**

୧. ସକାଳର ରାଣ ! ୨. ଏବଂ ଦଶରାତିର ରାଣ ! ୩. ସମ ଓ ବିଷମ ସଂଖ୍ୟାର ରାଣ ! ୪. ଏବଂ ପାହି ଆସୁଥିବା ରାତିର ରାଣ ! ୫. କ'ଣ ବୁଦ୍ଧିମାନ ଲୋକଙ୍କ ପାଇଁ ଏହି ରାଣ ଯଥେଷ୍ଟ ନୁହେଁ ?

୬. କ'ଣ ତୁମେ ଦେଖିଲନାହିଁ ଯେ ତୁମ ପ୍ରଭୁ ଆଦ୍ ସଂପ୍ରଦାୟ ସହିତ କିଭଳି ବ୍ୟବହାର କଲେ ? ୭. ଏବଂ ଇରାମ୍ ସଂପ୍ରଦାୟ ସହିତ, ଯେଉଁମାନେ ଉଚ୍ଚଉଚ୍ଚ ସ୍ତମ୍ଭ ନିର୍ମାଣ କରୁଥିଲେ ? ୮. ସେମାନଙ୍କ ପରି (ବଳବାନ) ଦେଶରେ କେବେ ଜନ୍ମ ହୋଇ ନଥିଲେ । ୯. ଆଉ ସମୁଦ୍ ସଂପ୍ରଦାୟ ସହିତ, ଯେଉଁମାନେ ଘାଟି ଅଂଚଳରେ ପଥର କାଟୁଥିଲେ ? ୧୦.ଏବଂ କୀଳାବିଦ୍ଧ କରି ଦଣ୍ଡ ଦେଉଥିବା ଫିରଔନ ସହିତ ମଧ୍ୟ । ୧୧. ଏମାନେ ଏମାନଙ୍କ ସହରରେ ମୁଣ୍ଡ ଟେକିଥିଲେ, ୧୨. ଏବଂ ଘୋର ଅଶାନ୍ତି ସୃଷ୍ଟି କରୁଥିଲେ । ୧୩. ତେଣୁ ତୁମ ଈଶ୍ୱର ସେମାନଙ୍କୁ ଦୈବୀଦଣ୍ଡର ପ୍ରହାର କଲେ । ୧୪. ତୁମ ଈଶ୍ୱର ଅବଶ୍ୟ ନଜର ରଖିଛନ୍ତି ।

୧୫. ଯେତେବେଳେ ଈଶ୍ୱର ସୁଖସମୃଦ୍ଧି ଓ ମାନସମ୍ମାନ ଦେଇ ମଣିଷକୁ ପରୀକ୍ଷା କରନ୍ତି, ସେ କହେ ଯେ ମୋ' ଈଶ୍ୱର ମୋତେ ସମ୍ମାନ ଦେଲେ। ୧୬. କିନ୍ତୁ ଯେତେବେଳେ ସେ ସାଂସାରିକ ସାଧନ ସୀମିତ କରି ତା'ର ପରୀକ୍ଷା ନିଅନ୍ତି, ସେ କହେ ଯେ ଈଶ୍ୱର ମୋତେ ଅପମାନ ଦେଲେ। ୧୭. ନା ନା, ତୁମେମାନେ ଅନାଥମାନଙ୍କର ଆଦର କରନାହିଁ। ୧୮. ଗରିବମାନଙ୍କୁ ଭୋଜନ ଦେବା ଲାଗି ପରସ୍ପରକୁ ଉତ୍ସାହିତ କରନାହିଁ। ୧୯. ଏବଂ ଉତ୍ତରାଧିକାର ସୂତ୍ରରେ ଯାହା ଧନ ମିଳେ, ସବୁତକ ସାଉଁଟି ନେଇ ଖାଇଯାଅ। ୨୦. ତୁମେମାନେ ଧନକୁ ବହୁତ ଅଧିକ ଭଲ ପାଅ।

୨୧. ଏହା ଉଚିତ ନୁହେଁ। ଯେତେବେଳେ ପୃଥିବୀକୁ ଭାଙ୍ଗି ଚୁନାଚୁନା କରି ଦିଆଯିବ, ୨୨. ତୁମ ଈଶ୍ୱରଙ୍କର ଆବିର୍ଭାବ ହେବ ଏବଂ ଦେବଦୂତଗଣ ଆସି ଧାଡ଼ି ବାନ୍ଧି ହୋଇ ଠିଆ ହୋଇଯିବେ, ୨୩. ସେଦିନ ନର୍କକୁ ନିକଟତର କରିଦିଆ ଯିବ ଏବଂ ମଣିଷର ଚେତା ପଶିବ କିନ୍ତୁ ସେତେବେଳେ ବୁଝିଲେ କି ଲାଭ? ୨୪. ମଣିଷ କହିବ, "ଆହା! ଭଲ ହୋଇ ଥାଆନ୍ତା ଯଦି ମୁଁ ଭବିଷ୍ୟତ ଜୀବନ ପାଇଁ କିଛି ପୁଣ୍ୟ କରି ଥାଆନ୍ତି।" ୨୫. ସେଦିନ ସେ ଯେମିତି ଦଣ୍ଡ ଦେବେ, କେହି ସେମିତି ଦେଇ ପାରିବେନାହିଁ, ୨୬. କିମ୍ବା ତାଙ୍କ ପରି କେହି ବାନ୍ଧି ରଖି ପାରିବେନାହିଁ।

୨୭. (ସଦାଚାରୀ ବ୍ୟକ୍ତିକୁ କୁହାଯିବ) "ହେ (ଅଲ୍ଲାହଙ୍କ ପ୍ରତି) ସନ୍ତୁଷ୍ଟ ଥିବା ଆତ୍ମା! ୨୮. ନିଜ ପାଳନକର୍ତ୍ତାଙ୍କ ପାଖକୁ ଚାଲ୍। ତୁ ତାଙ୍କ ପ୍ରତି ସନ୍ତୁଷ୍ଟ ଏବଂ ସେ ମଧ୍ୟ ତୋ' ପ୍ରତି ସନ୍ତୁଷ୍ଟ। ୨୯. ତେଣୁ, ମୋ'ର ପ୍ରିୟ ଭକ୍ତମାନଙ୍କ ସହିତ ଯାଇ ରୁହ, ୩୦. ବେଂ ମୋ' ବୈକୁଣ୍ଠରେ ପ୍ରବେଶ କର।"

## ଅଧ୍ୟାୟ ୯୦, ଅଲ୍ ବଲଦ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ମୋତେ ଏହି ସହରର ରାଣ! ୨. ତୁମେ ଏହି ସହରର ବାସିନ୍ଦା। ୩. ଏବଂ ମୋତେ ମାନବଜାତିର ପିତା ଏବଂ ତାଙ୍କ ସନ୍ତାନମାନଙ୍କର ରାଣ! ୪. ଆମ୍ଭେ ମନୁଷ୍ୟକୁ ପରିଶ୍ରମୀ କରି ଗଢ଼ିଛୁ। ୫. କ'ଣ ସେ ଭାବିଛି ଯେ ତା' ଉପରେ

କାହାରି ବଳ ନାହିଁ? ୬. କହୁଛି ଯେ ମୁଁ ବହୁତ ଧନ ଉଡ଼ାଇ ଦେଇଛି ? ୭. କ'ଣ ସେ ଭାବିଛି ଯେ ତାକୁ କେହି ଦେଖିନାହିଁ? ୮. କ'ଣ ଆମ୍ଭେ ତାକୁ ଦୁଇ ଆଖି ଦେଇନାହୁଁ? ୯. ଗୋଟଏ ଜିଭ ଏବଂ ଦୁଇ ଓଠ ଦେଇନାହୁଁ? ୧୦. ଏବଂ ତାକୁ (ଠିକ୍ ଓ ଭୁଲ୍) ଉଭୟ ବାଟ ଦେଖାଇନାହୁଁ? ୧୧. ମାତ୍ର ସେ (ଜୀବନର) ଘାଟିପଥରେ ଚଢ଼ି ପାରିଲାନାହିଁ। ୧୨. ତୁମେ କ'ଣ ଜାଣ ଯେ ଘାଟିପଥ କ'ଣ? ୧୩. କାହାରିକୁ ଦାସତ୍ୱରୁ ମୁକ୍ତ କରିବା, ୧୪. କିମ୍ୱା ଭୋକ ବେଳେ ଭୋଜନ ଦେବା, ୧୫. କୌଣସି ସଂପର୍କୀୟ ଅନାଥକୁ ୧୬. କିମ୍ୱା ଦୁଃଖକଷ୍ଟରେ ଥିବା ଦରିଦ୍ରକୁ। ୧୭. ପୁଣି ସେ ସେମାନଙ୍କ ପରି ହୁଅନ୍ତା ଯେଉଁମାନେ (ଅଲ୍ଲାହଙ୍କୁ) ବିଶ୍ୱାସ କରନ୍ତି ଏବଂ ପରସ୍ପରକୁ ଧୈର୍ଯ୍ୟ ଅବଲମ୍ବନ କରିବାର ଏବଂ ଦୟା କରିବାର ଉପଦେଶ ଦିଅନ୍ତି।

୧୮. ଏହି ବ୍ୟକ୍ତିମାନେ ବଡ଼ ଭାଗ୍ୟବାନ। ୧୯. ଏବଂ ଯେଉଁମାନେ ଆମ୍ଭ ବାଣୀକୁ ଅସ୍ୱୀକାର କଲେ, ସେମାନେ ଭାଗ୍ୟହୀନ। ୨୦. ଏମାନଙ୍କୁ ନିଆଁରେ ପୁରାଇ ଚାରିପଟୁ ବନ୍ଦ କରି ଦିଆଯିବ।

## ଅଧ୍ୟାୟ ୯୧, ଅଶ୍ ଶମ୍ସ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ସୂର୍ଯ୍ୟ ଓ ଏହାର ପ୍ରକାଶର ରାଣ! ୨. ଏହାର ପିଛା କରୁଥିବା ଚନ୍ଦ୍ରର ରାଣ! ୩. ଏହାକୁ ପ୍ରକାଶ କରୁଥିବା ଦିନର ରାଣ! ୪. ଏହାକୁ ଘୋଡ଼ାଇ ଦେଉଥିବା ରାତିର ରାଣ! ୫. ଆକାଶ ଓ ଏହାର ସ୍ରଷ୍ଟାଙ୍କ ରାଣ! ୬. ଧରିତ୍ରୀ ଓ ଏହାକୁ ବିସ୍ତାର କରିଥିବା ସତ୍ତାଙ୍କ ରାଣ! ୭. ମଣିଷର ରାଣ ଏବଂ ତାଙ୍କ ରାଣ ଯିଏ ତାକୁ ନିଖୁଣ ରୂପେ ଗଢ଼ିଛନ୍ତି, ୮. ସେ ତା' ଅନ୍ତରାତ୍ମାକୁ ଭଲ ଓ ମନ୍ଦ ବିଷୟରେ ଜଣାଇ ଦେଇଛନ୍ତି। ୯. ସେହି ବ୍ୟକ୍ତି ସଫଳ ହୁଏ ଯିଏ ଆତ୍ମଶୁଦ୍ଧି କରେ, ୧୦. ଏବଂ ସେ ଅସଫଳ ହୁଏ ଯିଏ ନିଜ ଆତ୍ମାକୁ କଳୁଷିତ କରେ।

୧୧. ସମୁଦ୍ ସଂପ୍ରଦାୟ ଅହଙ୍କାର ଯୋଗୁଁ (ବାର୍ତ୍ତାବହଙ୍କୁ) ଅସ୍ୱୀକାର କଲେ। ୧୨. ଯେତେବେଳେ ସେମାନଙ୍କ ମଧ୍ୟରେ ଥିବା ସବୁଠାରୁ ଦୁଷ୍ଟ ବ୍ୟକ୍ତି

ଜଣକ ଆଗେଇ ଆସିଥିଲା, ୧୩. ଅଲ୍ଲାହଙ୍କ ରସୁଲ ସେମାନଙ୍କୁ କହିଥିଲେ,"ସାବଧାନ! ଅଲ୍ଲାହଙ୍କର ଓଟକୁ ପାଣି ପିଇବାକୁ ଦିଅ।" ୧୪. କିନ୍ତୁ ସେମାନେ ତାଙ୍କୁ ମିଥ୍ୟାବାଦୀ ବୋଲି କହିଲେ ଏବଂ ଓଟଟିକୁ ମାରିଦେଲେ। ତେଣୁ ସେମାନଙ୍କର ପାପ ଯୋଗୁଁ ଈଶ୍ୱର ସେମାନଙ୍କୁ ଦଣ୍ଡ ଦେଲେ ଏବଂ ସେମାନଙ୍କୁ ଧୂଳିରେ ମିଶାଇଦେଲେ। ୧୫. ସେ ପରିଣାମକୁ ଭୟ କରନ୍ତିନାହିଁ।

## ଅଧ୍ୟାୟ ୯୨, ଅଲ୍ ଲୈଲ୍

## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ରାତିର ରାଣ, ଯେତେବେଳେ ଏହା ଦିନକୁ ଲୁଚାଇ ଦିଏ। ୨. ଦିନର ରାଣ, ଯେତେବେଳେ ଏହା ଅଲୋକ ବିଛାଇ ଦିଏ। ୩. ତାଙ୍କର ରାଣ, ଯିଏ ନର ଓ ନାରୀ ସୃଷ୍ଟି କଲେ। ୪. ତୁମେମାନେ ବିଭିନ୍ନ ଉଦ୍ଦେଶ୍ୟରେ ପରିଶ୍ରମ କରିଥାଅ। ୫. ମାତ୍ର ଯିଏ (ଦାନପୁଣ୍ୟରେ) ଧନଖର୍ଚ୍ଚ କରେ ଏବଂ କୁକର୍ମରୁ ନିବୃତ୍ତ ରହେ, ୬. ଏବଂ ଭଲ କଥାକୁ ମାନିନିଏ, ୭. ଆମ୍ଭେ ତା' ପାଇଁ ସୁଖର ବାଟ ସହଜ କରିଦେବୁ। ୮. କିନ୍ତୁ ଯିଏ କୃପଣତା କରେ ଏବଂ ବେଖାତିର କରେ, ୯. ଏବଂ ଭଲ କଥାକୁ ଅସ୍ୱୀକାର କରେ, ୧୦. ଆମ୍ଭେ ତା' ପାଇଁ ଦୁଃଖର ବାଟ ସହଜ କରିଦେବୁ। ୧୧. ଯଦି ସେ ନର୍କକୁ ଯିବ, ତେବେ ତା' ଧନ କି କାମରେ ଆସିବ?

୧୨. ଅବଶ୍ୟ ବାଟ ଦେଖାଇ ଦେବା ଆମ୍ଭର ଦାୟିତ୍ୱ । ୧୩. ଉଭୟ ଇହଲୋକ ଓ ପରଲୋକର ଆମ୍ଭେ ହିଁ ମାଲିକ। ୧୪. ତେଣୁ, ମୁଁ ତୁମମାନଙ୍କୁ ଭୟଙ୍କର ନିଆଁ ବିଷୟରେ ସତର୍କ କରିଦେଲି। ୧୫. ଏଥିରେ ସେହି ଦଗ୍ଧ ହେବ ଯିଏ ହତଭାଗା। ୧୬. ଯିଏ ସତ୍ୟକୁ ମାନେନାହିଁ ଏବଂ ମୁହଁ ଫେରାଇ ନିଏ। ୧୭. ସଦାଚାରୀ ବ୍ୟକ୍ତିକୁ ଏଥିରୁ ଦୂରେଇ ରଖାଯିବ। ୧୮. ଯିଏ ଆତ୍ମଶୁଦ୍ଧି ପାଇଁ ଧନ ଖର୍ଚ୍ଚ କରେ, ୧୯. କିନ୍ତୁ ଏହା କାହାରି ଉପକାର ବଦଳରେ କରେନାହିଁ, ୨୦. କେବଳ ନିଜ ମହାନ ପ୍ରଭୁଙ୍କର ପ୍ରସନ୍ନତା ପାଇଁ କରେ। ୨୧. ସେ ଅତିଶୀଘ୍ର ସନ୍ତୁଷ୍ଟ ହୋଇଯିବ।

## ଅଧ୍ୟାୟ ୯୩, ଅଜ୍ ଜୁହା

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ପୂର୍ବାହ୍ନର ରାଣ ! ୨. ଏବଂ ଅନ୍ଧାର ହୋଇ ଆସୁଥିବା ରାତିର ରାଣ । ୩. (ହେ ବାର୍ତ୍ତାବହ !) ତୁମ ଈଶ୍ୱର ତୁମକୁ ତ୍ୟାଗ କରିନାହାନ୍ତି କିମ୍ବା ତୁମ ପ୍ରତି ଅସନ୍ତୁଷ୍ଟ ହୋଇନାହାନ୍ତି । ୪. ତୁମର ଆଗାମୀ ସମୟ ତୁମ ପୂର୍ବ ସମୟ ଅପେକ୍ଷା ଭଲ ହେବ । ୫. ତୁମ ପ୍ରଭୁ ଶୀଘ୍ର ତୁମକୁ ଏଭଳି ପୁରସ୍କାର ଦେବେ ଯେ ତୁମେ ଖୁସି ହୋଇଯିବ । ୬. କ’ଣ ତୁମେ ଅନାଥ ଥିବାର ଦେଖି ସେ ତୁମପାଇଁ ଆଶ୍ରୟ ବ୍ୟବସ୍ଥା କରିନାହାନ୍ତି ? ୭. ତୁମେ ବାଟ ଜାଣି ନଥିବାର ଦେଖି ସେ ତୁମକୁ ବାଟ ଦେଖାଇଲେ, ୮. ଏବଂ ତୁମକୁ ଅଭାବରେ ଥିବାର ଦେଖି ତୁମର ଅଭାବ ଦୂର କଲେ । ୯. ତେଣୁ, ତୁମେ ମଧ୍ୟ ଅନାଥ ପ୍ରତି କଠୋର ହୁଅନାହିଁ ୧୦. କିମ୍ବା କୌଣସି ଭିକ୍ଷୁକକୁ କଟୁ କଥା କୁହନାହିଁ, ୧୧. ଏବଂ ନିଜ ପ୍ରଭୁଙ୍କ କୃପାର ଚର୍ଚ୍ଚା କରୁଥାଅ ।

## ଅଧ୍ୟାୟ ୯୪, ଅଲ୍ ଇନ୍‌ଶରହ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. (ହେ ବାର୍ତ୍ତାବହ !) କ’ଣ ଆମ୍ଭେ ତୁମର ହୃଦୟ ଖୋଲି ଦେଇନାହୁଁ ? ୨. ଆମ୍ଭେ ତୁମ ଉପରେ ଥିବା ବୋଝ ଓହ୍ଲାଇ ଦେଲୁ, ୩. ଯାହା ତୁମର ଅଣ୍ଟା ଭାଙ୍ଗି ଦେଇଥିଲା, ୪. ଏବଂ ତୁମର ସୁନାମ ବୃଦ୍ଧି କଲୁ । ୫. ଦୁଃଖକଷ୍ଟ ପରେ ସୁଖ ମଧ୍ୟ ଆସିବ । ୬. ଦୁଃଖକଷ୍ଟ ପରେ ସୁଖ ଅବଶ୍ୟ ଆସିବ । ୭. ତେଣୁ, ଯେତେବେଳେ (କାର୍ଯ୍ୟବ୍ୟସ୍ତତାରୁ) ସମୟ ମିଳେ, (ଅଲ୍ଲାହ୍‌ଙ୍କର) ଉପାସନା କରିବାରେ ଲାଗିପଡ଼, ୮. ଏବଂ ନିଜ ପାଳନକର୍ତ୍ତାଙ୍କଠାରେ ଲୟ ରଖିଥାଅ ।

## ଅଧ୍ୟାୟ ୯୫, ଅତ୍ ତୀନ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଡ଼ିମ୍ବିରୀ ଓ ଅଲିଭ୍‌ର ରାଣ ! ୨. ଏବଂ ସିନାଇ ପାହାଡ଼ର ରାଣ ! ୩. ଏବଂ ଏହି ଶାନ୍ତିଧାମର ରାଣ ! ୪. ଆମ୍ଭେ ମନୁଷ୍ୟକୁ ସୁନ୍ଦର ଢାଂଚରେ ଗଢ଼ିଛୁ । ୫. ପୁଣି ଆମ୍ଭେ ତାକୁ ନିକୃଷ୍ଟ ଅବସ୍ଥାକୁ ନେଇଯାଉ । ୬. ଯେଉଁମାନେ (ଅଲ୍ଲାହ୍‌ଙ୍କୁ)

ବିଶ୍ୱାସ କରନ୍ତି ଏବଂ ଭଲକର୍ମ କରନ୍ତି, ସେମାନଙ୍କ ପାଇଁ ଅସରନ୍ତି ପୁରସ୍କାର ଅଛି । ୭. (ହେ ମନୁଷ୍ୟ !) ପୁଣି କାହିଁକି ତୁ ବିଚାର ଦିନକୁ ଅସ୍ୱୀକାର କରୁଛୁ ? ୮. କ'ଣ ଅଲ୍ଲାହ୍ ସର୍ବଶ୍ରେଷ୍ଠ ବିଚାରକ ନୁହନ୍ତି ?

## ଅଧ୍ୟାୟ ୯୬, ଅଲ୍ ଅଲକ୍
## ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. (ହେ ମୁହମ୍ମଦ !) ନିଜ ଈଶ୍ୱରଙ୍କ ନାମ ନେଇ ପଢ଼ ଯିଏ ସୃଷ୍ଟିର ରଚନା କଲେ, ୨. ମଣିଷକୁ ରକ୍ତପିଣ୍ଡରୁ ଗଢ଼ିଲେ । ୩. ପଢ଼, ତୁମ ପାଳନକର୍ତ୍ତା ଅତ୍ୟନ୍ତ ଉଦାର । ୪. ଯିଏ କଲମ ଦ୍ୱାରା ବିଦ୍ୟାର ଶିକ୍ଷା ଦେଲେ, ୫. ଏବଂ ମଣିଷକୁ ତାହା ଶିକ୍ଷା ଦେଲେ ଯାହା ସେ ଜାଣି ନଥିଲା । ୬. ମାତ୍ର ମଣିଷ ଅହଙ୍କାରୀ ହୋଇଯାଏ, ୭. କାରଣ ସେ ନିଜକୁ ଆତ୍ମନିର୍ଭରଶୀଳ ମନେକରେ । ୮. ତୁମ ସମସ୍ତଙ୍କୁ ପ୍ରଭୁଙ୍କ ପାଖକୁ ଫେରିବାକୁ ହେବ ।

୯. ତୁମେ ସେହି ଲୋକକୁ ଦେଖିଲ ଯିଏ ବାଧା ଦିଏ, ୧୦. ଜଣେ ଭକ୍ତଙ୍କୁ ନମାଜ ପାଠ କଲାବେଳେ ? ୧୧. ଦେଖ, ଯଦି ଏହି ଭକ୍ତ ଜଣକ ସତ୍‌ପଥରେ ଥାଆନ୍ତି, ୧୨. ଏବଂ ସଦାଚାରିତାର ଶିକ୍ଷା ଦେଉଥାଆନ୍ତି, ୧୩. ଏବଂ ସେହି ବ୍ୟକ୍ତି ତାକୁ ଅଗ୍ରାହ୍ୟ କରି ମୁହଁ ଫେରାଇ ନେଉଥାଏ (ତେବେ ତା' ଅବସ୍ଥା କ'ଣ ହେବ ?) ୧୪. କ'ଣ ସେ ଏହା ଜାଣିନାହିଁ ଯେ ଅଲ୍ଲାହ୍ ସବୁ ଦେଖୁଛନ୍ତି ? ୧୫. ନା ନା, ଯଦି ସେ ଏଥିରୁ ନିବୃତ୍ତ ନହୁଏ, ତେବେ ଆମ୍ଭେ ତା' ଚୁଟି ଧରି ଘୋଷାରି ନେବୁ । ୧୬. ସେହି ମିଥ୍ୟାବାଦୀ ଏବଂ ପାପିଷ୍ଠର ଚୁଟିକୁ । ୧୭. ପୁଣି ସେ ତା' ସହଯୋଗୀମାନଙ୍କୁ ଡାକୁ । ୧୮. ଆମ୍ଭେ ମଧ୍ୟ ନର୍କର ପ୍ରହରୀମାନଙ୍କୁ ଡାକିବୁ । ୧୯. ନା, ନା, ତା' କଥା ଆଦୌ ମାନନାହିଁ । (ଈଶ୍ୱରଙ୍କୁ) ପ୍ରଣିପାତ କର ଏବଂ ତାଙ୍କର ସାନ୍ନିଧ୍ୟ ଲାଭ କର ।[ପ୍ରଣାମ]

## ଅଧ୍ୟାୟ ୯୭, ଅଲ୍ କଦ୍ର୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଆମ୍ଭେ ଏହି କୁରଆନକୁ ମହାରାତ୍ରୀରେ ପଠାଇଛୁ । ୨. ତୁମେ କ'ଣ ଜାଣ ଯେ ମହାରାତ୍ରୀ କ'ଣ ? ୩. ମହାରାତ୍ରୀର ମହତ୍ୱ ଏକ ହଜାର ମାସଠାରୁ ଅଧିକ । ୪. ଏହି ରାତିରେ ଦେବଦୂତ ଜିବ୍ରାଇଲ୍ ଏବଂ ଅନ୍ୟ ଦେବଦୂତମାନେ ଅଲ୍ଲାହ୍‌ଙ୍କ ଆଜ୍ଞାରୁ ବିଭିନ୍ନ ନିର୍ଦ୍ଦେଶ ଧରି (ମର୍ତ୍ତ୍ୟରେ) ଅବତରଣ କରନ୍ତି । ୫. ଏହି ରାତିଟି ସକାଳ ହେବା ପର୍ଯ୍ୟନ୍ତ ଅତ୍ୟନ୍ତ ଶୁଭ ।

## ଅଧ୍ୟାୟ ୯୮, ଅଲ୍ ବୈୟିନଃ

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ସ୍ପଷ୍ଟ ପ୍ରମାଣ ପାଇ ନଥିଲେ, ଅବିଶ୍ୱାସ କରୁଥିବା ଗ୍ରନ୍ଥବିଶ୍ୱାସୀ ଓ ବହୁଦେବବାଦୀମାନେ କଦାପି ସେମାନଙ୍କର ପନ୍ଥା ଛାଡ଼ି ନଥାଆନ୍ତେ । ୨. ଅଲ୍ଲାହଙ୍କର ଜଣେ ବାର୍ତ୍ତାବହ ସେମାନଙ୍କୁ ପବିତ୍ର ଗ୍ରନ୍ଥପାଠ କରି ଶୁଣାନ୍ତି । ୩. ଯେଉଁଥିରେ (ଅଲ୍ଲାହଙ୍କର) ଚିରନ୍ତନ ନୀତିନିୟମ ରହିଛି । ୪. ଯେଉଁମାନଙ୍କୁ ଏହାପୂର୍ବରୁ ଗ୍ରନ୍ଥ ଦିଆ ଯାଇଥିଲା, ସେମାନେ ସ୍ପଷ୍ଟ ପ୍ରମାଣ ପାଇସାରିବା ପରେ ଭାଗଭାଗ ହେଲେ । ୫. (ପୂର୍ବ ଗ୍ରନ୍ଥମାନଙ୍କରେ ମଧ୍ୟ) ସେମାନଙ୍କୁ ଆଦେଶ ଦିଆ ଯାଇଥିଲା ଯେ ସେମାନେ ଧର୍ମକୁ ଅଲ୍ଲାହଙ୍କ ପାଇଁ ବିଶୁଦ୍ଧ ରଖି ଏକନିଷ୍ଠ ଭାବରେ ତାଙ୍କର ଉପାସନା କରନ୍ତୁ, ନମାଜ ସଂପାଦନ କରନ୍ତୁ ଏବଂ ନିୟମିତ ଜକାତ୍ (ଅର୍ଥାତ୍ ଦାନ) ଦିଅନ୍ତୁ । ଏହାହିଁ ଚିରପ୍ରତିଷ୍ଠିତ ଧର୍ମ ।

୬. ଯେଉଁ ଗ୍ରନ୍ଥବିଶ୍ୱାସୀ ଓ ବହୁଦେବବାଦୀମାନେ ଅସ୍ୱୀକାର କଲେ, ସେମାନେ ନର୍କର ନିଆଁରେ ପ୍ରବେଶ କରିବେ ଏବଂ ସେଥିରେ ଚିରଦିନ ରହିବେ । ଏମାନେ ସୃଷ୍ଟି ମଧ୍ୟରେ ସବୁଠାରୁ ହୀନ । ୭. ଯେଉଁମାନେ ଅଲ୍ଲାହଙ୍କୁ ବିଶ୍ୱାସ କରନ୍ତି ଏବଂ ଭଲ କର୍ମ କରନ୍ତି ସେମାନେ ସୃଷ୍ଟି ମଧ୍ୟରେ ସର୍ବୋତ୍ତମ । ୮. ଈଶ୍ୱରଙ୍କ ପାଖରେ ସେମାନଙ୍କ ପାଇଁ ପୁରସ୍କାର ସ୍ୱରୂପ ଶାଶ୍ୱତ ବୈକୁଣ୍ଠର ଉଦ୍ୟାନ ଅଛି ଯାହା ତଳେ ଝରଣା ପ୍ରବାହିତ ହୁଏ । ସେମାନେ ସେଠାରେ ଚିରଦିନ ରହିବେ । ଅଲ୍ଲାହ୍

ସେମାନଙ୍କ ପ୍ରତି ସନ୍ତୁଷ୍ଟ ଏବଂ ସେମାନେ ମଧ୍ୟ ତାଙ୍କ ପ୍ରତି ସନ୍ତୁଷ୍ଟ । ଏହି ପୁରସ୍କାର ସେହି ବ୍ୟକ୍ତିକୁ ମିଳିବ ଯିଏ ତା' ପାଳନକର୍ତ୍ତାଙ୍କୁ ଭୟ କରୁଥିବ ।

## ଅଧ୍ୟାୟ ୯୯, ଅଲ୍ ଜିଲ୍‌ଜାଲ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଯେତେବେଳେ ଭୂମିକମ୍ପ ଦ୍ୱାରା ପୃଥିବୀକୁ ଦୋହଲାଇ ଦିଆଯିବ । ୨. ଏବଂ ଏହା ନିଜ ଗର୍ଭରେ ଥିବା ବୋଝ ବାହାରକୁ ଫିଙ୍ଗିଦେବ । ୩. ଏବଂ ମଣିଷ କହିବ, "ଏହାକୁ କ'ଣ ହେଲା ?" ୪. ସେଦିନ ଧରିତ୍ରୀ ନିଜ ବକ୍ଷରେ ଘଟିଥିବା ସବୁ ଘଟଣା ବର୍ଣ୍ଣନା କରିବ, ୫. କାରଣ ତୁମ ପ୍ରଭୁ ତାକୁ ଏହାର ନିର୍ଦ୍ଦେଶ ଦେଇଥିବେ । ୬. ସେଦିନ ଲୋକମାନେ ଦଳଦଳ ହୋଇ ନିଜନିଜର କର୍ମପଞ୍ଜିକା ଦେଖିବା ପାଇଁ ଆସିବେ । ୭. ଯିଏ ଅଣୁ ମାତ୍ରାରେ ପୁଣ୍ୟ କରିଥିବ, ସେଦିନ ସେ ତାହା ଦେଖିନେବ । ୮. ଏବଂ ଯିଏ ଅଣୁ ମାତ୍ରାରେ ପାପ କରିଥିବ, ସେ ମଧ୍ୟ ତାହା ଦେଖିନେବ ।

## ଅଧ୍ୟାୟ ୧୦୦, ଅଲ୍ ଆଦିୟାତ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଧଇଁସଇଁ ହୋଇ ଦଉଡୁଥିବା ଅଶ୍ୱମାନଙ୍କର ରାଣ ! ୨. ଯେଉଁମାନେ (ଖୁରାଘାତ ଦ୍ୱାରା) ଅଗ୍ନିକଣା ବାହାର କରନ୍ତି, ୩. ସକାଳୁ ସକାଳୁ ଆକ୍ରମଣ କରନ୍ତି, ୪. ଏବଂ ଧୂଳି ଉଡ଼ାଇ ଚାଲିଥାଆନ୍ତି । ୫. ପୁଣି ଶତ୍ରୁ ସେନାଙ୍କ ଭିତରେ ପଶିଯାଆନ୍ତି । ୬. ପ୍ରକୃତରେ ମନୁଷ୍ୟ ନିଜ ପାଳନକର୍ତ୍ତାଙ୍କ ପ୍ରତି ଭାରି କୃତଘ୍ନ । ୭. ଏବଂ ଏକଥା ସେ ଭଲରୂପେ ଜାଣେ, ୮. କିନ୍ତୁ ଧନ ପାଇଁ ତା'ର ପ୍ରବଳ ଲୋଭ । ୯. କ'ଣ ତାକୁ ଏକଥା ଜଣାନାହିଁ ଯେ (ମୃତମାନଙ୍କୁ ଜୀବିତ କରି) କବର ମଧ୍ୟରୁ ବାହାର କରାଯିବ ? ୧୦. ଏବଂ ମନରେ ଥିବା ଗୋପନ କଥା ସବୁ ପ୍ରକାଶ କରି ଦିଆଯିବ ? ୧୧. ସେଦିନର ସେମାନଙ୍କର ଅବସ୍ଥା ସଂପର୍କରେ ତୁମ ଈଶ୍ୱର ଭଲରୂପେ ଜାଣନ୍ତି ।

## ଅଧ୍ୟାୟ ୧୦୧, ଅଲ୍ କାରିଅଃ

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ମହାବିପର୍ଯ୍ୟୟ । ୨. କ'ଣ ଏହି ମହାବିପର୍ଯ୍ୟୟ ? ୩. ତୁମେ କ'ଣ ଜାଣ ଯେ ଏହି ମହାବିପର୍ଯ୍ୟୟ କ'ଣ ? ୪. ସେଦିନ ଲୋକମାନଙ୍କର ଅବସ୍ଥା ବିକ୍ଷିପ୍ତ ପତଙ୍ଗମାନଙ୍କ ପରି ହୋଇଯିବ । ୫. ଏବଂ ପାହାଡ଼ଗୁଡ଼ିକର ଅବସ୍ଥା ଭିଣା ଯାଇଥିବା ତୁଳା ପରି ହୋଇଯିବ । ୬. ପୁଣି ଯେଉଁ ବ୍ୟକ୍ତିର ପୁଣ୍ୟର ଓଜନ ବେଶୀ ହେବ, ୭. ସେ ନିଜ ଇଚ୍ଛା ଅନୁସାରେ ସୁଖ ଭୋଗ କରିବ । ୮. ମାତ୍ର ଯାହାର ପୁଣ୍ୟର ଓଜନ କମ୍ ହେବ, ୯. ସେ ନର୍କକୁଣ୍ଡରେ ପଡ଼ିବ । ୧୦. ତୁମେ କ'ଣ ଜାଣ ଯେ ଏହା କ'ଣ । ୧୧. ଏହା ଦାଉଦାଉ ହୋଇ ଜଳୁଥିବା ନିଆଁ ।

## ଅଧ୍ୟାୟ ୧୦୨, ଅତ୍ ତକାସୁର୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଅଧିକରୁ ଅଧିକ ଭୋଗ୍ୟବସ୍ତୁ ପାଇବାର ଲାଳସା ତୁମମାନଙ୍କୁ ଭୁଲାଇ ରଖିଛି । ୨. ଏହାରି ଚିନ୍ତାରେ ତୁମେମାନେ କବର ମଧ୍ୟରେ ପହଁଚିଯାଅ । ୩. ନା ନା, ତୁମେମାନେ ଶୀଘ୍ର ଜାଣିଯିବ । ୪. ତୁମେମାନେ ଅତିଶୀଘ୍ର ଜାଣିଯିବ । ୫. ନା ନା, ଯଦି ତୁମମାନେ ବିଶ୍ୱାସର ସହିତ ଏହା ଜାଣିଥାଆନ୍ତ (ତେବେ ଏହା କରନ୍ତନାହିଁ) । ୬. ତୁମେମାନେ ନିଶ୍ଚୟ ନର୍କ ଦେଖିବ, ୭. ଏବଂ ଏହା ନିଜ ଆଖିରେ ଦେଖିବ । ୮. ପୁଣି ସେଦିନ ତୁମମାନଙ୍କୁ ଆମ୍ଭର ଅନୁଗ୍ରହଗୁଡ଼ିକ ବିଷୟରେ ପ୍ରଶ୍ନ କରାଯିବ ।

## ଅଧ୍ୟାୟ ୧୦୩, ଅଲ୍ ଅସ୍ର୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ସମୟର ରାଣ ! ୨. ମଣିଷ ନିଶ୍ଚୟ କ୍ଷତିଗ୍ରସ୍ତ ହେବ । ୩. କେବଳ ସେହିମାନଙ୍କ ବ୍ୟତୀତ, ଯେଉଁମାନେ (ଇଶ୍ୱରଙ୍କୁ) ବିଶ୍ୱାସ କରନ୍ତି, ଭଲ କର୍ମ କରନ୍ତି ଏବଂ ପରସ୍ପରକୁ ସତ୍‌ପଥରେ ଚାଲିବା ଏବଂ ଧୈର୍ଯ୍ୟ ଅବଲମ୍ବନ କରିବା ଲାଗି ଉତ୍ସାହିତ କରନ୍ତି ।

## ଅଧ୍ୟାୟ ୧୦୪, ଅଲ୍ ହୁମଜଃ

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ପରଛିଦ୍ର ଖୋଜୁଥିବା ଓ ପରନିନ୍ଦା କରୁଥିବା ବ୍ୟକ୍ତିର ସର୍ବନାଶ ହେବ, ୨. ଯିଏ ଧନ ସଂଚୟ କରେ ଏବଂ ତାକୁ ଗଣୁଥାଏ । ୩. ସେ ଭାବିଛି ଯେ ତା' ଧନ ତାକୁ ଚିରଦିନ ଜୀବିତ ରଖିବ । ୪. ଆଦୌ ନୁହେଁ । ସେ ନିଶ୍ଚୟ ସର୍ବଗ୍ରାସୀ ନିଆଁରେ ଦଗ୍ଧ ହେବ । ୫. ତୁମେ କ'ଣ ଜାଣ ଯେ ସର୍ବଗ୍ରାସୀ ନିଆଁ କ'ଣ? ୬. ଅଲ୍ଲାହ୍ ଜାଳିଥିବା ନିଆଁ, ୭. ଯାହା ସେମାନଙ୍କର ଅନ୍ତର ଭେଦ କରିଯିବ । ୮. ସେଥିରେ ସେମାନଙ୍କୁ ଘୋଡ଼ାଇ ଦିଆଯିବ । ୯. ଏହାର ଚାରିପଟେ ନିଆଁର ଉଚ୍ଚଉଚ୍ଚ ସ୍ତମ୍ଭ ଥିବ ।

## ଅଧ୍ୟାୟ ୧୦୫, ଅଲ୍ ଫିଲ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. କ'ଣ ତୁମେ ଦେଖିଲନାହଁ ଯେ ତୁମ ଈଶ୍ୱର ଗଜାରୋହୀମାନଙ୍କର କି ଦଶା କଲେ? ୨. କ'ଣ ସେ ସେମାନଙ୍କର ସବୁ ଯୋଜନାକୁ ପଣ୍ଡ କରି ଦେଇ ନଥିଲେ? ୩. ସେ ସେମାନଙ୍କ ଉପରକୁ ଦଳଦଳ ପକ୍ଷୀ ପଠାଇଥିଲେ । ୪. ଯେଉଁମାନେ ସେମାନଙ୍କ ଉପରେ ଗୋଡ଼ିପଥର ମାଡ଼ କଲେ । ୫. ପୁଣି ସେମାନଙ୍କ ଅବସ୍ଥା ପଶୁ ଖାଇଥିବା ଘାସକୁଟା ପରି କରିଦେଲେ ।

## ଅଧ୍ୟାୟ ୧୦୬, କୁରୈଶ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. ଯେହେତୁ କୁରୈଶମାନେ ଅଭ୍ୟସ୍ତ ହୋଇଗଲେଣି ୨. (ଅର୍ଥାତ୍ ଏବେ) ସେମାନେ ଗ୍ରୀଷ୍ମ ଓ ଶୀତ କାଳରେ ଗମନାଗମନ କରିବାରେ ଅଭ୍ୟସ୍ତ । ୩. ତେଣୁ ସେମାନେ ଏହି କାବାଗୃହର ସ୍ୱାମୀଙ୍କର ଉପାସନା କରନ୍ତୁ, ୪. ଯିଏ ସେମାନଙ୍କୁ ଭୋକ ସମୟରେ ଖାଇବାକୁ ଦେଲେ ଏବଂ ସେମାନଙ୍କର ଭୟ ଦୂର କଲେ ।

## ଅଧ୍ୟାୟ ୧୦୭, ଅଲ୍ ମାଉନ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. କ'ଣ ତୁମେ ତାକୁ ଦେଖିଲ ଯିଏ କର୍ମଫଳକୁ ମିଥ୍ୟା ବୋଲି କହେ ? ୨. ସେହି ବ୍ୟକ୍ତି ଅନାଥକୁ ଧକ୍କା ଦିଏ, ୩. ଏବଂ କୌଣସି ଗରିବକୁ ଭୋଜନ ଦେବାଲାଗି (ଅନ୍ୟକୁ) ଉତ୍ସାହିତ କରେନାହିଁ । ୪. ସେହି ନମାଜ ପାଠ କରୁଥିବା ଲୋକମାନଙ୍କର ସର୍ବନାଶ ହେବ, ୫. ଯେଉଁମାନେ ନମାଜ ପ୍ରତି ଅବହେଳା କରନ୍ତି, ୬. ଲୋକ ଦେଖାଣିଆ କର୍ମ କରନ୍ତି, ୭. ଏବଂ ସାଧାରଣ ବ୍ୟବହାର୍ଯ୍ୟ ଜିନିଷଟିଏ ମଧ୍ୟ ଦେବାକୁ ମନା କରିଦିଅନ୍ତି ।

## ଅଧ୍ୟାୟ ୧୦୮, ଅଲ୍ କୌସର୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. (ହେ ବାର୍ତ୍ତାବହ!) ଆମ୍ଭେ (ଇହଲୋକ ଓ ପରଲୋକରେ) ତୁମର ଅଜସ୍ର ମଂଗଳ କରିଛୁ ୨. ତେଣୁ, ନିଜ ପ୍ରଭୁଙ୍କ ପାଇଁ ନମାଜପାଠ କର ଏବଂ ବଳି ଉତ୍ସର୍ଗ କର । ୩. ତୁମ ଶତ୍ରୁ ହିଁ ନିଃସନ୍ତାନ ରହିବ ।

## ଅଧ୍ୟାୟ ୧୦୯, ଅଲ୍ କାଫିରୁନ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ

୧. କହିଦିଅ, "ହେ ନାସ୍ତିକମାନେ! ୨. ତୁମେମାନେ ଯେଉଁମାନଙ୍କର ଉପାସନା କର, ମୁଁ ସେମାନଙ୍କର ଉପାସନା କରେନାହିଁ, ୩. ଏବଂ ମୁଁ ଯାହାଙ୍କର ଉପାସନା କରେ, ତୁମେମାନେ ତାଙ୍କର ଉପାସନା କରନାହିଁ । ୪. ତୁମେମାନେ ଯେଉଁମାନଙ୍କର ଉପାସନା କରୁଛ ମୁଁ ସେମାନଙ୍କର ଉପାସନା କରିବିନାହିଁ, ୫. ଏବଂ ମୁଁ ଯାହାଙ୍କର ଉପାସନା କରୁଛି, ତୁମେମାନେ ମଧ୍ୟ ତାଙ୍କର ଉପାସନା କରିବନାହିଁ । ୬. ତୁମମାନଙ୍କ ଧର୍ମ ତୁମର ଏବଂ ମୋ' ଧର୍ମ ମୋ'ର ।"

## ଅଧ୍ୟାୟ ୧୧୦, ଅନ୍ ନସ୍ର୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍ଙ୍କ ନାମରେ

୧. (ହେ ବାର୍ତ୍ତାବହ !) ଯେତେବେଳେ ଅଲ୍ଲାହଙ୍କଠାରୁ ସାହାଯ୍ୟ ମିଳିଯାଏ ଏବଂ ତୁମମାନଙ୍କର ବିଜୟ ଲାଭ ହୁଏ, ୨. ଏବଂ ତୁମେ ଦେଖ ଯେ ଲୋକମାନେ ଦଳଦଳ ହୋଇ ଅଲ୍ଲାହଙ୍କ ଧର୍ମ ଗ୍ରହଣ କରୁଛନ୍ତି, ୩. ସେତେବେଳେ ନିଜ ଈଶ୍ୱରଙ୍କର ଗୁଣଗାନ କରି ତାଙ୍କର ନାମଜପ କର ଏବଂ ତାଙ୍କ ନିକଟରେ କ୍ଷମାପ୍ରାର୍ଥନା କର । ସେ ଅବଶ୍ୟ କ୍ଷମାଶୀଳ ।

## ଅଧ୍ୟାୟ ୧୧୧, ଅଲ୍ ଲହବ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍ଙ୍କ ନାମରେ

୧. ଅବୁ ଲହବ୍‌ର ବାହୁବଳ ଭାଙ୍ଗିଗଲା ଏବଂ ତା'ର ସର୍ବନାଶ ହେଲା । ୨. ନା ତା'ର ଧନ ତା' କାମରେ ଆସିଲା, ନା ଉପାର୍ଜନ । ୩. ସେ ଦାଉଦାଉ ହୋଇ ଜଳୁଥିବା ନିଆଁରେ ଦଗ୍ଧ ହେବ । ୪. ଏବଂ ତା' ପତ୍ନୀ ମଧ୍ୟ, ଯିଏ ଜାଳେଣୀକାଠ ବୋହିଥାଏ । ୫. ତା' ବେକରେ ଶକ୍ତ ଦଉଡ଼ି ବନ୍ଧାଯିବ ।

## ଅଧ୍ୟାୟ ୧୧୨, ଅଲ୍ ଇଖ୍‌ଲାସ

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍ଙ୍କ ନାମରେ

୧. କହିଦିଅ, "ସେ ଅଲ୍ଲାହ୍ ଅଦ୍ୱିତୀୟ । ୨. ଅଲ୍ଲାହ୍ ଆବଶ୍ୟକତା ରହିତ । ୩. ସେ କାହାରିକୁ ଜନ୍ମ କରିନାହାନ୍ତି କିମ୍ବା କେହି ତାଙ୍କୁ ଜନ୍ମ କରିନାହିଁ । ୪. ଏବଂ କେହି ତାଙ୍କର ସମକକ୍ଷ ନୁହେଁ ।"

## ଅଧ୍ୟାୟ ୧୧୩, ଅଲ୍ ଫଲକ୍

### ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍ଙ୍କ ନାମରେ

୧. କୁହ, "ମୁଁ ଆଶ୍ରୟ ମାଗୁଛି ସକାଳର ସ୍ୱାମୀଙ୍କର, ୨. ତାଙ୍କ ସୃଷ୍ଟିର ଦୁଷ୍ପ୍ରଭାବରୁ, ୩. ଅନ୍ଧକାରର ଦୁଷ୍ପ୍ରଭାବରୁ ଯେତେବେଳେ ଏହା

ଘନେଇ ଆସେ, ୪. ସେମାନଙ୍କର ଦୁଷ୍ପ୍ରଭାବରୁ ଯେଉଁମାନେ ଗଣ୍ଠି ବାନ୍ଧି ସେଥିରେ ଫୁଙ୍କନ୍ତି (ଅର୍ଥାତ୍ ଗୁଣିଗାରେଡ଼ି କରନ୍ତି) ୫. ଏବଂ ଈର୍ଷାଳୁ ବ୍ୟକ୍ତିର ଈର୍ଷାରୁ ଯେତେବେଳେ ସେ ଈର୍ଷା କରେ ।”

**ଅଧ୍ୟାୟ ୧୧୪, ଅନ୍ ନାସ୍**

**ଅତ୍ୟନ୍ତ କୃପାଶୀଳ, ପରମ ଦୟାଳୁ ଅଲ୍ଲାହ୍‌ଙ୍କ ନାମରେ**

୧. କୁହ, “ମୁଁ ତାଙ୍କର ଆଶ୍ରୟ ମାଗୁଛି ଯିଏ ମାନବଜାତିର ପାଳନକର୍ତ୍ତା, ୨. ମାନବଜାତିର ଅଧୀଶ୍ୱର, ୩. (ଏବଂ) ମାନବଜାତିର ଉପାସ୍ୟ । ୪. ରହିରହି ଦୁର୍ଭାବନା ଉତ୍ପନ୍ନ କରୁଥିବା ଶଇତାନର କୁପ୍ରଭାବରୁ, ୫. ଯିଏ ଲୋକଙ୍କ ମନରେ ଦୁର୍ଭାବନା ଉତ୍ପନ୍ନ କରିଥାଏ, ୬. ସେ ଜିନ୍ ହୋଇଥାଉ ବା ମାନବ ।”

